# ଜୀବନ ଜିଜ୍ଞାସା

ଧନେଶ୍ୱର ସାହୁ

ଚର୍ଚ୍ଚା ପ୍ରକାଶନ

ଜୀବନ ଜିଜ୍ଞାସା

*ଲେଖକ :* ଅଧ୍ୟାପକ ଧନେଶ୍ୱର ସାହୁ
ମୋ : ୯୪୩୮୫୪୭୮୯୫

*ପ୍ରକାଶକ :* **ଚର୍ଚ୍ଚା ପ୍ରକାଶନ**
ପ୍ଲଟ ନଂ - ଏଫ/୮୬୬, ସେକ୍ଟର - ୭,
ମର୍କତନଗର, ସିଡିଏ,
କଟକ-୭୫୩୦୧୪
ମୋ : ୯୪୩୮୮୪୦୫୦୬

*ପ୍ରଥମ ସଂସ୍କରଣ :* **୨୦୧୫**

*ମୁଦ୍ରଣ :* ସତ୍ୟବ୍ରତ ଅଫସେଟ୍
ଟାଉନ ହଲ୍ ରୋଡ୍, କଟକ - ୭୫୩୦୦୯

ମୂଲ୍ୟ : ୩୦୦ ଟଙ୍କା

---

**JEEVAN JIJNASA**

*Author* : **Prof. Dhaneswar Sahoo**



*Publisher :*
***CHARCHA PRAKASHAN***
*Plot No : F/866, Sec-7, CDA*
*Markat Nagar, Cuttack -753014*
*Mob. : 9438840506*

*First Edition* : 2015

*Printer :*
**Satyabrata Offset**
Town Hall Road, Cuttack - 753009

Price : **Rs 300.00**

**ISBN No : 978-81-908500-6-3**

## -ଉତ୍ସର୍ଗ-

ଭେଦଭାବ ବିହୀନ ତଥା ହିଂସାରହିତ ଏକ ଅନୁପମ
ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ନିଜର ସମ୍ପୃକ୍ତି ବ୍ୟକ୍ତ କରୁଥିବା
ଉଦାରବାଦୀ ମଣିଷଙ୍କ ହାତରେ ଏହି ପୁସ୍ତକଟିକୁ
ଉତ୍ସର୍ଗ କରୁଛି ।

- *ଲେଖକ*

# ମୁଖବନ୍ଧ

ଶହେଟି ବିଚାରଧର୍ମୀ ନିବନ୍ଧକୁ ନେଇ ଏହି ପ୍ରବନ୍ଧ ସଂକଳନଟି ଆତ୍ମପ୍ରକାଶ କରିବା ମୋ ପାଇଁ ଆନନ୍ଦର ବିଷୟ । ଏହି ପ୍ରବନ୍ଧ ଗୁଡ଼ିକ ଖବର କାଗଜ 'ସମ୍ବାଦ' ଓ 'ପ୍ରଗତିବାଦୀ'ରେ ପ୍ରକାଶ ପାଇଛି । ସମ୍ବାଦରେ ପ୍ରଥମ ବାରଟି ପ୍ରବନ୍ଧ (୧ ରୁ ୧୨) ଓ 'ପ୍ରଗତିବାଦୀ'ରେ ଅବଶିଷ୍ଟ ଅଠାଅଶୀଟି ପ୍ରବନ୍ଧ (୧୩ ରୁ ୧୦୦) ପ୍ରକାଶ ପାଇଛି । ପ୍ରତ୍ୟେକ ଲେଖା ଶେଷରେ ପ୍ରକାଶ ପାଇଥିବା ତାରିଖ ଉଲ୍ଲେଖ ରହିଛି ।

ପ୍ରବନ୍ଧ ଗୁଡ଼ିକ କେତେକ ସାମ୍ପ୍ରତିକ ସମସ୍ୟା ଓ ବିଭିନ୍ନ ପ୍ରସଙ୍ଗ ଉପରେ ଲିଖିତ । ତେବେ ଅଧିକାଂଶ ପ୍ରବନ୍ଧ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଦର୍ଶନ, ଶିକ୍ଷା, ସଂସ୍କୃତି, ଉତ୍ତମ ଜୀବନ, ଉତ୍ତମ ସମାଜ ଇତ୍ୟାଦି ବିଷୟ ଉପରେ ଚର୍ଚ୍ଚା କରିଥିବା ମନେହୁଏ । ଏହା ସହିତ ରାଜନୀତି, ନୈତିକତା, ସାମାଜିକ ମୂଲ୍ୟବୋଧ ପ୍ରସଙ୍ଗ ଉପରେ କିଛି ପ୍ରବନ୍ଧ ରହିଛି । କେତେକ କ୍ରାନ୍ତିକାରୀ ସଂସ୍କାରକ ଓ ସମାଜସେବୀଙ୍କ ବିଷୟରେ ମଧ୍ୟ କେତୋଟି ଲେଖା ରହିଛି । ଏହିପରି ବିଭିନ୍ନ ମୌଳିକ ପ୍ରସଙ୍ଗ, ସାମାଜିକ ସମସ୍ୟା ଓ ଚିନ୍ତାଶୀଳ ବ୍ୟକ୍ତିଙ୍କର ବିଚାର ଉପରେ ଏହି ପ୍ରବନ୍ଧ ଗୁଡ଼ିକ ଆଧାରିତ । ସେଗୁଡ଼ିକ ଗୋଟିଏ ସଂକଳନରେ ସ୍ଥାନିତ ହେବା ସୁଖର ବିଷୟ ।

ଲେଖା ଗୁଡ଼ିକ ଯେହେତୁ ସମ୍ବାଦପତ୍ରରେ ପ୍ରକାଶିତ ପ୍ରବନ୍ଧ, ତେଣୁ ଏଗୁଡ଼ିକର କଳେବର ସୀମିତ ଓ କ୍ଷୁଦ୍ର । ତେବେ ପ୍ରବନ୍ଧଗୁଡ଼ିକ ଭିତରେ ମୋର ନିଜସ୍ୱ ବିଚାରବୋଧ କେତେକାଂଶରେ ପ୍ରତିଫଳିତ । ବ୍ୟକ୍ତିଗତ ଆତ୍ମପ୍ରତ୍ୟୟରେ ମୁଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦର୍ଶନକୁ ସବୁଠାରୁ ଅଧିକ ମୂଲ୍ୟ ଦେଇଥାଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମୁକ୍ତମନ, ଜିଜ୍ଞାସାମୂଳକ ଅନୁସନ୍ଧିତ୍ସା, ବୈଜ୍ଞାନିକ ପ୍ରଣାଳୀ ଓ ସତ୍ୟ ପ୍ରତି ପ୍ରତିବଦ୍ଧତା ଉପରେ ଆଧାରିତ । ପରିଣାମତଃ ଏହା କୁସଂସ୍କାର, ରୁଦ୍ଧ ମାନସିକତା ଓ ଧାର୍ମିକ ବିଶ୍ୱାସର ଅଭ୍ରାନ୍ତତାର ପରିପନ୍ଥୀ । ସେହିପରି ମାନବବାଦ ଇହଲୌକିକ ଦୃଷ୍ଟିଭଙ୍ଗୀ ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଶ୍ରେୟ ଓ ସମ୍ବେଦନଶୀଳ ମନୋଭାବ ଉପରେ ଆଧାରିତ ।

ବସ୍ତୁତଃ ଏହା ପାରଲୌକିକ ଜୀବନଦୃଷ୍ଟି, ଭାଗ୍ୟବାଦ, କୌଣସି ଭେଦଭାବମୂଳକ ବ୍ୟବସ୍ଥା ଓ ସାମାଜିକ ନ୍ୟାୟକୁ ସର୍ବଦା ବିରୋଧ କରିଆସିଛି । ସଭ୍ୟତା ଓ ସଂସ୍କୃତିରେ ଯାହା କିଛି ବିକାଶ ହୋଇଛି, ତାହା ମଣିଷର ପ୍ରୟାସ ଯୋଗୁଁ ସମ୍ଭବ ହୋଇଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦର୍ଶନ ଜ୍ଞାନ ବିଜ୍ଞାନର ବିକାଶ ସହ ଗୁଣାତ୍ମକ ଜୀବନ ଓ ଉନ୍ନତ ସମାଜ ପାଇଁ ପ୍ରେରଣାର ଉତ୍ସ ହୋଇଆସିଛି । ମହତ୍ତର ଜୀବନ ଓ ପ୍ରୀତିପୂର୍ଣ୍ଣ ସାମାଜିକ ସମ୍ବନ୍ଧର ବିକାଶ ଦିଗରେ ଏହି ବିଚାରର ନିର୍ଣ୍ଣାୟକ ଅବଦାନ ରହିଛି ବୋଲି ମୁଁ ବିଚାରକରେ । ମୋର ବିଶ୍ୱାସ, ପ୍ରବନ୍ଧ ସଙ୍କଳନରେ ସ୍ଥାନିତ ଲେଖାମାନଙ୍କ ଭିତରେ ଏହି ବିଚାରବୋଧର କିଛି ଅନ୍ତର୍ନିହିତ ବାର୍ତ୍ତା ରହିଛି ।

ଏହି ମୁଖବନ୍ଧଟି ଲେଖିବାବେଳେ ବହୁ ଅପରିଚିତ ପାଠକଙ୍କ ପ୍ରେରଣା ମନକୁ ଆସୁଛି । ମୁଁ ଯେବେ ସମ୍ବାଦପତ୍ରରେ ପ୍ରବନ୍ଧ ଲେଖିବା ଆରମ୍ଭ କଲି, ତା ପରଠୁ ପ୍ରବନ୍ଧଟିଏ ପ୍ରକାଶ ପାଇବା ପରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ କିଛି ଗୁଣଗ୍ରାହୀ ପାଠକ ଲେଖା ପଢ଼ି ମତାମତ ଦେଇ ପତ୍ର ପଠାନ୍ତି । ଘଟଣାକ୍ରମେ ଅପରିଚିତ କେତେକ ପାଠକଙ୍କ ସହ ପତ୍ରାଳାପ ହେବାର ସୁଯୋଗରୁ ସେମାନେ ମୋର ପତ୍ରବନ୍ଧୁ ହୋଇ ପାରିଛନ୍ତି । ମୋର କେତେକ ଶିକ୍ଷକ, ସାଥୀ, ପରିଚିତ ସହକର୍ମୀ ଓ ଛାତ୍ର ଲେଖା ପଢ଼ି ଧନ୍ୟବାଦ ଦିଅନ୍ତି, ଫୋନ କରି ବଧାଇ ଜଣାନ୍ତି ଓ ମତାମତ ଦିଅନ୍ତି । ଗୁଣଗ୍ରାହୀ ପାଠକମାନଙ୍କର ସଦିଚ୍ଛା ଓ ପ୍ରେରଣାକୁ ମୁଁ ସବୁଠାରୁ ଅଧିକ ମହତ୍ତ୍ୱ ଦେଇଥାଏ । ଏହି ଅବସରରେ ସେହି ସଚେତନ ପାଠକମାନଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି । କୌଣସି ଶବ୍ଦର ପ୍ରୟୋଗ ବା ପାରିଭାଷିକ ସମସ୍ୟାର ସମ୍ମୁଖୀନ ହେଲେ ମୁଁ ଭାଷା ବିଜ୍ଞାନୀ ଅବସରପ୍ରାପ୍ତ ସଂସ୍କୃତ ଅଧ୍ୟାପକ ଡ. ଭରତଚନ୍ଦ୍ର ନାଥଙ୍କର ସାହାଯ୍ୟ ନେଇଥାଏ । ସେ ଅକୁଣ୍ଠିତ ଭାବେ ମୋତେ ସମୟ ଦେଉଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ଏହି ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ଚର୍ଚ୍ଚା ପ୍ରକାଶନର ସତ୍ତ୍ୱାଧିକାରୀ ଶ୍ରୀ ଦେବେନ୍ଦ୍ର ସୁତାର ବହନ କରିଥିବାରୁ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

**ଧନେଶ୍ୱର ସାହୁ**

*ଫୋନ : ୯୪୩୮୪୪୭୮୯୪*

*ଏ-୧୨, ଭାଗୀରଥି ବିହାର, ଢେଙ୍କାନାଳ*

# ସୂଚୀପତ୍ର

# ଈଶ୍ୱରଙ୍କ ଆଖିରେ ଲୁହ

ଧର୍ମ ଏକ ବିଶ୍ୱାସ ନା ଏକ ପରିଚୟ ? ଯଦି ବି ଏହାକୁ ଏକ ପରିଚୟ ଭାବେ ନିଆଯାଏ, ତଥାପି ଜଣେ ବ୍ୟକ୍ତିର ବହୁବିଧ ସାମାଜିକ ପରିଚୟ ରହୁଥିବା ହେତୁ, ଧର୍ମ ତାହାର ଏକକ ପରିଚୟ ନୁହେଁ । ଜଣେ ବ୍ୟକ୍ତି ବୃତ୍ତି ଦୃଷ୍ଟିରୁ ବ୍ୟବସାୟୀ, ଓକିଲ, ଅଧ୍ୟାପକ ବା କୃଷକ ଇତ୍ୟାଦି ଯାହା ହୋଇପାରେ, ଜାତୀୟତା ଦୃଷ୍ଟିରୁ ଭାରତୀୟ, ଜାପାନୀ ବା ଆମେରିକୀୟ ଇତ୍ୟାଦି ହୋଇପାରେ; ଭାଷା ଦୃଷ୍ଟିରୁ ଓଡ଼ିଆ, ତାମିଲ ବା ଗୁଜୁରାଟୀ ଇତ୍ୟାଦି ହୋଇପାରେ । ସେହିପରି ବ୍ୟକ୍ତିର ଅନ୍ୟାନ୍ୟ ପରିଚୟ ଅନ୍ୟାନ୍ୟ ମାନଦଣ୍ଡରୁ ମଧ୍ୟ ରହିପାରେ । ଜଣେ ବ୍ୟକ୍ତି ହିନ୍ଦୁ, ଅଧ୍ୟାପକ, ଓଡ଼ିଆ, ଫୁଟବଲ ଖେଳାଳି ହୋଇପାରେ ବା ଆଉ ଜଣେ ଖ୍ରୀଷ୍ଟିଆନ୍, ବ୍ୟବସାୟୀ, କବି ଇତ୍ୟାଦି ହୋଇପାରେ । କର୍ମ ଦୃଷ୍ଟିରୁ ଗୋଟିଏ ବୃତ୍ତିକୁ ନେଇ ସ୍ୱାବଲମ୍ବୀ ମଣିଷଟିକୁ ଅନ୍ୟ ବୃତ୍ତିର ଲୋକମାନେ ଘୃଣା ଦୃଷ୍ଟିରେ ଦେଖନ୍ତି ନାହିଁ ବା ସେମାନଙ୍କ ଭିତରେ ବିଦ୍ୱେଷ ନଥାଏ । ସେହିପରି ଭାବ ବ୍ୟକ୍ତ କରିବା ପାଇଁ ଓଡ଼ିଆ କହୁଥିବା ମଣିଷଟିକୁ ଅନ୍ୟ ଭାଷାରେ ଲୋକମାନେ ଘୃଣା କରନ୍ତି ନାହିଁ । କିନ୍ତୁ ପରିତାପର ବିଷୟ ଗୋଟିଏ ଧାର୍ମିକ ବିଶ୍ୱାସ ଭିତରେ ଥିବା ମଣିଷ ଅନ୍ୟ ଧର୍ମର ବିଶ୍ୱାସୀମାନଙ୍କ ଶରବ୍ୟ ହୁଏ, ନିରପରାଧ ହୋଇ ବି ସେଇ କାରଣରୁ ଯନ୍ତ୍ରଣା ଜର୍ଜରିତ ହୁଏ ଓ ତାର ସୁନାର ସଂସାର ଅନ୍ୟ ଧର୍ମବିଶ୍ୱାସୀଙ୍କ ଦ୍ୱାରା ଚୂନା ହୋଇଯାଏ । 'ଯେଉଁମାନେ ମୋ ଧାର୍ମିକ ପରିଚୟର ନୁହନ୍ତି ସେମାନେ ଘୃଣାର ପାତ୍ର, ଆମର ଶତ୍ରୁ, ସେମାନେ ଯନ୍ତ୍ରଣା ଭିତରେ ଜର୍ଜରିତ ହେବା ଉଚିତ ।' ଏଇଭଳି ଏକ ମାନସିକତାକୁ ମତାନ୍ଧତା, ସାମ୍ପ୍ରଦାୟିକତା, ମୌଳବାଦ ବା ଅନ୍ୟ ଯେଉଁ ଭାଷାରେ ବ୍ୟକ୍ତ କରାଗଲେ ବି ଏହି ମନସ୍ତତ୍ତ୍ୱର ଅଧିକାରୀ ହେଉଥିବା ଏକ ସମାଜ ଯେ ମାନବୀୟ ମୂଲ୍ୟବୋଧରୁ ଅନେକ ଦୂରରେ, ଏହା ନିଃସନ୍ଦେହରେ କୁହାଯାଇପାରିବ ।

କିନ୍ତୁ ବାସ୍ତବରେ ଦେଖିଲେ ଧର୍ମ ଏକ ଅସ୍ମିତାର ପ୍ରଶ୍ନ ନୁହେଁ, ଏହା ହେଉଛି କେବଳ ବିଶ୍ୱାସର ପ୍ରତୀକ । ପ୍ରାଚୀନ କାଳରୁ ଚଳି ଆସୁଥିବା ବିଶ୍ୱାସ ପରମ୍ପରାକ୍ରମେ ବିଭିନ୍ନ ଧର୍ମକୁ ଜନ୍ମ ଦେଇଛି । ଏବେ ଧର୍ମ କହିଲେ ଯାହା ବୁଝାଯାଉଛି ତାହା ହେଲା, ଈଶ୍ୱର, ଧର୍ମଗ୍ରନ୍ଥ, ପୂଜା ଆରାଧନା ଜନିତ କର୍ମକାଣ୍ଡ, କେତେକ ନୀତିବାଣୀ ଓ କେତେକ ଚଳଣି ଓ ପ୍ରଥାର ଏକ ସମନ୍ୱିତ ଧାରା । ତେବେ ବିଡ଼ମ୍ବନାର ବିଷୟ ଧର୍ମକୁ ନେଇ ଆମ

ସଂସାର ବହୁ ସମୟରେ ରକ୍ତ ରଞ୍ଜିତ ହୋଇଛି, ମଣିଷ-ମଣିଷ ଭିତରେ ପ୍ରାଚୀର ସୃଷ୍ଟି ହୋଇଛି ଓ ଏହା ସମସ୍ତ ମାନବିକ ସମ୍ବେଦନଶୀଳତା ଓ ସଂପ୍ରୀତିର ଗତିରୋଧ କରିଆସିଛି ।

ଯେଉଁଠି ବିଚାରଶୀଳତା ଓ ମାନବିକତା ପ୍ରାଧାନ୍ୟ ନିଏ ସେଠାରେ ଧର୍ମ ଏକ ଜୀବନଧାରାରେ ପରିଣତ ହୁଏ, ଯେଉଁଠି ଭାବାବେଗ ଓ ବିଦ୍ୱେଷର ମନୋଭାବ ରହେ, ସେଠାରେ ଏହା ସାମ୍ପ୍ରଦାୟିକତାରେ ରୂପାନ୍ତରିତ ହୋଇଥାଏ । ଜଣେ କୃଷ୍ଣ ବା ଶିବଙ୍କୁ ପ୍ରାର୍ଥନା କରେ, ଜଣେ ଆଲ୍ଲାଙ୍କୁ ବା ଖ୍ରୀଷ୍ଟଙ୍କୁ ବା ନିରାକାର ବ୍ରହ୍ମଙ୍କୁ ପ୍ରାର୍ଥନା କରେ, ଏସବୁ ଏକ ଏକ ବିଶ୍ୱାସ ମାତ୍ର । ଜଣେ ମାନସିକ ଶାନ୍ତି ପାଇବା ପାଇଁ ମନ୍ଦିରକୁ ଯାଏ ବା ଆଉ କେହି ଚର୍ଚ୍ଚ ବା କେହି ମସ୍‌ଜିଦ୍ ତ କେହି ଗୁରୁଦ୍ୱାରକୁ ଯାଏ, ଏଥିରେ କ'ଣ ଫରକ ରହିଛି ? କେହି ଗୀତା ବା ଉପନିଷଦ୍ ପଢ଼ି ସେଥିରୁ ମହତ୍ତର ଜୀବନ ପାଇଁ ପ୍ରେରଣା ଲାଭ କରେ ତ ଆଉ କେହି ଅନ୍ୟ କେଉଁ ଧର୍ମଗ୍ରନ୍ଥରୁ ତାହା ପାଏ; ସେଥିରେ କେଉଁଠି ବିରୋଧାଭାସ ରହିଛି ? କିନ୍ତୁ ଯଦି ଜଣେ ଭାବେ ଯେ ଯିଏ ମୋ ବିଶ୍ୱାସର ଦେବତାଙ୍କୁ ପ୍ରାର୍ଥନା କରେ ନାହିଁ, ସେ ମୋର ବିରୋଧୀ ଓ ଅତ୍ୟାଚାର ଯୋଗ୍ୟ, ସେଠାରେ ସାମ୍ପ୍ରଦାୟିକତାର ପ୍ରଶ୍ନ ଉଠିଥାଏ ।

ତେବେ ଯେଉଁମାନେ ଆଧ୍ୟାତ୍ମିକ ବିଶ୍ୱାସକୁ ଜୀବନଧାରରେ ମିଶାନ୍ତି ସେମାନେ ଈଶ୍ୱର, ଅତୀନ୍ଦ୍ରିୟ ଶକ୍ତି ଓ ଜୀବନର ଏକ ମହତ୍ତର ଲକ୍ଷ୍ୟରେ ବିଶ୍ୱାସ କରନ୍ତି । ଏହି ବିଶ୍ୱାସ ସେମାନଙ୍କୁ ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ଦିଏ ଓ ଏକ ସମ୍ବେଦନଶୀଳ ହୃଦୟ ମଧ୍ୟ ଦିଏ । ସତ୍ୟ, ନ୍ୟାୟ, ମାନବିକତା, ସଂପ୍ରୀତିର ମୂଲ୍ୟକୁ ଗ୍ରହଣ କରିବାର ଆବେଗ ସୃଷ୍ଟି କରିଥାଏ । ଧର୍ମ ଏଠାରେ ଏକ ନୈତିକ ଚେତନାରେ ରୂପାନ୍ତରିତ ହୁଏ । ପ୍ରତ୍ୟେକ ଧର୍ମ, ସଂସ୍କୃତି ଓ ସଭ୍ୟତାରେ ଆମେ ଏହିପରି ଉଦାର, ଦରଦୀ ଓ ମାନବବାଦୀଙ୍କୁ ଦେଖିଥାଉଁ, ଯେଉଁମାନେ ନିଜର ଧର୍ମରୁ ପ୍ରେରଣା ପାଇ ବିଶ୍ୱମାନବିକତାରେ ବିଶ୍ୱାସ କରନ୍ତି ଓ ସଂସାରର ମଙ୍ଗଳ ପାଇଁ ହୃଦୟକୁ ଉନ୍ମୁକ୍ତ କରନ୍ତି । ସେ କବୀର ହୁଅନ୍ତୁ, ଆଲବର୍ଟ ସ୍ୱାଏତ୍‌ଜର ବା ମଦର ଟେରେସା ହୁଅନ୍ତୁ, ବିବେକାନନ୍ଦ, ରବୀନ୍ଦ୍ରନାଥ ବା ମହାତ୍ମା ଗାନ୍ଧୀ ହୁଅନ୍ତୁ ସେମାନେ ନିଜ ନିଜ ଧର୍ମରୁ ପ୍ରେରଣା ପାଇ ବିଶ୍ୱମାନବିକତା ଓ ବିବେକର ବାର୍ତ୍ତାବହ ହୋଇଛନ୍ତି । ଈଶ୍ୱରୀୟ ଚେତନା ଓ ବିଶ୍ୱାସରୁ ସମଗ୍ର ବିଶ୍ୱର ମଙ୍ଗଳ ପାଇଁ ପ୍ରସାରିତ ହୃଦୟର ପରିଚୟ ଦେଇଛନ୍ତି ।

କିନ୍ତୁ ଆମ ସଂସାରରେ ଧର୍ମର ଏହି ମହତ୍ତର ଆବେଗ ଯେତେ ଲୋକଙ୍କୁ ପ୍ରଭାବିତ କରିନାହିଁ, ତା ଅପେକ୍ଷା ଏହାର ସାମ୍ପ୍ରଦାୟିକ ଆବେଦନ ଅଧିକ ଲୋକଙ୍କୁ ପ୍ରଭାବିତ କରିଛି । ସେହି ସାମ୍ପ୍ରଦାୟିକ ମାନସିକତା ଭିତ୍ତିରେ ଈଶ୍ୱରଙ୍କୁ ଭାଗ କରାଯାଇଛି ।

ମୋ ଈଶ୍ୱର ତାଙ୍କ ଈଶ୍ୱରଙ୍କଠାରୁ ପୃଥକ୍, ମୋ ଧର୍ମର ପୂଜାସ୍ଥଳ ପବିତ୍ର ଓ ଅନ୍ୟ ପୂଜାସ୍ଥଳ ଅପବିତ୍ର, ସୁତରାଂ ଧ୍ୱଂସ ହେବା ଯୋଗ୍ୟ; ଏହା ହିଁ କେତେ ଲୋକଙ୍କର ମୂଳ ଭାବନା ହୋଇପଡ଼ିଛି । ଯେଉଁମାନେ ଧର୍ମରେ ପ୍ରେମର ବାର୍ତ୍ତା ପ୍ରଚାର କରନ୍ତି, ସେମାନଙ୍କ ଅପେକ୍ଷା ଯେଉଁମାନେ ଧର୍ମର ଆଳରେ ବିଦ୍ୱେଷର ବୀଜ ବୁଣନ୍ତି, ସେମାନେ ଅଧିକ ସ୍ୱୀକୃତି ପାଇବା ଉଦାରବାଦୀମାନଙ୍କ ପାଇଁ ସର୍ବଦା ଚିନ୍ତାର ବିଷୟ ହୋଇଛି । ଭ୍ରାତୃତ୍ୱ, ମାନବିକତା ଶାନ୍ତିପୂର୍ଣ୍ଣ ସଂହତି ପାଇଁ କ'ଣ ଆବଶ୍ୟକ, ପ୍ରେମ ନା ଘୃଣା ? ଏହି ପ୍ରଶ୍ନ ସେମାନଙ୍କୁ ବ୍ୟଥିତ କରିଛି ।

ବିଚାରଶୀଳତା ଓ ମାନବିକତାରେ ବିଶ୍ୱାସୀ ମଣିଷମାନେ କୌଣସି ସମୟରେ ସାମ୍ପ୍ରଦାୟିକ ହେବେ ନାହିଁ । ସେମାନେ ଧର୍ମନିରପେକ୍ଷ ହିଁ ରହିବେ । ତେବେ ଧର୍ମନିରପେକ୍ଷତାର ଦୁଇଟି ଦିଗନ୍ତ ରହିପାରେ । ଧର୍ମରେ ବିଶ୍ୱାସ ରଖିଥିବା ଧର୍ମନିରପେକ୍ଷବାଦୀ କାହା ପ୍ରତି ବିଦ୍ୱେଷ ପୋଷଣ କରିବେ ନାହିଁ, ବରଂ ଉଦାତ୍ତ କଣ୍ଠରେ କହିବେ, 'ସବୁ ଧର୍ମର ସବୁ ମହାପୁରୁଷଙ୍କର ବାଣୀ ନ ଶୁଣିଲେ ମଣିଷର ଧାର୍ମିକ ଜୀବନ ଅପୂର୍ଣ୍ଣାଙ୍ଗ ରହିଯିବ ।' ଏହି ବାଣୀ ସ୍ୱାମୀ ବିବେକାନନ୍ଦ ପ୍ରଚାର କରି ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲେ, ରବୀନ୍ଦ୍ରନାଥ ଏହି ଜୀବନଦୃଷ୍ଟି ପ୍ରତି ଗଭୀର ଆସ୍ଥା ସ୍ଥାପନ କରି ଧର୍ମକୁ ମାନବିକତା ସହ ସାମିଲ କରିଥିଲେ ଓ ଗାନ୍ଧୀ ବିଶ୍ୱ ବିବେକର ପ୍ରତିଭୂ ହୋଇପାରିଲେ । ଯୁଗେଯୁଗେ ବୁଦ୍ଧିଦୀପ୍ତ ଧର୍ମନିରପେକ୍ଷବାଦୀଗଣ ସାମାଜିକ ବିକାଶ ପ୍ରକ୍ରିୟାରେ ପ୍ରତ୍ୟେକ ଧର୍ମକୁ ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ଏକ ସାଂସ୍କୃତିକ ଜାଗରଣ ଭାବେ ନେଇଛନ୍ତି । ଏବେ ପ୍ରାଚୀନ ଯୁଗର ବିଶ୍ୱାସ, ପରମ୍ପରା ଓ ଜଗତ ଦୃଷ୍ଟିଠାରୁ ଦେଶ ଦୁନିଆ ବହୁ ଆଗକୁ ଗଲାଣି । ଜ୍ଞାନ, ଦର୍ଶନ, ବିଜ୍ଞାନ କ୍ଷେତ୍ରରେ ନାନା କ୍ରାନ୍ତିକାରୀ ବିଚାର ସଭ୍ୟତା ଓ ସଂସ୍କୃତିର ଅନେକ ଉତ୍ତରଣ ଘଟାଇଲାଣି । ଆଧୁନିକ ପ୍ରଯୁକ୍ତି ଆମ ସଂସାରକୁ ଗୋଟିଏ ବିଶ୍ୱ ଗ୍ରାମରେ ପରିବର୍ତ୍ତନ କରିଦେଲାଣି । ସେ କ୍ଷେତ୍ରରେ ସଭ୍ୟତା - ସଭ୍ୟତା ଓ ସଂସ୍କୃତି ସଂସ୍କୃତି ଭିତରେ ନାନା ଆଦାନପ୍ରଦାନର ପରିଣାମ ସ୍ୱରୂପ ମହତ୍ତର ଓ ଉନ୍ନତତର ଜୀବନଶୈଳୀର ବିକାଶ ହେଲାଣି । ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଦ୍ୱାରା ଧର୍ମର ପରିସର ସଙ୍କୁଚିତ ହୋଇ ଆସିଲାଣି । ଏହା ଶିକ୍ଷିତ ଏବଂ ବିଶ୍ୱଦୃଷ୍ଟି ସଂପନ୍ନ ଆଧୁନିକ ଧର୍ମନିରପେକ୍ଷବାଦୀଙ୍କ ଆମ ସମାଜକୁ ଅବଦାନ । ଏହି ଦ୍ୱିତୀୟ ଶ୍ରେଣୀର ଧର୍ମନିରପେକ୍ଷବାଦୀମାନେ ବୁଦ୍ଧିଦୀପ୍ତ ବିଚାରଶୀଳତାକୁ ଗୁରୁତ୍ୱ ଦେଇ ବିଜ୍ଞାନ ଓ ମାନବିକତାର ଜୟଗାନ କରିଥାନ୍ତି । ସେ ବର୍ଟ୍ରାଣ୍ଡ ରସେଲ ହୁଅନ୍ତୁ ବା ମାନବେନ୍ଦ୍ରନାଥ ବା ଅମର୍ତ୍ତ୍ୟସେନ୍ ହୁଅନ୍ତୁ ସେମାନେ ବିଶ୍ୱରେ ଏକ ବିଦ୍ୱେଷ ରହିତ ଓ ଗୁଣାତ୍ମକ ଜୀବନଧାରାର ବିକାଶ ପାଇଁ ଧର୍ମନିରପେକ୍ଷତାକୁ ଶ୍ରେୟ ମନେ କରନ୍ତି ।

ଏବେ ବି ଆମ ସମାଜରେ ଅଗଣିତ ମଣିଷ ଜୀବନର ସର୍ବନିମ୍ନ ଆବଶ୍ୟକତା ପାଇପାରନ୍ତି ନାହିଁ । ସେମାନଙ୍କ ପିଲାମାନେ ଗୁଣାତ୍ମକ ଶିକ୍ଷାଠାରୁ ଯୋଜନ ଦୂରରେ, ସାଧାରଣ ସ୍ୱାସ୍ଥ୍ୟ ସେବା ସେମାନଙ୍କ ପାଖରେ ଅପହଞ୍ଚ । ସଂପ୍ରଦାୟବାଦ ଦ୍ୱାରା ଏହି ସ୍ଥିତିର ପରିବର୍ତ୍ତନ ହୁଏ ନାହିଁ । ବରଂ ଆମ ଧାର୍ମିକ ବିଶ୍ୱାସର କ୍ରୂରତାରେ ସେହିମାନେ ଶିକାର ହୁଅନ୍ତି । ସେମାନଙ୍କର ସଂସାର ଉଜୁଡ଼ିଯାଏ, ସେମାନଙ୍କ ପିଲାମାନଙ୍କର ସ୍ୱପ୍ନ ଭାଙ୍ଗିଯାଏ, ସେମାନେ ଦାଣ୍ଡର ଭିକାରି ହୁଅନ୍ତି । ହତାଶା, ନୈରାଶ୍ୟ ସମାଜ ପ୍ରତି ଅବିଶ୍ୱାସର ବୋଝକୁ ମୁଣ୍ଡରେ ଧରି ସେମାନେ ଯନ୍ତ୍ରଣା ଜର୍ଜରିତ ଜୀବନ ବଞ୍ଚନ୍ତି । ସେମାନଙ୍କର ଦୁଃଖ, ଯନ୍ତ୍ରଣା ଧର୍ମର ଆଳରେ ସମାଜରେ ଘୃଣା ଓ ବିଦ୍ୱେଷର ପରିବେଶ ଆଣୁଥିବା ବ୍ୟକ୍ତିମାନଙ୍କର ବିବେକକୁ ଆଘାତ ଦିଏ ନାହିଁ, ଏବଂ ତାହା ହିଁ ସଭ୍ୟ ଜୀବନର ବିଡ଼ମ୍ବନା ।

ଅଧିକ ବିଡ଼ମ୍ବନାର ବିଷୟ ଧର୍ମକୁ ଆୟୁଧ କରୁଥିବା ବ୍ୟକ୍ତିଗଣ ଏପରିକି ନିଜ ଧର୍ମର ଦର୍ଶନ ବା ମହତ୍ତ୍ୱର ଆବେଗ ପ୍ରତି ଉଦାସୀନ । ବ୍ୟକ୍ତିକୁ ତାର କର୍ମର ଫଳ ଯେ ଭୋଗିବାକୁ ହେବ ଏହା ଅଧିକାଂଶ ଧର୍ମର ଏକ ନିଷ୍କର୍ଷ । ହିନ୍ଦୁଧର୍ମ, ବୌଦ୍ଧ ଧର୍ମ, ଜୈନ ଧର୍ମ ବା ଶିଖ ଧର୍ମ ଇତ୍ୟାଦି ଧର୍ମରେ ଏହି କର୍ମବାଦ କଥା ରହିଛି । ହିଂସା, ବିଦ୍ୱେଷ, ଅମାନବିକ କାର୍ଯ୍ୟର କୁପରିଣାମ ବ୍ୟକ୍ତିକୁ ଭୋଗିବାକୁ ହେବ, ତାହା ଏ ଜନ୍ମରେ ହେଉ ବା ପରଜନ୍ମରେ ହେଉ । ସେହିପରି ଖ୍ରୀଷ୍ଟଧର୍ମ, ଇହୁଦୀ ଧର୍ମ ବା ଇସ୍‌ଲାମ ଧର୍ମର ବିଶ୍ୱାସ ଅନୁଯାୟୀ ଯିଏ ଘୃଣା, ହିଂସା ଓ ଅନ୍ୟାୟ ଆଚରଣ କରେ ସେ କେବେହେଲେ ଈଶ୍ୱରଙ୍କ ସ୍ୱର୍ଗରାଜ୍ୟକୁ ଯାଇ ପାରିବ ନାହିଁ । ଯଦି ଏହିସବୁ ବିଶ୍ୱାସ ଦ୍ୱାରା ଧର୍ମ ଅନୁଗାମୀ ଲୋକେ ଅନୁପ୍ରାଣିତ ହୁଅନ୍ତେ, ତେବେ କିଏ କାହିଁକି କାହାକୁ ହତ୍ୟା କରନ୍ତା ବା କାହାର ଘର ପୋଡ଼ନ୍ତା ବା ଅନ୍ୟର ସଂସାରକୁ ଉଚ୍ଛନ୍ନ କରି ଦିଅନ୍ତା ! ଆମେ ସମସ୍ତେ ଈଶ୍ୱରଙ୍କ ସନ୍ତାନ ବୋଲି କହୁ, କିନ୍ତୁ ଆମେମାନେ କେବେହେଲେ ସେଭଳି ବିଚାର କରୁନା ।

ଯଦ୍ୟାପି ସବୁ ଯୁଗରେ ଦରଦୀ ଓ ବିଚାରଶୀଳ ବ୍ୟକ୍ତମାନେ ରହିଛନ୍ତି । ଅନ୍ୟାୟ ଓ ଅମାନବିକତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ବିବେକ ଅନେକଙ୍କ ଭିତରେ ରହିଛି । ସେହିମାନେ ହିଁ ହେତୁବାଦୀ, ମାନବବାଦୀ ଓ ଧର୍ମନିରପେକ୍ଷବାଦୀ । କିନ୍ତୁ ସେମାନଙ୍କ ସ୍ୱର କ୍ଷୀଣ ଓ ସେମାନେ ସମାଜର ଗତିପଥକୁ ପ୍ରଭାବିତ କରିପାରୁ ନାହାନ୍ତି; ଏହା ହିଁ ବିଡ଼ମ୍ବନା ।

ଆମ ସଂସାରରେ ଯେତେ ଦୁଃଖ ଯନ୍ତ୍ରଣା ରହିଛି ସେସବୁ ଯେତେ ପ୍ରକୃତିଦତ୍ତ ନୁହେଁ ତା ଅପେକ୍ଷା ଅଧିକ ମାନବକୃତ । ବିଶେଷକରି ଧର୍ମ ନାମରେ ମଣିଷ ଉପରେ ମଣିଷର ଅତ୍ୟାଚାରର ପଟାନ୍ତର ନାହିଁ । ସଭ୍ୟତାର ଏତେ ବିକାଶ ପରେ ଈଶ୍ୱର ସେମାନଙ୍କ ସନ୍ତାନମାନଙ୍କର ଅମାନବିକ କାର୍ଯ୍ୟ ଯଦି ଦେଖୁଥିବେ ତେବେ ସେ ମଧ୍ୟ ନିରବରେ ଲୁହ ଗଡ଼ାଉଥିବେ । (ସମ୍ବାଦ - ୩.୯.୦୮)



# ମହାନୁଭବତାର ଅନୁଭବ

ଆମ ସଂସାରରେ ବହୁ ମଣିଷ ଅଛନ୍ତି ଯେଉଁମାନେ ଦରଦୀ ଓ ସମ୍ବେଦନଶୀଳ । ଧର୍ମ, ଜାତୀୟତାର ଊର୍ଦ୍ଧ୍ୱରେ ସେମାନେ ହିଁ ମାନବିକତାର ଜୟଗାନ କରନ୍ତି । ଏଠାରେ ଦୁଇଟି ଘଟଣା ଉଲ୍ଲେଖ କରୁଛି । ୧୯୭୧ ମସିହାରେ ଓଡ଼ିଶାରେ ଏକ ଭୟଙ୍କର ବାତ୍ୟା ହୋଇଥିଲା । ଅନେକ ଘର ଭାଙ୍ଗିଥିଲା, କେତେକ ସ୍ଥାନରେ ସମୁଦ୍ରର ଜୁଆରରେ କେତେ ଗାଁରେ ବିପର୍ଯ୍ୟୟର ତାଣ୍ଡବ ସୃଷ୍ଟି ହୋଇଥିଲା ଓ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବହୁ କ୍ଷୟକ୍ଷତି ଘଟିଥିଲା । ସେହି ସମୟର ଏକ ସମ୍ବାଦ ଏ ଲେଖକର ସ୍ମୃତି ଭିତରେ ଅମଳିନ ରହିଛି । ସମ୍ବାଦଟି ଅନୁଯାୟୀ ଜାପାନ ଦେଶର ଏକ ସହରର ଗୋଟିଏ ସ୍କୁଲରେ ପାଠପଢ଼ା ପୂର୍ବରୁ ପିଲାମାନେ ଦେଶ ବିଦେଶର ମୁଖ୍ୟ ଖବର ଶୁଣନ୍ତି ଓ ତାପରେ ନିଜ ନିଜର ଶ୍ରେଣୀ ଗୃହକୁ ଯା'ନ୍ତି । ସେଦିନ ପିଲାମାନେ ଜାଣିବାକୁ ପାଇଲେ ଯେ ଭାରତବର୍ଷର ଏକ ଅଞ୍ଚଳରେ ପ୍ରାକୃତିକ ବିପର୍ଯ୍ୟୟରେ ଶହ ଶହ ଗ୍ରାମ କ୍ଷତିଗ୍ରସ୍ତ ହୋଇଛି ଏବଂ ହଜାର ହଜାର ଲୋକ ଗୃହ ଶୂନ୍ୟ ହୋଇ ପଡ଼ିଛନ୍ତି । କିଶୋର ଛାତ୍ରଛାତ୍ରୀମାନେ ଏହି ଘଟଣାକୁ ଜାଣିବା ପରେ ଶ୍ରେଣୀ ଗୃହରେ ନିଜ ଭିତରେ ଆଲୋଚନା କରି ନିଷ୍ପତ୍ତି ନେଲେ ଯେ ସେମାନେ ଗୋଟିଏ ଦିନ ସ୍କୁଲର ବିରାମ (ରିସେସ୍) କାଳରେ ଖାଉଥିବା ଜଳଖିଆ ନ ଖାଇ ସେଇ ପଇସା ସଂଗ୍ରହ କରି ଭାରତର ବାତ୍ୟା ବିପନ୍ନଙ୍କ ପାଇଁ ପଠାଇବେ । ଗୋଟିଏ ଶ୍ରେଣୀର ଏହି ନିଷ୍ପତ୍ତିରେ ପ୍ରଭାବିତ ହୋଇ ଅନ୍ୟ ଶ୍ରେଣୀର ପିଲାମାନେ ମଧ୍ୟ ସେହି ନିଷ୍ପତ୍ତି କରି ସେମାନେ ଗୋଟିଏ ଦିନ ସ୍କୁଲର ବିରାମ କାଳରେ ଜଳଖିଆ ନ ଖାଇ ସେମାନଙ୍କର ଅର୍ଥ ସାହାଯ୍ୟ କରିଥିଲେ । ଓଡ଼ିଶା ବିଷୟରେ ସେହି ପିଲାମାନେ ହୁଏତ କିଛି ବି ଜାଣି ନଥିବେ । ଅନ୍ୟର ଦୁଃଖର ସମ୍ବାଦ ପାଇ ସେହି କୋମଳମତି ପିଲାମାନଙ୍କର ଅନ୍ତରରେ ଯେ ସମ୍ବେଦନଶୀଳ ଆବେଗ ସୃଷ୍ଟି ହୋଇଥିଲା, ତାହା ହିଁ ମାନବିକତା । ଭାରତବର୍ଷର ଜଣେ ବିଶିଷ୍ଟ ଗାନ୍ଧୀବାଦୀ ବୁଦ୍ଧିଜୀବୀଙ୍କଠାରୁ ଗୋଟିଏ ଘଟଣା ମୁଁ ଶୁଣିଥିଲି । ସେ ଆମେରିକାର ଏକ ସହରରେ ବୁଲୁଥିବା ସମୟରେ ହଠାତ୍ ତାଙ୍କର ଚପଲଟି ଛିଡ଼ିଗଲା । ସେ ଖୋଜିକରି ଜୋତା ମରାମତି କରୁଥିବା ଜଣେ ଲୋକଙ୍କ ପାଖରେ ପହଞ୍ଚିଲେ । ତାଙ୍କର ଚପଲଟି ମରାମତି କରି ଦେବା ପରେ ଭାରତୀୟ ଜଣକ ତାଙ୍କୁ କେତେ ପଇସା ଦେବେ ପଚାରିଲେ । ଆମେରିକୀୟ ଲୋକ ଜଣକ ଭାରତୀୟଙ୍କ ମୁହଁକୁ ବାରମ୍ବାର ଚାହିଁ

କିଛି ଟଙ୍କା ନ ଦେବାକୁ କହିଲେ । ଶ୍ରମର ମର୍ଯ୍ୟାଦା ଥିବା ଏକ ଦେଶରେ ସେ କାହିଁକି ତାଙ୍କ କାର୍ଯ୍ୟ ପାଇଁ ପାରିଶ୍ରମିକ ନେବେ ନାହିଁ ବୋଲି ଭାରତୀୟ ଜଣକ ତାଙ୍କୁ ପଚାରିଲେ । ଆମେରିକୀୟ ଭଦ୍ରଲୋକ ପଚାରିଲେ - ଆପଣ ଭାରତୀୟ ତ ! ଗାନ୍ଧୀବାଦୀ ଭାରତୀୟ ଜଣକ 'ହଁ' କହିବାରୁ ଆମେରିକୀୟ କହିଲେ 'ମୁଁ ଶୁଣିଛି ଭାରତ ଏକ ଗରିବ ଦେଶ, ସେ ଦେଶରେ ବହୁ ଦାରିଦ୍ର୍ୟ ରହିଛି । ଆପଣଙ୍କ ଦେଶକୁ ତ ମୁଁ କିଛି ସାହାଯ୍ୟ କରିପାରିବି ନାହିଁ । ତେବେ ମୋ ପାଖକୁ ଆସୁଥିବା କୌଣସି ଭାରତୀୟଙ୍କୁ ତ ମୁଁ ଯତ୍‌କିଞ୍ଚିତ୍ ସାହାଯ୍ୟ କରିପାରିବି । ଏଣୁ ମୋତେ କୌଣସି ପାରିଶ୍ରମିକ ନ ଦେଇ ଦୟାକରି ଆପଣ ଯା'ନ୍ତୁ । ଅନ୍ୟର ଅଭାବ ଓ ଦୁଃଖକୁ ଅନୁଭବ କରିବାର ଜୀବନଦୃଷ୍ଟି ବ୍ୟକ୍ତିକୁ ମହାନୁଭବ କରିଥାଏ । ମଣିଷଭାବେ ଅନ୍ୟ ମଣିଷ ପ୍ରତି ଏହି ସହାନୁଭୂତିର ହୃଦୟ ହେଉଛି ମାନବିକତା; ଯାହା ଜାତି, ଧର୍ମ, ଜାତୀୟତାର ସବୁ ପ୍ରାଚୀର ଭାଙ୍ଗିଥାଏ । ଆମ ସଂସାରରେ ଯେଉଁ ଦାର୍ଶନିକ, ବୈଜ୍ଞାନିକ, ହେତୁବାଦୀ ଓ ସାଧାରଣ ଲୋକମାନେ ଏହି ଜୀବନଦୃଷ୍ଟିର ପୃଷ୍ଠପୋଷକ, ସେମାନେ ଯେଉଁ ଦେଶ, ଭାଷା, ଧର୍ମର ହୁଅନ୍ତୁ ନା କାହିଁକି, ସେମାନେ ହିଁ ମାନବିକତାବାଦର ଯଥାର୍ଥ ପ୍ରତିନିଧି । ସବୁ ଦେଶରେ ଓ ସଭ୍ୟତାରେ ଏହି ଜୀବନଦୃଷ୍ଟି ରହିଛି ।

କେବଳ ଯେ ବୁଦ୍ଧିଦୀପ୍ତ ପ୍ରାଜ୍ଞ ବ୍ୟକ୍ତି ସକଳ ମାନବିକତାବାଦର ପ୍ରବକ୍ତା ତାହା ନୁହେଁ, ଏପରିକି ସମାଜର ଅନେକ ସାଧାରଣ ଓ ନିରକ୍ଷର ବ୍ୟକ୍ତି ମଧ୍ୟ ମହାନୁଭବତାର ଅଧିକାରୀ । ଏହାର କିଛି ଅନୁଭବ ଏ ଲେଖକର ଫୁଲବାଣୀରେ କେତେକ ଗ୍ରାମରେ ହୋଇଛି । ଚାକିରିକାଳ ଭିତରେ ଦୁଇଥର ଫୁଲବାଣୀରେ ଅଧ୍ୟାପକ ରହିବା ଭିତରେ କେତେକ ନିରକ୍ଷର ସାଧାରଣ ମଣିଷଙ୍କ ପାଖରେ ମୁଁ ଯେଉଁ ସରଳତା, ମାନବିକତା ଓ ମହାନୁଭବତା ଦେଖିଛି, ତାହା ଆଜି ସ୍ମୃତି ଭିତରକୁ ଆଣିଲେ ଅନ୍ତର ଦୁଃଖରେ ଭରିଯାଉଛି । ସେହି ଜିଲ୍ଲାର ନୈସର୍ଗିକ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଗାଁମାନଙ୍କର ଶାନ୍ତ ପରିବେଶରେ ମୁଁ ବିମୋହିତ ହେଉଥିଲି । ମଣିଷ ଏତେ ସରଳ ହୋଇପାରେ ଓ ଛନ୍ଦ, କପଟ ଓ ଲୋଭଠାରୁ ଦୂରରେ ରହି ପ୍ରକୃତି ସହ ମିଶି ଯାଇପାରେ ତାହା ସେତେବେଳେ ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । ଆଧୁନିକ ଜୀବନ ଶୈଳୀ, ପ୍ରତିଯୋଗିତା, ମାନସିକ ଉତ୍ତେଜନାଠାରୁ ଦୂରରେ ରହି ମଣିଷ ଯେ ସର୍ବନିମ୍ନ ଆବଶ୍ୟକତା ଭିତରେ ଏକ ଶାନ୍ତ ଓ ମଧୁର ଜୀବନ ବଞ୍ଚିପାରିବ, ତାହା ବି ବେଶ୍ ଆଶ୍ଚର୍ଯ୍ୟବୋଧ ହେଉଥିଲା । ଆଜି ଦୁଇ ତିନି ଦଶନ୍ଧି ପରେ ଯେତେବେଳେ ଫୁଲବାଣୀର ସାମ୍ପ୍ରଦାୟିକ ସଂଘର୍ଷ ଓ ବିଦ୍ୱେଷର ଲୋମହର୍ଷଣ ଘଟଣା ସବୁ ପଢୁଛି, ସେତେବେଳେ ମୁଁ ଯେଉଁ ଫୁଲବାଣୀର ଅନୁଭୂତିକୁ ଅଙ୍ଗେ ନିଭାଇଛି ଏହା ଯେ ସେହି ଫୁଲବାଣୀର ଘଟଣା, ଏହା ବିଶ୍ୱାସ କରିବା କଷ୍ଟକର ହେଉଛି ।

ଏହି ଅବକ୍ଷୟର ଯେତେ ଯାହା କାରଣ ଥାଉନା କାହିଁକି ଏକ ପ୍ରମୁଖ କାରଣ ହେଉଛି ସାମ୍ପ୍ରଦାୟିକ ମାନସିକତା । ସରଳ, ନିରୀହ ଓ ନିଷ୍କପଟ ଲୋକମାନଙ୍କ ଭିତରେ ଯେଉଁମାନେ ସାମ୍ପ୍ରଦାୟିକତାର ବିଷ ମଞ୍ଜି ବୁଣିଛନ୍ତି ସେମାନେ ଯେ ମାନବିକତାର ଶତ୍ରୁ, ଏହା ନିଃସନ୍ଦେହ ମନେହୁଏ । କନ୍ଧମାଳ ଜିଲ୍ଲାର ଦାରିଦ୍ର୍ୟ, ନିରକ୍ଷରତା, ଶିଶୁ ମୃତ୍ୟୁ ପରି ମାନବୀୟ ସମସ୍ୟାଠାରୁ ଲୋକମାନଙ୍କର ଦୃଷ୍ଟିକୁ ଦୂରେଇ ନେଇ ସେମାନଙ୍କ ଭିତରେ ରହିଥିବା ସୌହାର୍ଦ୍ଧ୍ୟ ଓ ସଂପ୍ରୀତିକୁ ଧର୍ମର ଅଫିମ ନଷ୍ଟ କରିଦେଉଛି । ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ଆଧୁନିକ ଜୀବନଶୈଳୀଠାରୁ ବହୁ ଦୂରରେ ଥିବା ଲୋକମାନଙ୍କର ବାସ୍ତବ ସମସ୍ୟା କ'ଣ ? କିଏ କେଉଁ ଭଗବାନଙ୍କୁ ପ୍ରାର୍ଥନା କଲା, କେଉଁ ପୂଜା ପାଠରେ ତାର ଭକ୍ତି ଅର୍ଘ୍ୟ ନିବେଦନ କଲା ଏହାକୁ ନେଇ ବିବାଦ ସୃଷ୍ଟି କରୁଥିବା ଓ ଈଶ୍ୱରଙ୍କୁ ଭାଗ ଭାଗ କରୁଥିବା ବ୍ୟକ୍ତିମାନେ ଯେ ଏକ ଅହେତୁକ ଓ ଅମାନବିକ ଆଦର୍ଶରେ ବିଶ୍ୱାସ କରନ୍ତି ଏହା କହିବା ଅସମୀଚୀନ ହେବ ନାହିଁ ।

ବିଡ଼ମ୍ବନାର ବିଷୟ ଶାନ୍ତିକାମୀ, ମାନବ ଦରଦୀ ଓ ସମ୍ବେଦନଶୀଳ ମଣିଷମାନଙ୍କର ସ୍ୱରକୁ ଯୁଗେ ଯୁଗେ ମତାନ୍ଧ ଲୋକମାନେ ସେମାନଙ୍କର ପୈଶାଚିକ ଶକ୍ତିରେ ଦବାଇ ଦେଇ ଆସିଛନ୍ତି । ସେହିମାନେ ଆପଣା ଆପଣାର ଈଶ୍ୱରମାନଙ୍କୁ ସୃଷ୍ଟି କରି ସାଧାରଣ ମଣିଷକୁ ଭାଗ ଭାଗ କରି ଦେଇଛନ୍ତି । ସଂକୀର୍ଣ୍ଣ ମଣିଷମାନେ ଧର୍ମର ମୁଖା ପିନ୍ଧି ସବୁ ଯୁଗରେ ସାମ୍ପ୍ରଦାୟିକତାର ବିଷ ମଞ୍ଜି ବୁଣିଛନ୍ତି । ସେହି ବିଷ ମଞ୍ଜିରୁ ଫଳିଛି ବର୍ବରତା, ଅମାନବିକତା ଓ ହିଂସ୍ରତା । ସେହି ବିଷ ବୃକ୍ଷର ପବନରୁ ଆସିଛି ହତ୍ୟା, ଆର୍ତ୍ତନାଦ, ଧର୍ଷଣ ଓ ଚିତ୍କାର । ଧର୍ମର ମୁଖା ପିନ୍ଧା ଲୋକମାନେ ଏଥିରେ ପାଆନ୍ତି ଆନନ୍ଦ ।

ସବୁ ସଭ୍ୟତାରେ ବିଚାରଶୀଳତାକୁ ଜୀବନର ଶ୍ରେୟ ଭାବେ ନେଉଥିବା ହେତୁବାଦୀମାନେ ଏକ ମାନବଦରଦୀ ଜୀବନ ଦର୍ଶନର ପ୍ରବକ୍ତା ହୋଇଛନ୍ତି । ସେମାନେ ମାନବିକତାର ସ୍ପର୍ଶରେ ଦୁନିଆକୁ ସୁନ୍ଦର କରି ଗଢ଼ିବାର ସ୍ୱପ୍ନ ଦେଖିଥାନ୍ତି । ସେହି ସ୍ୱପ୍ନ କେତେ କେତେ ପ୍ରତିକୂଳତାର ସମ୍ମୁଖୀନ ହୋଇ ମଧ୍ୟ ଅନ୍ଧକାର ଭିତରେ କ୍ଷୁଦ୍ର ପ୍ରଦୀପଟିଏ ହୋଇ ସର୍ବଦା ଜଳି ଆସିଛି । ସେହି ଦୀପକୁ ଜଳାଇ ଆସିଥିବା ମାନବଦରଦୀ ମଣିଷମାନେ କିନ୍ତୁ ନାନା ବର୍ବରତାର ଶିକାର ହୋଇଛନ୍ତି । ପ୍ରମିଥିଅସ୍ ଏହି ଚେତନାର ଏକ ପ୍ରତୀକ । ଗ୍ରୀକ୍ ପୌରାଣିକ କାହାଣୀ ଅନୁଯାୟୀ ସ୍ୱର୍ଗରୁ ଅଗ୍ନି ଚୋରି କରି ପୃଥିବୀକୁ ଆଣିଥିବା ଯୋଗୁ ତାକୁ ଅଲିମ୍ପସ୍ ପାହାଡ଼ ଉପରେ ଶିକୁଳିରେ ବାନ୍ଧି ଦିଆଯାଇଛି ଓ ତାର ଛାତିରେ ବସି ଦେବତାଙ୍କ ରାଜା 'ଜିୟସ୍'ଙ୍କ ଶାଗୁଣା ତାର କଳିଜାକୁ ଝୁଣି ଝୁଣି ଖାଉଛି । ସେ ଯାତନା ଯେମିତି ଚିରନ୍ତନ ହେବ ତାର ବ୍ୟବସ୍ଥା ବି କରାଯାଇଛି । ସେ ବ୍ୟବସ୍ଥାନୁସାରେ

ପ୍ରମିଥିଅସ୍‌ର କଲିଜା ଅସରନ୍ତି ଭାବେ ବଢୁଥିବା ଏବଂ ଶାଗୁଣା ଚିରନ୍ତନ ଭାବେ ତାହା ଖାଇ ଚାଲିଥିବ । ମାନବନ୍ଦରଦୀ ପ୍ରମିଥିଅସ୍ ଯନ୍ତ୍ରଣା ଜର୍ଜରିତ ହୋଇ ସଭ୍ୟତାର ପଥ ପ୍ରଦର୍ଶକ ହୋଇଛି ।

ଆମ ସଂସାରର ବିଡ଼ମ୍ବନା ଯେ ଏଠାରେ 'ଜିୟସ୍' ମାନେ ଅତ୍ୟନ୍ତ ପ୍ରଭାବ ବିସ୍ତାର କରି ରହିଛନ୍ତି । ସେହି ହିଂସ୍ର କଟ୍ଟରପନ୍ଥୀ ଧର୍ମାନ୍ଧମାନେ ବିବେକ ଓ ମାନବିକତାର ସ୍ୱରକୁ ଦବାଇ ଦେବାକୁ ପ୍ରୟାସ କରିଛନ୍ତି । କୌଣସି ମାନବିକ ଦୁଃଖ, ଦୁର୍ଦ୍ଦଶା ପ୍ରତି ସମ୍ବେଦନଶୂନ୍ୟ ହୋଇ ସେମାନେ ଅନ୍ୟର ଗୃହ ପୋଡ଼ନ୍ତି ଓ ଅନ୍ୟର ସଂସାରକୁ ଉଚ୍ଛନ୍ନ କରି ଦିଅନ୍ତି ।

ତଥାପି ମାନବିକତା ଓ ବିବେକର ସ୍ୱର କେବେ ମରିଯାଇ ନାହିଁ ବା ତାହାକୁ କେହି ମାରି ଦେଇ ପାରିବ ନାହିଁ । ଏହି ସ୍ୱରରୁ ଜନ୍ମ ନେଇଛି ଧର୍ମନିରପେକ୍ଷତା । ଧର୍ମ ନିରପେକ୍ଷତା ଏକ ଜୀବନଧାରା ଓ ଏକ ସହିଷ୍ଣୁତାର ସଂସ୍କୃତି । ଏହାର ପରାଭବ ମାନବିକତା, ବିଚାରଶୀଳତା ଓ ସମ୍ବେଦନଶୀଳତାର ପରାଜୟ । ଅନ୍ୟ ଭାବରେ କହିଲେ ସାମ୍ପ୍ରଦାୟିକତାର ବିଜୟ ମାନବିକତାର ପରାଜୟ ।

ଆମେରିକାରେ ଜୋତା ମରାମତି କରୁଥିବା ବା ଜାପାନର କିଶୋର ଛାତ୍ରଛାତ୍ରୀଙ୍କ ଦୃଷ୍ଟିରେ ବା ସଂସାରର ଅଗଣିତ ମଣିଷ ଭିତରେ ରହିଛି ମାନବିକତାର ଚେତନା ଓ ମହାନୁଭବତାର ଅନୁଭବ । ସେହିମାନଙ୍କ ଯୋଗୁଁ ଆମ ସଂସାର ସୁନ୍ଦର ହେବାରେ ଲାଗିଛି, କିନ୍ତୁ ଧର୍ମର ମୁଖା ପିନ୍ଧା ମଣିଷମାନଙ୍କ ପାଇଁ ନୁହେଁ । (ସମ୍ବାଦ - ୨୫.୦୯.୦୮)



# ଗଣତନ୍ତ୍ର - ଏକ ଜୀବନଶୈଳୀ

ଗଣତନ୍ତ୍ର କେବଳ ଏକ ରାଜନୈତିକ ବ୍ୟବସ୍ଥା ନୁହେଁ, ଏହା ମଧ୍ୟ ଏକ ଜୀବନଶୈଳୀ, ଏକ ମୂଲ୍ୟବୋଧ । ଏକ ରାଜନୈତିକ ଆଦର୍ଶ ଭାବେ ଏହା ଏକଛତ୍ରବାଦ, ରାଜତନ୍ତ୍ର, ସାମନ୍ତବାଦ ଓ ସ୍ୱେଚ୍ଛାଚାରୀ ବ୍ୟବସ୍ଥାର ପରିପନ୍ଥୀ । ଏହି ବ୍ୟବସ୍ଥାରେ ଜନଗଣଙ୍କର ସାର୍ବଭୌମତ୍ୱ, ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା, ମୁକ୍ତ ବିଚାରାଳୟ, ସ୍ୱାଧୀନ ଗଣମାଧ୍ୟମ, ରାଜନୈତିକ ଦଳ, ନିର୍ବାଚନ ଇତ୍ୟାଦି ସଂପୃକ୍ତ । ଗଣତାନ୍ତ୍ରିକ ଶାସନ ପଦ୍ଧତି ରାଷ୍ଟ୍ରଦ୍ୱାରା ଗୃହୀତ ଏକ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ପରିଚାଳିତ । ଏହି ବ୍ୟବସ୍ଥାରେ ସମାଲୋଚନା ଓ ଜନମତର ମଧ୍ୟ ପ୍ରାଧାନ୍ୟ ରହିଥାଏ । ଗଣତାନ୍ତ୍ରିକ ଶାସନ ପଦ୍ଧତି ସହ ଏହି ସବୁ ବ୍ୟବସ୍ଥା ସଂପୃକ୍ତ ହେଲେ ବି, ବାସ୍ତବରେ ହୁଏତ କିଛି ବ୍ୟତିକ୍ରମ ରହିପାରେ । ତେବେ ସୈଦ୍ଧାନ୍ତିକ ସ୍ତରରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ସହ ଏସବୁ ଆଦର୍ଶ ସଂଶ୍ଳିଷ୍ଟ । ଅବଶ୍ୟ ଏହି ସବୁ ଆଦର୍ଶ ନାନା ପରିବର୍ତ୍ତନ ଓ ସାମାଜିକ ବିବର୍ତ୍ତନ ଦେଇ ଗଣତାନ୍ତ୍ରିକ ବ୍ୟବସ୍ଥା ସହ ସଂପୃକ୍ତ ହେବା ଦେଖାଯାଏ । ଗଣତନ୍ତ୍ର ଏକ ଉନ୍ନତ ରାଜନୈତିକ ଆଦର୍ଶ ଭାବେ ନାନା ପ୍ରଚେଷ୍ଟା ଓ ଏପରିକି ବିପ୍ଲବ ମଧ୍ୟ ଦେଇ ବିକଶିତ ହେବା ଜଣାଯାଏ ।

ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସଫଳ ରୂପାୟନ ନାନା କାରଣ ଉପରେ ନିର୍ଭର କରିଥାଏ । ଗୋଟିଏ ରାଷ୍ଟ୍ରରେ ବିକଶିତ ଓ ପ୍ରତିଷ୍ଠିତ ହୋଇଥିବା ଅନ୍ୟାନ୍ୟ ଅନୁଷ୍ଠାନ ଉପରେ ଏହି ରାଜନୈତିକ ବ୍ୟବସ୍ଥାଟି ନିର୍ଭରଶୀଳ । ଅର୍ଥାତ୍ ଏହାର ସଫଳ ରୂପାୟନ ଏକ ଅନୁକୂଳ ପରିବେଶ ଆବଶ୍ୟକ କରେ । ବିଶେଷକରି ଏକ ନିରପେକ୍ଷ ବିଚାର ବ୍ୟବସ୍ଥା, ନିର୍ବାଚନ କରିବା ପାଇଁ ଏକ ମୁକ୍ତ ଓ ନ୍ୟାୟବାନ୍ ଅନୁଷ୍ଠାନ, ଏକ ପକ୍ଷପାତଶୂନ୍ୟ ଗଣମାଧ୍ୟମ ଇତ୍ୟାଦି ଦ୍ୱାରା ଗୋଟିଏ ରାଷ୍ଟ୍ରର ଗଣତାନ୍ତ୍ରିକ ବ୍ୟବସ୍ଥା ସୁଦୃଢ଼ ଭିତ୍ତି ପାଇଥାଏ । ଏସବୁର ଅଭାବରେ ଗଣତାନ୍ତ୍ରିକ ବ୍ୟବସ୍ଥା ଉନ୍ନତ ହୋଇପାରେ ନାହିଁ । ଗୋଟିଏ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାର ସଫଳ ରୂପାୟନ ଯେପରି ଅନୁକୂଳ ବ୍ୟବସ୍ଥା ଉପରେ ନିର୍ଭର କରିଥାଏ, ସେହିପରି କେତେକ କାରଣ ଏହାର ସଫଳତା କ୍ଷେତ୍ରରେ ପ୍ରତିବନ୍ଧକ ମଧ୍ୟ ହୋଇଥାଏ । ବିଶେଷ କରି ନିରକ୍ଷରତା, ଉତ୍କଟ ଦାରିଦ୍ର୍ୟ, ଭେଦଭାବ, ଉଚ୍ଚ-ନୀଚ ସାମାଜିକ ବ୍ୟବସ୍ଥା, ସାଂପ୍ରଦାୟିକ ମାନସିକତା, ପକ୍ଷପାତପୂର୍ଣ୍ଣ ଗଣମାଧ୍ୟମ, ଦୁର୍ନୀତିଗ୍ରସ୍ତ ପ୍ରଶାସନ, ଅସାଧୁ ଓ ନୀତିହୀନ ରାଜନୈତିକ ଦଳ ଇତ୍ୟାଦି ଦ୍ୱାରା ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତିକୂଳତାର ସମ୍ମୁଖୀନ ହୋଇଥାଏ ।

ଗଣତନ୍ତ୍ର କେବଳ ଏକ ରାଜନୈତିକ ବ୍ୟବସ୍ଥା ନୁହେଁ, ଏହା ଏକ ସଭ୍ୟ ଜୀବନଧାରା ଓ ଏକ ସାମାଜିକ ମୂଲ୍ୟବୋଧ । ବିଶେଷ କରି ଏକ ସୁସ୍ଥ ସାମାଜିକ ଜୀବନ ପାଇଁ ଗଣତାନ୍ତ୍ରିକ ଶୃଙ୍ଖଳା ଓ ଆଚରଣ ଅବଶ୍ୟମ୍ଭାବୀ ମନେହୁଏ । ଆମ ଚତୁଃପାର୍ଶ୍ୱରେ ରହିଥିବା ଏକ ବୃହତ୍ତର ନାଗରିକ ସମାଜର ବ୍ୟକ୍ତି ହେଉଛି ଏକ ଅଙ୍ଗ । ସୁତରାଂ ବ୍ୟକ୍ତି ଭିତରେ ଏକ ସୁସ୍ଥ ଦୃଷ୍ଟିଭଙ୍ଗୀ ଓ ଉତ୍ତର ଦାୟିତ୍ୱବୋଧ ସୃଷ୍ଟି ହେବା ଆବଶ୍ୟକ । ଯେଉଁ ସମାଜରେ ବ୍ୟକ୍ତିମାନଙ୍କର ସାମାଜିକ ଦାୟିତ୍ୱବୋଧ ଓ ନାଗରିକ ଶୃଙ୍ଖଳା ଉଚ୍ଚମାନର, ତାହା ଏକ ଉନ୍ନତ ସମାଜ । ଗଣତାନ୍ତ୍ରିକ ଜୀବନଶୈଳୀର ଏକ ପ୍ରଧାନ ବିଭାବ ହେଉଛି ନାଗରିକ ଶୃଙ୍ଖଳାବୋଧ । ଦେଶର ଆଇନ କାନୁନ ଓ ବିଶେଷ କରି ମାନବିକ ମୂଲ୍ୟବୋଧ ପ୍ରତି ସମ୍ମାନ ଭିତରେ ଏହି ନାଗରିକ ଶୃଙ୍ଖଳାର ପ୍ରତିଫଳନ ହୋଇଥାଏ । ସମାଜର ବିଭିନ୍ନ ସ୍ତରରେ ଏହି ଶୃଙ୍ଖଳାବୋଧ କେତେ ପ୍ରତିଫଳିତ, ତାରି ମାନଦଣ୍ଡରେ ଜନଗଣଙ୍କର ନାଗରିକ ସଚେତନତାର ମୂଲ୍ୟାୟନ କରାଯାଇପାରେ । ରାସ୍ତାରେ, ସରକାରୀ ଦପ୍ତରରେ, ଶିକ୍ଷାନୁଷ୍ଠାନରେ, ବିଭିନ୍ନ ଆନୁଷ୍ଠାନିକ ସ୍ତରରେ ଲୋକମାନଙ୍କର ଶୃଙ୍ଖଳାବୋଧରୁ ସାମାଜିକ ବିକାଶର ଚିତ୍ର ମିଳିଥାଏ । ଦେଶର ସଂପତ୍ତି ଓ ସରକାରୀ ଜିନିଷ ପ୍ରତି ଜନଗଣଙ୍କର ଦୃଷ୍ଟିଭଙ୍ଗୀ କି ପ୍ରକାରର, ସେଥିରୁ ସାମାଜିକ ସଚେତନତାର ସ୍ତର ଜଣା ପଡ଼ିଥାଏ । ସରକାରୀ ସଂପତ୍ତିକୁ ନଷ୍ଟ କରିବା, ସର୍ବସାଧାରଣ ସଂପତ୍ତି ବୋଲି ଭାବି ସେଥିପ୍ରତି କୌଣସି ଉତ୍ତରଦାୟିତ୍ୱବୋଧ ନ ରଖିବା, ଆଇନକୁ ହାତକୁ ନେବା, ଯେକୌଣସି ଘଟଣାକୁ ଆଳ କରି ସାଧାରଣ ଜୀବନ ପ୍ରବାହକୁ ବନ୍ଦ କରିଦେବା, ଜନଜୀବନକୁ ବିପର୍ଯ୍ୟସ୍ତ କରିବା ଇତ୍ୟାଦି ଯଦି ସାମାଜିକ ଜୀବନ ପ୍ରବାହର ସାଧାରଣ ଘଟଣା ହୁଏ, ତେବେ ତାହା ଏକ କ୍ଷୟଶୀଳ ବା କ୍ଷୟପ୍ରାପ୍ତ ଗଣତାନ୍ତ୍ରିକ ଜୀବନଧାରର ପରିଚୟ ଦେଇଥାଏ ।

ସେଇଭଳି ଜୀବନର ବିଭିନ୍ନ ସ୍ତରରେ ନ୍ୟାୟ ଓ ନୈତିକତାର ଯେଉଁଭଳି ପ୍ରତିଫଳନ ହୋଇଥାଏ, ସେଥିରୁ ଜନଗଣଙ୍କର ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି କେତେ ସମ୍ମାନ ରହିଛି, ତାର ଆକଳନ କରିହୁଏ । ବିଶେଷକରି ଯେଉଁଠି ନ୍ୟାୟ, ଆଇନ ଓ ନୈତିକତା ପ୍ରତି ସାମାଜିକ ସ୍ୱୀକୃତି ଅଧିକ, ସେଠି ଗଣତାନ୍ତ୍ରିକ ଜୀବନଧାରା ସକାଶେ ଭିତ୍ତିଭୂମି ପ୍ରସ୍ତୁତ ହୋଇ ରହିଛି ବୋଲି ଜଣାପଡ଼େ । ଜନମାନସରେ ନୀତି, ନୈତିକତା, ଆଇନ ପ୍ରତି ଦୃଷ୍ଟିଭଙ୍ଗୀର ମାନଦଣ୍ଡରେ ସମାଜରେ ଗଣତାନ୍ତ୍ରିକ ଜୀବନଶୈଳୀର ଅଭିବ୍ୟକ୍ତିକୁ ମୂଲ୍ୟାୟନ କରାଯାଇପାରେ ।

ସେଇଭଳି ସମତା ଭାବ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ମଧ୍ୟ ଗଣତାନ୍ତ୍ରିକ ଜୀବନଧାରା ପାଇଁ ଅପରିହାର୍ଯ୍ୟ । ଜଣେ ନାଗରିକ ଏକ ସୁସ୍ଥ ଓ ସମ୍ମାନଜନକ ଜୀବନ ବଞ୍ଚିବା ତା'ର ଏକ ଅଧିକାର । ସେ କୌଣସି ସ୍ତରରେ ଯଦି ଭେଦଭାବ ଓ ବୈଷମ୍ୟର ଶିକାର ହୁଏ ବା ତାର ସାମାଜିକ ପରିଚୟ ତାକୁ ସମାଜରେ ସମ୍ମାନଜନକ ସ୍ଥିତିଠାରୁ ଦୂରେଇ ନିଏ, ତେବେ ତାହା ଅଗଣତାନ୍ତ୍ରିକ ବୋଲି ବିଚାର କରାଯାଏ । ଗଣତନ୍ତ୍ରର ମୌଳିକ ଆଦର୍ଶ ହେଉଛି ସମତା ଓ ମାନବିକ ମର୍ଯ୍ୟାଦା । ଏହାର ଅର୍ଥ ନୁହେଁ ଯେ କୌଣସି ଏକ ଗଣତନ୍ତ୍ରରେ ପଦ ମର୍ଯ୍ୟାଦା ନିର୍ବିଶେଷରେ ସମସ୍ତେ ସମାନ ସୁବିଧା ସୁଯୋଗ ପାଇବେ । ଜଣେ ପ୍ରଧାନ ମନ୍ତ୍ରୀ ଯାହା ସୁବିଧା ପାଇବେ, ଜଣେ ସାଧାରଣ ବ୍ୟକ୍ତି ମଧ୍ୟ ତାହା ପାଇବ ବୋଲି ଆଶା କରିବା ବୃଥା । କିନ୍ତୁ ସାମାଜିକ ସ୍ତରରେ ବ୍ୟକ୍ତି ଭିତରେ ଜାତିଗତ, ଅର୍ଥଗତ, ସାମାଜିକ ତଥା ରାଜନୈତିକ କାରଣରୁ ବିଭେଦ ପ୍ରକାଶ ନ ପାଉ । ଏକ ସୁସ୍ଥ ଗଣତନ୍ତ୍ରରେ ସବୁଠାରୁ ତଳ ସ୍ତରର ଲୋକ ସବୁଠାରୁ ଉପର ସ୍ତରକୁ ଯିବା ସକାଶେ ସ୍ୱପ୍ନ ଦେଖିପାରେ । ସବା ତଳୁ ସବା ଉପରକୁ ଯାଇ ଦୃଷ୍ଟାନ୍ତ ସୃଷ୍ଟି କରିପାରେ । ପ୍ରତ୍ୟେକ ବ୍ୟକ୍ତି ସମ୍ମାନଜନକ ଜୀବନ ବଞ୍ଚିବା ହେଉଛି ଏକ ସୁସ୍ଥ ଗଣତନ୍ତ୍ରର ପ୍ରତିଶ୍ରୁତି ।

ଗଣତାନ୍ତ୍ରିକ ମୂଲ୍ୟବୋଧ କ୍ଷେତ୍ରରେ ବ୍ୟକ୍ତିର ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଏ । ପ୍ରତ୍ୟେକ ବ୍ୟକ୍ତି ସମ୍ମାନଜନକ ଭାବେ ବଞ୍ଚିବା, ନାଗରିକ ଅଧିକାର ପାଇବା ଓ ସୁରକ୍ଷା ଲାଭକରିବା ହେଉଛି ତାର ଗଣତାନ୍ତ୍ରିକ ଅଧିକାର । ସେହିପରି ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ସୁସ୍ଥ ଜୀବନ ଯାପନ ପାଇଁ ଉପଯୁକ୍ତ ପରିବେଶ ପାଇବା ମଧ୍ୟ ହେଉଛି ତାର ଅଧିକାର ପରିସରଭୁକ୍ତ । ବ୍ୟକ୍ତିକୁ ଏହି ଅଧିକାରରୁ ବଞ୍ଚିତ କରୁଥିବା ବ୍ୟବସ୍ଥା ଯେ ଅଗଣତାନ୍ତ୍ରିକ ତାହା କହିବା ବାହୁଲ୍ୟ ମାତ୍ର । ଭାଷା, ଜାତି, ଧର୍ମ ନିର୍ବିଶେଷରେ ଯେଉଁ ବ୍ୟବସ୍ଥା ଜନଗଣଙ୍କ ଭିତରେ ସମତା ଓ ମାନବିକ ମହତ୍ତ୍ୱକୁ ସ୍ୱୀକାର କରେ ତାହା ହିଁ ପ୍ରକୃତରେ ଗଣତାନ୍ତ୍ରିକ ।

ବସ୍ତୁତଃ ଗଣତନ୍ତ୍ର ଏକ ଜୀବନଧାରା ଓ ଏକ ମୂଲ୍ୟବୋଧ । ସାମାଜିକ ସମତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ଏହି ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ । ବୈଷମ୍ୟ ଓ ବିଭେଦ ଏହାର ପରିପନ୍ଥୀ । ଏହି ପରିପ୍ରେକ୍ଷୀରେ ଧର୍ମନିରପେକ୍ଷତା ଗଣତାନ୍ତ୍ରିକ ମୂଲ୍ୟବୋଧର ଏକ ଅବିଚ୍ଛିନ୍ନ ଅଙ୍ଗ ବୋଲି ମଧ୍ୟ କୁହାଯାଇପାରେ । ଧର୍ମ ବ୍ୟକ୍ତିର କେତେକ ବିଶ୍ୱାସ ମାତ୍ର, ଏହା ତାହାର ଏକ ପରିଚୟ ନୁହେଁ । ଜଣେ ମଣିଷ ତାର ଇଚ୍ଛା ବା ଅନିଚ୍ଛାର ନିର୍ବିଶେଷରେ ତାର ପିତାଙ୍କ ଧର୍ମକୁ ହିଁ ଧାରଣ କରେ । ଅବଶ୍ୟ କଦବା କେମିତି କେହି କେହି ଧର୍ମର ପରିବର୍ତ୍ତନ ମଧ୍ୟ କରିଥାନ୍ତି । କିନ୍ତୁ ଅସଲ କଥା ହେଲା, ଏକ ଆଦର୍ଶ ଗଣତନ୍ତ୍ରରେ ଜଣେ ବ୍ୟକ୍ତିର ଧର୍ମକୁ ନେଇ ତାର ଭାଗ୍ୟ ଓ ସ୍ଥିତି ନିର୍ଦ୍ଧାରଣ କରାଯାଏ ନାହିଁ

ବା ଏହି ସବୁକୁ ଆଧାର କରି ସାମାଜିକ ସ୍ତରରେ ବିଭେଦ ସୃଷ୍ଟି କରାଯାଏ ନାହିଁ। ଏଥିପାଇଁ ଧର୍ମନିରପେକ୍ଷତା ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଓ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ସେହିପରି ଅନ୍ୟର ମତକୁ ସମ୍ମାନ କରିବାର ଦୃଷ୍ଟିଭଙ୍ଗୀ ଓ ଭିନ୍ନ ବିଶ୍ୱାସ ପ୍ରତି ସହିଷ୍ଣୁତା ହେଉଛି ଏହି ଜୀବନଶୈଳୀର ଅନ୍ୟାନ୍ୟ ଦିଗ। ଅନ୍ୟ ଭାବରେ କହିଲେ ହିଂସା ଓ ଜାତିଗତ ବା ସାଂପ୍ରଦାୟିକ ବିଦ୍ୱେଷ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରତିକୂଳ ଅଟେ।

ଅନେକ ସମୟରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଓ ଗଣତାନ୍ତ୍ରିକ ଜୀବନଧାରା ଭିତରେ ପାର୍ଥକ୍ୟ ସ୍ପଷ୍ଟ ବାରିହୁଏ। ଅଧିକାଂଶ ରାଷ୍ଟ୍ରରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଥାଇ ବି ସମାଜର ସାଧାରଣ ଜୀବନ ପ୍ରବାହରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଆଶାନୁରୂପ ଅଭିବ୍ୟକ୍ତି ଦେଖାଯାଇ ନ ଥାଏ। ଅନେକ ସମୟରେ ଦେଖାଯାଏ ଯେ ସାମନ୍ତବାଦୀ ମାନସିକତା ତଥା ଜାତିଆଣ ଓ ସାଂପ୍ରଦାୟିକ ଭେଦଭାବ ଦ୍ୱାରା ଆକ୍ରାନ୍ତ ସମାଜରେ ମଧ୍ୟ ଏକ କାମଚଳା ଗଣତନ୍ତ୍ର କାମ କରୁଥାଏ। କିନ୍ତୁ ପ୍ରକୃତରେ ଏକ ସୁସ୍ଥ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସଫଳ ରୂପାୟନ ପାଇଁ ସାଧାରଣ ଜୀବନରେ ଏବଂ ଲୌକିକ ସ୍ତରରେ ଗଣତାନ୍ତ୍ରିକ ମୂଲ୍ୟବୋଧ ସମ୍ୱଳିତ ମାନସିକତା ଅପରିହାର୍ଯ୍ୟ। ଏହା ନ ହେଲେ ଗଣତନ୍ତ୍ର ଔପଚାରିକତାରେ ପରିଣତ ହୁଏ ସିନା, ଈପ୍ସିତ ଲକ୍ଷ୍ୟ ହାସଲ କରିପାରେ ନାହିଁ। (ସମ୍ବାଦ - ୩୧.୧୨.୦୮)



# ସର୍ବୋଦୟ ଦୃଷ୍ଟି

ସାମୂହିକ ଜୀବନ ପ୍ରବାହରେ ଏକ ଅନ୍ୟାୟ-ରହିତ, ସମତାପୂର୍ଣ୍ଣ ଓ ସୁଖମୟ ଜୀବନର ଅଭୀପ୍ସା ଭିତରୁ ସର୍ବୋଦୟ ସିଦ୍ଧାନ୍ତର ଉତ୍ପତ୍ତି । ସୁତରାଂ ସର୍ବୋଦୟ, 'ସର୍ବଜନ ହିତାୟ' ଭାବନା ଉପରେ ଆଧାରିତ ଏକ ସମାଜଦର୍ଶନ । ବିଭିନ୍ନ ଯୁଗରେ ଚିନ୍ତାଶୀଳ ବ୍ୟକ୍ତିମାନେ ଏକ ଆଦର୍ଶ ସମାଜ ପାଇଁ ଗଭୀର ଚିନ୍ତା ପ୍ରକଟ କରିଛନ୍ତି ଓ କେତେ କେତେ କ୍ରାନ୍ତିର ସୂତ୍ର ଦେଇଛନ୍ତି । ହେଲେ ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ସର୍ବୋଦୟ ସମାଜର ଲକ୍ଷ୍ୟ ସର୍ବଦା ଅପହଞ୍ଚ ହୋଇ ରହିଛି ।

ଏହା ସତ୍ୟ ଯେ ସବୁ ଯୁଗରେ ମଣିଷ ବିଭିନ୍ନ ଭୂଖଣ୍ଡରେ ନାନା ଆହ୍ୱାନର ସମ୍ମୁଖୀନ ହୋଇଛି । ଯେଉଁ ପ୍ରକୃତି ମଧ୍ୟରୁ ଜୀବନର ସକଳ ଆବଶ୍ୟକତା ପୂରଣ ହୋଇ ପାରୁଛି, ସେହି ପ୍ରକୃତି ପୁଣି କେତେ ବିପର୍ଯ୍ୟୟ, ମହାମାରୀ ଓ ଦୁରାରୋଗ୍ୟ ବ୍ୟାଧିଦ୍ୱାରା ମଣିଷ ପାଇଁ ଆହ୍ୱାନ ସୃଷ୍ଟି କରୁଛି । ସେହିପରି ନାନାଯୁଦ୍ଧ, ମନୁଷ୍ୟକୃତ ବିଭୀଷିକା, ଶୋଷଣ ଓ ଉତ୍ପୀଡ଼ନ ମଧ୍ୟ ଅନ୍ୟର ସଂସାରକୁ ଉଚ୍ଛନ୍ନ କରିଦେଇ ପାରୁଛି । ମଣିଷର ଅନ୍ତର୍ନିହିତ ସୃଜନଶୀଳତା ଭିତରୁ ଜ୍ଞାନ ବିଜ୍ଞାନର ବହୁ ବିକାଶ ହୋଇଛି, ସଭ୍ୟତାର ଚକ ଅନେକ ଆଗକୁ ଯାଇଛି, ଆଧୁନିକ ପ୍ରଯୁକ୍ତି ସମଗ୍ର ପୃଥିବୀକୁ ଏକ ବିଶ୍ୱ ଗ୍ରାମରେ ରୂପାନ୍ତରିତ କରିଛି, ତଥାପି ସର୍ବୋଦୟ ସମାଜର ସ୍ୱପ୍ନ ବିଡ଼ମ୍ବିତ ହୋଇ ରହିଛି । ଇତିହାସ ଏହାର ସାକ୍ଷୀ ହୋଇ ରହିଛି । ଯେଉଁ ଯୁଗରେ ସକ୍ରେଟିସ୍‌ଙ୍କ ପରି ମହାତ୍ମା ସାମାଜିକ ନ୍ୟାୟ ଆଧାରିତ ସମାଜର ପରିକଳ୍ପନା କରିଥିଲେ ବା ପ୍ଲାଟୋ ଏକ ଆଦର୍ଶ ଜନରାଜ୍ୟର ସୈଦ୍ଧାନ୍ତିକ ଭିତ୍ତି ଦେଇଥିଲେ ସେହି ଗ୍ରୀକ୍ ସଭ୍ୟତାରେ ଦାସତ୍ୱ ପ୍ରଥାକୁ ସ୍ୱୀକୃତି ଦିଆଯାଇଥିଲା । "ସର୍ବେ ଭବନ୍ତୁ ସୁଖୀନଃ..."ର କଳ୍ପନା ଯେଉଁ ଭାରତୀୟ ସମାଜରେ ଉଦ୍‌ଘୋଷିତ ହୋଇଥିଲା, ସେହିଠାରେ ବର୍ଗୀକୃତ ଜାତି ବ୍ୟବସ୍ଥା ଓ ଅସ୍ପୃଶ୍ୟତା ମଧ୍ୟ ରହି ଆସିବା ବିଡ଼ମ୍ବନା ନିଶ୍ଚୟ । ସେହିପରି କେତେକ ଭୂଖଣ୍ଡରେ ଧର୍ମମାନଙ୍କର ଉତ୍ପତ୍ତି ମଧ୍ୟଦେଇ ମହତ୍ତର ଜୀବନର ବାର୍ତ୍ତା ପ୍ରଚାରିତ ହୋଇଥିଲା । ତେବେ ମଧ୍ୟଯୁଗରେ ଧାର୍ମିକ ମାନସିକତାରୁ ରୂଢ଼ିବାଦ, ସାମନ୍ତବାଦ ଓ ନାନା ଅତ୍ୟାଚାରର ଯେଉଁ ଲୋମହର୍ଷଣ ଚିତ୍ର ମିଳିଥାଏ ତାହା ମଧ୍ୟ ବିଡ଼ମ୍ବନା । ପୁନଶ୍ଚ ୟୁରୋପୀୟ ନବଜାଗରଣ ଓ ନବସଂସ୍କାର ମଧ୍ୟ ଦେଇ ଯେଉଁ ବୈଜ୍ଞାନିକ ଆଲୋଡ଼ନ ଆସିଥିଲା ତାର ପରିଣାମ ସ୍ୱରୂପ ଗଣତନ୍ତ୍ର,

ମାନବିକ ଅଧିକାର, ଧର୍ମନିରପେକ୍ଷତା, ସାର୍ବଜନୀନ ଶିକ୍ଷା ଇତ୍ୟାଦି ପ୍ରଗତିଶୀଳ ଚିନ୍ତା ମଧ୍ୟଦେଇ ସଭ୍ୟତାର ଉତ୍ତରଣ ଘଟିଥିଲା । କିନ୍ତୁ ବିଡ଼ମ୍ବନାର ବିଷୟ ସେହି ସମୟରେ ସାମ୍ରାଜ୍ୟବାଦର ବିସ୍ତାର ସହ ଶିଳ୍ପ ଓ ସାମରିକ ଶକ୍ତିରେ ଅଗ୍ରସର ରାଷ୍ଟ୍ରମାନଙ୍କର ଅତ୍ୟାଚାର ଓ ଶୋଷଣ ଅନଗ୍ରସର ଓ କବଳିତ ଦେଶର ଜନଗଣଙ୍କୁ ସହ୍ୟ କରିବାକୁ ପଡ଼ିଥିଲା । ବସ୍ତୁତଃ ସଭ୍ୟତାର କ୍ରମୋନ୍ନତି, ଜ୍ଞାନର ବିକାଶ ଓ ସମାଜର ସାଂସ୍କୃତିକ ଉତ୍ତରଣ ସର୍ବୋଦୟ ସମାଜର ଭିତ୍ତିକୁ ସୁଦୃଢ଼ କରି ନାହିଁ । ସର୍ବୋଦୟ ସମାଜର କଳ୍ପନା କେବଳ ସମ୍ବେଦନଶୀଳ ଚିନ୍ତା ନାୟକଙ୍କର ସ୍ୱପ୍ନ ହୋଇ ରହିଛି ।

ବିଭିନ୍ନ ଯୁଗରେ ସୈଦ୍ଧାନ୍ତିକ ସ୍ତରରେ ସର୍ବୋଦୟର ଭାବନା ବିଭିନ୍ନ ପରିଭାଷା ମଧ୍ୟ ଦେଇ ବିଶ୍ୱ ମାନବିକତାକୁ ଋଦ୍ଧିମନ୍ତ କରିଥିଲେ ମଧ୍ୟ ଏହାର ଏକ ସାର୍ବଜନୀନ ମାନଦଣ୍ଡ ନିର୍ଣ୍ଣୟ କରିବା ସହଜସାଧ୍ୟ ମନେ ହୁଏ ନାହିଁ । ତେବେ ଏହାର କେତେକ ସାଧାରଣ ନିର୍ଯ୍ୟାସକୁ ବ୍ୟକ୍ତ କରିବା ଅସମ୍ଭବ ନୁହେଁ । ବ୍ୟକ୍ତି ସ୍ତରରେ ବା ସାମୂହିକ ସ୍ତରରେ ଏକ ଗୁଣାତ୍ମକ ଜୀବନର ବିକାଶ ସର୍ବୋଦୟର ସର୍ବନିମ୍ନ ଲକ୍ଷ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟକ୍ତିସ୍ତରରେ ପନ୍ଥାର ପବିତ୍ରତା ଉପରେ ଗଭୀର ଆସ୍ଥା, ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି, ସାମାଜିକ ନ୍ୟାୟ ପ୍ରତି ମାର୍ମିକ ଅନୁରାଗ ଓ ନାଗରିକ ଶୃଙ୍ଖଳା ପାଳନ କ୍ଷେତ୍ରରେ ଇଚ୍ଛାକୃତ ଆନ୍ତରିକତା ଏକ ଗୁଣାତ୍ମକ ଜୀବନର ଆଦର୍ଶ ହୋଇପାରେ । ସେହିପରି ରାଷ୍ଟ୍ରୀୟ ସ୍ତରରେ ଗଣତାନ୍ତ୍ରିକ ମୂଲ୍ୟବୋଧ, ଧର୍ମନିରପେକ୍ଷତା, ସାମାଜିକ ନ୍ୟାୟ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପରି ପ୍ରଗତିଶୀଳ ମୂଲ୍ୟବୋଧ ପ୍ରତି ଯେତେ ଅଧିକ ସ୍ୱୀକୃତି ଥାଏ, ତାହା ଗୁଣାତ୍ମକ ଜୀବନର ପରିଚୟ ଦିଏ । ଏସବୁ ମୂଲ୍ୟବୋଧ ପ୍ରତି ଅସ୍ୱୀକୃତି, ସାମାଜିକ କ୍ଷୟଶୀଳତାର ଚିତ୍ର ବହନ କରେ ।

ଏତଦ୍‌ବ୍ୟତୀତ ସର୍ବୋଦୟ ଭାବନା ମୁଖ୍ୟତଃ ଏକ ମାନବବାଦୀ ଜୀବନ ଦର୍ଶନକୁ ଗ୍ରହଣ କରିଥାଏ । ଜାତି, ଧର୍ମ, ଭାଷା ବା ଜାତୀୟତା ଆଧାରରେ ଏହା ମଣିଷ ମଣିଷ ଭିତରେ ପାର୍ଥକ୍ୟ କରେ ନାହିଁ । ବରଂ ସମସ୍ତ ବିଭେଦତା ଓ ଅସହିଷ୍ଣୁତାର ଊର୍ଦ୍ଧ୍ୱରେ ମଣିଷ ସମାଜ ଏକ ଓ ଅଭିନ୍ନ ବୋଲି ଏହା ଗ୍ରହଣ କରେ । ପରିଣାମ ସ୍ୱରୂପ ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ସମତା ଭାବ ସର୍ବୋଦୟର ଅନ୍ତଃସ୍ୱର ଅଟେ । ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶକୁ ଏହା ଗୁରୁତ୍ୱ ଦିଏ ଓ କୌଣସି ବ୍ୟକ୍ତି ବା ତାର ମର୍ଯ୍ୟାଦାକୁ ନ୍ୟୂନ କରେ ନାହିଁ ।

ଭାରତୀୟ ସମାଜ ପୃଷ୍ଠଭୂମିରେ ମହାତ୍ମା ଗାନ୍ଧୀ ବୈଚାରିକ ସ୍ତରରେ ଏକ ସର୍ବୋଦୟ ସମାଜର ଚିତ୍ର ଆଙ୍କିଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦରୁ ଭାରତକୁ ମୁକ୍ତ

କରିବା ସହ ତାଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ମାଧ୍ୟମରେ ଏକ ନୂତନ ସମାଜର ସ୍ୱପ୍ନ ଦେଖୁଥିଲେ । ଭାରତୀୟ ଗ୍ରାମୀଣ ଜୀବନଧାରାରେ ସେ ଏହାକୁ 'ଗ୍ରାମ ସ୍ୱରାଜ' ବୋଲି କହୁଥିଲେ । ତାଙ୍କର 'ଗ୍ରାମ ସ୍ୱରାଜ' ହେଉଛି ଏକ ଶ୍ରେଣୀହୀନ, ଶୋଷଣହୀନ, ସ୍ୱାବଲମ୍ବୀ ଅହିଂସ ସମାଜ । ତାହାର ବିସ୍ତୃତ ରୂପରେଖ ଭିତରେ ସେ କୁଟୀର ଶିଳ୍ପ, ମୌଳିକ ଶିକ୍ଷା ଓ ନୈଶ୍ୟ ବା ଟ୍ରଷ୍ଟିସିପ୍ ଭାବନାକୁ ପ୍ରାଧାନ୍ୟ ଦେଇଥିଲେ । ସମତା, ଅହିଂସା ଓ ମାନବିକ ମର୍ଯ୍ୟାଦାକୁ ସେ ସାମାଜିକ ଶ୍ରେୟ ଭାବେ ଗ୍ରହଣ କରିଥିଲେ । ଏହି ଲକ୍ଷ୍ୟ ହାସଲ ପାଇଁ ସମ୍ଭାବ୍ୟ ବିରୋଧ ବା ଦ୍ୱନ୍ଦ୍ୱର ସମାଧାନ ପାଇଁ ସତ୍ୟାଗ୍ରହକୁ ଏକ ବଳିଷ୍ଠ ଆୟୁଧ ଭାବେ ନେଇଥିଲେ । ଗାନ୍ଧୀଙ୍କ ପରେ ସର୍ବୋଦୟ ସମାଜର ଭାବନାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଅନ୍ୟଜଣେ ସନ୍ଥ ବିପ୍ଳବୀ, ବିନୋବା, ଜାତୀୟ ଦୃଶ୍ୟପଟରେ ଆଲୋଡ଼ନ ଆଣିଥିଲେ । ଭାରତବର୍ଷ ପରି ଏକ ଗ୍ରାମବହୁଳ ଓ କୃଷିପ୍ରଧାନ ରାଷ୍ଟ୍ରର ଅର୍ଥନୀତି ମୁଖ୍ୟତଃ କୃଷି ଉପରେ ନିର୍ଭର କରୁଥିବାରୁ ଜମି ସବୁର ସୁଷମ ବଣ୍ଟନ ପାଇଁ ଭୂଦାନ ମାଧ୍ୟମରେ ସେ ଏକ କ୍ରାନ୍ତି ଆଣିବାକୁ ସ୍ୱପ୍ନ ଦେଖୁଥିଲେ । ସେ ତାତ୍ତ୍ୱିକ ଶୈଳୀରେ ସର୍ବୋଦୟକୁ ସାମ୍ୟ ଯୋଗ, ଭୂଦାନକୁ ସାଧନଶୁଦ୍ଧି ଯଜ୍ଞ, ସମତାଭିତ୍ତିକ ସମାଜର ରୂପାୟନକୁ ବ୍ରହ୍ମଜିଜ୍ଞାସା ବୋଲି ଅଭିହିତ କରି ଅପରିଗ୍ରହକୁ ଏକ ଶ୍ରେଷ୍ଠ ମୂଲ୍ୟବୋଧ ଭାବେ ଜନମାନସରେ ପ୍ରସାର କରିବାକୁ ପ୍ରୟାସ କରିଥିଲେ । ଭାରତୀୟ ସମାଜର ବାସ୍ତବ ସମସ୍ୟାର ମୁକାବିଲା କ୍ଷେତ୍ରରେ ଗାନ୍ଧୀ ଓ ବିନୋବା ଥିଲେ କ୍ରାନ୍ତିକାରୀ ଜନନେତା । ଅବଶ୍ୟ ଗାନ୍ଧୀଙ୍କର କାର୍ଯ୍ୟସୂଚୀ ଭିତରେ ରାଜନୈତିକ ଲକ୍ଷ୍ୟ ଓ ବିନୋବାଙ୍କ କାର୍ଯ୍ୟକ୍ରମ ଭିତରେ ଆର୍ଥନୀତିକ ପୁନର୍ଗଠନ ଅଧିକ ପ୍ରାଧାନ୍ୟ ଲାଭ କରିଥିଲା ।

ସମାଜରେ କୌଣସି ବୈପ୍ଳବିକ ପରିବର୍ତ୍ତନ ପୃଷ୍ଠଭୂମିରେ ଏକ ସାଂସ୍କୃତିକ ଜାଗରଣ ଅବଶ୍ୟମ୍ଭାବୀ ମନେ ହୁଏ । ବିଶେଷକରି ଏକ ସାମନ୍ତବାଦୀ ଓ ଜାତିବାଦୀ ସାମାଜିକ ବ୍ୟବସ୍ଥା ଏକ ସମତାଭିତ୍ତିକ ଜୀବନଧାରାକୁ ସହଜରେ ଗ୍ରହଣ କରିପାରେ ନାହିଁ । ଯୁଗ ଯୁଗ ଧରି ସାମନ୍ତବାଦୀ ମାନସିକତାରେ ଆକ୍ରାନ୍ତ ହୋଇ ରହିଥିବା ଓ ତାହାକୁ ସଂସ୍କୃତି ବୋଲି ଧରିନେଇଥିବା ଏକ ଜନଗୋଷ୍ଠୀର ବିଚାର ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବା ଏତେ ସହଜସାଧ୍ୟ ହୁଏନାହିଁ । ଜ୍ୟୋତିରାଓ ଫୁଲେଙ୍କଠାରୁ ଆରମ୍ଭ କରି ଆମ୍ବେଦକରଙ୍କ ପର୍ଯ୍ୟନ୍ତ ବହୁ ସଂସ୍କାରକ ସାମାଜିକ କ୍ରାନ୍ତି ପାଇଁ ଅନେକ ଆଲୋଡ଼ନ ସୃଷ୍ଟି କରିଛନ୍ତି । ମାନବିକ ମର୍ଯ୍ୟାଦା, କର୍ମସଂସ୍କୃତି, ନାଗରିକ ଶୃଙ୍ଖଳା ଓ ସମତା ଭଳି ଉଚ୍ଚତର ମୂଲ୍ୟବୋଧକୁ ସମାଜରେ ପ୍ରସାର କରିବାକୁ ସେମାନେ ନାନା ପନ୍ଥାର ଆଶ୍ରୟ ନେଇଛନ୍ତି । ନ୍ୟାୟାଧାରିତ ଓ ସମତାଭିତ୍ତିକ ଗଣତାନ୍ତ୍ରିକ ସମାଜ ପାଇଁ ସଚେତନତା ସୃଷ୍ଟି

କରିବାରେ ସେମାନଙ୍କର ଅବଦାନ ସର୍ବୋଦୟ ବିଚାର କ୍ଷେତ୍ରରେ ମଧ୍ୟ କ୍ରାନ୍ତିକାରୀ ମନେହୁଏ । ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣି ଜୀବନର ଗୁଣାତ୍ମକ ଉତ୍କର୍ଷ ସାଧନ ପାଇଁ ସେମାନଙ୍କର ଦିଗ୍‌ଦର୍ଶନ ସର୍ବୋଦୟର ଦିଗନ୍ତକୁ ଯେ ପ୍ରସାର କରିଛି ଏହା ନିଃସନ୍ଦେହ ।

ସାମ୍ପ୍ରତିକ ସ୍ଥିତିରେ ସର୍ବୋଦୟ ମୂଲ୍ୟବୋଧ ନୂତନ ଆହ୍ୱାନର ସମ୍ମୁଖୀନ ହେବା ଏକ ବିଡ଼ମ୍ବନା । ସମ୍ପ୍ରତି ଜ୍ଞାନ ଓ ପ୍ରଯୁକ୍ତିର ଦିଗନ୍ତ ବିସ୍ତାରିତ ହେବାରେ ଲାଗିଛି, ହେଲେ ଏହା ନୂତନ ସାମ୍ରାଜ୍ୟବାଦ ସୃଷ୍ଟି କରୁନାହିଁ ତ ? ଆଧୁନିକ ସମୃଦ୍ଧି ସମାଜରେ ବୈଷମ୍ୟକୁ ଦୂର କରୁଛି ନା ଦୃଢ଼ କରୁଛି ? ଉଦାରୀକରଣ ଓ ଜଗତୀକରଣ ଯେଉଁ ଉପଭୋକ୍ତାବାଦୀ ଜୀବନଧାରାର ପ୍ରସାର କରୁଛି ତାର ପରିଣତି ସମାଜକୁ ସାଂସ୍କୃତିକ ଉନ୍ମେଷ ନା ଅବନତି ଆଡ଼କୁ ନେଉଛି ? ଧର୍ମ, ସାଂସ୍କୃତିକ ରାଷ୍ଟ୍ରବାଦର ପ୍ରଚାର ସମାଜରେ ମାନବିକ ସଂପ୍ରୀତି ନା ବିଦ୍ୱେଷର ବୀଜ ବପନ କରୁଛି ? ବିକାଶ ନାମରେ ସୀମିତ ପ୍ରାକୃତିକ ସଂସାଧନ ଗୁଡ଼ିକର ବିଲୟ ପରିବେଶ ଓ ଭବିଷ୍ୟତ ନେଇ କି ପ୍ରକାର ଚିତ୍ର ଦେଉଛି ? ଏହିପରି ବହୁ ସ୍ପର୍ଶକାତର ପ୍ରଶ୍ନ ଉପରେ ବୌଦ୍ଧିକ ସ୍ୱଚ୍ଛତାର ଆବଶ୍ୟକତା ରହିଛି ।

ସେହିପରି ସାମ୍ପ୍ରତିକ ସମାଜରେ ସନ୍ତ୍ରାସବାଦ ଓ ସାଂପ୍ରଦାୟିକତାବାଦ ଯେଉଁ ପରି ଉଗ୍ର ରୂପ ଧାରଣ କରି ସକଳ ମାନବିକ ସଂପ୍ରୀତି ଓ ମୂଲ୍ୟବୋଧକୁ ଆହ୍ୱାନ ଦେଉଛି, ତାହା ମଧ୍ୟ ସର୍ବୋଦୟ ବିଚାରର ସମ୍ପୂର୍ଣ୍ଣ ପରିପନ୍ଥୀ ଅଟେ । କୌଣସି ବିଦ୍ୱେଷ ଓ ହିଂସାର ବାତାବରଣ ଯେ ସଭ୍ୟ ଜୀବନଧାରାର ପ୍ରତିକୂଳ ଏହା ମଣିଷର ଅନୁଭୂତିରୁ ସ୍ପଷ୍ଟ । ଏସବୁକୁ ଦୂର କରି ଏକ ସୁସ୍ଥ, ମାନବିକ ଓ ସୁଖମୟ ସାମାଜିକ ଜୀବନର ବିକାଶ ସର୍ବୋଦୟର ଆବେଦନ ହୋଇ ରହିଛି ।

ଏହା ସତ୍ୟ ଯେ ସମାଜ ବା ରାଷ୍ଟ୍ର ଆଦର୍ଶଗତ ପରିପୂର୍ଣ୍ଣତା ଲାଭ କରି ପାରିବ ନାହିଁ । ପ୍ରତି ଯୁଗରେ ନୂଆ ସମସ୍ୟା ଓ ଆହ୍ୱାନ ଆସିବ । ତେବେ ଯେ କୌଣସି ସମୃଦ୍ଧିର ରୂପରେଖ ଓ ରାଜନୈତିକ ସିଦ୍ଧାନ୍ତ ପ୍ରବର୍ତ୍ତନ କଲାବେଳେ ସର୍ବୋଦୟର ସର୍ବମାନ୍ୟ ଆଦର୍ଶକୁ ଏଡ଼ାଇ ଯିବା ଶୁଭଙ୍କର ନୁହେଁ । ଏକ ଶୋଷଣହୀନ, ନ୍ୟାୟାଧାରିତ ଓ ସମତାଭିତ୍ତିକ ଅହିଂସ ସମାଜ ଯେ କୌଣସି ଜନମଙ୍ଗଳକାରୀ ରାଷ୍ଟ୍ରର ଆଭିମୁଖ୍ୟ ହେବା ଆବଶ୍ୟକ । ଏସବୁ ହୁଏତ କାଳ୍ପନିକ ବା 'ୟୁଟୋପିଆ' ମନେ ହୋଇପାରେ । ତେବେ ସର୍ବୋଦୟ ଆଦର୍ଶର ଦିଗନ୍ତକୁ ସ୍ପର୍ଶ କରିବାର ପ୍ରୟାସ ସମାଜର ନୈତିକ ଓ ସାଂସ୍କୃତିକ ଉତ୍ତରଣ ଘଟାଇବ । କାରଣ ସର୍ବୋଦୟର ଆବେଦନଗୁଡ଼ିକ ସଭ୍ୟ ଓ ସଂସ୍କୃତିସମ୍ପନ୍ନ ଜୀବନଧାରାର ଯେ ଅବିଚ୍ଛେଦ୍ୟ ଅଙ୍ଗ ଏହା ଅନସ୍ୱୀକାର୍ଯ୍ୟ ।

ଭାରତୀୟ ସମାଜ ଓ ଏପରିକି ବିଶ୍ୱ ସ୍ତରରେ ଗାନ୍ଧୀ ଏବେ ବି ସର୍ବୋଦୟ ବିଚାରର ମହାନ୍ ପୃଷ୍ଠପୋଷକ ଭାବେ ଆଦର୍ଶ ହୋଇ ରହିଛନ୍ତି । ସମାଜରେ ଯେତେ ଦିନ ପର୍ଯ୍ୟନ୍ତ ହିଂସା, ଅନ୍ୟାୟ ଓ ବୈଷମ୍ୟ ରହିଥିବ ଗାନ୍ଧୀ ଆମ ପାଇଁ ପ୍ରାସଙ୍ଗିକ ଓ ଆଦର୍ଶ ହୋଇ ରହିବେ । ପୁନଶ୍ଚ ସମାଜର ସବୁଠାରୁ ନିମ୍ନ ସ୍ତରରେ ରହିଥିବା ବ୍ୟକ୍ତିର ସମୁଚିତ ବିକାଶ ଓ ସମ୍ମାନକୁ ମଧ୍ୟ ସେ ଗୁରୁତ୍ୱ ଦେଇ ଆସିଥିଲେ । ଅନ୍ତ୍ୟୋଦୟରୁ ସର୍ବୋଦୟ ଭାବନାର ଅଭ୍ୟୁଦୟ ଭିତରେ ସମାଜର ସବୁ ମଣିଷଙ୍କର ସମୁଚିତ ବିକାଶ ଓ ସମ୍ମାନଜନକ ଜୀବନ ଧାରଣ ହିଁ ଥିଲା ଗାନ୍ଧୀ ବିଚାରର ମୂଳ ଭିତ୍ତି ଓ ତାହା ହିଁ ସର୍ବୋଦୟର ମୂଳମନ୍ତ୍ର । (ସମ୍ବାଦ - ୮.୪.୦୯)



# ଏକ ସୁନ୍ଦର ପୃଥିବୀର ସ୍ୱପ୍ନ ଭିତରେ

ଶୋଷଣ ଓ ଦାରିଦ୍ର୍ୟ ମୁକ୍ତ ବିଶ୍ୱ କ'ଣ ସମ୍ଭବ ? ଏକ ଭେଦଭାବ ବିହୀନ ଓ ଅନ୍ୟାୟ ରହିତ ସାମାଜିକ ସମ୍ବନ୍ଧ କେବେ ପୃଥିବୀରେ ସମ୍ଭବପର ହେବ ? ମଣିଷ ମଣିଷ ଭିତରେ ଏତେ ବିଭେଦ ଓ ଅନ୍ୟାୟ କାହିଁକି ରହିଛି ? ଏହି ପ୍ରଶ୍ନଗୁଡ଼ିକ ବହୁ ଅତୀତରୁ ଅଦ୍ୟାବଧି ପୃଥିବୀର ବହୁ ଦାର୍ଶନିକ ଓ ବୁଦ୍ଧିଜୀବୀମାନଙ୍କୁ ଆଲୋଡ଼ିତ କରିଆସିଛି । ସେମାନେ ନିଜର ସମସାମୟିକ ସମାଜ ଓ ବିଶ୍ୱ ଦୃଶ୍ୟପଟରେ ଏହି ପ୍ରଶ୍ନଗୁଡ଼ିକର ଆଲୋଚନା କରି କେତେ କେତେ ମାର୍ଗ ଦେଖାଇଛନ୍ତି । ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଓ ସଭ୍ୟତାର ଏତେ ବିକାଶ ପରେ ମଧ୍ୟ ଏହି ସମସ୍ୟା ଦୁନିଆରେ ରହିଛି, ସୁତରାଂ ଏହି ପ୍ରଶ୍ନ ଏବେ ବି ଅନେକଙ୍କୁ ବିଚଳିତ କରୁଛି । ସେମାନେ ନିଜ ଚତୁଃପାର୍ଶ୍ୱରେ ଯେଉଁ ଅନ୍ୟାୟ, ଶୋଷଣ, ଅମାନବିକତା ଓ ହିଂସାର ପରିବେଶ ଦେଖୁଛନ୍ତି, ସେହି ପରିପ୍ରେକ୍ଷୀରେ ଏସବୁର କାରଣ ଓ ନିରାକରଣ ନେଇ ଗମ୍ଭୀର ଚିନ୍ତା ପ୍ରକଟ କରୁଛନ୍ତି । ଏକଦା ପ୍ରକୃତି ଓ ପରିବେଶ ନେଇ ମଣିଷର ଜ୍ଞାନ ଅତି ସୀମିତ ଥିଲା, ଫଳରେ ବାତ୍ୟା, ବନ୍ୟା, ଭୂକମ୍ପ, ମହାମାରୀ ପରି ପ୍ରାକୃତିକ ବିପର୍ଯ୍ୟୟରେ ମଣିଷ ଅସହାୟ ହୋଇ ପଡୁଥିଲା । ଏହା ସହିତ ଯୁଦ୍ଧ, ବାହ୍ୟ ଆକ୍ରମଣ ଜନଜୀବନକୁ ଭୟଭୀତ କରି ରଖିଥିଲା । ସେହି ପ୍ରତିକୂଳ ପରିବେଶରୁ ଉଦ୍ଧାର ପାଇଁ କଳ୍ପିତ ଅଲୌକିକ ଶକ୍ତିକୁ ମଣିଷ ପ୍ରାର୍ଥନା କରୁଥିଲା । ତେବେ ଏବେ ସଭ୍ୟତାର ଅଗ୍ରଗତି ସହ ଜ୍ଞାନ, ବିଜ୍ଞାନର ବହୁ ବିକାଶ ହେଲାଣି । ପ୍ରକୃତି ଓ ପରିବେଶ ଉପରେ ମଣିଷର ନିୟନ୍ତ୍ରଣ ଅନେକ ବଢ଼ିଗଲାଣି ଓ ନାନା ଦୁରାରୋଗ୍ୟ ରୋଗର ଚିକିତ୍ସା ସେ ଜାଣି ସାରିଲାଣି । ତେବେ ପ୍ରକୃତି ମଣିଷ ପାଇଁ ଯେତିକି ସଙ୍କଟ ସୃଷ୍ଟି କରୁନାହିଁ ତା ଅପେକ୍ଷା ସାମାଜିକ ଓ ଆର୍ଥିକ ବ୍ୟବସ୍ଥା, ରାଜନୈତିକ ବିଚାର, ସାଂସ୍କୃତିକ ବିଚାରବୋଧ ମଣିଷ ମଣିଷ ଭିତରେ ଅଧିକ ବିଭେଦ ସୃଷ୍ଟି କରି ଚାଲିଛି । ପରିଣାମ ସ୍ୱରୂପ ଧର୍ମ, ଜାତୀୟତା, ଆର୍ଥିକ ବ୍ୟବଧାନ, ରାଜନୈତିକ ଆଦର୍ଶକୁ ନେଇ ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି ହୋଇ ଚାଲିଛି । ଫଳତଃ ବିଦ୍ୱେଷ, ହିଂସା, ସନ୍ତ୍ରାସବାଦ, ଶୋଷଣ ଓ ଅନ୍ୟାୟ ଜନିତ ମଣିଷକୃତ ବିଭୀଷିକାରୁ ହିଁ ସଂସାରରେ ଦୁଃଖ ଓ ଯନ୍ତ୍ରଣାର ପରିବେଶ ରହିଛି । ଏହି ସବୁ ସଂକୀର୍ଣ୍ଣତାରୁ ମଣିଷ ଉର୍ଦ୍ଧ୍ୱକୁ ଯାଇପାରୁ ନାହିଁ । ଏହି ପୃଷ୍ଠଭୂମିରେ ଦୁଇଜଣ ବିଶିଷ୍ଟ ଲେଖକଙ୍କର

ଦୁଇଟି ବହିରେ ଏକ ସୁନ୍ଦର ପୃଥିବୀର ରୂପାୟନ କ୍ଷେତ୍ରରେ ଯେଉଁ ସ୍ୱପ୍ନ ଓ ପ୍ରତିବନ୍ଧକ ରହିଛି ତାହାର ସଂକ୍ଷିପ୍ତ ସୂଚନା ମାତ୍ର ଦେଉଛି ।

ଆମେରିକାର ଜଣେ ବିଶିଷ୍ଟ ଦର୍ଶନ ଅଧ୍ୟାପକ ବାରୋସ୍ ଡନହାମ୍ 'କଳ୍ପିତ କାହାଣୀ ବିରୋଧରେ ମଣିଷ' (Man Against Myth ଭାରତରେ ଏନ୍‌ବିଟି ଦ୍ୱାରା ପ୍ରକାଶିତ) ନାମରେ ଏକ ପୁସ୍ତକ ଲେଖିଛନ୍ତି । ସମାଜରେ ରହିଥିବା କେତେକ ଆଧାରହୀନ ବିଶ୍ୱାସ ବା ମିଥ୍ କିପରି ନାନା ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଛି ତାହାର ସେ ସମାଜଶାସ୍ତ୍ରିକ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । କେତେକ ନୃବଂଶୀୟ ଜାତି ବା ରେସ୍ ଅନ୍ୟ ଜାତିଠାରୁ ଉନ୍ନତ ଏହି ମିଥ୍‌କୁ ନେଇ ଆମ ସଂସାରରେ ଯେଉଁ ବିଦ୍ୱେଷ ରହିଛି ତାହାର ପଟାନ୍ତର ନାହିଁ । ଆମେରିକୀୟ ସମାଜରେ ଏକଦା ଦାସତ୍ୱ ପ୍ରଥା ଓ ନିଗ୍ରୋମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ତାହାର ବଳିଷ୍ଠ ଉଦାହରଣ । ଜାତି ଜାତି ଭିତରେ ବିଭେଦ ଓ ବିଦ୍ୱେଷ ଏବେ ବି ଅନେକ ସମାଜରେ ରହିଛି ଯାହାକୁ ଆଧାର କରି ନାନା ଶୋଷଣ ଓ ଅନ୍ୟାୟ ଚାଲୁ ରହିଛି । ଭାରତୀୟ ସମାଜରେ ଥିବା ଜାତିଆଣ ମାନସିକତା, ଉଚ୍ଚ-ନୀଚ ଭେଦଭାବ ମଧ୍ୟ ଏହି ବିଚାରର ଅଙ୍ଗବିଶେଷ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଏହି ଜାତିଗତ ଭିନ୍ନତା ଏବେ ବି ନାନା ଦୁଃଖର ପରିବେଶ ପାଇଁ ଅନେକାଂଶରେ ଦାୟୀ ।

ମଣିଷର ସ୍ୱଭାବ ପରିବର୍ତ୍ତନଶୀଳ ନୁହେଁ, ଧନୀମାନେ ଯୋଗ୍ୟ ଓ ଗରିବମାନେ ଅଯୋଗ୍ୟ ବ୍ୟକ୍ତି ମଧ୍ୟ ଦୁଇଟି ମିଥ୍ ଯାହାର ବିଭିନ୍ନ ଦିଗ ବିଷୟରେ ଲେଖକ ବ୍ୟାଖ୍ୟା କରିଛନ୍ତି । ଏହି ପ୍ରକାର ବିଶ୍ୱାସ କିପରି ସମାଜରେ ହିଂସା, ଯୁଦ୍ଧ, ଶୋଷଣକୁ ପ୍ରଶ୍ରୟ ଦେଇଛି ତାର ବିଶ୍ଳେଷଣ କରିଛନ୍ତି । ସେହିପରି ପ୍ରତ୍ୟେକ ପ୍ରଶ୍ନର ଦୁଇଟି ପୃଥକ ଦିଗ ରହିବା ସମ୍ଭବ, ସକଳ ସମସ୍ୟା କେବଳ ବାଚନିକ ଜଟିଳତାରୁ ସୃଷ୍ଟି ହୋଇଥାଏ, ସ୍ୱାଧୀନ ରହିବା ଓ ନିରାପଦ ରହିବା ସମ୍ଭବ ନୁହେଁ ଭଳି ବିଶ୍ୱାସ ମଧ୍ୟ ବୌଦ୍ଧିକ ସ୍ତରରେ କେତେକ ବଦ୍ଧମୂଳ ଧାରଣା ସୃଷ୍ଟି କରିଛି । ଏହି ସବୁ ଧାରଣାରୁ ଅନେକ ଅସ୍ୱଷ୍ଟତାର ଉଦ୍ଭବ ହୋଇଥାଏ । ଗୋଟିଏ ବୌଦ୍ଧିକ ଜଟିଳତାରୁ କିପରି ସାମାଜିକ ଓ ସାଂସ୍କୃତିକ ସମସ୍ୟାର ଉଦ୍ଭବ ହୁଏ ଓ ଏକ ଭ୍ରମାତ୍ମକ ବିଚାର ଓ ମିଥ୍ ସମାଜରେ ଦୁଃଖ, ଦୁର୍ଦ୍ଦଶା ଓ ଅମାନବିକ ବିଚାରର ଉଦ୍ରେକ କରାଏ; ଲେଖକ ତାହା ସୁନ୍ଦର ଭାବେ ବ୍ୟାଖ୍ୟା କରିଛନ୍ତି ।

ସେହିପରି ଆମେରିକାର ବିଶିଷ୍ଟ ସାମ୍ବାଦିକ ଜେମ୍‌ସ ହଟ୍ 'ଦୁଇହଜାର ବର୍ଷରେ ଅବିଶ୍ୱାସ' (Two Thousand Years of Disbelief) ନାମରେ ଏକ ବହି ଲେଖିଛନ୍ତି । ଅଲୌକିକତା, ଅତି ପ୍ରାକୃତିକ ଶକ୍ତି, ଧର୍ମ ଭାବନାରେ ସନ୍ଦେହ ପୋଷଣ କରି ଚିନ୍ତା ସ୍ତରରେ ନୂତନ ଦିଗନ୍ତର ପଥ ପ୍ରଦର୍ଶକ ହୋଇଥିବା ଚିନ୍ତାନାୟକଙ୍କ ଉପରେ ବହିଟି ଆଧାରିତ । ଲେଖକ ପାଖାପାଖି ଶହେ ଜଣଙ୍କର ସଂକ୍ଷିପ୍ତ ଜୀବନୀ ଓ କ୍ରାନ୍ତିକାରୀ

ବିଚାରର ଅବତାରଣା କରିଛନ୍ତି । ଏଥିରେ ଅଛନ୍ତି ଦାର୍ଶନିକ, ବୈଜ୍ଞାନିକ, ସାହିତ୍ୟିକ, ରାଷ୍ଟ୍ରନୀତିଜ୍ଞ ଓ ସଂସ୍କାରକ । ଏ ସମସ୍ତେ ନିଜର ସମସାମୟିକ ସମାଜରେ ଥିଲେ ହେତୁବାଦୀ, ମୁକ୍ତ ଚିନ୍ତକ, ମାନବବାଦୀ ଓ ଜ୍ଞାନ ବିଜ୍ଞାନର ପଥପ୍ରଦର୍ଶକ । ସେମାନଙ୍କର ଶାଣିତ ପ୍ରଜ୍ଞା, ତର୍କଶୀଳ ବିଚାର ଓ ବୈଜ୍ଞାନିକ ସିଦ୍ଧାନ୍ତ ଯୋଗୁଁ ଜ୍ଞାନର ବିକାଶ ହୋଇଛି, ସଭ୍ୟତାର ଅଗ୍ରଗତି ହୋଇଛି ଓ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଛି । କିନ୍ତୁ ସେମାନେ ନିଜର ସମସାମୟିକ ସମାଜରେ ନାନା ବିଦ୍ୱେଷର ସମ୍ମୁଖୀନ ହୋଇଛନ୍ତି । ଏପରିକି ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହୋଇ ବନ୍ଦୀ ଜୀବନ ବିତାଇଛନ୍ତି ଓ କେତେକ ମୃତ୍ୟୁ ଦଣ୍ଡ ମଧ୍ୟ ପାଇଛନ୍ତି । ତଥାପି ସେହିମାନେ ସଭ୍ୟତାର ପଥ ପ୍ରଦର୍ଶକ, ମାନବବାଦର ପ୍ରବକ୍ତା ଓ ବିଶ୍ୱ ବିବେକର ପ୍ରତିନିଧି । ଦାର୍ଶନିକମାନଙ୍କ ମଧ୍ୟରେ ସକ୍ରେଟିସ୍, ସ୍ପିନୋଜା, ଡାଭିଡ୍ ହ୍ୟୁମ୍, ଜନ୍ ଡିଓ୍ୱେ, ନିତ୍‌ସେ, ବର୍ଟ୍ରାଣ୍ଡ ରସେଲ ଇତ୍ୟାଦିଙ୍କ ବିଷୟରେ ଉଲ୍ଲେଖ ରହିଛି, ଦର୍ଶନ ଶାସ୍ତ୍ରକୁ ଯେଉଁମାନଙ୍କ ଅବଦାନ ବଳିଷ୍ଠ । ସାହିତ୍ୟିକଙ୍କ ଭିତରେ ଓମର ଖାୟାମ୍, ସେଲି, ଟଲଷ୍ଟୟ, ବର୍ନାଡ୍ ଶ ଇତ୍ୟାଦି ବିଶ୍ୱ ବିଖ୍ୟାତ ଲେଖକଙ୍କ ବିଷୟରେ ଲେଖକ ଉଲ୍ଲେଖ କରିଛନ୍ତି । ବୈଜ୍ଞାନିକ ବ୍ରୁନୋ, ଏଡ଼ିସନ୍, ଗାଲିଲିଓ, ଆଇନଷ୍ଟାଇନ୍ ଇତ୍ୟାଦିଙ୍କ ଅବଦାନକୁ ସୂଚାଇଛନ୍ତି । ସେହିପରି ଭୋଲଟାୟାର୍, ସିଗମଣ୍ଡ ଫ୍ରଏଡ଼, କାର୍ଲ ମାର୍କସ, ଆବ୍ରାହମ ଲିଙ୍କନ ଇତ୍ୟାଦିଙ୍କ ଭଳି ବିଶ୍ୱବିଦିତ ଚିନ୍ତାନାୟକଗଣଙ୍କୁ ଉଲ୍ଲେଖ କରିଛନ୍ତି । ତେବେ ଏହି ପ୍ରଜ୍ଞାଦୀପ୍ତ ବୁଦ୍ଧିଜୀବୀ ଓ ବିଶ୍ୱବିଦିତ ଚିନ୍ତାନାୟକଗଣ ସେମାନଙ୍କ ସମସାମୟିକ ସମାଜରେ ନାନା ପ୍ରତିକୂଳ ଆହ୍ୱାନର ସମ୍ମୁଖୀନ ହୋଇଛନ୍ତି ଓ ଅନେକ ସମୟରେ ନିର୍ଯ୍ୟାତନାର ଶରବ୍ୟ ମଧ୍ୟ ହୋଇଛନ୍ତି ।

ବିଡ଼ମ୍ବନାର ବିଷୟ ଏହି ଚିନ୍ତାନାୟକମାନଙ୍କୁ ଧାର୍ମିକ ଦୃଷ୍ଟିକୋଣରୁ ହିଁ ବିରୋଧ କରାଯାଇଛି । 'ଧର୍ମର ଆଧାର ହେଉଛି ଈଶ୍ୱର, ମୁକ୍ତି, ଅଲୌକିକତା, ମିଥ୍, ଚମତ୍କାରିତା, ପୂର୍ବନିର୍ଦ୍ଦିଷ୍ଟବାଦ ଇତ୍ୟାଦି ବା ଧର୍ମଗ୍ରନ୍ଥର ବାଣୀ ଈଶ୍ୱରଦତ୍ତ, ସୁତରାଂ ପବିତ୍ର ଓ ଅକାଟ୍ୟ ଅଥବା ସମସ୍ତ ଦୁଃଖ ଯାତନା ଆଧିଭୌତିକ ଦଣ୍ଡ ଯାହାକୁ ଲଂଘନ କରାଯାଇ ପାରିବ ନାହିଁ କିମ୍ବା ସକଳ ଭେଦଭାବ ପୂର୍ବ ନିର୍ଦ୍ଦିଷ୍ଟ ଓ ପ୍ରାକୃତିକ; ଏଭଳି ମାନସିକତାର ବଶବର୍ତ୍ତୀ ହୋଇଥିବା ମଣିଷମାନେ ପ୍ରଗତିଶୀଳ ବୁଦ୍ଧିଜୀବୀ, ସତ୍ୟାନ୍ୱେଷୀ ବୈଜ୍ଞାନିକ ତଥା ମାନବିକ ମର୍ଯ୍ୟାଦାର ପ୍ରବକ୍ତାମାନଙ୍କୁ ସର୍ବଦା ବିରୋଧ କରି ଆସିଛନ୍ତି । ଯୁକ୍ତି, ବିଚାରଶୀଳତା, ବୈଜ୍ଞାନିକ ମାନସିକତାକୁ ପ୍ରତ୍ୟାଖ୍ୟାନ କରିବାକୁ ସେମାନେ ଧର୍ମକୁ ଆୟୁଧ କରି ଆସିଛନ୍ତି । ଧାର୍ମିକ ଭାବ ପ୍ରବଣତା ଆଧାରରେ ସମାଜରେ ଅଜ୍ଞତା ଓ ବିଭେଦର ପ୍ରାଚୀର ଛିଡ଼ା କରାଇଛନ୍ତି । ମଧ୍ୟଯୁଗୀୟ ମାନସିକତାରେ ରାଜତନ୍ତ୍ର, ସାମନ୍ତବାଦ ଓ ପୂଜକ ଗୋଷ୍ଠୀର ପ୍ରାଧାନ୍ୟକୁ ଈଶ୍ୱରୀୟ ବିଧାନ ଭାବେ ଚିତ୍ରଣ କରି ତାହାକୁ ସଂସ୍କୃତିର ପୁଟ ଦେଇ ଆସିଛନ୍ତି । ଶାସ୍ତ୍ରର ବାଣୀକୁ

ଅଲଂଘ୍ୟ ଓ ଅକାଟ୍ୟ ବୋଲି ଗ୍ରହଣ କରି ବୈଜ୍ଞାନିକ ଜ୍ଞାନ, ସାମାଜିକ ସଂସ୍କାର, ମାନବିକ ମର୍ଯ୍ୟାଦା ଇତ୍ୟାଦିକୁ ବିରୋଧ କରି ଆସିଛନ୍ତି ।

ତେବେ ସ୍ୱାଧୀନ ଚିନ୍ତାର ହେତୁବାଦୀଗଣ ସବୁ ଯୁଗରେ ଏକ ଅନୁସନ୍ଧିତ୍ସୁ ମନୋଭାବ ପୋଷଣ କରି ଆସିଛନ୍ତି । ମଣିଷର ପ୍ରୟାସ ଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହେବା ସହ ସାମାଜିକ ଜୀବନ ଅଧିକ ପ୍ରୀତିପଦ ହୋଇପାରିବ ବୋଲି ଏମାନେ ଅନୁଭବ କରିଛନ୍ତି । ପ୍ରକୃତିର ଓ ସାମାଜିକ ଘଟଣା ପ୍ରବାହର କାରଣକୁ ବୈଜ୍ଞାନିକ ପଦ୍ଧତି ଅବଲମ୍ବନରେ ବୁଝିବାକୁ ପ୍ରୟାସ କରି ଆସିଛନ୍ତି । ଏହି ଅନୁଶୀଳନ ମଧ୍ୟ ଦେଇ ସବୁ ସ୍ତରରେ ସେମାନେ ପ୍ରାକୃତିକ କାରଣକୁ ପାଇଛନ୍ତି, କୌଣସି ଅତି ପ୍ରାକୃତିକ କାରଣ ବା ଅତୀନ୍ଦ୍ରିୟ ଶକ୍ତିର ପ୍ରମାଣ ପାଇନାହାନ୍ତି । ରାଜନୈତିକ ବ୍ୟବସ୍ଥା ଭିତରେ ମାନବିକ ମର୍ଯ୍ୟାଦା, ଗଣତାନ୍ତ୍ରିକ ମୂଲ୍ୟବୋଧ, ଧର୍ମନିରପେକ୍ଷ ଜୀବନ ଦୃଷ୍ଟି ଓ ବିଶ୍ୱ ଭ୍ରାତୃତ୍ୱକୁ ସେମାନେ ପ୍ରାଧାନ୍ୟ ଦେଇ ଆସିଛନ୍ତି । ପରିଣାମତଃ ସାମନ୍ତବାଦ, ରାଜତନ୍ତ୍ର, ଏକଛତ୍ରବାଦ, ଧର୍ମକୈନ୍ଦ୍ରିକ ଶାସନ ବ୍ୟବସ୍ଥା ବିରୋଧରେ ସ୍ୱର ଗୁଞ୍ଜରି ଉଠିଛି । ଅର୍ଥନୈତିକ ଦୃଶ୍ୟପଟରେ ଶ୍ରେଣୀହୀନ ସମାଜ, ସମତା ଓ ଏକ ଶୋଷଣହୀନ ବ୍ୟବସ୍ଥା ସପକ୍ଷରେ ସେମାନେ ପ୍ରୟାସ କରିଛନ୍ତି । ଏହି ସବୁ ବ୍ୟାଖ୍ୟା ମଧ୍ୟ ଦେଇ ବୈଜ୍ଞାନିକ ପ୍ରକୃତିବାଦ ଓ ମାନବକୈନ୍ଦ୍ରିକ ଜୀବନ ଦର୍ଶନର ଉଦ୍ଭବ ହୋଇଛି । ସେହିପରି ସଭ୍ୟ ଜୀବନଦୃଷ୍ଟି ପାଇଁ ସେମାନେ ଉନ୍ନତ ସାମାଜିକ ବ୍ୟବସ୍ଥା, ନୈତିକ ଆଚରଣ ଓ ମାନବିକ ସମ୍ବେଦନଶୀଳତାକୁ ଗୁରୁତ୍ୱ ଦେଇଛନ୍ତି । ମଣିଷର ପ୍ରୟାସ ଦ୍ୱାରା ହିଁ ସମାଜ ଆଗକୁ ଯାଏ, ଜ୍ଞାନ ବିଜ୍ଞାନର ବିକାଶ ହୁଏ ଓ ସଭ୍ୟ ଜୀବନଶୈଳୀର ଅଭ୍ୟୁଦୟ ହୋଇଥାଏ ।

ଐତିହାସିକ ଦୃଷ୍ଟିକୋଣରୁ ଦେଖିଲେ ସ୍ୱାଧୀନ ଚିନ୍ତକ ହେତୁବାଦୀମାନେ ହିଁ ବିଭିନ୍ନ ସଭ୍ୟତାରେ ନ୍ୟାୟାଧାରିତ, ସମତାଭିତ୍ତିକ ଓ ଗଣତାନ୍ତ୍ରିକ ଜୀବନଶୈଳୀର ପଥ ପ୍ରଦର୍ଶକ ହୋଇଛନ୍ତି । ଏହା ଯେ ସମାଜର ବୌଦ୍ଧିକ ଓ ନୈତିକ ଉତ୍ତରଣର ମୂଳ ଭିତ୍ତି ଏହା ଅନସ୍ୱୀକାର୍ଯ୍ୟ । ମୋଟ ଉପରେ ଏହି ଜୀବନ ଦର୍ଶନ ଭିତରେ ଏକ ସୁନ୍ଦର ବିଶ୍ୱର ସ୍ୱପ୍ନ ଯେ ନିହିତ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । (ସମ୍ବାଦ - ୫.୯.୦୯)



# ସ୍ୱପ୍ନ କାହିଁକି ମଉଳି ଯାଉଛି ?

ଗୋଟିଏ ଜାତି ପାଇଁ ବିକାଶର ମାନଦଣ୍ଡ କ'ଣ ? ଗୁଣାତ୍ମକ ଜୀବନ କିପରି ସମ୍ଭବ ? ଏହି ପ୍ରଶ୍ନ ଉଠାଇଲା ବେଳେ ପରାଧୀନ ଭାରତର କିଛି ଦୃଶ୍ୟ ମାନସପଟକୁ ଆସିଥାଏ । ପରାଧୀନ ଭାରତରେ ଦେଶର ପୁନର୍ନିର୍ମାଣ ନେଇ କେତେ ସ୍ୱପ୍ନ ରହିଥିଲା । ଅନେକ ସ୍ୱପ୍ନ ଥିଲା ଯେ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ହେଲେ ଦେଶର ଜୀବନରେ ନୂତନ ଜାଗରଣ ଆସିବ । ଜାତୀୟ ଜୀବନରୁ ସକଳ ଅବକ୍ଷୟ ଦୂର ହେବ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ସହ ଯଥାର୍ଥ ସ୍ୱରାଜ୍ୟର ସୁଫଳ ସମାଜର ପ୍ରତ୍ୟେକ ମଣିଷ ପାଇବେ । କିଛି ଆଦର୍ଶରେ ପ୍ରଭାବିତ ହୋଇ ସମାଜର ସାଧାରଣ ସଚେତନ ମଣିଷଟିଏ ଦେଶର ସ୍ୱାଧୀନତା ପାଇଁ ଯେ କୌଣସି ତ୍ୟାଗ ଦେବାକୁ ପ୍ରସ୍ତୁତ ହୋଇଥିଲା । ଗୋଟିଏ ପରାଧୀନ ଓ ନିଷ୍ପେଷିତ ଜାତିର ପ୍ରାଣରେ ଏହି ଯେଉଁ ଆଶାର ସଞ୍ଚାର ହୋଇଥିଲା ଏହା ଥିଲା ଏକ ବଡ଼ ନୈତିକ ଉତ୍ତରଣ । ଏଠାରେ ଓଡ଼ିଶାର ଜଣେ ସାଧାରଣ ସ୍ୱାଧୀନତା ସଂଗ୍ରାମୀଙ୍କ ଜୀବନ କାହାଣୀରୁ ଗୋଟିଏ ଉଦାହରଣ ଦେଉଛି । ଲବଣ ସତ୍ୟାଗ୍ରହ ସମୟର ଘଟଣା । ଗାନ୍ଧୀଙ୍କ ଆହ୍ୱାନର ପରିଣାମରେ ଦେଶରେ ଯେଉଁ ଆଲୋଡ଼ନ ଆସିଥିଲା ତା'ର ପ୍ରଭାବରେ ଓଡ଼ିଶାର ଜଣେ ଯୁବକ ଆନ୍ଦୋଳନରେ ଯୋଗଦେଲେ । ପୁଲିସ୍ ତାଙ୍କ ବାପାଙ୍କୁ ନାନା ଧମକ ଦେଉଥାନ୍ତି । ପୁଲିସ ଭୟରେ ଆନ୍ଦୋଳନରେ ନ ମାତିବାକୁ ବାପା ତାଙ୍କୁ ବାରଣ କରୁଥାନ୍ତି । ଆସନ୍ତାକାଲି ସକାଳୁ ସତ୍ୟାଗ୍ରହୀ ଦଳ ଲୁଣ ମାରିବାକୁ ବାହାରିବେ ଓ ସଂଗ୍ରାମୀ ଜଣକ ସେଥିରେ ସାମିଲ ହେବେ । ରାତିରେ ଶୋଇବାକୁ ଗଲେ, ପତ୍ନୀ ଅନ୍ତଃସତ୍ତ୍ୱା । ସ୍ତ୍ରୀ ବହୁତ ବୁଝାଇଲେ ତାଙ୍କୁ ଛାଡ଼ିକରି ନ ଯିବାକୁ । ଏପରିକି ସ୍ୱାମୀଙ୍କର ଲୁଗାକୁ ନିଜ ପଣତ କାନିରେ ଗଣ୍ଠି ପକାଇଲେ, ଅନୁରୋଧ କଲେ ଯଦି ସେ ଗଣ୍ଠି ଫିଟାଇ ଯା'ନ୍ତି ତେବେ ତାଙ୍କ ଶବ ଉପରେ ଯିବେ । ସଂଗ୍ରାମୀଙ୍କ ଅନ୍ତରରେ ଝଡ଼ ଓ ମନରେ ଗଭୀର ଦ୍ୱନ୍ଦ୍ୱ । ଏହି ନୈତିକ ସମସ୍ୟା ଭିତରେ କ'ଣ କରିବେ ? ଆଖିରେ ନିଦ ନାହିଁ, କେବଳ ଶୋଇବାର ଅଭିନୟ । ଗୋଟିଏ ପଟେ ପତ୍ନୀଙ୍କର ଅନୁରୋଧ ଓ ଅନ୍ୟପଟେ ଦେଶ ପାଇଁ କର୍ତ୍ତବ୍ୟ । 'ହଠାତ୍ ମୁଣ୍ଡକୁ ବୁଦ୍ଧି ଜୁଟିଲା । ସେ ଯିବେ, କିନ୍ତୁ ଗଣ୍ଠି ଫିଟାଇବେ ନାହିଁ । ରାତିରେ ନିଜର ପିନ୍ଧିଥିବା ଲୁଗାଟିକୁ ଖୋଲି ଦେଇ ବିନା ବସ୍ତ୍ରରେ ଅନ୍ଧାରରେ ଦୌଡ଼ିଲେ ସାଥୀମାନଙ୍କ ପାଖକୁ । ଘୋର ଅନ୍ଧାର ରାତିରେ ଜାଗାରେ ପହଞ୍ଚି ଡାକ ପକାଇଲେ, ମୋତେ ଲୁଗା

ଖଣ୍ଡିଏ ଦିଅ, ମୋର କଥା ପରେ କହିବି । ଏହିଭଳି ଅନେକ କାହାଣୀ ଆଜି ଇତିହାସ ଭିତରେ ରହିଗଲାଣି । ବହୁ ସ୍ୱାଧୀନତା ସଂଗ୍ରାମୀ ସକଳ ସୁଖ ସମ୍ଭୋଗ ତ୍ୟାଗ କରିଛନ୍ତି, ଯନ୍ତ୍ରଣାରେ ଜର୍ଜରିତ ହୋଇଛନ୍ତି, ପୁଲିସ୍‌ର ଅତ୍ୟାଚାର ସହିଛନ୍ତି ଓ ଏପରିକି ଫାଶୀଖୁଣ୍ଟକୁ ମଧ୍ୟ ଯାଇଛନ୍ତି । କିନ୍ତୁ ସ୍ୱପ୍ନ ଦେଖିଛନ୍ତି ଦେଶ ପାଇଁ, ଜାତିପାଇଁ । ଜଣେ ଗାନ୍ଧୀ ଓ ଜଣେ ସୁଭାଷ ସାମ୍ରାଜ୍ୟବାଦ ବିରୋଧରେ ଦେଶର ଜନଗଣଙ୍କ ପ୍ରାଣରେ ଯେଉଁ ଆଶା ସଞ୍ଚାର କରିଥିଲେ ଓ ଏକ ପରାଧୀନ ଜାତିର ଯେଉଁ ନୈତିକ ଉତ୍ତରଣ ଘଟାଇଥିଲେ ତାହା ଥିଲା ଅନନ୍ୟ ଓ ଅସାଧାରଣ ।

ପରାଧୀନ ଭାରତ ଜନ୍ମ ଦେଇଥିଲା ଅନେକ ତ୍ୟାଗୀ, ସନ୍ଥ, ମହାତ୍ମା ଓ ଆଦର୍ଶବାଦୀ ଜନନେତାଙ୍କୁ, କିନ୍ତୁ ସ୍ୱାଧୀନ ଭାରତ ? ଦୁଃଖ ଏତିକି ଯେ ସାମ୍ପ୍ରତିକ ସମାଜରେ ଆମେ ଦେଖୁ ସନ୍ତ୍ରାସବାଦୀଙ୍କୁ, କଟ୍ଟରପନ୍ଥୀ ନୀତିହୀନ ଧର୍ମଧ୍ୱଜାଧାରୀଙ୍କୁ, ଆଦର୍ଶହୀନ ରାଜନେତାଙ୍କୁ ଓ ଦୁର୍ନୀତିଗ୍ରସ୍ତ ପ୍ରଶାସକଙ୍କୁ । କୁଆଡ଼େ ଗଲା ସର୍ବଜନହିତୈଷୀ ସମାଜର ପରିକଳ୍ପନା, ଗ୍ରାମ ସ୍ୱରାଜ ? ସମତା, ନ୍ୟାୟ ଓ ଦେଶପ୍ରୀତି କାହିଁକି ଆମ ସମାଜରୁ ଅପସରି ଯାଉଛି ? ସମ୍ବିଧାନର ପୃଷ୍ଠାରେ ଥିଲା କେତେ ପବିତ୍ର ପ୍ରତିଶ୍ରୁତି, ସବୁ ପିଲା ଶିକ୍ଷା ପାଇବେ, କୌଣସି ଭେଦଭାବ ରହିବ ନାହିଁ, ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ ବଞ୍ଚିବ ଓ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାର ଅଙ୍ଗ ହେବ । କିନ୍ତୁ ଆଜିର ଶିକ୍ଷା ବ୍ୟବସ୍ଥା ? ସମାଜର କେବଳ ସ୍ୱଚ୍ଛଳ ବର୍ଗର ପିଲାମାନେ ଉଚ୍ଚ ଶିକ୍ଷା ପାଇବେ ଅଥଚ ସମାଜର ସାଧାରଣ ଘରର ପିଲା ସାମର୍ଥ୍ୟ ସତ୍ତ୍ୱେ ଗୁଣାତ୍ମକ ଶିକ୍ଷାର ସ୍ୱପ୍ନ ବି ଦେଖିପାରିବ ନାହିଁ । ଆଜିର ରାଜନୈତିକ ବ୍ୟବସ୍ଥା ? କୌଣସି ରାଜନୈତିକ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜନୀତିକୁ ଆସିବା ପରିବର୍ତ୍ତେ କେଉଁଠି କ୍ଷମତାକୁ ଯିବା ସହଜ ତାହାହିଁ ହେଉଛି ରାଜନୈତିକ ସଂସ୍କୃତି । ଯେଉଁମାନେ ରାଜନୀତିରେ ମୂଲ୍ୟବୋଧର କଥା କହନ୍ତି, କିଛି ଆଦର୍ଶ ଜୀବନରେ ରଖିଛନ୍ତି ସେମାନେ ରାଜନୀତିରେ ଅପାଂକ୍ତେୟ ହୋଇ ଯାଉଛନ୍ତି । ଆଉ ଦେଶର ଅର୍ଥନୀତି ? କୁଆଡ଼େ ଗଲା ସମାଜବାଦର ସ୍ୱପ୍ନ ? ଦେଶରେ କୋଟିପତିଙ୍କ ସଂଖ୍ୟା ଅନେକ ବଢ଼ିଛି, ସେପରି ବଢ଼ିଛି ସହରର ଅସ୍ୱାସ୍ଥ୍ୟକର ପରିବେଶରେ ଝୁମ୍ପୁଡ଼ିରେ ବଞ୍ଚୁଥିବା ମଣିଷଙ୍କ ସଂଖ୍ୟା । ଦେଶର ତୁଙ୍ଗ ନେତାମାନଙ୍କର କହିବାନୁଯାୟୀ ଭାରତୀୟମାନେ କୁଆଡ଼େ ବିଦେଶ ବ୍ୟାଙ୍କମାନଙ୍କରେ ପ୍ରଚୁର କଳାଟଙ୍କା ରଖିଛନ୍ତି । ଏଣେ ଏବେବି ଗାଁ ଗହଳରେ ତିନି ଭାଗରୁ ଏକ ଭାଗ ଲୋକ ବିପିଏଲ୍ ବା ଦାରିଦ୍ର୍ୟ ସୀମାରେଖା ତଳେ ଥାଇ ଜୀବନରେ ସର୍ବନିମ୍ନ ଆବଶ୍ୟକତା ପାଇବାରୁ ବଞ୍ଚିତ । ଏତେ ଯୋଜନାର ସୁଫଳ କାହିଁକି ସେମାନଙ୍କ ପାଖକୁ ଯାଇପାରୁ ନାହିଁ ? ଏପରିକି ପିଇବା ପାଣି ମୁନ୍ଦେ ବି ସ୍ୱପ୍ନ ହେଉଛି ସେମାନଙ୍କ ପାଇଁ ।

ଇଂରାଜୀରେ ଏକ ପ୍ରବାଦ ରହିଛି, ଗୋଟିଏ ଦେଶର ଭବିଷ୍ୟତ ତାର ଶ୍ରେଣୀଗୃହରୁ ଗଠିତ ହୁଏ । ତେବେ ଆମର ଶିକ୍ଷା ସ୍ତରରେ ସାମାଜିକ ସଚେତନତାର ସ୍ତର କେଉଁଠି ? ନାଗରିକ ଶୃଙ୍ଖଳାବୋଧ ନେଇ ଆମ ଶିକ୍ଷାନୁଷ୍ଠାନମାନଙ୍କରେ କେତେ ସଚେତନତା ରହିଛି ? ସର୍ବୋଚ୍ଚ ଶିକ୍ଷାନୁଷ୍ଠାନରେ ସାମାନ୍ୟ ଘଟଣାକୁ ନେଇ ଛାତ୍ରମାନେ ସାଧାରଣ ସମ୍ପତ୍ତିକୁ ଧ୍ୱଂସ କରିବା, ବସ୍ ପୋଡ଼ିବା, ଏଟିଏମ୍ କାଉଣ୍ଟର ଭାଙ୍ଗିବା ଘଟଣାରୁ ଆମ ଚେତନାର ସ୍ତର କେଉଁଠି ତାହା ଅନୁମେୟ । ମୁଷ୍ଟିମେୟ ଛାତ୍ରନେତାଙ୍କର ଏହି କାର୍ଯ୍ୟକୁ ଅନ୍ୟମାନେ ବାରଣ ବା ନିନ୍ଦା ନକରିବା ସାମାଜିକ ସଚେତନତା ନେଇ ଆମ ସ୍ୱର୍ଣ୍ଣକାତର ଶୂନ୍ୟତାର ପ୍ରମାଣ ଦିଏ ନାହିଁ କି ?

ନାଗରିକ ସମାଜରେ ବହୁ ବିଜ୍ଞ, ଗୁଣୀ ଓ ନିଷ୍ପାପର ମଣିଷ ରହିଛନ୍ତି । କିନ୍ତୁ ସେମାନେ ଜନମତକୁ ବା ସମାଜର ଗତିପଥକୁ ପ୍ରଭାବିତ କରିପାରୁ ନାହାନ୍ତି, ଅପରପକ୍ଷରେ ଆଦର୍ଶହୀନ ଅଥଚ ରାଜନୈତିକ ପ୍ରଭାବ ଥିବା ବ୍ୟକ୍ତିମାନେ ସାମାଜିକ ବ୍ୟବସ୍ଥାକୁ ନିୟନ୍ତ୍ରଣ କରିପାରୁଛନ୍ତି । ଯେକୌଣସି ଆଳ ଦେଖାଇ ବନ୍ଦ ଡାକରା ଦେବା, ରାସ୍ତା ମଝିରେ ଟାୟାର ପୋଡ଼ି ପରିବେଶକୁ ପ୍ରଦୂଷିତ କରିବା, ରାସ୍ତା ଅବରୋଧ କରିବା, ଗାଡ଼ି ମଟର ଅଟକାଇବା ଆମ ଜନଜୀବନର ଅଙ୍ଗବିଶେଷ ହୋଇଯାଇଛି । ଆମର କର୍ମ ସଂସ୍କୃତି ଓ ନାଗରିକ ଶୃଙ୍ଖଳାବୋଧ ନେଇ ସଚେତନତାର ସ୍ତର ଉନ୍ନତ ନ ହେବା ଆମ ସାମାଜିକ ଅବକ୍ଷୟର ଚିତ୍ର ଦେଇଥାଏ । ଆମ ସହରମାନଙ୍କରେ କେତେ ବାବା, ମାତାଙ୍କର କେତେ ପ୍ରବଚନ ଚାଲୁଛି, ପୂଜାପୀଠର ସଂଖ୍ୟା ଜ୍ୟାମିତିକ ହାରରେ ବଢ଼ି ଚାଲିଛି । ହେଲେ ଆମର ନୈତିକ ମାନ କେଉଁଠି ଅଛି ? ଜଣେ ସାଧାରଣ ମଣିଷର ନ୍ୟାଯ୍ୟ କାର୍ଯ୍ୟଟି କେବେ ବି ଅକ୍ଳେଶରେ ହୋଇପାରେ ନାହିଁ । ପନ୍ଥାର ପବିତ୍ରତା ଓ ସତ୍ ଉପାୟରେ ଉପାର୍ଜନ ନେଇ ମାନସିକତା କାହିଁକି ଏକ ସଂସ୍କୃତି ହୋଇପାରୁ ନାହିଁ ? ଯେଉଁଠି ଔଷଧକୁ ଭେଜାଲ କରାଯାଏ, ଖାଦ୍ୟ ପଦାର୍ଥରେ ଅପମିଶ୍ରଣ ହୁଏ ଓ ଶିଶୁ ଖାଦ୍ୟ ମଧ୍ୟ ବିଶୁଦ୍ଧ ନୁହେଁ ସେଠାରେ ସାମାଜିକ ଚେତନାର ସ୍ତର କେଉଁଠି ତାହା ଅନୁମେୟ ।

ସମ୍ପ୍ରତି ଆଧୁନିକ ବିଜ୍ଞାନ, ପ୍ରଯୁକ୍ତି ଯେଉଁ ଅଭୂତପୂର୍ବ ସଫଳତା ମାନ ଆଣି ଦେଇଛି ତାହା କଳ୍ପନାତୀତ । ଉପଗ୍ରହ ମାଧ୍ୟମରେ ଯୋଗାଯୋଗ, ଇଣ୍ଟରନେଟ୍, କ୍ଲୋନିଂ, ଅତ୍ୟାଧୁନିକ ଚିକିତ୍ସା ବ୍ୟବସ୍ଥା ଇତ୍ୟାଦି ଜ୍ଞାନରାଜ୍ୟରେ ବିପ୍ଳବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ସତ୍ତ୍ୱେ ଏବେ ବି ମାନସିକ ଦାସତ୍ୱ ଓ ଜଡ଼ତା ଆମ ସାମାଜିକ ଦୃଶ୍ୟପଟରେ ଭରପୂର ହୋଇ ରହିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କ୍ଷେତ୍ରରେ ନାନା ପ୍ରତିବନ୍ଧକ ରହିଛି । ଏବେ ବି ଦିଅଁ ଦେବତା ପାଖରେ ବଳି ପଡୁଛି, ଭାଗ୍ୟ, ରାଶିଫଳ ନେଇ କେତେ ପ୍ରଚାର ଚାଲିଛି ଓ ସମାଜର ଶିକ୍ଷିତ ବର୍ଗ ମଧ୍ୟ ଏହି ବିଶ୍ୱାସରୁ ମୁକ୍ତ ହୋଇପାରୁନାହିଁ ।

ମଣିଷ ଯେତେବେଳେ ନିଜର ସାମର୍ଥ୍ୟ ବା ବୃହତ୍ତର ସମାଜ ଉପରେ ବିଶ୍ୱାସ ରଖିପାରେ ନାହିଁ ସେ କଳ୍ପିତ ଦିଅଁ ଦେବତାରେ ବିଶ୍ୱାସ କରେ । ନାନା ମନସ୍ତାତ୍ତ୍ୱିକ ଭୟ, ଅସହାୟତା ଓ ଆଶଙ୍କା ଯୋଗୁଁ ସେ ଭାଗ୍ୟ, ଠାକୁରଙ୍କ ଆଶୀର୍ବାଦ ପାଇଁ ଶରଣାପନ୍ନ ହୁଏ ।

ତେବେ କେଉଁଠି ଦିଅଁଙ୍କ ପାଖରେ ପାଣି ଢାଳିଲେ, ନଡ଼ିଆ ବାଡ଼େଇଲେ ବା ଦଉଡ଼ି ଛୁଇଁଲେ ସମାଜର ବିକାଶ ହେବ ନାହିଁ କି ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିବ ନାହିଁ । ଅତୀତର ପରମ୍ପରା କହି ପୂଜା ପାର୍ବଣରେ ମତୁଆଲା ହେଲେ ଜାତି ଆଗକୁ ଯିବ ନାହିଁ । ସେପରି ହେଉଥିଲେ ଆଜି ସମାଜର ଅଗଣିତ ମଣିଷ ନିରକ୍ଷର ରହି ନଥାନ୍ତେ ବା ସମାଜର ତିନି ଭାଗରୁ ଏକ ଭାଗ ଲୋକ ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ହୋଇ ଉପମାନବୀୟ ସ୍ତରରେ ଜୀବନ ବଞ୍ଚୁ ନଥାନ୍ତେ ।

ସାଧୁତା, କର୍ମ ସଂସ୍କୃତି, ସମାଜ ପ୍ରତି ଉତ୍ତରଦାୟିତ୍ୱ, ମଣିଷ ପ୍ରତି ସମ୍ମାନବୋଧ ପରି ସାମାଜିକ ଚେତନାର ବିକାଶ ହେଲେ ଜାତି ଆଗକୁ ଯିବ । ମଣିଷର ପ୍ରଚେଷ୍ଟା ଦ୍ୱାରା ହିଁ ଏହା ସମ୍ଭବ ହେବ । ଏଥିପାଇଁ ସମାଜର ଶିକ୍ଷା ବ୍ୟବସ୍ଥାକୁ ଉନ୍ନତ କରିବାକୁ ହେବ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ନିରପେକ୍ଷ ନୈତିକ ମୂଲ୍ୟବୋଧକୁ ଶିକ୍ଷାର ଅଙ୍ଗ କରିବାକୁ ହେବ । ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ପାଇଁ ଏସବୁ ଅପରିହାର୍ଯ୍ୟ ।

ପରାଧୀନ ଭାରତରେ ଦେଶ ନିର୍ମାଣ ପାଇଁ ସାମାଜିକ ଅଙ୍ଗୀକାରବଦ୍ଧତାର ଯେଉଁ ବାତାବରଣଟି ସୃଷ୍ଟି ହୋଇଥିଲା ତାହା ସ୍ୱାଧୀନ ଭାରତରେ କିପରି କ୍ରମବର୍ଦ୍ଧିଷ୍ଣୁ ଭାବେ ମଉଳି ଯାଉଛି ତାହାର ଗଭୀର ଅଧ୍ୟୟନ ମଧ୍ୟ ଆବଶ୍ୟକ । ସକଳ ଅବକ୍ଷୟକୁ ପ୍ରତିହତ କରି ଜାତିର ପ୍ରାଣରେ ନୂତନ ଆଶା ସଞ୍ଚାର କରିବାକୁ ହେଲେ ଆମକୁ ଆହୁରି ଅନେକ ବାଟ ଯିବାକୁ ପଡ଼ିବ । ଏଥିପାଇଁ ଆବଶ୍ୟକ ଗଭୀର ଆତ୍ମବିଶ୍ୱାସ ଓ ନିଷ୍ଠାପର ପ୍ରୟାସ । ତାହେଲେ ମଉଳି ଯାଉଥିବା ସ୍ୱପ୍ନ ପୁନଶ୍ଚ ଜୀବନ୍ତ ହୋଇଉଠିବ ।
(ସମ୍ବାଦ - ୨୪.୯.୦୯)



# ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆବଶ୍ୟକ

ଆମ ସାମାଜିକ ସଚେତନତାର ସ୍ତର କେଉଁଠି ? ନାଗରିକ ଶୃଙ୍ଖଳା ନେଇ ଆମେ କେତେ ସଚେତନ ? ଗୋଟିଏ ଦେଶର ସାମାଜିକ ପରିବେଶ ଓ ନାଗରିକ ସଚେତନତାର ଆଧାର ଉପରେ ଦେଶର ଜନଜୀବନର ଗୁଣାତ୍ମକ ମାନ ନିର୍ଭର କରିଥାଏ । ଗୋଟିଏ ସମାଜର ସାଂସ୍କୃତିକ ଓ ନୈତିକ ମୂଲ୍ୟବୋଧର ମୂଲ୍ୟାୟନ କଲାବେଳେ ବିଭିନ୍ନ ମାନଦଣ୍ଡ ହୁଏତ ରହିପାରେ । ତେବେ ଯେ କୌଣସି ମାନଦଣ୍ଡକୁ ଗ୍ରହଣ କଲେ ବି ନାଗରିକ ଶୃଙ୍ଖଳା ଓ ମାନବିକ ମର୍ଯ୍ୟାଦାଜନିତ ସାମାଜିକ ଚେତନାକୁ ଦୁଇଟି ପ୍ରମୁଖ ଆଧାର ଭାବରେ ନିଆଯାଇ ତାହାର ଆଧାରରେ ଜନଜୀବନର ଗୁଣାତ୍ମକ ସ୍ଥିତି ବିଷୟରେ କଳନା କରାଯାଇପାରେ । କହିବା ନିଷ୍ପ୍ରୟୋଜନ ଯେ ଆମର ସାମାଜିକ ପରିବେଶ ଓ ନାଗରିକ ସଚେତନତାର ସ୍ତର ଉନ୍ନତ ହୋଇପାରୁ ନାହିଁ । ଏଠାରେ ଏକ ବ୍ୟକ୍ତିଗତ ଅନୁଭୂତିର ଅବତାରଣା କରୁଛି । ନିକଟରେ 'ଜାତୀୟ ବିଜ୍ଞାନ ଶିକ୍ଷକ କଂଗ୍ରେସ' ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ସେଠାକୁ କର୍ଣ୍ଣାଟକରୁ ଜଣେ ବୈଜ୍ଞାନିକ ପ୍ରଶିକ୍ଷକ ବା 'ରିସୋର୍ସ ପର୍ସନ୍' ଭାବେ ଆସିଥିଲେ । ଚାରିଦିନର ସମ୍ମିଳନୀ ପରେ ସେ ଆଉ ଦୁଇଦିନ ଭୁବନେଶ୍ୱରରେ କେତେକ କାର୍ଯ୍ୟକ୍ରମରେ ଯୋଗ ଦେଲେ । ବ୍ୟକ୍ତିଗତ ଭାବେ ମୁଁ ତାଙ୍କୁ ଆଗରୁ ଜାଣିଥିବାରୁ ତାଙ୍କର କାର୍ଯ୍ୟକ୍ରମ ସ୍ଥାନକୁ ମୁଁ ତାଙ୍କୁ ସାଥିରେ ନେଇ ଯାଉଥିଲି । ଅକ୍ଟୋବର ପାଞ୍ଚ ତାରିଖ ଦିନ ବାଣୀବିହାରର ପ୍ରାଣୀ ବିଜ୍ଞାନ ବିଭାଗରେ ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇ ଅପରାହ୍ନରେ ଗୋଟିଏ ଇଞ୍ଜିନିୟରିଂ କଲେଜରେ ଓ ସନ୍ଧ୍ୟାରେ କଟକର ୟୁନିଭର୍ସରେ ସଦାଶିବ ମିଶ୍ର ସ୍ମୃତି ବକ୍ତୃତା ଦେବାର କାର୍ଯ୍ୟକ୍ରମ ତାଙ୍କର ଥାଏ । ବାଣୀବିହାରର କାର୍ଯ୍ୟକ୍ରମ ସାରି ମୁଁ ତାଙ୍କୁ ଯେତେବେଳେ ଗାଡ଼ିରେ ଧରି ଆସେ, ସେତେବେଳେ ବାଣୀବିହାର ପ୍ରବେଶପଥର ଗେଟ୍ ବନ୍ଦ ଓ ସେଠାରେ ତାଲା ପକାଇ କେତେକ ଆନ୍ଦୋଳନକାରୀ ବାହାରେ ବସିଥାନ୍ତି । ସେପଟେ ବାହାରି ପାରିବାର ସମ୍ଭାବନା ନଥିବାରୁ ଅନ୍ୟ ଗୋଟିଏ ପଟେ ବାହାରିବାକୁ ଆସିବା ବେଳକୁ ସେଠାରେ ମଧ୍ୟ ସେହି ଅବସ୍ଥା । ଗେଟ୍‌ରେ ତାଲା ଓ ଗାଡ଼ିମାନ ପଛକୁ ପଛ ଲମ୍ୱା ହୋଇ ରହିଥାନ୍ତି । ସେଠାରୁ ବାହାରିବାର ଅନ୍ୟ ଉପାୟ ନ ଦେଖି ମୁଁ ଯାଇ ସେମାନଙ୍କୁ ଅନୁରୋଧ କଲି ଗେଟ୍ ଖୋଲି ଆମକୁ ଛାଡ଼ି ଦେବାକୁ । ତେବେ ମୋ କଥା ଶୁଣିବ କିଏ ? ଜଣେ ସମ୍ମାନିତ ବ୍ୟକ୍ତିଙ୍କୁ ଧରି ଗାଡ଼ି ପାଖରେ ଚାରି ଘଣ୍ଟା ରହିଲି । ସୌଭାଗ୍ୟକୁ ବର୍ଷା ହେଲା ଓ

ଆନ୍ଦୋଳନକାରୀମାନେ ସେଠାରୁ ଚାଲିଗଲେ । ପାଞ୍ଚଟାରେ ଗେଟ୍ ଖୋଲିବାରୁ ଆମ ଗାଡ଼ି ସହ ଆମେ ବାହାରିଲୁ । ସେଦିନ ଗୋଟିଏ ନିର୍ଦ୍ଧାରିତ କାର୍ଯ୍ୟକ୍ରମକୁ ବାଧ୍ୟ ହୋଇ ବନ୍ଦ ରଖିବାକୁ ହେଲା ।

ସେଠାରେ ଘରିଘଣ୍ଟା ଛିଡ଼ା ହେବା ଭିତରେ ମୁଁ ବୈଜ୍ଞାନିକ ମହୋଦୟଙ୍କୁ ପଚାରିଲି ଆପଣ ବିଭିନ୍ନ ଦେଶ ବିଦେଶ ବୁଲିଛନ୍ତି । ଅନ୍ୟ ଦେଶର ବିଶ୍ୱବିଦ୍ୟାଳୟମାନଙ୍କରେ ଛାତ୍ର ବିଶୃଙ୍ଖଳା ରହିଛି କି ନାହିଁ ? ସେ କହିଲେ ଯେ ଏ ପ୍ରକାରର କାର୍ଯ୍ୟ କେଉଁଠାରେ ଦେଖି ନାହାନ୍ତି । ଛାତ୍ରମାନେ ସେମାନଙ୍କର କିଛି ଅଭିଯୋଗ କରିବାର ଥିଲେ ଲିଖିତ ଭାବେ ଜଣାଇବେ, ଆଇନକୁ ହାତକୁ ନେବେ ନାହିଁ । ତେବେ ପାଶ୍ଚାତ୍ୟ ଦେଶମାନଙ୍କରେ ନାଗରିକ ଶୃଙ୍ଖଳା ଓ ଛାତ୍ରମାନଙ୍କର ସାମାଜିକ ଚେତନାର ସ୍ତର ବହୁତ ଉଚ୍ଚ । ଯେଉଁ ଛାତ୍ରମାନେ ଉଚ୍ଚ ଶିକ୍ଷା ପାଇଁ ବିଶ୍ୱବିଦ୍ୟାଳୟକୁ ଆସନ୍ତି ସେମାନେ ନିଜର ଅଧ୍ୟୟନ, ଗବେଷଣା ଇତ୍ୟାଦିରେ ପ୍ରାୟ ବ୍ୟସ୍ତ ରହନ୍ତି । ତା ସହିତ ବିଶ୍ୱବିଦ୍ୟାଳୟମାନ ସ୍ୱୟଂଶାସିତ ହୋଇଥିବାରୁ କୌଣସି ବିଦ୍ୟାର୍ଥୀଙ୍କର କୌଣସି ମନ୍ଦ ଆଚରଣ ଯଦି କର୍ତ୍ତୃପକ୍ଷଙ୍କ ସମ୍ମୁଖକୁ ଆସେ, ତେବେ ତାଙ୍କୁ ସେଠାରୁ ସହଜରେ ବାହାର କରି ଦିଆଯାଇ ପାରେ, ଯଦ୍ୱାରା ସେ ଉଚ୍ଚଶିକ୍ଷାରୁ ସବୁଦିନ ପାଇଁ ବଞ୍ଚିତ ହୁଏ । ରାସ୍ତା ବନ୍ଦ କରିବା, ଗାଡ଼ି ମଟର ବନ୍ଦ କରି ଜନଜୀବନକୁ ବିପର୍ଯ୍ୟସ୍ତ କରିଦେବା, ଆଇନକୁ ହାତକୁ ନେବା ଇତ୍ୟାଦି ଘଟଣା ପାଶ୍ଚାତ୍ୟ ଦେଶମାନଙ୍କରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତେବେ ଆମର ସାମାଜିକ ଦୃଶ୍ୟପଟ ? ଯେ କୌଣସି ଘଟଣାକୁ ଆଳ କରି ବନ୍ଦ ଡାକରା ଦେବା ତ ଆମ ଜନଜୀବନର ସାଧାରଣ ଘଟଣା । ଗୋଟିଏ କ୍ଷେତ୍ରରେ ନିଜର ପ୍ରଭୁତ୍ୱ ବିସ୍ତାର କରି ଅନ୍ୟ କ୍ଷେତ୍ରରେ ନିଜକୁ ଅସହାୟ ମନେ କରିବା ଆମର ନିତିଦିନର ଅନୁଭୂତି । ଆଉ ଆଇନକୁ ହାତକୁ ନେବା କେଉଁ ପ୍ରକାରର ମାନସିକତା ? ଜାତୀୟ ସମ୍ପତ୍ତିକୁ ନଷ୍ଟ କରିବା ବେଳେ କୌଣସି ବିବେକର ଦଂଶନ ଆମେ ପାଉ କି ?

ଏହା ସହିତ ଦୁର୍ନୀତି ଓ ପରିଣାମତଃ ଅସହାୟତାବୋଧ ଆମ ସାମାଜିକ ଜୀବନର ସାଧାରଣ ଘଟଣା । ଜଣେ ଶୁଳ୍କ କର୍ମଚାରୀ ଦୋକାନୀ ପାଖରେ କର୍ତ୍ତୃତ୍ୱ ବିସ୍ତାର କରୁଥିବା ବେଳେ ଡାକ୍ତରଖାନାରେ ନିଜର ଚିକିତ୍ସା ପାଇଁ ଅସହାୟ ହୋଇ ପଡ଼ିଥାଏ । ଡାକ୍ତର ରୋଗୀ ପାଖରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ବେଳେ ନିଜର ନ୍ୟାୟୋଚିତ ବଦଳିଟିଏ ପାଇଁ ନାନା ଅସୁବିଧାର ସମ୍ମୁଖୀନ ହୋଇଥାଏ । କ୍ଷମତାରେ ରହିଥିବା ବ୍ୟକ୍ତି କ୍ଷମତାର ଅପବ୍ୟବହାର କରି ଜଣେ ଯନ୍ତ୍ରୀଠାରୁ ଲାଞ୍ଚ ନିଏ । ଯନ୍ତ୍ରୀ ନିଜର ରାଜନୈତିକ ଅଧିକାରୀକୁ ଲାଞ୍ଚ ଦେଇ ଠିକାଦାରଠାରୁ ଉତ୍କୋଚ ଦାବି କରେ । ଠିକାଦାର ଅନ୍ୟକୁ ଲାଞ୍ଚ ଦେଇ ନିମ୍ନମାନର କାମ କରିଥାଏ । ଏହିପରି ବହୁ ଦୃଷ୍ଟାନ୍ତ ଜନଜୀବନରୁ ଦିଆଯାଇପାରେ ।

ଅନ୍ୟଦ୍ୱାରା ପ୍ରତାରିତ ହୋଇ ପ୍ରତିବଦଳରେ ଅନ୍ୟକୁ ପ୍ରତାରଣା କରିବା ସାଧାରଣ ଜୀବନଧାରାରେ ପରିଣତ ହୋଇଛି ।

ସମାଜରେ ଅଧିକାଂଶ ନାଗରିକ ଯଦି କେତେକ ଶୃଙ୍ଖଳା ପ୍ରତି ସମ୍ପୂର୍ଣ୍ଣ ସ୍ପର୍ଶକାତରଶୂନ୍ୟ ହୁଅନ୍ତି, ତେବେ ତା ଦ୍ୱାରା ସମାଜର ଗୁଣାତ୍ମକ ମାନ ଅତି ନ୍ୟୂନ ହୋଇ ରହିବାକୁ ବାଧ୍ୟ । ଯେଉଁଠି ବ୍ୟକ୍ତିବିଶେଷ ବୃହତ୍ତର ସାମାଜିକ ବ୍ୟବସ୍ଥା ଉପରେ ନିର୍ଭର କରିପାରେ ନାହିଁ ସେଠାରେ ଭୟ ଓ ଅସହାୟବୋଧ ହେତୁ ସେ ଧାର୍ମିକ କର୍ମକାଣ୍ଡ ଇତ୍ୟାଦିରେ ସମ୍ପୃକ୍ତ ହୁଏ । ସେହିପରି ଅନେକ ପ୍ରତିପତ୍ତି ଓ କ୍ଷମତାଧାରୀ ଲୋକେ କୁସଂସ୍କାର ଯୋଗୁ ଧର୍ମଭୀରୁ ହେଉଥିବାର ଆମେ ଦେଖୁ ।

ସରକାରଙ୍କ ପାଖରେ ନିଜର ଆୟର ସଠିକ୍ ହିସାବ ଦାଖଲ ନ କରି ଆୟକର ଫାଙ୍କିବା ଅଥଚ ପୂଜାସ୍ଥଳ ପାଇଁ ଦାନ ଦେବା, ସରକାରୀ ଜିନିଷକୁ ଆତ୍ମସାତ୍ କରିବା ଅଥଚ କେଉଁ ପୂଜା ପାର୍ବଣ ପାଇଁ ଚନ୍ଦା ଦେବା ଇତ୍ୟାଦି ଆମ ଜନଜୀବନର ସାଧାରଣ ଘଟଣା । ଅଧିକାଂଶ ତଥାକଥିତ ଧର୍ମାନୁଷ୍ଠାନ ଓ ବାବାମାନଙ୍କର ପ୍ରତିଷ୍ଠାନ ପଶ୍ଚାତ୍‌ରେ ଯେ ବହୁ ଦୁର୍ନୀତିଯୁକ୍ତ ଆୟର ଅବଦାନ ରହିଛି, ଏହା ନିଃସନ୍ଦେହ । ଯେତେ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟରେ ଲିପ୍ତ ହେଲେ ମଧ୍ୟ ଧର୍ମାନୁଷ୍ଠାନରେ ସମ୍ପୃକ୍ତ ବ୍ୟକ୍ତିବିଶେଷ ସାମାଜିକ ଜୀବନରେ ନିଜର ସମ୍ମାନ ହରାଏ ନାହିଁ । ଏହା ନାଗରିକ ସଚେତନତା କ୍ଷେତ୍ରରେ ଯେ ଏକ ବଡ଼ ବିଡ଼ମ୍ବନା, ସେଥିରେ ଦ୍ୱିରୁକ୍ତି ନାହିଁ । ସେହିପରି ଅନେକ ଧର୍ମାଚରଣ ଏବଂ କର୍ମକାଣ୍ଡ ବେଳେ ଲୋକେ ସାମାଜିକ ଶୃଙ୍ଖଳା ବା ପରିବେଶ ପ୍ରତି ବିଶେଷ ସଚେତନତା ପ୍ରକାଶ କରନ୍ତି ନାହିଁ । ଏହି ପ୍ରକାର ଦୃଷ୍ଟାନ୍ତ ଜନଜୀବନର ଅତି ସାଧାରଣ ଘଟଣା ଅଟେ । କେଉଁ ଦିଅଁଙ୍କ ପାଖରେ ଜଳ ଢାଳିବାକୁ ଯିବା ବେଳେ ଆମେ ଟ୍ରାଫିକ୍ ଶୃଙ୍ଖଳା ନ ମାନିବା, ପୂଜା ପୀଠରେ ପ୍ରାର୍ଥନା ପାଇଁ ଅତି ଉଚ୍ଚ ସ୍ୱରରେ ମାଇକ୍‌ରେ ଗାନ କରିବା, କୌଣସି ପୂଜା ସମୟରେ ଆଲୋକ ସଜ୍ଜା ପାଇଁ ହୁକ ପକାଇ ବିଜୁଳିର ଅପବ୍ୟବହାର କରିବା, ପିଣ୍ଡଦାନ କରି ସେଥିର ବ୍ୟବହୃତ ଜିନିଷକୁ ପୁଷ୍କରିଣୀରେ ନିକ୍ଷେପ କରି ଜଳକୁ ଦୂଷିତ କରିବା ଇତ୍ୟାଦି ଆମ ଜନଜୀବନର ସାଧାରଣ ଘଟଣା । ଜଣେ ଶିକ୍ଷିତ ବ୍ୟକ୍ତି ମଧ୍ୟ ଏସବୁ କରିବା ବେଳେ ବିବେକର କୌଣସି ଦଂଶନ ପାଇ ନଥାଏ ।

ସେହିପରି ବ୍ୟକ୍ତି ମର୍ଯ୍ୟାଦାର ସ୍ତର ଆମ ସମାଜରେ କେଉଁଠି ? ସାମନ୍ତବାଦୀ ମାନସିକତାରୁ ଆମେ କେତେଦୂର ମୁକ୍ତ ? ବିଭିନ୍ନ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ର୍‍ୟାଗିଂ ସମସ୍ୟାକୁ ନେଇ ଦେଶର ରାଷ୍ଟ୍ରପତି ଓ ସର୍ବୋଚ୍ଚ ନ୍ୟାୟାଳୟ ଗଭୀର ଚିନ୍ତା ପ୍ରକଟ କରିବା ପରେ ଏହାକୁ ବନ୍ଦ କରିବା ପାଇଁ ଆମ ଦେଶରେ ଆଇନ ହୋଇଛି । ପ୍ରଥମ ବର୍ଷ ଗୋଟିଏ ଶିକ୍ଷାନୁଷ୍ଠାନରେ ନିଜକୁ ଅସହାୟ ମନେ କରୁଥିବା ଛାତ୍ରମାନେ ଉପର ଶ୍ରେଣୀକୁ ଗଲାପରେ ଅନ୍ୟକୁ ର୍‍ୟାଗିଂ ଜନିତ ଲାଂଛନା ଦେବା କେଉଁ ପ୍ରକାରର ମାନସିକତା ? ଗୋଟିଏ ପରିସ୍ଥିତିରେ ନିଜକୁ ଅସହାୟ ମନେ କରୁଥିବା ବ୍ୟକ୍ତି ସୁଯୋଗ ପାଇଲେ

ନିଜର ପ୍ରଭୁତ୍ୱ ବିସ୍ତାର କରି ଅନ୍ୟକୁ ଶୋଷଣ କରିବା ଓ ଆଇନକୁ ହାତକୁ ନେବା ଆମ ଜନଜୀବନର ନିତିଦିନିଆ ଘଟଣା ।

ତେବେ ଏହି ସ୍ଥିତିରେ ପରିବର୍ତ୍ତନ କିପରି ସମ୍ଭବ ? ଧର୍ମବିଶ୍ୱାସ, ପ୍ରାର୍ଥନା ଓ ବିଅଁ ଦେବତାର ଆରାଧନା ଦ୍ୱାରା ସାମାଜିକ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିବ ନାହିଁ । ଏସବୁ ପାରମ୍ପରିକ ଜୀବନଶୈଳୀ ଏକ ମହତ୍ତର ଜୀବନ ପାଇଁ ବ୍ୟକ୍ତିକୁ ପ୍ରେରଣା ଦିଏ ନାହିଁ । ହୁଏତ ସ୍ଥଳ ବିଶେଷରେ ପରମ୍ପରାର ପ୍ରଭାବଜନିତ ଦୃଷ୍ଟିକୋଣରୁ କେବଳ ମନସ୍ତାତ୍ତ୍ୱିକ ଶାନ୍ତି ସାମୟିକ ସମୟ ପାଇଁ ମିଳିଥାଏ । ଏସବୁ ଯଦି ଗୁଣାତ୍ମକ ଜୀବନ ପାଇଁ ପ୍ରେରଣା ଦେଉଥାନ୍ତା, ତେବେ ସାମାଜିକ ଶୃଙ୍ଖଳା କ୍ଷେତ୍ରରେ ଏତେ ନୈତିକ ଅବକ୍ଷୟ ପରିଲକ୍ଷିତ ହୁଅନ୍ତା ନାହିଁ । ଅପର ପକ୍ଷରେ ମାନବିକ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଗୁଣାତ୍ମକ ଜୀବନର ମାନଦଣ୍ଡ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାମାଜିକ ପରିବର୍ତ୍ତନ କଳ୍ପିତ ବିଅଁ ଦେବତାର ଆଶୀର୍ବାଦରୁ ସମ୍ଭବ ହେବ ନାହିଁ । ବରଂ ଉଚ୍ଚ ନାଗରିକ ଶୃଙ୍ଖଳାବୋଧ, ମାନବିକ ମର୍ଯ୍ୟାଦା ପ୍ରତି ସମ୍ମାନବୋଧ ଓ ନିଜର କାର୍ଯ୍ୟ କ୍ଷେତ୍ରରେ ଉତ୍ତରଦାୟିତ୍ୱବୋଧ ଉନ୍ନତ ଜୀବନର ମାନଦଣ୍ଡ । ଯେଉଁ ସମାଜରେ ଏହି ସଚେତନତାର ସ୍ତର ଯେତେ ଉଚ୍ଚରେ, ତାହା ହିଁ ସେତେ ଅଧିକ ସଭ୍ୟ ଓ ଅଧିକ ସଂସ୍କୃତିସମ୍ପନ୍ନ । ବିଡ଼ମ୍ବନାର ବିଷୟ ସାମାଜିକ ବାସ୍ତବତା ପ୍ରତି ଉଦାସୀନ ରହି ଧର୍ମଧ୍ୱଜାଧାରୀ ବାବାମାନେ ଆମକୁ ପର ଜୀବନର ବାର୍ତ୍ତା ଦିଅନ୍ତି । ଆମର ସଂସ୍କୃତିକୁ ଆଧ୍ୟାତ୍ମିକ କହି ଆତ୍ମସନ୍ତୋଷ ଲାଭ କରନ୍ତି । ଅଥଚ ଆମର ସାମାଜିକ ଜୀବନ ପ୍ରବାହରେ ଉଚ୍ଚ ନାଗରିକ ଶୃଙ୍ଖଳାବୋଧ ବା ପନ୍ଥାର ପବିତ୍ରତା ଉପରେ କୌଣସି ଗୁରୁତ୍ୱ ଦିଅନ୍ତି ନାହିଁ । ଏହା ଆତ୍ମପ୍ରତାରଣା ନୁହେଁ କି ? ସମାଜର ଜୀବନ ପ୍ରବାହକୁ ଉନ୍ନତ କରିବାକୁ ହେଲେ ଉଚ୍ଚ ଶୃଙ୍ଖଳାଜ୍ଞାନ ଓ ନାଗରିକ କର୍ତ୍ତବ୍ୟବୋଧ ପ୍ରତି ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ । ତାହେଲେ ସମାଜର ନୈତିକ ଉତ୍ତରଣ ସମ୍ଭବ ହେବ । ଏହା ଏକ ଉନ୍ନତ ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ଆମର ସାମାଜିକ ଜୀବନ ପ୍ରବାହକୁ ଉନ୍ନତ କରିବାକୁ ହେଲେ ସାମାଜିକ ସଚେତନତାକୁ ପ୍ରାଧାନ୍ୟ ଦେବାକୁ ହେବ । ଏକ ଉନ୍ନତ ସାମାଜିକ ପରିବେଶର ବିକାଶ ପାଇଁ ଆମର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆବଶ୍ୟକ । (ସମ୍ବାଦ - ୫.୧୧.୦୯)



# ଚିନ୍ତା ରାଜ୍ୟର ବିପ୍ଳବୀ

ସଭ୍ୟତାର ପଥପ୍ରଦର୍ଶକ ହୋଇଥିବା ଅଳ୍ପ କିଛି ଯୋଗଜନ୍ମା ବ୍ୟକ୍ତିବିଶେଷଙ୍କ ଭିତରୁ ସକ୍ରେଟିସ୍ ଅନ୍ୟତମ । ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ବଞ୍ଚିଥିଲେ ଏହି ବ୍ୟକ୍ତି । ଜଣେ ମହାନ୍ ପ୍ରତିଭାଧର ବ୍ୟକ୍ତିଙ୍କୁ ଜାଣିବାର ମୁଖ୍ୟ ଆଧାର ହେଉଛି ତାଙ୍କର ଅବଦାନ, କିନ୍ତୁ ପ୍ରହେଳିକାର ବିଷୟ ସକ୍ରେଟିସ୍ ନିଜେ କିଛି ଲେଖିନାହାନ୍ତି । ତାଙ୍କୁ ଜାଣିବାର ମୁଖ୍ୟ ଉତ୍ସ ହେଉଛି ପ୍ଲେଟୋଙ୍କର ରଚନା । ପ୍ଲେଟୋ ଥିଲେ ସକ୍ରେଟିସ୍‌ଙ୍କର ଅନୁଗାମୀ ଓ ତାଙ୍କର ରଚନା ଭିତରେ ସକ୍ରେଟିସ୍‌ଙ୍କ ଜୀବନର ଘଟନା ଓ ବିଚାରର ମୂଳ ତତ୍ତ୍ୱ ନିହିତ ।

ସକ୍ରେଟିସ୍‌ଙ୍କ ଯୁଗରେ ଗ୍ରୀସ୍‌ରେ ବହୁ ପ୍ରତିଭାଧର ମଣିଷଙ୍କର ଆବିର୍ଭାବ ହୋଇଥିଲା । ସାହିତ୍ୟ, କଳା, ଦର୍ଶନ, ନୀତିଶାସ୍ତ୍ର, ଗଣିତ, ରାଜନୀତି ପରି ବହୁ ସ୍ତରରେ ଗ୍ରୀକ୍‌ମାନଙ୍କର ମୌଳିକ ଅବଦାନ ଯୁଗ ଯୁଗ ଧରି ମଣିଷ ସମାଜକୁ ପ୍ରେରଣା ଯୋଗାଇଛି । ମଣିଷ ଜାତିର ଚିନ୍ତାମାନସ ଗ୍ରୀକ୍‌ମାନଙ୍କ ଅବଦାନ ଦ୍ୱାରା ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇଛି । ଏପରିକି ଆଧୁନିକ ମଣିଷକୁ ପ୍ରେରଣା ଦେଲା ଭଳି ବହୁ ଉପାଦାନ ଗ୍ରୀକ୍ ସଭ୍ୟତାରେ ନିହିତ ରହିଛି । ବହୁ ପ୍ରତିଭାଧର ଓ ମୌଳିକ ଚିନ୍ତକମାନଙ୍କୁ ଜନ୍ମ ଦେଇ ସଭ୍ୟତାର ବିକାଶଧାରାରେ ଗ୍ରୀକ୍‌ମାନେ ପଥ ପ୍ରଦର୍ଶକ ହୋଇଛନ୍ତି । ସେହି ଚିନ୍ତକମାନଙ୍କ ମଧ୍ୟରେ ସକ୍ରେଟିସ୍ ହେଉଛନ୍ତି ଏକ ଅନନ୍ୟ ପ୍ରତିଭା ଓ ମହନୀୟ ବ୍ୟକ୍ତିତ୍ୱ ।

ଦାର୍ଶନିକମାନେ ପ୍ରାୟତଃ ବୌଦ୍ଧିକ ଅନୁସନ୍ଧିତ୍ସୁ । ଅନୁସନ୍ଧିତ୍ସା ଜ୍ଞାନର ବିକାଶର ପ୍ରଥମ ସୋପାନ । ଜ୍ଞାନର ଆରମ୍ଭ ହୁଏ ବିସ୍ମୟରୁ, କୌତୂହଳରୁ ଓ ବିଚାରଶୀଳତାରୁ । ସକ୍ରେଟିସ୍‌ଙ୍କ ମହତ୍ତ୍ୱ ହେଉଛି ସେ ସର୍ବଦା ନିଜର ଅଜ୍ଞତାକୁ ସ୍ୱୀକାର କରୁଥିଲେ । ସେ ସଚେତନ ଥିଲେ ଯେ ସେ ହେଉଛନ୍ତି ଅଜ୍ଞ । ମଣିଷ ଯେତେବେଳେ ନିଜର ଅଜ୍ଞତାକୁ ଉପଲବ୍ଧି କରେ ସେ ଜ୍ଞାନ ପାଇଁ କୌତୂହଳୀ ହୁଏ । ସକ୍ରେଟିସ୍‌ଙ୍କର ବୌଦ୍ଧିକ କୌତୂହଳତା ଯୋଗୁ ସେ ହାଟ, ବଜାର ଓ ଯେକୌଣସି ଜନସମାଗମରେ ଲୋକମାନଙ୍କୁ ନାନା ପ୍ରଶ୍ନ ପଚାରୁଥିଲେ । ପ୍ରଶ୍ନ ପଚାରି ଲୋକମାନଙ୍କୁ କୌତୂହଳୀ କରିବା, ବିଚାରଶୀଳ ବା ଅନୁସନ୍ଧିତ୍ସୁ ହେବାକୁ ପ୍ରେରଣା ଦେବା ତାଙ୍କର ଜୀବନବ୍ୟାପୀ ଲକ୍ଷ୍ୟ ହୋଇ ରହିଥିଲା ।

ସକ୍ରେଟିସ୍ ଯେଉଁ ସବୁ ପ୍ରଶ୍ନ ଉଠାଇ ଲୋକମାନଙ୍କୁ ବିଚାରଶୀଳ ବା ଅନ୍ତର୍ମୁଖୀ କରିବାକୁ ପ୍ରୟାସ କରୁଥିଲେ, ସେସବୁ ମଧ୍ୟରେ ଦୁଇଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରଥମତଃ

ଏକ ଉତ୍ତମ ବା ଉତ୍କୃଷ୍ଟ ଜୀବନର ମାନଦଣ୍ଡ କ'ଣ ? ଅର୍ଥାତ୍ ଜୀବନର ଗୁଣାତ୍ମକ ମୂଲ୍ୟ ଓ ଉତ୍କୃଷ୍ଟତା କେଉଁଥିରେ ନିହିତ ? ଦ୍ୱିତୀୟତଃ ସାମାଜିକ ନ୍ୟାୟର ସ୍ୱରୂପ କ'ଣ ଓ ସମାଜରେ ତାହା କିପରି ଉପଲବ୍ଧ ? ସାମୂହିକ ଜୀବନ ପ୍ରବାହ ଭିତରେ ଗୁଣାତ୍ମକ ଜୀବନର ଅଭିବ୍ୟକ୍ତି ପାଇଁ କାହା ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ ?

ଯୁକ୍ତି କରିବାର କଳାରେ ସେ ଥିଲେ ନିପୁଣ । ସତ୍ୟ, ନ୍ୟାୟ, ଜ୍ଞାନ, ଉତ୍କୃଷ୍ଟତା, ସୌନ୍ଦର୍ଯ୍ୟ ଇତ୍ୟାଦି ବିଷୟରେ ସେ ପ୍ରଶ୍ନ ପଚାରି ତାହା କ'ଣ ବୋଲି ଜାଣିବାକୁ ଚାହୁଁଥିଲେ । ତେବେ ଉତ୍ତରଦାତା ଏସବୁ ପ୍ରସଙ୍ଗ ଉପରେ ଯେଉଁ ଉତ୍ତର ଦେଉଥିଲେ ସେ ତାଙ୍କୁ ଆଉ କେତୋଟି ପ୍ରଶ୍ନ ପଚାରି ଏପରି ହତଭମ୍ବ କରି ଦେଉଥିଲେ ଯେ ଉତ୍ତରଦାତା ପରସ୍ପର ବିରୋଧୀ ମତ ଦେଉଥିଲେ । ସକ୍ରେଟିସ୍ ଏହିପରି ଲୋକମାନଙ୍କର ଅଜ୍ଞତାକୁ ସ୍ପଷ୍ଟ କରି ଦେଉଥିଲେ ଓ ଏସବୁ ବିଷୟରେ ଗଭୀର ମନନିବେଶ କରିବାକୁ ଆହ୍ୱାନ ଦେଉଥିଲେ । ସବୁ ସ୍ତରରେ ଯୁକ୍ତିଯୁକ୍ତ ବିଚାର ଓ ସମ୍ଭବତଃ ଏକ ସାର୍ବଜନୀନ ସଂଜ୍ଞାରେ ଉପନୀତ ହେବାକୁ ସେ ପ୍ରୟାସ କରୁଥିଲେ । ସକ୍ରେଟିସ୍‌ଙ୍କର ଏହି ପ୍ରଣାଳୀକୁ ଦାର୍ଶନିକ ପରିଭାଷାରେ 'ଧାଈ ପ୍ରଣାଳୀ' ବୋଲି ସାଧାରଣତଃ କୁହାଯାଇଥାଏ । ଅତୀତରେ ଜଣେ ଧାଈ ଯେପରି ପ୍ରସବରେ ସାହାଯ୍ୟ କରିଥାଏ, ପ୍ରସବ ବେଦନାକୁ ଦୂର କରି ଏକ ସନ୍ତାନକୁ ଭୂମିଷ୍ଠ କରିବାରେ ସହଯୋଗୀ ହୋଇଥାଏ, ସେହିପରି ସକ୍ରେଟିସ୍ ବୌଦ୍ଧିକ ସ୍ତରରେ ନୂତନ ବିଚାରକୁ ଜନ୍ମ ଦେବାର ବାଟ ଦେଖାଇଛନ୍ତି । ମାନସିକ ସ୍ତରରେ ବୌଦ୍ଧିକ ଯନ୍ତ୍ରଣାକୁ ଦୂର କରି ନୂତନ ବିଚାରର ଅଭ୍ୟୁଦୟ ପାଇଁ ସେ ହିଁ ପଥ ବାହାର କରିବାକୁ ପ୍ରୟାସ କରିଥିଲେ । ଦାର୍ଶନିକ ଓ ହେତୁବାଦୀମାନେ ସବୁ ଯୁଗରେ ବୌଦ୍ଧିକ ଉତ୍ତରଣରେ ମୁଖ୍ୟ ଭୂମିକା ନେଇଛନ୍ତି । ସେମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ସକ୍ରେଟିସ୍ ।

ସକ୍ରେଟିସ୍‌ଙ୍କ ସମସାମୟିକ ଗ୍ରୀସ୍‌ରେ ଅନ୍ତତଃ ବୌଦ୍ଧିକ ସ୍ତରରେ ଏହି ଭାବନା ଆସି ସାରିଥିଲା ଯେ ମଣିଷ ହିଁ ତାର ପ୍ରୟାସ ଓ ପ୍ରଚେଷ୍ଟା ଦ୍ୱାରା ସମାଜକୁ ସୁନ୍ଦର କରିପାରିବ । ବିଶାଳ ପ୍ରକୃତିକୁ ଜାଣିବା ଓ ତାର ରହସ୍ୟକୁ ଉନ୍ମୋଚନ କରିବାର ଏକ ବୌଦ୍ଧିକ ବାତାବରଣର ଭିତ୍ତି ସେଠାରେ ପଡ଼ିଥିଲା । ଜୀବନର ଘନଘଟା, ରୋଗବ୍ୟାଧି ଓ ପ୍ରାକୃତିକ ଘଟଣାର କାରଣ ସବୁକୁ ବ୍ୟାଖ୍ୟା କରିବା ପାଇଁ ଏକ ମୁକ୍ତ ମନ ପୋଷଣ କରି ପ୍ରକୃତିକୁ ଅନୁଧ୍ୟାନ କରିବା ଆବଶ୍ୟକ । କୌଣସି ଘଟଣାର କାରଣକୁ ଜାଣିବା ପାଇଁ କେଉଁ କଳ୍ପିତ ଦିଅଁ ଦେବତାଙ୍କୁ ପ୍ରାର୍ଥନା କରିବା ଅଜ୍ଞତା, ନିର୍ବୋଧତା । ଏହାଦ୍ୱାରା ସମାଜର ପ୍ରଗତି ହେବ ନାହିଁ ବା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିବ ନାହିଁ । ବରଂ ବିଚାରଶୀଳତା ଓ ଅନୁସନ୍ଧିତ୍ସୁ ମୁକ୍ତ ମନ ଦ୍ୱାରା ଜୀବନର ଓ ପ୍ରକୃତିର ରହସ୍ୟକୁ ଜାଣି

ହେବ । ତେବେ ବିଡ଼ମ୍ବନାର ବିଷୟ ଯେ ଯେତେବେଳେ ଧର୍ମଯାଜକ ବା ଧର୍ମଧ୍ୱଜାଧାରୀମାନେ ଜ୍ଞାନର ପ୍ରବକ୍ତା ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ସଭ୍ୟତାରେ ସଙ୍କଟ ଆସିଥାଏ । ଜନଗଣଙ୍କର ଅଜ୍ଞତାକୁ ଆଧାର କରି ଧର୍ମାଧୀଶମାନେ କେତେକେତେ ପାରଲୌକିକ ଘଟଣାର କାହାଣୀ ଶୁଣାଇ ଆସିଛନ୍ତି ଓ ସାମନ୍ତବାଦୀ ରାଜତନ୍ତ୍ରୀୟ ବ୍ୟବସ୍ଥାକୁ ଈଶ୍ୱରୀୟ ବିଧାନ ବୋଲି କହିଛନ୍ତି । ତାହାହିଁ ସଭ୍ୟତାର ଗୁଣାତ୍ମକ ବିକାଶ କ୍ଷେତ୍ରରେ ନକାରାତ୍ମକ ପରିଣାମ ସୃଷ୍ଟି କରିଛି । ଅପରପକ୍ଷରେ ମୁକ୍ତ ଚିନ୍ତକ ଓ ପ୍ରଜ୍ଞାବାନ ଦାର୍ଶନିକମାନେ ବିଚାରଶୀଳତା, ତର୍କସମ୍ମତ ଯୁକ୍ତି ଓ ବାସ୍ତବ ଅନୁଭୂତି ଆଧାରିତ ଜ୍ଞାନ ଉପରେ ପ୍ରାଧାନ୍ୟ ଦେଇ ଆସିଛନ୍ତି । ତେବେ ହେତୁବାଦୀ ବିଚାରକ ଓ ଦାର୍ଶନିକମାନଙ୍କର ସ୍ୱରକୁ ଧର୍ମର ଆଳରେ କଟ୍ଟରପନ୍ଥୀ ବା ମୌଳବାଦୀମାନେ ସର୍ବଦା ଦବାଇ ଆସିଛନ୍ତି । ବୌଦ୍ଧିକ ସ୍ୱାଧୀନତା କ୍ଷେତ୍ରରେ ଦାର୍ଶନିକମାନଙ୍କର ଚିନ୍ତାଧାରାକୁ ସେମାନେ ନାନା ଅଙ୍କୁଶ ଲଗାଇଛନ୍ତି । ଜଣେ ଜଣେ ସକ୍ରେଟିସ୍ ଚିନ୍ତା ଜଗତରେ ଯେଉଁ ଆଲୋଡ଼ନ ଆଣିଛନ୍ତି ଓ ବ୍ୟକ୍ତିର ବୌଦ୍ଧିକ ସ୍ୱାଧୀନତାର ଯେଉଁ ଜୟଗାନ କରିଛନ୍ତି, ତାହା ଏ ପର୍ଯ୍ୟନ୍ତ ବି ସବୁ ସମାଜରେ ଓ ସଂସ୍କୃତିରେ ଗୃହୀତ ହୋଇ ନାହିଁ । ଧର୍ମ, ପରମ୍ପରା ନାମରେ ଏବେ ବି ଆମ ସଂସାରରେ ସ୍ୱାଧୀନ ଚିନ୍ତା ଓ ବୌଦ୍ଧିକ ସ୍ୱାଧୀନତା କ୍ଷେତ୍ରରେ ପ୍ରତିବନ୍ଧକ ରହିଛି ।

ସକ୍ରେଟିସ୍‌ଙ୍କ ସମାଜ ପ୍ରତି ଆଉ ଏକ ମହାନ୍ ଅବଦାନ ହେଉଛି ନୈତିକ ଶୃଙ୍ଖଳା ପ୍ରତି ଅଙ୍ଗୀକାରବଦ୍ଧତା । ଜୀବନକୁ ଉନ୍ନତତର ସୋପାନକୁ ନେବାର ଯେଉଁ ଜିଜ୍ଞାସା ସକ୍ରେଟିସ୍‌ଙ୍କ ବିଚାରରେ ଛତ୍ରେ ଛତ୍ରେ ଦେଖିବାକୁ ମିଳେ, ତାହା ହେଉଛି ସତ୍ୟ, ମାନବିକତା ଓ ନୈତିକ ଆଦର୍ଶ ପ୍ରତି ପ୍ରତିବଦ୍ଧତା । ନୈତିକ ଆଚରଣ କେଉଁ ଈଶ୍ୱରୀୟ ନିର୍ଦ୍ଦେଶ ନୁହେଁ ବରଂ ଏହା ହେଉଛି ସାମାଜିକ ସମ୍ପର୍କ ପରିପ୍ରେକ୍ଷୀରେ ଜୀବନର ଅଭିଜ୍ଞତାଜନିତ ବିଚାରବୋଧ । ନୈତିକ ଆଚରଣ ସଭ୍ୟ ଜୀବନଧାରାର ଅଙ୍ଗ ବିଶେଷ କାରଣ ଏହା ସାମାଜିକ ଜୀବନକୁ ଉନ୍ନତ ଓ ପ୍ରୀତିପ୍ରଦ କରିବାକୁ ଉଦ୍ଦିଷ୍ଟ । ଏହା ମଧ୍ୟ ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ମହତ୍ତର ଜୀବନ ଜିଜ୍ଞାସା ସହ ସଂଶ୍ଲିଷ୍ଟ । ଏହା କେଉଁ କଳ୍ପିତ ସ୍ୱର୍ଗପ୍ରାପ୍ତି, ମୁକ୍ତି ବା ମୋକ୍ଷ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ସାମାଜିକ ଜୀବନ ପ୍ରବାହକୁ ଉନ୍ନତ କରିବାକୁ ଅଭିପ୍ରେତ ।

ଗ୍ରୀସ୍‌ରେ ଯେଉଁ ନାଗରିକ ସମାଜର ବିକାଶ ସକ୍ରେଟିସ୍‌ଙ୍କ ପୂର୍ବରୁ ସୃଷ୍ଟି ହୋଇଥିଲା ସେହି ପୃଷ୍ଠଭୂମିରେ ନାଗରିକ ଜୀବନର ଶୃଙ୍ଖଳା ଓ ନ୍ୟାୟବିଚାର ନେଇ ସମାଜରେ ଯେଉଁସବୁ ଭାବନା ଆସିଥିଲା ସେ ସବୁକୁ ବିଚାରକୁ ନେଇ ସେ ସବୁ କ୍ଷେତ୍ରରେ ତାଙ୍କ ବିଚାରର ଛାପ ଛାଡ଼ି ଯାଇଛନ୍ତି । ଗଭୀର ଅନୁଶୀଳନ ଓ ଶାଣିତ ଯୁକ୍ତି

ଦ୍ୱାରା ସେ ସମାଜର ପ୍ରଚଳିତ ଆଦର୍ଶ, ମୂଲ୍ୟବୋଧ କ୍ଷେତ୍ରରେ ନୂତନ ଦିଗନ୍ତର ସୂତ୍ରପାତ କରାଇଛନ୍ତି । ବ୍ୟକ୍ତି ଜୀବନର ମୂଲ୍ୟ ଓ ବ୍ୟକ୍ତି ସ୍ୱାଧୀନତାକୁ ସ୍ୱୀକାର କରି ଆଇନକୁ ସମ୍ମାନ ପ୍ରଦର୍ଶନ କରିବାରେ ସେ ଯେଉଁ ବିଚାର ବ୍ୟକ୍ତ କରିଛନ୍ତି ତାହା ସଭ୍ୟ ଜୀବନ ପାଇଁ ପରବର୍ତ୍ତୀ ଯୁଗରେ ପଥପ୍ରଦର୍ଶକ ହୋଇଛି । ଜୀବନର ସମସ୍ତ ଘନଘଟା ଓ ପ୍ରାକୃତିକ ପ୍ରତିକୂଳତା ଭିତରେ ମଣିଷର ପ୍ରୟାସ ଦ୍ୱାରା ଜୀବନକୁ ନୈସର୍ଗିକ ଆନନ୍ଦର ସ୍ତରକୁ ଯେ ନେଇ ହେବ, ଏହି ଆଶା ଓ ସ୍ୱପ୍ନ ବ୍ୟକ୍ତ କରି ଆସିଛନ୍ତି ।

ଇତିହାସର ଏକ ବିଡ଼ମ୍ବନା ଯେ ଏହି ସତ୍ୟସନ୍ଧାନୀ ଓ ମହତ ଜୀବନର ପ୍ରବକ୍ତା ସକ୍ରେଟିସ୍‌ଙ୍କୁ ନାଗରିକ ସମାଜରୁ ମୃତ୍ୟୁଦଣ୍ଡ ମିଳିଥିଲା । ତାଙ୍କ ବିରୋଧରେ ଦୁଇଟି ଅଭିଯୋଗ ଆସିଥିଲା- ସେ ଯୁବକମାନଙ୍କୁ ପଥଭ୍ରଷ୍ଟ ବା ବିପଥଗାମୀ କରାଉଛନ୍ତି ଓ ସେ ରାଷ୍ଟ୍ରର ଦେବତାମାନଙ୍କୁ ବିଶ୍ୱାସ କରୁନାହାନ୍ତି । ବିଚାରାଳୟରେ ସକ୍ରେଟିସ୍ ନିଜ ସପକ୍ଷରେ ଯୁକ୍ତି ବାଢ଼ିଥିଲେ ଯେ ସେ କେବେହେଲେ ଜୀବନରେ କୌଣସି ଅନ୍ୟାୟ କରିନାହାନ୍ତି । ଜୀବନର ଜଟିଳ ପରିସ୍ଥିତିରେ ମଧ୍ୟ ନିଜର ଆଦର୍ଶ ଓ ଆତ୍ମବିଶ୍ୱାସରୁ ସାମାନ୍ୟତମ ଟଳି ନାହାନ୍ତି । ତାଙ୍କ ଅବଦାନ ଉପରେ ସମୀକ୍ଷା ଲେଖିଥିବା ଲେଖକଗଣ ସକ୍ରେଟିସ୍‌ଙ୍କ ମୃତ୍ୟୁର କୌଣସି ଯୁକ୍ତିଯୁକ୍ତ କାରଣ ପାଇନାହାନ୍ତି । ଏକ ଉଦାରବାଦୀ ନାଗରିକ ଓ ଗଣତନ୍ତ୍ରିକ ସମାଜରେ ତାଙ୍କର ମୃତ୍ୟୁଦଣ୍ଡ ସବୁଦିନ ପାଇଁ ଏକ କଳଙ୍କ ହୋଇ ରହିଯାଇଛି ।

ଜ୍ଞାନ, ନ୍ୟାୟ ଓ ନୈତିକତାର ମହତ୍ତ୍ୱ ବୁଝିବା ପାଇଁ ସେ ଜୀବନସାରା କୌତୂହଳୀ ହୋଇଛନ୍ତି । କାରଣ ତାଙ୍କର ବିଶ୍ୱାସ ହୋଇଛି ଯେ ଏହା ହିଁ ସଭ୍ୟ ଜୀବନର ମାନଦଣ୍ଡ । ଜ୍ଞାନ ଜ୍ଞାନ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ଏକ ମହତ୍ତର ଜୀବନ ପାଇଁ ସାଧନ ମାତ୍ର । ସେହିପରି ନ୍ୟାୟ ଓ ନୈତିକତା ସମାଜର ପ୍ରାଣ ଓ ଏହା ଉପରେ ସାମୂହିକ ଜୀବନର ଗୁଣାତ୍ମକ ମହତ୍ତ୍ୱ ନିର୍ଭରଶୀଳ ।

ସକ୍ରେଟିସ୍ ଚିନ୍ତା ରାଜ୍ୟର ବିପ୍ଳବୀ ଓ ସଭ୍ୟ ଜୀବନଧାରାର ଜଣେ ପଥପ୍ରଦର୍ଶକ ଥିଲେ । ତାଙ୍କ ଜନ୍ମ ଦିବସକୁ ବିଶ୍ୱ ଦର୍ଶନ ଦିବସ ଭାବେ ପାଳନ କରିବା ଯେ ତାଙ୍କ ପ୍ରତି ଏକ ଆନ୍ତର୍ଜାତିକ ସ୍ୱୀକୃତି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । (ସମ୍ବାଦ - ୧୯.୧୧.୦୯)



# ମାନବିକ ଅଧିକାରର ବିଶ୍ୱ ଘୋଷଣା

ଆମେ ମୋକ୍ଷ ଚାହୁଁନା, ମର୍ଯ୍ୟାଦାର ସହ ବଞ୍ଚିବାକୁ ଚାହୁଁ, ଆମେ ସ୍ୱର୍ଗକୁ ଯିବାକୁ ଆଗ୍ରହୀ ନୋହୁଁ, ଆମେ ନୈସର୍ଗିକ ସୁଖ ଶାନ୍ତିରେ ବଞ୍ଚିବାକୁ ଚାହୁଁ ଏହି ପ୍ରକାରର ଏକ ଜୀବନଦର୍ଶନ ୟୁରୋପୀୟ ନବଜାଗରଣ ପରବର୍ତ୍ତୀ ଯୁଗରେ କେତେକ ହେତୁବାଦୀ ଦାର୍ଶନିକଙ୍କର ବିଚାର ଦେଇ ବିକାଶଲାଭ କଲା । ମଧ୍ୟଯୁଗୀୟ ମାନସିକତାରେ ଧର୍ମଶାସ୍ତ୍ର ଓ ପ୍ରଭାବଶାଳୀ ପୂଜକ ଗୋଷ୍ଠୀର ସମର୍ଥନରେ ଯେଉଁ ପାରଲୌକିକ ଜୀବନ ଦୃଷ୍ଟି ରହିଥିଲା, ତାହା ବିରୋଧରେ ଏହା ଥିଲା ଏକ ବୌଦ୍ଧିକ ବିପ୍ଳବ । ସପ୍ତଦଶ ଶତାବ୍ଦୀଠାରୁ ଆଧୁନିକ ବିଜ୍ଞାନର ବିକାଶପର୍ବ ଆରମ୍ଭ ହେଲା । ପରିଣାମତଃ ଜଗତ୍ ଓ ଜୀବନର ଅବବୋଧ ନେଇ ଯେଉଁ ବୈଚାରିକ ଆଲୋଡ଼ନଟି ସୃଷ୍ଟି ହେଲା, ତା'ର ପ୍ରଭାବରୁ ଯାବତୀୟ ଅନ୍ଧବିଶ୍ୱାସ, କୁସଂସ୍କାର ଓ ସମାଜର ନ୍ୟସ୍ତସ୍ୱାର୍ଥ ଅଧିକାରୀମାନଙ୍କ ବିରୋଧରେ ସ୍ୱର ଗୁଂଜରି ଉଠିଲା । ଯୁକ୍ତିର ସାର୍ବଭୌମତ୍ୱ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ହିଁ ସକଳ ଜ୍ଞାନାର୍ଜନ କ୍ଷେତ୍ରରେ ଓ ସାମାଜିକ ବିକାଶଧାରାରେ ଗୁରୁତ୍ୱପୂର୍ଣ୍ଣ ମନେ ହେଲା । କାଳକ୍ରମେ ଅଲୌକିକ ଭାବନା, ସ୍ୱର୍ଗ, ନରକ, ଆତ୍ମା, ପୁନର୍ଜନ୍ମ ଇତ୍ୟାଦି ସକଳ ଅତୀନ୍ଦ୍ରିୟ ବିଶ୍ୱାସ ଆଧାରହୀନ ବୋଲି ଚିନ୍ତାରାଜ୍ୟରେ କ୍ରମବର୍ଦ୍ଧିଷ୍ଣୁ ଭାବେ ସ୍ୱୀକୃତ ହେବାକୁ ଲାଗିଲା । ମଧ୍ୟଯୁଗୀୟ ଅପସିଦ୍ଧାନ୍ତ ବିରୋଧରେ ଆଧୁନିକ ଯୁଗରେ ପ୍ରତିବାଦର ସ୍ୱର ଆସ୍ତେ ଆସ୍ତେ ତୀବ୍ର ହୋଇ ଉଠିଲା । ଧର୍ମଗ୍ରନ୍ଥର ଯେତେ ସବୁ ଭାବନା ଆପ୍ତବଚନ ବୋଲି ବିଚାର ମଧ୍ୟଯୁଗରେ ବିଭିନ୍ନ ଧର୍ମଗୋଷ୍ଠୀରେ ରହି ଆସିଥିଲା ସେସବୁର ବୈଜ୍ଞାନିକ ବିଶ୍ଳେଷଣରୁ ସେ ସବୁ ଅସତ୍ୟ ବୋଲି ସ୍ୱୀକୃତ ହେଲା । ବୈଜ୍ଞାନିକ ପଦ୍ଧତିରେ ପର୍ଯ୍ୟବେକ୍ଷଣ ପରୀକ୍ଷଣ ଆଧାରିତ ଜ୍ଞାନ ହିଁ ଚିନ୍ତାରାଜ୍ୟରେ ଗୃହୀତ ହେବାକୁ ଲାଗିଲା । ବିଜ୍ଞାନର ଦିଗନ୍ତ ଯେତିକି ବିସ୍ତାରିତ ହୋଇ ଚାଲିଲା, ପ୍ରକୃତିର ବହୁ ରହସ୍ୟ ଓ ଜୀବନର ଘନଘଟା ନେଇ ମଣିଷର ଜ୍ଞାନ ସେତିକି ବ୍ୟାପକ ହେଲା । ୟୁରୋପୀୟ ନବଜାଗରଣ ଓ ନବସଂସ୍କାର ଯୁଗ ଠାରୁ ଚିନ୍ତାରାଜ୍ୟରେ ଯେଉଁ ବୈପ୍ଳବିକ ଆଲୋଡ଼ନ ସୃଷ୍ଟି ହେଲା, ତାହାର ନାନା ପ୍ରଭାବ ସମାଜର ସାଂସ୍କୃତିକ ପ୍ରଭାବରେ ପ୍ରତିଫଳିତ ହେବାକୁ ଲାଗିଲା ।

ମଧ୍ୟଯୁଗୀୟ ମାନସିକତାରେ ସମାଜରେ ମଧ୍ୟ ନାନା ବର୍ବରୋଚିତ ଘଟନା ଘଟୁଥିଲା । ଧର୍ମ ସମର୍ଥିତ ରାଜତନ୍ତ୍ର ଓ ସାମନ୍ତବାଦ ସେ ଯୁଗରେ ସାଧାରଣ ମଣିଷକୁ ନାନା ଭାବରେ ଶୋଷଣ କରି ରଖିଥିଲେ । ଅଗଣିତ ମହିଳାଙ୍କୁ ଅକଥନୀୟ ଯାତନା

ଭୋଗିବାକୁ ପଡୁଥିଲା । ଆମେରିକା ପରି ସମାଜରେ ନିଗ୍ରୋମାନଙ୍କ ପ୍ରତି ଅତ୍ୟାଚାର ଓ ଦାସତ୍ୱ ଅତ୍ୟନ୍ତ ଅମାନବିକ ଥିଲା । ଆଫ୍ରିକାରେ 'ଆପରଥେଡ଼' ପରି ଉତ୍କଟ ବର୍ଣ୍ଣବୈଷମ୍ୟ ଓ ଭାରତୀୟ ସମାଜରେ ଅସ୍ପୃଶ୍ୟତା ପରି ଜଘନ୍ୟତା ସାଙ୍ଗକୁ ଯୁଦ୍ଧ ବିଭୀଷିକା ବହୁ ଦେଶର ସାମାଜିକ ଜୀବନକୁ ବିପର୍ଯ୍ୟସ୍ତ କରିଥିଲା । ସାମ୍ରାଜ୍ୟବାଦର ବିସ୍ତାର ପାଇଁ ଶିଳ୍ପୋନ୍ନତ ଦେଶମାନଙ୍କ ଭିତରେ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଯୁଦ୍ଧର ବାତାବରଣ ରହିଥିଲା ।

ତେବେ କାଳକ୍ରମେ ୟୁରୋପୀୟ ନବସଂସ୍କାର ଯୁଗରେ ହେତୁବାଦୀ ଦାର୍ଶନିକ ଓ ଚିନ୍ତାନାୟକଙ୍କ ବିଚାର ମଧ୍ୟ ଦେଇ କେତେଗୁଡ଼ିଏ ସାର୍ବଜନୀନ ଭାବନାର ଉଦ୍ଭବ ହେଲା । ଗଣତନ୍ତ୍ର, ଧର୍ମନିରପେକ୍ଷତା ଓ ମାନବବାଦ ଜନିତ ବିଚାର ଆସ୍ତେ ଆସ୍ତେ ସଭ୍ୟ ଜୀବନର ମାନଦଣ୍ଡ ଭାବେ ସ୍ୱୀକୃତ ହେବାକୁ ଲାଗିଲା । ସଭ୍ୟତାର କ୍ରମବିକାଶ ଧାରାରେ ଏହି ମୂଲ୍ୟଚୟ ଗୁଡ଼ିକର ବାସ୍ତବ ପ୍ରତିଫଳନର ଆଧାର ଉପରେ ସମାଜର ସାଂସ୍କୃତିକ ଓ ଗୁଣାତ୍ମକ ମୂଲ୍ୟ ନିର୍ଭରଶୀଳ ହେଲା । ଯେଉଁ ରାଷ୍ଟ୍ର ଓ ସମାଜ ବ୍ୟବସ୍ଥାରେ ଏହି ମୂଲ୍ୟଚୟର ବିକାଶ ଯେତେ ଅଧିକ ହେଲା ତାହା ସେତିକି ଉନ୍ନତ, ପ୍ରଗତିଶୀଳ ଓ ସଭ୍ୟ ବୋଲି ସ୍ୱୀକୃତିଲାଭ କଲା ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଯୋଗୁଁ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ବିଂଶ ଶତାବ୍ଦୀ ଠାରୁ ଆରମ୍ଭ ହେଲା । ତେବେ ଦୁଇ ଦୁଇଟି ବିଶ୍ୱଯୁଦ୍ଧର ଭୟାନକ ପରିଣାମରେ ସାରା ପୃଥିବୀର ଶାନ୍ତିକାମୀ, ଦାର୍ଶନିକ ଓ ସ୍ୱାଧୀନ ଚିନ୍ତାନାୟକଗଣଙ୍କ ପ୍ରୟାସରୁ ବିଶ୍ୱ ଜାତିସଂଘ ପରି ଅନୁଷ୍ଠାନର ଉଦ୍ଭବ ହେଲା । ବିଶ୍ୱରେ ଶାନ୍ତି, ସ୍ଥିରତା, ସଦ୍‌ଭାବ ପାଇଁ ଆନ୍ତର୍ଜାତିକ ସ୍ତରରେ ଚେତନାର ବିକାଶ ହେଲା । ତାହାର ପରିଣାମରୁ ମାନବିକ ଅଧିକାର ଓ ମର୍ଯ୍ୟାଦା ନେଇ ବିଶ୍ୱ ଦରବାରରେ ନାନା ବିଚାରବିମର୍ଶର ସୂତ୍ରପାତ ହେଲା । ବସ୍ତୁତଃ ୧୯୪୮ ମସିହା ଡିସେମ୍ବର ୧୦ ଦିନ ମାନବିକ ଅଧିକାର ନେଇ ଏକ ବିଶ୍ୱ ଘୋଷଣାନାମାରେ ପୃଥିବୀର ୪୮ଟି ରାଷ୍ଟ୍ର ସ୍ୱାକ୍ଷର କଲେ । ଏହା ପୂର୍ବରୁ ନାଗରିକ ଅଧିକାର ଓ ମାନବିକ ମର୍ଯ୍ୟାଦା ଜନିତ ସଂସ୍କାର ଇଂଲଣ୍ଡ, ଫ୍ରାନ୍‌ସ ଓ ଆମେରିକା ପରି ଗଣତାନ୍ତ୍ରିକ ରାଷ୍ଟ୍ରର ରାଜନୈତିକ ସଂସ୍କୃତିରେ ଗୃହୀତ ହୋଇ ସାରିଥିଲା । ସେସବୁ ଆଧାରରେ ସମଗ୍ର ବିଶ୍ୱର ଜନସାଧାରଣଙ୍କ ପାଇଁ ମାନବିକ ଅଧିକାରର ଏକ ଦଲିଲ କାନାଡ଼ାର ବିଶିଷ୍ଟ ଆଇନଜ୍ଞ ଓ ମାନବିକ ଅଧିକାରର ପ୍ରବକ୍ତା ଜନ୍ ପିଟର ହଂପ୍ରେଙ୍କ ଦ୍ୱାରା ଜାତିସଂଘ ନିର୍ଦ୍ଦେଶରେ ପ୍ରସ୍ତୁତ କରାଗଲା ।

ମାନବିକ ଅଧିକାର ନେଇ ଯେଉଁ ଘୋଷଣାନାମାଜନିତ ଦଲିଲଟିକୁ ଆନ୍ତର୍ଜାତିକ ସ୍ତରରେ ଗ୍ରହଣ କରାଯାଇଛି, ସେଥିରେ ତିରିଶଟି ଧାରା ରହିଛି । ଜାତି, ଧର୍ମ, ବର୍ଣ୍ଣ,

ଲିଙ୍ଗ, ଜାତୀୟତା, ଭାଷା ଇତ୍ୟାଦିକୁ ଆଧାର କରି ପୃଥିବୀରେ ଯେଉଁ ବିଭେଦ ଓ ବିଦ୍ୱେଷର ବାତାବରଣ ହଜାର ହଜାର ବର୍ଷ ଧରି ରହି ଆସିଥିଲା, ସେ ସବୁକୁ ଅନୈତିକ ଓ ଅମାନବିକ ବୋଲି ଗ୍ରହଣ କରାଗଲା । ମଣିଷ ସମାଜରେ ଭ୍ରାତୃଭାବ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ସହନଶୀଳତା ଓ ସମତା ଇତ୍ୟାଦି ମୂଲ୍ୟଚୟକୁ ସାର୍ବଜନୀନ କରିବା ପାଇଁ ବିଶ୍ୱ ସ୍ତରରେ ବୌଦ୍ଧିକ ଚେତନା ସୃଷ୍ଟି ହେଲା । ଜାତି, ବର୍ଣ୍ଣ, ଲିଙ୍ଗ, ଜାତୀୟତା ଇତ୍ୟାଦିକୁ ଆଧାର କରି କୌଣସି ବ୍ୟକ୍ତି ଶୋଷିତ, ଅତ୍ୟାଚରିତ ବା ଭେଦଭାବର ସମ୍ମୁଖୀନ ହେବାକୁ ଅନ୍ୟାୟ ଓ ଅନୈତିକ ବୋଲି ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହେଲା । ପ୍ରତ୍ୟେକ ବ୍ୟକ୍ତି ମୁକ୍ତ ଓ ମର୍ଯ୍ୟାଦାର ସହ ବଞ୍ଚିବା ଯେ ତା'ର ଏକ ଅଧିକାର; ଏହି ପ୍ରକାରର ଦୃଷ୍ଟିଭଙ୍ଗୀ ମାନବିକ ଅଧିକାରର ମୂଳମନ୍ତ୍ର ହେଲା । ଅନ୍ୟ ପ୍ରତି ଆଚରଣ କ୍ଷେତ୍ରରେ ଅନ୍ୟକୁ ଭ୍ରାତୃତ୍ୱର ଭାବନାରେ ସମ୍ମାନ କରିବାକୁ ଏଥିରେ ଗୁରୁତ୍ୱ ଦିଆଗଲା । ସେହିପରି ବ୍ୟକ୍ତି ସ୍ୱାଧୀନତା, ସାମାଜିକ ନ୍ୟାୟ, ଆତ୍ମମର୍ଯ୍ୟାଦାକୁ ବ୍ୟକ୍ତିର ମୌଳିକ ଅଧିକାର ବୋଲି ଗ୍ରହଣ କରାଗଲା । ନିରାପଦ ଭାବେ ବଞ୍ଚିବା ଓ ନିଜର ସାମର୍ଥ୍ୟକୁ ବିକଶିତ କରାଇବାକୁ ଏଥିରେ ଗ୍ରହଣ କରାଗଲା । ଯେ କୌଣସି ପ୍ରକାରର ଦାସତ୍ୱ, ଉଚ୍ଚନୀଚ ଭେଦଭାବ ଏବଂ ନିଷ୍ଠୁରତାକୁ ନିନ୍ଦନୀୟ କରାଗଲା ଓ କୌଣସି ବ୍ୟକ୍ତିର ଆତ୍ମ ସମ୍ମାନ, ମର୍ଯ୍ୟାଦା ଓ ସ୍ୱାଭିମାନର ଉଲ୍ଲଂଘନକୁ ଅନ୍ୟାୟ ବୋଲି ବିଚାର କରାଗଲା । ପ୍ରାପ୍ତବୟସ୍କ ପୁରୁଷ ଓ ନାରୀ ସ୍ୱଇଚ୍ଛାରେ ବିବାହ କରିବା ଓ ପରିବାର ଗଠନ କ୍ଷେତ୍ରରେ ସ୍ୱାଧୀନତା ଲାଭ କରିବାକୁ ସ୍ୱୀକାର କରାଗଲା । ସାମାଜିକ ଜୀବନ ପ୍ରବାହରେ ପରିବାର ଏକ ସ୍ୱାଭାବିକ କେନ୍ଦ୍ରବିନ୍ଦୁ ହୋଇଥିବାରୁ ପ୍ରତ୍ୟେକ ପରିବାର ସାମାଜିକ ନିରାପତ୍ତା ପାଇବାର ଅଧିକାରକୁ ପ୍ରାଧାନ୍ୟ ଦିଆଗଲା । ସେହିପରି ବିଚାରଶୀଳତା, ବିବେକବୋଧ ଓ ନିଜର ବୌଦ୍ଧିକ ବିଚାରାଦର୍ଶରେ ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତାକୁ ସ୍ୱୀକାର କରାଗଲା । ପ୍ରତ୍ୟେକ ନାଗରିକ ନିଜ ଦେଶର ରାଜନୈତିକ ବ୍ୟବସ୍ଥାରେ ଅଂଶ ଗ୍ରହଣ କରିବାର ଅଧିକାରକୁ ମଧ୍ୟ ଗ୍ରହଣ କରାଗଲା । ପ୍ରତ୍ୟେକ ଶିଶୁ ସାମାଜିକ ସୁରକ୍ଷା ପାଇବା ତା'ର ଅଧିକାର ବୋଲି ଗ୍ରହଣ କରାଗଲା । ଏହିପରି ବିଶ୍ୱ ମାନବିକ ଅଧିକାର ଘୋଷଣାନାମାରେ ଏହି ସବୁ ପ୍ରସଙ୍ଗକୁ ମୁଖ୍ୟତଃ ସ୍ୱୀକାର କରାଯାଇ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ନ୍ୟାୟପୂର୍ଣ୍ଣ ଅଧିକାରକୁ ଆନ୍ତର୍ଜାତିକ ସ୍ୱୀକୃତି ଦିଆଗଲା ।

ସବୁ ମଣିଷ ଜନ୍ମରୁ ଯେ ସମାନ ଓ ପ୍ରତ୍ୟେକ ବ୍ୟକ୍ତି ସମାନ ମର୍ଯ୍ୟାଦା ଓ ନିରାପତ୍ତା ପାଇବା ଯେ ତା'ର ଏକ ମୌଳିକ ଅଧିକାର; ଏହା ହିଁ ବୈଚାରିକ ସ୍ତରରେ ବିଶ୍ୱରେ ଗୃହୀତ ହେଲା । ହୁଏତ ବାସ୍ତବରେ ଏବେ ବିଭିନ୍ନ ସମାଜରେ ମାନବିକ ଅଧିକାରର ଉଲ୍ଲଂଘନ ପ୍ରତ୍ୟହ ହେଉଛି । ସମାଜରୁ ଜାତିଗତ, ବର୍ଣ୍ଣଗତ, ଧର୍ମଗତ ବୈଷମ୍ୟ ଓ ବିଦ୍ୱେଷ

ସମ୍ପୂର୍ଣ୍ଣ ଦୂର ହୋଇ ନାହିଁ । ଧର୍ମ, ଭାଷା, ଆଞ୍ଚଳିକତା ଇତ୍ୟାଦିକୁ ନେଇ ସାଂପ୍ରଦାୟିକ ଦୃଷ୍ଟିକୋଣର ପ୍ରାଧାନ୍ୟ ଅନେକ ସମାଜରେ ରହିଛି । ତେବେ ଏହା ଯେ ଅନ୍ୟାୟ, ଅମାନବିକ ଓ ମାନବିକ ମୂଲ୍ୟବୋଧର ପରିପନ୍ଥୀ ଏହାକୁ ପୃଥିବୀର ଅନେକ ମଣିଷ ବିଶ୍ୱାସ କରୁଛନ୍ତି । ଅବଶ୍ୟ ଏହି ଆନ୍ତର୍ଜାତିକ ଘୋଷଣାନାମା ମାନବାଧିକାରର ସୁରକ୍ଷା ପାଇଁ ସମସ୍ତ ରାଷ୍ଟ୍ର ପ୍ରତି ଏକ ମାନବିକ ଓ ନୈତିକ ନିବେଦନ ମାତ୍ର । ଏହା ଏପର୍ଯ୍ୟନ୍ତ ରାଷ୍ଟ୍ରମାନଙ୍କ ପାଇଁ ବାଧ୍ୟତାମୂଳକ ଭାବେ ପାଳନୀୟ ବୋଲି ଆଇନ କରାଯାଇନାହିଁ । ଏ ସତ୍ତ୍ୱେ ଅନ୍ତତଃ ବୈଚାରିକ ସ୍ତରରେ ହେତୁବାଦୀ ଦାର୍ଶନିକ, ବୈଜ୍ଞାନିକ ଓ ମାନବବାଦୀ ରାଷ୍ଟ୍ରନୀତିଜ୍ଞମାନେ ମାନବିକ ମର୍ଯ୍ୟାଦା ଓ ଅଧିକାର ନେଇ ଯେଉଁ ଚେତନାର ବିକାଶ କରାଇଛନ୍ତି, ତାହା ଯେ ଜାତିସଂଘ ସହ ସଂପୃକ୍ତ ସମସ୍ତ ରାଷ୍ଟ୍ର ନିୟମତଃ ଗ୍ରହଣ କରିଛନ୍ତି ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ସଭ୍ୟତାର ସାଂସ୍କୃତିକ ଓ ନୈତିକ ବିକାଶଧାରାରେ ଓ ମାନବଜାତିର ଐକ୍ୟ ଦିଗରେ ଏହା ଯେ ଏକ ମହାନ ପଦକ୍ଷେପ ଏହା ଅନସ୍ୱୀକାର୍ଯ୍ୟ । (ସମ୍ବାଦ-୧୭.୧୨.୦୯)



# ଅନ୍ଧକାର କେବେ ଘୁଞ୍ଚିବ ?

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ନିର୍ଦ୍ଦିଷ୍ଟ ତିଥିମାନଙ୍କରେ ଦିଅଁ ଦେବତା ପାଖରେ ଶହ ଶହ ପଶୁବଳି ଦିଆଯାଉଛି । ଅତୀତରେ ନରବଳି ପ୍ରଥା ଥିଲା, ତେବେ ଏହାକୁ ଉଚ୍ଛେଦ କରାଯାଇଥିଲେ ମଧ୍ୟ ପଶୁବଳି ଏ ପର୍ଯ୍ୟନ୍ତ ରହିଛି । କେବଳ ଆଦିବାସୀ ଅଞ୍ଚଳରେ ନୁହେଁ, ଯେଉଁଠି ବିଭିନ୍ନ ଶକ୍ତିପୀଠ ରହିଛି, ସେଠାରେ ପଶୁବଳି ଦିଆଯାଉଛି । ଏହାକୁ ଧର୍ମୀୟ ପରମ୍ପରା କହି ପରମ୍ପରାପ୍ରେମୀ ରକ୍ଷଣଶୀଳମାନେ ଏହାକୁ କରିବାପାଇଁ ସମସ୍ତ ଉଦ୍ୟମ କରୁଛନ୍ତି । ସେହିପରି ଗୁଣିଗାରେଡ଼ିରେ ବିଶ୍ୱାସ ଓଡ଼ିଶାର ଜନଜୀବନରେ ରହିଛି । ଗ୍ରାମରେ କୌଣସି ପରିବାରରେ କିଛି ଅସୁସ୍ଥତା ବା ଅଘଟଣ ଘଟିଲେ ଅନ୍ୟ ପରିବାର ଗୁଣି କରିଥିବା ସନ୍ଦେହ କରି ନାନା ଅପରାଧମୂଳକ ଘଟଣା ବି ଘଟୁଛି । ସେହିପରି ଦିଅଁ ଦେବତା ପାଖରେ ଜିଭ କାଟିବା, ଅଧିଆ ପଡ଼ିବା ଘଟଣା ମଧ୍ୟ ଘଟୁଛି ।

ଏକବିଂଶ ଶତାବ୍ଦୀରେ ଏସବୁ ଘଟଣା ଘଟୁଥିବା ଏକ ସମାଜର ସାମାଜିକ ଚେତନାର ସ୍ତର କେଉଁଠି ରହିଛି ? କେଉଁଠି ରହିଛି ଆମର ବୌଦ୍ଧିକତା ? ଲୋକମାନଙ୍କୁ କୁସଂସ୍କାର ଓ ଅହେତୁକ ବିଶ୍ୱାସ କବଳରୁ ମୁକ୍ତ କରିବା ପାଇଁ ଆମର ସାମାଜିକ ଜୀବନରେ କେତେ ଦୂର ଉଦ୍ୟମ ହେଉଛି ? କେତେ ଜଣ ମୁଷ୍ଟିମେୟ ହେତୁବାଦୀ ନାନା ପ୍ରତିକୂଳତା ଭିତରେ ସମାଜରୁ ଅନ୍ଧବିଶ୍ୱାସ ଦୂରୀକରଣ ପାଇଁ ସ୍ୱର ଉଠାଉଛନ୍ତି । ଜନଗଣଙ୍କ ଭିତରେ ଏକ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ପାଇଁ ପ୍ରୟାସ କରି ଆସୁଛନ୍ତି, ହେଲେ କୁସଂସ୍କାର ଯେଉଁଠି ପାହାଡ଼ ସଦୃଶ ଛିଡ଼ା ହୋଇଛି ତାକୁ କେତୋଟି ମାତ୍ର ଟେକା ସେମାନେ ଫିଙ୍ଗି ଆସିଛନ୍ତି । ଆଜି ବିଜ୍ଞାନର ଅଭୂତପୂର୍ବ ବିକାଶ ହୋଇଛି । ଇଣ୍ଟରନେଟ୍, କ୍ଲୋନିଂ, ମୋବାଇଲ ଫୋନ୍‌ଜନିତ ସାଟେଲାଇଟ୍ କମ୍ୟୁନିକେସନ୍, କୃତ୍ରିମ ଅଙ୍ଗରୋପଣ ଇତ୍ୟାଦି ସାମ୍ପ୍ରତିକ ଯୁଗର ବିସ୍ମୟ । ତା ସତ୍ତ୍ୱେ କେଉଁଠି ଅଛି ଆମର ଦୃଷ୍ଟି, ବୈଜ୍ଞାନିକ ମାନସିକତା ? ଗୋଟିଏ ପଟେ ବିଜ୍ଞାନର ଚମତ୍କାରିତା, ଆଉ ଗୋଟିଏ ପଟେ ଅଲୌକିକତାଜନିତ ବିଶ୍ୱାସ ଓ ଏ ସବୁର ପ୍ରସାର । ଏହି ବିରୋଧାଭାସକୁ କିପରି ବ୍ୟାଖ୍ୟା କରାଯିବ ?

ବିଡ଼ମ୍ବନାର ବିଷୟ ଅତ୍ୟାଧୁନିକ ପ୍ରଯୁକ୍ତି ଆମକୁ ନାନା ସୁଖ, ସମ୍ଭୋଗ ଦେଇ ପାରୁଛି; ହେଲେ ଆମ ମନର ମଇଳାକୁ ନିଷ୍କାସନ କରିପାରୁ ନାହିଁ । ବରଂ ଅତ୍ୟାଧୁନିକ ପ୍ରଯୁକ୍ତି ଜନିତ ସାଧନକୁ କେଉଁ ଆଇମା ଯୁଗର କାହାଣୀ ପ୍ରସାରରେ ବିନିଯୋଗ

କରାଯାଉଛି । ପରମ୍ପରା ଜନିତ କେତେକ ଅହେତୁକ ବିଶ୍ୱାସକୁ ସାଂସ୍କୃତିକ ବୈଭବ କହି ଗଣମାଧ୍ୟମରେ ପ୍ରସାର କରାଯାଉଛି । ଏହାର ଯେଉଁ ପ୍ରଭାବ ଓ ବାର୍ତ୍ତା ଜନମାନସକୁ ଯାଉଛି, ତାହାର ଭଲ ମନ୍ଦ ଦିଗ ନେଇ କେତେ ଆଲୋଚନା ହେଉଛି ? ବରଂ ପରିତାପର ବିଷୟ ଯେ ଶହ ଶହ ବର୍ଷ ଧରି ସମାଜରେ ଚଳି ଆସୁଥିବା ଗୁଡ଼ିଏ ଅନ୍ଧ ସଂସ୍କାର ପିଲାଟି ବେଳୁ ମଣିଷର କୋମଳ ମନରେ ଜମାଟ ବାନ୍ଧିଯାଏ ଓ ତାହାକୁ ସେ ପରମ୍ପରା ବୋଲି ଗ୍ରହଣ କରି ସେ ସବୁ ଯେତେ ଆଧାରଶୂନ୍ୟ ହେଲେ ବି ସେସବୁକୁ ଜାବୁଡ଼ି ଧରିଥାଏ ।

କୁସଂସ୍କାରର ସାମାଜିକ ଦିଗଟି ମଧ୍ୟ ବେଶ୍ ମହତ୍ତ୍ୱପୂର୍ଣ୍ଣ । ବ୍ୟକ୍ତି ଯେଉଁ ପରିବେଶରେ ରହେ, ତାର ଜୀବନର ଆବଶ୍ୟକତା ପୂରଣ ପାଇଁ ସେ ଏକ ବୃହତ୍ତର ସମାଜ ଉପରେ ନିର୍ଭର କରେ । ଯଦି ସେ ଅନେକ ଆବଶ୍ୟକତାରୁ ବଞ୍ଚିତ ରହେ, ତେବେ ସେ ନିଜର ସାମାଜିକ ବ୍ୟବସ୍ଥାରୁ ଆସ୍ଥା ହରାଏ । ଅଲୌକିକ ବିଶ୍ୱାସ, ପରମ୍ପରା ଓ ମନ୍ତ୍ରତନ୍ତ୍ରରେ ଆସ୍ଥାର ପ୍ରାବଲ୍ୟ ଥିବା ଏକ ସମାଜରେ ବ୍ୟକ୍ତି ଜୀବନର ପ୍ରତିକୂଳ ଅବସ୍ଥାରୁ ସୁରକ୍ଷା ପାଇଁ ଏକ କଳ୍ପିତ ଦିଅଁ ଦେବତା ଉପରେ ବିଶ୍ୱାସ ସ୍ଥାପନ କରିଥାଏ । ଯେଉଁଠି ଜୀବନର ଆବଶ୍ୟକତା ପୂରଣ କ୍ଷେତ୍ରରେ ହେଉ ବା ସାମାଜିକ ନିରାପତ୍ତା କ୍ଷେତ୍ରରେ ହେଉ; ବ୍ୟକ୍ତି ନାନା ପ୍ରତିକୂଳ ସ୍ଥିତି ଦେଇ ଗତି କରୁଥାଏ ଓ ତାର ସାମାଜିକ ଚଳଣିରେ ଏହି ସବୁ ବିଶ୍ୱାସ ଭରପୂର ଥାଏ, ସେତେବେଳେ ଏସବୁ ପ୍ରତି ତାର ବିଶ୍ୱାସ ଦୃଢ଼ ହୋଇଥାଏ । ମଣିଷ ଯଦି ଏକ ବୃହତ୍ତର ସମାଜ ଉପରେ ଆସ୍ଥା ସ୍ଥାପନ କରିପାରେ ନାହିଁ, ସେ କଳ୍ପିତ ଦିଅଁ ଦେବତା, ମନ୍ତ୍ରତନ୍ତ୍ର, ଗୁଣିଗାରେଡ଼ି ଉପରେ ବିଶ୍ୱାସ ପୋଷଣ କରିବା ସ୍ୱାଭାବିକ ମନେହୁଏ ।

ବସ୍ତୁତଃ ଭୟ ଓ ଅସହାୟତା ପରି ମନସ୍ତାତ୍ତ୍ୱିକ କାରଣ ହିଁ କୁସଂସ୍କାରର ପ୍ରସାର ପାଇଁ ଗୁରୁତ୍ୱପୂର୍ଣ୍ଣ । ଏତଦ୍‌ବ୍ୟତୀତ ପ୍ରାଚୀନ ଯୁଗରୁ ଚଳି ଆସୁଥିବା ପରମ୍ପରା ପ୍ରତି ଏକ ଭାବଗତ ଆବେଗ କେତେକ ବ୍ୟକ୍ତି ସର୍ବଦା ପୋଷଣ କରିଥାନ୍ତି । ଯେଉଁମାନେ ବହୁ କ୍ଷେତ୍ରରେ ସମାଜରେ ବଞ୍ଚିତ ହୋଇ ରହିଥାନ୍ତି ସେମାନେ ପରମ୍ପରାବାଦୀଙ୍କ ପ୍ରଚାରରେ ବିମୋହିତ ହେବା ସହଜ ହୋଇଥାଏ । ପରମ୍ପରାବାଦୀ ରକ୍ଷଣଶୀଳମାନେ ସାଧାରଣ ଲୋକଙ୍କର ଅଜ୍ଞତାର ସୁଯୋଗ ନେଇ ନିଜର ସ୍ୱାର୍ଥସାଧନ ପାଇଁ ପ୍ରାଚୀନ ଯୁଗର ବିଶ୍ୱାସକୁ ଜାବୁଡ଼ି ଧରିବା ସହ ଏହାକୁ ସାଧାରଣ ଲୋକଙ୍କ ପାଖରେ କୌଶଳର ସହ ପ୍ରଚାର କରିଥାନ୍ତି । ଯେତେ ଅହେତୁକ ହେଲେ ବି କେତେ ବିଶ୍ୱାସ, ଚଳଣି ଓ ପରମ୍ପରାକୁ ସାଂସ୍କୃତିକ ଐତିହ୍ୟ ଓ ସାମାଜିକ ଅସ୍ମିତା ସହ ସମ୍ପୃକ୍ତ କରାଇ ଏହାକୁ ଜନମାନସରେ ପ୍ରସାର କରିଥାନ୍ତି । ଅଜ୍ଞତା, ଅଶିକ୍ଷା, ସାମାଜିକ ପରିବେଶ ଓ ମନସ୍ତାତ୍ତ୍ୱିକ କାରଣର ସମ୍ମିଳିତ ପ୍ରଭାବରୁ ସମାଜରେ କୁସଂସ୍କାରର ଭିତ୍ତି ସୁଦୃଢ଼ ହୋଇ ରହିଥାଏ ।

ପୁନଶ୍ଚ ଯେଉଁଠି ଦାରିଦ୍ର୍ୟର କଶାଘାତ ରହିଥାଏ ସେଠି ବ୍ୟକ୍ତିବିଶେଷ ଭାଗ୍ୟ, କର୍ମଫଳ ଓ ପାରଲୌକିକ ବିଶ୍ୱାସ ଦ୍ୱାରା ସହଜରେ ପ୍ରଭାବିତ ହେବା ଦେଖାଯାଏ। ସମ୍ବାଦପତ୍ର ଓ ସରକାରୀ ପରିସଂଖ୍ୟାନରୁ ଓଡ଼ିଶା, ସାରା ଭାରତର ଦରିଦ୍ରତମ ରାଜ୍ୟ ବୋଲି ପ୍ରକାଶ ପାଉଛି। ଏହି ଦାରିଦ୍ର୍ୟ ଯେଉଁପରି ବସ୍ତୁଗତ ସେହିପରି ମାନସିକ। ଆଧୁନିକ ମାନଦଣ୍ଡରେ ଯେଉଁଠି ଖାଇବା, ରହିବା, ଶିକ୍ଷା ପାଇବା, ଚିକିତ୍ସାର ସୁଯୋଗ ଲାଭ କରିବା ଇତ୍ୟାଦି ଜୀବନର କେତେକ ଅପରିହାର୍ଯ୍ୟ ଆବଶ୍ୟକତାରୁ ସମାଜର ବହୁ ଭାଗ ଲୋକ ବଞ୍ଚିତ ହୋଇ ରହନ୍ତି ତାହାକୁ ଆମେ ଆର୍ଥିକ ବା ବସ୍ତୁଗତ ଦାରିଦ୍ର୍ୟ ବୋଲି କହିପାରିବା। ସମାଜର ଯାହା ବିକାଶ ହୁଏ ତାହା ଯଦି ସମାନ୍ତରାଳ ଭାବରେ ବିସ୍ତାର ଲାଭ ନ କରି ମୁଷ୍ଟିମେୟ ବ୍ୟକ୍ତି ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ ହୁଏ, ତେବେ ସମାଜରେ ଜୀବନର ଗୁଣାତ୍ମକ ବିକାଶ ସମତଳ ଭାବେ ସଂଘଟିତ ହୁଏ ନାହିଁ। ଏହାର ପରିଣାମରେ ମାନସିକ ଓ ବୌଦ୍ଧିକ ଦାରିଦ୍ର୍ୟର ପରିବେଶ ସୃଷ୍ଟି ହୁଏ। ଦିଅଁ ଦେବତାଙ୍କୁ ଆରାଧନା କଲେ, କେଉଁଠି ପାଣି ଢ଼ାଳିଲେ, ବୁଡ଼ ପକାଇଲେ, ନଡ଼ିଆ ବାଡ଼େଇଲେ, କେଉଁ ମୁଦି ପିନ୍ଧିଲେ, ମନ୍ତ୍ର ଜପିଲେ ବା କେଉଁଠି ଅଗ୍ନିରେ ଆହୁତି ଦେଲେ ଜୀବନର ଅଭିଳଷିତ ଲକ୍ଷ୍ୟ ପୂରଣ ହେବ, ହେଉଛି ଏହି ମାନସିକ ଦାରିଦ୍ର୍ୟର ଅଭିବ୍ୟକ୍ତି। ଏପରିକି ସମାଜର ଶିକ୍ଷିତ ଓ ପ୍ରଭାବଶାଳୀ ବ୍ୟକ୍ତିବିଶେଷ ମଧ୍ୟ ଏହି ମାନସିକ ଦାରିଦ୍ର୍ୟରୁ ମୁକ୍ତ ହୋଇପାରନ୍ତି ନାହିଁ। ସେମାନେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ସବୁ ସାଧନଗୁଡ଼ିକୁ ନିଜର ସୁଖ ପାଇଁ ବ୍ୟବହାର କରୁଥିଲେ ମଧ୍ୟ ମାନସିକ ସ୍ତରରେ ମଧ୍ୟଯୁଗୀୟ ଆଦର୍ଶ ଭିତରୁ ବାହାରି ପାରନ୍ତି ନାହିଁ କିମ୍ବା ଏକ ବିଚାରଶୀଳ ଜୀବନଦୃଷ୍ଟିକୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପ୍ରୟୋଗ କରିପାରନ୍ତି ନାହିଁ। ପରିଣାମତଃ କି ଅଶିକ୍ଷିତ କି ଶିକ୍ଷିତ, କି ଦରିଦ୍ର କି ସ୍ୱଚ୍ଛଳ ଅଧିକାଂଶ ବ୍ୟକ୍ତି ମାନସିକ ସ୍ତରରେ ଅନ୍ଧସଂସ୍କାରଗୁଡ଼ିକୁ ଜାବୁଡ଼ି ଧରି ରଖନ୍ତି ଓ କୁସଂସ୍କାରର ପୃଷ୍ଠପୋଷକ ହୋଇ ରହିଥାନ୍ତି।

କିନ୍ତୁ ସଭ୍ୟତାର କ୍ରମବିକାଶର ଇତିହାସରୁ ଏହା ସ୍ପଷ୍ଟ ଯେ ମଣିଷ ହିଁ ତାର ବୌଦ୍ଧିକ ଅନୁସନ୍ଧିତ୍ସା ଓ ବିଚାରଶୀଳତା ଯୋଗୁଁ ସୋପାନ ସୋପାନ ଦେଇ ଆଗକୁ ଉଠିଛି। ଏକଦା ବଣ ଜଙ୍ଗଲରେ ଗୁମ୍ଫା ଭିତରେ ରହୁଥିବା ବା ଯାଯାବର ଭାବେ ବୁଲୁଥିବା ମଣିଷ ଆଜିର ଅତ୍ୟାଧୁନିକ ଜୀବନ ସ୍ତରକୁ ଆସିବା ପଛରେ ରହିଛି ଏକ ସୁଦୀର୍ଘ ଇତିହାସ। ଏହି ଇତିହାସରୁ ସୂଚନା ମିଳେ ଯେ ମଣିଷ ହିଁ ତାର ଭାଗ୍ୟର ନିୟନ୍ତା। କେଉଁ ଦିଅଁ ଦେବତାର ଆଶୀର୍ବାଦରେ ସଭ୍ୟତା ଆଗକୁ ଯାଇ ନାହିଁ ବା ଜୀବନର ଗୁଣାତ୍ମକ ମାନରେ ଅଭିବୃଦ୍ଧି ହୋଇ ନାହିଁ। କେଉଁ କଳ୍ପିତ ଠାକୁରର ଆଶୀର୍ବାଦ ମଣିଷକୁ ପ୍ରାକୃତିକ ବିପଦରୁ ରକ୍ଷା କରି ନାହିଁ। ବରଂ ମଣିଷର ପ୍ରୟାସ ଯୋଗୁଁ ସେ କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରକୃତିର ରହସ୍ୟକୁ ଜାଣିବାକୁ ସମର୍ଥ ହୋଇଛି ଓ ସେହି ଜ୍ଞାନର ପ୍ରୟୋଗରୁ ପ୍ରତିକୂଳ ଅବସ୍ଥାକୁ

ଅତିକ୍ରମ କରିବାକୁ ପ୍ରୟାସ କରିଛି । ତାର ଅନୁସନ୍ଧିତ୍ସା, ଜ୍ଞାନ, ବିଚାରଶୀଳତା, ନୀତିବୋଧ, ସାମାଜିକ ଜୀବନ ପ୍ରତି ଉତ୍ତରଦାୟିତ୍ୱ ଭାବ ହିଁ ସଭ୍ୟତାକୁ ପ୍ରଗତିଶୀଳ କରାଇଛି ଓ ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରିଛି । ଯେଉଁଠି ଏହି ଦୃଷ୍ଟିଭଙ୍ଗୀ ଅଧିକ ବିକଶିତ ହୋଇଛି, ସେଠି ସମାଜ ଉନ୍ନତ ହୋଇଛି ଓ ସମାଜର ପ୍ରଗତି ତ୍ୱରାନ୍ୱିତ ହୋଇଛି । ଯେଉଁଠି ଏହି ମାନସିକତାର ପ୍ରସାର ନେଇ ନାନା ପ୍ରତିବନ୍ଧକ ରହିଛି ସେଠାରେ ସମାଜ ପଛରେ ପଡ଼ିଛି ଓ କ୍ଷୟଶୀଳ ହୋଇ ରହିଛି । ପ୍ରକୃତି ଯେତେ ପ୍ରତିକୂଳ ହେଲେ ବି ଯେଉଁଠି ଜ୍ଞାନ, ନାଗରିକ ଶୃଙ୍ଖଳା ଓ ସାମାଜିକ କର୍ତ୍ତବ୍ୟବୋଧ ଉନ୍ନତ ହୋଇଛି ସେ ସମାଜ ବହୁ ଆଗରେ ରହିଛି । ଯେଉଁଠି ପ୍ରକୃତି ଯେତେ ଅନୁକୂଳ ଥିଲେ ବି ସଭ୍ୟ ଜୀବନଦୃଷ୍ଟିର ପ୍ରସାର କ୍ଷେତ୍ରରେ ନାନା ପ୍ରତିବନ୍ଧକ ରହିଛି, ସେଠାରେ ଦାରିଦ୍ର୍ୟ, କୁସଂସ୍କାର ଓ ଅପସଂସ୍କୃତିର ପ୍ରାବଲ୍ୟ ରହିଛି ।

କୁସଂସ୍କାର ଓ ଅପସଂସ୍କୃତିର ପ୍ରାଚୀରକୁ ଭାଙ୍ଗିବାକୁ ହେଲେ ଶିକ୍ଷା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବିକ ମହତ୍ତ୍ୱ ଓ ସମାଜ ସଂସ୍କାର ପରି ହେତୁବାଦୀ ଜୀବନଦର୍ଶନର ପ୍ରସାର କରିବାକୁ ହେବ । ଆଜିର ବିଜ୍ଞାନ ଯୁଗରେ ଆଧୁନିକ ପ୍ରଯୁକ୍ତି ଯେଉଁ ସ୍ଥିତିକୁ ଯାଇଛି ସେଥିରେ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବା ଅତ୍ୟନ୍ତ କଷ୍ଟସାଧ୍ୟ ହେବ ନାହିଁ । ପରନ୍ତୁ ଯଦି ଏହି ଲକ୍ଷ୍ୟକୁ ଉପେକ୍ଷା କରାଯାଏ ତେବେ ବିଜ୍ଞାନର ସକଳ ବିଭବ ଓ ସାଧନ ସତ୍ତ୍ୱେ ସାମାଜିକ ଜୀବନରୁ କୁସଂସ୍କାର ଲୋପ ହେବ ନାହିଁ । ସକଳ ଯୋଜନା, ଅଭିବୃଦ୍ଧି କେବଳ କେତେକ ସୁବିଧା ସୁଯୋଗ ସୃଷ୍ଟି କରିବ ସିନା ମାନସିକତାରେ ପରିବର୍ତ୍ତନ ଆଣିବ ନାହିଁ । ମଧ୍ୟଯୁଗୀୟ ମାନସିକତାରୁ ମୁକ୍ତି ଦ୍ୱାରା ଗୁଣାତ୍ମକ ସାମାଜିକ ଜୀବନର ବିକାଶ ସମ୍ଭବ ହେବ । ଏହି ଲକ୍ଷ୍ୟ ପାଇଁ ଏ ଯୁଗର ସାର୍ବଜନୀନ ମୂଲ୍ୟଚୟ ଓ ପ୍ରଗତିଶୀଳ ଜୀବନଦୃଷ୍ଟିର ବିକାଶକୁ ଗୁରୁତ୍ୱ ଦେବାକୁ ହେବ । ଏହି ପ୍ରୟାସ ଯେତେ କଷ୍ଟକର ହେଲେ ବି ଏହି ଦିଗରେ ନିଷ୍ଠାପର ପ୍ରୟାସ ହେଲେ ଯାଇ ଏକ ଗୁଣାତ୍ମକ ଜୀବନର ବିକାଶ ହେବ । ନଚେତ୍ ସମାଜର ସକଳ ସ୍ତରରୁ ଅନ୍ଧକାର ଘୁଞ୍ଚି ପାରିବ ନାହିଁ । (ସମ୍ବାଦ - ୬.୧.୨୦୧୦)



# ଶରୀର ଦାନ କ'ଣ ଓ କାହିଁକି ?

ଆଧୁନିକ ବିଜ୍ଞାନର ବିକାଶ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହେବାପରେ ଏହାର ଦିଗନ୍ତ ନାନା ଭାବରେ ବିସ୍ତାରିତ ହୋଇ ଚାଲିଛି । ଆଧୁନିକ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ନାନା ଗବେଷଣା ଦ୍ୱାରା କ୍ରମବର୍ଦ୍ଧିଷ୍ଣୁ ଭାବେ ବହୁ ସଫଳତା ମିଳିବାରେ ଲାଗିଛି । ଆଜି ବହୁ ମହାମାରୀ ରୋଗକୁ ନିୟନ୍ତ୍ରଣ କରିବା ସମ୍ଭବ ହୋଇଛି । ଅତୀତରେ ହଇଜା, ବସନ୍ତ, ପ୍ଲେଗ୍ ଏକଦା ମହାମାରୀ ଭାବେ ବ୍ୟାପିଯାଉଥିଲା ଓ ସାରା ପୃଥିବୀରେ ଲକ୍ଷଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡୁଥିଲେ । ସେହିପରି କୁଷ୍ଠରୋଗଗ୍ରସ୍ତଙ୍କ ପ୍ରତି ଏପରି ସାମାଜିକ ଦୃଷ୍ଟିଭଙ୍ଗୀ ରହିଥିଲା ଯେ କୌଣସି ଲୋକ କୁଷ୍ଠରୋଗରେ ପୀଡ଼ିତ ହେଲେ ସେ ପରିବାର ଓ ସମାଜରୁ ବିତାଡ଼ିତ ହୋଇ ଦୟନୀୟ ଭାବେ ଜୀବନ ବଞ୍ଚୁଥିଲା ବା ଆତ୍ମହତ୍ୟା କରିବାକୁ ବାଧ ହେଉଥିଲା । ପୁନଶ୍ଚ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଭାବରୁ ବିଭିନ୍ନ ରୋଗକୁ ନେଇ ନାନା କୁସଂସ୍କାର ସମାଜରେ ରହିଥିଲା । ମାନସିକ ବିକୃତିର ଶିକାର ହୋଇଥିବା ବ୍ୟକ୍ତିମାନଙ୍କୁ ନାନା ଶାରୀରିକ ଯନ୍ତ୍ରଣା ଦିଆଯିବା ସହ ହଜାର ହଜାର ମହିଳାଙ୍କୁ ଡାଆଣୀ ବୋଲି ଚିତ୍ରଣ କରାଯାଇ ପୋଡ଼ି ମାରି ଦିଆଯାଉଥିଲା । ଦୁଇଶହ ତିନିଶହ ବର୍ଷ ତଳେ ଏହାହିଁ ଥିଲା ସାମାଜିକ ଦୃଶ୍ୟପଟ ।

ଆଧୁନିକ ବିଜ୍ଞାନର ଆଦି ପର୍ବଟି ଯେପରି ସଂଘର୍ଷର ସମୟ ଥିଲା, ଆଧୁନିକ ଚିକିତ୍ସା ବିଜ୍ଞାନର ଆଦି ପର୍ବଟି ମଧ୍ୟ ଥିଲା ସେହିପରି ପ୍ରତିବନ୍ଧକର ସମୟ । ଏହି ପ୍ରତିବନ୍ଧକ ମୁଖ୍ୟତଃ ଧାର୍ମିକ ମାନସିକତାରୁ ସୃଷ୍ଟି ହେଉଥିଲା । ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଶରୀରକୁ ବ୍ୟବଚ୍ଛେଦ କରି ଦେହ ଭିତରର ଅଙ୍ଗଗୁଡ଼ିକ ଦେଖିବାର ଆବଶ୍ୟକତା ଥିଲେ ବି ତାହା ସମ୍ଭବ ନ ଥିଲା । ଶରୀର ଯେ ଏକ ଈଶ୍ୱରଦତ୍ତ ସତ୍ତା ଓ ଏହାର ବ୍ୟବଚ୍ଛେଦ ଏକ ଧର୍ମବିରୋଧୀ କାର୍ଯ୍ୟ, ଏହି ଧାରଣା ରହିଥିଲା । ଏହି ଦୃଷ୍ଟିଭଙ୍ଗୀ ଥିଲା ଚିକିତ୍ସା ବିଜ୍ଞାନ ପ୍ରଗତିର ବଡ଼ ପ୍ରତିବନ୍ଧକ । ତେବେ ଯେଉଁମାନେ ଶରୀର ବ୍ୟବଚ୍ଛେଦ କରି ଚିକିତ୍ସା ବିଜ୍ଞାନକୁ ଅମୂଲ୍ୟ ଜ୍ଞାନ ଦେଇଛନ୍ତି, ସେମାନେ ସେମାନଙ୍କ ଜୀବନରେ ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ଶରୀର ବିଜ୍ଞାନ ବା ଆନାଟୋମିର ପଥପ୍ରଦର୍ଶକ ଫେମିସ୍ ଡାକ୍ତର ଆଣ୍ଡ୍ରିଆସ୍ ଭେସାଲିଅସ୍ ମୃତ ଶରୀରକୁ ନେଇ ଗୁପ୍ତ ଭାବରେ ବ୍ୟବଚ୍ଛେଦ କରୁଥିଲେ । ବାସ୍ତବ ଜ୍ଞାନ ଆଧାରରେ ମଣିଷ ଶରୀରର ଅଙ୍ଗମାନଙ୍କ ବିଷୟରେ ସେ ଯେଉଁ ପୁସ୍ତକ ଲେଖିଥିଲେ

ତାହା ଚିକିତ୍ସା ବିଜ୍ଞାନର ଅଗ୍ରଗତି କ୍ଷେତ୍ରରେ ନୂତନ ଦିଗନ୍ତ ସୃଷ୍ଟି କରିଥିଲା । ତେବେ ତାଙ୍କର ଗୁପ୍ତ କାର୍ଯ୍ୟ ଜଣା ପଡ଼ିଯିବା ପରେ ସେ ଧର୍ମଦ୍ରୋହୀ ବୋଲି ଚିତ୍ରିତ ହୋଇ ପ୍ରାୟଶ୍ଚିତ୍ତ କରିବାକୁ ଯିବା ବେଳେ ମୃତ୍ୟୁ ମୁଖରେ ପଡ଼ିଥିଲେ । ସେହିପରି ଶରୀରରେ ରକ୍ତ ସଞ୍ଚାଳନ ସଂପର୍କରେ ଧାରଣା ଦେଇଥିବା ସ୍ପାନିସ ଡାକ୍ତର ମାଇକେଲ ସର୍ଭେଟସ୍‌ଙ୍କୁ ଧର୍ମଦ୍ରୋହୀ ବୋଲି ଚିତ୍ରଣ କରି ତାଙ୍କୁ ପୋଡ଼ି ମାରି ଦିଆଯାଇଥିଲା । ଚିକିତ୍ସା ବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଥିବା ବୈଜ୍ଞାନିକଙ୍କ ନିର୍ଯ୍ୟାତନାର କାହାଣୀ ବହୁ ଦୀର୍ଘ ।

ବସନ୍ତ ରୋଗ ମହାମାରୀ ରୂପରେ ସାରା ପୃଥିବୀରେ ମୃତ୍ୟୁର ତାଣ୍ଡବ ସୃଷ୍ଟି କରୁଥିଲା । ସେହି ରୋଗର ପ୍ରତିଷେଧକ ଟୀକା ଏଡ଼ୱାଡ଼ ଜେନର ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ବାହାର କରି ଚିକିତ୍ସା ବିଜ୍ଞାନରେ ଅମର ହୋଇଯାଇଛନ୍ତି । ତେବେ ଏଥିପାଇଁ ପ୍ରାଥମିକ ଅବସ୍ଥାରେ ଦୈବୀ ଦଣ୍ଡ ବିରୋଧରେ ଯାଉଥିବାରୁ ସେ ବହୁ କଟାକ୍ଷର ଶରବ୍ୟ ହୋଇଛନ୍ତି । ଅବଶ୍ୟ ସେତେବେଳକୁ ବିଜ୍ଞାନର ଯେଉଁ ପରମ୍ପରାଟି ଗଢ଼ି ଉଠିଥିଲା, ତାହା ଦ୍ୱାରା ନାନା ସ୍ତରରେ ଚମକପ୍ରଦ ଉଦ୍ଭାବନ ଓ ଆବିଷ୍କାର ଆସିବାରୁ 'ବିଜ୍ଞାନର ସତ୍ୟ' ପ୍ରତି ବିରୋଧ ପ୍ରକଟରେ କିଛିଟା ନମନୀୟତା ଆସିଥିଲା । ଗୋଟିଏ ପରେ ଗୋଟିଏ ଉଦ୍ଭାବନ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଅଭୂତପୂର୍ବ ସଫଳତା ଆଣିବାକୁ ଲାଗିଲା । ଏଠାରେ କେତୋଟି ଯୁଗାନ୍ତକାରୀ ଉଦ୍ଭାବନ ବିଷୟରେ ସାମାନ୍ୟ ସୂଚନା ଦିଆଯାଇପାରେ ।

ଊନବିଂଶ ଶତାବ୍ଦୀରେ ଫରାସୀ ବୈଜ୍ଞାନିକ ଲୁଇ ପାଷ୍ଟରଙ୍କ ଉଦ୍ଭାବନ ଚିକିତ୍ସା ବିଜ୍ଞାନରେ ଏକ ନୂତନ ଦିଗ ଉନ୍ମୋଚନ କଲା । ଅଧିକାଂଶ ରୋଗର କାରଣ ଜୀବାଣୁ, ଭୂତାଣୁ ବା ଅଣୁଜୀବ ଦ୍ୱାରା ହେଉଥିବା ସେ ପରୀକ୍ଷାମୂଳକ ଭାବେ ଦର୍ଶାଇଲେ । ମଣିଷ ଶରୀରରେ ରୋଗ କାହିଁକି ହୁଏ ? ଏ ପ୍ରଶ୍ନକୁ ନେଇ ତାଙ୍କର ବିଚାର ଓ ତାଙ୍କର ସମସାମୟିକ ବୈଜ୍ଞାନିକ ରୋବର୍ଟ କୋଚଙ୍କର ଏହି ସିଦ୍ଧାନ୍ତ ଚିକିତ୍ସା ବିଜ୍ଞାନକୁ ନୂତନ ଦିଗନ୍ତ ଦେଇପାରିଲା । ଅନେକ ରୋଗର କାରଣ ଜୀବାଣୁ ବୋଲି ଜଣାପଡ଼ିବା ପରେ ରୋଗମାନଙ୍କର ଚିକିତ୍ସା ପାଇଁ ବହୁ ଗବେଷଣା ହେଲା ଓ ରୋଗର ନିଦାନ ପାଇଁ ଔଷଧ ବାହାରି ପାରିଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ଆଲେକ୍‌ଜାଣ୍ଡର ଫ୍ଲେମିଂ ପେନ୍‌ସିଲିନ୍ (ଆଜି ଯାହାକୁ ଆଣ୍ଟିବାଓଟିକ୍ କୁହାଯାଉଛି) ଉଦ୍ଭାବନ କଲେ । ଯୁଦ୍ଧରେ ଆକ୍ରାନ୍ତ ସୈନ୍ୟମାନଙ୍କର କ୍ଷତ ସବୁ ପଚି ଯାଇ ସେମାନଙ୍କ ମୃତ୍ୟୁର କାରଣ ହେଉଥିଲା । ସେଥିରୁ ସେମାନଙ୍କୁ ରକ୍ଷା କରିବାରେ ପେନ୍‌ସିଲିନ୍ ଅମୋଘ ଔଷଧ ଭାବରେ ବ୍ୟବହୃତ ହେଲା । ଆଜି ତ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଆଣ୍ଟିବାଓଟିକର ବହୁଳ ବ୍ୟବହାର ହେଉଛି । ତେବେ ଏହି ଜ୍ଞାନ ଆସିବା ଦ୍ୱାରା ମାତ୍ର ସତୁରି, ଅଶୀ ବର୍ଷ ଭିତରେ ଚିକିତ୍ସା ବିଜ୍ଞାନରେ ବହୁ ସଫଳତା ଆସିପାରିଲା ।

ଅସ୍ତ୍ରୋପଚାରର ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ସବୁଠାରୁ ବଡ଼ ସଫଳତା ଆଣିପାରିଛି । ଆଜି ବହୁ ଜଟିଳ ଅସ୍ତ୍ରୋପଚାର କରାଯାଇ ଆସନ୍ନ ମୃତ୍ୟୁର ଦ୍ୱାର ଦେଶରେ ଥିବା ରୋଗୀମାନଙ୍କୁ ବଞ୍ଚାଯାଇ ପାରୁଛି । ଏ କ୍ଷେତ୍ରରେ ନିଶ୍ଚେତକ ବା ଆନାସ୍ଥେସିଆର ବ୍ୟବହାର ସହିତ ବହୁ ଉନ୍ନତମାନର ଯନ୍ତ୍ରପାତି ଚିକିତ୍ସାକୁ ସୁଗମ କରିପାରୁଛି । ତେବେ ନିଶ୍ଚେତକ ପ୍ରଥମେ ଯେତେବେଳେ ଜେମ୍ସ ସିମ୍ପସନ୍, ବାହାର କରି ମହିଳାମାନଙ୍କ ପାଖରେ ପ୍ରସବ ଯନ୍ତ୍ରଣା ଲାଘବ ପାଇଁ ପ୍ରୟୋଗ କଲେ, ସେତେବେଳେ ଏହାକୁ ଧର୍ମଯାଜକମାନେ ବହୁ ବିରୋଧ କରିଥିଲେ । ମହିଳାମାନଙ୍କର ଯନ୍ତ୍ରଣା ସହିବା ଏକ ଈଶ୍ୱରୀୟ ବିଧାନ ଓ ଏହାକୁ ଲାଘବ କରିବା ଈଶ୍ୱରୀୟ ନିୟମର ପରିପନ୍ଥୀ ବୋଲି ତୀବ୍ର ସ୍ୱର ଉଠିଥିଲା । ତେବେ ବିଜ୍ଞାନର ଅଗ୍ରଗତି ସବୁ ପ୍ରତିବନ୍ଧକ ସତ୍ତ୍ୱେ ଆଗକୁ ଚାଲିଲା ଓ ଏହାର ସୁଫଳ ମଣିଷ ସମାଜ ପାଇଲା ।

ଜଣେ ବ୍ୟକ୍ତିର ଦେହର ରକ୍ତ ବା ଅଙ୍ଗ ନେଇ ଅନ୍ୟ ଜଣଙ୍କୁ ଦେବା ଶହେ ବର୍ଷ ତଳେ ଅଚିନ୍ତନୀୟ ଥିଲା । ତେବେ ଚିକିତ୍ସା ବିଜ୍ଞାନର ଗବେଷଣା ଏ କ୍ଷେତ୍ରରେ ନୂତନ ଦିଗନ୍ତ ସୃଷ୍ଟି କରିଛି । ଜଣେ ବ୍ୟକ୍ତିଠାରୁ ରକ୍ତ ନେଇ ଅନ୍ୟ ଜଣଙ୍କୁ ଦେବା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆରମ୍ଭ ହେଲା । ବର୍ଣ୍ଣବୈଷମ୍ୟ ଥିବା ସମାଜରେ ସେଥିପାଇଁ ତୀବ୍ର ସ୍ୱର ଉଠିଲା, କାରଣ ତଥାକଥିତ ନୀଚ ଜାତିର ଲୋକଙ୍କର ରକ୍ତକୁ କିପରି ଉଚ୍ଚଜାତିର ଲୋକଙ୍କୁ ଦିଆଯିବ, ତାହା ଆଲୋଡ଼ନ ଆଣିଲା । ତେବେ ମଣିଷ ରକ୍ତରେ ଯେ ଭେଦଭାବ ନାହିଁ ଓ ବିଜ୍ଞାନ ସମ୍ମତ ଧାରାରେ ଏକା ଗ୍ରୁପ୍‌ର ରକ୍ତ ଜଣେ ନେଇପାରିବ, ଏହା କାଳକ୍ରମେ ଗୃହୀତ ହେବାକୁ ଲାଗିଲା । ଆଜି ଏହା ଅତି ସାଧାରଣ କଥା । ଆଜି ବୃକ୍କ ଏବଂ ହୃତ୍‌ପିଣ୍ଡ ପ୍ରତିରୋପଣ ମଧ୍ୟ ଏକ ସାଧାରଣ କଥା ହୋଇଯାଇଛି । ସେହିପରି ରକ୍ତ କର୍କଟରେ ସୁସ୍ଥ ଲୋକର ଅସ୍ଥିସାର ବା 'ବୋନ୍ ମାରୋ' ରୋଗଗ୍ରସ୍ତ ବ୍ୟକ୍ତିର ଦେହରେ ରୋପଣ କରି ତାକୁ ରକ୍ତ କର୍କଟ ରୋଗରୁ ମୁକ୍ତ କରିଦିଆଯାଇ ପାରୁଛି । ଏ ସବୁ ଚିକିତ୍ସା ବିଜ୍ଞାନର ଚମକପ୍ରଦ ଉପଲବ୍ଧି । ଯଦିଓ ଏସବୁ ଚିକିତ୍ସା ଏବେ ମଧ୍ୟ ବ୍ୟୟବହୁଳ ହୋଇରହିଛି ଓ ଆବଶ୍ୟକ ଭିତ୍ତିଭୂମି ଅଭାବରେ ଏହା କରାଯାଇ ପାରୁନାହିଁ, ତଥାପି ଏହା ଯେ ସମ୍ଭବ ହୋଇଛି, ତାହା ଚିକିତ୍ସା ବିଜ୍ଞାନର ସାଫଲ୍ୟ ।

ଏହା ସହିତ ମୃତ ବ୍ୟକ୍ତିର ଅନେକ ଅଙ୍ଗକୁ ମଧ୍ୟ ବ୍ୟବହାର କରାଯାଇ ପାରୁଛି । ସଦ୍ୟ ମୃତ ଲୋକର ଚକ୍ଷୁର ସ୍ୱଚ୍ଛପଟଳ ବା କର୍ନିଆ ନେଇ ଦୃଷ୍ଟିହୀନ ବ୍ୟକ୍ତିକୁ ଦେଖିବାର ସାମର୍ଥ୍ୟ ଦିଆଯାଇ ପାରୁଛି । ସେହିପରି ସଦ୍ୟମୃତ ବ୍ୟକ୍ତିଙ୍କଠାରୁ ହାଡ଼ କାଟିଆଣି ଉନ୍ନତ ଡାକ୍ତରଖାନା ଆଦିରେ ବୈଜ୍ଞାନିକ ପଦ୍ଧତିରେ ସଂରକ୍ଷଣ କରାଯାଇ ପାରୁଛି । ରକ୍ତଭଣ୍ଡାର, ଚକ୍ଷୁଭଣ୍ଡାର ଭଳି ଅସ୍ଥିଭଣ୍ଡାର ପୃଥିବୀର ବିଭିନ୍ନ ଡାକ୍ତରଖାନାରେ ସ୍ଥାପନ କରାଯାଇଛି ।

ଏହା ଦ୍ୱାରା ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତି ବା ବିକଳାଙ୍ଗ ବ୍ୟକ୍ତିଙ୍କ ପାଖରେ ହାଡ଼ ପ୍ରତିରୋପଣ କରାଯିବା ସମ୍ଭବ ହୋଇପାରୁଛି । ସେଇଭଳି କୌଣସି ବ୍ୟକ୍ତିର ସ୍ନାୟୁ ଯଦି କୌଣସି କାରଣରୁ ନଷ୍ଟ ହୋଇଯାଉଛି ତେବେ ସଦ୍ୟ ମୃତ ବ୍ୟକ୍ତିର ସ୍ନାୟୁ ଆଣି ଅନ୍ୟଠାରେ ପ୍ରତିରୋପଣ କରିବାର ଜ୍ଞାନ ଚିକିତ୍ସା ବିଜ୍ଞାନ ବାହାର କରି ପାରିଛି । ସେହିପରି ମୃତ ଲୋକର ଦେହର ଚର୍ମକୁ ଆଣି ପୋଡ଼ି ଯାଇଥିବା କୌଣସି ଲୋକର ଦେହରେ ପ୍ରତିରୋପଣ କରିବାର ଜ୍ଞାନ ମଣିଷ ହାସଲ କରିପାରିଛି । ପ୍ଲାଷ୍ଟିକ ଅସ୍ତ୍ରୋପଚାରର କ୍ଷେତ୍ରରେ ଅନ୍ୟ ଶରୀରର ଚର୍ମ ଓ ଉପାସ୍ଥି ବ୍ୟବହାର କରି ଅସୁନ୍ଦର ଅଙ୍ଗକୁ ସୁନ୍ଦର କରିବାର ସଫଳତା ଚିକିତ୍ସା ବିଜ୍ଞାନ ହାସଲ କରିପାରିଛି ।

ଚିକିତ୍ସା ବିଜ୍ଞାନର ବିକାଶ ପାଇଁ ଡାକ୍ତରୀ ଛାତ୍ର ଓ ଗବେଷକମାନେ ଶରୀରକୁ ବ୍ୟବଚ୍ଛେଦ କରି ସେଥିରେ ଥିବା ବିଭିନ୍ନ ଅଙ୍ଗ ବିଷୟରେ ବାସ୍ତବ ଜ୍ଞାନ ହାସଲ କରିବା ଜରୁରୀ । ହେଲେ ରକ୍ଷଣଶୀଳ ମାନସିକତା ମୃତ ଦେହ ପାଇବା କ୍ଷେତ୍ରରେ ବଡ଼ ପ୍ରତିବନ୍ଧକ ସୃଷ୍ଟି କରୁଛି । କୌଣସି ମୃତ ବ୍ୟକ୍ତିର କେହି ଦାବିଦାର ନ ଥିବା ଜାଣିଲେ ସେହି ପ୍ରକାରର ଶବକୁ ବିଦ୍ୟାର୍ଥୀମାନଙ୍କ 'ପ୍ରାକ୍ଟିକାଲ' ପାଇଁ ବଡ଼ କଷ୍ଟରେ ସଂଗ୍ରହ କରାଯାଉଛି । ଏହି ପରିସ୍ଥିତିରେ ଓଡ଼ିଶା ହେତୁବାଦୀ ସମାଜର ସଭ୍ୟମାନେ ମୃତ୍ୟୁ ପରେ ନିଜର ଶରୀରକୁ ମେଡ଼ିକାଲ କଲେଜକୁ ଦେବାକୁ ଘୋଷଣା କରିଛନ୍ତି । ଅଙ୍ଗ ପ୍ରତିରୋପଣ ପାଇଁ ହେଉ ବା ଶିକ୍ଷା ତଥା ଗବେଷଣା ପାଇଁ ହେଉ ମାନବ ଦରଦୀ ହେତୁବାଦୀଙ୍କର ଏହି ଘୋଷଣା ସ୍ୱାଗତଯୋଗ୍ୟ । ତେବେ ଏ କ୍ଷେତ୍ରରେ ସରକାର ଓ ମେଡ଼ିକାଲ କଲେଜମାନଙ୍କୁ କିଛି ନିବେଦନ କରିବାକୁ ଉଚିତ ମନେ କରୁଛି । ଏ ସଂକ୍ରାନ୍ତ ଆଇନକୁ ସରଳ କରାଯାଉ ଓ ନିଜର ଶରୀର ଦାନ ପାଇଁ ଘୋଷଣା କରିଥିବା ବ୍ୟକ୍ତିର ପରିବାରଠାରୁ ମେଡ଼ିକାଲ କଲେଜ ଫୋନ୍ କଲ ପାଇଲେ ନିଜର ଆମ୍ବୁଲାନ୍ସ ଯୋଗେ ତାହା ସଂଗ୍ରହ କରନ୍ତୁ । ସରକାର ଏଥିପାଇଁ ମେଡ଼ିକାଲ କଲେଜମାନଙ୍କୁ ଆବଶ୍ୟକ ନିର୍ଦ୍ଦେଶ ଦିଅନ୍ତୁ । ଚକ୍ଷୁଦାନ ଓ ରକ୍ତଦାନ କ୍ଷେତ୍ରରେ ଯେପରି ହୋଇଛି, ଶରୀର ଦାନ କ୍ଷେତ୍ରରେ ସେହିପରି ଆଗ୍ରହୀ ବ୍ୟକ୍ତିଙ୍କ ପରିବାରକୁ ସହଯୋଗ କରାଯାଇ ମୃତ ବ୍ୟକ୍ତିର ଶରୀରକୁ ସଂଗ୍ରହ କରାଯାଉ । ଏହାଦ୍ୱାରା ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଅଧିକ ଗବେଷଣା ସହ ସମାଜସଂସ୍କାର କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି ହୋଇପାରିବ । (ସମ୍ବାଦ - ୨୬.୪.୧୦)



# ଏ ଦାରିଦ୍ର୍ୟ, ଅନଗ୍ରସରତା ପାଇଁ ଦାୟୀ କିଏ ?

ମିଳିତ ଜାତିସଂଘ (ୟୁଏନ୍‌ଓ) ଦ୍ୱାରା ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଜରିଆରେ ବିଶ୍ୱର ଦାରିଦ୍ର୍ୟ ସମ୍ପର୍କରେ ହୋଇଥିବା ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ ଛବିଶଟି ଆଫ୍ରିକୀୟ ରାଷ୍ଟ୍ରରେ ଥିବା ଦରିଦ୍ର ଲୋକଙ୍କ ସଂଖ୍ୟା ତୁଳନାରେ ଭାରତବର୍ଷର ଆଠଟି ରାଜ୍ୟରେ ଥିବା ଦରିଦ୍ର ଲୋକଙ୍କ ସଂଖ୍ୟା ହେଉଛି ଅଧିକ । ଭାରତର ଯେଉଁ ଆଠଟି ରାଜ୍ୟକୁ ଏହି ତୁଳନାତ୍ମକ ସମୀକ୍ଷାରେ ନିଆଯାଇଛି ସେଗୁଡ଼ିକ ହେଲା ଓଡ଼ିଶା, ବିହାର, ଉତ୍ତରପ୍ରଦେଶ, ରାଜସ୍ଥାନ, ମଧ୍ୟପ୍ରଦେଶ, ଛତିଶଗଡ଼, ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ । ଦାରିଦ୍ର୍ୟର ମୂଲ୍ୟାୟନ ପାଇଁ ଏକ ମାନଦଣ୍ଡ ଆନ୍ତର୍ଜାତିକ ସ୍ତରରେ ରହିଛି ଓ ସେହି ମାନଦଣ୍ଡ ଆଧାରରେ ଦାରିଦ୍ର୍ୟର ମୂଲ୍ୟାୟନ କରାଯାଇଛି । ଦାରିଦ୍ର୍ୟ ସହ ଲୋକଙ୍କର ଆର୍ଥିକ ସ୍ଥିତି, ରୋଜଗାର, ସ୍ୱାବଲମ୍ବନଶୀଳତା ପ୍ରଶ୍ନ ତ ଜଡ଼ିତ, ଏହା ସହିତ ଲୋକଙ୍କର ସାମାଜିକ ପରିବେଶ, ଶିକ୍ଷା, ସ୍ୱାସ୍ଥ୍ୟସେବା, ବଞ୍ଚିବାର ମାନ ପ୍ରଶ୍ନ ବି ଜଡ଼ିତ । ଯେଉଁ ବ୍ୟକ୍ତିମାନେ ସୁସ୍ଥ ଜୀବନ ଧାରଣ ପାଇଁ ଆବଶ୍ୟକ ଥିବା ସାଧନରୁ ବଞ୍ଚିତ ଓ ଶରୀର ପାଇଁ ଆବଶ୍ୟକ ଥିବା ପୁଷ୍ଟିକର ଖାଦ୍ୟ ଓ ବିଶୁଦ୍ଧ ପାନୀୟ ଜଳ ମଧ୍ୟ ପାଇପାରନ୍ତି ନାହିଁ ସେମାନେ ଦରିଦ୍ର ।

ବିଂଶ ଶତାବ୍ଦୀର ଅଶୀ ଦଶକରେ ନୋବେଲ ପୁରସ୍କାରପ୍ରାପ୍ତ ବିଶିଷ୍ଟ ଅର୍ଥନୀତିଜ୍ଞ ଗୁନ୍ନାର ମିଡାଲ ଏସୀୟ ରାଷ୍ଟ୍ର ସମୂହର ଦାରିଦ୍ର୍ୟ ଉପରେ 'ଏସିଆନ୍ ଡ୍ରାମା' ଶିରୋନାମାରେ ଏକ ପୁସ୍ତକ ତିନିଖଣ୍ଡରେ ପ୍ରକାଶ କରିଥିଲେ । ଏଥିରେ ସେ ଦାରିଦ୍ର୍ୟର ନାନା ଦିଗନ୍ତ ଉପରେ ବିଭିନ୍ନ ପରିସଂଖ୍ୟାନ ମାନ ଦେଇ ଦକ୍ଷିଣ ଏସୀୟ ରାଷ୍ଟ୍ରଗୁଡ଼ିକର ଦାରିଦ୍ର୍ୟ ଉପରେ ସୁବିସ୍ତୃତ ଆଲୋଚନା କରିଛନ୍ତି । ସେହି ପୃଷ୍ଠଭୂମିରେ ଦାରିଦ୍ର୍ୟ ସହ ନାନା ସାମାଜିକ, ସାଂସ୍କୃତିକ ଓ ଭୌଗୋଳିକ କାରଣମାନଙ୍କୁ ସଂଶ୍ଳିଷ୍ଟ କରାଯାଇଛି । ଗୋଟିଏ ଦେଶର ଜନସଂଖ୍ୟାର କେତେ ଭାଗ ଲୋକ ନିରକ୍ଷର ବା ସାଧାରଣ ଶିକ୍ଷାରୁ ବଞ୍ଚିତ, କେତେ ଲୋକଙ୍କର କର୍ମସଂସ୍ଥାନ ନାହିଁ ବା ସେମାନେ ବେକାର ରହୁଛନ୍ତି, ଶିଶୁ ଶ୍ରମିକ ସମସ୍ୟା ସମାଜରେ ରହିଛି କି ନାହିଁ, କେତେ ଲୋକ ପୁଷ୍ଟିହୀନତାରେ ଆକ୍ରାନ୍ତ, ଲୋକଙ୍କର ସାଧାରଣ ଆୟୁ କେତେ, ସମାଜରେ ଭିକ୍ଷାବୃତ୍ତି ବା ବେଶ୍ୟାବୃତ୍ତି କରି ବଞ୍ଚୁଥିବା ଲୋକଙ୍କର ସଂଖ୍ୟା କେତେ, ସହରରେ ଝୁମ୍ପୁଡ଼ି ବା ସ୍ଲମ୍‌ମାନଙ୍କର ଦୂଷିତ ପରିବେଶରେ କେତେ ଲୋକ ରହନ୍ତି

ଇତ୍ୟାଦି ପ୍ରଶ୍ନମାନଙ୍କୁ ନେଇ ଯେଉଁ ସବୁ ତଥ୍ୟ ମିଳୁଛି ସେଥିରେ ଆମ ଦେଶରେ ସର୍ବାଧିକ ଦରିଦ୍ର ଲୋକ ରହିବା କଥାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ଅର୍ଥନୈତିକ ବିକାଶ ମାନଦଣ୍ଡରୁ ପୃଥିବୀର ବିଭିନ୍ନ ରାଷ୍ଟ୍ରମାନଙ୍କୁ ତିନିଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ପ୍ରଥମ ବିଶ୍ୱର ରାଷ୍ଟ୍ର ସବୁ ବିକଶିତ, ସେଠାକାର ଜନଗଣଙ୍କର ଜୀବନଧାରଣର ମାନ ବେଶ୍ ଉନ୍ନତ । ଆର୍ଥିକ ନିରାପତ୍ତା, କର୍ମସଂସ୍ଥାନ, ଉତ୍ତମ ସ୍ୱାସ୍ଥ୍ୟସେବା, ଶିକ୍ଷା, ଉନ୍ନତ ଜୀବନଶୈଳୀ ସମାଜର ସବୁ ମଣିଷ ପ୍ରାୟତଃ ପାଇଥାନ୍ତି । ସମାଜବାଦକୁ ଆଦର୍ଶ ଭାବେ ଗ୍ରହଣ କରି ବିକଶିତ ହୋଇଥିବା ରାଷ୍ଟ୍ର ସବୁକୁ ଦ୍ୱିତୀୟ ବିଶ୍ୱ ବୋଲି କୁହାଯାଏ । ପୁଞ୍ଜିବାଦର ବିଲୋପ, ସାମନ୍ତବାଦୀ ସମାଜ ବ୍ୟବସ୍ଥାର ପରିବର୍ତ୍ତନ, ସମସ୍ତ ଜାତୀୟ ସମ୍ପଦକୁ ରାଷ୍ଟ୍ରାୟତ୍ତ, ଶୋଷଣହୀନ ଆର୍ଥିକ ବ୍ୟବସ୍ଥା ଓ ସମତାଭିତ୍ତିକ ସମାଜର ପ୍ରତିଷ୍ଠା ଲକ୍ଷ୍ୟରେ ପରିଚାଳିତ ହୋଇଥିବା ରାଷ୍ଟ୍ରମାନେ ହେଲେ ଦ୍ୱିତୀୟ ବିଶ୍ୱ । ଏସବୁ ଦେଶରେ ମଧ୍ୟ ଜୀବନର ଗୁଣାତ୍ମକ ମାନ ଉନ୍ନତ । କେତେକ ସମାଜବାଦୀ ବୁଦ୍ଧିଜୀବୀ ଏହି ସବୁ ରାଷ୍ଟ୍ରରେ ପ୍ରକୃତ ଜନତନ୍ତ୍ର ପ୍ରତିଷ୍ଠା ହୋଇଛି ବୋଲି ମତ ଦେଇଥାନ୍ତି । ଏହି ଦୁଇଟି ବିଶ୍ୱକୁ ଛାଡ଼ିଦେଲେ ଅନେକ ରାଷ୍ଟ୍ର ବିକାଶଶୀଳ ଯେଉଁମାନେ ତୃତୀୟ ବିଶ୍ୱର ଅନ୍ତର୍ଗତ । ସାଧାରଣତଃ ଦକ୍ଷିଣ ଏସୀୟ, ଆଫ୍ରିକୀୟ ଓ ଲାଟିନ୍ ଆମେରିକୀୟ ରାଷ୍ଟ୍ରମାନେ ହେଲେ ତୃତୀୟ ବିଶ୍ୱ । ଏହି ତୃତୀୟ ବିଶ୍ୱରେ ଅନେକ ଲୋକଙ୍କର ଆର୍ଥିକ ସ୍ଥିତି ଦୟନୀୟ । ଅଧିକାଂଶ ବ୍ୟକ୍ତି ଉନ୍ନତ ସ୍ୱାସ୍ଥ୍ୟସେବା, ଶିକ୍ଷା, କର୍ମସଂସ୍ଥାନରୁ ବଞ୍ଚିତ ଓ ଏମାନଙ୍କର ଜୀବନଧାରଣର ମାନ ନ୍ୟୁନ । ତୃତୀୟ ବିଶ୍ୱର ଜନସଂଖ୍ୟାର ଏକ ମୁଖ୍ୟ ଅଂଶ ଦାରିଦ୍ର୍ୟ ସୀମାରେଖା ତଳେ ଓ ଏପରିକି ଉପମାନବୀୟ ସ୍ତରରେ ଜୀବନ ଅତିବାହିତ କରନ୍ତି ।

ଆମ ଦେଶ ପୃଷ୍ଠଭୂମିରେ ବିଚାର କଲେ ଆମ ଦେଶର ଦାରିଦ୍ର୍ୟ ସୁବିଦିତ । ତେବେ ଏହି ଦାରିଦ୍ର୍ୟର କାରଣ କ'ଣ ହୋଇପାରେ ? ଏହା ଏକ ଜଟିଳ ପ୍ରଶ୍ନ । ସମାଜର କୌଣସି ସମସ୍ୟା ଏକ ଏକକ ବା ନିଃସଙ୍ଗ ସମସ୍ୟା ନୁହେଁ । ସମାଜର ଯେ କୌଣସି ଏକ ଗୁରୁତର ସମସ୍ୟା ବହୁ ଆନୁସଙ୍ଗିକ ସମସ୍ୟା ସହ ସଂଶ୍ଲିଷ୍ଟ ବା ନାନା ଜଟିଳ ସାମାଜିକ ପ୍ରକ୍ରିୟାର ଏକ ପରିଣତି । ରାଜନୈତିକ ଘଟଣା ପ୍ରବାହ, ସାମାଜିକ ଓ ସାଂସ୍କୃତିକ ପରିବେଶ, ଭୌଗୋଳିକ ସ୍ଥିତି, ଜନସଂଖ୍ୟା, ପ୍ରଚଳିତ ଆର୍ଥିକ ବ୍ୟବସ୍ଥା ଇତ୍ୟାଦି ବହୁ ଜଟିଳ କାରଣ ଆମର ଦାରିଦ୍ର୍ୟ ସହ ସଂଶ୍ଲିଷ୍ଟ । କେବଳ ଆମ ଦେଶ ନୁହେଁ, ଯେ କୌଣସି ରାଷ୍ଟ୍ରର ଦାରିଦ୍ର୍ୟର ନାନା ଦିଗନ୍ତ ରହିପାରେ ଓ ସେ ସବୁର ସମ୍ମିଳିତ ପ୍ରଭାବ ରାଷ୍ଟ୍ରର ଅର୍ଥନୈତିକ ବିକାଶ ପ୍ରକ୍ରିୟାକୁ ନାନା ପ୍ରତିକୂଳ ଦିଗରେ ପ୍ରଭାବିତ କରିପାରେ ।

ଠିକ୍ ସେହିପରି ଯେଉଁ ରାଷ୍ଟ୍ର ସମୂହ ବିକଶିତ, ସେମାନଙ୍କ ବିକାଶ ପଛରେ ନାନା କାରଣ ବି ଥାଇପାରେ । ଯେଉଁ ରାଷ୍ଟ୍ରମାନେ ବିକାଶର ଶୀର୍ଷରେ ରହିଛନ୍ତି ସେମାନେ

ଅତୀତରେ ସାମ୍ରାଜ୍ୟବାଦୀ ଶୋଷଣରୁ ଏତେ ବିକଶିତ ହୋଇଛନ୍ତି ବୋଲି କେତେକ କହିଥାନ୍ତି । ହୁଏତ କେତେକ ରାଷ୍ଟ୍ର ଅତୀତରେ ସାମ୍ରାଜ୍ୟବାଦ ବିସ୍ତାର କରିଛନ୍ତି, କିନ୍ତୁ ପ୍ରତ୍ୟେକ ବିକଶିତ ରାଷ୍ଟ୍ର ଯେ ଅତୀତରେ ସାମ୍ରାଜ୍ୟବାଦୀ ଥିଲେ ଏହା କହିବା ସତ୍ୟର ଅପଳାପ ହେବ । ସେହିପରି ସମୃଦ୍ଧି ସହ କେଉଁ ଅର୍ଥନୈତିକ ବ୍ୟବସ୍ଥା ସଂଶ୍ଳିଷ୍ଟ ଓ ତାହା କିପରି ରାଷ୍ଟ୍ରର ବିକାଶଧାରାକୁ ପ୍ରଭାବିତ କରିଛି ତାହା ବି ଏକ ଜଟିଳ ପ୍ରଶ୍ନ । କୌଣସି ବିକଶିତ ରାଷ୍ଟ୍ରର ବିକାଶଧାରାକୁ ସେଠିକାର ରାଜନୈତିକ ବ୍ୟବସ୍ଥା, ସାଂସ୍କୃତିକ ପରମ୍ପରା, ବୈଜ୍ଞାନିକ ଗବେଷଣା, ଆଧୁନିକ ପ୍ରଯୁକ୍ତି, ଜନସଂଖ୍ୟା ଓ ଭୌଗୋଳିକ ପରିବେଶ କିପରି ସହାୟକ ତାହାର ଅନୁଶୀଳନ କରାଯାଇପାରେ । ଅବଶ୍ୟ ସମୃଦ୍ଧ ରାଷ୍ଟ୍ରମାନଙ୍କରେ ସାମାଜିକ ସ୍ଥିରତା, ନାଗରିକ ଶୃଙ୍ଖଳାବୋଧ, ଗଣତାନ୍ତ୍ରିକ ଜୀବନଶୈଳୀ, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ଅନେକ ଆଦର୍ଶ ଓ ମହତ୍ତର ମୂଲ୍ୟବୋଧ ଜୀବନଧାରାର ଅଙ୍ଗ ହୋଇଯାଇଛି । ଅର୍ଥନୈତିକ ବିକାଶ ସହ ଏହି ସାଂସ୍କୃତିକ ଉତ୍ତରଣ ଓ ନୈତିକ ଶୃଙ୍ଖଳା ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାରେ ସହାୟକ ହୋଇଛି । ଅବଶ୍ୟ ଏକଥା ସତ ଯେ ସମୃଦ୍ଧିର ଏକ ସୀମା ରହିଛି ଓ ଅର୍ଥନୈତିକ ସମୃଦ୍ଧି ସୀମାହୀନ ଭାବେ ଆଗକୁ ଯାଇପାରିବ ନାହିଁ । ସେହିପରି ସମୃଦ୍ଧିର ଅର୍ଥ ଏକ ଉପଭୋକ୍ତାବାଦୀ ଜୀବନଧାରା ନୁହେଁ । ବରଂ ସମୃଦ୍ଧି ସହିତ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ଓ ମାନବିକତାବୋଧର ଅଭିବ୍ୟକ୍ତି ଆବଶ୍ୟକ ।

ସେହିପରି ବିକଶିତ ବା ସମୃଦ୍ଧ ରାଷ୍ଟ୍ର ଓ ତୃତୀୟ ବିଶ୍ୱ ଭିତରେ ପାର୍ଥକ୍ୟ କଳାବେଳେ ସମୃଦ୍ଧ ରାଷ୍ଟ୍ର ପଛରେ ପ୍ରକୃତି ଅନୁକୂଳ ଓ ପ୍ରତ୍ୟେକଟି ଅବିକଶିତ ରାଷ୍ଟ୍ରରେ ପ୍ରକୃତି ପ୍ରତିକୂଳ ଏହା କୁହାଯାଇ ପାରିବ ନାହିଁ । ଜାପାନ, ସ୍କାଣ୍ଡିନେଭିଆନ୍ ରାଷ୍ଟ୍ର ସମୂହର ପ୍ରାକୃତିକ ପରିବେଶ ଅତ୍ୟନ୍ତ ପ୍ରତିକୂଳ, ଏ ପ୍ରତ୍ୟେକଟି ରାଷ୍ଟ୍ର ବିଶ୍ୱଯୁଦ୍ଧରେ ନାନା ବିଭୀଷିକାର ସମ୍ମୁଖୀନ ହୋଇଛନ୍ତି, ଏହା ସତ୍ତ୍ୱେ ଏହି ରାଷ୍ଟ୍ର ସବୁ ବେଶ୍ ସମୃଦ୍ଧ ଓ ପ୍ରଗତିଶୀଳ । ଅପରପକ୍ଷରେ ଆମ ଦେଶର ପ୍ରାକୃତିକ ପରିବେଶ ବିଶେଷ ପ୍ରତିକୂଳ ନୁହେଁ । ପ୍ରଚୁର ପ୍ରାକୃତିକ ସମ୍ପଦ ଓ ମାନବ ସମ୍ବଳ ଆମର ରହିଛି, ସେପରି କିଛି ପ୍ରାକୃତିକ ଦୁର୍ବିପାକ ବା ଯୁଦ୍ଧର ବିଭୀଷିକା ଆମ ରାଷ୍ଟ୍ରର ଅର୍ଥନୀତିକୁ ନଷ୍ଟ କରିନାହିଁ । ଏସବୁ ଅନୁକୂଳ ପରିବେଶ ସତ୍ତ୍ୱେ ଆମ ଦେଶ ଏକ ଗରିବ ରାଷ୍ଟ୍ର ହୋଇ ରହିଛି ଓ ଜନସଂଖ୍ୟାର ଏକ ପ୍ରମୁଖ ଅଂଶ ଉପମାନବୀୟ ସ୍ତରରେ ଜୀବନ ବଂଚୁଛନ୍ତି ।

ସ୍ୱାଧୀନତା ଆନ୍ଦୋଳନର ପ୍ରାକ୍ କାଳରେ ଆମ ଦେଶରେ ଅନେକ ସ୍ୱପ୍ନ ରହିଥିଲା, ଦେଶ ସ୍ୱାଧୀନ ହେଲେ ଦେଶରୁ ସକଳ ଦାରିଦ୍ର୍ୟ ଦୂର ହୋଇଯିବ, ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ ବଞ୍ଚିପାରିବ, ଏଠାରେ କେହି ଭୋକିଲା ବା ନିରକ୍ଷର ରହିବେ ନାହିଁ ବୋଲି ଅନେକେ କଳ୍ପନା କରିଥିଲେ । ସ୍ୱାଧୀନତା ପରେ ପରେ ଆଧୁନିକ

କଳକାରଖାନା, ଶିକ୍ଷାନୁଷ୍ଠାନ, ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନମାନ ସ୍ଥାପିତ ହେବାର ପର୍ବ ଆରମ୍ଭ ହୋଇଥିଲା । ବିଶ୍ୱାସ ଥିଲା ଏସବୁ ଦ୍ୱାରା ବିକାଶର ଧାରାକୁ ତ୍ୱରାନ୍ୱିତ କରି ହେବ ଓ ଜାତୀୟ ସମୃଦ୍ଧି ସୁଦୃଢ଼ ହେଲେ ତାହାର ସୁଫଳ ଅଗଣିତ ବ୍ୟକ୍ତି ଲାଭ କରିବେ । କିନ୍ତୁ ସ୍ୱାଧୀନତା ପ୍ରାପ୍ତିର ଛଅ ଦଶନ୍ଧିରୁ ଅଧିକ ସମୟ ଏହା ଭିତରେ ଅତିକ୍ରମ କରିଯାଇଥିଲେ ମଧ୍ୟ ଏବେବି ଦାରିଦ୍ର୍ୟ, ବୈଷମ୍ୟ ଓ ଶୋଷଣ ଭିତରେ ସମାଜର ଅଗଣିତ ମଣିଷ ଆକ୍ରାନ୍ତ ହୋଇ ରହିଛନ୍ତି । ଜନକଲ୍ୟାଣକାରୀ ଯୋଜନାର ସୁଫଳ ସାଧାରଣ ମଣିଷ ପାଖକୁ ଯାଇପାରୁ ନାହିଁ । ନୂତନ ଅର୍ଥନୀତି ଦ୍ୱାରା ସମାଜର ମୁଷ୍ଟିମେୟ ଲୋକ ପ୍ରାଚୁର୍ଯ୍ୟ ଭିତରେ ରହିବା ବେଳେ କିଛି ଲୋକ ନିଜ ଭିଟାମାଟିରୁ ବି ବିସ୍ଥାପିତ ହୋଇ ଅସହାୟ ଭାବରେ ଜୀବନ ବଞ୍ଚୁଛନ୍ତି । ଆମର ଏହି ସ୍ଥିତି ପଛରେ ଆମର ସାମାଜିକ ଓ ନୈତିକ ସ୍ଖଳନ ଅନ୍ୟାନ୍ୟ କାରଣ ଅପେକ୍ଷା ଅଧିକ ପ୍ରତିବନ୍ଧକ ମନେହୁଏ । ଆମ ସମାଜରେ ନାଗରିକ ଶୃଙ୍ଖଳାବୋଧର ଘୋର ଅଭାବ, ଜାତିଆଣ ମାନସିକତା ଜନିତ ଉଚ୍ଚ-ନୀଚ ଭେଦଭାବ, ପ୍ରଶାସନିକ ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର, ସାମ୍ପ୍ରଦାୟିକ ବିଦ୍ୱେଷ, ଧର୍ମ, ପରମ୍ପରା ନାମରେ କୁସଂସ୍କାରର ପ୍ରାବଲ୍ୟ, କର୍ମସଂସ୍କୃତିର ଘୋର ଅଭାବ ବଡ଼ ପ୍ରତିବନ୍ଧକ ମନେହୁଏ । ପ୍ରାକୃତିକ ପରିବେଶ ଆମ ପାଇଁ ଯେତେ ଅନୁକୂଳ ମନେହେଲେ ମଧ୍ୟ ଆମର ସାମାଜିକ ପରିବେଶ ଆମର ଦାରିଦ୍ର୍ୟ ଓ ଅନଗ୍ରସରତା ପାଇଁ ଯେ ଅନେକାଂଶରେ ଦାୟୀ ଏହା ମନେହୁଏ । (ସମ୍ବାଦ - ୩୧.୭.୧୦)



# ଗୁଣାତ୍ମକ ଜୀବନ

ଜୀବନର ଗୁଣାତ୍ମକ ମାନ କାହା ଉପରେ ନିର୍ଭର କରେ ? ସେହିପରି ଜୀବନର ଲକ୍ଷ୍ୟ କାହା ଉପରେ ନିହିତ ? ଏହି ପ୍ରଶ୍ନଗୁଡ଼ିକ ଯେତେ ସରଳ ମନେହେଲେ ବି ଏହା ଉପରେ ଅସଂଖ୍ୟ ମତ ଓ ତତ୍ତ୍ୱ ରହିଛି । ଏହି ସବୁ ପ୍ରଶ୍ନକୁ ନେଇ ବିଭିନ୍ନ ଦାର୍ଶନିକ ବିଚାର ମଧ୍ୟ ରହିଛି । ବିଭିନ୍ନ ଧର୍ମ ଓ ଦାର୍ଶନିକ ଗୋଷ୍ଠୀ ଜୀବନର ଲକ୍ଷ୍ୟ ନେଇ କେତେ କେତେ କାଳ୍ପନିକ ତତ୍ତ୍ୱର ସିଦ୍ଧାନ୍ତ ଦେଇଛନ୍ତି । ସ୍ୱର୍ଗପ୍ରାପ୍ତି, ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱର ପ୍ରାପ୍ତି, କୈବଲ୍ୟ ଇତ୍ୟାଦି କେତେ କେତେ ଦାର୍ଶନିକ ମତର ଅବତାରଣା ଏ କ୍ଷେତ୍ରରେ ରହିଛି । ସେଗୁଡ଼ିକର ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ନାନା ପରସ୍ପର ବିରୋଧୀ ଭାବନା ଓ ବହୁ ଅତୀନ୍ଦ୍ରିୟ କଳ୍ପନା ରହିଥିବା ଦେଖାଯାଏ । ପାରଲୌକିକ ବିଶ୍ୱାସ ଓ ଦେହାତୀତ ସ୍ଥିତି ଜନିତ ଅଲୌକିକ ଭାବନା ଗୁଡ଼ିକ ପଛରେ ଯେହେତୁ କୌଣସି ବସ୍ତୁନିଷ୍ଠ ବା ଅନୁଭୂତି ମୂଳକ ଆଧାର ନାହିଁ ସେଗୁଡ଼ିକ କେବଳ ଧାର୍ମିକ ବିଶ୍ୱାସ ଓ ରହସ୍ୟମୟ କଳ୍ପନା କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଆମେ ଯେଉଁ ସାମାଜିକ ପରିବେଶରେ ରହିଛେ ତାହାରି ପୃଷ୍ଠଭୂମିରେ ଜୀବନର ଗୁଣାତ୍ମକ ମାନ କିପରି ଉନ୍ନତ ହୋଇପାରିବ ତାହା ବିଚାର କଲାବେଳେ ନାନା ପ୍ରଶ୍ନ ସମ୍ମୁଖକୁ ଆସିଥାଏ ।

ମଣିଷର ସାମାଜିକ ପ୍ରବୃତ୍ତି ଯୋଗୁଁ ମଣିଷ ସର୍ବଦା ଗୋଷ୍ଠୀଗତ ଜୀବନଯାପନ କରିଆସିଛି । ଏତଦ୍‌ବ୍ୟତୀତ ପ୍ରାକୃତିକ କାରଣର ବାଧ୍ୟବାଧକତା ହେତୁ ମଣିଷ ସମାଜରେ ହିଁ ରହିଛି ଓ ପରିଣାମତଃ ସାମାଜିକ ବ୍ୟବସ୍ଥା, ପରମ୍ପରା ଦ୍ୱାରା ଅନୁପ୍ରାଣିତ ହୋଇ ଆସିଛି । ପ୍ରକୃତି ଏପରି କରିଛି ଯେ ସମସ୍ତ ପ୍ରାଣୀମାନଙ୍କ ଭିତରେ ମଣିଷ ଶ୍ରେଷ୍ଠ, କାରଣ ସେ ଭାଷା ବ୍ୟବହାର କରିବାକୁ ସମର୍ଥ, ଆତ୍ମ ସଚେତନ ଓ ପ୍ରକୃତି ତଥା ପରିବେଶକୁ ଅବବୋଧ କରି ଜୀବନର ମାନକୁ ଉନ୍ନତ କରିବାକୁ ସତତ ପ୍ରୟାସୀ । କିନ୍ତୁ ଏହା ମଧ୍ୟ ଏକ ବିଡ଼ମ୍ବନା ଯେ ଜୀବ ଜଗତରେ ମଣିଷର ମସ୍ତିଷ୍କ ସବୁଠାରୁ ଉନ୍ନତ ହେଲେ ମଧ୍ୟ ମଣିଷ ଶିଶୁ ବହୁ ବର୍ଷ ପର୍ଯ୍ୟନ୍ତ ଅସହାୟ । ପଶୁ ଜଗତରେ ଗୋଟିଏ ଜନ୍ମିତ ଶିଶୁ ମାତ୍ର କେତୋଟି ଘଣ୍ଟା ବା ଦିନ ପରେ ନିଜକୁ ପରିବେଶ ସହ ମିଶାଇ ବଞ୍ଚିବାକୁ ପ୍ରୟାସ କରିଥାଏ । କିନ୍ତୁ ମଣିଷ ଶିଶୁ ବହୁ ବର୍ଷ ପର୍ଯ୍ୟନ୍ତ ପରିବାର, ସାମାଜିକ ଗୋଷ୍ଠୀ ଓ ବୃହତ୍ତର ପରିବେଶ ଉପରେ ନିର୍ଭର କରି ଆସ୍ତେ ଆସ୍ତେ ଗଢ଼ି ଉଠିଥାଏ । ଐତିହାସିକ ଓ ନୃତାତ୍ତ୍ୱିକ ବିଶ୍ଳେଷଣରୁ ଏହା ମଧ୍ୟ ଜଣାପଡ଼େ ଯେ ସାମାଜିକ ବିକାଶ ପ୍ରକ୍ରିୟାରେ ପାରିବାରିକ ଜୀବନରୁ ଦଳ, ଗୋଷ୍ଠୀ,

କ୍ଷୁଦ୍ର ରାଜ୍ୟ, ଦେଶ ଓ ଆଧୁନିକ ରାଷ୍ଟ୍ରମାନଙ୍କ ଉଦ୍ଭବ ହୋଇଛି । ବସ୍ତୁତଃ ସାମାଜିକ ଜୀବନର ଭାଷା, ଭାବନା, ଚଳଣି, ପରମ୍ପରା, ରୁଚିବୋଧ, ସଂସ୍କୃତି ଇତ୍ୟାଦିର ବହୁ ପ୍ରଭାବ ଦ୍ୱାରା ବ୍ୟକ୍ତି ଗଢ଼ି ଉଠିଥାଏ ଓ ନିଜର ଜୀବନଦୃଷ୍ଟିକୁ ଋଦ୍ଧିମନ୍ତ କରିଥାଏ । ଏହି ପ୍ରକ୍ରିୟାରେ କାଳକ୍ରମେ ତାର ସାମାଜିକ ପରିଚୟ ଓ ଅସ୍ମିତା ବି ଆସିଥାଏ ଯାହା ସହିତ ତାର ଆବେଗିକ ବନ୍ଧନ ଦୃଢ଼ ହୋଇଥାଏ । ବହୁ ଅତୀତର କ୍ଷୁଦ୍ର ଗୋଷ୍ଠୀଠାରୁ ଆଧୁନିକ ଯୁଗର ରାଷ୍ଟ୍ର ଭାବନାର ବିକାଶ ଭିତରେ ଯେଉଁ ବିସ୍ତୃତ ଇତିହାସ ରହିଛି ତାହାରି ଭିତରେ ମଣିଷର ପ୍ରଗତିର ଏକ ସୁଦୀର୍ଘ ଇତିହାସ ରହିଛି । ସାମାଜିକ, ସାଂସ୍କୃତିକ, ଅର୍ଥନୀତିକ ଓ ରାଜନୈତିକ ବିକାଶ ପ୍ରକ୍ରିୟାର ଧାରା ମଧ୍ୟଦେଇ ପ୍ରତ୍ୟେକ ଜନଗୋଷ୍ଠୀ ନାନା ପରିବର୍ତ୍ତନ ଦେଇ ଅଗ୍ରଗତି କରିଛି । ଏକ ଆଦିମ ଅବସ୍ଥାରୁ ବହୁ ସ୍ତର ଦେଇ ମଣିଷର ବିକାଶ ଯେପରି ହୋଇଛି, ସେହିପରି କ୍ରମବର୍ଦ୍ଧିଷ୍ଣୁ ଭାବେ ଜ୍ଞାନ, ବିଜ୍ଞାନ, ସାଂସ୍କୃତିକ ଭାବନା, ସଭ୍ୟ ଦୃଷ୍ଟିଭଙ୍ଗୀ, ରାଜନୈତିକ ବ୍ୟବସ୍ଥା ଇତ୍ୟାଦିର ମଧ୍ୟ କ୍ରମବିକାଶ ହୋଇଛି ।

ତେବେ ବିଡ଼ମ୍ବନାର ବିଷୟ, ମଣିଷର ସ୍ଥିତି ସହ ସର୍ବଦା କିଛି ନା କିଛି ସଂକଟ ରହିଛି । ମଣିଷ ପାହାଚ ପାହାଚ ଦେଇ ଜ୍ଞାନ, ବିଜ୍ଞାନ ଓ ସାଂସ୍କୃତିକ ଚେତନାର ଯେତେ ବିକାଶ କରାଇଛି ସେହି ଭାବରେ ନାନା ସମସ୍ୟା ଓ ସଂକଟ ଜୀବନ ପ୍ରବାହ ସହ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ରହିଛି । ପ୍ରକୃତି ମଣିଷ ପାଇଁ ଯେତେ ପ୍ରତିକୂଳ ହେଲେ ମଧ୍ୟ କେତେକ ବୁଦ୍ଧିମାନ ବ୍ୟକ୍ତି ନିଜର ଅନୁସନ୍ଧିତ୍ସା ଓ ବିଚାରବୋଧ ଦେଇ ସେସବୁକୁ ଅତିକ୍ରମ କରିବାକୁ ସଭ୍ୟତାର ଆରମ୍ଭକାଳରୁ ପ୍ରୟାସ କରିଆସିଛନ୍ତି । ସେହି ପ୍ରୟାସର ପରିଣାମ ସ୍ୱରୂପ ସଂପ୍ରତି ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ବା ସାମାଜିକ ସ୍ଥିରତା କ୍ଷେତ୍ରରେ ଏତେ ଅଭିବୃଦ୍ଧି ସମ୍ଭବ ହୋଇଛି । କୌଣସି ନୂତନ ଜ୍ଞାନ ବା କୌଶଳର ଅଧିକାରୀ ହେବା ଦ୍ୱାରା ବଞ୍ଚିବାର ମାନରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି । କିନ୍ତୁ ଏହା ସହିତ ନୂତନ ସମସ୍ୟା ବି ସୃଷ୍ଟି ହୋଇଛି । ଏହା ସଭ୍ୟତାର ଆରମ୍ଭ କାଳରୁ ଏ ପର୍ଯ୍ୟନ୍ତ ହୋଇଆସିଛି । ଚାଷବାସ ଜାଣିବା ପରେ ମଣିଷ ସ୍ଥାୟୀ ଭାବେ ଗୋଷ୍ଠୀଗତ ଗ୍ରାମୀଣ ଜୀବନ ଆରମ୍ଭ କରିଛି, ତେବେ ନରବଳି ଦେଲେ ଚାଷରେ ଭଲ ଫସଲ ଫଳିବ ବୋଲି ବିଶ୍ୱାସ ସୃଷ୍ଟି ହୋଇଛି । ଘୋଡ଼ାକୁ ଗୃହପାଳିତ ପଶୁ କରି ଯାତାୟତ କରିବା ସାମର୍ଥ୍ୟ ମଣିଷ ଜାଣିବା ପରେ ତାର ଗତିଶୀଳତା ଆସିଛି । ଏହା ସହିତ ଘୋଡ଼ା ସାହାଯ୍ୟରେ ଅନ୍ୟ ଭୂଖଣ୍ଡ ଉପରେ ଆକ୍ରମଣ କରିବାରୁ ଯୁଦ୍ଧର ପରିବେଶ ସୃଷ୍ଟି ହୋଇଛି । ଶିଳ୍ପ ବିପ୍ଳବ ଯୁଗରେ ଉତ୍ପାଦନ ବହୁ ଭାବରେ ବଢ଼ିଛି ଓ ବଞ୍ଚିବାର ମାନରେ ବହୁ ଉନ୍ନତି ଆସିଛି । ତେବେ ସେହି ଯୁଗରେ ସାମ୍ରାଜ୍ୟବାଦ ମଧ୍ୟ ସୃଷ୍ଟି ହୋଇଛି ଓ ବାଳଶ୍ରମିକ ପ୍ରଥା ପରି ବହୁ ଅମାନବିକ ପରିସ୍ଥିତି ମଧ୍ୟ ଆସିଛି । ସଂପ୍ରତି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି କ୍ଷେତ୍ରରେ

ପ୍ରଭୁତ ବିକାଶ ସାଧନ ହୋଇଛି ଯାହା ସଭ୍ୟତାର ରୂପରେଖ ବଦଳାଇବାରେ ଲାଗିଛି । ତେବେ ବିଡ଼ମ୍ବନାର ବିଷୟ ଗଣବିଧ୍ୱଂସୀ ମାରଣାସ୍ତ୍ର ମଧ୍ୟ ମଣିଷ ତିଆରି କରିବାକୁ ସମର୍ଥ ହୋଇଛି । ଏହିପରି ଅନେକ ଉଦାହରଣ ଦିଆଯାଇପାରେ । ଜ୍ଞାନ, କାରିଗରୀ କୌଶଳ ଓ ପ୍ରକୃତି ଉପରେ ନିୟନ୍ତ୍ରଣ ଯେତିକି ବୃଦ୍ଧି ପାଉଛି ସେହି ଅନୁପାତରେ ମାନବିକ ସମସ୍ୟା ଓ ସଂକଟ ମଧ୍ୟ ବଢ଼ୁଛି ।

ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଯାହା ହୋଇଛି, ସାମାଜିକ ସଂଗଠନ, ଧାର୍ମିକ ବିଶ୍ୱାସ ଇତ୍ୟାଦି ସ୍ତରରେ ମଧ୍ୟ ସେହିପରି ଜଟିଳ ପରିସ୍ଥିତି ସୃଷ୍ଟି ହୋଇ ଆସିଛି । ଏକଦା ମହତ୍ତର ଜୀବନ ପାଇଁ ପ୍ରେରଣାର ଉତ୍ସ ଭାବେ ବିଭିନ୍ନ ଭୂଖଣ୍ଡରେ ଧର୍ମମାନଙ୍କର ଉଦ୍ଭବ ହୋଇଥିଲା । ତେବେ ନିଜ ଧର୍ମର ଭାବନାକୁ ଚିରନ୍ତନ ସତ୍ୟ, ପବିତ୍ର ଓ ଈଶ୍ୱରପ୍ରେରିତ ପରି ଭାବନାରୁ ଧାର୍ମିକ ମତାନ୍ଧତା ଆସିଛି ଓ ଧର୍ମକୁ ଆଧାର କରି ସାଂପ୍ରଦାୟିକ ବିଦ୍ୱେଷ, ଘୃଣା ଓ ଯୁଦ୍ଧର ବିଭୀଷିକା ସୃଷ୍ଟି ହୋଇଛି । ରାଷ୍ଟ୍ରର ଭାବନା ୟୁରୋପରେ ନବଜାଗରଣ ଯୁଗ ପରେ ସୃଷ୍ଟି ହୋଇଛି ଓ ରାଷ୍ଟ୍ର ଏକ ରାଜନୈତିକ ବ୍ୟବସ୍ଥା ଭାବେ କାଳକ୍ରମେ ସାମାଜିକ ଜୀବନରେ ସୁଦୃଢ଼ ଭିତ୍ତି ନେଇଛି । ରାଷ୍ଟ୍ର ସଂପ୍ରତି ପ୍ରତ୍ୟେକ ବ୍ୟକ୍ତି ପାଇଁ ଏକ ରାଜନୈତିକ ପରିଚୟ ଆଣିଦେବା ସହ ନାଗରିକଙ୍କ ପାଇଁ ଜନମଙ୍ଗଳ ଆଭିମୁଖ୍ୟ ନେଇ ପାରିଛି । ତେବେ ରାଷ୍ଟ୍ର ମଧ୍ୟରେ ବିବାଦ, ବିଦ୍ୱେଷର ଭାବନା ମଧ୍ୟ ସୃଷ୍ଟି ହୋଇଛି । 'ମୋର ମାତୃଭୂମି ପବିତ୍ର ଓ ଏଥିପାଇଁ ଜୀବନ ଦେବା ଏକ ନୈତିକ କର୍ତ୍ତବ୍ୟ' ବୋଲି ଭାବନାରୁ ସୀମାପାର ସନ୍ତ୍ରାସବାଦ ବି ମୁଣ୍ଡଟେକିଛି । ନିଜର ନିରାପତ୍ତାର ଆଳ ନେଇ ପ୍ରତ୍ୟେକ ରାଷ୍ଟ୍ର ଧ୍ୱଂସାତ୍ମକ ଅଣୁ ଅସ୍ତ୍ର ନିର୍ମାଣରେ ପ୍ରାକୃତିକ ସାଧନ ଓ ସଂପଦକୁ ଧ୍ୱଂସ କରିବା ସହ ବିଶ୍ୱରେ ଏକ ଉତ୍ତେଜନାର ବାତାବରଣ ସୃଷ୍ଟି କରି ଆସିଛି ।

ମଣିଷର ଭାବନା, ଜ୍ଞାନ ଓ ସାମାଜିକ ସଂଗଠନର ସୁତରାଂ ଦୁଇଟି ଦିଗ ରହିପାରେ । ଆଧୁନିକ ଜ୍ଞାନ, ପ୍ରଯୁକ୍ତି ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଓ ଉନ୍ନତ ଜୀବନଶୈଳୀ ପାଇଁ ଯଥେଷ୍ଟ ଅନୁକୂଳ ପରିସ୍ଥିତି ସୃଷ୍ଟି କରିପାରେ । ଅପରପକ୍ଷରେ ବିଚାରହୀନତା, ବିଦ୍ୱେଷ ଓ ଭେଦଭାବ ଜନିତ ମାନସିକତା ସମାଜରେ ଅକଥନୀୟ ଦୁଃଖ ଦୁର୍ଦ୍ଦଶାର ପରିବେଶ ମଧ୍ୟ ସୃଷ୍ଟି କରିପାରିବ । ସଭ୍ୟତାର ଆଦିକାଳରୁ ବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଜାତିବାଦ, ଗୋଷ୍ଠୀବାଦ, ଧର୍ମ, ରାଷ୍ଟ୍ର, ଭାଷା ଜନିତ ସଂକୀର୍ଣ୍ଣତା ଆମ ସଂସାରକୁ ନାନା ଭାବରେ ବିଭାଜିତ ଓ ରକ୍ତରଂଜିତ କରି ଆସିଛି । ଏହି ପରିସ୍ଥିତିରେ ପରିବର୍ତ୍ତନ ଆଣିବା ପାଇଁ ବିଭିନ୍ନ ଯୁଗରେ ଅନେକ କ୍ରାନ୍ତିକାରୀ ହେତୁବାଦୀ, ଦାର୍ଶନିକ ଓ ମାନବ ଦରଦୀ ଚିନ୍ତାନାୟକ ଗମ୍ଭୀର ଚିନ୍ତା ପ୍ରକଟ କରିଆସିଛନ୍ତି ।

ତେବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ବହୁ ବିଶ୍ୱ ସଂସ୍ଥା ପୃଥିବୀରେ ସୃଷ୍ଟି ହୋଇଛି । ମାନବ ଜାତିର ସମସ୍ୟା ସଂପ୍ରତି ଆନ୍ତର୍ଜାତିକ ସ୍ତରରେ

ବିଶ୍ୱର ସଚେତନ ରାଷ୍ଟ୍ରନୀତିଜ୍ଞଙ୍କ ମଧ୍ୟରେ ଆଲୋଚିତ ହୋଇପାରୁଛି । ସବୁଦେଶର ମାନବହିତୈଷୀ ବ୍ୟକ୍ତିଗଣ ଏକ ସୁନ୍ଦର ପୃଥିବୀର ବାସ୍ତବ ରୂପାୟନ ପାଇଁ କେତେ କେତେ ପ୍ରକଳ୍ପର ବାର୍ତ୍ତା ଦେଉଛନ୍ତି । ଆଗାମୀ ଦିନରେ ମଣିଷ ଜାତି ଯେଉଁ ସମସ୍ୟାର ସମ୍ମୁଖୀନ ହେବାର ସମ୍ଭାବନା ରହିଛି ତାହା ମଧ୍ୟ ବିଶ୍ୱସ୍ତରରେ ଆଲୋଚିତ ହୋଇ ସମାଧାନର ପନ୍ଥା ଚିନ୍ତା କରାଯାଉଛି । ବିଶ୍ୱରେ ରହିଥିବା ମାରାତ୍ମକ ବ୍ୟାଧିଗୁଡ଼ିକର ଚିକିତ୍ସା ପାଇଁ ଆନ୍ତର୍ଜାତିକ ସହଯୋଗରେ ଉନ୍ନତ ଗବେଷଣା କରାଯାଇପାରୁଛି । ତୃତୀୟ ବିଶ୍ୱର ଜନଗଣଙ୍କର ଜୀବନର ମାନକୁ ଉନ୍ନତ କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ଆନ୍ତରିକତା ପ୍ରକାଶ ପାଉଛି । ଏକ ଯୁଦ୍ଧରହିତ ବିଶ୍ୱପାଇଁ କେତେକ ମନୀଷୀ ବିଶ୍ୱ ସରକାର ପରିଭାବନା ବ୍ୟକ୍ତ କରୁଛନ୍ତି । ଆଧୁନିକ ପ୍ରଯୁକ୍ତିର ପରିଣାମରୁ ଭବିଷ୍ୟତରେ ବିଶ୍ୱ ଏକ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ ହେବାର ସମ୍ଭାବନା ସୃଷ୍ଟି ହେବାରେ ଲାଗିଛି । ଜାତି, ଧର୍ମ, ଜାତୀୟତାର ପ୍ରାଚୀର ଗୁଡ଼ିକ ଭବିଷ୍ୟତରେ ଯେ ଭୁଷୁଡ଼ି ପଡ଼ିବ ତାହା କଳ୍ପନା କରାଯାଉଛି । ଯେଉଁ ଯେଉଁ କାରଣ ଗୁଡ଼ିକରୁ ହିଂସାର ପରବେଶ ରହିଆସିଛି ତାହାର ବିଲୋପ ସମ୍ଭବ ହେଲେ ଏକ ଅହିଂସ ବିଶ୍ୱର ସମ୍ଭାବନା ଉଜ୍ଜ୍ୱଳ ହୋଇଉଠିବ । ସେତେବେଳେ ବିଶ୍ୱମାନବିକତା ଓ ମହାନୁଭବତା ହିଁ ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ଭାବେ ବାସ୍ତବ ପକ୍ଷେ ସାମାଜିକ ସମ୍ବନ୍ଧର ଭିତ୍ତି ହୋଇପାରିବ ବୋଲି ଆଶା କରାଯାଉଛି । ଏହା ସଂପ୍ରତି ଯେତେ ଅବାସ୍ତବ ବା ୟୁଟୋପିଆ ପରି ମନେହେଲେ ବି ଏହା ଯେ ମଣିଷ ଜାତିର ସ୍ଥାୟିତ୍ୱ ପାଇଁ ନିର୍ଣ୍ଣାୟକ ହେବ ଏହି ବିଶ୍ୱାସ ପ୍ରକାଶ ପାଉଛି ।

ମୋଟ ଉପରେ ବିଚ୍ଛରଣଶୀଳ ଦୃଷ୍ଟି ଓ ବନ୍ଧୁତ୍ୱଭାବ ଜନିତ ସମ୍ବେଦନଶୀଳ ଜୀବନ ଦର୍ଶନ ଉପରେ ହିଁ ସମାଜରେ ଓ ବିଶ୍ୱରେ ଶାନ୍ତି, ସଦ୍‌ଭାବନାର ପରିବେଶ ସୃଷ୍ଟି ହୋଇପାରିବ । ତାହା ହିଁ ଗୁଣାତ୍ମକ ଜୀବନର ମାନଦଣ୍ଡ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଆଦର୍ଶ ଓ ମୂଲ୍ୟଚୟ ଯେତେ ଅଧିକରୁ ଅଧିକ ସମାଜରେ ବ୍ୟକ୍ତ ହୋଇପାରିବ ତାହା ଜୀବନର ଗୁଣାତ୍ମକ ଅଗ୍ରଗତି ଦିଗରେ ସହାୟକ ହେବ । (ପ୍ରଗତିବାଦୀ, ୧୦.୨.୧୦)



# ବିଚାରଶୀଳ ଦୃଷ୍ଟି

ବିଚାରଶୀଳତା ଓ କୁସଂସ୍କାର ପରସ୍ପରର ପରିପନ୍ଥୀ । ବିଚାରଶୀଳତା ମୁକ୍ତ ମନ, ଯୁକ୍ତିଶୀଳ ଦୃଷ୍ଟିଭଙ୍ଗୀ ଓ ସତ୍ୟ ପ୍ରତି ଉନ୍ମୁକ୍ତ ଏକ ମନୋଭାବ । ଏହା ବିଜ୍ଞାନ ସମର୍ଥିତ । ଅପରପକ୍ଷରେ କୁସଂସ୍କାର ହେଉଛି ଅହେତୁକ ଓ ଅବୈଜ୍ଞାନିକ । ଏହାର ଭିତ୍ତି ହେଉଛି ଆଧାରହୀନ ବିଶ୍ୱାସ ଓ ଭବିଷ୍ୟ ନେଇ ବା ଅଜ୍ଞେୟ ଶକ୍ତି ପାଇଁ ଅହେତୁକ ଭୟ । ଏହି ଭୟର ପରିଣାମରୁ ଏହା ବିଭିନ୍ନ କର୍ମକାଣ୍ଡ ଓ ଅଜ୍ଞେୟ ଶକ୍ତି ପ୍ରତି ଭକ୍ତିଭାବ ଆଣିଥାଏ । ବିଚାରଶୀଳ ଦୃଷ୍ଟି ଜ୍ଞାନ ପାଇଁ ଅନୁସନ୍ଧିତ୍ସା ସୃଷ୍ଟି କରୁଥିବା ବେଳେ କୁସଂସ୍କାର ଏହାର ବିପରୀତ ଦୃଷ୍ଟିଭଙ୍ଗୀର ପ୍ରତୀକ ହୋଇଥାଏ । କୁସଂସ୍କାରର ପରିସର ଅତି ବ୍ୟାପକ ଓ ଏହାର ଏକ ବିସ୍ତୃତ ଚିତ୍ର ଦେବା ସମ୍ଭବ ନୁହେଁ । ତେବେ ଏଠାରେ କେତୋଟି ଘଟଣାକୁ ବ୍ୟକ୍ତ କରୁଛି ।

'ପ୍ରଗତିବାଦୀ'ରେ ପ୍ରକାଶିତ 'କାଉଙ୍କ ଯୁଗଳ ମିଳନ ଦେଖିଲେ ପଡୁଛି କାନ୍ଦବୋବାଳି' (ଫେବୃୟାରୀ ୫,୨୦୧୦) ସମ୍ବାଦଟି ଅନୁଯାୟୀ କାଉଙ୍କର ମିଳନକୁ ଦେଖିଲେ ପରିବାରରେ ଆତଙ୍କ ଖେଳିଯାଉଛି, ଏହା ପୁଣି ଭୁବନେଶ୍ୱରରେ । ଦେଖୁଥିବା ବ୍ୟକ୍ତିର ସମ୍ପର୍କୀୟମାନଙ୍କୁ ସେ ମୃତ ବୋଲି ଖବର ଦିଆଯାଉଛି ଓ ମୃତବ୍ୟକ୍ତିଙ୍କ ପରି ତାଙ୍କର କ୍ରିୟାକର୍ମ କରାଯାଉଛି । କିଛିଦିନ ତଳେ ସମ୍ବଲପୁର ଜିଲ୍ଲାର ଗୋଟିଏ ଗ୍ରାମରେ ଜଣେ ଚାଷୀ ନିଜର ନାତୁଣୀକୁ ବଳିପକାଇ ନାତୁଣୀର ରକ୍ତ ଧାନରେ ମିଶାଇ ତା'ପରଦିନ ଅକ୍ଷୟ ତୃତୀୟାରେ ଧାନ ବୁଣିବାକୁ ଚାହିଁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ଧରଣୀ ମା'କୁ ବଳିଦେଲେ ଭଲ ଫସଲ ହେବ । କିଛିଦିନ ତଳେ ବାଲେଶ୍ୱର ଜିଲ୍ଲାର ଗୋଟିଏ ଗ୍ରାମର ଲୋକମାନେ ଏକ ଭୋଜି ଖାଉଥିବା ବେଳେ ହଠାତ୍ ଜଣେ ବ୍ୟକ୍ତି ଅଚେତ ହୋଇଗଲେ । ସମ୍ବାଦ ଅନୁଯାୟୀ ସେହି ଗ୍ରାମରେ କିଛି ଅଘଟଣ ଘଟିଲେ ଅନ୍ୟ ଲୋକଙ୍କୁ ସନ୍ଦେହ କରାଯାଇ ବର୍ଷେ ଦୁଇବର୍ଷ ଭିତରେ ପାଞ୍ଚଟି ହତ୍ୟାକାଣ୍ଡ ଘଟିଛି । ଗ୍ରାମରେ କିଛି ମନ୍ଦ ଘଟଣା ଘଟିଲେ ଲୋକମାନେ ତାନ୍ତ୍ରିକମାନଙ୍କ ପାଖକୁ ଯାଉଛନ୍ତି ଓ ତାନ୍ତ୍ରିକମାନେ ଲୋକମାନଙ୍କୁ ଗୁଣି ଯୋଗୁ ଏହା ହେଉଛି କହି ବିଭ୍ରାନ୍ତ କରୁଛନ୍ତି । ଫଳରେ ଲୋକମାନେ କାହାକୁ କାହାକୁ ସନ୍ଦେହ କରି ସେମାନଙ୍କୁ ମରଣାନ୍ତକ ଆକ୍ରମଣ କରୁଛନ୍ତି ବା ହତ୍ୟା କରୁଛନ୍ତି । ଓଡ଼ିଶାର ଜନଜୀବନରେ କୁସଂସ୍କାର ଏତେ ବ୍ୟାପକ ଭାବେ ରହିଛି ଯେ

ତା'ର ସଂକଳନ କଲେ ହଜାର ହଜାର ପୃଷ୍ଠାର ପୁସ୍ତକ ହେବ। କୁସଂସ୍କାରର ଭିତ୍ତି ହେଉଛି ଅନ୍ଧବିଶ୍ୱାସ, ଅହେତୁକ ମନୋଭାବ, ଭୟ ଓ ଚିନ୍ତାଶୂନ୍ୟତା। ନାନା ଅହେତୁକ ଭାବନା ଅଜ୍ଞତା ଯୋଗୁ ଯୁଗ ଯୁଗ ଧରି ସମାଜରେ ରହିଆସିଛି। ଅନେକ ଆଧାରହୀନ ବିଶ୍ୱାସ, ପିଢ଼ି ପରେ ପିଢ଼ି ସାମଜରେ କାୟା ବିସ୍ତାର କରି ରହିଆସିବା ଦ୍ୱାରା ତାହାକୁ ପରମ୍ପରାର ଚିତ୍ର ଦିଆଯାଉଛି। ପୁନଶ୍ଚ କେତେକ ବିଶ୍ୱାସକୁ ଧାର୍ମିକ ବିଶ୍ୱାସ ସହ ଯୋଡ଼ି ଦିଆଯାଇ ତାହାକୁ ସଂସ୍କୃତି ବୋଲି ଚିତ୍ରଣ କରାଯାଉଛି। ନାନା ଅସତ୍ୟ, ଆଧାରହୀନ ଓ ଅହେତୁକ ଭାବନା ଜୀବନଧାରାରେ ଏପରି ମିଶିଯାଇଛି ଯେ, ତା'ର ନିରାକରଣ ସମ୍ଭବ ହେଉନାହିଁ।

କୁସଂସ୍କାର ଆମର ଖାଦ୍ୟ, ପୋଷାକ, ଶୟନ, ଯାତ୍ରା, ବ୍ୟବସାୟ, ବିବାହ, ବିଦ୍ୟାରମ୍ଭ, ଜନ୍ମ, ମୃତ୍ୟୁ, ବୃତ୍ତି ଇତ୍ୟାଦି ସହ ସଂଶ୍ଳିଷ୍ଟ। ଏପରିକି ବାଳ କାଟିବା, ଲଣ୍ଡ୍ରିକୁ ଲୁଗା ଦେବା, ଜିନିଷ କିଣିବା ଇତ୍ୟାଦି ସାଧାରଣ ଘଟଣା ସହିତ ମଧ୍ୟ ବହୁ ଅନ୍ଧବିଶ୍ୱାସ ଜଡ଼ିତ। କୁସଂସ୍କାରର ବ୍ୟାପକତା ପୃଷ୍ଠଭୂମିରେ ଏହାକୁ ଗୋଟିଏ ମାନଦଣ୍ଡରୁ ଶ୍ରେଣୀ ବିଭାଜନ କରାଯାଇପାରେ। କୁସଂସ୍କାରମାନଙ୍କୁ ଧର୍ମଗତ, ପରମ୍ପରାଗତ, ବୃତ୍ତିଗତ ଓ ବ୍ୟକ୍ତିଗତ ଭାବରେ ବିଭକ୍ତ କରାଯାଇପାରେ ଓ ପ୍ରତ୍ୟେକ ପ୍ରସଙ୍ଗରେ ନାନା ଉଦାହରଣ ଦିଆଯାଇପାରେ। ପୁନଶ୍ଚ କୁସଂସ୍କାର ଆଞ୍ଚଳିକ ସ୍ତରରେ, ଜାତି ସ୍ତରରେ ବା ଲିଙ୍ଗ ଭେଦରେ ମଧ୍ୟ ରହିବା ଦେଖାଯାଏ। ପ୍ରତ୍ୟେକ କୁସଂସ୍କାର ଆଧାରହୀନ ବିଶ୍ୱାସ ହେଲେ ବି କେତେକ କେବଳ ବ୍ୟକ୍ତିଗତ ସ୍ତରର ଓ ତାହା ଅନ୍ୟର ଅନିଷ୍ଟ ଦିଗରେ ଅଭିପ୍ରେତ ନୁହେଁ। ଜଣେ କେଉଁ ଦିନ କେଉଁ ଖାଦ୍ୟ ଖାଇବ ବା ଖାଇବ ନାହିଁ, କେଉଁଦିନ ଦାଢ଼ି କାଟିବ ନାହିଁ, କୌଣସି ଯାତ୍ରା ସମୟରେ କେଉଁ ପାଦ ଆଗ ବାହାର କରିବ ଇତ୍ୟାଦି ଦ୍ୱାରା ଅନ୍ୟମାନେ ପ୍ରଭାବିତ ହୁଅନ୍ତି ନାହିଁ। ତେବେ ଏପରି କେତେକ କୁସଂସ୍କାର ରହିଛି ଯାହା କ୍ଷତିକାରକ ଓ ସେସବୁ କରାଯିବା ଦ୍ୱାରା ଅନ୍ୟମାନେ ଗଭୀର ପ୍ରଭାବିତ ହୋଇଥାନ୍ତି। ବଳିଦେବା, ଦେବୀପୀଠରେ ନିଜର ଜିଭ କାଟିବା, ରୋଗ ବା କୌଣସି ଅଘଟଣ ପାଇଁ ଅନ୍ୟକୁ ଦାୟୀ କରିବା, ତିକ୍ତତା ସୃଷ୍ଟି କରିବା, ନିଜର ବିଶ୍ୱାସ ପାଇଁ ସମାଜର ଶାନ୍ତି ଓ ସ୍ଥିରତା ନଷ୍ଟ କରିବା ଇତ୍ୟାଦି ଭୟାନକ ମନେହୁଏ। କେବଳ ନରବଳି, ହତ୍ୟା, ଠକାମୀ ଇତ୍ୟାଦି ଘଟଣାରେ ଅନ୍ୟମାନେ ବିପନ୍ନ ହେଉଥିବାରୁ ଏହା ନେଇ ଆଇନର କିଛି ପ୍ରୟୋଗ ହେଉଥାଏ, ଅପରପକ୍ଷରେ କୁସଂସ୍କାରରେ ଲିପ୍ତ ରହି ଅଜ୍ଞତା ଓ ଅନ୍ଧବିଶ୍ୱାସର ପ୍ରସାର କରୁଥିବା ଲୋକମାନଙ୍କ ବିରୋଧରେ ଆଇନଗତ ପଦକ୍ଷେପ ନିଆଯାଏ ନାହିଁ।

ସମାଜର ଯେ କେବଳ ଅଶିକ୍ଷିତ ଲୋକମାନେ କୁସଂସ୍କାରରେ ବିଶ୍ୱାସ କରନ୍ତି, ତାହା ନୁହେଁ। ସମାଜର ବହୁ ଉଚ୍ଚଶିକ୍ଷିତ, ସାମାଜିକ ପ୍ରତିଷ୍ଠା ଥିବା ବ୍ୟକ୍ତି ଓ ଏପରିକି

ବିଜ୍ଞାନ ଡିଗ୍ରୀପ୍ରାପ୍ତ ବ୍ୟକ୍ତି ମଧ୍ୟ ବ୍ୟକ୍ତିଗତ ସ୍ତରରେ ନାନା କୁସଂସ୍କାରରେ ବିଶ୍ୱାସ କରିଥାନ୍ତି । ସମାଜର ନିରକ୍ଷର ଓ ଅପାଠୁଆ ମଣିଷଟିଏ ତା'ର ଅଜ୍ଞତା ଭିତରେ କୁସଂସ୍କାରରେ ବିଶ୍ୱାସ ସ୍ଥାପନ କରିଥାଏ ଓ ଏହାଦ୍ୱାରା ସେ କେବଳ ନିଜର କ୍ଷତିସାଧନ କରୁଥିଲେ ବି ତାହା ପ୍ରସାର କରିପାରେ ନାହିଁ । ବରଂ ଶିକ୍ଷିତ ଓ ଧୂର୍ତ୍ତ ଲୋକମାନେ କୁସଂସ୍କାରରେ ବିଶ୍ୱାସ କରି ତାହାକୁ ସମାଜରେ ବ୍ୟାପକ କରିପାରନ୍ତି । କେତେକ ଶିକ୍ଷିତ ଲୋକ ମଧ୍ୟ ବିଶ୍ୱାସ କରନ୍ତି ଯେ ଶୂନ୍ୟରୁ ବସ୍ତୁ ସୃଷ୍ଟି ହୋଇପାରିବ, ଯଜ୍ଞ ଦ୍ୱାରା ବିଶ୍ୱଶାନ୍ତି ସମ୍ଭବ ହେବ, ପୂଜାପାଠରେ ମନ୍ତ୍ରପାଠ କଲେ ଦିଅଁଙ୍କ ଆଶୀର୍ବାଦରୁ ଅଭିଷ୍ଟ ସାଧନ ହୋଇପାରିବ, ମନ୍ତ୍ରମୁଦି ଧାରଣ କଲେ ଗ୍ରହ ନକ୍ଷତ୍ର ଦୋଷ କଟିଯାଇପାରିବ, ବାସ୍ତୁ ନିୟମରେ ଘର ତିଆରି କଲେ ପରିବାରରେ ଶାନ୍ତି ରହିବ ଇତ୍ୟାଦି ।

କୁସଂସ୍କାରରେ ବିଶ୍ୱାସ ପଶ୍ଚାତ୍‌ରେ ଅଜ୍ଞତା ତ ରହିଛି, ତେବେ ଅନେକ ମନସ୍ତାତ୍ତ୍ୱିକ ଭୟ ଓ ଆଶଙ୍କାରୁ ମଧ୍ୟ ଲୋକମାନେ କୁସଂସ୍କାରରେ ବିଶ୍ୱାସ କରିଥାନ୍ତି । ଯେତେବେଳେ ମଣିଷ ନିଜର ସାମାଜିକ ପରିବେଶ ଉପରେ ଆସ୍ଥା ସ୍ଥାପନ କରିପାରେ ନାହିଁ ବା କିଛି ଅନିଶ୍ଚିତତା ବା ନୈରାଶ୍ୟ ଭିତରେ ରହେ, ସେତେବେଳେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଭାବରେ ସେ ନାନା କୁସଂସ୍କାରରେ ବିଶ୍ୱାସ କରିଥାଏ । ସାମାଜିକ ପ୍ରତିଷ୍ଠା ହରାଇବାର ଭୟ, ରୋଗ-ମୃତ୍ୟୁର ଭୟ, ଅର୍ଥହାନିର ଭୟ, ନାନା ମନସ୍ତାତ୍ତ୍ୱିକ କାରଣରୁ କିମ୍ୱା କେତେକ ଉତ୍କଣ୍ଠା, ଅନିଶ୍ଚିତତା ବା ନୈରାଶ୍ୟ ଜନିତ କାରଣରୁ ମଧ୍ୟ ନାନା ଅହେତୁକ ବିଶ୍ୱାସର ସେ ଶିକାର ହୋଇଥାଏ । ପୁନଶ୍ଚ ସାମାଜିକ ପରିବେଶରେ ଥିବା ଲୋକ ବିଶ୍ୱାସ, ପରମ୍ପରା, ଧାର୍ମିକ କର୍ମକାଣ୍ଡ ଓ କିଛି ଧୂର୍ତ୍ତ ବ୍ୟକ୍ତିଙ୍କର ପ୍ରଚାରର ସମ୍ମିଳିତ ପ୍ରଭାବରୁ ବ୍ୟକ୍ତି କୌଣସି ପ୍ରତିକୂଳ ସ୍ଥିତିରୁ ରକ୍ଷା ପାଇବା ପାଇଁ କୁସଂସ୍କାରରେ ବିଶ୍ୱାସ କରେ । ଅଧିକନ୍ତୁ ଯଦି ସାମାଜିକ ପ୍ରତିଷ୍ଠା ଥିବା ଲୋକମାନେ କେଉଁ ବାବା, ମାତାଙ୍କର ଅନୁଗାମୀ ହୁଅନ୍ତି ବା ସେମାନଙ୍କର ଅଲୌକିକ ଶକ୍ତିରେ ଆସ୍ଥା ସ୍ଥାପନ କରନ୍ତି, ଗୁଣିଗାରେଡ଼ି, ମନ୍ତ୍ର ତନ୍ତ୍ରକୁ ବିଶ୍ୱାସ କରନ୍ତି, ତେବେ ତାହା ସମାଜର ସାଧାରଣ ବ୍ୟକ୍ତିକୁ ମଧ୍ୟ ପ୍ରଭାବିତ କରିଥାଏ । ଯେହେତୁ ପ୍ରତ୍ୟେକ ବ୍ୟକ୍ତିର କିଛି ସମସ୍ୟା ରହିଛି ବା ପ୍ରତିକୂଳ ଅବସ୍ଥା ସୃଷ୍ଟି ହେବାର ସମ୍ଭାବନା ରହୁଛି, ସେହି ସ୍ଥିତିରେ ବ୍ୟକ୍ତିର ମାନସିକତା ଭିତରେ କୁସଂସ୍କାର ପ୍ରବେଶ କରିବା ସହଜ ହୋଇଥାଏ । ପୁନଶ୍ଚ ପିଲାଟିବେଳୁ ଜଣେ ସାମାଜିକ ପରିବେଶରୁ ଯେଉଁସବୁ ଧାରଣା ପାଇଥାଏ, ତାହା ତା'ର ମନକୁ ଏପରି ସର୍ତ୍ତବଦ୍ଧ କରିଦିଏ ଯେ ସେ ପରବର୍ତ୍ତୀ ସମୟରେ ସେଥିରୁ ସହଜରେ ମୁକ୍ତ ହୋଇପାରେ ନାହିଁ । ସମାଜରେ ରହିଥିବା ରାଶି ରାଶି ଅନ୍ଧ ସଂସ୍କାର ବ୍ୟକ୍ତିର ମାନସିକତାରେ ବଦ୍ଧମୂଳ ହୋଇ ରହିଯାଏ । ଏତଦ୍‌ବ୍ୟତୀତ ବର୍ତ୍ତମାନ ଯୁଗରେ ଗଣମାଧ୍ୟମ ଓ ବିଶେଷତଃ ରେଡ଼ିଓ, ଟେଲିଭିଜନ,

ସମ୍ବାଦପତ୍ର ବେଳେବେଳେ ଏପରି ଅପରୀକ୍ଷିତ ଘଟଣା ପ୍ରସାର କରନ୍ତି, ଯାହା କୁସଂସ୍କାର ବ୍ୟାପକ ହେବାରେ ସାହାଯ୍ୟ କରିଥାଏ ।

ସାମ୍ପ୍ରତିକ ଯୁଗରେ ଜ୍ଞାନ ବିଜ୍ଞାନର ବିସ୍ଫୋରଣ ହୋଇଛି ତଥାପି କୁସଂସ୍କାର ରହିବା ଏକ ବିଡ଼ମ୍ବନା ମନେହୁଏ । ଜ୍ଞାନ ଓ ଅନ୍ଧବିଶ୍ୱାସ ପରସ୍ପର ବିରୋଧୀ ହେଲେ ବି ଜ୍ଞାନର ବିକାଶ ସହିତ କୁସଂସ୍କାରର ମଧ ବୃଦ୍ଧି ହେବା ଏକ ପ୍ରହେଳିକା ସଦୃଶ ମନେହୁଏ । ବିଜ୍ଞାନର ନାନା ସୁଫଳ ଆମେ ଲାଭ କରିଥିଲେ ମଧ ଆମର ମାନସିକତାରେ କେତେକ ଅନ୍ଧ-ସଂସ୍କାର ନାନା ମନସ୍ତାତ୍ତ୍ୱିକ କାରଣରୁ ବା ସାମାଜିକ ଜୀବନର ପ୍ରଭାବରୁ ରହିଆସିଛି । ଏହାର କାରଣ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଜନିତ ହେତୁବାଦର ପ୍ରସାର ଦୃଢ଼ ଭିତ୍ତି ନେଇନାହିଁ । ସୁଖର କଥା ଆମ ଦେଶର ସମ୍ବିଧାନରେ ବ୍ୟକ୍ତିର ମୌଳିକ କର୍ତ୍ତବ୍ୟ ପୃଷ୍ଠଭୂମିରେ ଧାରା ୫୧(କ)ରେ ଉଲ୍ଲେଖ ଅଛି- "ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିକୋଣ, ମାନବଭାବ ତଥା ଜ୍ଞାନାର୍ଜନ ଓ ସଂସ୍କାର ଭାବନାର ପ୍ରକାଶ କରିବେ ।" ତେବେ ଏହା ଅନେକ ଆଇନ ଭଳି କେବଳ ପୋଥି ବାଇଗଣ ହୋଇ ରହିଛି । ବାସ୍ତବପକ୍ଷେ ଏହା ବାଡ଼ି ବାଇଗଣରେ ପରିଣତ ହୋଇପାରୁ ନାହିଁ ।

ବିଜ୍ଞାନର ବିକାଶ ସହିତ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶକୁ ଯଦି ଗୁରୁତ୍ୱ ଦିଆଯାଆନ୍ତା, ତେବେ ଅନ୍ତତଃ ସମାଜରୁ ଅନେକ ଅନ୍ଧ-ସଂସ୍କାରକୁ ଦୂର କରାଯାଇପାରନ୍ତା । ବୈଜ୍ଞାନିକ ଦୃଷ୍ଟିକୋଣ ହେଉଛି ମୁକ୍ତ ମନ ପୋଷଣ କରିବା ଓ ବୈଜ୍ଞାନିକ ବସ୍ତୁନିଷ୍ଠ ପଦ୍ଧତି ଆଧାରରେ ଚତୁଃପାର୍ଶ୍ୱର ଘଟଣା ପ୍ରବାହକୁ ଅବବୋଧ କରିବା । ବିଜ୍ଞାନର ମୌଳିକ ତାତ୍ପର୍ଯ୍ୟ ହେଉଛି ପ୍ରକୃତିରେ ଯାହା କିଛି ଘଟଣା ଘଟେ, ତାହା ପଶ୍ଚାତରେ କିଛି ପ୍ରାକୃତିକ କାରଣ ନିହିତ ଥାଏ । ଏପରି କୌଣସି କାର୍ଯ୍ୟ ନାହିଁ ଯାହା ପଶ୍ଚାତ୍‌ରେ କୌଣସି କାରଣ ନାହିଁ । ପୁନଶ୍ଚ କୌଣସି ଘଟଣା ବା କାର୍ଯ୍ୟ ପଶ୍ଚାତରେ କୌଣସି ଆଧିଦୈବିକ ବା ସୁପରନେଚୁରାଲ କାରଣ ନାହିଁ, କେବଳ ପ୍ରାକୃତିକ କାରଣ ରହିଛି ତାହା ଆମେ ଜାଣୁ ବା ନ ଜାଣୁ । ପ୍ରକୃତିରେ ନାନା ରହସ୍ୟ ରହିଛି, ହେଲେ କୌଣସି ଚମତ୍କାରିତା, ଅଲୌକିକତା ବା ମିରାକେଲ ନାହିଁ । ପୁନଶ୍ଚ ମଣିଷ ନିଜର ସମ୍ମିଳିତ ପ୍ରୟାସ ଦ୍ୱାରା ନିଜର ପରିବେଶକୁ ବଦଳାଇ ପାରିବ ବା ଗୁଣାତ୍ମକ ଜୀବନର ବିକାଶ କରିପାରିବ । କୌଣସି କଳ୍ପିତ ଦିଅଁ, ଦେବତା ବା ଠାକୁର ସମାଜକୁ ପରିବର୍ତ୍ତନ କରିଦେବେ ନାହିଁ ବା ମଣିଷକୁ ସୁଖ ଶାନ୍ତି ଦେବେ ନାହିଁ । ମଣିଷ ହିଁ ନିଜ ଭବିଷ୍ୟତର ନିୟନ୍ତା । ଅନୁସନ୍ଧିତ୍ସା ଓ ନିଷ୍ଠାପର ପ୍ରୟାସ ଦ୍ୱାରା ଜ୍ଞାନର ବିକାଶ ହେବାସହ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇପାରିବ । କୌଣସି ଉପାସନା, ଆରାଧନା ବା ପ୍ରାର୍ଥନା ଦ୍ୱାରା

ଜୀବନର ଗୁଣାତ୍ମକ ମାନ ବୃଦ୍ଧି କରିହେବନାହିଁ । ମନ୍ତ୍ର, ତନ୍ତ୍ର, ଗୁଣି ଗାରେଡ଼ିର କୌଣସି ବାହ୍ୟିକ ପ୍ରଭାବ ହିଁ ନାହିଁ । ଏସବୁ କେବଳ ପ୍ରାଚୀନ ଯୁଗର ଅନ୍ଧବିଶ୍ୱାସ ଯାହାର କୌଣସି ବୈଜ୍ଞାନିକ ଆଧାର ନାହିଁ । ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରିବା ସହ ସମ୍ବେଦନଶୀଳ ଅନୁଭବ ଓ ମାନବିକତାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେଇଥାଏ । ଏହି ଜୀବନାଦର୍ଶର ପ୍ରସାର ଦ୍ୱାରା ହିଁ ସମାଜରୁ ନାନା କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅମାନବିକ ପ୍ରଥାର ବିଲୋପ କରାଯିବା ସମ୍ଭବ । ହେତୁବାଦୀ ଜୀବନଶୈଳୀର ପ୍ରସାର ନହେଲେ ବିଜ୍ଞାନ ଓ ପ୍ରଯୁକ୍ତି ଉତ୍ତୁଙ୍ଗ ଶିଖରକୁ ଯାଇ ମଧ୍ୟ ସମାଜରେ ନରବଳି ପରି ନାନା ଅଭାବନୀୟ ଓ ଅମାନୁଷିକ ଘଟଣା ଘଟିବ । (ପ୍ରଗତିବାଦୀ, ୧୭.୨.୧୦)



# ବିଜ୍ଞାନର ବାର୍ତ୍ତା

ଫେବୃଆରୀ ୨୮କୁ 'ଜାତୀୟ ବିଜ୍ଞାନ ଦିବସ' ଭାବେ ସାରା ଭାରତରେ ପାଳନ କରାଯାଉଛି । ଆଧୁନିକ ଜୀବନଧାରା ବିଜ୍ଞାନ ଓ ବିଜ୍ଞାନ୍ ଆଧାରିତ ପ୍ରଯୁକ୍ତି ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ଆଧୁନିକ ବିକାଶ ବା ପ୍ରଗତିର ପରିକଳ୍ପନା ବିଜ୍ଞାନ ବ୍ୟତୀତ କଳ୍ପନା କରାଯାଇ ନପାରେ । ଏହା ସହ ସଭ୍ୟତାର ଅଗ୍ରଗତି ଓ ଉନ୍ନତ ଜୀବନଶୈଳୀ ବିଜ୍ଞାନ ଦ୍ୱାରା ହିଁ ସମ୍ଭବ ହୋଇଛି । ସୁତରାଂ ସଭ୍ୟତା ପ୍ରତି ବିଜ୍ଞାନର ଉଲ୍ଲେଖନୀୟ ଅବଦାନ ପୃଷ୍ଠଭୂମିରେ ବିଜ୍ଞାନ ଦିବସ ସାରା ପୃଥିବୀରେ ପାଳିତ ହେଉଛି ଯାହା ଆମ ଦେଶରେ ଫେବୃଆରୀ ୨୮ରେ ଜାତୀୟ ବିଜ୍ଞାନ ଦିବସ ଭାବେ ପାଳନ କରାଯାଇଛି ।

ସଭ୍ୟତାର କ୍ରମବିକାଶଧାରାରେ ବିଜ୍ଞାନର ଅଗ୍ରଗତି ଏକ ଐତିହାସିକ ଘଟଣା । ବୈଜ୍ଞାନିକ ତଥ୍ୟ ଅନୁଯାୟୀ ଆଧୁନିକ ମଣିଷର ଆବିର୍ଭାବ ପୃଥିବୀ ପୃଷ୍ଠରେ ପ୍ରାୟ ଏକ ଲକ୍ଷ ବର୍ଷ ତଳେ ହୋଇଥିଲେ ବି ଗ୍ରାମୀଣ ସଭ୍ୟତାର ଆରମ୍ଭ ପ୍ରାୟ ପାଞ୍ଚ ହଜାରରୁ ଦଶ ହଜାର ବର୍ଷ ମଧ୍ୟରେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଆରମ୍ଭ ହୋଇଥିଲା । ସଭ୍ୟତାର କ୍ରମବିକାଶ ଧାରାରେ ଆଧୁନିକ ବିଜ୍ଞାନ ମାତ୍ର ଚାରି ଶହ ବର୍ଷ ତଳେ ଆରମ୍ଭ ହୋଇଥିଲା । ପୂର୍ବରୁ କୌଣସି ବ୍ୟକ୍ତି ଅନୁସନ୍ଧିତ୍ସୁ ହୋଇ ପ୍ରକୃତିର କୌଣସି ଘଟଣାକୁ ଅନୁଶୀଳନ କରି କିଛି କିଛି ନୂଆ ତଥ୍ୟ ପାଉଥିଲେ, ତେବେ ବିଜ୍ଞାନ ସମ୍ବନ୍ଧୀୟ ଅନୁଶୀଳନ ୟୁରୋପର ବିଭିନ୍ନ ଦେଶରେ ନବଜାଗରଣ ଯୁଗ ପରେ ସପ୍ତଦଶ ଶତାବ୍ଦୀରୁ ହିଁ ଆରମ୍ଭ ହୋଇଥିଲା । ୟୁରୋପୀୟ ନବଜାଗରଣ ମଣିଷର ଚିନ୍ତାରାଜ୍ୟରେ ଥିଲା ଏକ ବଡ଼ ସାଂସ୍କୃତିକ ଉତ୍‌ଥାନର କାଳ, ଯାହାପରେ ଆଧୁନିକ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ସେହି ସମୟରେ ଜ୍ଞାନ ବିଜ୍ଞାନର କ୍ଷେତ୍ରରେ ଯେଉଁ ତୁମୁଳ ଆଲୋଡ଼ନ ସୃଷ୍ଟି ହେଲା ତା'ର ପରିଣାମ ସ୍ୱରୂପ ସବୁ କ୍ଷେତ୍ରରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ସଭ୍ୟତାର କ୍ରମ ବିକାଶ ଧାରାରେ ୟୁରୋପୀୟ ନବଜାଗରଣ ଥିଲା ଏକ ବଡ଼ ଉନ୍ମେଷକାଳ । ଏହା ପରଠାରୁ ବିଜ୍ଞାନରେ ଏକ ପରମ୍ପରା ସୃଷ୍ଟି ହେଲା ଓ ବୈଜ୍ଞାନିକ ଅନୁଶୀଳନ ବିଶ୍ୱବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କଲା । ବିଜ୍ଞାନର ଏକ ସ୍ୱତନ୍ତ୍ର ପରମ୍ପରା ବିଭିନ୍ନ ଦେଶରେ ସୃଷ୍ଟି ହେବାକୁ ଲାଗିଲା ଓ ବିଜ୍ଞାନର ଅଗ୍ରଗତି ପର୍ବ ଆରମ୍ଭ ହେଲା । କାଳକ୍ରମେ ଏହି ଭାବନା ସୁଦୃଢ଼ ହେବାକୁ ଲାଗିଲା ଯେ ସମାଜର ଭୌତିକ ବିକାଶ, କୃଷି ଓ ଶିଳ୍ପ ଉତ୍ପାଦନ, ରୋଗର

ନିୟନ୍ତ୍ରଣ ଓ ଗୁଣାତ୍ମକ ଜୀବନ ବିଜ୍ଞାନ ଓ ପ୍ରଯୁକ୍ତି ଆଧାରିତ । ଯେଉଁଠି ବିଜ୍ଞାନର ବିକାଶ ଯେତେ ତ୍ୱରାନ୍ୱିତ ହୋଇପାରିବ ସେହି ଦେଶର ବିକାଶ ସେତେ ଦ୍ରୁତ ଗତିରେ ସମ୍ଭବ ହେବ । ବିଜ୍ଞାନର ବିକାଶ ନ ହେଲେ ଦେଶର ଅଗ୍ରଗତି ସମ୍ଭବ ହେବ ନାହିଁ । କୃଷି, ଶିଳ୍ପ, ବାଣିଜ୍ୟ, ଗମନାଗମନ, ଚିକିତ୍ସା ସବୁରି ସ୍ତରରେ ବୈଜ୍ଞାନିକ ଜ୍ଞାନ କାଳକ୍ରମେ ନିର୍ଣ୍ଣାୟକ ମନେହେଲା । ଫଳତଃ ଅଷ୍ଟାଦଶ ଶତାବ୍ଦୀରୁ ବୈଜ୍ଞାନିକ ଅନୁଶୀଳନକୁ ରାଷ୍ଟ୍ର ଗୁରୁତ୍ୱ ଦେଲା ଓ ପୃଥିବୀର ପ୍ରତ୍ୟେକ ଦେଶର ବିଶ୍ୱ ବିଦ୍ୟାଳୟମାନଙ୍କରେ ବିଜ୍ଞାନ ଶିକ୍ଷା ଓ ବୈଜ୍ଞାନିକ ଗବେଷଣାକୁ ପ୍ରାଧାନ୍ୟ ଦିଆଗଲା ।

ବିଜ୍ଞାନର ବିକାଶ ପାଇଁ ଦୁଇଟି ଆଲୋଡ଼ନ ମହତ୍ତ୍ୱପୂର୍ଣ୍ଣ ଥିଲା । ଆଧୁନିକ ବିଜ୍ଞାନର ବିକାଶ ପାଇଁ ଏହି ବିଷୟଗତ ସିଦ୍ଧାନ୍ତ ଥିଲା କ୍ରାନ୍ତିକାରୀ । ପ୍ରଥମତଃ ଚିନ୍ତାରାଜ୍ୟରେ ଏହି ଭାବନା ଆସିଥିଲା ଯେ ପ୍ରକୃତିରେ ଯାହା କିଛି ଘଟଣା ଘଟେ ବା ଯାହା କିଛି ବସ୍ତୁ ରହିଛି ତାହା ପ୍ରାକୃତିକ । ପ୍ରତ୍ୟେକ ପ୍ରାକୃତିକ ଘଟଣା ପଶ୍ଚାତ୍‌ରେ କୌଣସି ନା କୌଣସି ପ୍ରାକୃତିକ ନିୟମ ବା ଶୃଙ୍ଖଳା ରହିଛି । ଆମେ ଜାଣୁ ବା ନଜାଣୁ ପ୍ରକୃତିର ଘଟଣା ପ୍ରବାହ ପଶ୍ଚାତରେ କେବଳ ପ୍ରାକୃତିକ କାରଣ ରହିଛି । କୌଣସି ଅତିପ୍ରାକୃତିକ, ଆଧିଦୈବିକ ବା ଅଲୌକିକ କାରଣ ନାହିଁ । ସବୁ କିଛି ପ୍ରାକୃତିକ ଧାରାରେ ଅନୁଶୀଳନ ଦ୍ୱାରା ଜ୍ଞେୟ ହୋଇ ପାରିବ । ଏହା ହେଉଛି ବୈଜ୍ଞାନିକ ପ୍ରକୃତିବାଦ ଓ ଏହାରି ଆଧାରରେ ବିଜ୍ଞାନର ଦିଗନ୍ତ କାଳକ୍ରମେ ବିସ୍ତାରିତ ହୋଇଚାଲିଲା । ଦ୍ୱିତୀୟରେ ବୈଜ୍ଞାନିକ ଜ୍ଞାନର ପ୍ରଣାଳୀ ନେଇ ଏକ ସିଦ୍ଧାନ୍ତ ଆସିଲା ଯେ ଏହି ବିଶାଳ ବିଶ୍ୱକୁ ଜାଣିବାର ଆଧାର ହେଉଛି ଆମର ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ପ୍ରକୃତିକୁ ପର୍ଯ୍ୟବେକ୍ଷଣ ମାଧ୍ୟମରେ ଏଥିରେ ଅନ୍ତର୍ନିହିତ ଥିବା ଏକରୂପତା, ଶୃଙ୍ଖଳା ଓ ନିୟମକୁ ଆମେ ଜାଣିବାକୁ ସମର୍ଥ ହେବା । ବସ୍ତୁତଃ ଅନୁଭୂତି, ପ୍ରତ୍ୟକ୍ଷ ଓ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଜ୍ଞାନର ମୂଳ ଭିତ୍ତି ହେଲା । ବୈଜ୍ଞାନିକ ଜ୍ଞାନର ଦିଗନ୍ତ ଆରୋହଣ ପଦ୍ଧତିରେ ପ୍ରସାରିତ ହୋଇଚାଲିଲା । ପର୍ଯ୍ୟବେକ୍ଷଣ-ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ ବା ସମ୍ଭାବ୍ୟ କାରଣର କଳ୍ପନା, ପ୍ରକଳ୍ପର ସଠିକତା ନିରୂପଣ ଜନିତ ପରୀକ୍ଷା ତଥା ସଠିକତା ନିରୂପଣ ପରେ ଏହାକୁ ନେଇ ସାମାନ୍ୟୀକରଣ ବୈଜ୍ଞାନିକ ଜ୍ଞାନର ସ୍ଥିରୀକୃତ ପଦ୍ଧତି ହେଲା । ଏହି ବିଶାଳ ପ୍ରକୃତିର କୌଣସି କ୍ଷେତ୍ରକୁ ଯଥାଯଥ ଭାବେ ଜାଣିବାକୁ ହେଲେ ଘଟଣା ପ୍ରବାହକୁ ପ୍ରତ୍ୟକ୍ଷ ଓ ପର୍ଯ୍ୟବେକ୍ଷଣ କରିବାକୁ ହେବ । ଯଦି କୌଣସି ସିଦ୍ଧାନ୍ତ ଆସିପାରୁ ନାହିଁ, ତେବେ ଏଥିପାଇଁ ପ୍ରକୃତିର ଅନ୍ୟାନ୍ୟ ନିୟମ ସହ ସମତାଳ ଥିବା କୌଣସି ସମ୍ଭାବ୍ୟ କାରଣକୁ କଳ୍ପନା କରାଯାଏ, ଯାହାକୁ ବିଭିନ୍ନ ପରିସ୍ଥିତିରେ ପରୀକ୍ଷା କରାଯାଇ ତାହାର ସତ୍ୟାସତ୍ୟକୁ ସ୍ପଷ୍ଟ କରାଯାଏ । ସମ୍ଭାବ୍ୟ କାରଣଟି ବିଭିନ୍ନ ସ୍ତରରେ ପରୀକ୍ଷିତ ହୋଇ ଯଦି ସତ୍ୟ ପ୍ରମାଣିତ ହୁଏ ତେବେ ତାହାରି ଆଧାରରେ ଏକ ସାଧାରଣ ନିୟମ ବା ସମାନ୍ୟୀକରଣ ହୋଇଥାଏ । ବୈଜ୍ଞାନିକ

ଜ୍ଞାନ କ୍ଷେତ୍ରରେ ଏହି ପଦ୍ଧତିକୁ ସର୍ବତ୍ର ପ୍ରୟୋଗ କରାଯାଏ । ମୋଟ ଉପରେ କହିଲେ ପ୍ରାକୃତିକ କାରଣ ଜନିତ ବ୍ୟାଖ୍ୟା, ପ୍ରାକୃତିକ ବ୍ୟବସ୍ଥାର ମହତ୍ତ୍ୱ ଓ ପର୍ଯ୍ୟବେକ୍ଷଣ ଆଧାରିତ ଆରୋହଣ ପଦ୍ଧତି ହିଁ ବୈଜ୍ଞାନିକ ଜ୍ଞାନର ମୌଳିକ ଭିତ୍ତି ହେଲା । ପୁନଶ୍ଚ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ରରେ ରହିଥିବା ଶୃଙ୍ଖଳା ଗୁଡ଼ିକର ଶ୍ରେଣୀକରଣ କରାଗଲା, ଯାହାର ଆଧାରରେ ପ୍ରକୃତିର ବିଭିନ୍ନ ଦିଗ ଉପରେ ଗବେଷଣା ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚିତ କଲା । ପଦାର୍ଥ-ବିଜ୍ଞାନ, ରସାୟନ ବିଜ୍ଞାନ, ଜୀବବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଭୂତତ୍ତ୍ୱବିଜ୍ଞାନ ଇତ୍ୟାଦି ସ୍ତରରେ ଗବେଷଣାରୁ ପ୍ରକୃତିର ଯେଉଁ ନିୟମ ଗୁଡ଼ିକ ଆବିଷ୍କୃତ ହେଲା ସେଗୁଡ଼ିକ ମଧ୍ୟରେ ଥିବା ସମ୍ବନ୍ଧ ଓ ସଂଗତିକୁ ନେଇ ପ୍ରାକୃତିକ କ୍ରମ ଓ ପ୍ରାକୃତିକ ବ୍ୟବସ୍ଥାର ମହତ୍ତ୍ୱ ପ୍ରତିଷ୍ଠିତ ହେଲା । କାଳକ୍ରମେ ବୈଜ୍ଞାନିକ ପଦ୍ଧତି ଓ ସିଦ୍ଧାନ୍ତ ଆଧାରରେ ପ୍ରକୃତିର ବହୁ ରହସ୍ୟଜନକ ତଥ୍ୟ ଆବିଷ୍କୃତ ହୋଇ ପ୍ରକୃତି ସମ୍ବନ୍ଧରେ ଜ୍ଞାନର ଦିଗ୍‌ବଳୟ ବିସ୍ତାରିତ ହୋଇଚାଲିଲା ।

ସଂପ୍ରତି ବିଜ୍ଞାନ ଜ୍ଞାନର ବିକାଶ କ୍ଷେତ୍ରରେ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ବି ବିଜ୍ଞାନର ଆଦି ପର୍ବଟି ଥିଲା ସଂଘର୍ଷର କାଳ । ବିଜ୍ଞାନର ଆରମ୍ଭ କାଳରେ ବହୁ ପ୍ରତିଭାବାନ ବୈଜ୍ଞାନିକଙ୍କୁ ଯେଉଁ ନିର୍ଯ୍ୟାତନା ସହ୍ୟ କରିବାକୁ ହୋଇଛି ତାହାର ଇତିହାସ ବେଶ୍ ଲୋମହର୍ଷଣକାରୀ । ବିଜ୍ଞାନକୁ ଏହି ଆହ୍ୱାନ ଧର୍ମ ସ୍ତରରୁ ହିଁ ମୁଖ୍ୟତଃ ଆସିଥିଲା । ବିଜ୍ଞାନର ବିକାଶ ପୂର୍ବରୁ ଧର୍ମ ହିଁ ସକଳ ସ୍ତରରେ ସର୍ବଗ୍ରାସୀ ଭୂମିକା ନେଇଥିଲା । ବିଶ୍ୱର ସକଳ ଜ୍ଞାନ କେବଳ ନିଜସ୍ୱ ଧର୍ମଶାସ୍ତ୍ରରେ ନିହିତ ବୋଲି ମାନସିକତା ସବୁ ଭୂଖଣ୍ଡରେ ରହିଥିଲା । ଧର୍ମର ପୂଜକ ଗୋଷ୍ଠୀ ବେଶ୍ ପ୍ରଭାବଶାଳୀ ରହିଥିଲେ । ବିଜ୍ଞାନ ଅନୁଯାୟୀ ଯାହା ସତ୍ୟ ତାହା ହିଁ ବିଶ୍ୱାସ ଯୋଗ୍ୟ, ପରନ୍ତୁ ଧର୍ମ ଅନୁଯାୟୀ ଯାହା ବିଶ୍ୱାସ କରାଯାଏ ତାହାହିଁ ସତ୍ୟ । ପରିଣାମତଃ ବୈଜ୍ଞାନିକ ସିଦ୍ଧାନ୍ତ ସହ ଧାର୍ମିକ ବିଶ୍ୱାସର ଅସଂଗତି ଓ ବିରୋଧାଭାସ ଯୋଗୁଁ ଏହି ସଂଘର୍ଷ ସୃଷ୍ଟି ହେଲା । ଏଠାରେ କେତୋଟି ମାତ୍ର ଐତିହାସିକ ଘଟଣାକୁ ଉଲ୍ଲେଖ କରାଯାଇପାରେ ।

କୋପରନିକସୀୟ ଜ୍ୟୋତିର୍ବିଜ୍ଞାନ ଧାରାରେ ଇଟାଲିର ଜର୍ଜ ବ୍ରୁନୋଙ୍କ ମତ ଥିଲା ପୃଥିବୀ ପରିବର୍ତ୍ତନଶୀଳ, ଜ୍ଞାନ ଅସୀମ, ଅନ୍ତିମସତ୍ୟ କିଛି ନାହିଁ, ଧାର୍ମିକ ଜ୍ଞାନ ଅସତ୍ୟ ହେବା ସମ୍ଭବ । ଏହି ଭାବନା ଧର୍ମ ମତର ବିରୁଦ୍ଧାଚରଣ କଲା, ଫଳରେ ଧର୍ମାନୁଷ୍ଠାନର ନିର୍ଦ୍ଦେଶରେ ତାଙ୍କୁ ନିଆଁ ଲଗାଇ ଅମାନୁଷିକ ଭାବରେ ହତ୍ୟା କରାଯାଇଛି । ଭୂତତ୍ତ୍ୱ ବିଜ୍ଞାନର ଜନକ ଫ୍ରାନ୍‌ସର ଜର୍ଜ ବୁଫୋନ୍‌ଙ୍କର ମତ ଥିଲା ପୃଥିବୀ ଉତ୍ପତ୍ତିର ବହୁ ବର୍ଷ ପରେ ପାହାଡ଼, ପର୍ବତ, ନଦୀ ଇତ୍ୟାଦି ସୃଷ୍ଟି ହୋଇଛି । ଏହି ଭାବନା ଧର୍ମ ଶାସ୍ତ୍ରର ସୃଷ୍ଟିତତ୍ତ୍ୱ କଳ୍ପନା ଗୁଡ଼ିକର ପରିପନ୍ଥୀ ଥିଲା, ଫଳରେ ତାଙ୍କୁ ବହୁ ନିର୍ଯ୍ୟାତନା ସହିବାକୁ ପଡ଼ିଛି । ଶରୀର ବିଜ୍ଞାନ ବା ଆନାଟୋମିର ଜନକ ଫିନଲ୍ୟାଣ୍ଡର ଚିକିତ୍ସା ବିଜ୍ଞାନୀ ଆଣ୍ଡ୍ରିଆସ ଭେସାଲିଅସ୍ ମଣିଷ ଶରୀରକୁ

ବ୍ୟବଚ୍ଛେଦ କରିଥିବାରୁ ଧର୍ମଦ୍ରୋହୀ ଭାବେ ପ୍ରାୟଶ୍ଚିତ କରିବାକୁ ଯିବାବେଳେ ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇ ପ୍ରାଣ ହରାଇଛନ୍ତି । ସ୍ପେନ୍‌ର ବୈଜ୍ଞାନିକ ମାଇକେଲ ସର୍ଭେଟସ୍ ଫୁସ୍‌ଫୁସ୍ ଦ୍ୱାରା ଦେହର ରକ୍ତ ସଞ୍ଚାଳନ ହୁଏ ବୋଲି କହିବାରୁ ଜେନେଭାଠାରେ ତାଙ୍କୁ ପୋଡ଼ି ହତ୍ୟା କରାଯାଇଛି । ଇଟାଲିର ବୈଜ୍ଞାନିକ ଗାଲିଲିଓ ସୂର୍ଯ୍ୟକେନ୍ଦ୍ରିକ ଜଗତର ପରିକଳ୍ପନା କରି ପୃଥିବୀ ଗତିଶୀଳ ଓ ସୂର୍ଯ୍ୟ ସ୍ଥିର ବୋଲି କହିବାରୁ କାରାଗାରରେ ବନ୍ଦୀ ଜୀବନ ବିତାଇଛନ୍ତି । ଇଂଲଣ୍ଡର ଜୀବ ବିଜ୍ଞାନୀ ଚାର୍ଲସ ଡାରଓ୍ୱିନ୍ ଈଶ୍ୱର ମଣିଷ ବା ଜୀବ ଜଗତ ସୃଷ୍ଟି କରିନାହାନ୍ତି, ଲକ୍ଷ ଲକ୍ଷ ବର୍ଷଧରି ଜୈବିକ ବିବର୍ତ୍ତନ ଦେଇ ଜୀବନ ଓ ମଣିଷର ଉତ୍ପତ୍ତି ହୋଇଛି ବୋଲି ବିଚାର ଦେବାରୁ ଅଷ୍ଟାଦଶ ଶତାବ୍ଦୀରେ ବହୁ ତାଚ୍ଛଲ୍ୟର ସମ୍ମୁଖୀନ ହୋଇଛନ୍ତି । ଏହି ସଂଖ୍ୟା ବହୁ ଅଧିକ । ଯେଉଁମାନେ ବିଜ୍ଞାନର ବିକାଶରେ ପଥ ପ୍ରଦର୍ଶକ, ସେମାନେ ଧାର୍ମିକ ଗୋଷ୍ଠୀଦ୍ୱାରା ବହୁ ଅପମାନ, ନିର୍ଯ୍ୟାତନା ଓ ଏପରିକି ମୃତ୍ୟୁଦଣ୍ଡ ସହିଛନ୍ତି । ଧାର୍ମିକ ବିଶ୍ୱାସ ସ୍ତରରେ ସବୁ କିଛି ଈଶ୍ୱର ସୃଷ୍ଟ, ଧର୍ମଗ୍ରନ୍ଥର ବାଣୀ ଚିରନ୍ତନ, ମାନବିକ ଦୁଃଖ ଦୁର୍ଦ୍ଦଶା ଦୈବୀକୋପର ପରିଣାମ, ମଣିଷର ଦୁଃଖକୁ ଲାଘବ କରିବା ଈଶ୍ୱରୀୟ ଇଚ୍ଛାର ବିରୁଦ୍ଧ ଇତ୍ୟାଦି ଭାବନା ରହିଆସିଛି । ସୁତରାଂ ଯେତେବେଳେ କୌଣସି ବିଜ୍ଞାନୀ ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିଛନ୍ତି ବା ମଣିଷର ଯନ୍ତ୍ରଣାକୁ ଲାଘବ କରିବାକୁ ପ୍ରୟାସ କରିଛନ୍ତି ସେମାନଙ୍କୁ ଈଶ୍ୱର ବିରୋଧୀ, ଧର୍ମବିରୋଧୀ ବୋଲି ଅଭିହିତ କରି ଯନ୍ତ୍ରଣା ଦିଆଯାଇଛି । ଆମେରିକାର ବୈଜ୍ଞାନିକ ବେଂଜାମିନ ଫ୍ରାଙ୍କଲିନ୍ ଯେତେବେଳେ ବଜ୍ରପାତରୁ ଗୃହକୁ ରକ୍ଷା କରିବା ପାଇଁ କୌଶଳ ଉଦ୍ଭାବନ କଲେ କିମ୍ବା ଶଲ୍ୟ ଚିକିତ୍ସା ପାଇଁ ନିଶ୍ଚେତକ ବା ଆନାସ୍ଥେସିଆର ଯେତେବେଳେ ଉଦ୍ଭାବନ ହେଲା ତାହା ବି ଈଶ୍ୱରୀୟ ଇଚ୍ଛାର ବିରୁଦ୍ଧ ବୋଲି ଭାବନା ପ୍ରକାଶ ପାଇଥିଲା । ଏହିପରି ଖୋଜିଲେ ଅସଂଖ୍ୟ ଉଦାହରଣ ଇତିହାସରୁ ମିଳିବ ଯେଉଁଥିରେ ବିଜ୍ଞାନର ଉଦ୍ଭାବନ ଓ ଆବିଷ୍କାରକୁ ଧାର୍ମିକ ବିଶ୍ୱାସ ସ୍ତରରୁ ବିରୋଧ ହୋଇଛି । ତେବେ ଧାର୍ମିକ ବିଶ୍ୱାସ ଯେହେତୁ କାଳ୍ପନିକ, ଆଧାରଶୂନ୍ୟ ଓ ତଥ୍ୟ ବିରୋଧୀ ସେସବୁ ବିଜ୍ଞାନର ପ୍ରଗତିକୁ ପ୍ରତିହତ କରିପାରି ନାହିଁ । ଧର୍ମ ଯେ କେବଳ ବିଜ୍ଞାନକୁ ବିରୋଧ କରିଛି ତାହା ନୁହେଁ, ବିଭିନ୍ନ ରକ୍ଷଣଶୀଳ ସମାଜରେ ସମାଜ ସଂସ୍କାର, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ବ୍ୟକ୍ତି ମର୍ଯ୍ୟାଦାକୁ ଧର୍ମ, ପରମ୍ପରା ସଂସ୍କୃତି ନାମରେ ବିରୋଧ କରାଯାଇଛି । ଏହାର ଇତିହାସ ମଧ୍ୟ ସୁଦୀର୍ଘ । ସାମାଜିକ ବିକାଶଧାରାରେ ଧର୍ମ, ଦର୍ଶନର ଆବିର୍ଭାବ ବିଜ୍ଞାନର ବହୁ ପୂର୍ବରୁ ହୋଇଛି । ଧର୍ମ, ଦର୍ଶନ ମଣିଷର ଚିନ୍ତା ରାଜ୍ୟକୁ ବହୁ ଅମୂଲ୍ୟ ଅବଦାନ ଦେଇଥିଲେ ମଧ୍ୟ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ସେମାନଙ୍କ ଛାଇ ତଳେ ବିଜ୍ଞାନର ବିକାଶ ହୋଇପାରିନାହିଁ । ଧର୍ମ ସବୁ କିଛିକୁ ଅଲୌକିକତାର ଆଧାରରେ ବୁଝିବାକୁ ପ୍ରୟାସ କରିଛି, ଧର୍ମଗ୍ରନ୍ଥର ବାଣୀକୁ ଈଶ୍ୱରପ୍ରେରିତ ଅଭ୍ରାନ୍ତ ଜ୍ଞାନ ବୋଲି ଭାବିଛି । ସେହିପରି କେତେକ ଦାର୍ଶନିକ ସିଦ୍ଧାନ୍ତ ଯଥା

ଜଗତ ମିଥ୍ୟା, ଜ୍ଞାନ ଚିନ୍ତନ ଦ୍ୱାରା ସମ୍ଭବ, ଇନ୍ଦ୍ରିୟ ଜ୍ଞାନ ଭ୍ରମାତ୍ମକ ଭାବନା ବିଜ୍ଞାନର ପ୍ରତିବନ୍ଧକ ହୋଇଛି । ବିଜ୍ଞାନ କୌଣସି କଥାକୁ ଚିରନ୍ତନ ବୋଲି ଗ୍ରହଣ କରେ ନାହିଁ, ଏକ ସୁନିର୍ଦ୍ଦିଷ୍ଟ ପ୍ରଣାଳୀ ଆଧାରରେ ପ୍ରକୃତି ବିଷୟରେ ନିର୍ଭରଯୋଗ୍ୟ ଓ ପ୍ରଗତିଶୀଳ ଜ୍ଞାନ ଦେଇଥାଏ । ନୂତନ ତଥ୍ୟ ଓ ପର୍ଯ୍ୟବେକ୍ଷଣ ଆଧାରରେ କୌଣସି ସିଦ୍ଧାନ୍ତ ପରିବର୍ତ୍ତନ ହେବା ସମ୍ଭବ । ବିଜ୍ଞାନ ପାଇଁ ଇନ୍ଦ୍ରିୟଲବ୍ଧ ଜ୍ଞାନ ବିଶ୍ୱାସଯୋଗ୍ୟ, ଜ୍ଞାନ ବସ୍ତୁନିଷ୍ଠ ଓ ଆମ ଚତୁଃପାର୍ଶ୍ୱର ଜଗତ ହିଁ ମୂଳ । ଉପସଂହାରରେ ଏହା କୁହାଯାଇପାରେ ଯେ ବିଜ୍ଞାନ ଏହାର ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ଜଗତର ଘଟଣାବଳୀକୁ ଓ ସାମାଜିକ ଜୀବନର ବିକାଶ ପ୍ରବାହକୁ ବ୍ୟାଖ୍ୟା କରିଥାଏ । ମୁକ୍ତ ମନ, ସତ୍ୟ ପ୍ରତି ଉନ୍ମୁକ୍ତ ଦୃଷ୍ଟି ଓ ବସ୍ତୁନିଷ୍ଠ ପଦ୍ଧତି ହିଁ ବୈଜ୍ଞାନିକ ବିଶ୍ଳେଷଣର ଆଧାର । ବିଜ୍ଞାନ ପ୍ରକୃତିର ଅନ୍ତର୍ନିହିତ ରହସ୍ୟକୁ ଆବିଷ୍କାର କରି ପ୍ରାକୃତିକ ନିୟମ ଆଧାରରେ ପ୍ରଯୁକ୍ତିର ବିକାଶ କରିଥାଏ । ବିଜ୍ଞାନର ପ୍ରୟୋଗାତ୍ମକ ଦିଗଟି ହେଉଛି ପ୍ରଯୁକ୍ତି, ଯାହାର ବିକାଶ ମଣିଷ ସଭ୍ୟତାକୁ ନିର୍ମାଣ କରିଚାଲିଛି । (ପ୍ରଗତିବାଦୀ, ୩.୩.୧୦)



# ବିଜ୍ଞାନର ସଂସ୍କୃତି

ବିଜ୍ଞାନ ହେଉଛି ଏକ ବୌଦ୍ଧିକ ଅନୁସନ୍ଧିତ୍ସା । ପ୍ରତ୍ୟେକ ବୌଦ୍ଧିକ ସ୍ତରରେ ଏହି ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଦ୍ୱାରା ବିଜ୍ଞାନର ପରିସର କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇଚାଲିଛି । ଆଧୁନିକ ବିଜ୍ଞାନର କ୍ରମବିକାଶ ପଛରେ ରହିଛି କେତେକ ଜିଜ୍ଞାସୁ ବ୍ୟକ୍ତିଙ୍କର ଅନୁସନ୍ଧିତ୍ସୁ ଦୃଷ୍ଟି । ତେବେ ସପ୍ତଦଶ ଶତାବ୍ଦୀ ପରଠାରୁ ଦୃଷ୍ଟିଭଙ୍ଗୀରେ ଯେଉଁ ପରିବର୍ତ୍ତନ ଆସିଲା ତା'ର ପରିଣାମ ସ୍ୱରୂପ ବିଜ୍ଞାନର ଏକ ପରମ୍ପରା ଓ ସଂସ୍କୃତିର ଭିତ୍ତି ପଡ଼ିଲା ।

ପ୍ରାଚୀନ ଗ୍ରୀସ୍‌ରେ ହେଉ ବା ଭାରତବର୍ଷରେ ହେଉ ଦର୍ଶନ କ୍ଷେତ୍ରରେ ଯେପରି ଉଲ୍ଲେଖନୀୟ ବୌଦ୍ଧିକ ବିକାଶ ହୋଇଥିଲା, ବିଜ୍ଞାନ କ୍ଷେତ୍ରରେ ସେପରି ହୋଇ ନଥିଲା । ସେତେବେଳେ ବିଜ୍ଞାନ ଦର୍ଶନର ଅନ୍ତର୍ଭୁକ୍ତ ଥିଲା । ଏପରିକି କେତେକ ଦାର୍ଶନିକ ସିଦ୍ଧାନ୍ତ ବୈଜ୍ଞାନିକ ବିଚାରର ଅନ୍ତରାୟ ହୋଇଥିଲା । ଦର୍ଶନରେ ସମଗ୍ର ବିଶ୍ୱ ସମ୍ବନ୍ଧରେ ଜ୍ଞାନ ପାଇଁ ତାତ୍ତ୍ୱିକ ପ୍ରଶ୍ନମାନଙ୍କର ଅବତାରଣା ହୋଇଥିଲା । ବିଶ୍ୱର ମୂଳ ବସ୍ତୁ କ'ଣ, ଏହି ପ୍ରଶ୍ନରୁ ନାନା ତାତ୍ତ୍ୱିକ କଳ୍ପନା ପ୍ରକାଶ ପାଇଲା । ତତ୍ତ୍ୱବାଦ, ଚିରନ୍ତନ ସତ୍ତା, ମୂଳତତ୍ତ୍ୱ ପରି ପ୍ରଶ୍ନଗୁଡ଼ିକ ଦର୍ଶନ ପରିସରରେ ଆଲୋଚିତ ହେଲା, କିନ୍ତୁ ଆମ ଚତୁଃପାର୍ଶ୍ୱର ସାଧାରଣ ଘଟଣା ପ୍ରବାହର ପ୍ରାକୃତିକ କାରଣର ବ୍ୟାଖ୍ୟା ପ୍ରତି ଅନାସକ୍ତି ରହିଥିଲା । ସେ ଯାହା ହେଉ ନା କାହିଁକି ପ୍ରାକୃତିକ ଦର୍ଶନରୁ, ପ୍ରାକୃତିକ ବିଜ୍ଞାନ ଓ ପରେ ବିଜ୍ଞାନ ଚିନ୍ତାରାଜ୍ୟରେ ଏକ ପ୍ରଧାନ ବୌଦ୍ଧିକ ଜିଜ୍ଞାସାର ପ୍ରସଙ୍ଗ ହେଲା ।

ବିଜ୍ଞାନର ବିଭିନ୍ନ ସଂଜ୍ଞା ଥିଲେ ମଧ୍ୟ ଏହାର ଏକ ଉଲ୍ଲେଖନୀୟ ବର୍ଣ୍ଣନା ହେଉଛି - ଏହି ଜ୍ଞାନ ସୁବ୍ୟବସ୍ଥିତ, ବିଭାଗୀକୃତ, ତଥ୍ୟଭିତ୍ତିକ ଯାହା ପର୍ଯ୍ୟବେକ୍ଷଣ ଆଧାରରେ ଆରୋହ ପ୍ରଣାଳୀ ମଧ୍ୟ ଦେଇ ଉଦ୍ଭବ ହୋଇଥାଏ । ବିଜ୍ଞାନ ଘଟଣା ଓ ବସ୍ତୁ ସକଳକୁ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନରେ ବିଭାଗୀକୃତ ଓ ବର୍ଗୀକରଣ କରି ବ୍ୟାଖ୍ୟା କରିଥାଏ । ତଥ୍ୟ ଓ ଘଟଣାମାନଙ୍କୁ ଏକ ସୁନିର୍ଦ୍ଦିଷ୍ଟ ପ୍ରଣାଳୀ ଆଧାରରେ ବ୍ୟାଖ୍ୟା କରାଯାଉଥିବାରୁ ବିଜ୍ଞାନକୁ ପ୍ରଣାଳୀବଦ୍ଧ ଜ୍ଞାନ କୁହାଯାଏ । ତେବେ ବିଜ୍ଞାନ ଯେଉଁ ପ୍ରଣାଳୀ ଅବଲମ୍ବନ କରିଥାଏ ତାହା ବସ୍ତୁନିଷ୍ଠ ଓ ସାର୍ବଜନୀନ । ପ୍ରକୃତିର ଘଟଣା ପ୍ରବାହକୁ ବିଜ୍ଞାନ ଆବିଷ୍କୃତ ନିୟମ ଓ ପ୍ରାକୃତିକ ଶୃଙ୍ଖଳା ଆଧାରରେ ବ୍ୟାଖ୍ୟା କରିଥାଏ । ପ୍ରକୃତିରେ ଅନ୍ତର୍ନିହିତ ଥିବା ବିଭିନ୍ନ ଶୃଙ୍ଖଳା ଓ ନିୟମକୁ ଆବିଷ୍କାର କରିବା ହେଉଛି ପ୍ରାକୃତିକ ବିଜ୍ଞାନର ଲକ୍ଷ୍ୟ ।

ଗଣିତ, ତର୍କଶାସ୍ତ୍ର ଇତ୍ୟାଦି ଅଧ୍ୟୟନ ସତ୍ୟ ନିର୍ମାଣ କରେ ଅଥଚ ବିଜ୍ଞାନ ସତ୍ୟକୁ ଆବିଷ୍କାର କରିଥାଏ । ଏହି ଆବିଷ୍କାରର ଆଧାର ହେଉଛି ତଥ୍ୟ, ଆମ ଚତୁଃପାର୍ଶ୍ୱର ଘଟଣା ପ୍ରବାହ ଓ ପ୍ରାକୃତିକ ଜଗତ । ବୈଜ୍ଞାନିକ ଜ୍ଞାନ ଅନ୍ତର୍ମୁଖୀ ନୁହେଁ, ଏହା ବସ୍ତୁନିଷ୍ଠ, ପରୀକ୍ଷିତ, ତଥ୍ୟଭିତ୍ତିକ ଓ ସାର୍ବଜନୀନ ।

ବିଜ୍ଞାନର ଏହି ସିଦ୍ଧାନ୍ତ ଉପରେ ଏହାର ଦିଗନ୍ତ ପ୍ରସାର ଲାଭ କରିଛି । ତେବେ ବିଜ୍ଞାନର ମୁଖ୍ୟ ଆଧାର ହେଉଛି ଏହାର ପ୍ରଣାଳୀ ବା ପଦ୍ଧତି । ଯେକୌଣସି ବିଷୟରେ ବସ୍ତୁନିଷ୍ଠ ଜ୍ଞାନ ଲାଭ ପାଇଁ ଏହି ପ୍ରଣାଳୀକୁ ସର୍ବଦା ପ୍ରୟୋଗ କରାଯାଇଥାଏ, କାରଣ ଏହା ନିର୍ଭରଯୋଗ୍ୟ, ମୁକ୍ତ ଓ ସାର୍ବଜନୀନ । ପ୍ରକୃତିର ଘଟଣା ପ୍ରବାହକୁ ଅନୁଶୀଳନ କରିବାପାଇଁ ଏହି ପଦ୍ଧତିର ଯେପରି ପ୍ରୟୋଗ ହୁଏ, ସାମାଜିକ ଜୀବନର ଘଟଣାମାନଙ୍କୁ ଅନୁଶୀଳନ ଓ ବ୍ୟାଖ୍ୟା ପାଇଁ ମଧ୍ୟ ଏହି ପଦ୍ଧତିର ପ୍ରୟୋଗ ହୁଏ । ସୁତରାଂ ବିଜ୍ଞାନର ପଦ୍ଧତି ହିଁ ହେଉଛି ଏହାର ମୌଳିକ ତାତ୍ପର୍ଯ୍ୟ । ସେହି ପଦ୍ଧତି ପ୍ରୟୋଗ ଦ୍ୱାରା ପ୍ରକୃତିର ବା ସମାଜ-ଜୀବନର ଘଟଣାମାନଙ୍କୁ ବିଶ୍ଳେଷଣ କରାଯାଏ । ପ୍ରକୃତିକୁ ଅଧ୍ୟୟନ କରିବା ପୃଷ୍ଠଭୂମିରେ ଯେପରି ପ୍ରାକୃତିକ ବିଜ୍ଞାନର ବିଭିନ୍ନ ବିଭାଗ ରହିଛି, ସେହିପରି ସମାଜକୁ ଅଧ୍ୟୟନ କରିବା କ୍ଷେତ୍ରରେ ସାମାଜିକ ବିଜ୍ଞାନର ବିଭିନ୍ନ ବିଭାଗ ରହିଛି । ତେବେ ପ୍ରାକୃତିକ ବିଜ୍ଞାନ ହେଉ ବା ସାମାଜିକ ବିଜ୍ଞାନ ହେଉ ଏ ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ପ୍ରଣାଳୀ ଆଧାରରେ ଅଧ୍ୟୟନ କରାଯାଏ, ତାହା ହେଉଛି ବୈଜ୍ଞାନିକ ପଦ୍ଧତି । ସୁତରାଂ ବୈଜ୍ଞାନିକ ପଦ୍ଧତି ହିଁ ବିଜ୍ଞାନର ଅନ୍ତର୍ନିହିତ ତାତ୍ପର୍ଯ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ ।

ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ପରିବର୍ତ୍ତନ ସାପେକ୍ଷ । କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ନୂତନ ଘଟଣା ଆଧାରରେ ମିଥ୍ୟା ପ୍ରମାଣିତ ହେଲେ ତାହା ନେଇ କୌଣସି ଭାବପ୍ରବଣତା ପ୍ରକାଶ ପାଏନାହିଁ । ଜଣେ ବୈଜ୍ଞାନିକଙ୍କର ସିଦ୍ଧାନ୍ତକୁ କେହି ଭୁଲ୍ ପ୍ରମାଣିତ କଲେ ସେ ତାଙ୍କୁ ସ୍ୱାଗତ କରିଥାନ୍ତି । ପ୍ରକୃତିର ବିଶାଳତା ଓ ଜଟିଳତା ପରିପ୍ରେକ୍ଷୀରେ ନୂତନ ତଥ୍ୟ ଓ ପର୍ଯ୍ୟବେକ୍ଷଣର ବ୍ୟାପକତାକୁ ଆଧାର କରି ବୈଜ୍ଞାନିକ ସିଦ୍ଧାନ୍ତମାନ ସମୟକୁ ସମୟ ପରିବର୍ତ୍ତିତ ହୋଇଚାଲିଛି । କାରଣ ବୈଜ୍ଞାନିକ ପଦ୍ଧତି ଏକ ମୁକ୍ତ ଦୃଷ୍ଟିକୁ ପ୍ରାଧାନ୍ୟ ଦେଇଥାଏ ଓ ଏହା ସ୍ୱସଂଶୋଧନାତ୍ମକ । ନିଜର ତ୍ରୁଟିକୁ ନିଜର ପ୍ରଣାଳୀ ଦ୍ୱାରା ଏହା ସଂଶୋଧନ କରିପାରେ । ତେବେ ବୈଜ୍ଞାନିକ ଜ୍ଞାନ ସାର୍ବଜନୀନ କାରଣ ତାହା ପରୀକ୍ଷିତ ଓ ସତ୍ୟ ଉପରେ ଆଧାରିତ । ଏହା ସହିତ କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ଅନ୍ୟାନ୍ୟ ବହୁ ସିଦ୍ଧାନ୍ତମାନଙ୍କ ସହ ସୁସଂଯୋଜିତ ଓ ବିଭିନ୍ନ କ୍ଷେତ୍ରର ବୈଜ୍ଞାନିକ ନିୟମ ସକଳ ଏକ ବୃହତ୍ତର ଶୃଙ୍ଖଳା ଓ କ୍ରମର ଅଂଶବିଶେଷ । ଏକ ପ୍ରାକୃତିକ ନିୟମର ଉଲଂଘନ ଅସମ୍ଭବ ଓ ଅଯୌକ୍ତିକ ।

ବସ୍ତୁତଃ ପ୍ରାକୃତିକ ବିଜ୍ଞାନ ପ୍ରକୃତିର ବିଭିନ୍ନ ସୋପାନରେ ରହିଥିବା ନିୟମ, ଶୃଙ୍ଖଳା ଓ ଏକରୂପତାକୁ ଆବିଷ୍କାର କରେ । ବିଜ୍ଞାନର ବିଭିନ୍ନ ନିୟମ ଓ ସିଦ୍ଧାନ୍ତମାନଙ୍କୁ ସୁବ୍ୟବସ୍ଥିତ ଭାବେ ଏହା ଏକ ସମଷ୍ଟିଗତ ସୈଦ୍ଧାନ୍ତିକ ଭିତ୍ତି ଦେଇଥାଏ । ପଦାର୍ଥ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ପ୍ରାଣୀବିଜ୍ଞାନ ପରି ପ୍ରତ୍ୟେକ ବିଜ୍ଞାନ ସ୍ତରରେ ଯେଉଁ ମୌଳିକ ନିୟମଗୁଡ଼ିକର ଅବତାରଣା ଦେଖିବାକୁ ମିଳେ, ସେଗୁଡ଼ିକ ପରସ୍ପରର ଅନୁପୂରକ ଓ ସେସବୁ ସୁସମନ୍ୱିତ ।

ଏହିଠାରେ ବିଜ୍ଞାନ ଓ ତାତ୍ତ୍ୱିକ ପ୍ରଶ୍ନ ଭିତରେ ରହିଥିବା ପାର୍ଥକ୍ୟ ସୁସ୍ପଷ୍ଟ ମନେହୁଏ । ବୈଜ୍ଞାନିକ ସିଦ୍ଧାନ୍ତ କ୍ଷେତ୍ରରେ ପରସ୍ପର ବିରୋଧୀ ସିଦ୍ଧାନ୍ତ ରହିବା ସମ୍ଭବ ନୁହେଁ । ହୁଏତ କେତେକ ଅତିଜଟିଳ ପ୍ରସଙ୍ଗ ଉପରେ ବିଭିନ୍ନ ପ୍ରକଳ୍ପ ରହିପାରେ । ତେବେ ପ୍ରକଳ୍ପମାନଙ୍କର ପରୀକ୍ଷା ପରେ ଏହା ସମାହିତ ହୋଇଥାଏ । ଯେଉଁ ପ୍ରକଳ୍ପର ବ୍ୟାଖ୍ୟାର ପରିସର ବ୍ୟାପକ ଓ ଯାହା ଅନ୍ୟ ସିଦ୍ଧାନ୍ତମାନଙ୍କ ସହିତ ସୁସଂଯୋଜିତ ତାହା ହିଁ ଗ୍ରହଣଯୋଗ୍ୟ ହୋଇଯାଏ । ମାଟିର ଉତ୍ପତ୍ତି କିପରି ହୋଇଛି ଏକ ବୈଜ୍ଞାନିକ ପ୍ରଶ୍ନ ଓ ଏହାର ବ୍ୟାଖ୍ୟା କ୍ଷେତ୍ରରେ ପରସ୍ପର ବିରୋଧୀ ସିଦ୍ଧାନ୍ତ ରହିବା ସମ୍ଭବ ନୁହେଁ । ସେହିପରି ଦେହରେ ରକ୍ତ ସଞ୍ଚାଳନ କିପରି ହୁଏ ଏକ ବୈଜ୍ଞାନିକ ପ୍ରଶ୍ନ, ଯାହାର ବ୍ୟାଖ୍ୟା ନିର୍ଦ୍ଦିଷ୍ଟ ପଦ୍ଧତିରେ ସମ୍ଭବ ହୋଇଥାଏ । କିନ୍ତୁ ଆତ୍ମାର ସ୍ୱରୂପ କ'ଣ ଏକ ତାତ୍ତ୍ୱିକ ପ୍ରଶ୍ନ । ଯେହେତୁ ଆତ୍ମା ଏକ କଳ୍ପନାର ବିଷୟ, ତେଣୁ ଏ କ୍ଷେତ୍ରରେ ଆତ୍ମାର ସ୍ଥିତି ଓ ସ୍ୱରୂପ ନେଇ ନାନା କାଳ୍ପନିକ ମତ ଦେଖିବାକୁ ମିଳେ । ସ୍ୱର୍ଗ ବା ମୋକ୍ଷ କିପରି ପ୍ରାପ୍ତ ହୋଇପାରିବ ହେଉଛି ଏକ ତାତ୍ତ୍ୱିକ ପ୍ରଶ୍ନ ଯାହା ନେଇ ନାନା କଳ୍ପନା କରାଯାଇପାରେ । ଧର୍ମମାନଙ୍କର ପ୍ରସଙ୍ଗଗୁଡ଼ିକ କଳ୍ପନା ଆଧାରିତ ହୋଇଥିବାରୁ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନ ପୃଷ୍ଠଭୂମିରେ ତାତ୍ତ୍ୱିକ ପ୍ରସଙ୍ଗ ସକଳକୁ ନେଇ ନାନା ପରସ୍ପର ବିରୋଧୀ ସିଦ୍ଧାନ୍ତ ଓ ଭାବନା ଦେଖିବାକୁ ମିଳେ ।

ଏହିଠାରେ ଏକ ବୈଜ୍ଞାନିକ ବ୍ୟାଖ୍ୟା ଓ ଏକ ରହସ୍ୟମୟ ବ୍ୟାଖ୍ୟା ମଧ୍ୟରେ ପାର୍ଥକ୍ୟ ସୁସ୍ପଷ୍ଟ ମନେହୁଏ । ଜଣେ କାହିଁକି କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ ପ୍ରଶ୍ନର ବୈଜ୍ଞାନିକ ବ୍ୟାଖ୍ୟା ହେବ ତାଙ୍କ ଦେହରେ କୁଷ୍ଠରୋଗର ଜୀବାଣୁ ପ୍ରବେଶ କଲା ଓ ତାଙ୍କ ଶରୀରର ପ୍ରତିଷେଧକ ବ୍ୟବସ୍ଥା ଦୁର୍ବଳ ହେତୁ ସେ ଏଥିରେ ଆକ୍ରାନ୍ତ ହେଲେ । ତେବେ ନିର୍ଦ୍ଦିଷ୍ଟ ଚିକିତ୍ସାରେ ରହିଲେ ଏହା ଭଲ ହୋଇପାରିବ । ପରନ୍ତୁ ଜଣେ ଯଦି ବିଶ୍ୱାସ କରେ ଯେ, ତାଙ୍କର କୌଣସି ଅର୍ଜିତ ପାପ ଯୋଗୁ କିମ୍ୱା ପୂର୍ବଜନ୍ମର କର୍ମଫଳ ଯୋଗୁ କିମ୍ୱା ତାଙ୍କର ମନ୍ଦଗ୍ରହର ପ୍ରଭାବରୁ ଏହା ହେଉଛି, ଏହି ପ୍ରକାରର ବ୍ୟାଖ୍ୟା ରହସ୍ୟଜନକ, ଅବାନ୍ତର ଓ ସମ୍ପୂର୍ଣ୍ଣ କାଳ୍ପନିକ ମନେହେବ । ଥରେ ଗୋଟିଏ କାଳ୍ପନିକ

କାରଣକୁ ଗ୍ରହଣ କରିଗଲେ ସେଥିରୁ ନାନା ଅବାନ୍ତର ପରିଣାମ ମଧ୍ୟ ଆସିବ। ଯଦି ଜଣେ ଭାବନ୍ତି ଯେ, ରୋଗରୁ ଉପଶମ ପାଇଁ ସେ ଦିଅଁଙ୍କ ପାଖରେ ଅଧିଆ ପଡ଼ିବା ଦରକାର, ତେଉଁରିଆ ବା ମନ୍ତ୍ରମୁଦି ପିନ୍ଧିବା ଆବଶ୍ୟକ ବା ଗ୍ରହଶାନ୍ତି ପାଇଁ ଯଜ୍ଞ କରିବା ଉଚିତ ତେବେ ଏହା କେତେକ ମନସ୍ତାତ୍ତ୍ୱିକ ପ୍ରଭାବ ଛଡ଼ା କିଛି ଇପ୍‌ସିତ ପରିଣାମ ସୃଷ୍ଟି କରିପାରିବ ନାହିଁ। ଜୀବନର ବିଭିନ୍ନ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିକୋଣ ପୋଷଣ କରିବା ଓ କେତେକ ପରମ୍ପରାଗତ ବିଶ୍ୱାସ ଦ୍ୱାରା ପରିଚାଳିତ ହେବା ଭିତରେ ଯେ ଗୁଣାତ୍ମକ ପାର୍ଥକ୍ୟ ରହିଛି ଏହା ନିଃସନ୍ଦେହ ମନେହୁଏ।

ସପ୍ତଦଶ ଶତାବ୍ଦୀଠାରୁ ବିଜ୍ଞାନର ଯେଉଁ ବିକାଶ ପର୍ବ ଆରମ୍ଭ ହେଲା, ତା'ର ପରିଣାମସ୍ୱରୂପ ଆଜି ଯେଉଁସବୁ ପ୍ରଯୁକ୍ତିର ବିକାଶ ହୋଇଛି, ତାହା ଆଧୁନିକ ଜୀବନକୁ ବହୁ ସୁଖ ସ୍ୱାଚ୍ଛନ୍ଦ୍ୟ ଆଣିଦେଇଛି ଯାହା ଗୋଟିଏ ଶତାବ୍ଦୀ ତଳେ ଅଚିନ୍ତନୀୟ ଥିଲା। ବହୁ ଦୁରାରୋଗ୍ୟ ବ୍ୟାଧିର ନିୟନ୍ତ୍ରଣ ସମ୍ଭବ ହୋଇଛି, ଉତ୍ପାଦନ ବହୁ ମାତ୍ରାରେ ବଢ଼ିଛି ଓ ସାମାଜିକ ଗତିଶୀଳତା ବୃଦ୍ଧି ପାଇଛି। ଇଣ୍ଟରନେଟ୍‌, ମୋବାଇଲ ଫୋନ୍‌, ଅନ୍ୟ ଗ୍ରହକୁ ଯାନ ପ୍ରେରଣ, ଦୃଷ୍ଟିହୀନ ପାଖରେ ଚକ୍ଷୁରୋପଣ ପରି ବହୁ ଅସମ୍ଭବ ସମ୍ଭବ ହୋଇପାରୁଛି। ଅର୍ଥାତ୍‌, ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ବିସ୍ଫୋରଣ ଘଟିଛି, କିନ୍ତୁ ପରିତାପର ବିଷୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏବେ ବି ନାନା କୁସଂସ୍କାର, ପାରମ୍ପରିକ ବିଶ୍ୱାସ ଓ ଧାର୍ମିକ ମାନସିକତା ଦ୍ୱାରା ପ୍ରତିବନ୍ଧକର ସମ୍ମୁଖୀନ ହେଉଛି। ସାଧାରଣ ଜୀବନ ପ୍ରବାହରେ ଓ ବିଶେଷକରି ଅନୁନ୍ନତ ସମାଜରେ ଏବେ ମଧ୍ୟ ମଧ୍ୟଯୁଗୀୟ ଦୃଷ୍ଟିଭଙ୍ଗୀର ପ୍ରାଧାନ୍ୟ ରହିଛି। ବହୁ ସାମାଜିକ କାରଣ, ଆର୍ଥିକ ପରିସ୍ଥିତି, ମନସ୍ତାତ୍ତ୍ୱିକ ଭୟ ଓ ସାଂସ୍କୃତିକ ପ୍ରଭାବଯୋଗୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସାର୍ବଜନୀନ ହୋଇପାରୁନାହିଁ। ଫଳିତ ଜ୍ୟୋତିଷ, ବାସ୍ତୁବିଦ୍ୟା, ଶୂନ୍ୟରୁ ବସ୍ତୁ ସୃଷ୍ଟି, ମନ୍ତ୍ରତନ୍ତ୍ର, ଡାହାଣୀ, ଭୂତ, ଗ୍ରହଶାନ୍ତି, ବଳିପ୍ରଥା ଇତ୍ୟାଦି ଅସଂଖ୍ୟ ଆଧାରହୀନ ଭାବନା ଏବେ ବି ସମାଜରେ ପ୍ରଚଳିତ ରହିଛି।

ପୁନଶ୍ଚ ବିଜ୍ଞାନକୁ ସମାଜର ବୃହତ୍ତର ହିତ ସାଧନ ଦିଗରେ ବିନିଯୋଗ କରାଯାଇପାରିବ କିମ୍ବା ମଣିଷ ଜାତିର ଧ୍ୱଂସ ପାଇଁ ଗଣବିଧ୍ୱଂସକାରୀ ଅସ୍ତ୍ର ନିର୍ମାଣ ଦିଗରେ ବିନିଯୋଗ କରାଯାଇପାରିବ। ସୁତରାଂ ବିଜ୍ଞାନର ଅପପ୍ରୟୋଗ ବିଶ୍ୱସ୍ତରରେ ବନ୍ଦହେବା ଆବଶ୍ୟକ। ଯେଉଁ ଜ୍ଞାନ ବା ପ୍ରଯୁକ୍ତି ସଭ୍ୟତାର ବିନାଶକାରୀ, ଶୋଷଣର ଅନୁକୂଳ ଓ ବୈଷମ୍ୟପୂର୍ଣ୍ଣ ପରିବେଶ ପାଇଁ ଦାୟୀ ତାହାର ବିଲୋପ ଦରକାର। ସେହିପରି ବିଡ଼ମ୍ବନାର ବିଷୟ ବୈଜ୍ଞାନିକ ସାଧନମାନଙ୍କୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ପରିବର୍ତ୍ତେ କୁସଂସ୍କାରର ପ୍ରସାର ଦିଗରେ ବ୍ୟବହାର କରିବା। ସମାଜର ପ୍ରଚଳିତ ବିଶ୍ୱାସ ଓ ବିଶେଷକରି

ଅନ୍ଧବିଶ୍ୱାସର ପ୍ରସାର ବା ଅଶିକ୍ଷତା ବା ଅନୈତିକତାର ପ୍ରସାର ପାଇଁ ଗଣମାଧ୍ୟମର ବିନିଯୋଗ ହେବା ଚିନ୍ତାର ବିଷୟ ।

ବୈଜ୍ଞାନିକ ଗବେଷଣା ଓ ଆଧୁନିକ ପ୍ରଯୁକ୍ତି ଆଜି ଯେଉଁ ସ୍ତରକୁ ଯାଇଛି ତାହା ସହ ଏକ ମାନବିକ ଦିଗ ସଂଶ୍ଳିଷ୍ଟ ହେବା ଆବଶ୍ୟକ । ବିଜ୍ଞାନ ସହ ମାନବିକତାର ସଂଯୋଗ ହେଲେ ଏହା ଆମ ସଂସ୍କାରରେ ଅନେକ ନୈସର୍ଗିକ ସୁଖ ଶାନ୍ତିର ବାତାବରଣ ଆଣିପାରିବ । ବିଜ୍ଞାନ ପ୍ରାଯୁକ୍ତିକ ସାଧନ ନହୋଇ ଏକ ଜୀବନଧାରା ଓ ଏକ ସଂସ୍କୃତି ହେବା ଦରକାର । ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ସତ୍ୟାନ୍ୱେଷଣ ପ୍ରତି ପ୍ରତିବଦ୍ଧତା ଓ ମାନବିକ ଶ୍ରେୟ ଏହାର ଅନ୍ତର୍ନିହିତ ତାତ୍ପର୍ଯ୍ୟ । ତାହା ହିଁ ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମାନବକୈନ୍ଦ୍ରିକ ଜୀବନ ଦର୍ଶନର ଅନୁକୂଳ । କୌଣସି କାଳ୍ପନିକ ସ୍ୱର୍ଗ, ମୁକ୍ତି, ମୋକ୍ଷ ଭାବନାଗୁଡ଼ିକ ଏହି ଭାବନା ସହିତ ଅସଂଯୋଜିତ । ବରଂ ଜୀବନକୁ ଅଧିକ ସୁଖମୟ ଓ ଦୁଃଖରହିତ କରିବାରେ ଏହାର ଅବଦାନ ଅନସ୍ୱୀକାର୍ଯ୍ୟ । ତାହା ହେଉଛି ବିଜ୍ଞାନର ସଂସ୍କୃତି ଯାହା ସଭ୍ୟତାର ନିର୍ମାଣ ପାଇଁ ପଥପ୍ରଦର୍ଶକ । (ପ୍ରଗତିବାଦୀ - ୧୦.୩.୧୦)



# ମାନସିକ ଦାରିଦ୍ର୍ୟ

ଆମେ କେଉଁଥିରେ ଦରିଦ୍ର ? କୁହାଯାଉଛି ଆମ ରାଜ୍ୟ ଦେଶରେ ଏକ ଦରିଦ୍ରତମ ରାଜ୍ୟ । ଆମ ରାଜ୍ୟରେ ଯେତେ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି ତାହା ଲୁଆଡ଼େ ଦେଶରେ ଶତକଡ଼ା ହିସାବରେ ସବୁଠାରୁ ଅଧିକ । ଦାରିଦ୍ର୍ୟ ଏଠାରେ ଏକ ଅର୍ଥନୈତିକ ଅବଧାରଣା । ଖାଦ୍ୟ, ବାସଗୃହ, ଚିକିତ୍ସା, ଶିକ୍ଷା ବା ବସ୍ତୁଗତ ସାଧନ ଇତ୍ୟାଦି ମାନଦଣ୍ଡରେ ଦାରିଦ୍ର୍ୟର ଆକଳନ କରାଯାଏ । ଯେଉଁଠି ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କ୍ଷେତ୍ରରେ କିଛି ଲୋକ ବଞ୍ଚିତ ହୋଇ ରହନ୍ତି ଓ ସରକାରଙ୍କ ଜନମଙ୍ଗଳକାରୀ ଯୋଜନା ସେମାନଙ୍କ ଆର୍ଥିକ ବା ସାମାଜିକ ସ୍ଥିତିରେ କିଛି ପରିବର୍ତ୍ତନ ଆଣିପାରେ ନାହିଁ ସେମାନେ ଆର୍ଥିକ ମାନଦଣ୍ଡରେ ଦରିଦ୍ର । ଦାଦନ ଖଟିବାକୁ ଯିବା, ଅନାହାର ବା ଅର୍ଦ୍ଧାହାରରେ ରୋଗକ୍ଲିଷ୍ଟ ହୋଇ ମୃତ୍ୟୁବରଣ କରିବା, ଆଧୁନିକ ଶିକ୍ଷା, ଚିକିତ୍ସାର କୌଣସି ସୁଫଳ ନ ପାଇବା ଲୋକମାନେ ଆଧୁନିକ ମାନଦଣ୍ଡରେ ଦରିଦ୍ର । ଏହି ଦୃଷ୍ଟିରୁ ଓଡ଼ିଶା ପ୍ରାୟତଃ ଦେଶର ଏକ ଦରିଦ୍ର ରାଜ୍ୟ । ଯେଉଁଠି ପ୍ରକୃତି ଅତ୍ୟନ୍ତ ପ୍ରତିକୂଳ, ବା ଯେଉଁଠି ପ୍ରାକୃତିକ ଦୁର୍ବିପାକ ଏକ ଜନଗୋଷ୍ଠୀର ଚିର ସହଚର ସେଠାକାର ଜନଜୀବନ ଦରିଦ୍ର ରହିବା ଅସମ୍ଭବ ନୁହେଁ । ତେବେ ଏ ଦୃଷ୍ଟିରୁ ଦେଖିଲେ ଆମେ ଦରିଦ୍ର ନୁହେଁ । ପ୍ରକୃତି ଆମପାଇଁ ବହୁ ଦୃଷ୍ଟିରୁ ଅନୁକୂଳ ଓ ଆମ ରାଜ୍ୟ ବହୁ ପ୍ରାକୃତିକ ସମ୍ପଦରେ ଭରପୂର । ଆମ ରାଜ୍ୟରେ ପ୍ରାକୃତିକ ଦୁର୍ବିପାକ ଯେ ହୁଏ ନାହିଁ ଏହା ନୁହେଁ, ତେବେ ସେ ପ୍ରକାର ଦୁର୍ବିପାକ ପୃଥିବୀର ପ୍ରତ୍ୟେକ ଦେଶରେ ମଝିରେ ମଝିରେ ସୃଷ୍ଟିହୁଏ । ପ୍ରକୃତି ବହୁ ପ୍ରତିକୂଳ ରହିଥିବା ପୃଥିବୀର ବହୁ ଦେଶ ଆମ ଦେଶ ତୁଳନାରେ ବହୁ ଦୃଷ୍ଟିରୁ ସମୃଦ୍ଧ ଓ ସେଠାରେ ଜୀବନର ଗୁଣାତ୍ମକ ମାନ ବହୁ ଉନ୍ନତ । ବିଶେଷକରି ୟୁରୋପୀୟ ରାଷ୍ଟ୍ରସମୂହ ପୃଥିବୀରେ ପ୍ରାୟତଃ ସମୃଦ୍ଧଶାଳୀ ଓ ଅତ୍ୟନ୍ତ ଉନ୍ନତ । ପ୍ରକୃତି ସେ ଦେଶମାନଙ୍କରେ ଅନେକାଂଶରେ ଆମ ଦେଶ ତୁଳନାରେ ପ୍ରତିକୂଳ ଓ ଏପରିକି କେତେକ ଦେଶରେ ପ୍ରାକୃତିକ ସଂସାଧନ ବହୁତ କମ୍, ତଥାପି ସେମାନେ ଉନ୍ନତ ଜୀବନର ଅଧିକାରୀ । ଅପପୁଷ୍ଟି, ଅନାହାର ମୃତ୍ୟୁ, ନିରକ୍ଷରତା, ଶିଶୁମୃତ୍ୟୁ ସେସବୁ ଦେଶରେ ଅଚିନ୍ତନୀୟ ।

ଆମର ଦାରିଦ୍ର୍ୟ ଯେତିକି ଅର୍ଥନୈତିକ ବା ବସ୍ତୁଗତ, ସେତିକି ମାନସିକ ବା ବୌଦ୍ଧିକ । ଅବଶ୍ୟ ମାନସିକ ଦାରିଦ୍ର୍ୟକୁ କେହି ଅର୍ଥନୈତିକ ଦାରିଦ୍ର୍ୟର କାରଣ ବୋଲି

ନେଇପାରନ୍ତି ଓ ଏ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ଏକ କାର୍ଯ୍ୟକାରଣ ସମ୍ପର୍କକୁ ଜଟିଳ ଯୁକ୍ତି ଦ୍ୱାରା ଆଲୋଚନା କରିପାରନ୍ତି । କିଛିବର୍ଷ ତଳେ ଜଣେ ନୋବେଲ ପୁରସ୍କାରପ୍ରାପ୍ତ ଅର୍ଥନୀତିଜ୍ଞ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କର ଦାରିଦ୍ର୍ୟର ନାନା ଦିଗନ୍ତ ଉପରେ ଆଲୋକପାତ କରି ଆର୍ଥିକ ଦାରିଦ୍ର୍ୟ ସହ ମାନସିକ ଦାରିଦ୍ର୍ୟର ସମ୍ବନ୍ଧକୁ ନାନା ସିଦ୍ଧାନ୍ତ ଆଧାରରେ ଦର୍ଶାଇଥିଲେ । ତେବେ ସେହି ଜଟିଳ ପ୍ରସଙ୍ଗକୁ ନଯାଇ ମାନସିକ ଦାରିଦ୍ର୍ୟ ବିଷୟରେ ସଂକ୍ଷିପ୍ତ ଓ କେତେକ ସାଧାରଣ ସୂଚନା ଦେବାକୁ ଆମେ ଏଠାରେ ପ୍ରୟାସ କରିବା ।

ଏହି ପରିପ୍ରେକ୍ଷୀରେ ଦୁଇଟି ଘଟଣାକୁ ଅବତାରଣା କରୁଛି । ସମ୍ବାଦ ଅନୁଯାୟୀ ଗୋଟିଏ ଶିଶୁ ଜନ୍ମ ପରେ ଭବିଷ୍ୟବାଣୀ କଲା ଯେ, ଗୋଟିଏ ପୁଅ ଥିବା ମହିଳାମାନେ ଶିବ ଓ ବାଟମଙ୍ଗଳାଙ୍କୁ ପୂଜାର୍ଚ୍ଚନା ନକଲେ ସେମାନଙ୍କ ପୁଅର ଅମଙ୍ଗଳ ହେବ । ଜନ୍ମିତ ଶିଶୁଟି ଏହା କହି ମୃତ୍ୟୁବରଣ କଲା । ଏହି ଖବରଟି ଗୁଜବର ରୂପ ନେଇ ଏପରି ପ୍ରଚାରିତ ହେଲା ଯେ, ମହିଳାମାନେ ମନ୍ଦିରକୁ ଯାଇ ପୂଜାର୍ଚ୍ଚନା ଲାଗି ବିରାଟ ଧାଡ଼ି ବାନ୍ଧିଲେ (ପ୍ରଗତିବାଦୀ ୪.୩.୨୦୧୦) । ଘଟଣାଟି ଯେତେ ଅବିଶ୍ୱାସନୀୟ ହେଲେ ମଧ୍ୟ ଲୋକମାନେ ଏକ ଆଧାରହୀନ ବିଶ୍ୱାସକୁ ପ୍ରତ୍ୟାଖ୍ୟାନ କଲେ ନାହିଁ । ଧର୍ମୀୟ ଗୁଜବ ଦ୍ୱାରା ଗାଁ, ସହର ସବୁ ଜାଗାରେ ଲୋକମାନେ ପ୍ରଭାବିତ ଓ ଭୟାତୁର ହୋଇ ବିଭିନ୍ନ ଶୈବପୀଠ ଓ ମନ୍ଦିରରେ ପୂଜାର୍ଚ୍ଚନା କରିବାକୁ ଗଲେ । ଏହି ଘଟଣାରୁ ଜନମାନସର ମନସ୍ତତ୍ତ୍ୱ ବିଷୟରେ ଆକଳନ କରାଯାଇପାରେ । ଲୋକମାନଙ୍କର ମାନସିକତା କିପରି କୁସଂସ୍କାରରେ ଆକ୍ରାନ୍ତ ତାହା ଏହିଭଳି ଅସଂଖ୍ୟ ଘଟଣାରୁ ଅନୁମେୟ । ସେହିପରି ଆଉ ଗୋଟିଏ ସମ୍ବାଦ ହେଉଛି ଜଣେ ମା' ତା'ର ମନସ୍କାମନା ପୂରଣ ପାଇଁ ନିଜ ପୁଅକୁ ତ୍ରିଶୂଳରେ ହତ୍ୟାକରି ତା'ର ରକ୍ତକୁ ଠାକୁରାଣୀଙ୍କୁ ଦେବା । ଏହି ଘଟଣାଗୁଡ଼ିକ ସମାଜର ବ୍ୟତିକ୍ରମ ନୁହେଁ । ବରଂ ଅଲକ୍ଷ୍ୟରେ ଏହି ପ୍ରକାରର ଅନେକ ଘଟଣା ଆମ ସମାଜରେ ନିତିଦିନ ଘଟିଯାଉଛି ।

ସମାଜର ଏକ ସାଧାରଣ ମନସ୍ତତ୍ତ୍ୱ ହେଉଛି ଯେ, ଦେବଦେବୀଙ୍କୁ ଭୋଗ ଦେଇ ସନ୍ତୁଷ୍ଟ କରାଯାଇପାରିବ, ଫଳରେ ନିଜର ପ୍ରତିକୂଳ ପରିସ୍ଥିତିର ପରିବର୍ତ୍ତନ ହେବ । ରାସ୍ତାଘାଟରେ ବହୁ ଅନାମଧେୟ ପ୍ରଚାରପତ୍ର ବଣ୍ଟାଯାଉଛି ଓ ଚିଠି ପଠାଯାଉଛି । କେଉଁ ଦିଅଁଙ୍କ କୃପାରୁ ଜଣେ କ'ଣ ପାଇଲା ଓ ଜଣେ ଅବିଶ୍ୱାସ କରିବାରୁ କ'ଣ ହରାଇଲା ଏସବୁ କଳ୍ପିତକାହାଣୀ ଲେଖାଯିବା ସହ ଏହିପରି ପ୍ରଚାରପତ୍ର ବାଣ୍ଟିବାକୁ ଲୋକମାନଙ୍କୁ କୁହାଯାଉଛି । ଜଣେ ସାଧାରଣ ମଣିଷ ଏସବୁ ପ୍ରଚାରପତ୍ର ପଢ଼ି ସେ ସେହି ପ୍ରକାରର ଲେଖି ବାଣ୍ଟୁଛି ବା ପୋଷ୍ଟକାର୍ଡ଼ ଲେଖି ପଠାଉଛି । ଲୋକମାନଙ୍କର ଦୁର୍ବଳ ମାନସିକତାର ସୁଯୋଗ ନେଇ କିଛି ବ୍ୟକ୍ତି ବେଶ୍ କୌଶଳତାର ସହ ଏସବୁ ପ୍ରଚାର କରୁଛନ୍ତି ।

ଏତଦ୍‌ବ୍ୟତୀତ ଦିଅଁ ଦେବତା ପାଖରେ ବଳି ପକାଇବା, ଜିଭ କାଟିବା, କେଉଁଠି ଯାଇ ଅଧିଆ ପଡ଼ିବା, କେଉଁଠାକୁ ନଡ଼ିଆ ପଠାଇବା ବା କାହାର ପାଦ ଦର୍ଶନ କରିବା, ବେଳା ଦେଖି ବୁଡ଼ ପକାଇବା ପରି ନାନା ଅହେତୁକ ବିଶ୍ୱାସ ଆମ ସମାଜରେ ଅତ୍ୟନ୍ତ ସାଧାରଣ ଘଟଣା । ବର୍ଷସାରା ଲୋକମାନଙ୍କ ଭିତରେ ଏହି ସବୁ ଭାବନାକୁ ଜୀବିତ ରଖିବା ପାଇଁ କେତେ କେତେ ପ୍ରଚାର, ପରମ୍ପରା ନାମରେ କେତେ ପୂଜା ଆରାଧନା ଆମ ଚତୁଃପାର୍ଶ୍ୱରେ ସବୁବେଳେ ଘଟୁଥାଏ । ଏତଦ୍‌ବ୍ୟତୀତ ସମୟ ସମୟରେ କେଉଁ ମହିଳାଙ୍କୁ ଡାହାଣୀ ଭାବି ତାଙ୍କୁ ନିର୍ଯାତନା ଦେବା, ମାନସିକ ବିକୃତି ହେଲେ ତାନ୍ତ୍ରିକ ଡାକି ଭୂତ ଛଡ଼ାଇବା ଆମ ସମାଜର ପ୍ରତିଦିନର ଘଟଣା ।

ସାମାଜିକ ବିକାଶ ପ୍ରକ୍ରିୟାରେ ଯେତେବେଳେ ବିଭିନ୍ନ ମହାମାରୀ ସୃଷ୍ଟି ହେଉଥିଲା ଓ ଯେଉଁଥିରେ ହଜାର ହଜାର ବ୍ୟକ୍ତି ମୃତ୍ୟୁବରଣ କରୁଥିଲେ, ସେତେବେଳେ ଏସବୁ ଠାକୁର ଠାକୁରାଣୀଙ୍କ କୋପରୁ ହେଉଛି ବୋଲି ଲୋକବିଶ୍ୱାସ ରହିଥିଲା । ସେଥିପାଇଁ ପ୍ରତ୍ୟେକ ଗାଆଁମାନଙ୍କରେ ପୂଜାପୀଠର ନିର୍ମାଣ କରାଯାଇ ଦିଅଁ ଦେବତାଙ୍କୁ ସନ୍ତୁଷ୍ଟ କରିବା, ସେମାନଙ୍କ ପାଖରେ ବଳି ପକାଇବା ସାଧାରଣ ଘଟଣା ଥିଲା । ଚିକିତ୍ସା ବିଜ୍ଞାନର ଅଗ୍ରଗତି ଓ ରୋଗମାନଙ୍କର କାରଣ ଜଣାପଡ଼ିବା ପରେ ସେସବୁକୁ କେତେକାଂଶରେ ଦୂର କରାଯାଇପାରିଛି । ତେବେ ଯେଉଁ ମାନସିକତା ପୂର୍ବରୁ ଥିଲା ସେହି ସ୍ଥିତିରେ ବିଶେଷ ପରିବର୍ତ୍ତନ ହୋଇନାହିଁ । ହୁଏତ ରୋଗ ବାଧକ କ୍ଷେତ୍ରରେ କିଛିଟା ସଚେତନତା ଆସିଛି ହେଲେ ମଧ୍ୟ ଜୀବନର ବିଭିନ୍ନ ପରିସ୍ଥିତି କ୍ଷେତ୍ରରୁ କୁସଂସ୍କାରର ପ୍ରଭାବ ହଟିପାରି ନାହିଁ । କେଉଁ ମୁଦି ପିନ୍ଧିଲେ ବା ହାତରେ ତେଉଁରିଆ ଲଗାଇଲେ ପ୍ରତିବନ୍ଧକ ତୁଟିଯିବ, କେଉଁ ପୂଜାପୀଠ ପାଖରେ ମାନସିକ କଲେ ଲକ୍ଷ୍ୟ ପୂରଣ ହେବ ଏହି ପ୍ରକାରର ବିଶ୍ୱାସ ଆମ ସମାଜରେ ରହିଛି ଓ ଏହା ବ୍ୟବସାୟରେ ପରିଣତ ହୋଇଛି ।

ସମାଜରେ ଏହି ପରିବେଶ ରହିଥିବା ପୃଷ୍ଠଭୂମିରେ ନାନା କାରଣ ଭିତରୁ ଦୁଇଟି କାରଣ ଗମ୍ଭୀର ଜଣାପଡ଼େ । ପ୍ରଥମତଃ କୌଣସି ଘଟଣାର କାରଣ ଜଣାନଥିଲେ, ଲୋକମାନେ ଏକ ବିଚାରଶୀଳ ଦୃଷ୍ଟିର ଅଭାବରେ ନିଜର ବୋଧଶକ୍ତିକୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ଅହେତୁକ କାରଣ କଳ୍ପନା କରିଥାନ୍ତି । ଅତୀତରେ ପ୍ରକୃତିରେ ଘଟୁଥିବା ଅସଂଖ୍ୟ ଘଟଣା ମଣିଷର ବୋଧଶକ୍ତିର ବହିର୍ଭୂତ ଥିଲା । ବର୍ଷା କିପରି ହେଉଛି ? ସାଧାରଣ ମଣିଷ ବିଶ୍ୱାସ କରୁଥିଲା ଯେ, ସ୍ୱର୍ଗରେ ଇନ୍ଦ୍ର ଦେବତା ଅଛନ୍ତି, ସିଏ ସମୁଦ୍ରରୁ ପାଣି ନେଇ ଲୋକଙ୍କ ଉପକାର ପାଇଁ ତାକୁ ଛିଞ୍ଚୁଛନ୍ତି । ଆଦିମ ଲୋକମାନଙ୍କର ଏହି ବିଶ୍ୱାସ ଶହ ଶହ ବର୍ଷଧରି ସମାଜରେ ରହିଥିଲା । କୌଣସି ବର୍ଷ ବର୍ଷା ନହେଲେ ଇନ୍ଦ୍ର ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ପୂଜା, ଯଜ୍ଞ ବା କର୍ମକାଣ୍ଡର ପରମ୍ପରା ଏବେ ବି ବିଭିନ୍ନ ସମାଜରେ ରହିଛି ।

ଆଜି ତ ତୃତୀୟ, ଚତୁର୍ଥ ଶ୍ରେଣୀରେ ପଢୁଥିବା ଛାତ୍ରଟିଏ ବର୍ଷାର କାରଣକୁ ବୁଝାଇଦେଇ ପାରୁଛି । ରୋଗ କାହିଁକି ହୁଏ ବା ଗୋଟିଏ ଘଟଣା କିପରି ଘଟେ ତା'ର ବ୍ୟାଖ୍ୟା ମଣିଷ ଅତୀତରେ ନାନା ଭାବରେ ଦେଉଥିଲା । ନାନା ଅବାସ୍ତବ ଓ କାଳ୍ପନିକ କାହାଣୀ ସାହାଯ୍ୟରେ ନିଜର ଚତୁଃପାର୍ଶ୍ୱର ଘଟଣାର କାରଣକୁ ମଣିଷ କଳ୍ପନା କରୁଥିଲା । ତେବେ ଜ୍ଞାନ ବିଜ୍ଞାନର ବିକାଶ ସହ ଚିନ୍ତା ରାଜ୍ୟରେ ଏହି ଭାବନା ଦୃଢ଼ ହେବାକୁ ଲାଗିଲା ଯେ, ପ୍ରତ୍ୟେକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ରହିଛି, ତାହା ଆମେ ଜାଣୁ ବା ନ ଜାଣୁ । ତେବେ ଯେଉଁ ସମାଜର ସାଧାରଣ ଜୀବନ ପ୍ରବାହରେ ଏହି ବିଚାରର ପ୍ରସାର ଏ ପର୍ଯ୍ୟନ୍ତ ହୋଇନାହିଁ ତଥା ଲୋକଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଭିତ୍ତି ପଡ଼ିନାହିଁ ସେଠାରେ ପ୍ରାଚୀନ ଯୁଗର ବିଶ୍ୱାସ ଓ ତା'ର ଅନ୍ତର୍ନିହିତ ଭାବଧାରାକୁ ଲୋକମାନେ ଏବେ ବି ଗ୍ରହଣ କରୁଛନ୍ତି । ଦ୍ୱିତୀୟରେ ଏକ ପ୍ରତିକୂଳ ସ୍ଥିତିରେ ବୃହତ୍ତର ସମାଜ ଉପରେ ଭରସା କରିପାରୁ ନଥିଲେ ମଣିଷ କେଉଁ କାଳ୍ପନିକ ଦିଅଁ ଦେବତା ଉପରେ ନିର୍ଭର କରିଥାଏ । ଯେଉଁଠି ସାମାଜିକ କର୍ତ୍ତବ୍ୟବୋଧ ନେଇ ଲୋକମାନଙ୍କର ନାଗରିକ ଶୃଙ୍ଖଳା ଉନ୍ନତ ହୋଇନାହିଁ କିମ୍ବା ଏକ ସାମାଜିକ ବ୍ୟବସ୍ଥା ଗଣତାନ୍ତ୍ରିକ ହେବା ବା ବ୍ୟକ୍ତି ପ୍ରତି ଉତ୍ତରଦାୟୀ ହେବାର ଏକ ସୁଦୃଢ଼ ଭିତ୍ତି ନେଇନାହିଁ, ସେଠାରେ ମଣିଷ ଅଧିକ ଭୟାତୁର ହୋଇ ରହିଛି । ଏକ ଭୟାତୁର ମାନସିକତାରୁ ସେ କେତେ କେତେ ଦିଅଁ ଦେବତାର ଶରଣାପନ୍ନ ହେଉଛି ଓ ନିଜର ଆସନ୍ନ ବା କଳ୍ପିତ ଆଶଙ୍କାରୁ ଉଦ୍ଧାର ପାଇଁ କେଉଁଠି ନଡ଼ିଆ ବାଡ଼ୋଉଛି, ପାଣି ଢାଳୁଛି, ଜିଭ କାଟୁଛି ବା ଅଧିଆ ପଡୁଛି । ବୃହତ୍ତର ସମାଜ ଉପରେ ଭରସା ନ ରହିଲେ ଓ ସାମାଜିକ ଜୀବନ ପ୍ରବାହରେ ଅହେତୁକ ବିଶ୍ୱାସର ପ୍ରାବଲ୍ୟ ରହିଥିଲେ ସେଥିରେ ଜଣେ ସାଧାରଣ ମଣିଷ ନିଜକୁ ଅସହାୟ ମନେକରି ଏସବୁ କରିବାର ମାନସିକତା ପୋଷଣ କରିଥାଏ । ଅଧିକନ୍ତୁ ସମାଜର ପ୍ରଭାବଶାଳୀ ଲୋକମାନେ ଯଦି କୁସଂସ୍କାରରେ ବିଶ୍ୱାସ କରନ୍ତି, ତାହା ସାଧାରଣ ମଣିଷ ଉପରେ ଗଭୀର ପ୍ରଭାବ ପକାଇଥାଏ । କୁସଂସ୍କାର, ଅହେତୁକ ଭାବନା ଯଦି ଜନଜୀବନରେ ବ୍ୟାପକ ଥାଏ ବା ତାହାକୁ ସାଂସ୍କୃତିକ ଐତିହ୍ୟ କହି କଅଁଳ ବୟସରୁ ପିଲାମାନଙ୍କ ଉପରେ ଲଦି ଦିଆଯାଏ, ତେବେ ଯେକୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଲେ ବ୍ୟକ୍ତି ନିଜର ବୃହତ୍ତର ପରିବେଶ ଉପରେ ଆସ୍ଥା ତୁଟାଇ କୌଣସି କଳ୍ପିତ ଶକ୍ତି ପାଖରେ ମନର ଦୁଃଖ ଜଣାଇଥାଏ । ଏହାଦ୍ୱାରା ସେ ହୁଏତ କିଛି ମାନସିକ ନିର୍ଭୟତା ପାଇଥାଏ, ତେବେ ଏହା ସମ୍ପୂର୍ଣ୍ଣ ମନସ୍ତାତ୍ତ୍ୱିକ ଓ ଏହା ଜୀବନର ବା ସମାଜର ଗୁଣାତ୍ମକ ମାନ ବୃଦ୍ଧି କରିନଥାଏ ।

ଅନ୍ୟ ଏକ ଦୃଷ୍ଟିରୁ ବିଚାର କଲେ ପାରଲୌକିକ ବିଶ୍ୱାସ ଓ ଅତୀନ୍ଦ୍ରିୟ ଭାବନା ସ୍ଥଳବିଶେଷରେ ସମାଜର ଘଟଣା ପ୍ରବାହ ପ୍ରତି ଏକ ସର୍ଶଙ୍କାତରଶୂନ୍ୟ ମନୋଭାବ

ଆଣିଥାଏ । ଫଳରେ ସମାଜରେ ଅନ୍ୟର ଦୁଃଖ ଦୁର୍ଦ୍ଦଶା ପ୍ରତି ବୀତସ୍ପୃହ ରହି ମଣିଷ ସେସବୁ ସେମାନଙ୍କ କର୍ମଫଳ ବୋଲି ଭାବିଥାଏ । ଏହାକୁ ନାନା ଯୁକ୍ତି (ସେସବୁ ଯୁକ୍ତି ଅବୈଧ) ଛଳରେ ବିଶ୍ୱାସ କରାଯାଏ ଓ ସମାଜର ସଚେତନ ବ୍ୟକ୍ତିବିଶେଷ ମଧ ଏ ପ୍ରକାରର ମାନସିକତାରୁ ମୁକ୍ତ ନହେବା ଦେଖାଯାଏ ।

ପ୍ରକୃତରେ ମଣିଷ ହିଁ ନିଜ ଭାଗ୍ୟର ନିଜେ ନିୟନ୍ତା । ମଣିଷ ନିଜର ସଂଘବଦ୍ଧ ଉଦ୍ୟମରେ ନିଜର ପରିସ୍ଥିତି ଓ ଆଗାମୀ ପିଢ଼ିଙ୍କ ପାଇଁ ଏକ ସୁନ୍ଦର ପରିବେଶ ନିର୍ମାଣ କରିପାରିବ । କେଉଁ ଦିଅଁ ଦେବତା ଆମର ସମାଜ ଓ ସାଧନକୁ ନିର୍ମାଣ କରିବେ ନାହିଁ ବା ଆମକୁ ବିପଦରୁ ରକ୍ଷା କରିପାରିବେ ନାହିଁ । ସବୁ ରୋଗର ନିଦାନ ମଣିଷ ହିଁ ବହୁ ଗବେଷଣା ଓ ପ୍ରୟାସ ଦ୍ୱାରା ବାହାର କରିଛି । ଏକ ଆଦିମ ଅବସ୍ଥାରୁ ଧୀରେ ଧୀରେ ସେ ଆଜିର ଅତ୍ୟାଧୁନିକ ସ୍ତରକୁ ଆସିଛି । ସକଳ ବିକାଶ, ପ୍ରଗତି ଓ ଜୀବନର ଗୁଣାତ୍ମକ ମାନବୃଦ୍ଧି ମଣିଷଦ୍ୱାରା ସମ୍ଭବ । ଯେଉଁଠି ଏହି ଭାବନା ଲୋକମାନଙ୍କ ଭିତରେ ସୃଷ୍ଟି ହୋଇନାହିଁ, ସେଠାରେ ମାନସିକ ଦାସତ୍ୱର ଯେ ପ୍ରାବଲ୍ୟ ରହିଛି ଏହା କୁହାଯାଇପାରେ । (୩୧.୩.୧୦)



# ସମ୍ମିଳନୀର ସନ୍ଦେଶ

ଭାରତୀୟ ଦର୍ଶନ ଗବେଷଣା ପରିଷଦ ଆନୁକୂଲ୍ୟରେ ୨୦୧୦ ମାର୍ଚ୍ଚ ମାସରେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ପରିସରରେ ପ୍ରଥମ ଏସୀୟ ଦର୍ଶନ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ପୃଥିବୀର ବିଭିନ୍ନ ଦେଶରୁ ସେଠାକୁ ପ୍ରାୟ ସାତଶହ ପ୍ରତିନିଧି ଆସିଥିଲେ । ଦର୍ଶନର ବିଭିନ୍ନ ବିଭାଗ ଉପରେ ବିଭିନ୍ନ ଦେଶରେ ଯେଉଁସବୁ ପ୍ରମୁଖ ବିଚାରଧାରା ସୃଷ୍ଟି ହୋଇଛି ସେସବୁ ବିଷୟରେ ବିଭିନ୍ନ ସୋପାନରେ ଆଲୋଚନା ହେଲା । ସବୁ ସଭ୍ୟତାରେ ଦାର୍ଶନିକମାନେ ଚିନ୍ତାରାଜ୍ୟର ବିପ୍ଳବୀ । ଜୀବନର ଗୁଣାତ୍ମକ ମହତ୍ତ୍ୱ ନେଇ ଦାର୍ଶନିକମାନେ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେଇଥାନ୍ତି । ଆମ ଦେଶର ଗୌରବ ଯେ ବହୁ ଅତୀତରେ ଆମ ଦେଶରେ ଦର୍ଶନ ନେଇ ଅନେକ ଚର୍ଚ୍ଚା ହୋଇଥିଲା । ଦର୍ଶନର ଇତିହାସରେ ଭାରତୀୟ ଦର୍ଶନ ଓ ଗ୍ରୀକ୍ ଦର୍ଶନ ଅତି ପ୍ରାଚୀନ । ଆଧୁନିକ ମଣିଷକୁ ପ୍ରେରଣା ଦେଲାଭଳି ଅନେକ ଉପାଦାନ ପ୍ରାଚୀନ ଦର୍ଶନମାନଙ୍କରେ ରହିଛି । ତେବେ ଯେଉଁଠି ସଭ୍ୟତାର ବିକାଶ ହୋଇଛି ସେଠାରେ କିଛି ଚିନ୍ତାଶୀଳ ବ୍ୟକ୍ତି ଜୀବନର ମହତ୍ତ୍ୱ ନେଇ ଚିନ୍ତା ପ୍ରକଟ କରିଛନ୍ତି । ସେମାନେ ଏକ ମହତ୍ତର ପରିବେଶ ପାଇଁ ଭାବିଛନ୍ତି । ଜୀବନରେ ରହିଥିବା ରାଶି ରାଶି ଦୁଃଖକୁ ଦୂର କରିବାପାଇଁ ଗମ୍ଭୀର ଭାବେ ଚିନ୍ତା କରିଛନ୍ତି । ସାମାଜିକ ଜୀବନ କିପରି ଅଧିକ ସରସ ସୁନ୍ଦର ହୋଇପାରିବ ସେ ନେଇ କେତେ ଚିନ୍ତା ପ୍ରକଟ କରିଛନ୍ତି । ଏବେ ବି ବିଭିନ୍ନ ଦେଶର ଚିନ୍ତାଶୀଳ ବୁଦ୍ଧିଜୀବୀମାନେ ସମାଜକୁ ଉନ୍ନତ କରିବା ପାଇଁ ଚିନ୍ତା ସ୍ତରରେ ନୂଆ ନୂଆ ଭାବନା ବ୍ୟକ୍ତ କରି ଆସୁଛନ୍ତି ।

ଅବଶ୍ୟ ଦର୍ଶନର ସଂଜ୍ଞା, ବିଚାର ଓ ବିଷୟ ଯୁଗକୁ ଯୁଗ ପରିବର୍ତ୍ତିତ ହେବାରେ ଲାଗିଛି । ଯେଉଁ ଯୁଗରେ ଯେଉଁ ପ୍ରକାର ଭାବନା ଚିନ୍ତା ରାଜ୍ୟରେ ଗୁରୁତ୍ୱ ନିଏ, ସେହି ଭାବନାର ସୈଦ୍ଧାନ୍ତିକ ଭିତ୍ତିକୁ ଦାର୍ଶନିକମାନେ ତର୍କଶୀଳ ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଥାନ୍ତି । ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ଧର୍ମ ହିଁ ସକଳ ସ୍ତରରେ ଜ୍ଞାନଲାଭର ମୂଳଭିତ୍ତି ହୋଇ ରହିଥିଲା । 'ସକଳ ଜ୍ଞାନ ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିଛି' - ଏହିପରି ଏକ ବିଚାର ସବୁ ସଭ୍ୟତାରେ ପ୍ରାଧାନ୍ୟ ନେଇଥିଲା । ସେ ଯୁଗରେ ଧର୍ମ-ଧର୍ମ, ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରାୟତଃ ନଥିଲା । ନିଜ ଧର୍ମ, ସଂସ୍କୃତି, ଦର୍ଶନ ଯେ ସବୁଠାରୁ ମହାନ୍ ଏହି ପ୍ରକାରର

ଏକ ଅଜ୍ଞତାଜନିତ ଅହମିକାର ମାନସିକତା ରହିଥିଲା । ନବଜାଗରଣ ଯୁଗ ପରେ ସାମ୍ରାଜ୍ୟବାଦର ବିସ୍ତାର ସହ ସଭ୍ୟତା ସଭ୍ୟତା ଭିତରେ ଆଦାନ ପ୍ରଦାନ ହେଲା । ବିଭିନ୍ନ ଦେଶର ମୌଳିକ ଗ୍ରନ୍ଥରାଜି ଅନ୍ୟ ଭାଷାରେ ଅନୁବାଦିତ ହେବାର ପରିବେଶ ସୃଷ୍ଟି ହେଲା । ଫଳରେ ଅନ୍ୟ ଦେଶର ସାହିତ୍ୟ, ଦର୍ଶନ, ମୂଲ୍ୟବୋଧ, ଜୀବନ ଦୃଷ୍ଟି ଇତ୍ୟାଦି ବିଷୟରେ ଜାଣିବାର ଅବକାଶ ଆସିଲା । ବିଶ୍ୱବିଦ୍ୟାଳୟ ଶିକ୍ଷାର ବିକାଶ ସହ ବିଭିନ୍ନ ସଭ୍ୟତା, ଧର୍ମ, ଦର୍ଶନ ବିଷୟରେ ତୁଳନାତ୍ମକ ଗବେଷଣା ହେଲା । ଫଳତଃ ପ୍ରାଚ୍ୟର ଆଲୋକ ପାଶ୍ଚାତ୍ୟକୁ ଗଲା ଓ ପାଶ୍ଚାତ୍ୟର ମୌଳିକ ବିଚାର ପ୍ରାଚ୍ୟକୁ ଆସିଲା । ଏହାର ପରିଣାମସ୍ୱରୂପ ଯେଉଁ ସାଂସ୍କୃତିକ ମୌଳବାଦର ପ୍ରାଧାନ୍ୟ ରହିଥିଲା, ସେଥିରେ ପରିବର୍ତ୍ତନର ସୂତ୍ରପାତ ହେଲା । ସବୁ ସଭ୍ୟତାର ମହାନ୍ ଆଦର୍ଶଗୁଡ଼ିକୁ ଗ୍ରହଣ କରିବାର ଏକ ମୁକ୍ତ ମାନସିକତା ସୃଷ୍ଟିହେଲା । ପ୍ରତ୍ୟେକ ସଭ୍ୟତାର ଯେଉଁ ମନୀଷୀଗଣ ବିଶ୍ୱ ଭ୍ରାତୃତ୍ୱ ଓ ମାନବିକ ସଂପ୍ରୀତିର ବାର୍ତ୍ତା ଦେଇଛନ୍ତି, ସେମାନେ ଜାତି, ଜାତୀୟତା ନିର୍ବିଶେଷରେ ମଣିଷ ପାଇଁ ଆଦର୍ଶ ହେଲେ । ବୁଦ୍ଧ, ସକ୍ରେଟିସ୍, କନ୍‌ଫୁସିଅସ୍ ପ୍ରାଚୀନ ଯୁଗର ମନୀଷୀମାନେ ସଭ୍ୟତାର ଆଲୋକ ବର୍ତ୍ତିକା ସଦୃଶ ସମସ୍ତଙ୍କୁ ସଭ୍ୟ ଜୀବନର ପ୍ରେରଣା ଦେଇପାରିଲେ । ବେଦ, ଉପନିଷଦ, ମହାଭାରତ ଇତ୍ୟାଦି ପ୍ରାଚୀନ ଭାରତୀୟ କୃତିଗୁଡ଼ିକ ପାଶ୍ଚାତ୍ୟ ଲୋକଙ୍କୁ ଯେଉଁଭଳି ପ୍ରେରଣା ଦେଲା, ଗ୍ରୀକ୍ ଦର୍ଶନ, ବାଇବେଲ୍, ହୋମର, ସେକ୍ସପିୟର ଇତ୍ୟାଦିଙ୍କ କୃତି ପ୍ରତି ପ୍ରାଚ୍ୟରେ କେତେ ଶ୍ରଦ୍ଧା ପ୍ରକାଶ ପାଇଲା ।

କାଳକ୍ରମେ ଆମ ସଂସାରକୁ ଏକାଠି କରିବାରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ପ୍ରମୁଖ ଭିତ୍ତି ଯୋଗାଇଲା । ଯେକୌଣସି ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଯେଉଁ ଦେଶରେ ହେଉନା କାହିଁକି ତାହାର ସୁଫଳ ମାନବ ସମାଜ ନିର୍ବିଶେଷରେ ପାଇପାରୁଛି । ଆଧୁନିକ ଚିକିତ୍ସା ବିଜ୍ଞାନ ହେଉ ବା ଟେଲିଫୋନ, ଟେଲିଭିଜନ, ବିମାନସେବା, ଇଣ୍ଟରନେଟ ଇତ୍ୟାଦି ବୈଜ୍ଞାନିକ ସାଧନ ହେଉ ଏସବୁ ସମଗ୍ର ସମାଜକୁ ଏକତ୍ର କରିବାରେ ସଫଳ ହୋଇଛି । ପୃଥିବୀର ଦୂରତ୍ୱ କମିବାରେ ଲାଗିଛି । ବହୁ ଅତୀତରେ ବିଭିନ୍ନ ସଭ୍ୟତାରେ ଯେଉଁ ଦାର୍ଶନିକମାନେ 'ବିଶ୍ୱକୁ ଏକ ପରିବାର' ବୋଲି ଦୃଷ୍ଟିଭଙ୍ଗୀ ପ୍ରକାଶ କରିଥିଲେ ତାହା ଆଧୁନିକ ପ୍ରଯୁକ୍ତିର ବିକାଶ ଯୋଗୁ ସମ୍ଭବ ହେବାର ପରିବେଶ ଆସିଛି । ମାନବିକତାର ବିକାଶ ଉଗ୍ରବାଦୀ ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣିବାରେ ସଫଳ ହୋଇଛି । ସବୁ ଦେଶର ସବୁ ମହାତ୍ମାମାନଙ୍କର ବାଣୀ ଶୁଣିବାକୁ ଏକ ନମନୀୟ ମନୋଭାବ ସାରା ବିଶ୍ୱରେ ବିକାଶ ଲାଭ କରିବାରେ ଲାଗିଛି । ଅଳକ୍ଷ୍ୟରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ଏକ ସାର୍ବଜନୀନ ମନୋଭାବ

ବିକାଶ ହୋଇଚାଲିଛି । ଏହା ହିଁ ସଭ୍ୟତାର କ୍ରମବିକାଶରେ ଏକ ମହତ୍ତର ଉତ୍ତରଣ । ଦାର୍ଶନିକମାନେ, ଜ୍ଞାନ-ଅନୁସନ୍ଧିତ୍ସୁ ବୈଜ୍ଞାନିକମାନେ ଓ ଦରଦୀ ହେତୁବାଦୀମାନେ ବହୁ ସଭ୍ୟତାରେ ରହିଛନ୍ତି ଓ ସର୍ବଦା ଏକ ମହତ୍ତର ବିଶ୍ୱର ସ୍ୱପ୍ନ ଦେଖିଛନ୍ତି । ତେବେ ପରିତାପର ବିଷୟ ସେମାନେ ଚିନ୍ତା ରାଜ୍ୟର ବିପ୍ଳବୀ ହେଲେ ବି ସେମାନଙ୍କ ଦ୍ୱାରା ଆମ ସଂସାର ପରିଚାଳିତ ହେଉନାହିଁ । ବିଭିନ୍ନ ଦେଶରେ କେତେକ ଅତି ପ୍ରଭାବଶାଳୀ ମୌଳବାଦୀ ରହିଛନ୍ତି ଯେଉଁମାନେ କ୍ଷମତା ପାଇଁ ଜାତୀୟତା ନାମରେ, ଧର୍ମ ନାମରେ ବା ଆଞ୍ଚଳିକତା ନାମରେ ମଣିଷ ସମାଜକୁ ଭାଗ କରିଚାଲିଛନ୍ତି । ଏବେ ବି ଜାତିଗତ ଦଙ୍ଗା ହେଉଛି, ସାମ୍ପ୍ରଦାୟିକ ତିକ୍ତତା ସମାଜକୁ ଭାଗ କରୁଛି, ନାନା ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀ ସମାଜରେ ବିଦ୍ୱେଷର ବାତାବରଣ ସୃଷ୍ଟି କରିଚାଲିଛି । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ନାନା ସନ୍ଦେହ ଓ ବିଦ୍ୱେଷର ବାତାବରଣ ରହିଛି । ପ୍ରତ୍ୟେକ ରାଷ୍ଟ୍ର ଗଣବିଧ୍ୱଂସୀ ଅସ୍ତ୍ର ନିର୍ମାଣ କରିବାକୁ ଏକ ଜାତୀୟ ଆବଶ୍ୟକତା ବୋଲି ଅନୁଭବ କରୁଛି । ସେଥିପାଇଁ ରାଷ୍ଟ୍ର ରାଷ୍ଟ୍ର ଭିତରେ ପ୍ରକାଶ୍ୟରେ ହେଉ ବା ଗୋପନରେ ହେଉ ଆଣବିକ ଅସ୍ତ୍ର ନିର୍ମାଣ ପାଇଁ ପ୍ରତିଯୋଗିତା ଚାଲିଛି । ଧାର୍ମିକ ସାମ୍ପ୍ରଦାୟିକତାରୁ ସନ୍ତ୍ରାସବାଦର ବିଷାକ୍ତ ବାୟୁ ବହିବାରେ ଲାଗିଛି । ପୁଞ୍ଜିବାଦରୁ ଉଦ୍ଭବ ସାମ୍ରାଜ୍ୟବାଦ ନୂଆ କଳେବର ନେଇ ଆତ୍ମପ୍ରକାଶ କରିବାରେ ଲାଗିଛି । ସାଂସ୍କୃତିକ ଉଗ୍ରବାଦ ଏବେ ବି ସାମାଜିକ ପରିବେଶରେ ରହିଛି । ବିଜ୍ଞାନ ଓ ପ୍ରଯୁକ୍ତି ଯେତିକି ବିକାଶଲାଭ କରୁଛି ଆର୍ଥିକ ବୈଷମ୍ୟ ଓ ଶୋଷଣ ମଧ୍ୟ ସେହିପରି ବୃଦ୍ଧି ପାଉଛି । ନୂଆ ନୂଆ ସଂକଟ ସମାଜ ପାଇଁ ନୂଆ ନୂଆ ଆହ୍ୱାନ ସୃଷ୍ଟି କରିବାରେ ଲାଗିଛି ।

ଏହି ସ୍ଥିତିରେ ଦାର୍ଶନିକମାନେ ସମାଜକୁ ନୂଆ ନୂଆ ସନ୍ଦେଶ ଦେବାକୁ ଲାଗିଛନ୍ତି । ସବୁ ଯୁଗରେ ସେମାନେ ସମାଜକୁ ଶାନ୍ତି, ସଦ୍ଭାବନା ଓ ମାନବିକତାର ମନ୍ତ୍ର ଦେଇ ଆସିଛନ୍ତି । ସେମାନେ ସୁନ୍ଦର ପୃଥିବୀର ସ୍ୱପ୍ନ ଭିତରେ କଳ୍ପିତ ରାଜ୍ୟରେ ବିଚରଣ କରିଆସିଛନ୍ତି । ଜ୍ଞାନକୁ ମଣିଷ ସମାଜର ହିତ ଦିଗରେ ବିନିଯୋଗ କଲେ ଆମ ସଂସାର କେତେ ସୁନ୍ଦର ହୋଇପାରନ୍ତା । ସବୁ ବିକାଶ ସତ୍ତ୍ୱେ ଅଭାବ ରହୁଛି ଏକ ମାନବକୈନ୍ଦ୍ରିକ ଜୀବନ ଦର୍ଶନ ଓ ଏହାର ବିଶ୍ୱବ୍ୟାପକତା ।

ଉନ୍ନତ ଦେଶମାନଙ୍କରେ ଭୌତିକ ବିକାଶ ଯଥେଷ୍ଟ ହୋଇଛି । ଆଧୁନିକ ପ୍ରଯୁକ୍ତି ସେମାନଙ୍କ ଜୀବନର ଭୌତିକ ମାନକୁ ଅନେକଟା ବୃଦ୍ଧି କରିବାରେ ସମର୍ଥ ହୋଇଛି । ତେବେ ସେସବୁ ସମାଜରେ ସମସ୍ୟା ଯେ ନାହିଁ ସେପରି ନୁହେଁ । ନୂଆ ନୂଆ ପରିସ୍ଥିତିରେ ନୂଆ ନୂଆ ସଂକଟର ଉଦ୍ଭବ ହେଉଛି । ଏକ ସଂକଟମୁକ୍ତ ପରିବେଶ ସମ୍ଭବତଃ ଏକ କଳ୍ପନା ବା ୟୁଟୋପିଆ ହୋଇ ରହିଛି । ଅଧିକାଂଶ ଏସୀୟ

ରାଷ୍ଟ୍ରମାନଙ୍କରେ ଅନେକ ଦାରିଦ୍ର୍ୟ ରହିଛି । ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ, ଜାତିଗତ ବିଭେଦ, ସନ୍ତ୍ରାସବାଦ, ଅଗଣତାନ୍ତ୍ରିକ ପରିବେଶ, ଅହେତୁକ ପରମ୍ପରା, ଭ୍ରଷ୍ଟାଚାର ଓ ଅପସଂସ୍କୃତି ମଧ୍ୟ ରହିଛି । ଏସବୁର ସମ୍ମିଳିତ ପ୍ରଭାବରୁ ତୃତୀୟ ବିଶ୍ୱରେ ଜୀବନର ଗୁଣାତ୍ମକ ମାନ ଉନ୍ନତ ଦେଶ ତୁଳନାରେ ନିମ୍ନ ସ୍ତରରେ ରହିଛି । ଏବେ ବି ନିରକ୍ଷରତା, ଶିଶୁମୃତ୍ୟୁ, ଅର୍ଦ୍ଧାହାର ଇତ୍ୟାଦି ପରିବେଶ ଏସିଆର କେତେକ ପ୍ରମୁଖ ରାଷ୍ଟ୍ରରେ - ଯାହାକୁ ତୃତୀୟ ବିଶ୍ୱ କୁହାଯାଉଛି - ରହିଛି ।

ତେବେ ଏସିଆ ମହାଦେଶର ଏକ ବଡ଼ ତାତ୍ପର୍ଯ୍ୟ ହେଉଛି ପୃଥିବୀର ସବୁ ମୁଖ୍ୟ ଧର୍ମଗୁଡ଼ିକ ଏସିଆରେ ହିଁ ଉଦ୍ଭବ ହୋଇଥିଲା । ପୃଥିବୀର ବହୁ ପ୍ରାଚୀନ ସଭ୍ୟତା ଏସିଆର ବିଭିନ୍ନ ଅଂଚଳରେ ବହୁ ଅତୀତରେ ମୁଣ୍ଡ ଟେକିଥିଲା । ତେବେ ରାଜନୈତିକ ଘଟଣା ପ୍ରବାହରେ ଏସିଆର ବହୁ ରାଷ୍ଟ୍ର ସେମାନଙ୍କର ପ୍ରାଚୀନ ସଭ୍ୟତା ସତ୍ତ୍ୱେ ବହୁ ପଛରେ ରହିଛନ୍ତି ।

ଦାର୍ଶନିକମାନେ ଏହି ବାସ୍ତବତାକୁ ସ୍ୱୀକାର କଲେ ମଧ୍ୟ ଏସିଆର ବିଭିନ୍ନ ରାଷ୍ଟ୍ରମାନଙ୍କରେ ଯେଉଁ ଦାର୍ଶନିକ ପରମ୍ପରାର ସୁଦୀର୍ଘ ଇତିହାସ ରହିଛି, ତାହା ଆଧୁନିକ ବିଶ୍ୱକୁ ମହତ୍ତର ପ୍ରେରଣା ଦେଇପାରିବ ବୋଲି ଦାର୍ଶନିକମାନେ ଆଶା ପ୍ରକାଶ କରିଛନ୍ତି । ତେବେ ସାଂସ୍କୃତିକ ଆଦାନ ପ୍ରଦାନ ଭିତରେ ମୁକ୍ତ ମନ ନେଇ ସବୁ ସଭ୍ୟତାର ମହତ୍ତର ଅବଦାନଗୁଡ଼ିକୁ ଗ୍ରହଣ କଲେ ଏକ ଅହିଂସ ଓ ଭ୍ରାତୃତ୍ୱପୂର୍ଣ୍ଣ ପୃଥିବୀର ରୂପାୟନ ଦିଗରେ ବିଶ୍ୱ ଅଗ୍ରସର ହୋଇପାରିବ । ବିଭିନ୍ନ ଦେଶର ଚିନ୍ତାନାୟକଙ୍କର ବିଚାର କ୍ଷେତ୍ରରେ ଯେଉଁ ମାନବିକତାର ସନ୍ଦେଶ ରହିଛି, ତାହାକୁ ବ୍ୟାପକ କରାଯାଇପାରିଲେ ଆମ ସଂସାରରେ ରହିଥିବା ଅନେକ ଘୃଣା, ବିଦ୍ୱେଷ ଓ ଅମାନବିକତାର ପରିସମାପ୍ତି ଘଟିବ । ଦର୍ଶନର ସାର୍ବଜନୀନ ସନ୍ଦେଶ ବିଚାରଶୀଳତା ଓ ମାନବିକତାକୁ ଜୀବନର ମହତ୍ତମ ଆଦର୍ଶ ଭାବେ ନିଆଯାଇପାରିବ । ଏହା ହିଁ ପ୍ରଥମ ଏସୀୟ ଦର୍ଶନ ସମ୍ମିଳନୀର ଥିଲା ଅଘୋଷିତ ବାର୍ତ୍ତା । (୨୮.୪.୧୦)



# ଦୁଇଟି ଦୃଷ୍ଟିଭଙ୍ଗୀ

ମଣିଷ ଅନୁସନ୍ଧିତ୍ସୁ । ସେ ପ୍ରାକୃତିକ ଘଟଣା, ପରିବେଶ ଓ ତା'ର ସାମାଜିକ ଜୀବନଧାରାକୁ ବୁଝିବାକୁ କୌତୂହଳୀ ହୋଇଆସିଛି । ମଣିଷ ଯେବେଠାରୁ ତା'ର ବୌଦ୍ଧିକ କୌତୂହଳତା ଭିତରେ ପ୍ରକୃତି ଓ ଜୀବନର ଘଟଣା ପ୍ରବାହକୁ ବୁଝିବାକୁ ପ୍ରୟାସ କରିଛି ସେ କ୍ଷେତ୍ରରେ ସେ ନାନା ଭାବରେ ତା'ର ଉତ୍ତର ବା ସମାଧାନ ବାହାର କରିଛି । ଏହି ସମାଧାନ ଭିତରେ କିନ୍ତୁ ରହିଛି ଏକ ଗୁଣାତ୍ମକ ପାର୍ଥକ୍ୟ । ସେହି ପାର୍ଥକ୍ୟକୁ ଦୁଇଟି ପୃଥକ ଜୀବନଦୃଷ୍ଟି ଭିତରେ ଲକ୍ଷ୍ୟ କରାଯାଇପାରିବ । ଏହା ଦୁଇଟି ଦର୍ଶନରୁ ଉଦ୍ଭବ ହୋଇଛି ।

ସାମାଜିକ ଜୀବନ ପ୍ରବାହରେ ଆମେ ଦେଖୁ ଯେ କେତେକ ବ୍ୟକ୍ତି ପ୍ରାଚୁର୍ଯ୍ୟ ଭିତରେ ବଞ୍ଚନ୍ତି ଅଥଚ ଅନ୍ୟମାନେ ନାନା ସଂଗ୍ରାମ ଭିତରେ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରନ୍ତି ନାହିଁ, କେତେକ ଜନ୍ମରୁ ସମ୍ମାନଜନକ ସ୍ଥିତିରେ ରୁହନ୍ତି ଅଥଚ ଅନ୍ୟ କେତେକ ଅସମ୍ମାନଜନକ ଭାବେ ଭେଦଭାବର ଶିକାର ହୁଅନ୍ତି । ପ୍ରଶ୍ନ ଆସେ କେତେକ କାହିଁକି ଏତେ ଦରିଦ୍ର ? ଅନ୍ୟମାନଙ୍କ ତୁଳନାରେ ଜୀବନର ସର୍ବନିମ୍ନ ଆବଶ୍ୟକତାଠାରୁ ସେମାନେ କାହିଁକି ବଞ୍ଚିତ ହୋଇ ଜୀବନ ବଞ୍ଚୁଛନ୍ତି ? ସେମାନଙ୍କର ସାମାଜିକ ପରିଚୟଟି ସେମାନଙ୍କ ପାଇଁ କାହିଁକି ସମ୍ମାନଜନକ ହେଉନାହିଁ ? ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦୁଇଟି ମାନଦଣ୍ଡରୁ ଦେବାକୁ ପ୍ରୟାସ ହୋଇଛି, ସଭ୍ୟତାରେ ଦିଆଯାଉଛି ମଧ୍ୟ । ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏସବୁ ସେମାନଙ୍କ ଭାଗ୍ୟ, ସେମାନଙ୍କ କର୍ମଫଳ, କପାଳ ଲିଖନ ଓ ସେମାନେ ଏହିଭଳି ରହିବା ପୂର୍ବନିର୍ଦ୍ଦିଷ୍ଟ । ଅନ୍ୟ ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏହି ସ୍ଥିତି ଗୋଟିଏ ସାମାଜିକ ପରବେଶର ପରିଣାମ, କେତେକ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଘଟଣା ପ୍ରବାହର ପରିଣତି । ତେବେ ଏହି ସ୍ଥିତିକୁ ପ୍ରୟାସ କଲେ ବଦଳାଯାଇପାରିବ ଓ ସମାଜରେ ଏକ ଉନ୍ନତ ମାନବିକ ପରିବେଶ ସୃଷ୍ଟି କରିହେବ ।

ଆମ ଚତୁଃପାର୍ଶ୍ୱରେ ଆମେ ଆଜି ଯାହାସବୁ ଉନ୍ନତି ବା ବିକାଶ ପାଉଛେ ଯାହାଦ୍ୱାରା ଆମ ଜୀବନ ସରଳ, ସୁଗମ ହୋଇପାରୁଛି ଏସବୁ କିପରି ସୃଷ୍ଟି ହେଲା ? ଆମର ରାସ୍ତାଘାଟ, ଯାନବାହନ, ପ୍ରାସାଦ, ଶିକ୍ଷା, ଚିକିତ୍ସା, କଳାକୃତି, ସଂଗୀତ, ନାଚ,

ସିନେମା ସ୍ଥାପତ୍ୟ କିପରି ସମ୍ଭବ ହେଲା ? ଆମେ ଏସବୁ କିପରି ହାସଲ କରିଛେ ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏସବୁ ଉପର ବାଲାର ଆଶୀର୍ବାଦର ଫଳ, ଈଶ୍ୱରଙ୍କର ଅବଦାନ । ଆମେ ତ ନିମିତ୍ତ ମାତ୍ର । ଯାହା ସେ ନ ଚାହିଁବ ଆମକୁ କୁଆଡୁ ମିଳିବ ! ତା' ଇଚ୍ଛା ନହେଲେ ଦୁବଘାସ ବି ତ ହଲିବ ନାହିଁ । ଅନ୍ୟ ଦୃଷ୍ଟିଟି ହେଉଛି ଏସବୁ ମଣିଷ ହାତ ଓ ମୁଣ୍ଡର କରାମତି । ମଣିଷ ହିଁ ତା'ର ଅବିରତ ପ୍ରୟାସ ଓ ସଂଘବଦ୍ଧ ଚେଷ୍ଟା ଦ୍ୱାରା ଏସବୁ ପୀଢ଼ି ପରେ ପୀଢ଼ି ଦେଇ ସୃଷ୍ଟି କରିଛି । ଆମର ଜ୍ଞାନ, ବିଜ୍ଞାନ, ଭାଷା, ସାହିତ୍ୟ, କଳା, ସଂସ୍କୃତି ସବୁ ମଣିଷ ନିଜ ହାତରେ ନିଜର ବୁଦ୍ଧି ଖଟାଇ ନିର୍ମାଣ କରିଛି । ଏହା ଆମକୁ କେହି ଦେଇନାହିଁ ବା ଏହା କେଉଁ ସ୍ୱର୍ଗରୁ ଖସିନାହିଁ ।

ସମାଜରେ ଯେଉଁ ନୀତି, ଆଦର୍ଶ, ମୂଲ୍ୟବୋଧ ରହିବା ଆମେ ଦେଖୁଛେ ଓ ଯାହା ସଭ୍ୟ ଜୀବନର ମାନଦଣ୍ଡ ସେସବୁ ଆମେ କେଉଁଠୁ ଲାଭ କରିଛେ ? ଆମର ସାମାଜିକ ଓ ନୈତିକ କର୍ତ୍ତବ୍ୟ, ନାଗରିକ ଶୃଙ୍ଖଳାବୋଧ ଆମେ କେଉଁଠୁ କିପରି ଲାଭ କରିଛେ ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେବ ଏସବୁ ଈଶ୍ୱରଦତ୍ତ ଓ ଏହା ହିଁ ଶାସ୍ତ୍ରରେ ଲିପିବଦ୍ଧ ହୋଇରହିଛି । ଶାସ୍ତ୍ରରେ ଥିବା ବାଣୀ ଆପ୍ତବଚନ ଓ ଏହା ଧର୍ମ ଜରିଆରେ ଈଶ୍ୱର ଆମକୁ ଦେଇଛନ୍ତି । ଈଶ୍ୱର ତାଙ୍କର ପୁତ୍ରକୁ ପଠାଇ, ଦୂତ ଜରିଆରେ ବା ନିଜେ ଅବତାର ନେଇ ଏହା ଆମକୁ ଶିକ୍ଷା ଦେଇଛନ୍ତି । ଯାହା ଶାସ୍ତ୍ରର ବଚନ ତାହା ଈଶ୍ୱରୀୟ ନିର୍ଦ୍ଦେଶ ହୋଇଥିବାରୁ ତାହା ଅଲଂଘ୍ୟ, ଚିରନ୍ତନ ଓ ଆମର କର୍ତ୍ତବ୍ୟ । ଅନ୍ୟ ଦୃଷ୍ଟିଭଙ୍ଗୀଟିର ଉତ୍ତର ହେବ ଆମର ସକଳ ନୀତି, ନୈତିକତା ଇତ୍ୟାଦି ସାମାଜିକ ପରିବେଶ ଓ ଜୀବନର ସଂଘାତ, ଅନୁଭୂତି ଏବଂ ବିଚାରଶୀଳତା ଦେଇ ସଭ୍ୟତାରେ ସୃଷ୍ଟି ହୋଇଛି । ଆମର ଆଦର୍ଶ, ଶିଷ୍ଟାଚାର ଓ ଜୀବନଦୃଷ୍ଟି ସାମାଜିକ ଓ ସାଂସ୍କୃତିକ ଘଟଣା ପ୍ରବାହ ଦେଇ ଉଦ୍ଭବ ହୋଇଛି । ସେଗୁଡ଼ିକ ସ୍ଥାନ, କାଳ ପରିପ୍ରେକ୍ଷୀରେ ପୃଥକ୍ ଓ ଜୀବନର ନୂତନ ଆହ୍ୱାନ ଓ ପରିସ୍ଥିତିରେ ବଦଳିଯିବା ସମ୍ଭବ ।

ଏହି ଦୁଇଟି ଦୃଷ୍ଟିଭଙ୍ଗୀ ଭିତରେ ମୌଳିକ ଓ ସୈଦ୍ଧାନ୍ତିକ ପାର୍ଥକ୍ୟ ସହଜରେ ଅନୁମେୟ । ଗୋଟିଏ ଦୃଷ୍ଟିଭଙ୍ଗୀର ବିଚାର ହେଉଛି ଈଶ୍ୱରକୈନ୍ଦ୍ରିକ ଓ ପାରଲୌକିକ ଯାହା ମୁଖ୍ୟତଃ ଏକ ଭାବବାଦୀ ବିଚାର । ଏହି ବିଚାର ଈଶ୍ୱର, ପରଲୋକ, ଭାଗ୍ୟ, ପୂର୍ବନିର୍ଦ୍ଦିଷ୍ଟ ଇତ୍ୟାଦିକୁ ଗୁରୁତ୍ୱ ଦେଇଥାଏ । ଏଥିରେ ପ୍ରଭାବିତ ସାଧାରଣ ମଣିଷଟିଏ ସବୁ କ୍ଷେତ୍ରରେ ଅଜ୍ଞେୟ ଓ ଦୈବୀକୃପା ଉପରେ ନିର୍ଭର କରେ । ରୋଗ, ବାଧକକୁ ଦୂର କରିବା ପାଇଁ କେଉଁ ଦିଅଁ ଦେବତାର ଶରଣାପନ୍ନ ହୁଏ । ସେ ପାଇଁ ପୂଜାସ୍ଥଳକୁ ଯାଏ, କେତେ ମାନସିକ କରେ, ପୂଜା ବ୍ରତ କରିବାକୁ ନିଜର କର୍ତ୍ତବ୍ୟ ବୋଲି

ଭାବେ । ତା'ର ଆଚରଣ ଭିତରେ ଦିଅଁ ଦେବତା ମୁଖ୍ୟ ସ୍ଥାନ ନିଅନ୍ତି । କୌଣସି ପରିସ୍ଥିତି ଆସିଲେ ବା ବିପଦ ଆପଦରେ ପଡ଼ିଲେ ସେ ଠାକୁରଙ୍କ ପାଖରେ ନଡ଼ିଆ ବାଡ଼େଇବାକୁ, ଜଳ ଢାଳିବାକୁ, କାହାର ଦଉଡ଼ି ଛୁଇଁବାକୁ ବା ସେପରି କିଛି ମାନସିକ କରେ । ତା'ର ସଂସାର ଭିତରେ ପ୍ରତିଦିନ ପୂଜା, ପ୍ରାର୍ଥନା ମୁଖ୍ୟସ୍ଥାନ ନିଏ । ଧର୍ମ ପ୍ରବଚନ ଶୁଣିବାକୁ ସେ କେତେ ଶ୍ରଦ୍ଧା କରେ । ଏପରିକି ଶରୀରକୁ ଯନ୍ତ୍ରଣା ଦେଇ କୃଚ୍ଛ ସାଧନାରେ ବ୍ରତୀ ହୁଏ ଓ ପରଲୋକରେ ମୁକ୍ତିର ସ୍ୱପ୍ନ ଦେଖେ । ଅଧିକନ୍ତୁ ମୃତ୍ୟୁରେ ତା'ର କଳ୍ପିତ ଆତ୍ମା କିପରି ସଦ୍‌ଗତି ଲାଭ କରିବ ସେ ପାଇଁ ତା'ର ଶରୀରକୁ କେଉଁ ଧର୍ମସ୍ଥଳରେ ନେଇ ଦାହ କରିବାକୁ ଇଚ୍ଛା ପ୍ରକାଶକରେ । ପରିବାର ଲୋକେ ସେ ପାଇଁ କେତେ କର୍ମକାଣ୍ଡ ପାଳନ କରନ୍ତି । ପୂଜକ ଗୋଷ୍ଠୀର ନିର୍ଦ୍ଦେଶରେ କେତେ ବିଧିବିଧାନ ମାନନ୍ତି । ତା'ର ସ୍ୱର୍ଗବାସ ବା ମୁକ୍ତି ପାଇଁ ତା'ର ଅସ୍ଥି ନେଇ କେଉଁ କାଳ୍ପନିକ ପବିତ୍ର ପୀଠରେ ବିସର୍ଜନ କରନ୍ତି । ପ୍ରତିବର୍ଷ ଶ୍ରାଦ୍ଧ ଦିଅନ୍ତି, ମୃତ୍ୟୁର ବହୁ ବର୍ଷ ପରେ ମଧ୍ୟ କେତେକ ବିଧାନକୁ ପାଳନ କରନ୍ତି । ଏସବୁ କେବଳ ସ୍ମୃତି ଉଦ୍ଦେଶ୍ୟରେ କରନ୍ତି ନାହିଁ, କରନ୍ତି ଏକ ଧାର୍ମିକ ଆବେଗ ଓ ଜୀବନଦୃଷ୍ଟିର ବିଶ୍ୱାସ ଓ ପ୍ରଭାବରେ ।

ଅନ୍ୟ ଦୃଷ୍ଟିଭଙ୍ଗୀଟିରେ ବିଚାର କରାଯାଏ ମଣିଷ ହିଁ ତା'ର ଭାଗ୍ୟର ନିୟନ୍ତା । ସମାଜରେ ରହିଥିବା ରାଶି ରାଶି ଦୁଃଖ ଯନ୍ତ୍ରଣା ହୁଏତ ପ୍ରକୃତିଦତ୍ତ ବା ମଣିଷକୃତ । ତେବେ ମଣିଷ ତା'ର ଉଦ୍ୟମରେ ପ୍ରାକୃତିକ ପ୍ରତିକୂଳତାକୁ ନିୟନ୍ତ୍ରଣ କରିଆସିଛି ଓ ସେହି ପ୍ରୟାସରୁ ପ୍ରତିକୂଳତାକୁ ଅନେକାଂଶରେ ଅତିକ୍ରମ କରିପାରିଛି । ଯଦି କେଉଁ ଭୂଖଣ୍ଡରେ ଦାରିଦ୍ର୍ୟ, ନିରକ୍ଷରତା, ସାମାଜିକ ଭେଦଭାବ, ଶୋଷଣ ରହିଛି ଏସବୁ ମଣିଷ ଯୋଗୁ ବା ମଣିଷ ଦ୍ୱାରା ପ୍ରବର୍ତ୍ତିତ ସାମାଜିକ ବ୍ୟବସ୍ଥାରୁ ହୋଇଛି । ମଣିଷର ପ୍ରୟାସ ଦ୍ୱାରା ଓ ରାଜନୈତିକ ଉଦ୍ୟମ ଜରିଆରେ ସମାଜରୁ ସବୁ ପ୍ରକାରର ଭେଦଭାବ, ଶୋଷଣ, ଅନ୍ୟାୟକୁ ଦୂର କରାଯାଇପାରିବ । ମଣିଷ ତା'ର ଚତୁଃପାର୍ଶ୍ୱରେ ଯେଉଁସବୁ ବିକାଶ ଘଟାଇଛି ତାହା ସମ୍ଭବ ହୋଇଛି ତା'ର ଜ୍ଞାନ, ବିଜ୍ଞାନ, ଗବେଷଣା ଓ ବୌଦ୍ଧିକ ଅନୁଶୀଳନ ଯୋଗୁ । ସଭ୍ୟତାର କ୍ରମବିକାଶ ଧାରାରେ ପାହାଚ ପାହାଚ ଦେଇ ଜ୍ଞାନ, ବିଜ୍ଞାନ ଓ ଉନ୍ନତ ପରିବେଶର ବିକାଶ ହୋଇଛି । ରୋଗର ନିୟନ୍ତ୍ରଣ କ୍ଷେତ୍ରରେ ହେଉ ବା ସକଳ ନିର୍ମାଣ ଓ କୀର୍ତ୍ତିକରଣରେ ମଣିଷର ପ୍ରୟାସ ରହିଛି । କେତେକ ସୃଜନଶୀଳ ବ୍ୟକ୍ତିଙ୍କର ଜୀବନବ୍ୟାପୀ ପ୍ରୟାସ ଓ ସାଧନାଯୋଗୁ ଜ୍ଞାନବିଜ୍ଞାନର ବିକାଶ ହୋଇଛି ଓ କ୍ରମବର୍ଦ୍ଧିଷ୍ଣୁ ଭାବେ ସଭ୍ୟତାର ଚକ ଆଗକୁ ଯାଇଛି । ସେହିପରି ସଭ୍ୟ ଆଚରଣ, ନୈତିକତା ଓ ମୂଲ୍ୟବୋଧଗୁଡ଼ିକ କାଳକ୍ରମେ

ମଣିଷର ଅନୁଭୂତି ଓ ଅନୁଶୀଳନ ଦେଇ ସମାଜରେ ବିକାଶ ଲାଭ କରିଛି । ଏକ ପ୍ରୀତିଭରା ସାମାଜିକ ପରିବେଶ ପାଇଁ ନୈତିକ ଆଦର୍ଶ ଅବଶ୍ୟମ୍ଭାବୀ ମନେହେଉଥିବାରୁ ପ୍ରତ୍ୟେକ ସମାଜରେ ନୈତିକ ମୂଲ୍ୟବୋଧ ସଭ୍ୟ ଜୀବନ ପାଇଁ ଅପରିହାର୍ଯ୍ୟ ହୋଇଛି । ସେହିପରି ସାମନ୍ତବାଦ, ରାଜତନ୍ତ୍ର ପରିବର୍ତ୍ତେ ନାନା ଆନ୍ଦୋଳନ ଓ ବିପ୍ଳବ ଦେଇ ଗଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ ହୋଇଛି । ଗଣତାନ୍ତ୍ରିକ ମୂଲ୍ୟବୋଧ, ଗଣଶିକ୍ଷାର ପରିବେଶ, ବ୍ୟକ୍ତି ସମ୍ମାନବୋଧ, ସାମାଜିକ ନ୍ୟାୟ ବିଚାରଶୀଳତାରୁ ଉଦ୍ଭବ ହୋଇଛି । ଏହି ଦୃଷ୍ଟିଭଙ୍ଗୀର ନିର୍ଯାସ ହେଉଛି ଏକ ମାନବକୈନ୍ଦ୍ରିକ ଓ ଇହଲୌକିକ ଜୀବନାଦର୍ଶ । ଏହାର ଆଧାର ଧର୍ମ, ଈଶ୍ୱର ବା ଧର୍ମଗ୍ରନ୍ଥ ନୁହେଁ, ବରଂ ଉତ୍ସ ହେଉଛି ମାନବିକତା, ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଓ ନୀତିବୋଧ । ବିଜ୍ଞାନ, ନିରପେକ୍ଷ ମୂଲ୍ୟବୋଧ, ସୃଜନଶୀଳ ଆବେଗ, ବିଶ୍ୱଦୃଷ୍ଟି, ସାର୍ବଜନୀନ ମାନସିକତା ଏହି ଦୃଷ୍ଟିଭଙ୍ଗୀର ମର୍ମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜୀବନର ଲକ୍ଷ୍ୟ ମୁକ୍ତି ବା କଳ୍ପିତ ସ୍ୱର୍ଗବାସ ପାଇଁ କେହି କଳ୍ପନା କରିଥାଏ, ଅନ୍ୟ କେହି ଜୀବନକୁ ଅଧିକ ସୃଜନଶୀଳ ଓ ପ୍ରୀତିମୟ କରିବାର ଭାବନା ରଖେ । ଗୋଟିଏ ଦୃଷ୍ଟିଭଙ୍ଗୀ ସବୁକିଛିକୁ ଅଳୀକ, ମାୟା ଓ ଦୁଇଦିନର ଖେଳ ବୋଲି ନିଏ; ଅନ୍ୟ ଦୃଷ୍ଟିଭଙ୍ଗୀଟି ବ୍ୟକ୍ତିକୁ ଅଧିକ ଉତ୍ତରଦାୟୀ ହୋଇ ଆଗାମୀ ପୀଢ଼ିମାନଙ୍କୁ ଅଧିକ ଉନ୍ନତ କରିବାକୁ ପ୍ରେରଣା ଦିଏ । ଶେଷୋକ୍ତ ଆଦର୍ଶ ସୃଜନଶୀଳତାର ପରିପ୍ରକାଶ ଭିତରେ ଏକ ପରିପୂର୍ଣ୍ଣ ଜୀବନର ସ୍ୱପ୍ନ ଦେଖେ ଏବଂ ମୃତ୍ୟୁର ବାସ୍ତବତାକୁ ସ୍ୱୀକାର କରେ । ଏପରିକି ମୃତ୍ୟୁରେ ବି ଯଦି ସମାଜର କିଛି ଉପକାରରେ ଆସିପାରିବାର ସମ୍ଭାବନା ଥାଏ, ସେ ପାଇଁ ବି ସେ ନିଜକୁ ଉତ୍ସର୍ଗ କରିବାର ଇଚ୍ଛା ପ୍ରକାଶ କରେ ।

ଯେଉଁ ଦୃଷ୍ଟିଭଙ୍ଗୀରେ ଭାଗ୍ୟ, ପୂର୍ବ ନିର୍ଦ୍ଦିଷ୍ଟବାଦ, ଧାର୍ମିକ ମାନସିକତା ଓ ପାରଲୌକିକ କଳ୍ପନାର ପ୍ରାଧାନ୍ୟ ରହିଛି ତାହା ଏକ ଭାବବାଦୀ ଜୀବନଦୃଷ୍ଟି । ଭାବବାଦ ଗୁଡ଼ିଏ ଆନୁଷଙ୍ଗିକ ସାମାଜିକ ବ୍ୟବସ୍ଥା ଓ ସାଂସ୍କୃତିକ ପରମ୍ପରା ସହିତ ମଧ୍ୟ ସମ୍ପୃକ୍ତ । ମୋର ସଂସ୍କୃତି, ପରମ୍ପରା ଓ ଐତିହ୍ୟ ଭଲ ମନ୍ଦ ନିର୍ବିଶେଷରେ ମୋ ପାଇଁ ମହାନ୍ । ଅପରପକ୍ଷରେ ଯେଉଁ ଦୃଷ୍ଟିଭଙ୍ଗୀଟି ମାନବକୈନ୍ଦ୍ରିକ, ଇହଲୌକିକ ଓ ଜୀବନଧର୍ମୀ ତାହା ଏକ ହେତୁବାଦୀ ଜୀବନଦୃଷ୍ଟି । ହେତୁବାଦ କୌଣସି ସଂସ୍କୃତି ବା ପରମ୍ପରାକୁ ଚିରନ୍ତନ ବା ପବିତ୍ର ବୋଲି ଗ୍ରହଣ କରେ ନାହିଁ । ହେତୁବାଦୀମାନେ ଅନୁଭୂତି, ପ୍ରଜ୍ଞା ଓ ଯୁକ୍ତିରେ ସେସବୁର ମୂଲ୍ୟାୟନ କରିଥାନ୍ତି । ଏହି ଦୃଷ୍ଟିଭଙ୍ଗୀଟି ପ୍ରତ୍ୟେକ ଜନଗୋଷ୍ଠୀର ସାଂସ୍କୃତିକ ଐତିହ୍ୟରୁ ମହତ୍ତର ଆଦର୍ଶଗୁଡ଼ିକ ଗ୍ରହଣ କରିବାକୁ ଓ ଏକ ବିଶ୍ୱଦୃଷ୍ଟି ପୋଷଣ କରିବାକୁ ପ୍ରେରଣା ଦିଏ ।

ବସ୍ତୁବାଦକୁ ପ୍ରାୟତଃ ଭାବବାଦର ବିପରୀତ ଭାବେ ନିଆଯାଏ । ଅନ୍ୟକୁ ବସ୍ତୁବାଦୀ କହି କେତେକ ନିଜର ସାଂସ୍କୃତିକ ଐତିହ୍ୟର ଶ୍ରେଷ୍ଠତା ପାଇଁ ଗର୍ବ ଅନୁଭବ କରନ୍ତି । କିନ୍ତୁ ଏହା ଯେ ବହୁଳାଂଶରେ ଛଳନାପୂର୍ଣ୍ଣ ବା ଭ୍ରମାତ୍ମକ ତାହା ମନେହୁଏ । ଯେଉଁଠି ବିଜ୍ଞାନର ବିକାଶ ତ୍ୱରାନ୍ୱିତ ହୋଇଛି ଓ ଜୀବନକୁ ଅଧିକ ସୁଖକର କରିବାକୁ ମଣିଷ ନାନା ସାଧନ ବ୍ୟବହାର କରୁଛି ସେମାନଙ୍କୁ ବସ୍ତୁବାଦୀ କହିବା ଏକ ଆତ୍ମପ୍ରତାରଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଧୁନିକ ପ୍ରଯୁକ୍ତିର ସାଧନ ସକଳକୁ ବିନିଯୋଗ କଲେ ମଣିଷ ସଂକୀର୍ଣ୍ଣ ହୁଏନାହିଁ ବା ଅନୈତିକ ହୁଏନାହିଁ । ବରଂ ଯେଉଁ ସାମାଜିକ ଦୃଶ୍ୟପଟରେ ବିଜ୍ଞାନ, ନାଗରିକ ଶୃଙ୍ଖଳାବୋଧ, ଗଣତାନ୍ତ୍ରିକ ମୂଲ୍ୟଚୟ ଓ ସୃଜନଶୀଳତାର ଯଥେଷ୍ଟ ବିକାଶ ହୋଇଛି ସେଠାରେ ଜନଗଣ ଅଧିକ ସମ୍ବେଦନଶୀଳ ଓ ମାନବିକ ମୂଲ୍ୟବୋଧ ତଥା ସାମାଜିକ ନ୍ୟାୟ ପ୍ରତି ଉତ୍ତରଦାୟୀ ହୋଇଛନ୍ତି । ଅପରପକ୍ଷରେ ଯେଉଁଠି ନାନା ସଂକୀର୍ଣ୍ଣତା, ଭେଦଭାବଜନିତ ସାମାଜିକ ବ୍ୟବସ୍ଥା, ଚିନ୍ତାହୀନ ପରମ୍ପରା ଓ ଅହେତୁକ ପରିବେଶର ପ୍ରାଧାନ୍ୟ ରହିଛି ତାହା ଗୁଣାତ୍ମକ ଜୀବନର ବିକାଶ କ୍ଷେତ୍ରରେ ଅନ୍ତରାୟ ହୋଇ ରହିଛି ।

ଇତିହାସରୁ ଏହି ସତ୍ୟଟି ସ୍ପଷ୍ଟ ଯେ ଭାବବାଦୀମାନଙ୍କ ତୁଳନାରେ ବସ୍ତୁବାଦୀମାନେ ହିଁ ଅଧିକ ଜୀବନଧର୍ମୀ, ମାନବିକ ଓ ବିଚାରଶୀଳ । ସେମାନେ ସଭ୍ୟତାର ବିକାଶକୁ ବହୁ ଅମୂଲ୍ୟ ଅବଦାନ ଦେଇଛନ୍ତି । ସ୍ୱର୍ଗ, ପରଲୋକ, ମୁକ୍ତି, ମୋକ୍ଷ ପରିବର୍ତ୍ତେ ସେମାନେ ମାନବିକତା, ବିଜ୍ଞାନ, ସୃଜନଶୀଳତା ଓ ଏକ ଉତ୍ତରଦାୟୀ ଜୀବନଦର୍ଶନର ପ୍ରବକ୍ତା । ମୋଟ ଉପରେ ହେତୁବାଦ, ବସ୍ତୁବାଦ ଓ ମାନବବାଦ ଆଦର୍ଶଗୁଡ଼ିକ ପରସ୍ପରର ଅନୁପୂରକ ଓ ଗୁଣାତ୍ମକ ଜୀବନର ଆଲୋକବର୍ତ୍ତିକା । (୨୮.୪.୧୦)



# ମାନବୀୟ ସଂକଟ

ସଭ୍ୟତାର ଆରମ୍ଭ କାଳରୁ ସବୁ ସମୟରେ ମଣିଷ କିଛି ନା କିଛି ସଂକଟର ସମ୍ମୁଖୀନ ହୋଇଆସିଛି । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ଥିଲା ବା ଆଜି ଯେତେବେଳେ ଏହା ଅତ୍ୟାଧୁନିକ ସୋପାନରେ ପହଞ୍ଚିଛି ସବୁ ସମୟରେ ଏହା କିଛି ନା କିଛି ସମସ୍ୟାର ସମ୍ମୁଖୀନ ହୋଇଛି । ଜଙ୍ଗଲରେ ଯାଯାବର ଜୀବନ ବଞ୍ଚୁଥିବା ମଣିଷ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ କୃଷି କରି ବଞ୍ଚିବା ଆରମ୍ଭ କରିଥିବା ବିଭିନ୍ନ ବୈଜ୍ଞାନିକ ଅନୁଶୀଳନରୁ ଜଣାପଡ଼େ । ଏହି ପାଞ୍ଚ ହଜାର ବର୍ଷ ଭିତରେ ଧୀର ମନ୍ଥର ଗତିରେ ନାନା ବିକାଶର ସୋପାନ ଦେଇ ସଭ୍ୟତା ଆଗକୁ ଯାଇଛି । ସ୍ଥାୟୀ ଗୋଷ୍ଠୀ ଜୀବନ, ଭାଷାର ବ୍ୟବହାର, ଲିପିର ଉଦ୍ଭାବନ, କାଳକ୍ରମେ ବିଭିନ୍ନ ଭୂଖଣ୍ଡରେ ନାନା ପରମ୍ପରା, ସଂସ୍କୃତି, ଧର୍ମ, ଦାର୍ଶନିକ ଚିନ୍ତନ, ସାହିତ୍ୟ, କଳା, ସଂଗୀତର ବିକାଶ ହୋଇଛି । ମଣିଷର ବୁଦ୍ଧିର ବିକାଶ ସହ କ୍ଷୁଦ୍ର ଗୋଷ୍ଠୀଠାରୁ ବୃହତ୍ତର ଜନଗୋଷ୍ଠୀ ଦେଇ ରାଷ୍ଟ୍ରର ଉଦ୍ଭବ ହୋଇଛି । ସେହିପରି ଅନୁଭୂତି ଓ ସାମାଜିକ ସମ୍ପର୍କରୁ ମଣିଷ ଭିତରେ ନୀତିବୋଧର ଭାବନା ଆସିଛି । ଏସବୁ ଧୀର ମନ୍ଥର ଗତିରେ ବୁଦ୍ଧିର ପ୍ରୟୋଗରୁ ସମ୍ଭବ ହୋଇଛି । ତେବେ ସବୁ ସମାଜରେ ଓ ସବୁ କାଳଖଣ୍ଡରେ ଜୀବନ ସହ କିଛି ନା କିଛି ସମସ୍ୟା ସଂଶ୍ଳିଷ୍ଟ ହୋଇ ରହିଛି । ବ୍ୟକ୍ତିଗତ ଜୀବନରେ ହେଉ, ଗୋଷ୍ଠୀ ଜୀବନରେ ହେଉ, ରାଷ୍ଟ୍ରୀୟ ସ୍ତରରେ ହେଉ ବା ସମଗ୍ର ମଣିଷ ସମାଜ ପାଇଁ ହେଉ ଜୀବନ ସହିତ ସଂକଟ ଓ ସମସ୍ୟା ଓତଃପ୍ରୋତ ଭାବେ ଜଡ଼ିତ ହୋଇ ରହିଛି । ଏହି ସକଳ ସଂକଟକୁ ନାନା ଦିଗରୁ ଓ ନାନା ମାନଦଣ୍ଡରୁ ବିଚାର କରାଯାଇପାରେ । ଏହି ପୃଷ୍ଠଭୂମିରେ ସକଳ ସଂକଟକୁ ଆମେ ଛରୋଟି ଶ୍ରେଣୀରେ ବିଭାଜନ କରି ତାହାର ସଂକ୍ଷିପ୍ତ ଆଲୋଚନା କରିବା ।

ସବୁ ସମାଜରେ ମଣିଷ ପାଇଁ ସବୁଠାରୁ ବଡ଼ ସଂକଟ ହେଉଛି ସୀମିତ ସମ୍ବଳ । ଏକ ସୁସ୍ଥ ଜୀବନ ପାଇଁ ମଣିଷର ସର୍ବନିମ୍ନ ଆବଶ୍ୟକତା ହେଉଛି ଖାଦ୍ୟ, ବସ୍ତ୍ର, ବାସଗୃହ ଓ ରୋଗରୁ ମୁକ୍ତି ପାଇଁ ଚିକିତ୍ସା । ସଭ୍ୟତାର ପହିଲି ପର୍ବରେ ମଣିଷକୁ ଖାଦ୍ୟ ପାଇଁ ନାନା ପ୍ରୟାସ କରିବାକୁ ପଡୁଥିଲା ଓ ଦୁର୍ଭିକ୍ଷଜନିତ ପରିସ୍ଥିତିରେ ଅସଂଖ୍ୟ ମଣିଷ ମୃତ୍ୟୁମୁଖରେ ପଡୁଥିଲେ । ହଇଜା, ବସନ୍ତ, ପ୍ଲେଗ ପରି ମହାମାରୀ ସୃଷ୍ଟି ହୋଇ ଅସଂଖ୍ୟ ଜୀବନ ଅକାଳରେ ଝଡ଼ି ପଡୁଥିଲା । ସମ୍ପ୍ରତି ସଭ୍ୟତାର ଏତେ ବିକାଶ ପରେ ମଧ୍ୟ ତୃତୀୟ ବିଶ୍ୱର

ଅନେକ ମଣିଷ ବୁଭୁକ୍ଷୁ ରହୁଛନ୍ତି । ଅନେକ ବ୍ୟକ୍ତି ନିରକ୍ଷର ରହିଛନ୍ତି, ଚିକିତ୍ସାର ସୁଯୋଗରୁ ବଂଚିତ ହେଉଛନ୍ତି ଓ ସ୍ଲମମାନଙ୍କରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନ ବଞ୍ଚୁଛନ୍ତି । ଯେଉଁ ଆବଶ୍ୟକତା ପୂରଣ ହେଲେ ମଣିଷ ସୁସ୍ଥ ଜୀବନ ବଞ୍ଚିପାରନ୍ତା, ତାହା ସୀମିତ ସମ୍ବଳ ଯୋଗୁ ସମ୍ଭବ ହେଉନାହିଁ ବୋଲି କୁହାଯାଉଛି ।

ମଣିଷ ନିଜ ଜ୍ଞାନର ପ୍ରୟୋଗ କରି ପ୍ରକୃତିରୁ ସକଳ ଆବଶ୍ୟକତା ପୂରଣ କରିଥାଏ । ତେବେ ପ୍ରକୃତିର ଜଟିଳତା ଓ ବିଶାଳତା ଯୋଗୁ ପ୍ରକୃତି ସମ୍ପର୍କରେ ମଣିଷର ଜ୍ଞାନ ସୀମିତ ବୋଲି କୁହାଯାଏ । ପୁନଶ୍ଚ ବାତ୍ୟା, ବନ୍ୟା, ଭୂକମ୍ପ, ସୁନାମୀ ଇତ୍ୟାଦିକୁ ନିୟନ୍ତ୍ରଣ କରିବାରେ ମଣିଷ ସମ୍ପୂର୍ଣ୍ଣ ସଫଳ ହୋଇନାହିଁ । ଅଧିକନ୍ତୁ ବହୁ ରୋଗର ନିରାକରଣ କରିବା ସମ୍ଭବ ହୋଇଥିଲେ ମଧ୍ୟ ଏବେ ବି ନାନା ରୋଗରେ ବହୁ ମଣିଷ ଶିକାର ହୋଇଥାନ୍ତି । ଏବେ ପରିବେଶବିତ୍‌ମାନେ ଭବିଷ୍ୟ ନେଇ ନାନା ଆଶଙ୍କା ପ୍ରକାଶ କରୁଛନ୍ତି ଯେ, ପରିବେଶ ଯେପରି ପ୍ରଦୂଷିତ ହୋଇଚାଲିଛି ତାହା ଅବ୍ୟାହତ ରହିଲେ ପୃଥିବୀପୃଷ୍ଠରୁ ଭବିଷ୍ୟତରେ ମଣିଷ ସତ୍ତା ଲୋପ ପାଇଯିବ । ପୃଥିବୀରେ ଜୀବନର ସ୍ଥାୟିତ୍ୱ ନେଇ ମଣିଷର ଜ୍ଞାନ ଯେ ସୀମିତ ଏହା ମନେହୁଏ ।

ସୀମିତ ସମ୍ବଳ, ସୀମିତ ଜ୍ଞାନ ସହ ମାନବୀୟ ସଂକଟର ଅନ୍ୟ ଏକ ଦିଗ ହେଉଛି ସୀମିତ ବିଚାରଶୀଳତା । ମଣିଷ ନିଜର ବୁଦ୍ଧିର ପ୍ରୟୋଗ କରି ଏକ ଆଦିମ ସ୍ତରରୁ ସଭ୍ୟ ସ୍ତରକୁ ଆସିବା ଏକ ଐତିହାସିକ ସତ୍ୟ । ବିଚାରଶୀଳତା ମଣିଷର ଅନ୍ତର୍ନିହିତ ସାମର୍ଥ୍ୟ । ଏହା ସତ୍ତ୍ୱେ ଆମ ସଂସାରରେ ଏତେ ବିଚାରହୀନତା ଓ ଦୁର୍ବୁଦ୍ଧି ରହିଛି ଯାହା ମଣିଷର ଦୁଃଖକୁ ଅଧିକ ଘନୀଭୂତ କରିଥାଏ । ଯୁଦ୍ଧ, ମଣିଷକୃତ ବିଭୀଷିକା, ଅନ୍ୟାୟ, ଶୋଷଣ, ଗଣଧ୍ୱଂସକାରୀ ମାରଣାସ୍ତ୍ର ମଣିଷର ବିଚାରହୀନତାରୁ ଉଦ୍ଭବ ହୋଇଆସିଛି । ବହୁ ଆଧାରହୀନ ବିଶ୍ୱାସ ବା ମିଥ୍ ଦ୍ୱାରା ପରିଚାଳିତ ହୋଇ କିଛି ବ୍ୟକ୍ତି ଦୁର୍ବଳ ଲୋକମାନଙ୍କୁ ଦାସତ୍ୱଜନିତ ଦୁଃଖର ବେଡ଼ି ପିନ୍ଧାଇଛନ୍ତି । ଯଦି ସଂସାରରେ ବିଚାରଶୀଳ ଦୃଷ୍ଟି ସର୍ବଗ୍ରାହ୍ୟ ଓ ସର୍ବଜନ୍ୟ ହୋଇପାରନ୍ତା, ତେବେ ସମ୍ଭବତଃ ଆମ ସଂସାରରୁ ଅନେକ ଦୁଃଖ ଦୁର୍ଦ୍ଦଶା ଦୂର ହୋଇପାରନ୍ତା ।

ଏସବୁ ସହିତ ମଣିଷ ସମାଜରେ ନାନା ସଂକଟର ଏକ ପ୍ରମୁଖ କାରଣ ହେଉଛି ମଣିଷର ସୀମିତ ସମ୍ବେଦନଶୀଳତା । ଭାଷା, ଜାତି, ଧର୍ମ, ଜାତୀୟତା ଇତ୍ୟାଦି ନାମରେ ମଣିଷ ସମାଜ ସର୍ବଦା ଭାଗ ଭାଗ ହୋଇଆସିଛି । ନାନା ସାମାଜିକ ବୈଷମ୍ୟ, ଭେଦଭାବ, ବିଦ୍ୱେଷ, ନିଷ୍ଠୁରତା ଆମ ସଂସାରରେ ରହିଛି । ଅତୀତରେ ଆମ ସଂସାର ବହୁବାର ରକ୍ତରଂଜିତ ହୋଇଆସିଛି । ପ୍ରାକୃତିକ କାରଣ ଯୋଗୁ ସଂସାରରେ ଯେତେ ଦୁଃଖ ସୃଷ୍ଟି

ହୋଇଛି ତା'ର ବହୁଗୁଣ ଦୁଃଖ ମଣିଷର ହୃଦୟହୀନତା ଯୋଗୁ ରହିଛି । ରାଜନୈତିକ ଅତ୍ୟାଚାର, ଅର୍ଥନୈତିକ ଶୋଷଣ, ସାଂସ୍କୃତିକ ଉତ୍ପୀଡ଼ନ, ଶକ୍ତିଶାଳୀ ଗୋଷ୍ଠୀର ଦୁର୍ବଳ ଗୋଷ୍ଠୀ ଉପରେ ଅମାନବିକ ପ୍ରଭୁତ୍ୱର ନାନା କାହାଣୀ ଇତିହାସରେ ଦେଖିବାକୁ ମିଳେ । ସବୁ ମଣିଷଙ୍କୁ ସଖ୍ୟ ଓ ଭ୍ରାତୃତ୍ୱର ହୃଦୟ ଦେଇ ଭଲ ପାଇବା କେବଳ କେତେକ ମାନବ ଦରଦୀ ଦାର୍ଶନିକଙ୍କର ବିଚାରରେ ସ୍ଥାନ ପାଇଛି ସିନା ବାସ୍ତବ ପକ୍ଷେ ସମାଜରେ ରୂପାୟିତ ହୋଇନାହିଁ ।

ମଣିଷ ସମାଜ କ୍ରମବର୍ଦ୍ଧିଷ୍ଣୁ ଭାବେ ନୂଆ ନୂଆ ଜ୍ଞାନକୌଶଳ ହାସଲ କରିଚାଲିଛି, ନୂଆ ନୂଆ ପ୍ରଯୁକ୍ତି ଜୀବନକୁ ଅଧିକ ସରସ, ସୁନ୍ଦର କରିବାର ପରିବେଶ ସୃଷ୍ଟି କରିଛି, ଆଧୁନିକ ଚିକିତ୍ସା ବିଜ୍ଞାନ ଅନେକ ରୋଗଜନିତ ଦୁଃଖକୁ ନିୟନ୍ତ୍ରଣ କରିବାରେ ସମର୍ଥ ହୋଇଛି । ଗମନାଗମନର ପ୍ରଭୂତ ବିକାଶ ସମଗ୍ର ପୃଥିବୀକୁ ଏକ ବିଶ୍ୱଗ୍ରାମରେ ପରିଣତ କରିପାରିଛି । ନାନା କ୍ଷେତ୍ରରେ ଗବେଷଣା କେତେ କେତେ ନୂଆ ସମ୍ଭାବନାର ପରିବେଶ ଆଣୁଛି । ପୃଥିବୀର ଯେକୌଣସି ଅଂଚଳର ମହାନ୍ ଲେଖକଙ୍କର ବିଶିଷ୍ଟ କୃତି ପଢ଼ିବାର ଅବକାଶ ମିଳିପାରୁଛି । ଏହା ସହିତ ପୃଥିବୀର ବହୁ ଶାନ୍ତିକାମୀ ଓ ମାନବଦରଦୀ ବ୍ୟକ୍ତି ସାରା ପୃଥିବୀରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସର୍ବଜନ ହିତୈଷୀ ଜୀବନାଦର୍ଶର ଭାବନା ବ୍ୟକ୍ତ କରିଚାଲିଛନ୍ତି । ଏସବୁ ସଭ୍ୟତାର ସକାରାତ୍ମକ ବିକାଶ ନିଶ୍ଚୟ । ଏସବୁ ସତ୍ତ୍ୱେ ସଭ୍ୟତା ଯେତିକି ଆଗକୁ ଯାଉଛି ନୂଆ ନୂଆ ସମସ୍ୟା ଓ ସଂକଟର ଉଦ୍ଭବ ହେଉଛି । ଏବେ ବି ଆମ ସଂସାରରେ ନାନା କାରଣ ନେଇ କେତେ କେତେ ବିଦ୍ୱେଷର ମନୋଭାବ ରହିଛି, ସାମ୍ପ୍ରଦାୟିକତାର ବାୟୁ ବେଳେବେଳେ ପ୍ରବାହିତ ହୋଇ ଶାନ୍ତିକୁ ବ୍ୟାହତ କରୁଛି । ପୃଥିବୀର ସବୁ ସଭ୍ୟତାରେ ମଣିଷକୁ ପ୍ରେରଣା ଦେଲାଭଳି ବହୁ ଉପାଦାନ ରହିଛି । ପ୍ରତ୍ୟେକ ସଭ୍ୟତାରେ କିଛି ମନୀଷୀ ରହିଛନ୍ତି, ଯେଉଁମାନେ ସୁନ୍ଦର ପୃଥିବୀର ସ୍ୱପ୍ନ ଦେଖିଆସିଛନ୍ତି । ସେମାନଙ୍କର ଅବଦାନ ସଭ୍ୟତାର ଉତ୍ତରଣ କ୍ଷେତ୍ରରେ ମାଇଲଖୁଣ୍ଟ ହୋଇ ରହିଛି । ବୁଦ୍ଧ, ସକ୍ରେଟିସ୍, ଯୀଶୁଖ୍ରୀଷ୍ଟ, ମହାତ୍ମା ଗାନ୍ଧୀ, ବର୍ଟ୍ରାଣ୍ଡ ରସେଲଙ୍କ ପରି ଅନେକ ମନୀଷୀ ସଭ୍ୟ ଜୀବନଧାରାର ଓ ବିଶ୍ୱ ବିବେକର ପଥ ପ୍ରଦର୍ଶକ ହୋଇ ରହିଛନ୍ତି । ଧର୍ମଭିତ୍ତିକ ଜୀବନଦୃଷ୍ଟିର ପ୍ରଭାବ ଯେତିକି ହ୍ରାସ ପାଇବାରେ ଲାଗିଛି ମାନବିକ - ଏକତ୍ୱଜନିତ ମାନବବାଦୀ ଦର୍ଶନ ସେତିକି ବୃଦ୍ଧି ପାଉଛି । ଏହା ସହିତ ମାନବକୈନ୍ଦ୍ରିକ ଜୀବନଦର୍ଶନ ଅଧିକରୁ ଅଧିକ ବିକଶିତ ହୋଇଚାଲିଛି । ମଣିଷ ଯେ ନିଜ ପ୍ରୟାସରେ ତା'ର ସଂସାରକୁ ସରସ ସୁନ୍ଦର କରିପାରିବ ଓ ସଭ୍ୟତାରେ ଯାହା କିଛି ଭଲ ମନ୍ଦ ସୃଷ୍ଟି ହୋଇଛି ସେସବୁ ମଣିଷ ଦ୍ୱାରା ହିଁ ହୋଇଛି, ଏହି ଭାବଧାରା ସଂସାରରେ ଅଧିକରୁ ଅଧିକ ବିକଶିତ ହେଉଛି । ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମନୋଭାବ,

ମାନବିକ ମହତ୍ତ୍ୱ, ସାମାଜିକ ନ୍ୟାୟ, ସର୍ବଜନହିତୈଷୀ ନୀତିବୋଧ ଏ ଯୁଗର ସାର୍ବଜନୀନ ଆଦର୍ଶ ଭାବେ ଅନ୍ତତଃ ବୌଦ୍ଧିକ ସ୍ତରରେ ଗୃହୀତ ହେବାରେ ଲାଗିଛି ।

ଯେଉଁ ଯୁଗରେ ଯେଉଁ ସମସ୍ୟା ବା ସଂକଟ ମୁଣ୍ଡ ଟେକିଛି ତା'ର ସମାଧାନ ପାଇଁ ମଣିଷ ହିଁ ତା'ର ବିଚାରଶୀଳତା ଦେଇ ଉଦ୍ୟମ କରିଛି । ଯେତେବେଳେ ବିଚାରଶୀଳତା ଓ ମାନବିକତାର ପ୍ରେରଣାରେ ମଣିଷ ପରିଚାଳିତ ହୋଇଛି ତାହା ତା'ର ବୌଦ୍ଧିକ ଓ ନୈତିକ ଉତ୍ତରଣରେ ସହାୟକ ହୋଇଛି । ଯେତେବେଳେ ସେ ଏଥିରୁ ଦୂରେଇ ଯାଇଛି ସେତେବେଳେ ତା'ର ସଂକଟ ବଢ଼ିଛି ବା ଘନୀଭୂତ ହୋଇଛି । ସୁତରାଂ ମଣିଷ ସମାଜରେ ଯାହାସବୁ ସମସ୍ୟା ଓ ସଂକଟ ରହିଛି ତାହା ମଣିଷର ପ୍ରୟାସରେ ହିଁ ସମାଧାନ ହୋଇପାରେ । ବିଚାରଶୀଳ ଦୃଷ୍ଟି ଓ ସମ୍ବେଦନଶୀଳ ମାନସିକତା ଏ କ୍ଷେତ୍ରରେ ଆମ ପାଇଁ ଆଲୋକସ୍ତମ୍ଭ ସଦୃଶ ହେବ । ଏହା ହିଁ କାଳକ୍ରମେ ଏକ ସ୍ୱୟଂଶାସିତ ସତ୍ୟ ଭାବେ ପ୍ରତିଭାତ ହେବାରେ ଲାଗିଛି । (୧୨.୫.୧୦)



# ଯୋଗୀ ନା ଭୋଗୀ !

ଯୋଗୀ କିଏ ? ଗେରୁଆ ବସ୍ତ୍ର ପିନ୍ଧିଲେ ମଣିଷ ଯୋଗୀ ହୁଏ କି ? ଆମ ଦେଶର ସାଧାରଣ ଲୋକମାନେ ଭାବିଥାନ୍ତି ଯେ ଗେରୁଆ ବସ୍ତ୍ର ପିନ୍ଧୁଥିବା ଓ ପାରିବାରିକ ବନ୍ଧନରୁ ମୁକ୍ତ ଥିବା ଅର୍ଥାତ୍ ବିବାହ କରି ନଥିବା ବ୍ୟକ୍ତିମାନେ ହିଁ ଯୋଗୀ । କିନ୍ତୁ ଏସବୁ ଯୋଗୀର ଏକ ଔପଚାରିକ ପରିଚୟମାତ୍ର । କାରଣ ଗେରୁଆ ପିନ୍ଧୁଥିବା ଓ ବିବାହ ବନ୍ଧନରେ ଆବଦ୍ଧ ନଥିବା ବ୍ୟକ୍ତିମାନେ ସମ୍ପୂର୍ଣ୍ଣ ଭୋଗୀ ହୋଇପାରନ୍ତି । ଆମ ଦେଶରେ ଗେରୁଆ ବସ୍ତ୍ରର ଆବରଣ ତଳେ ବହୁ ଭୋଗୀଙ୍କୁ ଆମେ ଦେଖୁ । ତଥାକଥିତ ଏହି ଯୋଗୀମାନେ ବାବା-ମାତା ହୋଇ ସମାଜରେ ପରିଚିତ ହୁଅନ୍ତି । କିନ୍ତୁ କିଏ ଯୌନ କାରବାରରେ ଲିପ୍ତ, କାହାର ଆଶ୍ରମରେ ବିଦେଶିନୀଙ୍କ ପ୍ରତି ବଳାତ୍କାର, କେଉଁଠି ବହୁ ମହିଳାଙ୍କ ସହ ସମ୍ପର୍କ, କେଉଁ ବାବାଙ୍କ ବେଡ୍‌ରୁମ୍‌ରେ ନରହତ୍ୟା, ବାବାମାନଙ୍କ ନାମରେ କୋଟି କୋଟି ଟଙ୍କାର ସମ୍ପତ୍ତି ଇତ୍ୟାଦି ଘଟଣା ସମ୍ବାଦପତ୍ରରୁ ଓ ଗଣମାଧ୍ୟମରୁ ଜଣାପଡ଼େ । ତଥାପି ବାବାମାନଙ୍କର ବହୁ ଭକ୍ତ ଓ ସମାଜର ଉଚ୍ଚଶ୍ରେଣୀର ଲୋକମାନେ ମଧ୍ୟ ବାବାମାନଙ୍କର ଅନୁଗାମୀ । ବାବାମାନେ ପ୍ରବଚନ ଦେଉଥିବା ସଭାମାନଙ୍କରେ ବହୁ ଭକ୍ତ ଯୋଗଦେବା ସାଧାରଣ ଘଟଣା । ପ୍ରବଚନ କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ସହରର ସବୁଠାରେ ପ୍ରଚାରପତ୍ର ଓ ବାବାଙ୍କର ଫଟୋ ଥାଇ ବଡ଼ ବଡ଼ ତୋରଣମାନ ଦେଖିବାକୁ ମିଳେ । ବାବାମାନେ ଶୀତତାପ ନିୟନ୍ତ୍ରିତ (ଏସି) ଗାଡ଼ିରେ ଯିବା ଆସିବା କରନ୍ତି । ତାରକା ହୋଟେଲରେ ଅବସ୍ଥାନ କରନ୍ତି, ଉଡ଼ାଜାହାଜରେ ଉଡ଼ନ୍ତି ଓ ବିଜ୍ଞାନର ସମସ୍ତ ସାଧନଗୁଡ଼ିକୁ ବ୍ୟବହାର କରନ୍ତି । ଗେରୁଆ ବସ୍ତ୍ରର ଆବରଣ ତଳେ ସେମାନେ ଲୋକମାନଙ୍କୁ ମୁକ୍ତିର ମାର୍ଗ ଦେଖାନ୍ତି, ଆଧ୍ୟାତ୍ମିକ ପ୍ରବଚନ ଦେଇ ଜୀବନ ଅଢ଼େଇ ଦିନର ଖେଳ ବୋଲି କହନ୍ତି । ସବୁ ସମ୍ପର୍କ ତୁଚ୍ଛ ବୋଲି ଧାରଣା ଦିଅନ୍ତି ଓ ପାରଲୌକିକ ଜଗତର ନାନା ସ୍ୱପ୍ନ ଦେଖାନ୍ତି । ବାବାଙ୍କର ଚମତ୍କାରିତା ବା ଅଲୌକିକ ଶକ୍ତି ନେଇ କେତେ କଥା ପ୍ରଚାରହୁଏ । ବାବା ଶୂନ୍ୟରୁ ହାର ଓ ମୁଦି ସୃଷ୍ଟି କରିଦେଲେ, ଖାଲି ହାତରୁ ବିଭୂତି ଦେଇ ଭକ୍ତଙ୍କୁ ଆଶୀର୍ବାଦ କଲେ । ତାଙ୍କରି ଆଶୀର୍ବାଦରୁ କର୍କଟ ଓ ହୃଦ୍‌ରୋଗ ଭଲ

ହୋଇଗଲା । ତାଙ୍କୁ ଆନ୍ତରିକତାର ସହ ଡାକିଲେ ସେ ଆସି ସମ୍ମୁଖରେ ଉପସ୍ଥିତ ହୋଇଯାନ୍ତି । ଏହିପରି ବହୁ ବିଷୟ ସମାଜର ବହୁ ବିଶିଷ୍ଟ ଲୋକମାନେ ବି ବିଶ୍ୱାସ କରନ୍ତି ।

ସେହିପରି କେଉଁ କେଉଁ ଠାକୁର କ୍ଷୀର ପିଉଛନ୍ତି, କେଉଁ ଦିଅଁଙ୍କ ପାଖରେ ଦୀପ ପ୍ରଜ୍ୱଳନ କଲେ ପୁତ୍ରର ସବୁ ରିଷ୍ଟ ଖଣ୍ଡନ ହୋଇଯିବ ବୋଲି ସମାଜରେ ପ୍ରଚାରିତ ହୁଏ ଓ ହଜାର ହଜାର ଲୋକ ବିଶ୍ୱାସ କରି ସେସବୁ ପାଳନ କରନ୍ତି । ଘରେ କେଉଁ ମୂର୍ତ୍ତି ରଖିଲେ ସବୁ ଶୁଭ ହେବ ଓ କୌଣସି ଅଘଟଣ ହେବନାହିଁ ବୋଲି ନାନା ପ୍ରଚାର ହୁଏ । ପୁନଶ୍ଚ କେଉଁ ଦିଅଁଙ୍କ ପାଖରେ ବଳି ପକାଇଲେ, କେଉଁ ଠାକୁରଙ୍କ ପାଖରେ ମାନସିକ କରି ନଡ଼ିଆ ବାଡ଼େଇଲେ ବା କେଉଁଠି ପାଣି ଢାଳିଲେ ନିଜର ଅଭିଳଷିତ ଲକ୍ଷ୍ୟ ପୂରଣ ହେବ ବୋଲି ବିଶ୍ୱାସ କରାଯାଏ । ଏସବୁ ଭାବନା ଆମ ସମାଜରେ ବହୁ ବ୍ୟାପକ । ଆମର ବାବାମାନେ ଏହିସବୁ ବିଶ୍ୱାସ ଆଧାରରେ ଆମର ସଂସ୍କୃତି, ପରମ୍ପରା ଆଧ୍ୟାତ୍ମିକ ବୋଲି କେତେ ଡିଣ୍ଡିମ ପିଟିଥାନ୍ତି । କେତେ ପ୍ରବଚନ ଦେଇ ବା ଗଣମାଧ୍ୟମ ଜରିଆରେ କେତେ ଗୂଢ଼ ରହସ୍ୟର ବୟାନ କରିଥାନ୍ତି । ଭାରତ ହେଲା ଦେବଭୂମି କାରଣ ଭଗବାନ ଏହିଠାରେ ଅବତାର ନେଇଛନ୍ତି । ଈଶ୍ୱର ମଣିଷ ରୂପରେ ଏହିଠାରେ ଖେଳାଲୀଳା କରିଛନ୍ତି । ଅନ୍ୟସବୁ ଦେଶର ସଂସ୍କୃତି ବସ୍ତୁବାଦୀ, ଆମେ ହିଁ କେବଳ ଆଧ୍ୟାତ୍ମିକ ସଂସ୍କୃତିର ଯଥାର୍ଥ ଦାୟାଦ ବୋଲି ପ୍ରବଚନ ଦେଇ ଆତ୍ମବଡ଼ିମା ଦେଖାଇଥାନ୍ତି ।

ତେବେ ଆଧ୍ୟାତ୍ମିକତାର ପ୍ରକୃତ ତାତ୍ପର୍ଯ୍ୟ କ'ଣ ? ଆମେ ପ୍ରକୃତରେ ଆଧ୍ୟାତ୍ମିକ ଚେତନାର ଅଧିକାରୀ କି ? ଦର୍ଶନ ଶାସ୍ତ୍ରରେ ଆଧ୍ୟାତ୍ମିକତାର ଏକ ବୈଷୟିକ ଅର୍ଥ ଦେଖିବାକୁ ମିଳେ । ତାତ୍ତ୍ୱିକ ତାତ୍ପର୍ଯ୍ୟ ଦୃଷ୍ଟିରୁ ଅଧ୍ୟାତ୍ମବାଦ ବସ୍ତୁ ବା ପ୍ରକୃତି ପରିବର୍ତ୍ତେ ଚେତନ ସତ୍ତାର ଅସ୍ତିତ୍ୱକୁ ଅବିନାଶୀ ବୋଲି ନେଇଥାଏ । ଯେଉଁ ଦର୍ଶନ ଚେତନାକୁ ପ୍ରାଥମିକତା ଦିଏ ଓ ଚେତନ ସତ୍ତା ହିଁ ମୂଳ ଉତ୍ସ ବୋଲି ନିଏ ତାହାକୁ ଏକ ଆଧ୍ୟାତ୍ମିକ ଦର୍ଶନ ବୋଲି ଗ୍ରହଣ କରାଯାଏ । ଅପରପକ୍ଷରେ ଯେଉଁ ଦାର୍ଶନିକ ଚିନ୍ତନରେ ବସ୍ତୁସତ୍ତା ହିଁ ମୂଳ ଓ ଆମର ଚେତନା ବସ୍ତୁର ଏକ ବିବର୍ତ୍ତିତ ରୂପ ବୋଲି ନିଆଯାଏ ତାହା ହିଁ ବସ୍ତୁବାଦ । ବସ୍ତୁବାଦ ଓ ଅଧ୍ୟାତ୍ମବାଦ ଜଗତ ସମ୍ପର୍କରେ ଦୁଇଟି ପୃଥକ ତାତ୍ତ୍ୱିକ ଅବଧାରଣା । ଅଧ୍ୟାତ୍ମବାଦର ଏହି ଅର୍ଥକୁ ଗ୍ରହଣ କରାଗଲେ ଭାରତୀୟ ଦର୍ଶନ ପରମ୍ପରାରେ ସନ୍ନିହିତ ଥିବା ଅଧିକାଂଶ ଗୋଷ୍ଠୀ ଆଧ୍ୟାତ୍ମିକ ନୁହନ୍ତି, କାରଣ ସେମାନେ ଚେତନାର ସାର୍ବଭୌମତ୍ୱକୁ ସ୍ୱୀକାର କରନ୍ତି ନାହିଁ । ଅଧିକନ୍ତୁ ସେମାନେ ବସ୍ତୁକୁ ପ୍ରାଥମିକତା ଦିଅନ୍ତି କିମ୍ବା ବସ୍ତୁ ଓ ଚେତନା ଉଭୟ ସହ-ନିତ୍ୟ ବୋଲି ମନେକରନ୍ତି ।

ତେବେ ଅଧ୍ୟାତ୍ମବାଦର ଏହି ବୈଷୟିକ ଅର୍ଥଟିକୁ ବାଦ୍ ଦେବାପରେ ସାଧାରଣ ଭାବେ ଏହାର ଅନ୍ୟ ଦୁଇଟି ଅର୍ଥ ସମ୍ମୁଖକୁ ଆସିଥାଏ । ପ୍ରଥମତଃ କିଛି ଚମତ୍କାରିତା ବା ଅଲୌକିକତା ଦେଖାଉଥିବା ବ୍ୟକ୍ତିକୁ ଆମର ଲୋକମାନେ ପ୍ରାୟତଃ ଆଧ୍ୟାତ୍ମିକ ମନେକରିଥାନ୍ତି । ସାଧାରଣ ମନସ୍ତତ୍ତ୍ୱରେ ଏହି ଭାବନା ବଦ୍ଧମୂଳ ଯେ, କେବଳ ଈଶ୍ୱରୀୟ ଶକ୍ତିର ଅଧିକାରୀ ବ୍ୟକ୍ତିମାନେ ଚମତ୍କାରିତା ଦେଖାଇପାରିବେ । ଲୋକମାନଙ୍କର ଏହି ସାଧାରଣ ମନସ୍ତତ୍ତ୍ୱକୁ ବାବାମାନେ ଠିକ୍ ଭାବରେ ଅନୁଭବ କରିଥିବା ମନେହୁଏ । ସେଥିପାଇଁ କୌଣସି ନା କୌଣସି ଯାଦୁକରୀ କାର୍ଯ୍ୟ ବାବାମାନେ ଦେଖାଇ ତାହାରି ଆଧାରରେ ସେମାନଙ୍କର ସାମ୍ରାଜ୍ୟ ବିସ୍ତାର କରିଥାନ୍ତି । କିଏ ପାଣିରେ ପ୍ରଦୀପ ଜାଳି, କିଏ ହାତରେ ଆଳତି କରି, କିଏ ହାତରୁ ବିଭୂତି ଦେଇ, କିଏ ମନ୍ତ୍ରର ପ୍ରଭାବରେ ରୋଗୀକୁ ଆରୋଗ୍ୟ ଭଳି ଘଟଣାମାନ ସୃଷ୍ଟି କରି ଲୋକମାନଙ୍କ ବିଶ୍ୱାସଭାଜନ ହୁଅନ୍ତି । ସାଧାରଣ ଲୋକମାନେ ବହୁ ସମୟରେ ଯେଉଁ ସମସ୍ୟା ଓ ଦାରିଦ୍ର୍ୟ ଭିତରେ ଥାଆନ୍ତି, ସେମାନେ ଭାବନ୍ତି ଯେ, ସେମାନଙ୍କ ପ୍ରତିକୂଳ ସ୍ଥିତି ଅଲୌକିକ ଶକ୍ତିର ଅଧିକାରୀ ବାବାଙ୍କର ଭକ୍ତ ହେଲେ ଦୂର ହୋଇପାରିବ ।

ଲୋକମାନଙ୍କର ଏହି ସରଳ ବିଶ୍ୱାସର ସୁଯୋଗ ନେଇ ବାବାମାନେ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର କରିପାରନ୍ତି । ଅଧିକନ୍ତୁ ନିଜର ମନ୍ଦ ଉପାୟରେ ଅର୍ଜିତ ଅର୍ଥରୁ କେଉଁଠି ଆଶ୍ରମ ସହ ଚିକିତ୍ସା, ଶିକ୍ଷାନୁଷ୍ଠାନ ଓ ସମାଜସେବା ମୂଳକ କାର୍ଯ୍ୟରେ ବ୍ୟୟ କରନ୍ତି । ସେମାନଙ୍କ ନାମରେ ଦେଉଳ, ମନ୍ଦିର ହୁଏ । ଜୀବନ୍ତ ମଣିଷ ଈଶ୍ୱରଙ୍କ ଅବତାର ହୋଇ ପୂଜିତ ହୁଅନ୍ତି । ସେମାନେ ନିଜର ଭକ୍ତଙ୍କ ଜରିଆରେ ନାନା ଚମତ୍କାରିତାର ପ୍ରଚାର କରନ୍ତି ଓ ବହୁ ଉଚ୍ଚ ପଦପଦବୀଧାରୀ ଲୋକମାନଙ୍କୁ ବି ଆକୃଷ୍ଟ କରନ୍ତି । ଅନେକ ଅସାଧୁ ବ୍ୟକ୍ତି ଓ ଅନ୍ୟାୟ ପନ୍ଥାରେ ଉପାର୍ଜନ କରୁଥିବା ଲୋକମାନେ ନିଜର ମାନସିକ ଶାନ୍ତି ପାଇଁ ହେଉ ବା ଅର୍ଜିତ ଅନ୍ୟାୟରୁ ରକ୍ଷା ପାଇଁ ବାବାଙ୍କର ଶରଣ ପଶନ୍ତି ବା ବାବାମାନଙ୍କୁ ଆର୍ଥିକ ସାହାଯ୍ୟ ଦିଅନ୍ତି । ବାବାମାନେ ସେମାନଙ୍କ ପ୍ରଭାବଶାଳୀ ଭକ୍ତମାନଙ୍କୁ ସୁରକ୍ଷା ଦିଅନ୍ତି ଓ ଭକ୍ତମାନେ ବାବାଙ୍କର ପ୍ରଚାରରେ ଶତମୁଖ ହୋଇଉଠନ୍ତି । ଏହିପରି ଆଧ୍ୟାତ୍ମିକତାର ଛଳନା ଭିତରେ ସାମାଜିକ ଜୀବନ ପ୍ରଭାବିତ ହୋଇଥାଏ । ଆଧୁନିକ ବିଜ୍ଞାନ ଚମତ୍କାରିତାକୁ ଅସ୍ୱୀକାର କରେ । କାରଣ ଏହା ଧୋକାବାଜୀ ଉପରେ ଆଧାରିତ । ହସ୍ତକୌଶଳ ବା ରାସାୟନିକ ବ୍ୟବହାର ଇତ୍ୟାଦି ଦ୍ୱାରା ଏହା ସୃଷ୍ଟି କରାଯାଇପାରେ । ହେତୁବାଦୀମାନେ ଲୋକ ସଚେତନତା ସୃଷ୍ଟି ପାଇଁ ଏହା ସାଧାରଣରେ ଦେଖାଇବାରେ ସିଦ୍ଧହସ୍ତ । ସୁତରାଂ ଚମତ୍କାରିତାଜନିତ

ଆଧ୍ୟାତ୍ମିକତା ପରିବର୍ତ୍ତେ ଆଧ୍ୟାତ୍ମବାଦର ଏକ ନୈତିକ ତାତ୍ପର୍ଯ୍ୟକୁ ଗୁରୁତ୍ୱ ଦିଆଯାଇପାରେ । ଯେଉଁମାନେ ସତ୍ୟାନୁସନ୍ଧାନୀ ଓ ମାନବ ଦରଦୀ ସେମାନେ ହିଁ ପ୍ରକୃତ ଆଧ୍ୟାତ୍ମବାଦୀ । ଯେଉଁ ବିଚାରଶୀଳ ମଣିଷମାନେ ସମାଜର ବା ସମଗ୍ର ମଣିଷ ଜାତିର ମଙ୍ଗଳ ପାଇଁ ଜୀବନସାରା ସାଧନା କରିଛନ୍ତି ସେମାନେ ହିଁ ଆଧ୍ୟାତ୍ମବାଦୀ । କାରଣ ଯେଉଁମାନେ ନିଜର ସୁଖ ସମ୍ଭୋଗକୁ ଜଳାଞ୍ଜଳି ଦେଇ ଜୀବନସାରା ଅନ୍ୟର ହିତ ପାଇଁ କାର୍ଯ୍ୟ କରିଛନ୍ତି ଓ ଯେଉଁମାନଙ୍କ ଅବଦାନ ଦ୍ୱାରା ସଭ୍ୟତାର ଚକ ଆଗକୁ ଯାଇଛି ତଥା ଜୀବନ ଅଧିକ ସୁଖକର ହୋଇ ପାରିଛି ସେମାନେ ହିଁ ପ୍ରକୃତ ଆଧ୍ୟାତ୍ମବାଦୀ । ଯିଏ ଜୀବନସାରା ବିଜ୍ଞାନାଗାର ଭିତରେ ବସି ବିଜୁଳି ଆଲୁଅ ବାହାର କରିଛି, ଟେଲିଫୋନ, ଟେଲିଭିଜନ ଉଦ୍ଭାବନ କରିଛି, କୁଷ୍ଠ, ଯକ୍ଷ୍ମା, ପୋଲିଓ ପରି ଭୟଙ୍କର ରୋଗମାନଙ୍କର ନିଦାନ ଉଦ୍ଭାବନ କରି ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଛି ସେମାନଙ୍କର ମଣିଷ ଜାତି ପ୍ରତି ଅବଦାନ ଅତୁଳନୀୟ । ସେହିପରି ଯେଉଁମାନେ ମାନବ ଦରଦୀ, ସମ୍ବେଦନଶୀଳ, ବ୍ୟକ୍ତି ମର୍ଯ୍ୟାଦାର ପ୍ରବକ୍ତା ଓ ସମତା ତଥା ମାନବିକ ଅଧିକାରର ଦିଗ୍‌ଦ୍ରଷ୍ଟା ସେମାନେ ହିଁ ସବୁଠାରୁ ବଡ଼ ଆଧ୍ୟାତ୍ମବାଦୀ । କାରଣ ସେହିମାନେ ହିଁ ଚିନ୍ତା ଜଗତର ବିପ୍ଳବୀ ଓ ସଭ୍ୟ ଜୀବନଧାରାର ପଥପ୍ରଦର୍ଶକ । ଆଧ୍ୟାତ୍ମିକତାର ଏହି ନୈତିକ ତାତ୍ପର୍ଯ୍ୟକୁ ଗ୍ରହଣ କଲେ ସତ୍ୟାନ୍ୱେଷୀ ଓ ମାନବହିତୈଷୀ ହେତୁବାଦୀମାନେ ହିଁ ଯଥାର୍ଥରେ ଅଧ୍ୟାତ୍ମବାଦୀ ।

ସୁତରାଂ ଗେରୁଆ ପିନ୍ଧିଲେ ବା ଗୃହତ୍ୟାଗ କଲେ ବ୍ୟକ୍ତି ଯୋଗୀ ହୁଏନାହିଁ ବା ପ୍ୟାଣ୍ଟ-ସାର୍ଟ ପରିଧାନ କରି ପରିବାର କଲେ ମଣିଷ ଭୋଗୀ ପାଲଟେନାହିଁ । ବରଂ ସମାଜ ପ୍ରତି ନୈତିକ ଉତ୍ତରଦାୟିତ୍ୱବୋଧ ଓ ଏକ ମାନବିକ ଦୃଷ୍ଟି ମଣିଷକୁ ଯୋଗୀ କରାଏ, ଅଥଚ ଆଧ୍ୟାତ୍ମିକତାର ଦୁହାଇ ଦେଇ ଛଳନା ଭିତରେ ଥିବା ବ୍ୟକ୍ତି ଭୋଗୀ ପାଲଟିଥାଏ । କାହାକୁ ଯୋଗୀ କହିବା ବା ଯୋଗୀକୁ କେଉଁ ଅର୍ଥରେ ମୂଲ୍ୟାୟନ କରିବା ଏହା ପାଠକମାନେ ବିଚାର କରିବେ । (୧୯.୫.୧୦)



# ଏକ ବିସ୍ମୃତ ପ୍ରତିଭା

ବିଜୟ ଚନ୍ଦ୍ର ଦାସ ଓଡ଼ିଶାରେ ବିସ୍ମୃତ ହୋଇଗଲେଣି । ମହାକାଳରେ କିଏ ବା ରହିବ ! ତେବେ ସୁଖର କଥା ବିଜୟ ଚନ୍ଦ୍ର ସ୍ମୃତି ସଂସଦ୍ ତାଙ୍କର ୯୮ତମ ଜନ୍ମ ଜୟନ୍ତୀ ୨୬.୦୫.୨୦୧୦ ଦିନ ପାଳନ କରିବାକୁ ଯାଉଛି ଓ ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ ପାଇଁ ଓଡ଼ିଶା ଓ ଜାତୀୟ ସ୍ତରରେ କିଛି ପଦକ୍ଷେପ ନେବାକୁ ସ୍ଥିର କରିଛି । ଏହା ସ୍ୱାଗତଯୋଗ୍ୟ ।

ବିଜୟ ଚନ୍ଦ୍ର (୧୯୧୨-୧୯୬୧) ଥିଲେ ସ୍ୱାଧୀନତା ସଂଗ୍ରାମୀ, ପ୍ରଥମ ଲୋକସଭାର ସାଂସଦ, ମାର୍କସୀୟ ତତ୍ତ୍ୱବିତ୍, ସଂସ୍କାରକ ଓ ଏକ ଆଦର୍ଶ ସମାଜର ସ୍ୱପ୍ନଦ୍ରଷ୍ଟା । ମାତ୍ର ୪୯ ବର୍ଷର ଜୀବନକାଳ ଭିତରେ ସେ ଛାଡ଼ି ଯାଇଛନ୍ତି ଅନେକ ଅଲିଭା ସ୍ମୃତି ଓ ସମାଜ ପାଇଁ ବହୁ ସ୍ୱପ୍ନ । ବିଜୟ ଚନ୍ଦ୍ର ଛାତ୍ର ଜୀବନରୁ ଥିଲେ ବହୁ ପ୍ରତିଭାବାନ । ବାପା ଦୟାନିଧି ଦାସଙ୍କର ସ୍ୱପ୍ନ ଥିଲା ପୁଅ ବଡ଼ ହୋଇ ପ୍ରଶାସନିକ ଅଧିକାରୀ ହେବେ । କିନ୍ତୁ ଭିନ୍ନ ଉପାଦାନରେ ଗଢ଼ା ବିଜୟ ଚନ୍ଦ୍ର ଛାତ୍ର ଜୀବନରୁ ଦେଶ ଦୁନିଆର ପରିସ୍ଥିତି ନେଇ ଗମ୍ଭୀର ଚିନ୍ତା ପ୍ରକାଶ କରୁଥିଲେ । ବ୍ୟକ୍ତିଗତ ସ୍ୱାର୍ଥ, ବଡ଼ ଚାକିରି, ବିଳାସ ତାଙ୍କୁ କେବେ ସ୍ପର୍ଶ କରି ନଥିଲା । ଛାତ୍ର ଜୀବନରୁ ଛାତ୍ର ସଂଗଠନ, ସାଧାରଣ ମଣିଷର ଅଧିକାର ପାଇଁ ସଂଗ୍ରାମ ଓ ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ସମ୍ପୃକ୍ତ କରାଇଥିଲେ । ଏସବୁ ସହ ଅଧ୍ୟୟନକୁ ଗଭୀର ଭାବେ ଜୀବନଧାରାରେ ମିଶାଇ ଦେଇଥିଲେ । ଖଲିକୋଟ କଲେଜରୁ ସ୍ନାତକ ଶିକ୍ଷା ପରେ ୧୯୩୬ରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ଏମ୍.ଏ.ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ପାଇବାର ଗୌରବ ଲାଭ କରିଥିଲେ । ଏହାପରେ କଟକରେ ଆଇନ ଅଧ୍ୟୟନ କରି ବିଭିନ୍ନ ଆନ୍ଦୋଳନରେ ସମ୍ପୃକ୍ତ ହୋଇ କାରାବରଣ କଲେ । ଏତେ ପ୍ରତିଭାବାନ ଓ ଉଚ୍ଚଶିକ୍ଷାପ୍ରାପ୍ତ ପୁଅ ଜେଲ୍ ଯିବା, ନାନା କଷ୍ଟବରଣ କରିବା ବାପା ଦୟାନିଧି ଦାସଙ୍କୁ ବେଳେବେଳେ ବ୍ୟଥିତ କରୁଥିଲା ।·ବାପା ଥରେ ପଚାରିଲେ - ତୁ କାହିଁକି ଅବାଧ ହୋଇ ବିଭିନ୍ନ ଆନ୍ଦୋଳନରେ ସମ୍ପୃକ୍ତ ହୋଇ ଏତେ କଷ୍ଟ ଭୋଗ କରୁଛୁ, ବନ୍ଦୀ ଜୀବନ ବିତାଉଛୁ ? ତୁ ତ ଚାହିଁଲେ ଉଚ୍ଚ ପଦବୀରେ ଚାକିରି କରିପାରନ୍ତୁ । ବିଜୟ ଚନ୍ଦ୍ରଙ୍କର ଉତ୍ତର ଥିଲା - ଗୌତମ କଥା ମାନି ରାଜଗାଦିରେ ବସିଥିଲେ

ସମାଜ କେତେ ହରାଇନଥାନ୍ତା । ବିଜୟ ଚନ୍ଦ୍ରଙ୍କର ସୃଜନଶୀଳତା ବ୍ୟକ୍ତି ସ୍ୱାର୍ଥ ଊର୍ଦ୍ଧ୍ୱରେ ଦେଶ ଦୁନିଆ ପାଇଁ ସମର୍ପିତ ଥିଲା । ଇତିହାସର ଏହା ବିଡ଼ମ୍ବନା ଯେ ପରିବାର, ପରମ୍ପରା ଓ ପରିସ୍ଥିତିର ଅବାଧ ହୋଇଥିବା ମଣିଷମାନେ ହିଁ ସମାଜର ଧାରାକୁ ବଦଳାଇବାରେ ସମର୍ଥ ହେବା ସହ ଗୁଣାତ୍ମକ ଜୀବନର ପଥପ୍ରଦର୍ଶକ ହୋଇଥାନ୍ତି ।

ବିଜୟ ଚନ୍ଦ୍ରଙ୍କ ବିଚାରରେ ସେତେବେଳେ ଦେଶ ଆଗରେ ଦୁଇଟି ବଡ଼ ସମସ୍ୟା ଥିଲା । ପ୍ରଥମଟି ହେଲା, ସାମ୍ରାଜ୍ୟବାଦକୁ ଦେଶରୁ ହଟାଇ ରାଜନୈତିକ ସ୍ୱାଧୀନତା ହାସଲ କରିବା ଓ ଦ୍ୱିତୀୟଟି ହେଲା ଏକ ଶୋଷଣମୁକ୍ତ ଭେଦଭାବ ବିହୀନ ସମତାଭିତ୍ତିକ ସମାଜର ପୁନର୍ଗଠନ କରିବା । ଏ ଦୁଇଟି କ୍ଷେତ୍ରରେ ସେ ସ୍ୱପ୍ନ ବିଭୋର ହୋଇଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ବହୁବାର କାରାବରଣ କରିଛନ୍ତି । ତେବେ ବନ୍ଦୀ ଜୀବନ ତାଙ୍କ ପାଇଁ ଆଶୀର୍ବାଦ ଥିଲା କାରଣ ଏହା ସବୁ ସମୟ ଅଧ୍ୟୟନ ପାଇଁ ସୁଯୋଗ ଦେଉଥିଲା । କାରାବରଣ କାଳରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ସେ ନିୟମିତ କ୍ଲାସ କରୁଥିଲେ । ବୟସରେ ତରୁଣ ହେଲେ ବି ମାର୍କ୍ସବାଦ ଓ ସମାଜବାଦ ଉପରେ ତାଙ୍କର ଗଭୀର ଅଧ୍ୟୟନ ଓ ସ୍ୱଚ୍ଛତା ବହୁ ସହବନ୍ଦୀଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଜେଲରୁ ଖଲାସ ହେବାପରେ ଦେଶର ଯୁବକ ଓ ଛାତ୍ରମାନଙ୍କ ମଧ୍ୟରେ ସେ ନୂତନ ଜାଗରଣ ସୃଷ୍ଟି କରିବାକୁ ପ୍ରୟାସ କରିଥିଲେ । ସ୍ୱାଧୀନତାର ପ୍ରାକ୍‌କାଳରେ ସେ ବ୍ରହ୍ମପୁରରେ ଯେଉଁ ଛାତ୍ର ସମ୍ମିଳନୀ କରାଇଥିଲେ, ତାହା ସେତେବେଳେ ଓଡ଼ିଶାରେ ଏକ ଉଲ୍ଲେଖନୀୟ ଘଟଣା ଥିଲା ।

ସେତେବେଳେ ସାମାଜିକ ଦୃଶ୍ୟପଟରେ ଜମିଦାରମାନଙ୍କ ଶୋଷଣ ଓ ଅତ୍ୟାଚାର ଦ୍ୱାରା ଚାଷୀକୁଳ ଅତି ଦୟନୀୟ ସ୍ଥିତି ଭିତରେ ଥିଲେ । ଜମିଦାରୀ ପ୍ରଥାର ଶୋଷଣକୁ ବିଲୋପ କରିବାକୁ ସେ ଗଞ୍ଜାମ ଜିଲ୍ଲାରେ ଗାଁ ଗାଁ ବୁଲି କୃଷକମାନଙ୍କୁ ଯେପରି ସଂଘଟିତ କରିଥିଲେ ତାହା ବି ଉଲ୍ଲେଖନୀୟ ଥିଲା । ୧୯୪୭ରେ ବ୍ରହ୍ମପୁରରେ ତାଙ୍କ ଉଦ୍ୟମରେ ହୋଇଥିବା କୃଷକ ସମ୍ମିଳନୀ ଆଜି ଇତିହାସର କାହାଣୀ । ଏକ କୃଷିଭିତ୍ତିକ ସମାଜରେ ଚାଷଜମିର ସୁଷମ ବଣ୍ଟନ, ଜମିଦାରୀ ପ୍ରଥାର ବିଲୋପ ଓ କୃଷିର ଉନ୍ନତି ବିଧାନ କ୍ଷେତ୍ରରେ ତାଙ୍କର ଭାବଗର୍ଭକ ଭାଷଣ ସ୍ୱାଧୀନ ଭାରତରେ ଅର୍ଥନୈତିକ ସଂସ୍କାର କ୍ଷେତ୍ରରେ ଥିଲା ଏକ ଯୁଗାନ୍ତକାରୀ ଘଟଣା । ବିଜୟଚନ୍ଦ୍ରଙ୍କର ପ୍ରତିଭା, ସାଙ୍ଗଠନିକ ଦକ୍ଷତା ଓ ସାଧାରଣ ମଣିଷ ପ୍ରତି ଦରଦୀ ମନୋଭାବ ତାଙ୍କୁ ଗଞ୍ଜାମ ଜିଲ୍ଲାରେ ଅତ୍ୟନ୍ତ ଜନପ୍ରିୟ କରାଇ ପାରିଥିଲା । ପରିଣାମ ସ୍ୱରୂପ ଦେଶର ପ୍ରଥମ ସାଧାରଣ ନିର୍ବାଚନରେ ସେ ଦକ୍ଷିଣ ଗଞ୍ଜାମ ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଭାବେ ଲୋକସଭାକୁ ନିର୍ବାଚିତ ହେଲେ । ଲୋକସଭା

ସଭ୍ୟ ଥିବାବେଳେ ବିଭିନ୍ନ ପ୍ରସଙ୍ଗ ଉପରେ ତାଙ୍କର ଆଲୋଚନା ଓ ବକ୍ତବ୍ୟରୁ ତାଙ୍କ ବିଚାରଶୀଳ ଦୃଷ୍ଟି ଓ ବୌଦ୍ଧିକ ସ୍ପଷ୍ଟତାର ପରିଚୟ ମିଳେ । ବିଶେଷକରି ସ୍ୱତନ୍ତ୍ର ହିନ୍ଦୁ ବିବାହ ବିଲ୍ ଉପରେ ତାଙ୍କର ଆଲୋଚନା ବିଲ୍‌ରେ ଆବଶ୍ୟକ ସଂଶୋଧନ ଆଣିବାରେ ସହାୟକ ହୋଇଥିଲା । ସୁନ୍ଦର ଇଂରାଜୀ ଓ ବିଚାରର ସ୍ପଷ୍ଟତା ତାଙ୍କୁ ଲୋକସଭାରେ ବହୁ ସମ୍ମାନର ଅଧିକାରୀ କରାଇଥିଲା ।

ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀରେ ସେ ଥିଲେ ସଂସ୍କାରପ୍ରୟାସୀ, ବ୍ୟକ୍ତି ମର୍ଯ୍ୟାଦାବୋଧର ପୃଷ୍ଠପୋଷକ ଓ ଜଣେ ହେତୁବାଦୀ ଦିଗ୍‌ଦ୍ରଷ୍ଟା । ରୂଢ଼ିବାଦୀ ସାମାଜିକ ପରମ୍ପରାକୁ ବିରୋଧ କରି କଟକର କମ୍ୟୁନିଷ୍ଟ ପାର୍ଟି ଅଫିସରେ କେତେକ ସହଯୋଗୀଙ୍କ ଗହଣରେ ଶିକ୍ଷୟିତ୍ରୀ ସରଳା ଦେବୀଙ୍କୁ ନିରାଡ଼ମ୍ବର ଭାବେ ବିବାହ କରିଥିଲେ । ସେ ଯୁଗରେ ଏହା ଥିଲା ଏକ ସଂସ୍କାରବାଦୀ ବିବାହ, ଯେଉଁଠି ବାଜା ବାଜିନଥିଲା କି ମନ୍ତ୍ର ପଢ଼ାଯାଇନଥିଲା ।

ବିଜୟ ଚନ୍ଦ୍ର ସର୍ବଦା ଏକ ଉନ୍ନତ ସମାଜର ସ୍ୱପ୍ନ ଦେଖୁଥିଲେ । ଭେଦଭାବ ବିହୀନ, ଶୋଷଣମୁକ୍ତ ଓ ସମତାଭିତ୍ତିକ ଏକ ସମାଜ ତାଙ୍କର ସ୍ୱପ୍ନ ହୋଇ ରହିଥିଲା । ଜୀବନର ଗୁଣାତ୍ମକ ଉନ୍ନତି ଓ ସାମାଜିକ ବିକାଶ ମଣିଷର ପ୍ରଚେଷ୍ଟା ଓ ଜ୍ଞାନ ଦ୍ୱାରା ଯେ ସମ୍ଭବ ଏହା ହିଁ ଥିଲା ତାଙ୍କର ସାମାଜିକ ଦୃଷ୍ଟି । ମଣିଷ ହିଁ ତା'ର ସମାଜକୁ ନିଜ ଚେଷ୍ଟାରେ ଉନ୍ନତ କରିପାରେ । କୌଣସି କଳ୍ପିତ ଦିଅଁ ଦେବତା ସମାଜକୁ ଉନ୍ନତ କରିପାରିବେ ନାହିଁ । ସଭ୍ୟତା ଓ ସଂସ୍କୃତିର ବିକାଶ ମଣିଷର ପ୍ରୟାସ ଓ ଅନୁସନ୍ଧିତ୍ସାର ପରିଣାମ - ଏହା ହିଁ ଥିଲା ତାଙ୍କର ଜୀବନଦର୍ଶନ । ବିଜୟ ଚନ୍ଦ୍ର ଖୁବ୍ ଅଳ୍ପ ବୟସରୁ କର୍କଟ ରୋଗରେ ଆକ୍ରାନ୍ତ ହେଲେ । ଗଭୀର ଯନ୍ତ୍ରଣାରେ ଜର୍ଜରିତ ମଣିଷଟି କିନ୍ତୁ ଜୀବନର ଶେଷ ପର୍ଯ୍ୟନ୍ତ ନିଜର ଆତ୍ମପ୍ରତ୍ୟୟରେ ଥିଲେ ଅତ୍ୟନ୍ତ ଦୃଢ଼ । ଗିରିଜା ଭୂଷଣ ପଟ୍ଟନାୟକ ବିଜୟ ଚନ୍ଦ୍ରଙ୍କ ଉପରେ ଯେଉଁ ଶ୍ରଦ୍ଧାଞ୍ଜଳି ଲେଖିଛନ୍ତି, ସେଥିରୁ ତାଙ୍କ ଆତ୍ମବିଶ୍ୱାସ ଓ ବ୍ୟକ୍ତିତ୍ୱର ଝଲକ ମିଳିଥାଏ । ଏଠାରେ ଦୁଇଟି ଘଟଣା ଉଲ୍ଲେଖ କରୁଛି । ବିଜୟ ଚନ୍ଦ୍ର କର୍କଟରେ ଆକ୍ରାନ୍ତ ହୋଇ କଟକ ବଡ଼ ମେଡ଼ିକାଲରେ ରହିଥାନ୍ତି । ବିଶିଷ୍ଟ ଗାନ୍ଧୀବାଦୀ ଓ ସମାଜସେବୀ ଈଶ୍ୱରଲାଲ ବ୍ୟାସ ତାଙ୍କୁ ଦେଖିବାକୁ ଆସି ତାଙ୍କର ଯନ୍ତ୍ରଣା ଦେଖି ଅଭିଭୂତ ହେଲେ । ବ୍ୟାସଜୀ ପୁତ୍ରପ୍ରତିମ ବିଜୟଚନ୍ଦ୍ରଙ୍କୁ କହିଲେ - ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତୁ, ଯନ୍ତ୍ରଣାରୁ କିଛି ମୁକ୍ତି ମିଳିବ । ବିଜୟଚନ୍ଦ୍ରଙ୍କର ବିନୀତ ଉତ୍ତର ଥିଲା - 'ଶରୀର ଏକ ବସ୍ତୁ । ବସ୍ତୁର ଧର୍ମ କ୍ଷୟ ହେବା । ତେବେ ମୋର ଦୁଃଖ ଯେ ଏହି କ୍ଷୟ ମୋ ନିକଟରେ ଶୀଘ୍ର ହୋଇଗଲା । କେଉଁ କଳ୍ପିତ ଭଗବାନ ମଣିଷକୁ ଦୁଃଖରୁ ଉଦ୍ଧାର କରିବେ ନାହିଁ । ଗଭୀର ଯନ୍ତ୍ରଣାରେ ଜର୍ଜରିତ ତାଙ୍କର

ଆତ୍ମବିଶ୍ୱାସ ସେଦିନ ବ୍ୟାସଜୀଙ୍କୁ ସ୍ତମ୍ଭୀଭୂତ କରିଥିଲା । ଶେଷରେ ରୋଗ ବଢ଼ିଲା ଓ ଚିକିତ୍ସା ପାଇଁ ତାଙ୍କୁ କଲିକତା ନିଆଗଲା । ବିଜୟ ଚନ୍ଦ୍ର ସଚେତନ ଯେ ମୃତ୍ୟୁ ପ୍ରାୟ ନିକଟ । ପତ୍ନୀ ସରଳା ଦେବୀଙ୍କୁ ସେ ହଇରାଣ କରିବାକୁ ଲାଗିଲେ । କେତେକ ସାଥୀ ଦିନେ ଏକାନ୍ତରେ ସେ କାହିଁକି ପତ୍ନୀଙ୍କୁ ହଇରାଣ କରୁଛନ୍ତି ପଚାରିଲେ । ଲୋତକଭରା ଆଖିରେ ତାଙ୍କର ଉତ୍ତର ଥିଲା- 'ମୁଁ ଜାଣିଶୁଣି ତାଙ୍କୁ ହଇରାଣ କରୁଛି । ମୋର ଶେଷ ସମୟ ନିକଟ ହୋଇଆସୁଛି । ଏମିତି ଚାଲିଗଲେ ସରଳା ମୋତେ ଝୁରିହେବେ । ସବୁ କାର୍ଯ୍ୟରେ ମନ ମାରିଦେବେ । କିନ୍ତୁ ହଇରାଣ କରିଥିଲେ ସେ ଝୁରିବା ସହ ଆଶ୍ୱସ୍ତ ହେବେ । ଫଳରେ ତାଙ୍କ ପାଇଁ ଜୀବନ ଅର୍ଥଶୂନ୍ୟ ହେବ ନାହିଁ ।' କି ଗଭୀର ଆତ୍ମୀୟତା ଓ ମାନବିକତା ।

ତାଙ୍କର ମରଦେହକୁ ନିଜର ଉଡ଼ାଜାହାଜରେ ବିଜୁ ପଟ୍ଟନାୟକ କଲିକତାରୁ ଭୁବନେଶ୍ୱର ଆଣିଲେ । ଓଡ଼ିଶାର ବିଶିଷ୍ଟ ନେତୃବୃନ୍ଦ ଓ ବୁଦ୍ଧିଜୀବୀ ତାଙ୍କ ପ୍ରତି ଆବେଗଭରା ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ଡ. ହରେକୃଷ୍ଣ ମହତାବ ତାଙ୍କ ଶ୍ରାଦ୍ଧବାର୍ଷିକୀ ଅବସରରେ ଲେଖିଥିଲେ - "ସବୁ ଅବସ୍ଥାରେ ତାଙ୍କଠାରେ ମୁଁ ଯେଉଁ ମନୁଷ୍ୟତ୍ୱର ଚିହ୍ନ ଦେଖିଛି, ତାହା ସାଧାରଣତଃ ରାଜନୈତିକ ବ୍ୟକ୍ତିମାନଙ୍କଠାରେ ଦେଖାଯାଏ ନାହିଁ । ସେ ସମାଜର ଏକ ଖମ୍ବ ସଦୃଶ ଥିଲେ । ତାଙ୍କ ମୃତ୍ୟୁରେ ଓଡ଼ିଶାର ସାଧାରଣ ଜୀବନ ଦରିଦ୍ର ହୋଇଗଲା ।" ବ୍ୟାସଜୀଙ୍କ ଭାଷାରେ ବଞ୍ଚିଥିଲେ ସେ ଓଡ଼ିଶା ଆକାଶରେ ଉଜ୍ଜ୍ୱଳ ତାରକା ପରି ଚମକିଥାନ୍ତେ । ତାଙ୍କ ପରି ଜଣେ ନୀତିବାନ୍, ନିଃସ୍ୱାର୍ଥପର ଓ ମାନବ ଦରଦୀ ହେତୁବାଦୀଙ୍କର ୯୮ତମ ଜୟନ୍ତୀ ଅବସରରେ ତାଙ୍କୁ ସ୍ମରଣ କଲାବେଳେ ତାଙ୍କର ଆଦର୍ଶ ଯୁବଗୋଷ୍ଠୀକୁ ପ୍ରେରଣା ଦେବା ସହ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେଉ - ଏହା ହିଁ କାମନା । (ପ୍ରଗତିବାଦୀ - ୨୬.୫.୧୦)



# ଗାନ୍ଧୀ ମୋର ଅସ୍ତ୍ର

ଯେଉଁ କେତେକ ବ୍ୟକ୍ତି ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ବିଶିଷ୍ଟ ପ୍ରବକ୍ତା ଭାବେ ଇତିହାସରେ ଅମର ହୋଇଛନ୍ତି, ସେମାନଙ୍କ ମଧ୍ୟରେ ମାର୍ଟିନ ଲୁଥର କିଙ୍ଗ୍ ଜୁନିୟର ଏକ ପରିଚିତ ନାମ । ତାଙ୍କୁ ମାର୍ଟିନ ଲୁଥର୍ କିଙ୍ଗ୍ ଜୁନିୟର ଏଥିପାଇଁ କୁହାଯାଏ ଯେ, ତାଙ୍କ ବାପାଙ୍କ ନାମ ମଧ୍ୟ ଥିଲା ମାର୍ଟିନ ଲୁଥର କିଙ୍ଗ୍ । କିଙ୍ଗ୍ ଜୁନିୟର ଆମେରିକାରେ ନିଗ୍ରୋମାନଙ୍କର ନାଗରିକ ଅଧିକାର ଆନ୍ଦୋଳନର ଥିଲେ ଜଣେ ମହାନାୟକ ଓ ମାନବିକ ଅଧିକାରର ଜଣେ ମହାନ୍ ପ୍ରବକ୍ତା । ୧୯୬୪ରେ ମାତ୍ର ୩୫ ବର୍ଷ ବୟସରେ ସେ ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇବା ଏକ ଗୌରବାବହ ଘଟଣା । ତା'ର ଚାରିବର୍ଷ ପରେ ୧୯୬୮ରେ ମାତ୍ର ୩୯ ବର୍ଷ ବୟସରେ ଜଣେ ଆତତାୟୀର ଗୁଳିରେ ସେ ଶହୀଦ ହୋଇଥିଲେ ।

ଇତିହାସର ଏହା ଏକ ବିଡ଼ମ୍ବନା ଯେ ଯେଉଁ ବ୍ୟକ୍ତିମାନେ ସଭ୍ୟ ଜୀବନର ବାର୍ତ୍ତାବହ ହୋଇ ବିଶ୍ୱ ବିବେକର ପ୍ରତିନିଧି ହୋଇଛନ୍ତି ସେମାନଙ୍କୁ ସେମାନଙ୍କ ସମସାମୟିକ ସମାଜରେ ବହୁ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଛି । ସେମାନେ ଆତତାୟୀମାନଙ୍କ ଗୁଳିରେ ପ୍ରାଣ ହରାଇଛନ୍ତି, ମୃତ୍ୟୁଦଣ୍ଡ ପାଇଛନ୍ତି, କାରା ଜୀବନ ବିତାଇଛନ୍ତି ଓ ଜୀବନ ସଂଗ୍ରାମରେ ବହୁ ନୈରାଶ୍ୟର ମୁହୂର୍ତ୍ତ କଟାଇଛନ୍ତି । ଗାନ୍ଧୀ, ସକ୍ରେଟିସ୍, ଯୀଶୁଖ୍ରୀଷ୍ଟ, ମାର୍ଟିନ ଲୁଥର କିଙ୍ଗ୍ ଇତ୍ୟାଦିଙ୍କ ପରି କେତେକ ବ୍ୟକ୍ତି ମଣିଷ ସମାଜକୁ ସଭ୍ୟ ଜୀବନର ଆଲୋକ ଦେଇଛନ୍ତି । ଅନ୍ୟାୟ, ବର୍ବରତା, ଅମାନବିକତା ଓ ବିଚାରହୀନତା ବିରୋଧରେ ସଂଗ୍ରାମ କରିବା ଭିତରେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଛନ୍ତି । ସେମାନେ ମୋକ୍ଷ ପାଇବା ପାଇଁ କେଉଁଠି ଯାଇ ନିରୋଳାରେ ଯୋଗ କରିନାହାନ୍ତି, ବରଂ ଜୀବନସାରା ମାନବଦରଦୀ ହୋଇ ମଣିଷ ସମାଜର ନୈତିକ ଉତ୍ତରଣ ପାଇଁ ପ୍ରୟାସ କରିଛନ୍ତି । ନାନା ବର୍ବରତା ଓ ପ୍ରତିକ୍ରିୟାଶୀଳ ମାନସିକତା ବିରୋଧରେ ସ୍ୱର ଉଠାଇ ସଭ୍ୟ ଜୀବନର ମାର୍ଗଦର୍ଶକ ହୋଇଛନ୍ତି । ଏଥିପାଇଁ ସେମାନେ ଜଣେ ଜଣେ ସଂଗ୍ରାମୀ ପାଲଟିଛନ୍ତି ।

କିଙ୍ଗ୍ ଜୁନିୟର ବି ଥିଲେ ଜଣେ ସଂଗ୍ରାମୀ । ତାଙ୍କର ଆବିର୍ଭାବ ସମୟରେ ଆମେରିକା ସମାଜରେ କଳାଗୋରାଜନିତ ବର୍ଣ୍ଣବୈଷମ୍ୟ ଭେଦଭାବର ପ୍ରାଦୁର୍ଭାବ ବେଶ୍

ରହିଥିଲା । ଆଫ୍ରିକୀୟ ନିଗ୍ରୋମାନଙ୍କ ପ୍ରତି ଗୋରା ଆମେରିକୀୟମାନେ ବହୁ ବିଦ୍ୱେଷ ପୋଷଣ କରୁଥିଲେ । ନିଗ୍ରୋମାନେ ସମାଜର ସବୁ ସ୍ତରରେ ବର୍ଣ୍ଣବୈଷମ୍ୟର ଶିକାର ହେଉଥିଲେ । ପଞ୍ଚଦଶ ଶତାବ୍ଦୀରେ ଆମେରିକା ୟୁରୋପୀୟ ନାବିକମାନଙ୍କ ଦ୍ୱାରା ଆବିଷ୍କୃତ ହେବାପରେ ୟୁରୋପର ବହୁ ଦେଶରୁ ହଜାର ହଜାର ବ୍ୟକ୍ତି ଯାଇ ଆମେରିକାରେ ବାସ କରିବାକୁ ଲାଗିଲେ । ସାମ୍ରାଜ୍ୟବାଦୀ ଯୁଗରେ ସେମାନେ ଆଫ୍ରିକାରୁ ହଜାର ହଜାର ନିଗ୍ରୋମାନଙ୍କୁ କ୍ରୀତଦାସ ଭାବେ ନେଇ ସେଠାରେ ଜମି, ରାସ୍ତାଘାଟ, କଳକାରଖାନା ଇତ୍ୟାଦି ନିର୍ମାଣ କରିବାକୁ ଲାଗିଲେ । ନିରୀହ, ନିରାଶ୍ରୟ ଆଫ୍ରିକାର ଅଧିବାସୀ ନିଗ୍ରୋମାନଙ୍କୁ ଆଫ୍ରିକାରୁ ଜୋର ଜବରଦସ୍ତ ଆଣି ଅର୍ଥଲୋଭୀ ନିଷ୍ଠୁର ଦାସ ବ୍ୟବସାୟୀମାନେ ଆମେରିକାରେ ବିକ୍ରୟ କରୁଥିଲେ । ଗୃହପାଳିତ ପଶୁଙ୍କୁ କିଣିବା ଭଳି ଆମେରିକାରେ ବସତିସ୍ଥାପନ କରିଥିବା ୟୁରୋପୀୟମାନେ କଳା ଲୋକମାନଙ୍କୁ କିଣୁଥିଲେ ଓ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ସେତେବେଳର ଆମେରିକାର ଆଇନବ୍ୟବସ୍ଥା ଏହି ଦାସତ୍ୱ ପ୍ରଥାକୁ ସାହାଯ୍ୟ କରୁଥିଲା । ତେବେ ଆମେରିକୀୟ ସମାଜରେ କେତେକ ଦରଦୀ ବ୍ୟକ୍ତି ନିଗ୍ରୋମାନଙ୍କ ଉପରେ ହେଉଥିବା ଅମାନବିକ ଅତ୍ୟାଚାରର କାହାଣୀ ପ୍ରଥମେ ସାହିତ୍ୟରେ ପ୍ରକାଶ କଲେ । ହାରିଏଟ୍ ବିଚର ଷ୍ଟୋଙ୍କ ଲିଖିତ ଉପନ୍ୟାସ 'ଅଙ୍କଲ ଟମସ କେବିନ' ଦାସତ୍ୱ ପ୍ରଥା ବିରୋଧରେ ଥିଲା ଏକ ମାନବିକ ଆବେଦନ । ଏହା ସାମାଜିକ ସ୍ତରରେ ସଚେତନ ବ୍ୟକ୍ତିଙ୍କ ଭିତରେ ମର୍ମବେଦନା ସୃଷ୍ଟି କରିଥିଲା । କାଳକ୍ରମେ ଦାସତ୍ୱ ପ୍ରଥା ବିରୋଧରେ ଯେଉଁ ଜନମତ ପ୍ରକାଶ ପାଇଲା ତାହାରି ଆଧାରରେ ଆମେରିକା ସମାଜରେ ଏକ ଗୃହଯୁଦ୍ଧ ଆରମ୍ଭ ହେଲା । ଚାରି ପାଞ୍ଚବର୍ଷ ଧରି ଲାଗିଥିବା ଗୃହଯୁଦ୍ଧରେ ଆମେରିକା ଭାଗ ଭାଗ ହୋଇଯିବ ବୋଲି ପରିବେଶ ସୃଷ୍ଟି ହେଲା । ଦାସତ୍ୱ ପ୍ରଥାକୁ ସମର୍ଥନ କରୁଥିବା ଆମେରିକାର ଦକ୍ଷିଣାଞ୍ଚଳ ଓ ଏହାକୁ ବିରୋଧ କରୁଥିବା ଉତ୍ତରାଞ୍ଚଳ ଭିତରେ ଏହି ଗୃହଯୁଦ୍ଧ ଏକ ବିସ୍ଫୋରକ ସ୍ଥିତି ଆଡ଼କୁ ଆସିଥିଲା ।

ଏହି ସମୟରେ ଆମେରିକାର ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍‌ଙ୍କର ବଳିଷ୍ଠ ନେତୃତ୍ୱ ଯୋଗୁ ଗୃହଯୁଦ୍ଧ ବନ୍ଦ ହେଲା ଓ ଆଇନ ଦ୍ୱାରା ଦାସତ୍ୱ ପ୍ରଥାକୁ ବିଲୋପ କରାଗଲା । ଲିଙ୍କନଙ୍କର ଦୂରଦୃଷ୍ଟି, ବଳିଷ୍ଠ ନେତୃତ୍ୱ ଓ ଦାସତ୍ୱ ପ୍ରଥା ଜନିତ ଆଇନରେ ପରିବର୍ତ୍ତନ ଯୋଗୁ ଆମେରିକା ବିଭାଜନରୁ ରକ୍ଷା ପାଇଲା । ଆଇନ ଦୃଷ୍ଟିରେ ଦାସତ୍ୱ ପ୍ରଥାର ନିରାକରଣ କରାଯାଇ ଦାସମାନଙ୍କୁ ମୁକ୍ତ କରାଗଲା । ନାଗରିକ ଅଧିକାର ନେଇ ସେ ଯେଉଁ ବିଚାରର ସୂତ୍ରପାତ କଲେ ତାହା ସମାଜରେ ନୂତନ ଆଲୋଡ଼ନ ଆଣିଲା । ସେହିପରି ସେ ଗଣତନ୍ତ୍ରର ଯେଉଁ ବ୍ୟାଖ୍ୟା ଦେଇଥିଲେ, ତାହା ଏକ ସାର୍ବଜନୀନ ଆଦର୍ଶ ଭାବେ ବିଶ୍ୱ ଚିନ୍ତାମାନସକୁ

ଅନେକାଂଶରେ ପ୍ରଭାବିତ କରିଛି । ତେବେ ପରିତାପର ବିଷୟ ଯେ, ମାନବହିତୈଷୀ ଲିଙ୍କନ ମଧ୍ୟ ୧୮୬୫ରେ ଆତତାୟୀର ଗୁଳିରେ ଶହୀଦ ହୋଇଥିଲେ ।

ଲିଙ୍କନଙ୍କଠାରୁ କିଙ୍ଗ୍ ଜୁନିୟରଙ୍କ ଭିତରେ ରହିଥିବା ୧୦୦ ବର୍ଷର ବ୍ୟବଧାନ ସତ୍ତ୍ୱେ ଆମେରିକାର ସାମାଜିକ ଜୀବନରେ ବର୍ଣ୍ଣବୈଷମ୍ୟଜନିତ ଭେଦଭାବ ରହିଥିଲା । ଦାସତ୍ୱ ପ୍ରଥାର ବିଲୋପ ସତ୍ତ୍ୱେ ନିଗ୍ରୋମାନଙ୍କୁ ସାମାଜିକ ଜୀବନର ପ୍ରତ୍ୟେକ ସ୍ତରରେ ଭେଦଭାବର ଶିକାର ହେବାକୁ ପଡୁଥିଲା । ଶରୀରର ରଙ୍ଗ ଭେଦ ନେଇ ସମାଜରେ ଯେଉଁ ବୈଷମ୍ୟ କିଙ୍ଗ୍ ଜୁନିୟର ଦେଖୁଥିଲେ, ତାହା ବିରୋଧରେ ସେ ସାମାଜିକ କ୍ରାନ୍ତି ପାଇଁ ବାଟ ଖୋଜୁଥିଲେ । କିଙ୍ଗ୍ ଜୁନିୟରଙ୍କ ଆବିର୍ଭାବ ପୂର୍ବରୁ ଇତିହାସର ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ମହାତ୍ମା ଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ମଧ୍ୟ ବର୍ଣ୍ଣବୈଷମ୍ୟ ନୀତିର ଶିକାର ହୋଇଥିଲେ । ଗୋଟିଏ ରେଳଡବାରେ ପ୍ରଥମ ଶ୍ରେଣୀ ଟିକେଟନେଇ ଯାତ୍ରା କରୁଥିବା ବେଳେ ଜଣେ ଗୋରା ଲୋକଙ୍କ ପ୍ରବେଶ ଯୋଗୁ ତାଙ୍କୁ ରେଳଡବାରୁ ଧକ୍କାମାରି ବାହାରକରି ଦିଆଯାଇଥିଲା । ଏହି ଘଟଣାଟି ମୋହନଙ୍କ ପରି ଜଣେ ଲାଜକୁଳା ଡରୁଆ ମଣିଷ ଭିତରେ ବିପ୍ଲବର ଯେଉଁ ସ୍ଫୁଲିଙ୍ଗ ସୃଷ୍ଟି କରିଥିଲା, ତାହା ଦିନେ ଏକ ବିପ୍ଲବର ବହ୍ନିଶିଖାରେ ପରିଣତ ହୋଇଥିଲା । ବର୍ଣ୍ଣବୈଷମ୍ୟ ବରୋଧରେ ଆଫ୍ରିକାରେ ଆନ୍ଦୋଳନ ପରେ ସେ ଭାରତ ଫେରି ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଯେଉଁ ସଂଗ୍ରାମ ଆରମ୍ଭ କଲେ, ତାହାଦ୍ୱାରା ସମଗ୍ର ବିଶ୍ୱରେ ସାମ୍ରାଜ୍ୟବାଦର ମୂଳ ଦୋହଲି ଯାଇଥିଲା । ତେବେ ଗାନ୍ଧୀଙ୍କର ବିପ୍ଳବର ପନ୍ଥା ଥିଲା ସମ୍ପୂର୍ଣ୍ଣ ନୂତନ । ସେ ଅହିଂସା ଓ ସତ୍ୟାଗ୍ରହ ପଦ୍ଧତିର ଅଭିନବ ପ୍ରୟୋଗ କରି ଅନ୍ୟାୟ ବିରୋଧରେ ଯେଉଁ କ୍ରାନ୍ତିର ବାର୍ତ୍ତା ଆଣିଲେ, ତାହା ବିଶ୍ୱମାନସକୁ ବହୁ ଭାବରେ ପ୍ରଭାବିତ କଲା । ବିପ୍ଲବର ସଂଜ୍ଞାରେ ଗାନ୍ଧୀ ବିପ୍ଲବ ଆଣିଥିଲେ । କିଙ୍ଗ୍ ଜୁନିୟର ମଧ୍ୟ ଆମେରିକା ସମାଜରେ ବର୍ଣ୍ଣବୈଷମ୍ୟ ବିରୋଧରେ ଗାନ୍ଧୀଙ୍କ ପନ୍ଥାକୁ ପ୍ରୟୋଗ କରି ସଂଗ୍ରାମ ଆରମ୍ଭ କରିଥିଲେ । ଆପଣ ଯେଉଁ ବର୍ଣ୍ଣବୈଷମ୍ୟ ବିରୋଧରେ ଲଢ଼ିବାକୁ ଯାଉଛନ୍ତି ତାହାର ପନ୍ଥା କ'ଣ ? ଏକ ପ୍ରଶ୍ନର ଉତ୍ତରରେ କିଙ୍ଗ୍ ଜୁନିୟର ଉତ୍ତର ଦେଇଥିଲେ – 'ଗାନ୍ଧୀ ମୋର ଅସ୍ତ୍ର (ଗାନ୍ଧୀ ଇଜ୍ ମାଇଁ ୱିପନ)' ।

୧୯୬୩ ମସିହାରେ ୱାଶିଂଟନ୍‌ଠାରେ ଏକ ବିଶାଳ ନିଗ୍ରୋ ସମାବେଶରେ ସେ ଦେଇଥିବା ଉଦ୍‌ବୋଧନ 'ଆଇ ହାଭ ଏ ଡ୍ରିମ୍ (ମୋର ଏକ ସ୍ୱପ୍ନ ଅଛି)' ସମତା, ମାନବିକ ମର୍ଯ୍ୟାଦା ଓ ସାମାଜିକ ନ୍ୟାୟ ପୃଷ୍ଠଭୂମିରେ ଥିଲା ଏକ ଯୁଗାନ୍ତକାରୀ ଭାଷଣ । ଭାଷଣରେ ତାଙ୍କ ସ୍ୱପ୍ନର ଆମେରିକା ନେଇ ସେ ଯେଉଁ ସମାଜର ଭାବନା ବ୍ୟକ୍ତ କରିଥିଲେ, ତାହା ଦଳିତ, ନିଷ୍ପେସିତ ମଣିଷର ମୁକ୍ତି ପାଇଁ ଥିଲା ଏକ ବୈପ୍ଲବିକ ଆବାହନ ସଂଗୀତ ।

ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ନେତୃତ୍ୱ ଯୋଗୁ ଆମେରିକାର କଳା ନିଗ୍ରୋମାନେ ନାଗରିକ ଅଧିକାର ହାସଲ କରିବାକୁ ସମର୍ଥ ହୋଇଥିଲେ ।

ବର୍ଣ୍ଣ, ଧର୍ମ, ଜାତି, ଜାତୀୟତା, ଲିଙ୍ଗ ଆଧାରରେ ଆମ ସଂସାରରେ ନାନା ଭେଦଭାବ ଶହ ଶହ ବର୍ଷ ଧରି ରହିଆସିଛି । ବଳଶାଳୀ ଗୋଷ୍ଠୀ ରାଜନୈତିକ, ଅର୍ଥନୈତିକ ଓ ସାମରିକ ଶକ୍ତିକୁ ଆୟୁଧ କରି ଅଗଣିତ ମଣିଷଙ୍କୁ ଦଳିତ ଓ ନିଷ୍ପେସିତ କରି ଶୋଷଣ କରିଆସିଛନ୍ତି । ମଣିଷର ଦାସତ୍ୱ ଓ ଶୃଙ୍ଖଳ ବିରୋଧରେ ବିଭିନ୍ନ ସଂସ୍କୃତିରେ କିଛି ବିପ୍ଳବୀ ଯେଉଁ ସ୍ୱର ଉଠାଇଛନ୍ତି, ତାହା ହିଁ ସଭ୍ୟତା ଓ ଏକ ମାନବିକ ସଂସ୍କୃତିର ବିକାଶ କ୍ଷେତ୍ରରେ ପଥ ପ୍ରଦର୍ଶକ ହୋଇଛି । ହେଲେ ଏଥିପାଇଁ ମାନବ ଦରଦୀ ହେତୁବାଦୀ ବିପ୍ଳବୀମାନଙ୍କୁ ସମୟରେ ବହୁମୂଲ୍ୟ ଦେବାକୁ ପଡ଼ିଛି । ଏହା ହିଁ ସଭ୍ୟତାର ବିକାଶ କ୍ଷେତ୍ରରେ ଏକ ବଡ଼ ପ୍ରହେଳିକା । (୨.୬.୧୦)



# ସାମାଜିକ ଚରିତ୍ର

ଆମ ସାମାଜିକ ଚରିତ୍ରର ମାନ କେଉଁଠି ରହିଛି ? କେଉଁଠି ରହିଛି ଆମର ନାଗରିକ ଶୃଙ୍ଖଳାବୋଧ ? ଅବଶ୍ୟ ସାମାଜିକ ଚରିତ୍ର ବା ପବ୍ଲିକ କଣ୍ଡକ୍ଟ ଏକ ଜଟିଳ ଅବଧାରଣା । ଗୋଟିଏ ଜନଗୋଷ୍ଠୀର ସଂସ୍କୃତି ଯେପରି ଏକ ଜଟିଳ ଭାବନା, ସେହିପରି ଏକ ସାମାଜିକ ଗୋଷ୍ଠୀର ଚରିତ୍ର ଏକ ଜଟିଳ ପ୍ରତ୍ୟୟ । ତେବେ ସାଧାରଣ ଭାବେ କେତେକ ମାନଦଣ୍ଡ ଆଧାରରେ ଗୋଟିଏ ସାମାଜିକ ଗୋଷ୍ଠୀର ଚରିତ୍ରର ମୂଲ୍ୟାୟନ କରାଯାଇପାରେ ।

ସାମାଜିକ ପ୍ରବୃତ୍ତି ବ୍ୟକ୍ତିର ସହଜାତ । ଏହା ଏହି ଦୃଷ୍ଟିରୁ ସହଜାତ ଯେ ମଣିଷ ଶିଶୁଟି ସବୁଠାରୁ ଅସହାୟ । ପ୍ରାଣୀ ଜଗତରେ ମଣିଷର ମସ୍ତିଷ୍କ ସବୁଠାରୁ ଅଧିକ ବିକଶିତ । କାରଣ ମଣିଷ ଭାଷା ବ୍ୟବହାର କରିବା ସହ ତା'ର ପରିବେଶ ଓ ପରିସ୍ଥିତି ଉପରେ ବିଚାରଶୀଳ ଭାବରେ ନିୟନ୍ତ୍ରଣ ଆଣିବାକୁ ସମର୍ଥ । ସେଥିପାଇଁ କ୍ରମବିକାଶଧାରାରେ ମଣିଷ ସବୁବେଳେ ଉନ୍ନତିର ପାହାଚରେ ଆଗକୁ ଯାଉଛି । ଲକ୍ଷ ଲକ୍ଷ ବର୍ଷ ତଳେ ଗାଈ, କୁକୁର, ମାଙ୍କଡ଼, କାଉ ଇତ୍ୟାଦି ଯେଉଁଭଳି ଜୀବନ ବଞ୍ଚୁଥିଲେ, ଆଜି ମଧ୍ୟ ସେହି ସ୍ତରରେ ରହିଛନ୍ତି ଓ ସେମାନଙ୍କ ଜୀବନଶୈଳୀରେ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇନାହିଁ । କିନ୍ତୁ ମଣିଷ ? ଦୁଇ ତିନିଟି ପୀଢ଼ିର ମଣିଷମାନଙ୍କ ଜୀବନଶୈଳୀରେ ଗୁଣାତ୍ମକ ପରିବର୍ତ୍ତନ ବେଶ୍ ସୁସ୍ପଷ୍ଟ । ୧୦୦ ବର୍ଷ ତଳେ ମଣିଷର ଜୀବନଶୈଳୀ, ସାମାଜିକ ପରିବେଶ ଯାହା ଥିଲା ସମ୍ପ୍ରତି ସେଥିରେ ଉଲ୍ଲେଖନୀୟ ପରିବର୍ତ୍ତନ ସଂଘଟିତ ହେବା ଆମେ ଦେଖୁ । ସେହିପରି ଆମର ଦୃଷ୍ଟିଭଙ୍ଗୀ, ନୀତିବୋଧ, ଶିଷ୍ଟାଚାର, ଶିକ୍ଷା କ୍ଷେତ୍ରରେ ମଧ୍ୟ ଉଲ୍ଲେଖନୀୟ ପରିବର୍ତ୍ତନ ହେବା ସହଜରେ ଜଣାପଡ଼େ । ଏସବୁ କେବଳ ମଣିଷର ବିଚାରଶୀଳତା, ଅନୁସନ୍ଧିତ୍ସୁ ମନୋଭାବ, ସାମାଜିକ ସ୍ୱଭାବ ଯୋଗୁ ସମ୍ଭବ ହେବା ମନେହୁଏ । ମଣିଷ ପାଖରେ ଏସବୁ ଅନ୍ତର୍ନିହିତ ଭାବେ ରହିଥିଲେ ମଧ୍ୟ ମଣିଷ ଶିଶୁଟି ଅସହାୟ । ଜନ୍ମ ପରେ ବହୁବର୍ଷ ପର୍ଯ୍ୟନ୍ତ ସେ ପରିବାର, ସାମାଜିକ ଗୋଷ୍ଠୀ ଓ ବୃହତ୍ତର ପରିବେଶ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ । ମଣିଷ ଶିଶୁଟି ପରିବାରରୁ ଓ ଅନ୍ୟ ସ୍ତରରୁ ନିରନ୍ତର ଯତ୍ନ, ସାହାଯ୍ୟ ଓ ସହଯୋଗ ପାଇ ଗଢ଼ି ଉଠିଥାଏ । ସୁତରାଂ ମଣିଷର ସାମାଜିକ ସ୍ୱଭାବ ଅନ୍ତର୍ନିହିତ ଓ ସହଜାତ ।

ବ୍ୟକ୍ତି ଭିତରେ ରହିଥିବା ସାମାଜିକ ପ୍ରବୃତ୍ତି ଉପଯୁକ୍ତ ଶିକ୍ଷା ଓ ପରିବେଶରେ ବିକଶିତ ହୋଇପାରେ, ଅଥଚ ଏହାର ଅଭାବରେ ବ୍ୟକ୍ତି ସ୍ୱଭାବ ଅସାମାଜିକ ବି ହୋଇପାରେ । ବ୍ୟକ୍ତି ସ୍ୱଭାବରେ ପରସ୍ପର ବିରୋଧୀ ଲକ୍ଷଣ ରହିବା ସାଧାରଣ ଘଟଣା । ବ୍ୟକ୍ତି ଭିତରେ ବିଚାରବୋଧ, କୌତୂହଳ ପ୍ରବଣତା ଓ ଅନୁସନ୍ଧିତ୍ସୁ ମାନସିକତା ଯେପରି ରହିଛି, ସେହିପରି ଅହେତୁକ ଆବେଗ, ଅନ୍ଧବିଶ୍ୱାସ ଓ ରୁଦ୍ଧ ଦୃଷ୍ଟିଭଙ୍ଗୀ ମଧ୍ୟ ରହିଛି । ଏହାଛଡ଼ା ବ୍ୟକ୍ତି ସ୍ୱଭାବରେ ସ୍ୱାର୍ଥପର ମନୋଭାବ ଓ ଜାନ୍ତବ ପ୍ରବୃତ୍ତି ଯେପରି ରହିଛି ସେହିପରି ଦରଦୀ ହୃଦୟ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ମଧ୍ୟ ରହିଛି । କେହି ଅନ୍ୟକୁ ଦୁଃଖ ଯନ୍ତ୍ରଣା ଦେଇ ସେଥିରୁ ସୁଖ ପାଉଥିବା ବେଳେ କେହି ପରୋପକାର ଓ ଅନ୍ୟର କଲ୍ୟାଣ ପାଇଁ ନିଜର ସବୁ ସୁଖକୁ ପରିହାର କରିବା ବି ଦେଖାଯାଏ । ବ୍ୟକ୍ତି ସ୍ୱଭାବରେ ଏହିପରି ଭିନ୍ନତା ରହିବା ସାଧାରଣ ଘଟଣା ।

ବ୍ୟକ୍ତି ସ୍ୱଭାବର ଏହି ଭିନ୍ନତାକୁ କେତେକାଂଶରେ ମନୋବିଜ୍ଞାନ ସ୍ତରରେ ବ୍ୟାଖ୍ୟା କରାଯାଇପାରେ । ତେବେ ମୋଟ ଉପରେ କହିଲେ ପ୍ରତ୍ୟେକ ବ୍ୟକ୍ତି ଭିତରେ ବୌଦ୍ଧିକ ଓ ପ୍ରବୃତ୍ତିଗତ ସ୍ତର ରହିଥାଏ ଓ ସେମାନଙ୍କ ମଧ୍ୟରେ ପାର୍ଥକ୍ୟରୁ ବ୍ୟକ୍ତି ସ୍ୱଭାବର ଭିନ୍ନତାକୁ ଧାରଣା କରିହୁଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ କିଛି ମାନସିକ ସାମର୍ଥ୍ୟ ରହିଥାଏ, ଯାହା ଶିକ୍ଷା ଓ ସାମାଜିକ ପରିବେଶରେ ଅଧିକ ବିକଶିତ ହୋଇଥାଏ । ଏହାଦ୍ୱାରା ସେ ନିଜର ବୁଦ୍ଧି ଓ ବିଚାର ପ୍ରୟୋଗ କରି କିଛି ବୁଝିବାକୁ ପ୍ରଯତ୍ନ କରିଥାଏ । ସେହିପରି ବ୍ୟକ୍ତିର ପ୍ରବୃତ୍ତିଗତ ସ୍ତରରେ କାମନା, ଅଭାବବୋଧ, ଇଚ୍ଛା, ଅଭିଳାଷ ଇତ୍ୟାଦି ରହିଥାଏ । ବ୍ୟକ୍ତି ବଞ୍ଚିରହିବା ପାଇଁ ତା'ର ଆବଶ୍ୟକତା ତା'ର ପ୍ରବୃତ୍ତିଗତ ସ୍ତରରୁ ଆସିଥାଏ । ବ୍ୟକ୍ତି ତାହାର ବୁଦ୍ଧିକୁ ସାଧନ ଭାବେ ପ୍ରୟୋଗ କରି ଜୀବନର ଅଭିଳକ୍ଷିତ ଲକ୍ଷ୍ୟକୁ ପୂରଣ କରିବାକୁ ପ୍ରଯତ୍ନ କରିଥାଏ । ବ୍ୟକ୍ତିର ଆବେଗିକ ବା ପ୍ରବୃତ୍ତିଗତ ସ୍ତରରେ ଇଚ୍ଛା ଉନ୍ନତ, ମାର୍ଜିତ ହୋଇପାରେ କିମ୍ବା ଅନୈତିକ ଓ ଅସାମାଜିକ ସ୍ତରର ହୋଇପାରେ । ମଣିଷର ବୁଦ୍ଧି ଭଲ ଦିଗରେ ପରିଚାଳିତ ହୋଇପାରେ କିମ୍ବା ନିଜର ଅଭିଳକ୍ଷିତ ଲକ୍ଷ୍ୟ ହାସଲ ପାଇଁ ମନ୍ଦ ଦିଗରେ ପରିଚାଳିତ ହୋଇପାରେ । ଏଠାରେ ବୁଦ୍ଧି ଓ ଉତ୍ତମ ସ୍ୱଭାବ ମଧ୍ୟରେ ପାର୍ଥକ୍ୟ କରାଯାଇପାରେ । ଅନୁଭୂତିରୁ ଏହା ସ୍ପଷ୍ଟ ଯେ ବୁଦ୍ଧିମାନ ହେବା ଓ ଉତ୍ତମ ସ୍ୱଭାବ ବିଶିଷ୍ଟ ହେବା ଭିତରେ ପାର୍ଥକ୍ୟ ରହିଛି । ଜଣେ ବୁଦ୍ଧିମାନ ବ୍ୟକ୍ତି ଉତ୍ତମ ସ୍ୱଭାବ ବିଶିଷ୍ଟ ହୋଇପାରେ କିମ୍ବା ଧୂର୍ତ୍ତ ଓ ଅତ୍ୟନ୍ତ ଅନୈତିକ ହୋଇପାରେ । ସେହିପରି ଜଣେ ଉତ୍ତମ ସ୍ୱଭାବ ବିଶିଷ୍ଟ ବ୍ୟକ୍ତି ଅତ୍ୟନ୍ତ ସରଳ ବିଶ୍ୱାସୀ ଓ ଏପରିକି ଅତ୍ୟନ୍ତ ଅନ୍ଧବିଶ୍ୱାସୀ ମଧ୍ୟ ହୋଇପାରେ । ମୋଟ ଉପରେ କହିଲେ ସମାଜର ସାଧାରଣ ମଣିଷମାନେ ନିଷ୍କପଟ, ପରୋପକାରୀ ଓ ସରଳ ହୋଇପାରନ୍ତି ଅଥଚ ସମାଜର ଉଚ୍ଚଶିକ୍ଷିତ ଓ ସଚେତନ ବ୍ୟକ୍ତିମାନେ ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ ଓ ସ୍ୱାର୍ଥପର ମଧ୍ୟ ହୋଇପାରନ୍ତି ।

ଏହି ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ଯେଉଁଠି ସାମାଜିକ ପରିବେଶ ଉନ୍ନତ ହୋଇପାରିଛି, ସେଠାରେ ତାହା ବ୍ୟକ୍ତି ସ୍ୱଭାବକୁ ଅନେକାଂଶରେ ପ୍ରଭାବିତ କରିଥାଏ । ଯେଉଁଠି ଲୋକମାନେ ନାଗରିକ ଶୃଙ୍ଖଳାକୁ ଜୀବନଧାରାରେ ମିଶାଇ ଦେଇଛନ୍ତି ବା ଏହା ନେଇ ସାମାଜିକ ଦୃଶ୍ୟପଟ ଉନ୍ନତ ହୋଇଛି ସେଠାରେ ବ୍ୟକ୍ତି ଚରିତ୍ର ଉନ୍ନତ ହେବା ସ୍ୱାଭାବିକ ମନେହୁଏ । ବିଶେଷକରି ଜଣେ ବ୍ୟକ୍ତି ତା'ର ନ୍ୟାୟୋଚିତ କାର୍ଯ୍ୟଟି ଯଦି ଅକ୍ଳେଶରେ କରାଇପାରେ ଓ ସେଥିପାଇଁ ପ୍ରତିବନ୍ଧକର ସମ୍ମୁଖୀନ ହୁଏନାହିଁ ତାହା ଏକ ଭଲ ବ୍ୟବସ୍ଥା କୁହାଯାଇପାରିବ । ସେହିପରି ସାଧୁତା, କର୍ତ୍ତବ୍ୟନିଷ୍ଠା, ନିଜର କାର୍ଯ୍ୟକ୍ଷେତ୍ରରେ ଉତ୍ତରଦାୟୀ ମନୋଭାବ ଯଦି ସମାଜର ସାଧାରଣ ଧାରା ହୋଇଥାଏ, ତେବେ ତାହାକୁ ଉନ୍ନତ ବ୍ୟବସ୍ଥା କୁହାଯାଇପାରିବ । ପୁନଶ୍ଚ ଆଇନ ପ୍ରତି ସମ୍ମାନ, ବ୍ୟକ୍ତି ମର୍ଯ୍ୟାଦାର ପରିବେଶ ଓ ମଣିଷ ପ୍ରତି ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଯେଉଁଠି ବ୍ୟାପକ ଭାବରେ ଜୀବନଧାରାର ଅଙ୍ଗ ହୋଇଥାଏ, ତାହାକୁ ପ୍ରଗତିଶୀଳ ପରିବେଶ କୁହାଯାଇପାରିବ । ଏତଦ୍‌ବ୍ୟତୀତ ବୃହତ୍ତର ସମାଜ ଉପରେ ବିଶ୍ୱାସ ଓ ସାମାଜିକ ଜୀବନଧାରାରେ ଯଥାର୍ଥ କର୍ମସଂସ୍କୃତିର ଅଭିବ୍ୟକ୍ତି ସମାଜକୁ ଉନ୍ନତ କରିଥାଏ । ମୋଟ ଉପରେ କହିଲେ ନାଗରିକ ଶୃଙ୍ଖଳାବୋଧ, ସାଧୁତା, ଆଇନ ପ୍ରତି ସମ୍ମାନ, କର୍ମସଂସ୍କୃତି ଓ ମାନବିକ ମର୍ଯ୍ୟାଦାବୋଧ ପ୍ରତି ସମ୍ମାନବୋଧର ଆଧାର ଉପରେ ସାମାଜିକ ଜୀବନର ଗୁଣାତ୍ମକ ମାନ ନିର୍ଭର କରିଥାଏ । ଯେଉଁଠି ଏହି ପରିବେଶ ଯେତେ ଉନ୍ନତ ସେଠିକାର ଜନଗଣ ସେତେ ସଭ୍ୟ ଓ ସଂସ୍କୃତିସମ୍ପନ୍ନ । ଅଥଚ ଯେଉଁଠି ଏହି ପରିବେଶ ଅନୁନ୍ନତ ସେଠିକାର ସାମାଜିକ ଜୀବନ ପ୍ରବାହ ସେତେ କ୍ଷୟଶୀଳ ।

ଏହି ମାନଦଣ୍ଡରେ ଦେଖିଲେ ଆମର ସାମାଜିକ ଚରିତ୍ରର ମାନ ବିଶେଷ ଉନ୍ନତ ନଥିବା ସହଜରେ ଅନୁମେୟ । ଦୁର୍ନୀତି ଆମ ପ୍ରଶାସନିକ ଓ ରାଜନୈତିକ ଦୃଶ୍ୟପଟରେ ଏକ ସାଧାରଣ ଘଟଣା । ଜଣେ ନାଗରିକର କାର୍ଯ୍ୟଟି ଯେତେ ଯଥାର୍ଥ ଓ ନ୍ୟାୟୋଚିତ ହେଲେ ବି ଏହା ସହଜରେ ହୋଇପାରେ ନାହିଁ । ଜମି ଖଣ୍ଡିଏ କିଣିବାରେ, ଏକ ଲାଇସେନ୍‌ସ ପାଇବାରେ, ଲୋନଟିଏ କରିବାରେ ନାନା ନିତିଦିନିଆ ଘଟଣାରେ ଜଣେ ସାଧାରଣ ନାଗରିକର କାର୍ଯ୍ୟଟି ଆମ ବ୍ୟବସ୍ଥାରେ ଅକ୍ଳେଶରେ ହୋଇପାରେ ନାହିଁ । ପ୍ରଶାସନିକ ସ୍ତରରେ କର୍ମସଂସ୍କୃତି ନେଇ କୌଣସି ଉତ୍ତରଦାୟିତ୍ୱବୋଧ ଆମ ବ୍ୟବସ୍ଥାରେ ସୁଦୃଢ଼ ଭିତ୍ତି ନେଇପାରି ନାହିଁ । ସେହିପରି ଆମ ବଜାରରେ ନିମ୍ନମାନର ଜିନିଷକୁ ଅସଲି କହି ବିକ୍ରି କରିବାର ମନୋଭାବ ବହୁ ବ୍ୟାପକ । ଏପରିକି ଆମେ ପ୍ରତିଦିନ ବ୍ୟବହାର କରୁଥିବା କେତେକ ଖାଦ୍ୟପଦାର୍ଥ ଓ ଔଷଧ ଅପମିଶ୍ରିତ ଓ ନିମ୍ନମାନର । ଆଇନକୁ ହାତକୁ ନେବା ଆମ ଜନଜୀବନରେ ଅତି ସାଧାରଣ ଘଟଣା । ସାଧାରଣ କଥାକୁ ନେଇ ମହାଭାରତ, ରାସ୍ତାରୋକୋ, ଟାୟାର ପୋଡ଼ି, ଭଙ୍ଗାରୁଜା, କଥାକଥାକେ ବନ୍ଦ ଡାକରା,

ହରତାଳ, ଜନଜୀବନରେ ପ୍ରତିଦିନ କେଉଁଠି କେଉଁଠି ଘଟୁଥାଏ । ସରକାରୀ ଅଫିସ୍, ବସ୍‌ଷ୍ଟାଣ୍ଡ, ଡାକ୍ତରଖାନା ଓ ସର୍ବସାଧାରଣ ସ୍ଥାନରେ ଆମର ପରିମଳ ବ୍ୟବସ୍ଥା କେତେ ନିମ୍ନମାନର ତାହା କହିବା ନିଷ୍ପ୍ରୟୋଜନ । ସନ୍ତ୍ରାସବାଦ, ସାମ୍ପ୍ରଦାୟିକ ଭାବପ୍ରବଣତା, ଜାତିଗତ ସଂଘର୍ଷ, ଉଚ୍ଚନୀଚ ଭେଦଭାବ ଆମ ସାମାଜିକ ଜୀବନଧାରାରେ ବ୍ୟତିକ୍ରମ ନହେବା ଅତି ସାଧାରଣ ଘଟଣା । ସାଧାରଣ ସ୍ଥାନରେ ଓ ଏପରିକି ଶିକ୍ଷାନୁଷ୍ଠାନମାନଙ୍କରେ ଶୃଙ୍ଖଳାବୋଧର ଘୋର ଅଭାବ । ବହୁ କ୍ଷେତ୍ରରେ ଯୁବକମାନଙ୍କର ସାମାଜିକ ଦାୟିତ୍ୱବୋଧ ନିରୁତ୍ସାହଜନକ । ପୂଜାପୀଠମାନଙ୍କରେ ପୂଜକମାନଙ୍କର ଶୋଷଣ ଓ ଅଶୋଭନୀୟ ଆଚରଣ ବି ଆମର ଦେହସୁହା । ଏହି ଉଦାହରଣ ବେଶ୍ ସୁଦୀର୍ଘ ।

ନାଗରିକ ବିଶୃଙ୍ଖଳା ଓ ପନ୍ଥାର ପବିତ୍ରତା ନେଇ ସ୍ପର୍ଶକାତରଶୂନ୍ୟ ମନୋଭାବ ଜନଜୀବନରେ ଏତେ ବ୍ୟାପକ ଯେ, ଏଥିରୁ ଆମ ସାମାଜିକ ଚରିତ୍ରର ସ୍ୱରୂପକୁ ସହଜରେ ଆକଳନ କରାଯାଇପାରେ । ଏହି ପ୍ରକାରର ଏକ ସାମାଜିକ ପରିବେଶରେ ସାଧାରଣ ମଣିଷଟିଏ ସମାଜ ଉପରେ ଅବିଶ୍ୱାସର ମନୋଭାବ ଆଣିବା ସ୍ୱାଭାବିକ ମନେହୁଏ । ଏହି ପରିସ୍ଥିତିରେ ଦିଅଁ ଦେବତାରେ ବିଶ୍ୱାସ, ଭାଗ୍ୟ ଓ ରାଶିଫଳରେ ଆସ୍ଥା ସ୍ଥାପନ ତା' ପାଇଁ ସାଧାରଣ ଘଟଣା ହୋଇଥାଏ । ତେବେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଁ କଳ୍ପିତ ଦିଅଁ ଦେବତାକୁ ପ୍ରାର୍ଥନା କରିବା ଅଜ୍ଞତାର ପରିଚାୟକ । ଯେଉଁଠି ମଣିଷ ବୃହତ୍ତର ସମାଜ ଉପରେ ନିର୍ଭର କରିପାରେ ନାହିଁ ବା ଅନେକ ସ୍ତରରେ ଉପେକ୍ଷିତ ହୁଏ, ସେହି ପରିବେଶରେ ଅସହାୟବୋଧରୁ ମୁକ୍ତି ପାଇଁ ସେ ଠାକୁରଙ୍କୁ ମାନସିକ କରେ, କ'ଣ ପାଇଲେ କ'ଣ ଦେବ ତାହା ଭାବିଥାଏ । ଦିଅଁ ଦେବତା, ଭାଗ୍ୟ, କର୍ମଫଳ, ବାବା, ମାତା ତା' ଦୁନିଆରେ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଯାଏ । ଇହ ଜୀବନରେ ନାନା ବ୍ୟର୍ଥତାରୁ ସେ ଧାର୍ମିକ ମାନସିକତା ଭିତରେ ପାରଲୌକିକ ଜୀବନର ସ୍ୱପ୍ନ ଦେଖେ । ଏହା ଯେ ଅଜ୍ଞତାଜନିତ ଆତ୍ମପ୍ରତାରଣା ଏହା କହିଲେ ଅତ୍ୟୁକ୍ତି ହେବନାହିଁ । (୯.୬.୧୦)



# ଚାର୍ବାକ ଦର୍ଶନ : ସ୍ଥିତି ଓ ସ୍ୱରୂପ

ଚାର୍ବାକ କିଏ ? କ'ଣ ତାଙ୍କ ଦର୍ଶନର ବାର୍ତ୍ତା ? ପ୍ରାଚୀନ ଭାରତୀୟ ଦର୍ଶନ ଇତିହାସରେ ଥିବା ନ'ଟି ଦାର୍ଶନିକ ପରମ୍ପରା ଭିତରୁ ଚାର୍ବାକ୍ ଦର୍ଶନ ଅନ୍ୟତମ । ଭାରତୀୟ ଦର୍ଶନ ପରମ୍ପରାରେ ଥିବା ଦର୍ଶନମାନଙ୍କୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଏ ଯଥା ଆସ୍ତିକ ଦର୍ଶନ ଓ ନାସ୍ତିକ ଦର୍ଶନ । ଯେଉଁ ଦାର୍ଶନିକ ପରମ୍ପରା ସକଳ ବେଦର ପ୍ରାଧାନ୍ୟକୁ ସ୍ୱୀକାର କରନ୍ତି, ସେମାନେ ଆସ୍ତିକ ଦର୍ଶନ ଓ ଯେଉଁମାନେ କରନ୍ତି ନାହିଁ, ସେମାନେ ନାସ୍ତିକ ଦର୍ଶନ ଭାବେ ପରିଗଣିତ । ନାସ୍ତିକ ଦର୍ଶନ କ୍ଷେତ୍ରରେ ବୌଦ୍ଧଦର୍ଶନ, ଜୈନଦର୍ଶନ ଓ ଚାର୍ବାକ ଦର୍ଶନ ସଂଶ୍ଳିଷ୍ଟ । ଚାର୍ବାକ ଦର୍ଶନକୁ ପରମ୍ପରାରେ ଲୋକାୟତ ଦର୍ଶନ ବୋଲି ଅଭିହିତ କରାଯାଏ ।

ଚାର୍ବାକ୍ ଦର୍ଶନ ଓ ଅନ୍ୟ ଦର୍ଶନ ଭିତରେ ମୌଳିକ ପାର୍ଥକ୍ୟ ରହିଛି । ଚାର୍ବାକ୍ ଦର୍ଶନ ବ୍ୟତୀତ ପ୍ରତ୍ୟେକ ଦର୍ଶନ ପରମ୍ପରାର ବିପୁଳ ସାହିତ୍ୟ ରାଜି ରହିଛି । ପ୍ରତ୍ୟେକ ଦାର୍ଶନିକ ପରମ୍ପରା ଜଣେ ଦାର୍ଶନିକଙ୍କ ମୂଳଲେଖାରୁ ଆରମ୍ଭ ହୁଏ । ସେହି ଲେଖା ଉପରେ ସମୀକ୍ଷାମାନ କାଳକ୍ରମେ ଲେଖାଯାଇଛି । ଗୋଟିଏ ମତକୁ ବ୍ୟାଖ୍ୟା କରିବାକୁ ଲେଖାଯାଇଥିବା ସମୀକ୍ଷା ବା ଟୀକା, ସମୀକ୍ଷା ଉପରେ ସମୀକ୍ଷାମାନ ସୃଷ୍ଟି ହୋଇ ପ୍ରତ୍ୟେକ ଦର୍ଶନ ପରମ୍ପରାର ଏକ ବିପୁଳ ସାହିତ୍ୟ ସମ୍ଭାର ରହିଛି । ଏହା ଆସ୍ତିକ ଓ ନାସ୍ତିକ ସକଳ ଦର୍ଶନ କ୍ଷେତ୍ରରେ ସତ୍ୟ ହେଲେ ମଧ୍ୟ ପରିତାପର ବିଷୟ ଯେ, ଚାର୍ବାକ ଦର୍ଶନର କୌଣସି ପ୍ରାମାଣିକ ଗ୍ରନ୍ଥ ବା କୃତି ନାହିଁ । ପରମ୍ପରାରେ ତାହା ନଷ୍ଟ ହୋଇଯାଇଛି । ଇତିହାସର କୌଣସି କାଳଖଣ୍ଡରେ ରାଜତନ୍ତ୍ର ଯୁଗରେ ଧାର୍ମିକ ବା ବୌଦ୍ଧିକ ଅସୂୟା ଜନିତ କାରଣରୁ ଚାର୍ବାକ ଦର୍ଶନର ସମସ୍ତ କୃତିକୁ ନଷ୍ଟ କରାଯାଇଛି । ଭାରତବର୍ଷର ଏକ ଗଣଧର୍ମ ବୌଦ୍ଧଧର୍ମ ଯେପରି ଲୋପ ପାଇଛି, ସେହିପରି ଇତିହାସରେ ଚାର୍ବାକ ଦର୍ଶନର ସମସ୍ତ କୃତି ଧ୍ୱଂସ ପାଇଛି । ତେବେ ଭାରତବର୍ଷରୁ ବୌଦ୍ଧଧର୍ମ ଓ ବୌଦ୍ଧ ସାହିତ୍ୟ ବହୁ ଦେଶକୁ ଯାଇଥିବାରୁ ବୌଦ୍ଧଧର୍ମର ଅନେକ କୃତି ରହିପାରିଛି । ଅଥଚ ଚାର୍ବାକ ଦର୍ଶନର କୌଣସି କୃତି କେଉଁଠାରେ ବର୍ତ୍ତମାନ ସୁଦ୍ଧା ଉପଲବ୍ଧ ହୋଇନାହିଁ । ପ୍ରହେଳିକାର ବିଷୟ ଚାର୍ବାକ ଦର୍ଶନକୁ ଅନ୍ୟାନ୍ୟ ଦର୍ଶନରେ ଯେଉଁ ଖଣ୍ଡନ କରାଯାଇଛି ସେହି ସମାଲୋଚନା ଆଧାରରେ ଚାର୍ବାକ ଦର୍ଶନର ଭାବଧାରା କ'ଣ ହୋଇଥିବ ତାହା ଅନୁମାନ କରାଯାଇଛି ।

ଚାର୍ବାକ ଦର୍ଶନକୁ ଖଣ୍ଡନ କରିବାକୁ ଯାଇ ବିଭିନ୍ନ ଦାର୍ଶନିକ ଗୋଷ୍ଠୀ ଚାର୍ବାକ ମତର ଯେଉଁ ଉଦ୍ଧୃତିମାନ ଦେଇଛନ୍ତି ତାହାରି ଆଧାରରେ ଚାର୍ବାକ ଦର୍ଶନ ଉତ୍ପତ୍ତିର ପ୍ରାୟ ଦୁଇ ହଜାର ବର୍ଷ ପରେ ମାଧବାଚାର୍ଯ୍ୟ ସର୍ବଦର୍ଶନ ସଂଗ୍ରହରେ ପ୍ରଥମେ ଚାର୍ବାକ ଦର୍ଶନର ସିଦ୍ଧାନ୍ତ ବିଷୟରେ ଧାରଣା ଦେଇଛନ୍ତି । ପରବର୍ତ୍ତୀ ଯୁଗରେ ଚାର୍ବାକ୍ ଦର୍ଶନ ବିଷୟରେ ଯେଉଁ ଧାରଣା ସୃଷ୍ଟି ହୋଇଛି, ତାହା ମାଧବାଚାର୍ଯ୍ୟଙ୍କ ଲେଖାକୁ ନେଇ ସୃଷ୍ଟି ହୋଇଛି । ତେବେ ମାଧବାଚାର୍ଯ୍ୟ ବେଦାନ୍ତ ଦର୍ଶନର ଜଣେ ପ୍ରବକ୍ତା, ଯେ ସମ୍ପୂର୍ଣ୍ଣ ଭାବେ ଭାବବାଦୀ ଭାବନାର ପୃଷ୍ଠପୋଷକ । ଆଧୁନିକ ଗବେଷକମାନଙ୍କ ମତରେ ଚାର୍ବାକ ଦର୍ଶନ ଉପରେ ତାଙ୍କର ମତ ନିର୍ଭରଯୋଗ୍ୟ ନୁହେଁ । ଗବେଷକଙ୍କ ମତରେ ଉପନିଷଦ, ଭଗବଦ୍‌ଗୀତା, ବେଦାନ୍ତ, ବୌଦ୍ଧ ଇତ୍ୟାଦି ଦର୍ଶନରେ ଚାର୍ବାକ୍ ମତର ସମାଲୋଚନା ରହିଛି । ସୁତରାଂ ଚାର୍ବାକ୍ ଉପନିଷଦ ଓ ବୁଦ୍ଧଙ୍କ ପୂର୍ବବର୍ତ୍ତୀ ବୋଲି ଅନୁମାନ କରାଯାଏ । ତେବେ କେଉଁ ମତ ଚାର୍ବାକଙ୍କର ଓ କେଉଁ ମତକୁ ସହଜରେ ସମାଲୋଚନା କରିହେବ ବୋଲି ତାଙ୍କ ମତ ଭାବେ ନିଆଯାଇଛି ତାହା ବି ନିର୍ଣ୍ଣୟ କରିବା କଷ୍ଟ । ଅନ୍ୟ ଦାର୍ଶନିକ ପରମ୍ପରାରେ ଯେଉଁ ମତକୁ ଖଣ୍ଡନ କରିହେବ, ସେହି ମତ ଚାର୍ବାକ ମତ ବୋଲି ଅଭିହିତ କରିବାର ସମ୍ଭାବନା ଅଧିକ । ଅର୍ଥାତ୍ ଚାର୍ବାକ୍ ଦର୍ଶନର ସମାଲୋଚକମାନେ ନିଜର ମତକୁ ପ୍ରତିଷ୍ଠା କରିବା ପାଇଁ ଚାର୍ବାକ୍ ଦର୍ଶନର ଯେଉଁ ମତକୁ ସହଜରେ ସମାଲୋଚନା କରିପାରିବେ, ତାହାକୁ ଚାର୍ବାକ୍ ମତ ବୋଲି ପ୍ରକାଶ କରିବା କେତେକ ଗବେଷକ ମତପୋଷଣ କରିଛନ୍ତି ।

ଚାର୍ବାକ୍ ଦର୍ଶନ ପୃଷ୍ଠଭୂମିରେ ବୃହସ୍ପତି ଓ ଭାଗୁରୀ ନାମକ ଦୁଇଜଣ ଭୌତିକବାଦୀ ବିଚାରକଙ୍କ ନାମ ମଧ୍ୟ ଉଠିଥାଏ । ସୁତରାଂ ଚାର୍ବାକ ଦର୍ଶନର ଏକ ପରମ୍ପରା ଭାରତରେ ଯେ ରହିଥିଲା ଏହା ଅନୁମାନ କରାଯାଏ । ତେବେ ପ୍ରଶ୍ନ ଉଠେ ଚାର୍ବାକ କିଏ ? ସେ ଜଣେ ଐତିହାସିକ ବ୍ୟକ୍ତି ନା ଏକ ବିଚାରର ପ୍ରତୀକ ? ଏ କ୍ଷେତ୍ରରେ ମଧ୍ୟ ବିଭିନ୍ନ ମତ ରହିଥିବା ଜଣାଯାଏ । ଗୋଟିଏ ମତରେ ଚାର୍ବାକ୍ ଏକ ବ୍ୟକ୍ତି ନୁହନ୍ତି, ଏକ ବିଚାର । ଚର୍ବ ଶବ୍ଦରୁ ଚାର୍ବାକ୍ ଶବ୍ଦର ଉତ୍ପତ୍ତି । ଯେଉଁ ଦର୍ଶନ ଈଶ୍ୱର, ଆତ୍ମା, ପରଲୋକ, ସ୍ୱର୍ଗ, ନରକ ଇତ୍ୟାଦିର ଭାବନାକୁ ଯୁକ୍ତି ଦ୍ୱାରା ଅସତ୍ୟ ବୋଲି ପ୍ରତିପାଦିତ କରିଥାଏ, ତାହା ହେଲା ଚାର୍ବାକ ଦର୍ଶନ । ଅନ୍ୟ ଏକ ମତରେ ଚାର୍ବାକ ଶବ୍ଦ ଚାରୁ ଓ ବାକ୍ ଶବ୍ଦରୁ ଉତ୍ପନ୍ନ । ଚାରୁ ଅର୍ଥ ମଧୁର ଓ ବାକ୍ ଅର୍ଥ ବଚନ । ସୁଖ, ଶାନ୍ତି ଓ ଆନନ୍ଦର ସହ ଜୀବନଧାରଣ କର – ଏହି ପ୍ରକାର ମଧୁର ବାଣୀ ଶୁଣାଉଥିବା ଜୀବନ ଦର୍ଶନକୁ ଲୋକମାନେ ଚାର୍ବାକ୍ ଦର୍ଶନ କହିଥାନ୍ତି । ତୃତୀୟ ମତରେ ଚାର୍ବାକ ଜଣେ ଐତିହାସିକ ବ୍ୟକ୍ତି ଓ ଜଣେ କ୍ରାନ୍ତିକାରୀ ବିଚାରକ । ଏହା ଭିତରୁ କେଉଁ ମତଟି ଠିକ୍ ତାହା କହିବା ସହଜ ନୁହେଁ । ଯେଉଁ ମତ ଯଥାର୍ଥ ହେଉ ନା କାହିଁକି ଏହି ଦର୍ଶନରେ ଜ୍ଞାନ, ତତ୍ତ୍ୱ ଓ ଆଚାର ଉପରେ ଗଭୀର

ଅନୁଶୀଳନ ହୋଇଥିବା ଅନୁମାନ କରାଯାଏ, ଯାହାକି ଏକ ଦାର୍ଶନିକ ତତ୍ତ୍ୱର ଅପରିହାର୍ଯ୍ୟ ପ୍ରସଙ୍ଗ ।

ଚାର୍ବାକ୍ ଦର୍ଶନକୁ ଲୋକାୟତ ଦର୍ଶନ କୁହାଯାଏ । କାରଣ ଏହି ଦର୍ଶନର ସମସ୍ତ ସିଦ୍ଧାନ୍ତମାନ ଦୃଶ୍ୟମାନ ଜଗତ ଓ ଆମର ବାସ୍ତବ ଜୀବନ ଉପରେ ଆଧାରିତ । ଯେଉଁମାନେ କୌଣସି କଳ୍ପିତ ସ୍ୱର୍ଗ, ନରକ, ମୋକ୍ଷ, ପାରଲୌକିକ ବିଶ୍ୱାସରେ ଆସ୍ଥା ସ୍ଥାପନ ନ କରି ଇହଲୋକ ବା ଜଗତକୁ ନେଇ ସେମାନଙ୍କର ସିଦ୍ଧାନ୍ତମାନ ନିର୍ମାଣ କରିଥାନ୍ତି, ସେମାନଙ୍କ ବିଚାରକୁ ଲୋକାୟତ ଦର୍ଶନ କୁହାଯାଏ ।

ଚାର୍ବାକ୍ ଦର୍ଶନ ଏକ ବସ୍ତୁବାଦୀ ବା ଭୌତିକବାଦୀ ଦର୍ଶନ । ଏହାର ଜ୍ଞାନମୀମାଂସା ଆଧୁନିକ ବିଚାର ସମ୍ମତ । ଜ୍ଞାନର ମୂଳ ଭିତ୍ତି କ'ଣ ? ଏହା ଆଧୁନିକ ବିଜ୍ଞାନ ଓ ଦର୍ଶନର ଏକ ମୁଖ୍ୟ ପ୍ରସଙ୍ଗ । ଚାର୍ବାକ ମତରେ ପ୍ରତ୍ୟକ୍ଷ ହିଁ ସକଳ ଜ୍ଞାନର ଆଧାର । ଚାର୍ବାକ୍‌ପନ୍ଥୀମାନେ ଅନୁମାନକୁ ମଧ୍ୟ ସ୍ୱୀକାର କରିବେ, ଯେଉଁ ଅନୁମାନ ପ୍ରତ୍ୟକ୍ଷ ଆଧାରିତ । କିନ୍ତୁ ଯେଉଁ ଅନୁମାନ ପାରଲୌକିକ ବିଶ୍ୱାସ ଯଥା ଈଶ୍ୱର, ସ୍ୱର୍ଗ, ମୋକ୍ଷ, ପରଜନ୍ମ ଇତ୍ୟାଦି କଥା କହେ, ତାହାକୁ ସେମାନେ ଅସ୍ୱୀକାର କରିଥାନ୍ତି । ଯାହା ପ୍ରତ୍ୟକ୍ଷ ଆଧାରିତ, ଅନୁଭୂତିସାପେକ୍ଷ, ପ୍ରମାଣଯୋଗ୍ୟ ତାହା ହିଁ ବାସ୍ତବ ଜ୍ଞାନ । ଶାସ୍ତ୍ରରେ ଯାହା କୁହାଯାଇଛି ତାହା ଯଦି ଅନୁଭୂତିରେ ପ୍ରମାଣଯୋଗ୍ୟ ତାହା ଗ୍ରହଣଯୋଗ୍ୟ । ନଚେତ ତାହାର କୌଣସି ମହତ୍ତ୍ୱ ନାହିଁ । ସୁତରାଂ ଚାର୍ବାକ ଦର୍ଶନ ଶବ୍ଦ ବା ଶାସ୍ତ୍ରକୁ ପ୍ରମାଣ ଭାବେ ନିଏ ନାହିଁ । ଭାବବାଦୀ ଦାର୍ଶନିକମାନେ ଈଶ୍ୱର, ଅବିନାଶୀ ଆତ୍ମା ଓ ପରଲୋକ ସମ୍ବନ୍ଧୀୟ ଭାବନାକୁ ଅନୁମାନ ବା ଶବ୍ଦ ପ୍ରମାଣ ଆଧାରରେ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଥାନ୍ତି । ଏସବୁ ଯେହେତୁ ଆମର ଅନୁଭୂତି ବହିର୍ଭୂତ ଓ କୌଣସି ପ୍ରତ୍ୟକ୍ଷ ଆଧାରିତ ନୁହେଁ, ଏସବୁ ଯେ କଳ୍ପନା ତାହା ହିଁ ଚାର୍ବାକ ଦର୍ଶନର ପ୍ରତିପାଦ୍ୟ ବିଷୟ ।

ଚାର୍ବାକ ଦର୍ଶନରେ ଭୂତ ବା ବସ୍ତୁସତ୍ତାକୁ ମୂଳ ଭାବେ ନିଆଯାଏ । ଏ ବିଶ୍ୱର ମୌଳିକ ଉପାଦାନ ହେଉଛି ମାଟି, ପାଣି, ପବନ ଓ ଅଗ୍ନି । ପୃଥିବୀର ପ୍ରତ୍ୟେକ ବସ୍ତୁ ହେଉଛି ଏହି ଚାରି ମୌଳିକ ଭୂତର ସମାହାର । ପ୍ରତ୍ୟେକ ବସ୍ତୁ ବା ପ୍ରାଣୀ ଏହି ଭୂତମାନଙ୍କର ମୌଳିକ ଅଣୁର ସଂଯୋଗରୁ ଉତ୍ପନ୍ନ । ପ୍ରାଣ, ଜୀବନ ଓ ଚେତନା ଶାରୀରିକ ଜୈବିକ ପ୍ରକ୍ରିୟାର ପରିଣାମ । ଏକ କ୍ରିୟାଶୀଳ ଜୈବିକ ପ୍ରକ୍ରିୟା ଯୋଗୁଁ ପ୍ରାଣୀ ଜୀବିତ ଓ ସେହି ପ୍ରକ୍ରିୟାର ବିରତି ହିଁ ମୃତ୍ୟୁ । ଆତ୍ମା ଏକ କଳ୍ପିତ ତାତ୍ତ୍ୱିକ ଅବଧାରଣା, ଯାହାର କୌଣସି ବାସ୍ତବ ସ୍ଥିତି ହିଁ ନାହିଁ । ଚାର୍ବାକ୍ ଦର୍ଶନର ଜ୍ଞାନମୀମାଂସା ସହିତ ଆଧୁନିକ ବିଜ୍ଞାନର ଓ ଚାର୍ବାକ ତତ୍ତ୍ୱମୀମାଂସା ସହ ଆଧୁନିକ ମନୋବିଜ୍ଞାନ ଓ ଜୀବବିଜ୍ଞାନର ସାମଞ୍ଜସ୍ୟ ଥିବା ମନେହୁଏ ।

ଆଧୁନିକ ଗବେଷକମାନେ ଚାର୍ବାକ୍ ଦର୍ଶନର ସକାରାତ୍ମକ ଆଭିମୁଖ୍ୟର ଚିତ୍ର ସୁନ୍ଦର ଭାବେ ଦେଇଛନ୍ତି । ଏହି ଭାବନା ଅନୁଯାୟୀ ମୃତ୍ୟୁ ଦ୍ୱାରା ବ୍ୟକ୍ତିର ସଚେତନ ଅସ୍ତିତ୍ୱ ଲୋପ ପାଏ । ଜୀବନରେ ଯାହା କିଛି ସୁଖକର ଅନୁଭୂତି ତାହା ହିଁ ସ୍ୱର୍ଗ ଓ ଯାହା ଯନ୍ତ୍ରଣାଦାୟକ ତାହା ନରକ । କାଳ୍ପନିକ ବିଶ୍ୱାସରୁ ମୁକ୍ତ ହୋଇ ଜୀବନକୁ ଅଧିକ ଆନନ୍ଦପ୍ରଦ ଓ ମହତ୍ତର କରିବା ସାମୂହିକ ପ୍ରୟାସ ଉପରେ ନିର୍ଭର କରେ । ସୁଖ ଶାନ୍ତିରେ ରହିବାର ମାନବିକ ପ୍ରୟାସ ହିଁ ସମାଜକୁ ଆଗକୁ ନେବ । ବ୍ୟକ୍ତିଗତ ଓ ସମଷ୍ଟିଗତ ଜୀବନକୁ ସୁଖପ୍ରଦ ଓ ପ୍ରୀତିପଦ କରିବାର ମାନସିକତା ସମାଜରେ ତ୍ୟାଗ, ପରୋପକାର ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ବିକାଶ କରାଇଥାଏ । ଅଥଚ ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତିର କାଳ୍ପନିକ ଭାବନା ବ୍ୟକ୍ତିକୁ ଆତ୍ମକୈନ୍ଦ୍ରିକ ଓ ସମାଜ ପ୍ରତି ସ୍ପର୍ଶକାତର ଶୂନ୍ୟ କରାଏ ।

ପରିତାପର ବିଷୟ ଚାର୍ବାକ ଦର୍ଶନକୁ ପରମ୍ପରାରେ ଅନୈତିକ, ଭୋଗବାଦୀ ବିଚାର ବୋଲି ଉପସ୍ଥାପିତ କରାଯାଇ ଆସିଛି ଓ ଏହି ଦର୍ଶନର ସମସ୍ତ କୃତିକୁ ଧ୍ୱଂସ କରାଯାଇଛି । ବହୁ ଅତୀତରେ ଏକ ଯୁକ୍ତିବାଦୀ, ଜୀବନଧର୍ମୀ ଓ ମାନବ ସମାଜ ପ୍ରତି ଉତ୍ତରଦାୟୀ ବିଚାର କିପରି ଚାର୍ବାକ୍ ଦର୍ଶନରେ ବ୍ୟକ୍ତ ହୋଇଥିଲା, ତାହା ଆଧୁନିକ ଯୁଗର ଗବେଷକମାନେ ନାନା ଅଧ୍ୟୟନ ଓ ଅନୁଶୀଳନ ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ଅନ୍ୟମାନଙ୍କ ମଧ୍ୟରେ ବିଶିଷ୍ଟ ଗବେଷକ ଡ.ପି. ଚଟ୍ଟୋପାଧ୍ୟାୟଙ୍କର 'ଲୋକାୟତ' ପୁସ୍ତକ ଚାର୍ବାକ ଦର୍ଶନ ଉପରେ ଏକ ବିଶିଷ୍ଟ କୃତି । (୨୩.୬.୧୦)



# ମାନବିକ ଦୃଷ୍ଟି

ବୈଜ୍ଞାନିକ ଅନୁଶୀଳନରୁ ଜଣାଯାଏ ଯେ, କ୍ରମବିକାଶ ଧାରାରେ ବିଭିନ୍ନ କାଳଖଣ୍ଡରେ ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ଗଢ଼ିଉଠିଛି । କାଳଚକ୍ରରେ କେତେକ ସଭ୍ୟତା ଇତିହାସରେ ବିଲୁପ୍ତ ହୋଇଯାଇଛି ଓ ପୁଣି ଶହ ଶହ ବର୍ଷର ସହାବସ୍ଥାନ ଫଳରେ ସଭ୍ୟତା-ସଭ୍ୟତା ଭିତରେ ସମନ୍ୱୟ ଘଟିଛି । ବିଶେଷକରି ଆଧୁନିକ ବିଜ୍ଞାନର ବିକାଶ ସହିତ ଗମନାଗମନର ଉନ୍ନତି ଯୋଗୁ ସଭ୍ୟତା ଭିତରେ ଆଦାନ ପ୍ରଦାନ ପରିବେଶ ଆସିଛି । କେତେକ ସଭ୍ୟତାରେ ଜନ୍ମ ନେଇଥିବା କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଭାବନା, ଚିନ୍ତାଧାରା ଓ ଦାର୍ଶନିକ ଦୃଷ୍ଟିର ପ୍ରଭାବ ମଣିଷ ଜାତିକୁ ଅନୁପ୍ରାଣିତ କରିଛି । ପ୍ରତ୍ୟେକ ସଭ୍ୟତାରେ ରହିଛନ୍ତି କେତେକ ସନ୍ଥ, ମହାତ୍ମା ଓ ପ୍ରଜ୍ଞାବାନ୍ ଦାର୍ଶନିକ ଯେଉଁମାନେ ଜୀବନକୁ ଉନ୍ନତ ଓ ସାମାଜିକ ସଂପର୍କକୁ ମହତ୍ତର କରିବା ପାଇଁ ପ୍ରେରଣା ଯୋଗାଇଛନ୍ତି । ପୁନଶ୍ଚ ବିଡ଼ମ୍ବନାର ବିଷୟ ପ୍ରତ୍ୟେକ ସଭ୍ୟତାରେ ମଧ୍ୟ ରହିଛନ୍ତି କେତେକ ହିଂସ୍ର, କଟ୍ଟରପନ୍ଥୀ, ଧର୍ମାନ୍ଧ ଓ କ୍ଷମତା ଲିପ୍‌ସୁ ନେତା ଯେଉଁମାନେ ସଂସାରରେ ବିଦ୍ୱେଷ, ଘୃଣା ଓ ହିଂସାର ପରିବେଶ ସୃଷ୍ଟି କରିଛନ୍ତି । ଆମ ସଂସାରରେ ନାନା ବର୍ବରତା, ସାମ୍ପ୍ରଦାୟିକତା ଓ ଅମାନବିକତା ଯେପରି ରହିଛି ସେହିପରି ରହିଛି କେତେକ ମହତ୍ତର ଦୃଷ୍ଟି, ସମ୍ବେଦନଶୀଳ ହୃଦୟ ଓ ମାନବହିତୈଷୀ ପ୍ରେରଣା ।

କେତେକ ବିଚାର ଓ ଜୀବନଦୃଷ୍ଟି ବ୍ୟକ୍ତି ଓ ଗୋଷ୍ଠୀକୁ କ୍ଷୁଦ୍ରତମ ବେଷ୍ଟନୀ ଭିତରେ ସଂକୀର୍ଣ୍ଣ ରଖିବାର ବହୁ ଦୃଷ୍ଟାନ୍ତ ଇତିହାସରେ ଦେଖିବାକୁ ମିଳେ । ସଭ୍ୟତାର ଆରମ୍ଭ ପର୍ବଠାରୁ ଆଜିପର୍ଯ୍ୟନ୍ତ ଏହି ସଂକୀର୍ଣ୍ଣତା ଯୋଗୁ ଆମ ସଂସାରରେ ନାନା ଯୁଦ୍ଧ, ବିଭୀଷିକା ଓ ରକ୍ତପାତ ହୋଇଆସିଛି । ଆଦିମ ସମାଜରେ ଓ ରାଜତନ୍ତ୍ର ଯୁଗରେ ନାନା କାରଣରୁ ଯୁଦ୍ଧ ଓ ବିଭୀଷିକା ଲାଗି ରହିବାର ନାନା ରୋମାଞ୍ଚକାରୀ କାହାଣୀ ପଢ଼ିବାକୁ ମିଳେ । ଗୋଷ୍ଠୀଗତ, ଜାତିଗତ, ବର୍ଣ୍ଣଗତ, ଧର୍ମଗତ ବୈଷମ୍ୟ ଯୋଗୁ ନାନା ବିଦ୍ୱେଷର ବାତାବରଣ ଇତିହାସରେ ଘଟିଯାଇଛି । ଏପରିକି ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ ନାନା ଭୂଖଣ୍ଡ ମଧ୍ୟରେ ନାନା ଯୁଦ୍ଧ, ବିଭୀଷିକା ସୃଷ୍ଟି ହେବା ଦେଖାଯାଏ । ଏବେ ବି ସନ୍ତ୍ରାସବାଦ ଓ ଯୁଦ୍ଧର ମାନସିକତାରୁ ଆମ ସଂସାର ମୁକ୍ତ

ହୋଇପାରି ନାହିଁ । ଉଗ୍ର ରାଷ୍ଟ୍ରୀୟତାର ଭାବନା ନେଇ ନାନା କାରଣ ଯୋଗୁ ଦେଶ ଦେଶ ମଧ୍ୟରେ ଯୁଦ୍ଧ ହେଉଛି । ଗତ ଶତାବ୍ଦୀରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଓ ମଣିଷ ସହିତ ମଣିଷର ହିଂସାତ୍ମକ ସଂଘର୍ଷ ଆମ ବର୍ବରତାର ବହୁ ସ୍ୱାକ୍ଷର ବହନ କରିଥାଏ । ସେହିପରି ବେଳେବେଳେ ଆମ ସଂସାରରେ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଆପଣା ଆପଣା ଈଶ୍ୱରମାନଙ୍କୁ ନେଇ ଧର୍ମ ନାମରେ ନାନା ଅଧର୍ମ ଓ ହିଂସ୍ରତାର ପରିବେଶ ସୃଷ୍ଟି କରିଛନ୍ତି । ଜାତି, ଧର୍ମ, ରାଷ୍ଟ୍ର, ଭାଷା ଇତ୍ୟାଦିକୁ ଆଳ କରି ସାମ୍ପ୍ରଦାୟିକ ବିଦ୍ୱେଷର ବାତ୍ୟା ବୁହାଇଛନ୍ତି । ପରିଣାମ ସ୍ୱରୂପ ନାନା ଅମାନବୀୟ ପରିସ୍ଥିତିର ଶିକାର ହୋଇଛନ୍ତି ସଂସାରର ବହୁ ନିରୀହ ମଣିଷ । ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ମଣିଷ ସମାଜ ସନ୍ତ୍ରାସବାଦ, ବର୍ବରତା ଓ ହିଂସ୍ରତାରୁ ମୁକ୍ତ ହୋଇପାରୁ ନାହିଁ ।

ଆମ ସଂସାରର ଏହି ନକାରାତ୍ମକ ଚିତ୍ର ସତ୍ତ୍ୱେ ପ୍ରତ୍ୟେକ ସଂସ୍କୃତିରେ ରହିଛନ୍ତି କିଛି ମାନବଦରଦୀ ଓ ସର୍ବଜନ ହିତୈଷୀ ବ୍ୟକ୍ତି ଯେଉଁମାନେ ଏକ ବିଶ୍ୱଦୃଷ୍ଟିର ଭାବନା ବ୍ୟକ୍ତ କରିଆସିଛନ୍ତି । 'ସର୍ବେ ଭବନ୍ତୁ ସୁଖୀନଃ'ର ପରିକଳ୍ପନା କେତେ ପ୍ରାଜ୍ଞ, ପୀର ଓ ସନ୍ଥଙ୍କ ଭାବନା ଦେଇ ବ୍ୟକ୍ତ ହୋଇଛି । "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ" ଏହି ଚେତନାର ଏକ ପ୍ରତିଫଳନ । ସେହିପରି ସାରା ବିଶ୍ୱ ମୋର ପରିବାର, ମାନବ ଜାତି ଏକ, ଅନ୍ୟର ଦୁଃଖକୁ ଅନୁଭବ କରି ସହାନୁଭୂତିର ହାତଟିଏ ବଢ଼ାଇବା ଏକ ସାର୍ଥକ ଜୀବନର ମାନଦଣ୍ଡ - ଏହି ବିଚାରବୋଧର ପ୍ରତୀକ । ଯେଉଁମାନେ ଏହି ବିଚାର ବ୍ୟକ୍ତ କରି ଆସିଛନ୍ତି, ସେମାନେ ହେଲେ ଉଦାରବାଦୀ ଓ ହେତୁବାଦୀ ଚିନ୍ତକ । ସେମାନେ ବିଭିନ୍ନ ସଭ୍ୟତାରେ ମାନବବାଦୀ ଜୀବନଦୃଷ୍ଟିର ପ୍ରବକ୍ତା । ଆମ ସଂସାରରେ ରହିଥିବା ରାଶି ରାଶି ମନୁଷ୍ୟକୃତ ହିଂସା ଓ କ୍ରୂରତାକୁ ସେମାନେ ନିଜ ବିଚାରରେ ବିରୋଧ କରି ଆସିଛନ୍ତି । ସେମାନେ ଆମ ସଂସାରକୁ ପ୍ରୀତିପୂର୍ଣ୍ଣ ଓ ଆମର ଜୀବନକୁ ସୁଖକର କରିବାକୁ ଯେଉଁ ଦର୍ଶନ ଦେଇଛନ୍ତି ତାହା ଭିତରେ 'ମଣିଷ' ହିଁ ମୁଖ୍ୟ ସ୍ଥାନ ନେଇଛି । ସେମାନେ ବିଶ୍ୱାସ କରିଆସିଛନ୍ତି ଯେ, ମନୁଷ୍ୟ ହିଁ ତା'ର ଭାଗ୍ୟର ନିୟନ୍ତା ଓ ତା'ର ଭବିଷ୍ୟତର ନିର୍ମାଣ - ସ୍ରଷ୍ଟା । ଜୀବନଧର୍ମୀ ଶିକ୍ଷା, ଉନ୍ନତ ସାମାଜିକ ପରିବେଶ, ମାନବହିତୈଷୀ ବିଚାରବୋଧ ଓ ସମତାଭିତ୍ତିକ ଅର୍ଥନୈତିକ ବ୍ୟବସ୍ଥା ଆମ ସଂସାରକୁ ପ୍ରୀତିମୟ କରିପାରିବ । ଏଥିରେ କୌଣସି ଦିଅଁ, ଦେବତା, ଈଶ୍ୱରର କୌଣସି ଭୂମିକା ହିଁ ନାହିଁ । ସେସବୁ କେବଳ ସଭ୍ୟତାର ବିଭିନ୍ନ ସୋପାନରେ ମଣିଷ ମନର ସୃଷ୍ଟି ହୋଇଥିବା ଗୁଡ଼ିଏ କାଳ୍ପନିକ ଅବଧାରଣା । ଏସବୁ ବ୍ୟକ୍ତିଗତ ଓ ଏପରିକି ଗୋଷ୍ଠୀଗତ ବିଶ୍ୱାସ । ଯେଉଁଠି ଏହି ବିଶ୍ୱାସ ମଣିଷକୁ ମହତ୍ତର ଜୀବନର ପ୍ରେରଣା ଦେଇଛି ତାହା ସ୍ୱାଗତଯୋଗ୍ୟ, ଯେଉଁଠି ଏହା ମଣିଷକୁ

ସଂକୀର୍ଣ୍ଣ କରି ମଣିଷ ମଣିଷ ଭିତରେ ପ୍ରାଚୀର ଓ ଭେଦଭାବ ସୃଷ୍ଟି କରିଛି, ତାହା ସଭ୍ୟ ଜୀବନର ପ୍ରତିକୂଳ ।

ପୁନଶ୍ଚ ମାନବିକ ଦୃଷ୍ଟିର ଅନ୍ତର୍ନିହିତ ତାତ୍ପର୍ଯ୍ୟ ହେଉଛି, ଆମର ଜୀବନକୁ ଆମେ ଏହି ପୃଥିବୀରେ ବଞ୍ଚିବା । କେତେ ସଫଳ ଓ ସୃଜନଶୀଳ ଭାବେ ଜୀବନକୁ ଆମେ ବଞ୍ଚିବା ତାହା ହିଁ ହେବ ଜୀବନର ଗୁଣାତ୍ମକ ମାନଦଣ୍ଡ । ଆମେ କିପରି ଆଗାମୀ ବଂଶଧରଙ୍କ ପାଇଁ ଆମଠାରୁ ଅଧିକ ପ୍ରୀତିପୂର୍ଣ୍ଣ ପୃଥିବୀଟିକୁ ଛାଡ଼ିଯିବା ତାହା ହିଁ ଆମର ଧ୍ୟେୟ ହେବା ଆବଶ୍ୟକ । ଆମେ ଏକ ସୁନ୍ଦର ଜୀବନ ବଞ୍ଚିବା ପଶ୍ଚାତରେ ରହିଛି ଆମ ପୂର୍ବ ପୁରୁଷଙ୍କର କେତେ ଅବଦାନ । ଆମେ ଯେଉଁ ବିଜ୍ଞାନର ସାଧନ ଆମ ହାତପାଆନ୍ତାରେ ପାଇ ଜୀବନକୁ ସରସ କରିପାରୁଛେ, ଯେଉଁ ସାହିତ୍ୟ, ଦର୍ଶନ ଆମର ବିଚାରବୋଧକୁ ଶାଣିତ ଓ ମାର୍ଜିତ କରିପାରୁଛି, ଯେଉଁ ଚିକିତ୍ସା ବିଜ୍ଞାନ ଆମ ରୋଗର ଉପଶମ କରିପାରୁଛି, ଆମେ ଶିକ୍ଷା କ୍ଷେତ୍ରରେ ଯେଉଁ ବିଷୟକୁ ଅଧ୍ୟୟନ କରୁଛେ ତାହା ଆମେ ପୂର୍ବସୂରୀଙ୍କ ପାଖରୁ ପାଇଛେ । ବିଶ୍ୱର ବିଭିନ୍ନ ଭୂଖଣ୍ଡର ଏହି ଅନୁସନ୍ଧିତ୍ସୁ ବୈଜ୍ଞାନିକ, ଦାର୍ଶନିକ, ଚିନ୍ତାଶୀଳ ବିଚାରକଙ୍କ ମୌଳିକ ଅବଦାନ ଯୋଗୁ ସଭ୍ୟତାର ବିକାଶ ହୋଇଛି ଓ ଜୀବନର ଗୁଣାତ୍ମକ ମାନ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇଛି । ବ୍ୟକ୍ତି ମରଣଶୀଳ, ଆମେ ଚାଲିଯିବା, କିନ୍ତୁ ମଣିଷ ଜାତି ରହିବ ଓ ଅଧିକ ପ୍ରୀତିପୂର୍ଣ୍ଣ ପରିବେଶ ଭିତରେ ଜୀବନ ବଞ୍ଚିବ । ଏଥିପାଇଁ ସଭ୍ୟତାର ବିକାଶଧାରାକୁ ସମ୍ମିଳିତ ପ୍ରୟାସରେ ଉନ୍ନତରୁ ଉନ୍ନତତର କରିହେବ । ବ୍ୟକ୍ତି ମଧ୍ୟ ସମାଜକୁ ସୃଜନଶୀଳ ଅବଦାନ ଦେଇପାରିବ । ସଭ୍ୟତା ଯେତିକି ଆଗକୁ ଯାଉଥିବ ଜୀବନ ସେତିକି ସୁଖପ୍ରଦ ଓ ପ୍ରୀତିପଦ ହେଉଥିବ । ଏହି ଭାବନାରେ ଅନୁପ୍ରାଣିତ ମଣିଷମାନେ ମଣିଷର ବିଚାରଶୀଳତା ଓ ମାନବିକ ଦୃଷ୍ଟି ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଅର୍ଥାତ୍ ମାନବିକ ଦୃଷ୍ଟି ଭିତରେ ଭବିଷ୍ୟତ ପାଇଁ ଏକ ଉତ୍ତରଦାୟିତ୍ୱବୋଧର ଭାବନା ଅନ୍ତର୍ନିହିତ ଭାବେ ରହିଥାଏ । ଆମ ସଂସାରରେ ଯାହା ସମସ୍ୟା ରହିଛି, ବ୍ୟକ୍ତିଠାରୁ ଗୋଷ୍ଠୀପର୍ଯ୍ୟନ୍ତ, ରାଷ୍ଟ୍ରଠାରୁ ମଣିଷ ଜାତି ପର୍ଯ୍ୟନ୍ତ, ସେସବୁର ସମାଧାନ ଆମର ବିଚାରବୋଧ ଦ୍ୱାରା ସମ୍ଭବ । ମଣିଷର ସହଜାତ ସୃଜନଶୀଳତା ଭିତରୁ ସବୁବେଳେ ନୂଆ ନୂଆ ବିଚାରର ଉଦ୍ଭବ ହୋଇଛି । ଯୁକ୍ତିଶୀଳ ଅନୁଶୀଳନ, ସମ୍ବେଦନଶୀଳ ଦୃଷ୍ଟି ଓ ନ୍ୟାୟ ପ୍ରତି ପ୍ରତିବଦ୍ଧତା ଆଧାରରେ ସକଳ ସଂକଟର ସମାଧାନ ହୋଇପାରିବ । ଏହା ହିଁ ହେଉଛି ମାନବିକ ଦୃଷ୍ଟିର ମହତ୍ତ୍ୱ । ଅପରପକ୍ଷରେ ହିଂସା, ସନ୍ତ୍ରାସବାଦ, ଯୁଦ୍ଧ, ବିଭୀଷିକା ମଣିଷର ସମସ୍ୟାକୁ ସମାଧାନ କରିବା ପରିବର୍ତ୍ତେ ବର୍ବରତା ଯେ ବଢ଼ାଇଛି ଏହା ହିଁ ଇତିହାସରୁ ବଳିଷ୍ଠ ଶିକ୍ଷା । ଅଧିକନ୍ତୁ ଆଜିର ଅତ୍ୟାଧୁନିକ ପ୍ରଯୁକ୍ତି ଯୁଗରେ ଯୁଦ୍ଧର

ଅର୍ଥ ଏକ ଧ୍ୱଂସାତ୍ମକ ପରିବେଶ ଓ ସଭ୍ୟତାର ଆତ୍ମହତ୍ୟା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସଭ୍ୟତା ଯେହେତୁ ବହୁ ଅତୀତରେ ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିଲା ଓ ତାହାକୁ କେଉଁ ଈଶ୍ୱର ସୃଷ୍ଟି କରିନଥିଲେ ତେଣୁ ଆମ ସଂସାରରେ ବହୁ ଭାଷା, ଗୋଷ୍ଠୀଗତ ପରମ୍ପରା, ସାଂସ୍କୃତିକ ଭିନ୍ନତା ରହିବା ସ୍ୱାଭାବିକ । ବହୁତ୍ୱବାଦ ଓ ଅନେକାନ୍ତବାଦ ଆମ ସଂସାରର ମହତ୍ତ୍ୱ । ଗୋଟିଏ ବଗିଚାରେ ବିଭିନ୍ନ ଫୁଲ ତା'ର ସୁବାସ ଓ ସୌନ୍ଦର୍ଯ୍ୟରେ ଯେପରି ବଗିଚାର ଶୋଭା ବୃଦ୍ଧି କରିଥାଏ, ସେହିପରି ସଭ୍ୟତା, ସଂସ୍କୃତି, ଜୀବନଦୃଷ୍ଟି ଭିତରେ ନାନାତ୍ୱବୋଧ, ଭିନ୍ନତା ଜୀବନର ସୃଜନଶୀଳତାକୁ ବୃଦ୍ଧି କରିଥାଏ । ସମଗ୍ର ମାନବଜାତିକୁ ଏକ ବୋଲି ବିଚାର କଲେ ଏହି ଭିନ୍ନତା ଆମର ବୈଭବ କହିବାକୁ ହେବ । ବ୍ୟକ୍ତିର ଧର୍ମଗତ, ସାଂସ୍କୃତିକ, ରାଷ୍ଟ୍ରୀୟ ପରିଚୟ ଇତ୍ୟାଦି ତା'ର ଏକ ଆକସ୍ମିକ ଘଟଣା । ଏଥିରେ ଉଗ୍ରତା ଓ ବିଦ୍ୱେଷ ମାନବତାବିରୋଧୀ । ଭିନ୍ନତା ଭିତରେ ଏକତ୍ୱବୋଧ ଆମ ସଂସାରର ଗୌରବ । ଭାଷା, ସଂସ୍କୃତି, ଧର୍ମ, ରୁଚିବୋଧ ଇତ୍ୟାଦିର ଭିନ୍ନତା ଭିତରେ ମାନବିକ ହୃଦୟ ଓ ବିଚାରଶୀଳ ପ୍ରଜ୍ଞା ଆମକୁ ମନୁଷ୍ୟତ୍ୱ ଡୋରିରେ ବାନ୍ଧି ରଖିପାରିବ ।

ସେହିପରି ବ୍ୟକ୍ତିର ମର୍ଯ୍ୟାଦା ପ୍ରତି ସମ୍ମାନବୋଧ ମାନବିକ ଦୃଷ୍ଟିରୁ ଏକ ଅନ୍ତର୍ନିହିତ ମହତ୍ତ୍ୱ । ଏହି ମୂଲ୍ୟବୋଧ ଆମର ସାମାଜିକ ବ୍ୟବସ୍ଥା ଓ ଜୀବନଧାରାରେ ଯେତେ ଅଧିକ ପ୍ରତିଫଳିତ ହେବ ଆମେ ସେତିକି ସଭ୍ୟ ଜୀବନର ଅଧିକାରୀ ହୋଇପାରିବା । କାରଣ ଏହା ହିଁ ଏକ ମହତ୍ତର ଜୀବନଦୃଷ୍ଟି ଓ ସଭ୍ୟତାର ବିକାଶ ଧାରାରେ ଏକ ସାର୍ବଜନୀନ ମୂଲ୍ୟବୋଧ । ମୋଟ ଉପରେ କହିଲେ ମାନବିକ ଦୃଷ୍ଟି ମଣିଷକୁ ସୃଜନଶୀଳ, ଜୀବନଧର୍ମୀ, ଉତ୍ତରଦାୟୀ ଓ ନ୍ୟାୟ ପ୍ରତି ଯେ ପ୍ରତିବଦ୍ଧ କରିଥାଏ, ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ସଭ୍ୟ ଜୀବନଦୃଷ୍ଟିର ବିକାଶ ସହ ଏହି ମୂଲ୍ୟବୋଧର ଉତ୍ତରଣ ଅଙ୍ଗାଙ୍ଗୀ ଭାବେ ଯେ ସଂଶ୍ଳିଷ୍ଟ ଏହା କୁହାଯାଇପାରେ । (ପ୍ରଗତୀବାଦୀ - ୩୦୬.୨୦୧୦)



# ସଭ୍ୟତାର ସଙ୍କଟ

ଏହା ଅନସ୍ୱୀକାର୍ଯ୍ୟ ଯେ ପ୍ରାକୃତିକ ବିବର୍ତ୍ତନ ଧାରାରେ ମଣିଷ ଏକ ଅନୁପମ ସୃଷ୍ଟି । ବୈଜ୍ଞାନିକ ତଥ୍ୟାନୁଯାୟୀ କୋଟି କୋଟି ବର୍ଷର ପାରିବେଶିକ ପରିବର୍ତ୍ତନ ଭିତରେ ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଦେଇ ମଣିଷର ଉତ୍ପତ୍ତି ହୋଇଛି । ମଣିଷ ପାଖରେ କ୍ରମେ ଚିନ୍ତାଶକ୍ତି, ସୃଜନଶୀଳତା, ଭାଷା ବ୍ୟବହାରର ସାମର୍ଥ୍ୟ ସୃଷ୍ଟି ହୋଇଛି ମଣିଷ ମସ୍ତିଷ୍କର ବିକାଶ ଯୋଗୁ । ଧୀର ମନ୍ଥର ଗତିରେ ମଣିଷ ପାଖରେ ସୃଜନଶୀଳ ବିଚାରବୋଧ, ଅନ୍ତଃଦୃଷ୍ଟି, ପ୍ରକୃତି-ପରିବେଶକୁ ଅବବୋଧ କରିବାର ସାମର୍ଥ୍ୟ କାଳକ୍ରମେ ସୃଷ୍ଟି ହୋଇଛି । ଏହା ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇଆସିଛି, କୌଣସି ଈଶ୍ୱର ମଣିଷକୁ ଏହା ଚାହିଁବାମାତ୍ରେ ଦେଇନାହାନ୍ତି । ସଭ୍ୟତାର ବିକାଶ ସହ ମଣିଷ ନିଜର ସୃଜନଶୀଳ ବିଚାରଶକ୍ତି ପ୍ରୟୋଗ କରି ଜଗତ, ଜୀବନ ନେଇ ନାନା ତାତ୍ତ୍ୱିକ ଅବଧାରଣାମାନ ସୃଷ୍ଟି କରିଛି । ଜୀବନର ରହସ୍ୟ ବିଷୟରେ ହେଉ ବା ପ୍ରାକୃତିକ ଘଟଣାମାନଙ୍କର ମହତ୍ତ୍ୱକୁ ଅବବୋଧ କରିବାକୁ ହେଉ ସେ କେତେ କେତେ ତାତ୍ତ୍ୱିକ ଚିନ୍ତା, ଈଶ୍ୱରୀୟ ବିଧାନ, ଚମତ୍କାରିତାରେ ବିଶ୍ୱାସ କରିଛି ବା ସେସବୁକୁ ଅତୀତରେ କଳ୍ପନା କରିଛି । ପରିଣାମତଃ ସେ ନାନା ଭାବରେ ନିଜର ସାମାଜିକ ଗୋଷ୍ଠୀ ଭିତରେ ଧାର୍ମିକ ଓ ତାତ୍ତ୍ୱିକ ସିଦ୍ଧାନ୍ତମାନ ସୃଷ୍ଟି କରିଛି । ସୀମିତ ପରିବେଶରେ ବଞ୍ଚୁଥିବା ଗୋଷ୍ଠୀମାନ କାଳକ୍ରମେ ନିଜର ଭାଷା, ପରମ୍ପରା ନୀତିବୋଧ, ସାମାଜିକ ଚଳଣିର ବିକାଶ କରାଇଛନ୍ତି । ତେବେ ଆଦିମ ଅବସ୍ଥାରୁ ଏହିପରି ନାନା ସାମାଜିକ, ଆର୍ଥିକ, ସାଂସ୍କୃତିକ ପରିବର୍ତ୍ତନ ମଧ୍ୟ ଦେଇ ବୃହତ୍ତର ସମାଜ ଓ ରାଷ୍ଟ୍ରର ଉଦ୍ଭବ ହୋଇଛି । ଗୋଷ୍ଠୀ ମୁଖିଆଠାରୁ ରାଜତନ୍ତ୍ର ଓ ରାଜତନ୍ତ୍ରରୁ ଲୋକତନ୍ତ୍ର ରାଜନୈତିକ ବ୍ୟବସ୍ଥାର ବିକାଶ ହୋଇଛି । ଆଦିମ ସାମ୍ୟ ସମାଜରୁ ସାମନ୍ତବାଦୀ ବ୍ୟବସ୍ଥା, ସାମନ୍ତବାଦୀ ବ୍ୟବସ୍ଥାରୁ ପୁଞ୍ଜିବାଦ ଓ ସମତାଭିତ୍ତିକ ଅର୍ଥନୈତିକ ବିଚାରବୋଧ ଇତ୍ୟାଦିର ଭାବନା ଆସିଛି । ନାନା ଭାବରେ ସାଂସ୍କୃତିକ ବିକାଶ ଦେଇ ସଭ୍ୟତା ଆଗକୁ ଯାଇଛି । ପ୍ରତ୍ୟେକ ଯୁଗରେ ସଭ୍ୟତାରେ ସଂକଟ ଆସିଛି ଓ ପୁନଶ୍ଚ ମଣିଷର ବିଚାରବୋଧ ଦେଇ କେତେ କେତେ ସମାଧାନର ସୂତ୍ର ବାହାରିଛି । ପ୍ରକୃତି ଓ ପରିବେଶକୁ ଅବବୋଧଜନିତ ବୈଜ୍ଞାନିକ ଗବେଷଣାରୁ ନୂଆ ପ୍ରଯୁକ୍ତିର ଉଦ୍ଭବ ହୋଇଛି । କୃଷି, ଶିଳ୍ପ, ଗମନାଗମନ, ଶିକ୍ଷା ଇତ୍ୟାଦି ପ୍ରତ୍ୟେକ

ସ୍ତରରେ ନୂଆ ନୂଆ ପ୍ରୟୋଗ ଯୋଗୁ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଛି । ଆଜକୁ ଶହେବର୍ଷ ତଳେ ମଣିଷ ସ୍ଥଳଭାଗରେ ଘଣ୍ଟାକୁ ଅତିବେଶୀରେ ପଚାଶ ଷାଠିଏ କିଲୋ ମିଟର ଯାଉଥିବା ବେଳେ ସମ୍ପ୍ରତି ଘଣ୍ଟାକୁ ସେ ହଜାର ହଜାର କିମି ଯିବାକୁ ସମର୍ଥ ହୋଇପାରୁଛି । ଆଜକୁ ପଚାଶ ବର୍ଷ ତଳେ ମୋବାଇଲ, ଦୂରଦର୍ଶନ, କମ୍ପୁଟର, ଇଣ୍ଟରନେଟ୍ ଇତ୍ୟାଦି କଳ୍ପନା ବାହାର ଥିଲା ଯାହା ଆଜି ସମ୍ଭବ ହୋଇପାରିଛି । ଶହେବର୍ଷ ତଳେ ହଇଜା, ବସନ୍ତ, ପ୍ଲେଗ ଇତ୍ୟାଦି ରୋଗ ମହାମାରୀର ରୂପ ନେଉଥିଲା, ଯେଉଁଥିରେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁମୁଖରେ ପଡୁଥିଲେ । ମଣିଷର ସାଧାରଣ ଆୟୁ ଆମ ଦେଶ ପରି ଦେଶ ମାନଙ୍କରେ ପଚାଶରୁ ଷାଠିଏ ବର୍ଷ ଭିତରେ ରହିଥିଲା । ବାତ୍ୟା, ବନ୍ୟା, ମରୁଡି ପରି ପ୍ରାକୃତିକ ଦୁର୍ବିପାକ ହେଲେ ଦୁର୍ଭିକ୍ଷ ପଡୁଥିଲା ଓ ହଜାର ହଜାର ବ୍ୟକ୍ତି ଅନାହାରରେ ମୃତ୍ୟୁବରଣ କରୁଥିଲେ । ଶିକ୍ଷା ସମାଜର କେବଳ ମୁଷ୍ଟିମେୟ ଉଚ୍ଚଶ୍ରେଣୀର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଓ ସମାଜର ସାଧାରଣ ଜନତା ପ୍ରାୟତଃ ନିରକ୍ଷର ରହିଥିଲେ ବା ଅତିବେଶୀରେ ସାମାନ୍ୟ ଟିକିଏ ପଢ଼ିପାରୁଥିଲେ । ଏହି ଭଳି ଏକ ସାମାଜିକ ଓ ସାଂସ୍କୃତିକ ପରିବେଶରେ ଅତୀନ୍ଦ୍ରିୟ ଓ ଆଲୌକିକ ଶକ୍ତିରେ ବିଶ୍ୱାସ ଅତି ସାଧାରଣ ଘଟଣା ଥିଲା । ସବୁ କିଛି କୌଣସି ଦୈବୀଶକ୍ତିର ନିର୍ଦ୍ଦେଶରେ ପରିଚାଳିତ ହେଉଛି ବୋଲି ବିଶ୍ୱାସ ଅତି ବ୍ୟାପକ ଥିଲା । ନିଜର ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରିବାକୁ ଧାର୍ମିକ ଆବେଗ ବ୍ୟାପକ ଥିବା ସମାଜରେ ନାନା ଅହେତୁକ ବିଶ୍ୱାସ, କୁସଂସ୍କାର, ବଳିପ୍ରଥା, ଗୁଣିଟୁଣି, ମନ୍ତ୍ରତନ୍ତ୍ରର ବିଧାନମାନ ଥିଲା ଓ ଏବେ ମଧ୍ୟ ଏହା ସାମାଜିକ ଚଳଣିରୁ ଲୋପ ପାଇନାହିଁ । କେତେକ ସମାଜରେ ବର୍ଣ୍ଣବୈଷମ୍ୟ ଜନିତ ଅତ୍ୟାଚାରରେ ଅନେକ ମଣିଷ ନ୍ୟୂନ ହୋଇ ରହିଥିଲେ । ଆମ ଦେଶ ଭଳି ଏକ ଜାତିଭିତ୍ତିକ ସମାଜରେ ଉଚ୍ଚନୀଚ ଭେଦଭାବ, ଅସ୍ପୃଶ୍ୟତା, ନାରୀ ନିର୍ଯାତନା ପରି ଅତି ଅମାନବୀୟ ପ୍ରଥାମାନ ରହିଥିଲା । ଉତ୍କଟ ଦାରିଦ୍ର୍ୟ, ଭେଦଭାବଜନିତ ସାମାଜିକ ବ୍ୟବସ୍ଥା, ସାମନ୍ତବାଦୀ ମାନସିକତା, ନିରକ୍ଷରତା ସାମାଜିକ ସ୍ତରରେ ଅତି ଉତ୍କଟ ଭାବେ ରହିଥିଲା । ଗୋଟିଏ ଶତାବ୍ଦୀ ତଳେ ସାମାଜିକ ଜୀବନଧାରାରେ ଏହିପରି ପରିବେଶ ରହିଥିଲା ।

ତେବେ ପ୍ରଥମ ବିଶ୍ୱଯୁଦ୍ଧ ପରଠାରୁ ଏକ ବିଜ୍ଞାନାଶ୍ରୟୀ ସଭ୍ୟତାର ବିକାଶ ତ୍ୱରାନ୍ୱିତ ହେବାରେ ଲାଗିଛି । ସଭ୍ୟତାର ଆଦିପର୍ବଠାରୁ ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ବିଜ୍ଞାନ କ୍ଷେତ୍ରରେ ଯାହା ଉନ୍ନତି ହୋଇଛି ଏହି ଶହେବର୍ଷ ଭିତରେ ତା'ଠାରୁ ଅଧିକ ଉନ୍ନତି ହୋଇପାରିଛି । ପ୍ରାକୃତିକ ପରିବେଶକୁ ଅବବୋଧ କରି ତାହାକୁ ଆୟତ୍ତାଧୀନ କରିବାକୁ ମଣିଷ ଚେଷ୍ଟା କରିଆସିଛି । ପରିଣାମତଃ ବାତ୍ୟା, ବନ୍ୟା, ମରୁଡି ପରି

ପ୍ରାକୃତିକ ଦୁର୍ବିପାକ ଗୁଡିକୁ ଅନେକାଂଶରେ ନିୟନ୍ତ୍ରଣ କରାଯାଇଛି । କୃଷି କ୍ଷେତ୍ରରେ ଗବେଷଣାଜନିତ ନୂଆ ନୂଆ ପ୍ରୟୋଗରୁ ଉତ୍ପାଦନର ହାର ଯଥେଷ୍ଟ ବୃଦ୍ଧି ପାଇଛି । ଫଳରେ କ୍ରମବର୍ଦ୍ଧିଷ୍ଣୁ ଲୋକ ସଂଖ୍ୟାର ଖାଦ୍ୟ ଆବଶ୍ୟକତାକୁ ମେଣ୍ଟାଇବା ସମ୍ଭବ ହୋଇଛି । ବିଭିନ୍ନ ରୋଗକୁ ନିୟନ୍ତ୍ରଣ କରିବାକୁ ବହୁ ଉଦ୍ୟମ ଆନ୍ତର୍ଜାତିକ ସ୍ତରରେ ହେବା ସମ୍ଭବ ହୋଇଛି । ଫଳରେ ପୃଥିବୀରେ ମହାମାରୀର ଆତଙ୍କ ନାହିଁ । ଏସବୁ ମୁଷ୍ଟିମେୟ ଲୋକଙ୍କର ବୌଦ୍ଧିକ କୌତୂହଳତାରୁ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହୋଇଛି । ଏବେ ଆବଶ୍ୟକ ଭିତ୍ତିଭୂମି ଯୋଗୁ ଉଚ୍ଚମାନର ଗବେଷଣା ବିଭିନ୍ନ ସ୍ତରରେ ହୋଇପାରୁଛି । ଜ୍ଞାନବିଜ୍ଞାନର ଯେତିକି ବିକାଶ ହେଉଛି ତଦାଶ୍ରୟୀ ପ୍ରଯୁକ୍ତିରୁ ନୂଆ ନୂଆ କାରଖାନା ଦ୍ୱାରା ଯାନ୍ତ୍ରିକ ସାଧନମାନ ଉପଲବ୍ଧ ହୋଇପାରୁଛି । ଆଧୁନିକ ପ୍ରଯୁକ୍ତି, ଜ୍ଞାନ ଜୀବନକୁ ଗତିଶୀଳ କରିପାରିଛି ଓ ଆମ ସଂସାର ଏକ କ୍ଷୁଦ୍ର ଗ୍ରାମରେ ପରିଣତ ହେବାରେ ଲାଗିଛି । ଆଜି ପୃଥିବୀର ଯେକୌଣସି ଅଞ୍ଚଳର ବ୍ୟକ୍ତି ଅନ୍ୟ ଅଞ୍ଚଳ ସହ ସମ୍ବନ୍ଧ ସ୍ଥାପନ କରିପାରୁଛି । ପୃଥିବୀର ଯେଉଁଠି, ଯାହା ନୂତନ ଆବିଷ୍କାର ବା ଉଦ୍ଭାବନ ହେଉଛି ତାହାର ସୁଫଳ ସମଗ୍ର ମଣିଷ ଜାତି ପାଇପାରୁଛି । କେଉଁଠି କିଛି ବିପର୍ଯ୍ୟୟ ଘଟିଲେ ସାରା ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହୋଇପାରୁଛି । ଆଧୁନିକ ଜ୍ଞାନକୌଶଳ, ବିଜ୍ଞାନ ଓ ପ୍ରଯୁକ୍ତି ସାରା ବିଶ୍ୱକୁ ଏକ ଡୋରିରେ ବାନ୍ଧିବାରେ ସଫଳ ହୋଇପାରିଛି । ଏସବୁ ସହ ସମଗ୍ର ବିଶ୍ୱରେ କେତେକ ସାର୍ବଜନୀନ ମୂଲ୍ୟବୋଧ ଯେପରି ସ୍ୱୀକୃତ ହୋଇଛି ତାହା ମାନବୀୟ ଚେତନାର କ୍ରମଉତ୍ତରଣର ସ୍ୱାକ୍ଷର ବହନ କରେ । ଗଣତାନ୍ତ୍ରିକ ଜୀବନଶୈଳୀ, ସମତାଭିତ୍ତିକ ମୂଲ୍ୟବୋଧ, ମାନବିକ ମର୍ଯ୍ୟାଦା, ସମ୍ମାନର ସହ ବଞ୍ଚିବାର ଅଧିକାର, ଧର୍ମନିରପେକ୍ଷ ଜୀବନଧାରା ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହେବାରେ ଲାଗିଛି । ଏକ ସୁଖକର ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ଯେଉଁ ସ୍ୱପ୍ନ ଅତୀତରେ କେତେକ ହେତୁବାଦୀ ଚିନ୍ତକ, ଦାର୍ଶନିକ ଓ ଦରଦୀ ମାନବବାଦୀଗଣ ଦେଖିଛନ୍ତି ତାହାର ବାସ୍ତବ ରୂପାୟନ ଦିଗରେ ପରିବେଶ ସୃଷ୍ଟି ହେବାରେ ଲାଗିଛି । ବିଜ୍ଞାନର ଅବଦାନ ଦ୍ୱାରା ସଭ୍ୟତାର ବିକାଶ ତ୍ୱରାନ୍ୱିତ ହେବା ସହ ଏକ ଇହଲୌକିକ ମାନବବାଦୀ ଚେତନାର ଉତ୍ତରଣ ସମ୍ଭବ ହୋଇଛି । ଏସବୁ ଏ ଯୁଗର ସକାରାତ୍ମକ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏସବୁ ସତ୍ତ୍ୱେ ସଭ୍ୟତା ନାନା ସଙ୍କଟର ସମ୍ମୁଖୀନ ହେବା ସବୁଠାରୁ ବଡ ବିଡମ୍ବନା କହିବାକୁ ହେବ । ଅବଶ୍ୟ ସବୁ ଯୁଗରେ ଗୋଷ୍ଠୀ, ରାଷ୍ଟ୍ର ନାନା ସଙ୍କଟର ସମ୍ମୁଖୀନ ହୋଇଆସିଛି । ଏପରିକି କେତେକ ସଭ୍ୟତାର ପତନ ହୋଇଛି । କେତେକ ଗୋଷ୍ଠୀ ତାହାର ସାମାଜିକ ଅସ୍ତିତ୍ୱ ହରାଇଛି । ତେବେ ଅତୀତରେ ଯେଉଁସବୁ ସଙ୍କଟ ଆସୁଥିଲା ତାହା ନିର୍ଦ୍ଦିଷ୍ଟ ଗୋଷ୍ଠୀ ଓ ସୀମିତ ଭୂଖଣ୍ଡ

ପାଖରେ ସୀମିତ ରହୁଥିଲା । କିନ୍ତୁ ସାଂପ୍ରତିକ ଯୁଗର ସଙ୍କଟ ସମଗ୍ର ମଣିଷ ସମାଜ ପ୍ରତି ପ୍ରସାରିତ ହୋଇଚାଲିଛି । ଏପରିକି ଆମ ଗ୍ରହଟିରେ ଉଦ୍ଭବ ହୋଇଥିବା ଜୀବଜଗତ ପ୍ରତି ବିପଦର ଆଶଙ୍କା ପ୍ରକାଶ ପାଉଛି । ଏହି ପୃଷ୍ଠଭୂମିରେ ନାନା ସଙ୍କଟ ଭିତରୁ ଏକ ବଡ଼ ସଙ୍କଟକୁ ଅବତାରଣା କରାଯାଇପାରେ । ପରିବେଶର ଅସନ୍ତୁଳନ ସବୁଠାରୁ ବଡ ବିପଦ ବୋଲି ଏବେ କୁହାଯାଉଛି । ଆଧୁନିକ ଜୀବନଶୈଳୀ ଯୋଗୁ ପ୍ରାକୃତିକ ପରିବେଶ ପ୍ରଦୂଷିତ ହୋଇଚାଲିଛି । ପରିବେଶର କ୍ରମବର୍ଦ୍ଧିଷ୍ଣୁ ଦୂଷିତୀକରଣ ଦ୍ୱାରା ବାୟୁ, ଜଳ, ମାଟି ଏପରି ପ୍ରଦୂଷିତ ହୋଇଚାଲିଛି ଯାହା ଦ୍ୱାରା ଜୀବଜଗତର ନିରାପତ୍ତା ସଂକଟ ଆଡକୁ ଆଗେଇ ଚାଲିଛି । ସୀମିତ ପ୍ରାକୃତିକ ସଂପଦ ଗୁଡ଼କ ଆସ୍ତେ ଆସ୍ତେ ନିଃଶେଷ ହୋଇଚାଲିଛି ଓ ଏସବୁ ଭବିଷ୍ୟତ ନେଇ ଏକ ଭୟାନକ ଚିତ୍ର ପ୍ରଦାନ କରୁଛି । ପରିବେଶରୁ କେତେକ ପ୍ରାଣୀ, ଉଦ୍ଭିଦ ବିଲୁପ୍ତ ହୋଇଯାଉଛନ୍ତି ଓ ଏକ ଅସନ୍ତୁଳିତ ଅବସ୍ଥା ଭିତରେ ମଣିଷ ଓ ସକଳ ପ୍ରାଣୀଜଗତ ବିପଦ ଆଡ଼କୁ ଆଗେଇ ଚାଲିଛନ୍ତି । ପୁନଷ୍ଚ ଶିଳ୍ପର ଅଭିବୃଦ୍ଧି ହେବାସହ ବୃହତାକୃତି ନଗରମାନ ଗଢ଼ିଉଠୁଛି ଓ ପ୍ରାକୃତିକ ପରିବେଶ ଧ୍ୱଂସ ପଥରେ ଆଗେଇ ଚାଲିଛି ।

ଏହାଛଡ଼ା ମାନବିକ ସଂପର୍କ କ୍ଷେତ୍ରରେ ମଧ୍ୟ କିଛି ନକାରାତ୍ମକ ଚିତ୍ର ସମାଜଶାସ୍ତ୍ରୀମାନେ ଦର୍ଶାଉଛନ୍ତି । ସମାଜରେ ଏକ ଉପଭୋକ୍ତାବାଦୀ ଦୃଷ୍ଟିଭଙ୍ଗୀ ବ୍ୟାପକ ହେବାରେ ଲାଗିଛି । ସବୁ ସ୍ତରରେ ତୀବ୍ର ପ୍ରତିଯୋଗିତା ଏତେ ବ୍ୟାପକ ହେଉଛି ଯାହାର ପରିଣାମ ସ୍ୱରୂପ ମାନବିକ ସଂପ୍ରୀତି ଓ ସହୃଦୟତା କମି କମି ଆସୁଛି । ସହରୀ ଜୀବନର ପରିବେଶରେ ମାନବିକ ସମ୍ବନ୍ଧ ଅତି ଶିଥିଳ ହେବାରେ ଲାଗିଛି । ନାନା ପ୍ରକାରର ମାନସିକ ଉତ୍ତେଜନା ଓ ଉଦ୍‌ବେଗ ଜନିତ କାରଣରୁ ନାନା ଅସାମାଜିକ କାର୍ଯ୍ୟ, ଯୌନ ବ୍ୟଭିଚାର, ମାଦକଦ୍ରବ୍ୟର ପ୍ରସାର ବୃଦ୍ଧି ପାଇଚାଲିଛି । ପାରିବାରିକ ଜୀବନ ବିପର୍ଯ୍ୟୟର ସମ୍ମୁଖୀନ ହେଉଛି । ପିତାମାତା ନିଜର କ୍ୟାରିୟର ଓ ରୋଜଗାର ଭିତରେ ନିଜ ପିଲାଙ୍କର ଯତ୍ନ ଓ ଦାୟିତ୍ୱ ପାଇଁ ସମୟ ଦେଇପାରୁନାହାନ୍ତି । ପ୍ରାଚୁର୍ଯ୍ୟ ଭିତରେ ସ୍ନେହକାଙ୍ଗାଳ ସନ୍ତାନମାନେ ଅସାମାଜିକ କାର୍ଯ୍ୟ ଓ ଡ୍ରଗର ଶିକାର ହେଉଛନ୍ତି । ଏସବୁର ସମ୍ମିଳିତ ପ୍ରଭାବରୁ ସାମାଜିକ ଶୃଙ୍ଖଳା ନାନାଭାବରେ ବ୍ୟାହତ ହୋଇଚାଲିଛି । ଆଧୁନିକ ପ୍ରଯୁକ୍ତିର ସାହାଯ୍ୟରେ ଚତୁର ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ନାନାକୁସଂସ୍କାରକୁ ବ୍ୟାପକ କରିପାରୁଛନ୍ତି ଓ ବିଚାରଶୂନ୍ୟ ବ୍ୟକ୍ତିମାନେ ଏଥିରେ ସହଜରେ ଶିକାର ହେଉଛନ୍ତି । ନାନା ପ୍ରକାରର ହିଂସା ଓ ସନ୍ତ୍ରାସବାଦୀ କାର୍ଯ୍ୟରେ ଯୁବକମାନଙ୍କୁ ଅକ୍ଳେଶରେ ସଂଶ୍ଳିଷ୍ଟ କରାଯାଇପାରୁଛି । ଏହିପରି ସମାଜର ବିଭିନ୍ନ ସ୍ତରରେ ମାନବୀୟ ସଂକଟ ଉତ୍କଟ ରୂପ ନେବାରେ ଲାଗିଛି ।

ଉପସଂହାରରେ ସକଳ ପ୍ରଗତି ସତ୍ତ୍ୱେ ଏସବୁ ଦୁଷ୍କୃତି ଜନଜୀବନରେ ସଂଶ୍ଳିଷ୍ଟ ହୋଇରହିଛି । ତେବେ ସବୁ ସଭ୍ୟତାରେ ଓ ସକଳ କାଳଖଣ୍ଡରେ ମଣିଷ ହିଁ ତାର ସଂକଟକୁ ଅତିକ୍ରମ କରିବାକୁ ବାଟ ଖୋଜିଛି । ସମାଜର ଉନ୍ନତ ଚିନ୍ତାର ବ୍ୟକ୍ତିମାନେ ମାନବିକ ସ୍ଥିତି ଓ ପରିସ୍ଥିତିର ସଂକଟକୁ ଅନୁଧ୍ୟାନ କରି ସର୍ବଦା ବାଟ ଖୋଜିଛନ୍ତି । କିଛି ସୃଜନଶୀଳ ବ୍ୟକ୍ତିଙ୍କର ବିଚାରବୋଧ, ଅନ୍ତଃଦୃଷ୍ଟି ଓ ଗଭୀର ଅନୁଶୀଳନରୁ ସମାଜ ପାଇଁ ନୂଆ ପନ୍ଥା ବାହାରିଛି । କେଉଁ ଈଶ୍ୱର ବା କଳ୍ପିତ ଦିଅଁ ଦେବତା ମଣିଷର ସଂକଟକୁ ଦୂର କରିନାହାନ୍ତି । ସୁତରାଂ ଆଜି ସଭ୍ୟତା ଯେଉଁସବୁ ସଙ୍କଟର ସମ୍ମୁଖୀନ ହୋଇଚାଲିଛି ତାହାର ସମାଧାନ ପାଇଁ ମଣିଷକୁ ହିଁ ବାଟ ଖୋଜିବାକୁ ହେବ । (୭.୭.୧୦)



# ଚେତନାର ନବଦିଗନ୍ତ

ସଭ୍ୟତାର ବିକାଶ ସହ ମାନବିକତାବୋଧର ବିକାଶ ଘଟୁଛି ନା ଅବକ୍ଷୟ ଘଟୁଛି ? ପୃଥିବୀର ବହୁ ଚିନ୍ତାଶୀଳ ବ୍ୟକ୍ତି ସେମାନଙ୍କ ଲେଖାରେ ଏହି ପ୍ରଶ୍ନଟି ଉଠାଉଛନ୍ତି । ଯେଉଁମାନେ ସଭ୍ୟତାର ବା ମାନବ ଜାତିର ଶୁଭଚିନ୍ତକ ଓ ବିଶ୍ୱଶାନ୍ତିର ବଡ଼ ପ୍ରବକ୍ତା ସେମାନଙ୍କ ପାଇଁ ଏହା ଏକ ଗୁରୁତର ପ୍ରସଙ୍ଗ । ଏକଥା ସତ୍ୟ ଯେ ସଭ୍ୟତାର କ୍ରମବିକାଶ ଧାରାରେ ବିଂଶ ଶତାବ୍ଦୀ ବହୁ ଭାବରେ ମହତ୍ତ୍ୱପୂର୍ଣ୍ଣ । ଏହି ଶତାବ୍ଦୀରେ ବିଜ୍ଞାନ ଏକ ନିର୍ଣ୍ଣାୟକ ଭୂମିକା ନେଇ ନାନା ଉଦ୍ଭାବନ ଓ ଆବିଷ୍କାର କରିବା ଦ୍ୱାରା ସଭ୍ୟତାର ରୂପରେଖ ବଦଳି ଯାଇଛି । ତେବେ ବିଡ଼ମ୍ବନାର ବିଷୟ ଯେ ଏହି ଶତାବ୍ଦୀରେ ଦୁଇଟି ବିଶ୍ୱଯୁଦ୍ଧ ସଂଘଟିତ ହୋଇଛି । ବିଶ୍ୱଯୁଦ୍ଧ ସମୟରେ ନାନା ଅବର୍ଣ୍ଣନୀୟ କ୍ଷୟକ୍ଷତି ସହ ଆଣବିକ ମାରଣାସ୍ତ୍ର ପ୍ରୟୋଗ ଯୋଗୁଁ ଗୋଟିଏ ଦେଶର ଦୁଇଟି ସହର ଧ୍ୱଂସ ପାଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଶୀତଳ ଯୁଦ୍ଧର ପରିବେଶ ବହୁ ଦଶନ୍ଧି ଧରି ଏକ ଉତ୍ତେଜନାର ବାତାବରଣ ଆଣିଛି । ବୈଜ୍ଞାନିକ ଜ୍ଞାନ ପ୍ରୟୋଗକରି ପ୍ରତ୍ୟେକ ଉନ୍ନତ ରାଷ୍ଟ୍ର ଆଣବିକ ଶକ୍ତିରେ ଶକ୍ତିଶାଳୀ ହେବାକୁ ପ୍ରୟାସ କରିଛି । ସାମ୍ରାଜ୍ୟବାଦ ବିରୁଦ୍ଧରେ ସାରା ପୃଥିବୀରେ ସ୍ୱର ଗୁଂଜରି ଉଠିଛି । ପରିଣାମତଃ ଅନେକ ରାଷ୍ଟ୍ର ହିଂସାତ୍ମକ ପନ୍ଥାରେ ହେଉ ବା ଅହିଂସାତ୍ମକ ପନ୍ଥାରେ ହେଉ ଗଣବିପ୍ଳବ ଜରିଆରେ ରାଜନୈତିକ ସ୍ୱାଧୀନତା ଲାଭ କରି ଉନ୍ନତ ହେବାକୁ ପ୍ରୟାସ କରିଛନ୍ତି । ସର୍ବହରା ମଣିଷର ଅଧିକାର ପାଇଁ ପୁଞ୍ଜିବାଦୀ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉଠିଛି ଓ କମ୍ୟୁନିଜିମ ଏକ ଶୋଷଣମୁକ୍ତ ସମତାଭିତ୍ତିକ ସମାଜ ପ୍ରତିଷ୍ଠା ପାଇଁ ପ୍ରୟାସ କରିଛି । ପୁନଶ୍ଚ କେତେକ କମ୍ୟୁନିଷ୍ଟ ରାଷ୍ଟ୍ରର ରାଜନୈତିକ ବ୍ୟବସ୍ଥା ଭାଙ୍ଗିଯାଇଛି ଓ ସମାଜବାଦର ନୂତନ କଳେବର ହୋଇଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସର୍ବଗ୍ରାସୀ ଭୂମିକା ନେଇ ପ୍ରତ୍ୟେକ ଦେଶର ବିକାଶ ପ୍ରକ୍ରିୟାକୁ ଗଭୀର ପ୍ରଭାବିତ କରିଛି । ସମଗ୍ର ପୃଥିବୀରେ ଗମନା ଗମନର ପ୍ରଭୂତ ଉନ୍ନତି ଯୋଗୁ ଦୂରତ୍ୱ କମିଯାଇଛି ବା ଅନ୍ୟଭାବରେ କହିଲେ ଆମ ପୃଥିବୀ ଏକ ବିଶ୍ୱଗ୍ରାମରେ ପରିଣତ ହୋଇଛି । ସଭ୍ୟତା, ସଂସ୍କୃତି, ଧର୍ମ ମଧ୍ୟରେ ପାରସ୍ପରିକ ଆଦାନପ୍ରଦାନ ଯୋଗୁ ଏକ ଆନ୍ତର୍ଜାତିକ ମନୋଭାବର ବିକାଶ ହୋଇଛି । ଏକ ସର୍ବଜନହିତୈଷୀ ସର୍ବୋଦୟ ସମାଜ ପାଇଁ କେତେକ ଚିନ୍ତକ ଭାବନା ବ୍ୟକ୍ତ କରିଛନ୍ତି । ମାନବିକ ଅଧିକାର ଜନିତ ଆନ୍ତର୍ଜାତିକ ଘୋଷଣାନାମାରେ

ପ୍ରତ୍ୟେକ ବ୍ୟକ୍ତିର ସମ୍ମାନର ସହ ବଞ୍ଚିବାର ଅଧିକାରକୁ ସ୍ୱୀକାର କରାଯାଇଛି । ଯେକୌଣସି ମାନବିକ ସମସ୍ୟା ଆନ୍ତର୍ଜାତିକସ୍ତରରେ ଆଲୋଚିତ ହୋଇପାରୁଛି ଓ କୌଣସି ସଂକଟର ସମାଧାନ ପାଇଁ ଆନ୍ତର୍ଜାତିକ ଦୃଷ୍ଟି ଆକର୍ଷିତ ହେଉଛି । ଏସବୁ ସଭ୍ୟତାର ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏସବୁ ସତ୍ତ୍ୱେ ସାଂପ୍ରତିକ ଯୁଗରେ ଅନେକ ସଂକଟ ଆସିଛି । କେତେକ କ୍ଷେତ୍ରରେ ବିଜ୍ଞାନ ଓ ପ୍ରଯୁକ୍ତିର ଅପପ୍ରୟୋଗରୁ ବିଷମୟ ପରିଣତି ଆସୁଛି ବା ନାନା ସଂକଟ ମୁଣ୍ଡ ଟେକୁଛି । ସାରା ପୃଥିବୀରେ ଆଣବିକ ଯୁଦ୍ଧର ଭୟାବହ ପରିଣତି ନେଇ ସମସ୍ତେ ଜାଣି ମଧ୍ୟ ପ୍ରତ୍ୟେକ ରାଷ୍ଟ୍ର ଆଣବିକ ଅସ୍ତ୍ର ନିର୍ମାଣ ପାଇଁ ପ୍ରାକୃତିକ ସଂପଦକୁ ବିନିଯୋଗ କରୁଛି । ପୁଞ୍ଜିବାଦର ଆଢୁଆଳରେ ଏକ ନୂଆ ସାମ୍ରାଜ୍ୟବାଦ ମୁଣ୍ଡଟେକିଛି । ସମଗ୍ର ପୃଥିବୀରେ ପ୍ରାକୃତିକ ସଂପଦକୁ କରାଗତ କରିବାକୁ ବହୁରାଷ୍ଟ୍ରୀୟ କଂପାନୀମାନେ ନୂଆ ନୂଆ ପଦ୍ଧତି ପ୍ରୟୋଗ କରି ତାହାକୁ ବିକାଶର ଚିତ୍ର ଦେଉଛନ୍ତି । ଜଗତୀକରଣ ବିଚାର ପଛରେ ଅର୍ଥନୈତିକ ଶୋଷଣ ହିଁ ମୁଖ୍ୟ ଉଦ୍ଦେଶ୍ୟ ଥିବା ଅଭିଯୋଗ କରାଯାଉଛି । ଆଧୁନିକ ପ୍ରଯୁକ୍ତି ଦ୍ୱାରା ବିକାଶର ଯେଉଁ ଚିତ୍ରଟି ଦିଆଯାଉଛି ତାହାର ବିଷମୟ ପରିଣତି ନେଇ ପରିବେଶବିତ୍‌ମାନେ କେତେ ଆଶଙ୍କା ବ୍ୟକ୍ତ କରୁଛନ୍ତି । ପରିବେଶର ଦୂଷିତୀକରଣ ଓ ଗ୍ଲୋବାଲ ୱାର୍ମିଂ ପ୍ରସଙ୍ଗ ଆନ୍ତର୍ଜାତିକ ସ୍ତରରେ ଯେଉଳି ଆଲୋଚିତ ହେଉଛି ସେଥିରୁ ସଭ୍ୟତାର ଭବିଷ୍ୟତ ନେଇ ଭୟଙ୍କର ସନ୍ଦେହ ସୃଷ୍ଟି ହେଉଛି । ଗଣମାଧ୍ୟମରେ ବିଶେଷକରି ଦୂରଦର୍ଶନର ବିଭିନ୍ନ ଚାନେଲମାନଙ୍କରେ ଯେଉଁ ସବୁ ସିରିଏଲ, ବିଜ୍ଞାପନ ଓ କେତେକ ସୋ ପ୍ରଚାର କରାଯାଉଛି ତାହାର କୁପ୍ରଭାବ କିପରି ଯୁବ ପିଢ଼ିକୁ କୁପଥରେ ନେଉଛି ତାହା କେତେକ ସମାଜ ସଚେତନ ବ୍ୟକ୍ତି ସର୍ବଦା ପ୍ରକାଶ କରୁଛନ୍ତି । ନାନା ହିଂସାତ୍ମକ କାହାଣୀ, ଉଚ୍ଛୃଂଖଳତା, ଯୌନ ଉଦ୍ଦୀପକ ଚିତ୍ର ଯୁବକମାନଙ୍କୁ ବିପଥଗାମୀ କରାଉଛି । ସେହି ପରି ବର୍ତ୍ତମାନର କର୍ମସଂସ୍କୃତି ଓ ଭୟଙ୍କର ପ୍ରତିଯୋଗିତାମୂଳକ ପରିବେଶରୁ ଅନେକ ବ୍ୟକ୍ତି ନାନା ପ୍ରକାର ମାନସିକ ଉତ୍ତେଜନା, ଭୟ ଓ ହତାଶା ଭିତରେ ସମୟ କାଟୁଛନ୍ତି । ସମାଜର ବିଭିନ୍ନ ସ୍ତରରେ ନୈତିକ ଅବକ୍ଷୟ ଓ ବ୍ୟଭିଚାର ବୃଦ୍ଧି ପାଉଛି । ହିଂସା, ସନ୍ତ୍ରାସବାଦ, ସାଂପ୍ରଦାୟିକ ତିକ୍ତତା ବୃଦ୍ଧି ପାଇବାରେ ଲାଗିଛି । ଜୀବନକୁ ସୁଖକର କରିବାକୁ ବହୁ ଯାନ୍ତ୍ରିକ ସାଧନମାନ ଉପଲବ୍ଧ ହେବା ସତ୍ତ୍ୱେ ବି ଜୀବନର ଗୁଣାତ୍ମକମାନ ସାର୍ବଜନୀନ ଭାବେ ବୃଦ୍ଧି ପାଉନାହିଁ । ଅପରପକ୍ଷରେ ଏକତ୍ୱବୋଧ, ନୈରାଶ୍ୟଭାବ ଓ ଭୟଙ୍କର ମାନସିକ ଉତ୍ତେଜନା ବୃଦ୍ଧି ପାଇବାରେ ଲାଗିଛି । ଏସବୁକୁ କେତେକ ଏ ସମୟର 'ଯୁଗଯନ୍ତ୍ରଣା' ବୋଲି ଅଭିହିତ କରୁଛନ୍ତି । ପ୍ରତ୍ୟେକ ସମୟରେ ଯେଉଁ ଜ୍ଞାନ, ରାଜନୈତିକ ଆଦର୍ଶ, ଅର୍ଥନୈତିକ ବିକାଶ, ଶିକ୍ଷା ବ୍ୟବସ୍ଥା ସମାଜରେ ପ୍ରଚଳିତ ଥାଏ ତାହାର ସୁପ୍ରଭାବ

ସତ୍ତ୍ୱେ କେତେକ ମନ୍ଦ ଦିଗ ରହିପାରେ । ସେହି ମନ୍ଦ ପ୍ରଭାବକୁ ଦୂର କରିବାକୁ ବୌଦ୍ଧିକ ସ୍ତରରେ ପ୍ରୟାସ ହୁଏ ଓ ସମାଧାନର ସୂତ୍ର ବି ବାହାରେ । ପୁଣି ସମୟର ବ୍ୟବଧାନରେ ନୂଆ ସମସ୍ୟା ମୁଣ୍ଡ ଟେକେ । କୌଣସି ସମୟରେ ସଭ୍ୟତା ବା ସାମାଜିକ ପରିବେଶ ସଂପୂର୍ଣ୍ଣ ତ୍ରୁଟିଶୂନ୍ୟ ବା ଆଦର୍ଶସ୍ଥାନୀୟ ହୋଇପାରେ ନାହିଁ, ତାହାର କିଛି କୁପ୍ରଭାବ ରହେ ଯାହାକୁ ସେ ସମୟର ଯୁଗଯନ୍ତ୍ରଣା କୁହାଯାଏ । ଏସବୁକୁ ସ୍ୱୀକାର କରି ଆମର ଯୁଗଯନ୍ତ୍ରଣାକୁ ଆମ ସାମାଜିକ ପୃଷ୍ଠଭୂମିରେ କିପରି ବ୍ୟକ୍ତ କରାଯିବ ? ଆମର ରାଜନୈତିକ ଓ ଅର୍ଥନୈତିକ ସ୍ଥିତି, ଧାର୍ମିକ ଅନୁଷ୍ଠାନ, ଶିକ୍ଷା ବ୍ୟବସ୍ଥା ଓ ସର୍ବୋପରି ସାମାଜିକ ପରିବେଶକୁ ମୂଲ୍ୟାୟନ କଲାବେଳେ କେତେକ ନୈରାଶ୍ୟର ଚିତ୍ର ସ୍ପଷ୍ଟ ବାରିହୁଏ । ରାଜନୈତିକ ଦୃଶ୍ୟପଟରେ ସବୁଠାରୁ ବଡ଼ ବିପର୍ଯ୍ୟୟ ହେଉଛି ରାଜନୈତିକ ଚରିତ୍ର ନୈତିକତାକୁ ଜଳାଞ୍ଜଳି ଦେବା । ସାଧୁତା, ନୈତିକତା, ଚରିତ୍ରବତ୍ତା, ସତ୍ୟବାଦିତା ପରି ମହତ୍ତର ଆଦର୍ଶଗୁଡ଼ିକ ଆମ ରାଜନୈତିକ ଜୀବନରୁ ଅପସରି ଯିବା ଆମ ପାଇଁ ବଡ଼ ବିଡ଼ମ୍ବନା କହିବାକୁ ହେବ । ଅର୍ଥନୈତିକ ବ୍ୟବସ୍ଥା ପୃଷ୍ଠଭୂମିରେ ଦେଖାଯାଏ ଯେ ଏତେ ଜନକଲ୍ୟାଣମୂଳକ ଯୋଜନା ସତ୍ତ୍ୱେ ସମାଜର ଅଗଣିତ ବ୍ୟକ୍ତି ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି । ସମାଜର ସ୍ୱଳ୍ପ ସଂଖ୍ୟକ ବ୍ୟକ୍ତି ସକଳ ପ୍ରାଚୁର୍ଯ୍ୟ ଭିତରେ ଜୀବନ ଧାରଣ କରୁଥିବା ବେଳେ ସମାଜର ଅଗଣିତ ମଣିଷ ନିମ୍ନତମ ଆବଶ୍ୟକତାରୁ ବଞ୍ଚିତ ହୋଇ ଉପମାନବୀୟ ସ୍ତରରେ ଜୀବନ ଅତିବାହିତ କରୁଛନ୍ତି । ଧର୍ମ ମହତ୍ତର ଜୀବନର ପ୍ରେରଣା ଦେବା ପରିବର୍ତ୍ତେ ସାଂପ୍ରଦାୟିକତା ଓ ବିଦ୍ୱେଷାତ୍ମକ ଆବେଗରେ ପରିଣତ ହୋଇଯାଉଛି । କେତେକ ପ୍ରଭାବଶାଳୀ ବ୍ୟକ୍ତି ଓ ସଂଗଠନ ଧର୍ମର ଧ୍ୱଜା ଧରି ରାଜନୈତିକ ଉଦ୍ଦେଶ୍ୟ ସାଧନ ପାଇଁ ସାଂପ୍ରଦାୟିକତାର ବିଷ ମଂଜି ବୁଣୁଛନ୍ତି । ଶିକ୍ଷାରୁ ନୈତିକ ଚେତନା ଓ ଜୀବନ ପାଇଁ ଉଚ୍ଚ ପ୍ରେରଣା କମିଯିବାରେ ଲାଗିଛି । ଏହା କେବଳ ଅର୍ଥ ଉପାର୍ଜନର ପନ୍ଥା ହୋଇପଡୁଛି ଓ ବହୁରାଷ୍ଟ୍ରୀୟ କଂପାନୀମାନଙ୍କର ସଂସ୍ଥାରେ କର୍ମନିଯୁକ୍ତି ପାଇଁ ଭୟଙ୍କର ପ୍ରତିଯୋଗିତା ବଢ଼ିଚାଲିଛି । ଦର୍ଶନ, ସାହିତ୍ୟ, କଳା ଓ ବିଜ୍ଞାନର ମୌଳିକ ଗବେଷଣା, ଯାହା ଜ୍ଞାନର ମୂଳଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ, ତାହା ପ୍ରତି ଯୁବମାନସରେ ବିଶେଷ ଆଗ୍ରହ ନାହିଁ ଓ ଏଥିପାଇଁ ସାମାଜିକ ପ୍ରୋତ୍ସାହନ ମଧ୍ୟ ନାହିଁ । ସାମାଜିକ ପରିବେଶରେ ଏବେ ବି ନାନା କୁସଂସ୍କାର, ଅପସଂସ୍କୃତି, ଜାତିଆଣ ମାନସିକତା, ସନ୍ତ୍ରାସବାଦ ବେଶ୍ ପ୍ରଭାବ ବିସ୍ତାର କରି ରହିଛି । ଚାରିତ୍ରିକ ସୁଗୁଣଗୁଡ଼ିକ ସମାଜରୁ ଅଳକ୍ଷରେ ଅପସରି ଯାଉଛି ।

ଏହିସବୁ ଯୁଗ ଯନ୍ତ୍ରଣାରୁ ସମାଜକୁ ମୁକ୍ତ କରିବାକୁ ଯାହା ପ୍ରୟାସ ହେଉ ନା କାହିଁକି ତାହାର ମୂଳ ଭିତ୍ତି ବିଚାରଶୀଳତା ଓ ମାନବିକତାର ଆଧାର ଉପରେ ହେବା ଆବଶ୍ୟକ । ପ୍ରଥମରୁ ଏହା ସ୍ୱୀକାର କରିବା ଉଚିତ ଯେ ମାନବିକ ସମସ୍ୟାର ସମାଧାନ

କେଉଁ ଦିଅଁ ଦେବତା ବା କଳ୍ପିତ ଈଶ୍ୱରଙ୍କଠାରୁ ଆସେ ନାହିଁ । ଏହା ସମାଜର ଚିନ୍ତାଶୀଳ ବ୍ୟକ୍ତିମାନେ ନିଜର ଅନୁଭୂତି, ବିଚାର ଓ ଅନୁଶୀଳନ ଦେଇ ବ୍ୟକ୍ତ କରିଥାନ୍ତି । ବିଚାରଶୀଳ ଭାବେ ମଣିଷ ହିଁ ତା'ର ଚତୁଃପାର୍ଶ୍ୱର ପରିସ୍ଥିତିକୁ ଅନୁଧ୍ୟାନ କରି ନୂଆ ବାଟ ଖୋଜିଥାଏ । ତେବେ ସବୁରି କ୍ଷେତ୍ରରେ ଏକ ମାନବିକ ଦୃଷ୍ଟି ବ୍ୟକ୍ତ ହେବା ଆବଶ୍ୟକ । ମାନବିକ ଦୃଷ୍ଟି ହେଉଛି ନୈତିକ ମୂଲ୍ୟବୋଧର ସମନ୍ୱିତ ଅଭିବ୍ୟକ୍ତି । ଏହା ମାନବିକ ଉତ୍କର୍ଷ ଓ ମର୍ଯ୍ୟାଦାକୁ ମୁଖ୍ୟ ସ୍ଥାନ ଦେଇଥାଏ । ଏହା କୌଣସି ପାରଲୌକିକ ଜଗତର କଳ୍ପନା କରେ ନାହିଁ, ବରଂ ଆମ ସାମାଜିକ ପରିବେଶକୁ, ସଂସାରକୁ ଉନ୍ନତ, ନ୍ୟାୟପୂର୍ଣ୍ଣ ଓ ଉତ୍ତରଦାୟୀ କରିବାକୁ ପ୍ରୟାସ କରେ । ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଓ ସଭ୍ୟ ଆଚରଣକୁ ଏହା ସବୁସ୍ତରରେ ପ୍ରାଧାନ୍ୟ ଦିଏ । ଅନ୍ୟର ଦୁଃଖ ଓ ଦୁର୍ଦ୍ଦଶା ପ୍ରତି ସହାନୁଭୂତିର ମାନସିକତା ରଖେ । ମାନବିକତାବୋଧର ଏହା କେତେକ ମୌଳିକ ତାତ୍ପର୍ଯ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ ।

ମାନବିକତାବୋଧ ଏକ ମହତ୍ତର ମୂଲ୍ୟବୋଧ ଭାବେ ଆମର ସକଳ ସାମାଜିକ ଅନୁଷ୍ଠାନର ମୂଳଭିତ୍ତି ହେବା ଆବଶ୍ୟକ । ଏହାର ପ୍ରସାର ଓ ଅଭିବ୍ୟକ୍ତି ଚେତନାର ଏକ ନବଦିଗନ୍ତକୁ ସ୍ପର୍ଶ କରିବ ଓ ଜୀବନର ଗୁଣାତ୍ମକ ଉତ୍ତରଣରେ ନିର୍ଣ୍ଣାୟକ ହେବ । (୧୪.୭.୧୦)



# ବିକାଶ ଓ ତୃତୀୟ ବିଶ୍ୱ

ଗୋଟିଏ ମାନଦଣ୍ଡରେ ବିଶ୍ୱର ସମସ୍ତ ରାଷ୍ଟ୍ରମାନଙ୍କୁ ତିନୋଟି ଶ୍ରେଣୀରେ ବିଭାଜିତ କରାଯାଏ । ପ୍ରଥମ ବିଶ୍ୱର ରାଷ୍ଟ୍ରମାନେ ବିକଶିତ ଓ ସେଠାରେ ଜୀବନଧାରଣର ମାନ ବହୁ ଉନ୍ନତ । ଆର୍ଥିକ ସ୍ୱଚ୍ଛଳତା, ଶିକ୍ଷା, ସ୍ୱାସ୍ଥ୍ୟସେବା, ସମାଜ କଲ୍ୟାଣକାରୀ ଯୋଜନା, ସ୍ୱାବଲମ୍ବନଶୀଳତା ଓ ଉନ୍ନତ ଜୀବନଶୈଳୀ ସେଠାରେ ସବୁ ମଣିଷଙ୍କ ପାଇଁ ଅନେକାଂଶରେ ଉପଲବ୍ଧ । ଏକଦା ସମାଜବାଦକୁ ଆଦର୍ଶ ଭାବେ ନେଇ କମ୍ୟୁନିଷ୍ଟ ଶାସନ ବ୍ୟବସ୍ଥାକୁ ଗ୍ରହଣ କରିଥିବା ରାଷ୍ଟ୍ର ସକଳକୁ ଦ୍ୱିତୀୟ ବିଶ୍ୱ କୁହାଯାଇଥାଏ । ପୁଞ୍ଜିବାଦ ଓ ସାମନ୍ତବାଦର ବିଲୋପ, ପ୍ରତ୍ୟେକ ନାଗରିକଙ୍କୁ ସମାନ ସୁବିଧା ସୁଯୋଗ, ସକଳ ଜାତୀୟ ସମ୍ପଦକୁ ରାଷ୍ଟ୍ରାୟତ୍ତ କରିବାର ଯୋଜନା ଭିତରେ ସେହି ରାଷ୍ଟ୍ର ସମୂହ ମଧ୍ୟ ଅଳ୍ପ ବର୍ଷ ଭିତରେ ଯଥେଷ୍ଟ ବିକାଶ ଲାଭ କରିପାରିଛନ୍ତି । ଏହି ରାଷ୍ଟ୍ର ସମୂହରେ ବାସ୍ତବ ଜନତନ୍ତ୍ର ପ୍ରତିଷ୍ଠା ହୋଇଛି ବୋଲି ଅନେକ ସମାଜବାଦୀ ଚିନ୍ତାନାୟକ ମତବ୍ୟକ୍ତ କରିଥାନ୍ତି । ଏହି ଦୁଇ ବିଶ୍ୱକୁ ଛାଡ଼ି ଏକ ତୃତୀୟ ବିଶ୍ୱ ରହିଛି । ଏହି ବିଶ୍ୱର ରାଷ୍ଟ୍ର ସମୂହକୁ ବିକାଶଶୀଳ କୁହାଯାଉଛି । ଏଗୁଡ଼ିକ ଅତୀତରେ ସାମ୍ରାଜ୍ୟବାଦର ଶିକାର ହୋଇଛନ୍ତି କିମ୍ବା ରାଜତନ୍ତ୍ରକୁ ଏପର୍ଯ୍ୟନ୍ତ ଧରି ରଖିଛନ୍ତି ଓ ବିକାଶ ମାନଦଣ୍ଡରେ ପଛୁଆ ହୋଇ ରହିଛନ୍ତି । ଏଠାରେ ନିରକ୍ଷର ଲୋକ ରହିଛନ୍ତି, ଆଧୁନିକ ଚିକିତ୍ସାରୁ ଅନେକ ଲୋକ ବଞ୍ଚିତ ହେଉଛନ୍ତି, ଅନେକ ଲୋକ ବେକାର ରହିଛନ୍ତି ଓ ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଛି । ରାଷ୍ଟ୍ରୀୟ ସ୍ତରରେ ଯେଉଁ ଜନକଲ୍ୟାଣମୂଳକ ଯୋଜନାମାନ କାର୍ଯ୍ୟକାରୀ ହେଉଛି, ତାହାର ସୁଫଳ ସମାଜର ମୁଷ୍ଟିମେୟ ଲୋକ ପାଉଛନ୍ତି ଓ ସମାଜର ଅଗଣିତ ମଣିଷ ଦାରିଦ୍ର୍ୟ ସୀମାରେଖା ତଳେ ଉପମାନବୀୟ ସ୍ତରରେ ଦୟନୀୟ ଭାବେ ଜୀବନ ବଞ୍ଚୁଛନ୍ତି ।

ସତୁରୀ ଦଶକରେ ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ ତୃତୀୟ ବିଶ୍ୱର ନାନା ଦିଗନ୍ତକୁ ଆଲୋଚନା କରି ଏକ ପୁସ୍ତକ ତିନିଖଣ୍ଡରେ ପ୍ରକାଶ କରିଥିଲେ ଓ ସେହି ପୁସ୍ତକ ପାଇଁ ୧୯୭୪ରେ ନୋବେଲ ପୁରସ୍କାର ପାଇଥିଲେ । ସେ ମୁଖ୍ୟତଃ କେତେକ ଏସୀୟ ରାଷ୍ଟ୍ରର ଦାରିଦ୍ର୍ୟର କାରଣ ସବୁକୁ ନାନା ଦିଗରୁ ବିଚାର କରିଛନ୍ତି । ଯେଉଁ ଦେଶ ସମୂହ ବିକାଶ ପ୍ରକ୍ରିୟାରେ ବହୁ ପଛରେ ରହିଛନ୍ତି, ସେଠିକାର ଅର୍ଥନୀତିକୁ ନାନାଦିଗରୁ

ବିଶ୍ଳେଷଣ କରିଛନ୍ତି । ବିକାଶ ବା ସମୃଦ୍ଧି ଏକ ଅର୍ଥନୈତିକ ଅବଧାରଣା ବୋଲି ଭାବନା ବହୁ ସମୟରେ ଆସିଥାଏ । ଗୋଟିଏ ସମାଜ ବା ଆର୍ଥିକ ପୃଷ୍ଠଭୂମିରେ ବିକଶିତ, ବିକାଶଶୀଳ ଓ ଅବିକଶିତ ବୋଲି ସାଧାରଣତଃ ବିଶ୍ୱାସ କରାଯାଏ । ତେବେ ସମାଜର କୌଣସି ସମସ୍ୟା ସମ୍ପୂର୍ଣ୍ଣ ଭାବେ ଏକକ ଓ ନିଃସଙ୍ଗ ସମସ୍ୟା ନୁହେଁ । ଯେ କୌଣସି ଏକ ସମସ୍ୟା ବହୁ ଆନୁଷଙ୍ଗିକ ସମସ୍ୟା ଓ କାରଣ ସହ ସଂଶ୍ଳିଷ୍ଟ ହେବା ଦେଖାଯାଏ । ସେହି ପୃଷ୍ଠଭୂମିରେ ଦାରିଦ୍ର୍ୟ କେବଳ ଏକ ଅର୍ଥନୈତିକ ସମସ୍ୟା ବୋଲି କହିବା ଯଥାର୍ଥ ନୁହେଁ । ଦାରିଦ୍ର୍ୟ ସହ ବହୁ ସାମାଜିକ ସମସ୍ୟା ଓ ପରିବେଶ ସଂଶ୍ଳିଷ୍ଟ ଥିବା ମନେହୁଏ । ଗୋଟିଏ ରାଷ୍ଟ୍ରର ରାଜନୈତିକ ଘଟଣା ପ୍ରବାହ, ସାଂସ୍କୃତିକ ପରିବେଶ, ଭୌଗୋଳିକ ସ୍ଥିତି, ଜନସଂଖ୍ୟା, ଲୋକ ଚରିତ୍ର ଇତ୍ୟାଦି ବହୁ ଘଟଣା ତାହାର ଦାରିଦ୍ର୍ୟ ବା ସମୃଦ୍ଧି ସହିତ ସଂଶ୍ଳିଷ୍ଟ । ସୁତରାଂ ଗୋଟିଏ ରାଷ୍ଟ୍ରର ଦାରିଦ୍ର୍ୟର ନାନା ଦିଗନ୍ତ ରହିପାରେ ଓ ସେସବୁର ସମ୍ମିଳିତ ପ୍ରଭାବ ରାଷ୍ଟ୍ରର ଅର୍ଥନୈତିକ ବିକାଶଧାରାକୁ ନାନା ପ୍ରତିକୂଳ ଦିଗରେ ପ୍ରଭାବିତ କରିପାରେ ।

ଅବଶ୍ୟ ଯେଉଁ ରାଷ୍ଟ୍ର ସମୂହ ବିକଶିତ, ସେମାନେ କେଉଁସବୁ କାରଣରୁ ବିକଶିତ ହୋଇଛନ୍ତି ତାହାର ନାନା ଅଧ୍ୟୟନ ଦ୍ୱାରା କାରଣ ସବୁକୁ ନିର୍ଣ୍ଣୟ କରାଯାଇପାରେ । ସେଠିକାର ରାଜନୈତିକ ଚରିତ୍ର, ସାଂସ୍କୃତିକ ପରମ୍ପରା, ପ୍ରାକୃତିକ ପରିବେଶ, ବୈଜ୍ଞାନିକ ଗବେଷଣା, ଜନସଂଖ୍ୟା ସେମାନଙ୍କୁ କେତେ ସହାୟକ ହୋଇଛି ତାହାର ନାନା ଅନୁଶୀଳନ ବି କରାଯାଇପାରେ । ଅବଶ୍ୟ ବିକଶିତ ଓ ଅବିକଶିତ ରାଷ୍ଟ୍ର ସମୂହର ପ୍ରାକୃତିକ ପରିବେଶ ଭିତରେ ବିଶେଷ ପାର୍ଥକ୍ୟ ନଥାଇପାରେ । ବରଂ ଜାପାନ ଓ ସ୍କାଣ୍ଡିନେଭିଆନ ରାଷ୍ଟ୍ରମାନଙ୍କର ପ୍ରାକୃତିକ ପରିବେଶ ବହୁ ପ୍ରତିକୂଳ । ସେ ଦେଶମାନେ ଅତୀତରେ ବହୁ ଯୁଦ୍ଧ ବିଭୀଷିକାର ସମ୍ମୁଖୀନ ହୋଇଛନ୍ତି । ଏସବୁ ସତ୍ତ୍ୱେ ସେ ଦେଶ ସମୂହ ପୂର୍ଣ୍ଣ ବିକଶିତ ଓ ସେସବୁ ଦେଶର ଜୀବନ ଧାରଣର ମାନ ବହୁ ଉନ୍ନତ । ଅପରପକ୍ଷରେ ଆମ ଦେଶ ପରି ଦକ୍ଷିଣ ଏସୀୟ ରାଷ୍ଟ୍ର ସମୂହରେ ପ୍ରଚୁର ପ୍ରାକୃତିକ ସମ୍ପଦ ରହିଛି, ପ୍ରାକୃତିକ ପରିବେଶ ବିଶେଷ ପ୍ରତିକୂଳ ନୁହେଁ ଓ ସେପରି କିଛି ଯୁଦ୍ଧ ବିଭୀଷିକା ଏସବୁ ଦେଶର ଅର୍ଥନୀତିକୁ ନଷ୍ଟ କରିନାହିଁ । ଏସବୁ ସତ୍ତ୍ୱେ ଏହି ଦେଶ ସମୂହ ଅନେକାଂଶରେ ଦାରିଦ୍ର୍ୟର କଷାଘାତ ଭିତରେ ରହିଛନ୍ତି ଓ ଏଠିକାର ଅନେକ ଲୋକ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ସମର୍ଥ ହୋଇପାରୁ ନାହାନ୍ତି ।

ବିକାଶ ସହ କେଉଁ ଅର୍ଥନୈତିକ ଆଦର୍ଶର କଣ ସମ୍ବନ୍ଧ ରହିଛି ତାହା ବିବାଦୀୟ ମନେହୁଏ । ଆଧୁନିକ ସମୃଦ୍ଧି ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାରେ ସମ୍ଭବ ନା ଏକ ସମାଜବାଦୀ ବ୍ୟବସ୍ଥାରେ ସମ୍ଭବ ମଧ୍ୟ ଜଟିଳ ପ୍ରସଙ୍ଗ । ତେବେ ପୃଥିବୀର ଅନେକ ସମୃଦ୍ଧ ରାଷ୍ଟ୍ର ପୁଞ୍ଜିବାଦ ଜରିଆରେ ବିକାଶ ଲାଭ କରିଛନ୍ତି ଓ ଅନ୍ୟ କେତେକ ରାଷ୍ଟ୍ର ସମାଜବାଦୀ ବ୍ୟବସ୍ଥାରେ ମଧ୍ୟ ବେଶ୍ ସମୃଦ୍ଧ ହୋଇଛନ୍ତି । ସେହିପରି ଏକଦା ଏହା ମଧ୍ୟ ବିଶ୍ୱାସ ଥିଲା ଯେ, ଶିଳ୍ପ ବିକାଶ ଦ୍ୱାରା ହିଁ ସମୃଦ୍ଧି ତ୍ୱରାନ୍ୱିତ ହୋଇପାରିବ । ତାହା କେତେଦୂର ଯଥାର୍ଥ ତାହା ବି ବିବାଦୀୟ ମନେହୋଇପାରେ । ଏହା ଏହି ଦୃଷ୍ଟିରୁ ବିବାଦୀୟ ମନେହୋଇଥାଏ, ଯେ, ଗୋଟିଏ ରାଷ୍ଟ୍ର ବେଶ୍ ଶିଳ୍ପ ସମୃଦ୍ଧ ହୋଇ ମଧ୍ୟ ସମାଜର ଅଗଣିତ ବ୍ୟକ୍ତି ନାନା ବୈଷମ୍ୟର ଶିକାର ହେବା ସମ୍ଭବ କିମ୍ବା ସମାଜରେ ନାନା ପ୍ରକାରର ଶୋଷଣର ପରିବେଶ ରହିବା ସମ୍ଭବ । ଗୋଟିଏ ରାଷ୍ଟ୍ର ସମୃଦ୍ଧ ହୋଇ ମଧ୍ୟ ତାହାର ଅର୍ଥନୈତିକ ଓ ସାମାଜିକ ସ୍ଥିତି ଶୋଷଣ, ଅନ୍ୟାୟ ଓ ବୈଷମ୍ୟ ଉପରେ ଆଧାରିତ ରହିବାର ସମ୍ଭାବନା ରହିପାରେ ।

ଅବଶ୍ୟ ଯେଉଁ ରାଷ୍ଟ୍ର ସମୂହ ସମୃଦ୍ଧିର ଶୀର୍ଷରେ ରହିଛନ୍ତି, ସେମାନେ ସାମ୍ରାଜ୍ୟବାଦୀ ଶୋଷଣ ଯୋଗୁ ଏହି ସଫଳତା ହାସଲ କରିଛନ୍ତି ବୋଲି ଏକ ମତ ରହିଛି । ତେବେ ଏହି ମତର ଯଥାର୍ଥତା ଯାହା ହେଉନା କାହିଁକି ସେଠିକାର ସାମାଜିକ ସ୍ଥିରତା, ନାଗରିକ ଶୃଙ୍ଖଳାବୋଧ, ଗଣତାନ୍ତ୍ରିକ ଧାରା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ମୂଲ୍ୟଚୟର ଉନ୍ନତି ସେଠିକାର ସମୃଦ୍ଧି ସହ ବିକାଶ ଲାଭ କରିଛି । ଏକଥା ସତ ଯେ ସମୃଦ୍ଧି ସୀମାହୀନ ଭାବେ ଆଗକୁ ଯିବନାହିଁ ବା ସମୃଦ୍ଧିର ଅର୍ଥ ଏକ ଉପଭୋକ୍ତାବାଦୀ ଜୀବନଶୈଳୀର ବିକାଶ ନୁହେଁ । ସମୃଦ୍ଧି ସହ ଏକ ନୈତିକ ଉତ୍ତରଣ ବି ହେବା ଆବଶ୍ୟକ । ତେବେ ସମୃଦ୍ଧିର ଏକ ଆବଶ୍ୟକୀୟ ପରିଣତି ହେବ ଏକ ସୁସ୍ଥ ସମାଜ ଯେଉଁଠି ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶ ପାଇଁ ଭୌତିକ ସୁବିଧା ଓ ସାଧନ ରହିବା ସହ ଏକ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବାର ପରିବେଶ ରାଷ୍ଟ୍ର ଯୋଗାଇବାକୁ ସମର୍ଥ ହେଉଥିବ । ଏହାଛଡ଼ା ସମୃଦ୍ଧି ସହ ଶିକ୍ଷାର ମାନ, ଜୀବନର ଗୁଣାତ୍ମକ ଉତ୍କର୍ଷ, ମାନବବାଦୀ ଜୀବନଶୈଳୀ ଓ ନ୍ୟାୟପୂର୍ଣ୍ଣ ସମାଜ ପାଇଁ ପ୍ରତିବଦ୍ଧତା ପରି ମୂଲ୍ୟଚୟକୁ ସାମାଜିକ ଜୀବନର ଅଙ୍ଗ ଭାବେ ନେବାକୁ ହେବ । ସମୃଦ୍ଧି ସହ ଏହି ଅବଶ୍ୟମ୍ଭାବୀ ନୈତିକ ଉତ୍ତରଣ ନ ହେଲେ ସମୃଦ୍ଧି ଏକ ଯାନ୍ତ୍ରିକ ବିକାଶରେ ପରିଣତ ହେବ ଓ ସଭ୍ୟତାର ଉତ୍ତୁଙ୍ଗ ବିକାଶ ସତ୍ତ୍ୱେ ଏହା ଧ୍ୱଂସାଭିମୁଖୀ ହୋଇଚାଲିବ ।

ଅପରପକ୍ଷରେ ବିକାଶଶୀଳ ରାଷ୍ଟ୍ର ସମୂହ ଆଧୁନିକ ସଭ୍ୟତାର କାର୍ତ୍ତିକରଣୀକୁ ପୂରା ଏଡ଼ାଇଯିବା ସମ୍ଭବ ନୁହେଁ । ଆମ ଦେଶ ପୃଷ୍ଠଭୂମିରେ ସ୍ୱାଧୀନତାର ପ୍ରାକ୍‌କାଳରେ

ଗାନ୍ଧୀ ଆର୍ଥିକ ବିକାଶର ଏକ ବିକଳ୍ପ ଦେଇଥିଲେ । ତେବେ ଗାନ୍ଧୀ କେତେକ ପାଶ୍ଚାତ୍ୟ ବୁଦ୍ଧିଜୀବୀଙ୍କ ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ ଓ ଯାନ୍ତ୍ରିକ ଶିଳ୍ପ, ଯନ୍ତ୍ରବିଜ୍ଞାନ ବା ଟେକ୍ନୋଲୋଜି ଓ ସହରୀ ସଭ୍ୟତାର ଘୋର ବିରୋଧୀ ଥିଲେ । ଆଧୁନିକ ଯନ୍ତ୍ର ବିଜ୍ଞାନ ଓ ଶିଳ୍ପୋନ୍ନତି, ସମାଜରେ ବୈଷମ୍ୟ ବୃଦ୍ଧି କରିବା ସହ ପରିବେଶ ପ୍ରତି ବିପଦ ଆଣିବାର ଆଶଙ୍କା କରି ସେ ଏହାର ବିରୋଧ କରୁଥିଲେ । ଗାନ୍ଧୀଙ୍କ ପରିକଳ୍ପିତ ସମାଜ ଗ୍ରାମଭିତ୍ତିକ, କୁଟୀରଶିଳ୍ପ ଆଧାରିତ, ଆଡ଼ମ୍ବର ବିହୀନ ସମାଜ ଥିଲା । ଏକ ନ୍ୟାୟଭିତ୍ତିକ ସମାଜ ପ୍ରତିଷ୍ଠାର ଏସବୁ ଅବଶ୍ୟମ୍ଭାବୀ ଆଧାର ବୋଲି ଗାନ୍ଧୀ ଗଭୀର ଭାବେ ବିଶ୍ୱାସ କରୁଥିଲେ । ବିଂଶ ଶତାବ୍ଦୀର ଆଉ ଜଣେ ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ମାଓ ସେ ତୁଙ୍ଗ ଅର୍ଥନୈତିକ ନ୍ୟାୟ ଉପରେ ଏକ ସମତାମୂଳକ ସମାଜର ପରିକଳ୍ପନା କରି ତାହାକୁ ଅନେକାଂଶରେ ଚାଇନାରେ ସଫଳ କରାଇଲେ । କିନ୍ତୁ ସେ ଯନ୍ତ୍ର ବିଜ୍ଞାନର ବିରୋଧୀ ନଥିଲେ ବା ସହରୀ ସଭ୍ୟତାର ବି ବରୋଧୀ ନଥିଲେ । ବରଂ ଆର୍ଥିକ ସଂସ୍କାର ପ୍ରକ୍ରିୟାରେ ସେ ସମାଜର ପ୍ରତ୍ୟେକ ନାଗରିକଙ୍କ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ସ୍ୱାବଲମ୍ବନଶୀଳତାକୁ ପ୍ରାଧାନ୍ୟ ଦେଇ ଏକ ସମତାଭିତ୍ତିକ ସମାଜର ଭିତ୍ତି ପକାଇ ପାରିଥିଲେ । ସ୍ୱାଧୀନ ଭାରତରେ ଗାନ୍ଧୀବାଦ ବା ମାଓବାଦର ମଡେଲ କେଉଁଟି ହେଲେ ସଫଳ ହେଲାନାହିଁ । ବରଂ ସ୍ୱାଧୀନ ଭାରତରେ ଦେଶକୁ ଏକ ଶିଳ୍ପ ସମୃଦ୍ଧ ରାଷ୍ଟ୍ରରେ ପରିଣତ କରିବାକୁ ଅନେକ ସ୍ୱପ୍ନ ରହିଥିଲା । ବିଶ୍ୱାସ ଥିଲା ଯେ ୟୁରୋପୀୟ ଢ଼ାଞ୍ଚାରେ ଶିକ୍ଷା, ଆଧୁନିକ କଳକାରଖାନା, ଶିକ୍ଷାନୁଷ୍ଠାନ ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନମାନ ସ୍ଥାପନ କରି ଦେଶର ବିକାଶକୁ ତ୍ୱରାନ୍ୱିତ କଲେ ସମୃଦ୍ଧି ସମ୍ଭବ ହେବ ଓ ଜାତୀୟ ସମୃଦ୍ଧି ସୁଦୃଢ଼ ହେଲେ ତାହାର ସୁଫଳ ସମାଜର ଅଗଣିତ ମଣିଷ ପାଇପାରିବେ । ସୁତରାଂ ଏକ ମିଶ୍ରିତ ଅର୍ଥନୀତିକୁ ଆମର ଆଦର୍ଶ ଭାବେ ଗ୍ରହଣ କରାଯାଇ ଦାରିଦ୍ର୍ୟ ଦୂରୀକରଣ ପାଇଁ ଲକ୍ଷ୍ୟ ରଖାଗଲା । ସାମ୍ପ୍ରତିକ ପରିସ୍ଥିତିରେ ଜଗତୀକରଣ ଘରୋଇକରଣ ଓ ଉଦାରୀକରଣକୁ ପ୍ରାଧାନ୍ୟ ଦିଆଯାଇ ବିକାଶର ଏକ ନୂତନ ସ୍ୱପ୍ନ ସୃଷ୍ଟି କରାଯାଇଛି । ପାଖାପାଖି ଦୁଇ ଦଶନ୍ଧି ଧରି ଏକ ନୂତନ ଅର୍ଥନୈତିକ ପ୍ରକ୍ରିୟା ଯଥା ଗୁରୁଶିଳ୍ପ, ବିଦେଶୀ ପୁଞ୍ଜି, ମୁକ୍ତବଜାର, କର୍ପୋରେଟ ସଂସ୍କୃତି ଓ ବହୁରାଷ୍ଟ୍ରୀୟ କମ୍ପାନୀ ଆମ ଜାତୀୟ ସମୃଦ୍ଧିର ଅଙ୍ଗ ହୋଇପଡ଼ିଛି । ଏହାର ସୁଫଳ ଓ କୁଫଳ ନେଇ ନାନା ବିତର୍କର ଭାବନା ଆସିଛି ଓ ଆଗାମୀ ଭବିଷ୍ୟତରେ ଏହାର ପରିଣତିର ସ୍ପଷ୍ଟ ଚିତ୍ର ମିଳିପାରିବ ।

ଉପସଂହାରରେ ଏହା କହିବା ଯଥାର୍ଥ ମନେକରୁଛି ଯେ ଏକ ବିକାଶ ପ୍ରକ୍ରିୟା ସହ ସାମାଜିକ ଓ ସାଂସ୍କୃତିକ ଅନୁକୂଳତା ରହିଲେ ସମାଜର ସମୃଦ୍ଧି ଦୃଢ଼ ହୋଇପାରିବ । ଅଧିକନ୍ତୁ ଯଦି ପ୍ରତ୍ୟେକ ସ୍ତରରେ ସାମାଜିକ ସ୍ଖଳନ ଗୋଟିଏ ରାଷ୍ଟ୍ରର ଜୀବନଧାରାରେ

ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଯାଏ, ତେବେ ଯେକୌଣସି ବିକାଶ ପ୍ରକ୍ରିୟା ତା'ର ଅଭିଳଷିତ ଲକ୍ଷ୍ୟ ହାସଲ କରିବାରେ ବିଫଳ ହେବ । ନାଗରିକ ଶୃଙ୍ଖଳାବୋଧର ଘୋର ଅଭାବ, ଦୁର୍ନୀତି, ଜାତିଆଣ ଭେଦଭାବ, ଆଇନକୁ ହାତକୁ ନେବାର ମନୋଭାବ, ରାଜନୈତିକ ଭ୍ରଷ୍ଟାଚାର, ସାମ୍ପ୍ରଦାୟିକ ବିଦ୍ୱେଷ ଓ କୁସଂସ୍କାରର ପ୍ରାବଲ୍ୟ ଯଦି ଜାତୀୟ ଜୀବନର ପ୍ରତ୍ୟେକ ସ୍ତରରେ ପ୍ରତିଫଳିତ ହୁଏ, ତେବେ ଏହି କ୍ଷୟଶୀଳ ଲକ୍ଷଣଗୁଡ଼ିକ ପ୍ରଗତି କ୍ଷେତ୍ରରେ ବଡ଼ ପ୍ରତିବନ୍ଧକ ସାଜିବ । ତାହା ହିଁ କେତେକ ତୃତୀୟ ବିଶ୍ୱ ଓ ବିଶେଷତଃ ଭାରତବର୍ଷର ଅନଗ୍ରସରତା ସହ ସଂଶ୍ଳିଷ୍ଟ ହେବା ମନେହୁଏ । (ପ୍ରଗତିବାଦୀ - ୨୧.୭.୨୦୧୦)



# ଏକ ନୂତନ ସ୍ୱପ୍ନ

ୟୁରୋପରେ ଶିଳ୍ପ ବିପ୍ଳବ ଆସିବା ପର୍ଯ୍ୟନ୍ତ ବିଭିନ୍ନ ଭୂଖଣ୍ଡରେ ଯେଉଁ ସଭ୍ୟତା ସବୁର ବିକାଶ ହୋଇଥିଲା, ତାହାର ସ୍ୱରୂପ ପ୍ରାୟତଃ ଏକାପ୍ରକାର ଥିଲା । ବଂଶାନୁକ୍ରମିକ ରାଜତନ୍ତ୍ର, ରାଜ୍ୟ ବିସ୍ତାର ନେଇ ରାଜ୍ୟ ରାଜ୍ୟ ଭିତରେ ଯୁଦ୍ଧ, ସାମନ୍ତବାଦ, ପୂଜକ ବର୍ଗ ଓ ଧାର୍ମିକ ପରମ୍ପରାର ପ୍ରାଧାନ୍ୟ, ଧର୍ମଶାସ୍ତ୍ରରେ ବର୍ଣ୍ଣିତ ଭାବନା ସକଳର ଚିରନ୍ତନତାରେ ବିଶ୍ୱାସ ଇତ୍ୟାଦି ମାନସିକତା ସବୁ ସମାଜରେ ରହିଥିଲା । ଧାର୍ମିକ ବିଶ୍ୱାସ ଥିଲା ଅଲଂଘ୍ୟ । ସବୁ ସଭ୍ୟତାରେ ରାଜତନ୍ତ୍ର ଓ ସାମନ୍ତବାଦ ମୁଣ୍ଡ ଟେକିଥିଲା । ତେବେ ୟୁରୋପରେ ଯେଉଁ ନବଜାଗରଣ ଯୁଗର ଆରମ୍ଭ ହେଲା, ତାହା ଥିଲା ସଭ୍ୟତାର ବିକାଶରେ ଏକ ମାଇଲଖୁଣ୍ଟ । ସେହି ଯୁଗରେ ବିଜ୍ଞାନର ମୂଳଭିତ୍ତି ପଡ଼ିଲା । ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ କରିବାର ଦୃଷ୍ଟିଭଙ୍ଗୀ ଆସିଲା । ଗଣତାନ୍ତ୍ରିକ ଚେତନାର ବିକାଶ ହେଲା । ରାଜତନ୍ତ୍ର ବିରୋଧରେ ବିପ୍ଳବ ହେଲା । ଧର୍ମ, ଈଶ୍ୱର ପରିବର୍ତ୍ତେ ବ୍ୟକ୍ତିର ମହତ୍ତ୍ୱ ବିଚାର ସ୍ତରରେ ନୂତନ ଦିଗନ୍ତ ସୃଷ୍ଟି କଲା । ମାନବବାଦ ଓ ମାନବିକତା ବୋଧ ମହତ୍ତର ଆଦର୍ଶ ଭାବେ ଚିନ୍ତାସ୍ତରରେ ଅଧିକରୁ ଅଧିକ ସ୍ୱୀକୃତ ହେବାକୁ ଲାଗିଲା । ସାର୍ବଜନୀନ ଶିକ୍ଷା, ନାରୀ-ପୁରୁଷ ସମାନ ଅଧିକାର କାଳକ୍ରମେ ସଭ୍ୟ ଜୀବନର ଆଧାର ହେଲା । ମାନବକୈନ୍ଦ୍ରିକ ଜୀବନଦର୍ଶନ ଓ ଇହଲୋକଭିତ୍ତିକ ଆଦର୍ଶର ବିକାଶ ହେବାରୁ ବିଚାର ବ୍ୟବସ୍ଥା, ଆଇନର ସାର୍ବଭୌମତ୍ୱ ଓ ନାଗରିକ ସଂହିତା ଇତ୍ୟାଦିର ଉଦ୍ଭବ ହେଲା । ବିଭିନ୍ନ ସଭ୍ୟତାର ଚିନ୍ତାଶୀଳ ଓ ମାନବହିତୈଷୀ ଦାର୍ଶନିକମାନେ ବିଚାର କ୍ଷେତ୍ରରେ ଅଭିନବ ଭାବନାମାନ ସୃଷ୍ଟି କରିଥିଲେ । ଉନ୍ନତ ଶାସନ ପଦ୍ଧତି, ଜନକଲ୍ୟାଣକାରୀ ଯୋଜନା, ମାନବିକ ଅଧିକାରର ସୁରକ୍ଷା ଇତ୍ୟାଦିକୁ ରାଷ୍ଟ୍ରରେ ସାମ୍ବିଧାନିକ ସ୍ୱୀକୃତି ଦିଆଗଲା । ଏସବୁ ଶହ ଶହ ବର୍ଷର ସାମାଜିକ ବିକାଶ ପ୍ରକ୍ରିୟାରେ ସମ୍ଭବ ହେଲା ।

ତେବେ ଶିଳ୍ପ ବିପ୍ଳବ ପରବର୍ତ୍ତୀ ପର୍ଯ୍ୟାୟରେ ୟୁରୋପୀୟ ରାଷ୍ଟ୍ରମାନେ ସାମ୍ରାଜ୍ୟବାଦ ବିସ୍ତାର କଲେ । କାଳକ୍ରମେ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ହେବାପାଇଁ ବିଭିନ୍ନ ପରାଧୀନ ରାଷ୍ଟ୍ରରେ ଗଣସଂଗ୍ରାମ ସଂଘଟିତ ହେଲା ଓ ରାଷ୍ଟ୍ରଭାବନା ରାଜନୈତିକ ଦୃଶ୍ୟପଟରେ ପ୍ରାଧାନ୍ୟ ବିସ୍ତାର କଲା । ପ୍ରତ୍ୟେକ ବ୍ୟକ୍ତି ଏକ ରାଷ୍ଟ୍ରୀୟ ପରିଚୟରେ ପରିଚିତ ହେଲା ଓ ରାଷ୍ଟ୍ର ହିଁ ଏକ ସାର୍ବଭୌମିକ ଆନୁଷ୍ଠାନରେ ପରିଣତ ହେଲା । ତେବେ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀରେ ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ଯଥେଷ୍ଟ ବିକାଶ

ହୋଇଚାଲିଛି । ଆଧୁନିକ ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଏ ଦିଗରେ ଯଥେଷ୍ଟ ସହାୟକ ହୋଇଛି । ହୁଏତ ଦ୍ୱାବିଂଶ ଶତାବ୍ଦୀ ବେଳକୁ ରାଷ୍ଟ୍ରୀୟ ପରିଚୟର ଅବସାନ ହୋଇ ଏକ ବିଶ୍ୱ ବ୍ୟବସ୍ଥା ସମଗ୍ର ପୃଥିବୀରେ ପ୍ରବର୍ତ୍ତିତ ହେବାର ସମ୍ଭାବନା ଆସିପାରେ । ସମ୍ପ୍ରତି ଯେଉଁ ହାରରେ ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ ହୋଇଚାଲିଛି ଏହି ଧାରା ଭବିଷ୍ୟତରେ ଆଧୁନିକ ଜ୍ଞାନବିଜ୍ଞାନ ପ୍ରଭାବରେ ଆହୁରି ବ୍ୟାପକ ହେବାର ସମ୍ଭାବନା ସୃଷ୍ଟି କରିଚାଲିଛି । ଆଞ୍ଚଳିକତାବାଦ, ଜାତୀୟତାବୋଧ, ଧାର୍ମିକ ଅସ୍ମିତା, ଭାଷାଜନିତ ଉଗ୍ରବାଦ ଆମ ସଂସାରକୁ ବହୁ ଭାବରେ ବିଭାଜିତ କରିଆସିଛି । ତେବେ ଏସବୁ ବ୍ୟକ୍ତିର ଆକସ୍ମିକ ପରିଚୟ ମାତ୍ର । ଆଧୁନିକ ଜ୍ଞାନକୌଶଳ ଯୋଗୁ ବ୍ୟକ୍ତିର ଗତିଶୀଳତା ଯେପରି ବୃଦ୍ଧି ପାଇଛି ଭବିଷ୍ୟତରେ ସମସ୍ତ ଭୌଗୋଳିକ ସଂକୀର୍ଣ୍ଣତା ହୁଏତ ବିଲୋପ ହୋଇପାରେ । ଆମେ ପୃଥିବୀବାସୀ ପରି ଏକ ପରିବର୍ଦ୍ଧିତ ଚେତନା ହୁଏତ ମାନବ ଜାତିର ଆଦର୍ଶ ହୋଇପାରେ ଓ ସମସ୍ତ ଆଞ୍ଚଳିକ ବିଦ୍ୱେଷର ଅବସାନ ଘଟିପାରେ । ସେହିପରି ଧାର୍ମିକ ଅସ୍ମିତାଜନିତ ରକ୍ଷଣଶୀଳ ମାନସିକତା ମଧ୍ୟ ଭାଙ୍ଗି ଭାଙ୍ଗି ଚାଲିଛି । ଯେଉଁ ଧାରାରେ ଜାତି, ଧର୍ମ, ଜାତୀୟତାର ଉର୍ଦ୍ଧ୍ୱରେ ପାରିବାରିକ ଜୀବନର ବିକାଶ ହେଉଛି ପରିଣାମସ୍ୱରୂପ ପରବର୍ତ୍ତୀ ପୀଢ଼ିର ବ୍ୟକ୍ତିମାନେ ରାଷ୍ଟ୍ରୀୟ ବା ଧାର୍ମିକ ପରିଚୟରୁ ମୁକ୍ତ ହେବେ । ସାର୍ବଜନୀନ ଜୀବନଦୃଷ୍ଟି ଓ ଧର୍ମନିରପେକ୍ଷ ମାନବିକତାବୋଧ ହୁଏତ ଆଗାମୀ ପୃଥିବୀର ଆଦର୍ଶ ହୋଇପାରେ । ସେହିପରି ସକଳ ଭେଦଭାବ ହୁଏତ କାଳକ୍ରମେ ଦୂରେଇ ଯାଇପାରେ । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ, ଭାଷାଭେଦଜନିତ ବୈଷମ୍ୟ ଯାହା ଆମ ସଂସାରରେ ନାନା ଅମାନବିକତା, ଶୋଷଣ, ଅନ୍ୟାୟ ଓ ବିଭୀଷିକା ସୃଷ୍ଟି କରିଆସିଛି, ତାହାର ଅବସାନ ମାନବିକତାର ମନ୍ତ୍ରରେ ହେବାର ସମ୍ଭାବନା ଉଜ୍ଜ୍ୱଳ ହୋଇଆସୁଛି । ଯେଉଁଠି ଓ ଯେଉଁ କାଳଖଣ୍ଡରେ ଧାର୍ମିକ ରକ୍ଷଣଶୀଳତାର ପ୍ରସାର ତୀବ୍ର ହୋଇଛି ତାହା ସନ୍ତ୍ରାସବାଦ ଓ ନାନା ବର୍ବରତାକୁ ଜନ୍ମ ଦେଇଛି । ଯେଉଁ ସାଂସ୍କୃତିକ ପରମ୍ପରାରେ ଧାର୍ମିକ ରୂଢ଼ିବାଦଜନିତ ମାନସିକତାର ପ୍ରଭାବ ଦୃଢ଼ ହୋଇ ରହିଛି ତାହା ଗଣତାନ୍ତ୍ରିକ ଜୀବନଶୈଳୀ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ମର୍ଯ୍ୟାଦା ପରି ସଭ୍ୟ ଓ ସାର୍ବଜନୀନ ମୂଲ୍ୟବୋଧଠାରୁ ଦୂରେଇ ଯାଇଥିବା ଅନୁଭୂତିରୁ ସ୍ପଷ୍ଟ ହୋଇଥାଏ । ଇତିହାସରେ ଏହାର ଯଥେଷ୍ଟ ପ୍ରମାଣ ଆମକୁ ମିଳେ ।

ଯଦି ଆମ ସଂସାରରୁ ସକଳ ଭେଦଭାବଜନିତ ବିଦ୍ୱେଷର ପରିବେଶ ଦୂର ନହୁଏ ଓ ଯଦି ଭବିଷ୍ୟତରେ କୌଣସି କାରଣରୁ ଏକ ଯୁଦ୍ଧର ପରିବେଶ ସୃଷ୍ଟିହୁଏ, ତେବେ ପୃଥିବୀ ପୃଷ୍ଠରୁ ସଭ୍ୟତାର ଅବସାନ ହେବାର ସମ୍ଭାବନା ଦେଖାଦେବ । ସଭ୍ୟତାର ଇତିହାସରେ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପୃଥିବୀରେ ହଜାର ହଜାର ଯୁଦ୍ଧର ପରିବେଶ ଆସିଛି । ରାଜତନ୍ତ୍ର ଯୁଗରେ ନିଜର ସାମ୍ରାଜ୍ୟ ଓ ପ୍ରଭୁତ୍ୱ ବିସ୍ତାର କରିବାକୁ

ହେଉ ବା ପରବର୍ତ୍ତୀ ଯୁଗରେ ସଂକୀର୍ଣ୍ଣ ଜାତୀୟତାବୋଧ ଯୋଗୁ ହେଉ ବା ସେପରି କିଛି ସ୍ୱାର୍ଥସର୍ବସ୍ୱ ମନୋଭାବ ଯୋଗୁ ହେଉ ଆମ ସଂସାର ବହୁ ଭାବରେ ରକ୍ତରଞ୍ଜିତ ହୋଇଆସିଛି । କ୍ରୁସେଡ଼, ଧର୍ମଯୁଦ୍ଧ, ହୋଲିଓ୍ୱାର, ଜିହାଦ ଇତ୍ୟାଦି ଭାବନା ଧାର୍ମିକ ପରିଭାଷାରେ ବିଭିନ୍ନ ସଂସ୍କୃତିରେ ଏକଦା ଆଦର୍ଶ ହୋଇ ରହିଥିଲା । କିନ୍ତୁ ସାମ୍ପ୍ରତିକ ବିଶ୍ୱରେ ? ଆଜିର ଆଣବିକ ଯୁଗରେ ଯଦି ଗୋଟିଏ ବିଶ୍ୱଯୁଦ୍ଧ ହୁଏ ହଜାର ହଜାର ବର୍ଷ ଧରି ମଣିଷର ପ୍ରୟାସରେ ଯେଉଁ ସଭ୍ୟତା ଗଢ଼ିଉଠିଛି ତାହାର ଭବିଷ୍ୟତ କ'ଣ ହେବ ? ଆମର ଭବିଷ୍ୟତ ବିୟୋଗାତ୍ମକ କି ? ଏହି ପ୍ରଶ୍ନଟି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀରେ ବହୁ ହେତୁବାଦୀ ମନୀଷୀ, ଚିନ୍ତାନାୟକ ଓ ବୈଜ୍ଞାନିକଙ୍କୁ ବିବ୍ରତ କରିଛି । ତେବେ ଯୁଦ୍ଧର ପରିବେଶକୁ କିପରି ବିଶ୍ୱରୁ ଦୂରେଇହେବ ? ଅନେକଙ୍କ ମତରେ ଏହାର ଅବସାନ ହେବ ଯଦି ବିଶ୍ୱରେ ଏକ ଆନ୍ତର୍ଜାତିକ ସରକାର ସୃଷ୍ଟି ହୁଏ ଓ ସାମ୍ପ୍ରତିକ ରାଷ୍ଟ୍ରୀୟ ଉଗ୍ରବାଦର ବିଲୋପ ହୁଏ ।

ଏହି ପୃଷ୍ଠଭୂମିରେ ଆମ ବିଶ୍ୱରେ ଆବଶ୍ୟକ ଏକ ସାଂସ୍କୃତିକ ଆଲୋଡ଼ନ । ସାରା ପୃଥିବୀରେ ରାଜନୈତିକ ସ୍ତରରେ ଶକ୍ତିଶାଳୀ ବିଶ୍ୱ ସଂଗଠନ ଆବଶ୍ୟକ ଯାହା ସମଗ୍ର ବିଶ୍ୱରୁ ଯୁଦ୍ଧଜନିତ ଗଣବିଧ୍ୱଂସୀ ମାରଣାସ୍ତ୍ରକୁ ନିଷେଧ କରିବା ସହ ଯୁଦ୍ଧ ପରିସମାପ୍ତି ଘଟାଇବ । ଅର୍ଥନୈତିକ ସ୍ତରରେ ସମଗ୍ର ବିଶ୍ୱରୁ ଦାରିଦ୍ର୍ୟ ଓ ସାମ୍ରାଜ୍ୟବାଦୀ ଶୋଷଣରୁ ବିଶ୍ୱର ଅଗଣିତ ଜନଗଣଙ୍କୁ ମୁକ୍ତିଦେବ । ଶୈକ୍ଷିକ ସ୍ତରରେ ପ୍ରତ୍ୟେକ ବିଦ୍ୟାର୍ଥୀଙ୍କୁ ପ୍ରାଥମିକ ସ୍ତରରୁ ଆନ୍ତର୍ଜାତିକ ମନୋଭାବ ଓ ମାନବବାଦୀ ମୂଲ୍ୟବୋଧ ନେଇ ସଚେତନ କରାଯିବ ।

ଏସବୁ ସହିତ ସମଗ୍ର ବିଶ୍ୱରେ ନୈତିକ ବିକାଶକୁ ପ୍ରମୁଖ ଭୂମିକା ଦେବା ଆବଶ୍ୟକ ମନେହୁଏ । ଯେଉଁସବୁ ମନ୍ଦ ପ୍ରବୃତ୍ତି ବା ଇଭିଲ ପାସନ ସମାଜରେ ଭେଦଭାବ ଓ ପାରସ୍ପରିକ ଗୋଷ୍ଠୀଗତ ବିଦ୍ୱେଷ ସୃଷ୍ଟି କରିଛି ସେସବୁର ଦୂରୀକରଣ ପାଇଁ ଆନ୍ତର୍ଜାତିକ ସ୍ତରରୁ ପ୍ରୟାସର ଆବଶ୍ୟକତା ଥିବା ମନେହୁଏ । ପୃଥିବୀରେ ଯଦି ଏହି ବିଚାରବୋଧର ଭାବନା ପ୍ରସାର ଲାଭକରେ ଯେ ସମଗ୍ର ମଣିଷ ଜାତି ଗୋଟିଏ ପରିବାର, ଗୋଟିଏ ଗୋଷ୍ଠୀ ବା ରାଷ୍ଟ୍ରର ଜନଗଣଙ୍କୁ ଦୁଃଖ ବା ଦୁର୍ଦ୍ଦଶା ଦେଇ ଅନ୍ୟ ଗୋଷ୍ଠୀରେ ଶାନ୍ତି ସମ୍ଭବ ନୁହେଁ ତେବେ ସମଗ୍ର ବିଶ୍ୱରେ ଏକ ସାଂସ୍କୃତିକ ଜାଗରଣର ପରିବେଶ ସୃଷ୍ଟିହେବ । ପ୍ରତ୍ୟେକ ସଂସ୍କୃତିରେ ଥିବା ମାନବବାଦୀ, ଶାନ୍ତିପ୍ରିୟ ଓ ସମ୍ବେଦନଶୀଳ ବିଚାରକଙ୍କର ଭାବନାକୁ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପ୍ରସାର କରାଯାଇ ଏକ ନୂତନ ବିଶ୍ୱର ପରିବେଶ ସୃଷ୍ଟି କରାଯାଇପାରିବ । ଶହ ଶହ ବର୍ଷ ଧରି ମଣିଷ ସମାଜରେ ନାନା କାରଣରୁ ରହିଥିବା ବିଦ୍ୱେଷ ଓ ଭେଦଭାବର ବିଲୋପ ପାଇଁ ପୃଥିବୀର ବିଚାରଶୀଳ ଓ ଶାନ୍ତିକାମୀ ବ୍ୟକ୍ତିମାନେ ନିଜର ପରିସରରେ କେନ୍ଦ୍ର ଭାବେ କାର୍ଯ୍ୟ କରିପାରିବେ । ଅନ୍ତତଃ ସଭ୍ୟତାର ବିକାଶ ପରଠାରୁ ହଜାର ହଜାର ବର୍ଷ ଭିତରେ ଯେଉଁସବୁ ମହତ୍ତର ମୂଲ୍ୟବୋଧ ଓ

ସାର୍ବଜନୀନ ଆଦର୍ଶଗୁଡ଼ିକର ବିକାଶ ହୋଇଛି ସେଗୁଡ଼ିକର ନିରନ୍ତର ପ୍ରସାର ଓ ବିଶ୍ୱ ଦୃଷ୍ଟିକୁ ବ୍ୟାପକ କରିବା ଦିଗରେ ସଚେତନ ଓ ଆନ୍ତର୍ଜାତିକ ଉଦ୍ୟମ ହେଲେ ମଣିଷ ସମାଜର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରିବ ।

ଏକଥା ସତ୍ୟ ଯେ, ପ୍ରାକୃତିକ ପରିବେଶ ମଣିଷ ପାଇଁ କିଛି ଦୁଃଖ ସୃଷ୍ଟି କରିଥାଏ, ତେବେ ମଣିଷକୃତ କାର୍ଯ୍ୟରୁ ଆମ ସଂସାରରେ ଅଧିକ ଦୁଃଖର ପରିବେଶ ରହିଆସିଛି । ଆଜି ଆଧୁନିକ ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତି ଦ୍ୱାରା ପ୍ରାକୃତିକ ବିପର୍ଯ୍ୟୟକୁ ମୁକାବିଲା କରିବାର ଅନେକ କୌଶଳ ମଣିଷ ଲାଭ କରିପାରିଛି । ଜାତୀୟତା ନିର୍ବିଶେଷରେ ପୃଥିବୀର ବହୁ ବୈଜ୍ଞାନିକ ଓ ଗବେଷକ ସେମାନଙ୍କ ଜ୍ଞାନ ଦ୍ୱାରା ମଣିଷକୁ ବହୁ ସୁଖକର ସାଧନମାନ ଦେଇପାରିଛନ୍ତି ଓ ପ୍ରାକୃତିକ ବିପର୍ଯ୍ୟୟକୁ ଦୂର କରିବାରେ ସାମର୍ଥ୍ୟ ସୃଷ୍ଟି କରିଛନ୍ତି । କିନ୍ତୁ ମଣିଷକୃତ ଦୁର୍ବିପାକ ଓ ଦୁରଭିସନ୍ଧିକୁ ଦୂରକରି ଏକ ସୁଖକର ବିଶ୍ୱର ଚିତ୍ର ସୃଷ୍ଟି କରିବାକୁ ଆମକୁ ଅନେକ କିଛି କରିବାର ରହିଛି ।

ସବୁ ସଭ୍ୟତାରେ ମାନବଦରଦୀ ହେତୁବାଦୀମାନେ ଏକ ନୂତନ ସୂର୍ଯ୍ୟର ସକାଳ ପାଇଁ କେତେ ସ୍ୱପ୍ନ ଦେଖିଛନ୍ତି । ଏକ ଯୁଦ୍ଧରହିତ, ଶୋଷଣମୁକ୍ତ, କ୍ଷୁଧା ନିବାରିତ, ସମତା ଓ ନ୍ୟାୟଭିତ୍ତିକ ମାନବ ଜାତି ପାଇଁ ସେମାନେ ଗଭୀର ଆନ୍ତରିକତା ପ୍ରକାଶ କରିଆସିଛନ୍ତି । ସେମାନେ କେଉଁ ପାରଲୌକିକ ଜୀବନର ବାର୍ତ୍ତା ଦେଇନାହାନ୍ତି ବରଂ ଆମ ସଂସାରକୁ ଓ ଆଗାମୀ ପୀଢ଼ିମାନଙ୍କୁ ଅଧିକ ସୁଖ ଶାନ୍ତିରେ ଓ ସମ୍ବେଦନଶୀଳ ଦୃଷ୍ଟି ନେଇ ଜୀବନ ବଞ୍ଚିବାକୁ କେତେ ପ୍ରେରଣା ଦେଇଆସିଛନ୍ତି । କାରଣ ସେମାନେ ବିବେକବୋଧ ଓ ମାନବିକତାବୋଧର ଯଶସ୍ୱୀ ବାର୍ତ୍ତାବହ ।

ଉପସଂହାରରେ, ଗାନ୍ଧୀଙ୍କର ଏକ ପ୍ରିୟ ଭଜନ ଏଠାରେ ସ୍ମରଣ କରାଉଛି । 'ବୈଷ୍ଣବ ଜନ ତୋ ତେନେ କହିୟେ ଯେ ପୀନ ପରାଇ ଜାଣେରେ'- ସେ ହିଁ ହେଉଛି ଈଶ୍ୱରଙ୍କର ଭକ୍ତ ଯେ ମଣିଷର ଦୁଃଖ ଦୁର୍ଦ୍ଦଶା ପ୍ରତି ସମ୍ବେଦନଶୀଳ ଓ ଅନ୍ୟର ଦୁଃଖକୁ ନିଜର ଦୁଃଖ ଭାବି ଅନୁଭବ କରିଥାଏ । ଏହା ହିଁ ହେଉଛି ଯଥାର୍ଥ ମାନବିକତାବୋଧ । ବିଶ୍ୱାସ ଅବିଶ୍ୱାସ ନିର୍ବିଶେଷରେ ଯେଉଁମାନେ ମଣିଷକୁ ସୁଖ ଶାନ୍ତି ଦେବାକୁ ଆଗ୍ରହୀ ଓ ଯେଉଁମାନେ ବିଶ୍ୱମାନବିକତାର ପ୍ରବକ୍ତା ସେହିମାନେ ହିଁ ନୂତନ ସ୍ୱପ୍ନର ଦିଗଦ୍ରଷ୍ଟା ।
(୨୮.୭.୧୦)



# ସଂସ୍କୃତିର ମାନବିକ ଦିଗ

ଏକ ଜନଗୋଷ୍ଠୀର ସମାଜୀକରଣ ପ୍ରକ୍ରିୟାରୁ ସମାଜର ଉତ୍ପତ୍ତି । ମଣିଷର ଅସହାୟବୋଧରୁ ହିଁ ତା' ଭିତରେ ସମାଜୀକରଣ ପ୍ରବୃତ୍ତି ସହଜାତ ଭାବେ ରହିବା ଦେଖାଯାଏ । ମଣିଷ ଜୀବ ଜଗତରେ ସବୁଠାରୁ ବୁଦ୍ଧିମାନ ପ୍ରାଣୀ କାରଣ ଅନ୍ୟ ସକଳ ପ୍ରାଣୀ ଅପେକ୍ଷା ମଣିଷର ମସ୍ତିଷ୍କ ଅଧିକ ବିକଶିତ । କିନ୍ତୁ ପ୍ରକୃତିର ବିଡ଼ମ୍ବନା ଯେ ମଣିଷ ଶିଶୁ ଅତ୍ୟନ୍ତ ଅସହାୟ ଓ ଗୋଷ୍ଠୀଗତ ଜୀବନ ଅଭାବରେ ଯେକୌଣସି ମଣିଷର ସ୍ଥିତି ନିଃସହାୟ । ମଣିଷ ଶିଶୁ ବହୁଦିନ ପର୍ଯ୍ୟନ୍ତ ତା'ର ପରିବାର, ଗୋଷ୍ଠୀ ଓ ଏକ ବୃହତ୍ତର ସମାଜ ଉପରେ ନିର୍ଭରଶୀଳ । ପାରସ୍ପରିକ ସମ୍ବନ୍ଧ ଯୋଗୁ ବ୍ୟକ୍ତି ସମାଜକୁ ନିଜର ଶକ୍ତି ଓ ସାମର୍ଥ୍ୟ ନେଇ କିଛି ଅବଦାନ ଦିଏ ଓ ସମାଜଠାରୁ ନିଜ ଜୀବନର ଆବଶ୍ୟକତା ପୂରଣ କରେ । ବ୍ୟକ୍ତିର ମୌଳିକ ଆବଶ୍ୟକତା ସେ ଯେପରି ସମାଜ ପାଖରୁ ପାଏ, ସେହିପରି ତାହାର ନିରାପତ୍ତା ମଧ୍ୟ ସମାଜ ତାକୁ ଦେଇଥାଏ । ଏହି ବୃହତ୍ତର ପାରସ୍ପରିକତା ଦେଇ ଯେଉଁ ସମାଜୀକରଣ ବା ସୋସିଆଲାଇଜେସନ ଧାରା ବିକଶିତ ହୋଇଛି, ତାହା ହେଉଛି ସମାଜ । ଏକ କ୍ଷୁଦ୍ର ଗୋଷ୍ଠୀଠାରୁ ଆରମ୍ଭ କରି ସଭ୍ୟତାର ବିକାଶଧାରାରେ ବୃହତ୍ତର ଗୋଷ୍ଠୀ ଓ ରାଷ୍ଟ୍ରର ପରିକଳ୍ପନା ଆସିଛି । ସମାଜୀକରଣ ଧାରା ଦେଇ କ୍ଷୁଦ୍ର ଗୋଷ୍ଠୀ, ବୃହତ୍ତର ଗୋଷ୍ଠୀ, ରାଷ୍ଟ୍ର ସହ ବ୍ୟକ୍ତି ସମ୍ପର୍କର ପରିସର ବ୍ୟାପକ ହୋଇଛି । ପାରସ୍ପରିକ ନିର୍ଭରଶୀଳତା ଓ ତତ୍‌ସହିତ କର୍ତ୍ତବ୍ୟବୋଧରୁ ସାମାଜିକ ଜୀବନ ପ୍ରବାହରେ ନୀତି, ଆଦର୍ଶ, ଶିଷ୍ଟାଚାର, ମୂଲ୍ୟବୋଧର କ୍ରମବିକାଶ ହୋଇଛି । ସମାଜ ଏକ ବନ୍ଧନର ସୂତ୍ର, ସେହି ବନ୍ଧନର ଆଧାର ହେଉଛି ଆଦାନ ପ୍ରଦାନ ଜନିତ ପାରସ୍ପରିକତା, ସହଭାଗିତା, ଶୃଙ୍ଖଳା ଓ ନୈତିକ ଆଦର୍ଶ ।

ଏକ ସାମାଜିକ ଜନଗୋଷ୍ଠୀର ବିକାଶଧାରା ହେଉଛି ତାହାର ସଭ୍ୟତା । ଏହାର ନାନା ଦିଗନ୍ତ ରହିଥିଲେ ବି ସଭ୍ୟତାର ବିକାଶ ସହ ବୈଷୟିକ ପ୍ରଗତି ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ । କୃଷିଜନିତ ବୈଷୟିକ ଜ୍ଞାନରୁ ପୃଥିବୀରେ ପ୍ରତ୍ୟେକ ସଭ୍ୟତାର ଆରମ୍ଭ ହୁଏ । ଯେତେବେଳେ କୌଣସି ଜ୍ଞାନ, ବୈଷୟିକ କୌଶଳ ମଣିଷ ହାସଲ କରେ, ଏହା ଜୀବନର ମାନରେ କିଛି ପରିବର୍ତ୍ତନ ଆଣେ । ବୈଷୟିକ କୌଶଳ, ଉତ୍ପାଦନର ଧାରା, ଅର୍ଥନୈତିକ ବିକାଶ, ରାଜନୈତିକ ସ୍ଥିରତା ଆଦି ଦେଇ ବଞ୍ଚିବାର ମାନ ଉନ୍ନତ ହୁଏ । ଏହା ସହ ପ୍ରାକୃତିକ ପ୍ରତିକୂଳତାକୁ ପ୍ରତିହତ କରିବାର ସାମର୍ଥ୍ୟ, ଗତିଶୀଳତା, ଶିକ୍ଷା

ଇତ୍ୟାଦି ଦେଇ ସଭ୍ୟତାର କ୍ରମୋନ୍ନତି ଅପ୍ରତିହତ ଭାବେ ଆଗକୁ ଯାଏ । ସଭ୍ୟତାର କ୍ରମବିକାଶ ସହ ନୂଆ ନୂଆ ସଂକଟ ସମାଜ ଜୀବନରେ ଦେଖାଦିଏ । ନିଜ ଗୋଷ୍ଠୀର ସଂକଟମୟ ପରିସ୍ଥିତିକୁ ପ୍ରତିହତ କରିବାପାଇଁ ମଣିଷ ନିଜର ବୁଦ୍ଧି ଓ ଜ୍ଞାନ ପ୍ରୟୋଗ କରି ପନ୍ଥାର ସନ୍ଧାନ କରେ । ଅତୀତରେ ଏକ ନିର୍ଦ୍ଦିଷ୍ଟ ସାମାଜିକ ପରିଚୟ ବହନ କରୁଥିବା ଗୋଷ୍ଠୀମାନେ ନିଜ ଗୋଷ୍ଠୀ ଜୀବନର ପ୍ରତିକୂଳ ପରିବେଶକୁ ପ୍ରତିହତ କରିବାକୁ ଉଦ୍ୟମ କରୁଥିଲେ । କାଳକ୍ରମେ ବୃହତ୍ତର ଗୋଷ୍ଠୀ ଜୀବନର ବିକାଶ ସହ ରାଷ୍ଟ୍ରୀୟ ଭାବନାର ବିକାଶରୁ ରାଷ୍ଟ୍ର ଏକ ବୃହତ୍ତର ଜନଗୋଷ୍ଠୀ ଭାବେ ଉଦ୍ଭବ ହେଲା । ଫଳତଃ ଜନକଲ୍ୟାଣକାରୀ ଯୋଜନାକୁ ରାଷ୍ଟ୍ରର ସମସ୍ତ ବ୍ୟକ୍ତିମାନଙ୍କ ପାଇଁ ପ୍ରସାରିତ କରିବାକୁ ପ୍ରତ୍ୟେକ ରାଷ୍ଟ୍ରରେ ପ୍ରଯତ୍ନ ହେଲା । ପ୍ରତ୍ୟେକ ବ୍ୟକ୍ତିର ଏକ ରାଷ୍ଟ୍ରୀୟ ପରିଚୟ ରହିଲା ଓ ରାଷ୍ଟ୍ର ହିଁ ଏକ ସାର୍ବଭୌମ ଅନୁଷ୍ଠାନରେ ପରିଣତ ହେଲା । ସଭ୍ୟତାର ଭାବନା ଆଣିବାବେଳେ ଏକ ଜନଗୋଷ୍ଠୀ ଓ ସେହି ଗୋଷ୍ଠୀର ରାଜନୈତିକ ରାଷ୍ଟ୍ରୀୟ ପରିଚୟ ହିଁ ଆମର ବିଚାର ସ୍ତରକୁ ଆସିଥାଏ । କୌଣସି ସଭ୍ୟତାର ବିକାଶଧାରାକୁ ଆଲୋଚନା କଲାବେଳେ ବା ସେହି ସଭ୍ୟତାର ମୂଲ୍ୟାୟନ ପୃଷ୍ଠଭୂମିରେ ରାଜନୈତିକ ଅସ୍ମିତା ଥିବା ଏକ ଜନଗୋଷ୍ଠୀର ଚିତ୍ରଟି ଦୃଶ୍ୟପଟରେ ରହେ । ଏକ ଜନଗୋଷ୍ଠୀ ସେମାନଙ୍କର ସମାଜୀକରଣ ପ୍ରକ୍ରିୟା ଓ ରାଷ୍ଟ୍ର ପୃଷ୍ଠଭୂମିରେ ସଭ୍ୟତାର ପରିକଳ୍ପନା କରାଯାଏ । ବସ୍ତୁତଃ ଜନଗୋଷ୍ଠୀ, ସମାଜ, ରାଷ୍ଟ୍ର ସଭ୍ୟତା ପରସ୍ପର ସହ ଘନିଷ୍ଠ ଭାବେ ସମ୍ପୃକ୍ତ ।

ସଂସ୍କୃତି ଭାବନା ମଧ୍ୟ ଏକ ଜନଗୋଷ୍ଠୀର ଅନ୍ତର୍ନିହିତ କେତେକ ମୌଳିକ ଦିଗର ସୂଚନା ଦେଇଥାଏ । ସଂସ୍କୃତିର ପରିସର ବହୁ ବ୍ୟାପକ ଓ ସଂସ୍କୃତି ଅବଧାରଣାଟି ବେଶ୍ ଜଟିଳ । ଏକ ଜନଗୋଷ୍ଠୀର ସାମୂହିକ ଜୀବନ ପ୍ରବାହରେ ଥିବା ଚିନ୍ତନ, ବିଶ୍ୱାସ, ଜୀବନଶୈଳୀ, ପରମ୍ପରା, ସଂଗୀତ, ସାହିତ୍ୟ, ଦର୍ଶନ, ଧର୍ମ, ଚାରୁକଳା, ସକଳ ନାନ୍ଦନିକ ଅଭିବ୍ୟକ୍ତି ସଂସ୍କୃତିର ପରିସରଭୁକ୍ତ । ସଂସ୍କୃତି ଜନଗୋଷ୍ଠୀର ଐତିହ୍ୟ, ବୌଦ୍ଧିକ ବିକାଶ, ସୌନ୍ଦର୍ଯ୍ୟବୋଧ, ଶାଳୀନତା, ଆଦର୍ଶ ଇତ୍ୟାଦିର ମଧ୍ୟ ଏକ ସମନ୍ୱିତ ଅଭିବ୍ୟକ୍ତି । ଏକ ସଂସ୍କୃତିର ନାନା ବିବିଧତା ରହିବା ସମ୍ଭବ ଓ ଏହା ଏକକ ଭାବନାକୁ ବ୍ୟକ୍ତ କରେନାହିଁ । ତେବେ ଏକ ସଂସ୍କୃତିର ବିବିଧତା ଭିତରେ ତାହାର ଯେଉଁ ବୌଦ୍ଧିକ, ନୈତିକ, ନାନ୍ଦନିକ ଓ ମାନବିକ ଆବେଦନଟି ଥାଏ, ତାହାକୁ ଏକ ସଂସ୍କୃତିର ବୈଶିଷ୍ଟ୍ୟ ଭାବେ ନିଆଯାଏ ।

ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତିର କ୍ରମବିକାଶ ସଭ୍ୟତାର ପ୍ରଗତି କ୍ଷେତ୍ରରେ ଯେପରି ସହାୟକ ହୁଏ, ସେହିପରି ନୂତନ ଚିନ୍ତା, ଚେତନା, ମାନବିକତାବୋଧ ଇତ୍ୟାଦି ମୂଲ୍ୟଚୟ ସଂସ୍କୃତିର ଗୁଣାତ୍ମକମାନ ବୃଦ୍ଧି ଦିଗରେ ସହାୟକ ହୋଇଥାଏ । ଏକ ଗୋଷ୍ଠୀର ନୈତିକ ଚେତନା, ମାନବିକ ଆବେଦନ ଓ ଉଦାରବାଦୀ ଜୀବନଦୃଷ୍ଟି ସଂସ୍କୃତିର ବିକାଶ କ୍ଷେତ୍ରରେ ନୂତନ ପ୍ରେରଣା ସୃଷ୍ଟି କରିଥାଏ । ସଭ୍ୟତା ଯେପରି ପରିବର୍ତ୍ତନ ଧାରାରେ ଅଗ୍ରଗତି କରେ,

ସଂସ୍କୃତି ମଧ୍ୟ ଏକ ପ୍ରବାହ ଭାବେ ଅଧିକରୁ ଅଧିକ ଉନ୍ନତ ହୋଇଥାଏ । ସାମାଜିକ ବିବର୍ତ୍ତନ ପ୍ରକ୍ରିୟାରେ ମଣିଷମାନଙ୍କର ବୌଦ୍ଧିକ ଓ ନୈତିକ ଦୃଷ୍ଟିଭଙ୍ଗୀ ବିଭିନ୍ନ ଯୁଗରେ ଭିନ୍ନ ହୋଇଥାଏ । ଯେକୌଣସି ଏକ ଜନଗୋଷ୍ଠୀର ସାଂସ୍କୃତିକ ବିକାଶଧାରାର ଅନୁଶୀଳନରୁ ଜଣାଯାଏ ଯେ ସଭ୍ୟତାର ବିକାଶ ସହ ଲୋକମାନଙ୍କର ଦୃଷ୍ଟିଭଙ୍ଗୀରେ, ମାନବିକ ଉତ୍କର୍ଷ କ୍ଷେତ୍ରରେ, ନୈତିକ ଦାୟିତ୍ୱବୋଧ ସ୍ତରରେ ଗୁଣାତ୍ମକ ପରିବର୍ତ୍ତନ ହୋଇଚାଲିଥାଏ । ଆଦିମ ସମାଜ, କୃଷିଭିତ୍ତିକ ସମାଜ, ସାମନ୍ତବାଦୀ ସମାଜ, ପିତୃ ବା ମାତୃକେନ୍ଦ୍ରିକ ସମାଜ, ଶିଳ୍ପୋନ୍ନତ ସମାଜ ଇତ୍ୟାଦିର ସାଂସ୍କୃତିକ ପରିବେଶ ଅନେକାଂଶରେ ପୃଥକ୍ ଅଟେ । ସାମାଜିକ ବିକାଶଧାରାରେ ଲୋକଙ୍କର ନୀତିବୋଧ, ଜୀବନଦୃଷ୍ଟି, ଗତିଶୀଳତା, ଧାର୍ମିକ ଆବେଗ ସେହି ଯୁଗର ପ୍ରମୁଖ ରାଜନୈତିକ ଓ ଅର୍ଥନୈତିକ ଆଦର୍ଶ ତଥା ପ୍ରାଯୁକ୍ତିକ ପରିବେଶରୁ ଉଦ୍ଭବ ହୋଇଥାଏ । ଆଦିମ ସମାଜରେ ବା କୃଷିଭିତ୍ତିକ ସମାଜରେ ଜନଗୋଷ୍ଠୀମାନଙ୍କ ଭିତରେ ସାଂସ୍କୃତିକ ଆଦାନପ୍ରଦାନର ସ୍ତର ଅତି ସୀମିତ ରହିବା ଦେଖାଯାଏ । ଶିଳ୍ପବିକାଶଜନିତ ନୂତନ ଅର୍ଥନୈତିକ ବିକାଶ ପରିବେଶରେ ବେପାର ବାଣିଜ୍ୟର ଅଭିବୃଦ୍ଧି, ସାମ୍ରାଜ୍ୟବାଦର ବିସ୍ତାର, ଧର୍ମପ୍ରଚାର ଇତ୍ୟାଦି ଯୋଗୁ ସଭ୍ୟତା ଭିତରେ ନାନା ଆଦାନପ୍ରଦାନ ନେଇ ସାଂସ୍କୃତିକ ଦୃଶ୍ୟପଟରେ କେତେକ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ ହେବା ଦେଖାଯାଏ ।

ବସ୍ତୁତଃ ସାମାଜିକ ବିକାଶ, ସଭ୍ୟତାର ଅଗ୍ରଗତି, ସାଂସ୍କୃତିକ ଉତ୍ତରଣ ପରସ୍ପର ସହ ସମ୍ବନ୍ଧିତ ଓ ଏ ପ୍ରତ୍ୟେକ ଏକ ଏକ ପ୍ରବାହ । ସେହି ପ୍ରବାହର ଅନ୍ତଃସ୍ରୋତ କେତେବେଳେ ଧୀର ତ କେତେବେଳେ ପ୍ରଖର । ତେବେ ଲକ୍ଷ୍ୟ କରିବାରକଥା ଯେ ମନୁଷ୍ୟର ନୀରବଚ୍ଛିନ୍ନ ପ୍ରୟାସ ଯୋଗୁ ହିଁ ସମାଜ, ସଭ୍ୟତା ଓ ସଂସ୍କୃତି ଋଦ୍ଧିମନ୍ତ ହୋଇଛି । ଏଥିରେ କୌଣସି ଈଶ୍ୱର ବା ଦେବତାର ଭୂମିକା ନାହିଁ । ଯେଉଁ ଜନଗୋଷ୍ଠୀ ସଚେତନ ଭାବେ ନିଜର ସାମାଜିକ ପରିବେଶକୁ ଉନ୍ନତ, ନ୍ୟାୟପୂର୍ଣ୍ଣ, ଗତିଶୀଳ ଓ ମାନବିକ କରିବାକୁ ପ୍ରୟାସ କରିଆସିଛି, ତାହା ଅଧିକ ସଭ୍ୟ ଓ ସଂସ୍କୃତିସମ୍ପନ୍ନ ହୋଇପାରିଛି । ଅଥଚ ଯେଉଁଠି ଜନମାନସରେ ଇହଲୋକ ଅପେକ୍ଷା ପରଲୋକର ଭାବନା ଅଧିକ ଗୁରୁତ୍ୱ ନେଇଛି, ଜୀବନକୁ ଅଳୀକ, ସାମାଜିକ ସମ୍ପର୍କକୁ ତୁଚ୍ଛ ଓ ସଂସାରକୁ ମାୟାବୋଲି ଭାବି ଅବଜ୍ଞା କରାଯାଇଛି, ସେହି ଦୃଷ୍ଟିଭଙ୍ଗୀଟି ସାମାଜିକ ବିକାଶ କ୍ଷେତ୍ରରେ ଅନୁନ୍ନତ ହୋଇ ରହିଛି । ଯେଉଁ ସାଂସ୍କୃତିକ ପ୍ରବାହକୁ ମୁକ୍ତମନ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ମାନସିକତା, ଗଣତାନ୍ତ୍ରିକ ଆଦର୍ଶବୋଧ ଓ ମାନବହିତୈଷୀ ଜୀବନଦର୍ଶନ ପ୍ରଭାବିତ କରିଛି ତାହା ସଭ୍ୟତା ଓ ସଂସ୍କୃତିର ବିକାଶ କ୍ଷେତ୍ରରେ କେତେ ନୂଆ ନୂଆ ଦିଗନ୍ତକୁ ସ୍ପର୍ଶ କରିଛି । ଏହି ମୂଲ୍ୟବୋଧଗୁଡ଼ିକ ମାନବବାଦୀ ଜୀବନ-ଦର୍ଶନରୁ ହିଁ ଉଦ୍ଭବ ହୋଇଛି, ଧର୍ମଭିତ୍ତିକ ସଂସ୍କୃତିରୁ ବିକଶିତ ହୋଇନାହିଁ । ଧର୍ମ ଚେତନା ଭିତରେ ଅବଶ୍ୟ କେତେକ ମହତ୍ତର ମୂଲ୍ୟବୋଧ ରହିଛି । ପ୍ରତ୍ୟେକ ଧର୍ମ ଭିତରେ ମହତ୍ତର ଜୀବନ ପାଇଁ କିଛି ପ୍ରେରଣା ଥାଇପାରେ, ତେବେ ଏହା ସହିତ ସଂକୀର୍ଣ୍ଣତା, ପାରଲୌକିକତା ଓ ରକ୍ଷଣଶୀଳତାର ବହୁ ଉପାଦାନ

ଏଥିରେ ରହିଛି । କହିବା ନିଷ୍ପ୍ରୟୋଜନ ଯେ ଶେଷୋକ୍ତ ଲକ୍ଷଣଗୁଡ଼ିକ ସଭ୍ୟତାର ବିକାଶ କ୍ଷେତ୍ରରେ ଅତୀତରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଛି । ପୁନଶ୍ଚ ମଣିଷର ଜାଗତିକ ଦୁର୍ଦ୍ଦଶା ଓ ଦୁଃଖମୟ ସ୍ଥିତି ପାଇଁ ଧାର୍ମିକ ଚେତନା କେତେ କେତେ ପାରଲୌକିକ ତତ୍ତ୍ୱ, ପୂର୍ବଜନ୍ମର କର୍ମଫଳ, ଆଦିମାନବର ପାପର ପରିଣାମ, ଈଶ୍ୱରୀୟ ଦଣ୍ଡ କହି ଏହା ପ୍ରତି ସ୍ପର୍ଶକାତରହୀନ ମନୋଭାବ ଆଣିଛି । ଅପରପକ୍ଷରେ କେତେକ ପ୍ରଜ୍ଞାଶୀଳ ବ୍ୟକ୍ତି ନିଜର ଜୀବନବ୍ୟାପୀ ପ୍ରୟାସ ଦ୍ୱାରା ମଣିଷ ସମାଜର ବୌଦ୍ଧିକ ସଂସ୍କୃତିକୁ ଯେପରି ଋଦ୍ଧିମନ୍ତ କରିଛନ୍ତି, ତାହାଦ୍ୱାରା ସଭ୍ୟତାର ଚକ ଆଗକୁ ଯାଇଛି ଓ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ହୋଇଛି । ମଣିଷର ବୌଦ୍ଧିକ ଚେତନାକୁ କୋପରନିକସ, ଗାଲିଲିଓ, ନିଉଟନ, ଆଇନଷ୍ଟାଇନ, ସିଗମଣ୍ଡ ଫ୍ରଏଡ଼, ଡାରୱିନ, କାର୍ଲମାର୍କସ, ବୁଦ୍ଧ, ସକ୍ରେଟିସ, ରସେଲ, ଭୋଲଟେୟାର ଇତ୍ୟାଦି ମୁକ୍ତଚିନ୍ତକମାନଙ୍କର ଦାନ ଅତୁଳନୀୟ । ବଡ଼ ବ୍ୟଙ୍ଗପୂର୍ଣ୍ଣ ହେଲେ ମଧ ଏହା ଅନସ୍ୱୀକାର୍ଯ୍ୟ ଯେ ଏମାନେ ହେତୁବାଦୀ ଯେଉଁମାନେ ମାନବର କଲ୍ୟାଣ ପାଇଁ ଅମୂଲ୍ୟ ଅବଦାନ ଦେଇଯାଇଛନ୍ତି । ସେମାନେ ଏହି ଦର୍ଶନରେ ବିଶ୍ୱାସ କରନ୍ତି ଯେ, ମାନବ କଲ୍ୟାଣର ସାଧନ କ୍ଷେତ୍ର ହେଉଛି ଏହି ଜଗତ, କୌଣସି ପରଜଗତ ନୁହେଁ । ଅପରପକ୍ଷରେ ବୌଦ୍ଧିକ ସଂସ୍କୃତିର ବିକାଶରେ ତଥାକଥିତ ଧର୍ମଗୁରୁମାନଙ୍କର ଅବଦାନ ନଗଣ୍ୟ ଓ ଏପରିକି ନକାରାତ୍ମକ କହିଲେ ଅତ୍ୟୁକ୍ତି ହେବନାହିଁ ।

ଉପସଂହାରରେ ଏହା କହିବା ଯଥାର୍ଥ ଯେ, ସମାଜ ଭିତରୁ ହିଁ ସଂସ୍କୃତି ରୂପରେଖ ନେଇଥାଏ । ଯେଉଁ ସଂସ୍କୃତିର ମାନବିକ ଆବେଦନ ଯେତେ ଅଧିକ ତାହା ସେତିକି ନ୍ୟାୟଯୁକ୍ତ, ଉଦାର ଓ ଜୀବନଧର୍ମୀ । ପରନ୍ତୁ ଯେଉଁ ସଂସ୍କୃତିରେ ଉଚ୍ଚ-ନୀଚ ଭେଦଭାବ, ପାରଲୌକିକତା, ପୂଜା-ପ୍ରାର୍ଥନା -କର୍ମକାଣ୍ଡଜନିତ ଜୀବନ ଦୃଷ୍ଟିର ପ୍ରାବଲ୍ୟ ଯେତେ ଅଧିକ ତାହା ସେତିକି କ୍ଷୟଶୀଳ ଓ ଏପରିକି ଅମାନବିକ । ଇହ ଜୀବନରେ ସୁଖ, ଶାନ୍ତି, ମର୍ଯ୍ୟାଦାବୋଧରୁ ବଞ୍ଚିତ ଜନଗଣଙ୍କୁ କେତେ ପାରଲୌକିକ ମୁକ୍ତି, ସ୍ୱର୍ଗପ୍ରାପ୍ତିର ବାର୍ତ୍ତା ଶୁଣାଇବାକୁ ସେମାନେ ତତ୍ପର । ଅପରପକ୍ଷରେ ମାନବବାଦୀ ହେତୁବାଦୀମାନେ କେଉଁ କାଳ୍ପନିକ ପରଜଗତର ସ୍ୱପ୍ନ ଦେଖନ୍ତି ନାହିଁ ବରଂ ଆମ ସଂସାରକୁ ଅଧିକ ସୁନ୍ଦର, ଆମର ସମ୍ପର୍କକୁ ଅଧିକ ମାନବିକ ଓ ସାମାଜିକ ବ୍ୟବସ୍ଥାକୁ ଅଧିକ ସମତାପୂର୍ଣ୍ଣ ଓ ନ୍ୟାୟଭିତ୍ତିକ କରିବାକୁ ପ୍ରୟାସ କରିଥାନ୍ତି । ସଭ୍ୟତା ଓ ସଂସ୍କୃତିର ମାନବିକ ଦିଗଟିର ଉତ୍କର୍ଷ ସାଧନ ହିଁ ସେମାନଙ୍କର ମୂଳ ଲକ୍ଷ୍ୟ । (୪.୮.୧୦)



# ସଂସ୍କୃତି, ଉପସଂସ୍କୃତି ଓ ଅପସଂସ୍କୃତି

ସାମାଜିକ ଜୀବନ ପ୍ରବାହ ମଧ୍ୟରୁ ସଂସ୍କୃତିର ସୃଷ୍ଟି । ସଂସ୍କୃତିର ଅର୍ଥ ବହୁ ବ୍ୟାପକ ହେଲେ ବି ଏହାକୁ ମୁଖ୍ୟତଃ ଏକ ଜନଗୋଷ୍ଠୀର ଜୀବନଶୈଳୀ, ଅଭ୍ୟାସ, ରୁଚିବୋଧ, ନାନ୍ଦନିକ ଅଭିବ୍ୟକ୍ତି, ଧାର୍ମିକ ପରମ୍ପରା, ନୀତିବୋଧ ଇତ୍ୟାଦିର ଏକ ସମ୍ମିଳିତ ଅଭିବ୍ୟକ୍ତି ଭାବେ ନିଆଯାଏ । ଏକ ଜନ୍‌ଗୋଷ୍ଠୀ ବା ସମାଜର ଜୀବନ ପ୍ରବାହରେ ନାନା ଭିନ୍ନତା ରହିପାରେ । ଖାଦ୍ୟ, ପୋଷାକ, ଜୀବନଶୈଳୀ, ନାନ୍ଦନିକତା, ପରମ୍ପରା, ଚଳଣି, ଶିଷ୍ଟାଚାର ଇତ୍ୟାଦି କ୍ଷେତ୍ରରେ ନାନା ଭିନ୍ନତା ରହିଥିଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ, ରାଜନୈତିକ ବା ଧାର୍ମିକ ଅସ୍ମିତା ଥିବା ଏକ ଗୋଷ୍ଠୀକୁ ନେଇ ସଂସ୍କୃତିର ଭାବନା ଆସିଥାଏ । ସେହି ପୃଷ୍ଠଭୂମିରେ ସଂସ୍କୃତିର ନାନା ଦିଗନ୍ତ ଭିତରୁ ଏହାର ବୌଦ୍ଧିକ, ନୈତିକ, ନାନ୍ଦନିକ ଓ ମାନବିକ ଅବଦାନ ଓ ଆବେଦନ ଏହାର ବୈଶିଷ୍ଟ୍ୟର ପରିଚୟ ଦେଇଥାଏ । ଏକ ଜନଗୋଷ୍ଠୀ ଯେତିକି ବଡ଼ ଆକାର ଧାରଣ କରେ ତାହାର ସଂସ୍କୃତି ଭିତରେ ସେତିକି ଭିନ୍ନତାର ଚିତ୍ର ରହିବାର ସମ୍ଭାବନା ଥାଏ । ପୁନଶ୍ଚ ସଂସ୍କୃତି କ୍ଷେତ୍ରରେ ଗତିଶୀଳତା ଓ ପ୍ରବାହମାନତା ଦୃଷ୍ଟିଗୋଚର ହୁଏ । ସାମାଜିକ ଜୀବନଧାରାରେ ରାଜନୈତିକ ବା ଅର୍ଥନୈତିକ ସ୍ତରରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ହେଲେ ତାହା ଜନଗୋଷ୍ଠୀର ସାଂସ୍କୃତିକ ଜୀବନ ପ୍ରବାହରେ ମଧ୍ୟ କାଳକ୍ରମେ ପରିବର୍ତ୍ତନ ଆଣିଥାଏ । ଅର୍ଥାତ୍ ସାମାଜିକ ପରିବର୍ତ୍ତନ ଯୋଗୁ ସାଂସ୍କୃତିକ ଦୃଶ୍ୟପଟରେ ମଧ୍ୟ ପରିବର୍ତ୍ତନ ଆସିଥାଏ ।

ଏକ ଭୌଗୋଳିକ ପରିସୀମା ଭିତର ରହିଥିବା ଓ ଏକ ରାଷ୍ଟ୍ରୀୟ ଅସ୍ମିତା ଥିବା ଜନଗଣଙ୍କର ସଂସ୍କୃତିର ଭାବନା ବିଚାର ପରିସରକୁ ଅଣାଯାଏ । ଭାରତୀୟ ସଂସ୍କୃତି କଥା କହିଲା ବେଳେ ଏକ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କର ମୌଳିକ ଆବେଦନ ଗୁଡ଼ିକର ପ୍ରସଙ୍ଗ ବିଚାର ପରିସରକୁ ଆସିଥାଏ । ସେହିପରି 'ପାଶ୍ଚାତ୍ୟ ସଂସ୍କୃତି' କଥା କହିବା ବେଳେ ବହୁ ଦେଶର ଓ ବହୁ ଭୌଗୋଳିକ ଭୂଖଣ୍ଡର ସମନ୍ୱିତ ଅଭିବ୍ୟକ୍ତିର ଗୋଟିଏ ଅସ୍ପଷ୍ଟ ଚିତ୍ର ମନକୁ ଆସିଥାଏ । ଏକ ସଂସ୍କୃତିର ପରିସରରେ ବହୁ ଉପସଂସ୍କୃତିର ଧାରା ମିଶିଥାଏ । ପାଶ୍ଚାତ୍ୟ ସଂସ୍କୃତି କଥା କହିଲା ବେଳେ ବିଭିନ୍ନ ଦେଶର ବହୁ କୀର୍ତ୍ତିରାଜିର ଚିତ୍ର ମନକୁ ଆସେ । ବହୁ ଦେଶ, ବହୁ ଭାଷା, ବହୁ ପରମ୍ପରାର ସମନ୍ୱିତ ଅଭିବ୍ୟକ୍ତି ଭିତରେ ପାଶ୍ଚାତ୍ୟ ସଂସ୍କୃତିର ରୂପରେଖଟି କ'ଣ ତାହା ବେଶ୍ ଅସ୍ପଷ୍ଟ ମନେହୁଏ । ଭାରତୀୟ

ସଂସ୍କୃତି କହିଲେ ମଧ୍ୟ ସେହିପରି ଏକ ଅସ୍ପଷ୍ଟ ଚିତ୍ରର ଭାବନା ମନକୁ ଆସେ । ଉତ୍କଳୀୟ ସଂସ୍କୃତି, ତାମିଲ ସଂସ୍କୃତି, ମରହଟ୍ଟା ସଂସ୍କୃତି, ପଞ୍ଜାବୀ ସଂସ୍କୃତି ଇତ୍ୟାଦି ଭାରତୀୟ ସଂସ୍କୃତିର ଅଙ୍ଗବିଶେଷ । ଉତ୍କଳୀୟ ସଂସ୍କୃତି ଓ ତାମିଲ ସଂସ୍କୃତି ଭିତରେ ହୁଏତ ନାନା ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇପାରେ, ତେବେ ଉଭୟ ଭାରତୀୟ ସଂସ୍କୃତିର ଅଙ୍ଗ । ସେହିପରି ଓଡ଼ିଶାର ଆଦିବାସୀ ସଂସ୍କୃତି କଥା କହିଲା ବେଳେ ଓଡ଼ିଶାରେ ରହିଥିବା ଆଦିବାସୀ ଗୋଷ୍ଠୀମାନଙ୍କର ଜୀବନଧାରଣର ଏକ ଅଭିବ୍ୟକ୍ତି ମନ ଭିତରକୁ ଆସେ । ପୁନଶ୍ଚ ବିଭିନ୍ନ ଆଦିବାସୀ ଗୋଷ୍ଠୀର ଜୀବନଶୈଳୀ, ପରମ୍ପରା, ପୋଷାକ, ରୁଚିବୋଧ, ଧାର୍ମିକ ବିଶ୍ୱାସ ଇତ୍ୟାଦି ମଧ୍ୟ ପୃଥକ୍ ହୋଇପାରେ । ଏକ ବୃହତ୍ତର ଜନଗୋଷ୍ଠୀରୁ ଆମେ ଯେତିକି କ୍ଷୁଦ୍ର ଅସ୍ମିତାକୁ ନେଇ ଗୋଷ୍ଠୀମାନଙ୍କର ପରିକଳ୍ପନା କରିବା ଓ ସେହି ପୃଷ୍ଠଭୂମିରେ ସେହି ଗୋଷ୍ଠୀର ସଂସ୍କୃତି ବିଷୟ ବିଚାରକୁ ନେବା ତାହା ନାନା ସାଂସ୍କୃତିକ ଭିନ୍ନତାର ଚିତ୍ର ଦେବ । ଏହାକୁ ଏକ ସାଦୃଶ୍ୟ ଜରିଆରେ ବୁଝାଇବା ସମ୍ଭବତଃ ଅଧିକ ପ୍ରାସଙ୍ଗିକ ହେବ । ଯେପରି ବିଭିନ୍ନ ଜଳଧାରା ଏକ ନଦୀରେ ମିଶି ଏହାକୁ ପୁଷ୍ଟ କରିଥାଏ, ଠିକ୍ ସେହିପରି ବିଭିନ୍ନ ସାଂସ୍କୃତିକ ପ୍ରବାହ ଏକ ମହାସାଂସ୍କୃତିକ ପ୍ରବାହକୁ ପୁଷ୍ଟ କରିଥାଏ । ଭାରତୀୟ ସଂସ୍କୃତି ଭିତରେ ଉତ୍କଳୀୟ ସଂସ୍କୃତି, ଉତ୍କଳୀୟ ସଂସ୍କୃତି ଭିତରେ ଆଦିବାସୀ ସଂସ୍କୃତି, ଆଦିବାସୀ ସଂସ୍କୃତି ଭିତରେ କନ୍ଧ ସଂସ୍କୃତି ବା ବଣ୍ଡାସଂସ୍କୃତି, ସଂସ୍କୃତିର ବିଭିନ୍ନ ଧାରା ଓ ଉପାଧାରା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ମୂଳ ସଂସ୍କୃତିରୁ ଏକ ଉପସଂସ୍କୃତିକୁ ଆସିବା କ୍ଷେତ୍ରରେ କିଛି ଭିନ୍ନତା ବା ବୈଶିଷ୍ଟ୍ୟ ହୁଏତ ଦେଖିବାକୁ ମିଳିଥାଏ । ଗୋଟିଏ ସାମାଜିକ ଗୋଷ୍ଠୀ ଯେତିକି ବଡ଼ ହୁଏ, ତାହାର ସାଂସ୍କୃତିକ ପରିସର ଭିତରେ ସେତିକି ଭିନ୍ନତାର ପ୍ରସଙ୍ଗ ଆସେ, ସାମାଜିକ ଗୋଷ୍ଠୀଟି ଯେତେ କ୍ଷୁଦ୍ର ହୁଏ ସାଂସ୍କୃତିକ ଭିନ୍ନତାର ପରିସରଟି ସେତେ ସଂକୁଚିତ ହୋଇ ଆସେ । ବସ୍ତୁତଃ ସଂସ୍କୃତି ଏକ ପ୍ରବାହ ଯାହା ଅନେକ ଉପସଂସ୍କୃତିର ଏକ ସମନ୍ୱିତ ଅଭିବ୍ୟକ୍ତି । ଉପସଂସ୍କୃତି ସକଳ ଏକ ମୁଖ୍ୟ ସଂସ୍କୃତିକୁ ଋଦ୍ଧିମନ୍ତ କରିବା ଦ୍ୱାରା ମୁଖ୍ୟ ସଂସ୍କୃତିର ବିଭବ ପରିପୁଷ୍ଟ ହୋଇଥାଏ ।

ତେବେ ଇତିହାସରେ ଏପରି ମଧ୍ୟ ଦେଖିବାକୁ ମିଳେ ଯେ ବେଳେ ବେଳେ କେତେକ ସାଂସ୍କୃତିକ ଚଳଣିକୁ ପରମ୍ପରାର ଦୁହାଇ ଦେଇ ପ୍ରଗତିଶୀଳ ପରିବର୍ତ୍ତନକୁ ବିରୋଧ କରାଯାଏ । ସଂସ୍କୃତି ଅନ୍ଧସଂସ୍କାର ଓ ପରମ୍ପରାର ରୂପ ନେଇ ସାମାଜିକ ବିକାଶ ପ୍ରକ୍ରିୟାର ପ୍ରତିବନ୍ଧକ ସାଜିବା ଅସମ୍ଭବ ନୁହେଁ । ସମାଜରେ ଅନେକ କୁସଂସ୍କାର ଏହି ଭଳି ଭାବେ ତିଷ୍ଠି ରହିଥାଏ । ତେବେ ଯେଉଁ କ୍ଷେତ୍ରରେ କୌଣସି ପ୍ରଥା, ପରମ୍ପରା ଓ ଚଳଣିକୁ ନିରଙ୍କୁଶ କହି ଏକ ସାମାଜିକ ଗୋଷ୍ଠୀ ଉପରେ ଲଦି ଦିଆଯାଏ ତାହା ରୁଦ୍ଧ ମାନସିକତା ଆଣିଥାଏ । କାରଣ ସେପରି ସ୍ଥଳେ ସଂସ୍କୃତି ରକ୍ଷଣଶୀଳତାରେ ରୂପାନ୍ତରିତ ହୋଇଯାଏ । ଯେଉଁଠି

ସାଂସ୍କୃତିକ ଗତିଶୀଳତା ପରିବର୍ତ୍ତେ ସାଂସ୍କୃତିକ ସ୍ଥାଣୁତ୍ୱ ଆସେ, ତାହା ସାମାଜିକ କ୍ଷୟଶୀଳତା ପାଇଁ ପଥ ପରିଷ୍କାର କରିଥାଏ । ସେପରି ସ୍ଥଳେ ସଂସ୍କୃତିର ମାନବିକ ଦିଗଟିର ଅବକ୍ଷୟ ହେବା ସହ ଏହା ଜ୍ଞାନର ବିକାଶରେ ବା ପ୍ରଗତିଶୀଳ ମୂଲ୍ୟବୋଧର ପ୍ରସାରରେ ଅନ୍ତରାୟ ହୋଇଥାଏ ।

ଅପସଂସ୍କୃତି ସଂସ୍କୃତିର ପରିପନ୍ଥୀ । ସଂସ୍କୃତିର ସକଳ ବିଭବକୁ ଆମେ ଯଦି କେତୋଟି ମୌଳିକ ଲକ୍ଷଣ ଭିତରେ ପ୍ରକାଶ କରିବା ତାହା ହେବ ଏହାର ବୌଦ୍ଧିକ, ନୈତିକ ଓ ନାନ୍ଦନିକ ଦିଗ । ବସ୍ତୁତଃ ଯାହା ଏସବୁର ବିକାଶର ପ୍ରତିକୂଳ ତାହା ଅପସଂସ୍କୃତି । ଅବଶ୍ୟ ଅପସଂସ୍କୃତିର ଏକ ବାସ୍ତବ ସଂଜ୍ଞା ଓ ସୀମା ନିର୍ଦ୍ଧାରଣ କରିବା ସହଜସାଧ୍ୟ ନୁହେଁ । ଏହାର କେବଳ ଏକ ନକାରାତ୍ମକ ସଂଜ୍ଞା ଦେବା ସମ୍ଭବ । ଯାହା ମାନବିକ ଶ୍ରେୟ ବିରୋଧୀ ଓ ବିଚାରଶୀଳତା ବିରୋଧୀ ତାହା ଅପସଂସ୍କୃତି । ଉଦାହରଣ ସ୍ୱରୂପ ଯେଉଁ ମାନସିକତା ବିଜ୍ଞାନର ବିକାଶ ଓ ନିରବଚ୍ଛିନ୍ନ ଜ୍ଞାନର ଅଭିବୃଦ୍ଧି ଦିଗରେ ଅନ୍ତରାୟ ତାହା ଅପସଂସ୍କୃତି । ଧାର୍ମିକ ମାନସିକତାରେ ବିଶ୍ୱାସ ଥିଲା ଯେ ଯାହା ଧର୍ମୀୟ ବିଶ୍ୱାସ ବା ଧର୍ମଗ୍ରନ୍ଥରେ ପ୍ରତିଫଳିତ ତାହା ଚିରନ୍ତନ ଓ ଶାଶ୍ୱତ । ଏହି ପ୍ରକାରର ଏକ ଦୃଷ୍ଟିଭଙ୍ଗୀ ନିରବଚ୍ଛିନ୍ନ ଜ୍ଞାନ ଚର୍ଚ୍ଚାର ପରିପନ୍ଥୀ । ଯେଉଁ ଦୃଷ୍ଟିଭଙ୍ଗୀ ବିଜ୍ଞାନର ବିକାଶରେ ପ୍ରତିକୂଳ ତାହା ଅପସଂସ୍କୃତି । ସେହିପରି ନୈତିକ ଆଚରଣ ଓ ମୂଲ୍ୟବୋଧ ଆମର ଅନୁଭୂତି ଓ ବିଚାରଶୀଳତାର ଆଧାର ଉପରେ ସମାଜରେ ବିକଶିତ ହେବା ଦେଖାଯାଏ । କିନ୍ତୁ ଯେଉଁଠି ପ୍ରଚଳିତ ପରମ୍ପରାର ଦ୍ୱାହି ଦେଇ ମାନବିକ ମର୍ଯ୍ୟାଦାକୁ ନ୍ୟୂନ କରାଯାଏ ତାହା ଅପସଂସ୍କୃତି । ଜାତିପ୍ରଥା, ଅସ୍ପୃଶ୍ୟତା, ଭେଦଭାବ ଜନିତ ପରମ୍ପରା ମାନବିକ ମର୍ଯ୍ୟାଦାର ପରିପନ୍ଥୀ ହୋଇଥିବାରୁ ସେ ସବୁର ଅଭିବ୍ୟକ୍ତି ଅପସଂସ୍କୃତି କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନକୁ ସରସ, ସୁନ୍ଦର ଓ ପ୍ରୀତିମୟ କରିବାକୁ ମଣିଷ କଳା, ସଂଗୀତ ଇତ୍ୟାଦି ଦେଇ କେତେ କେତେ ନାନ୍ଦନିକ ଦିଗର ସନ୍ଧାନ କରିଛି । ତେବେ ଯେଉଁ କଳାତ୍ମକ ଅଭିବ୍ୟକ୍ତି, ସଂଗୀତ, ନାଟକ, ସିନେମା ଇତ୍ୟାଦି ବ୍ୟକ୍ତି ମାନସରେ ଅନ୍ତହୀନ ଭୋଗବାଦ ଓ ଏକ ରୁଚିହୀନ ଆବେଗ ସୃଷ୍ଟି କରିଥାଏ ତାହାକୁ ଅପସଂସ୍କୃତି କହିଲେ ଭୁଲ ହେବ ନାହିଁ । ଯେଉଁ କଳା ବ୍ୟକ୍ତି ଭିତରେ ସୂକ୍ଷ୍ମ ଅନୁଭବ ଓ ସୃଜନଶୀଳ ଆବେଗ ସୃଷ୍ଟି କରେ ତାହା ସ୍ୱାଗତଯୋଗ୍ୟ । କିନ୍ତୁ ଯାହା ଏସବୁର ବିପରୀତ ଆବେଗ ଆଣିଥାଏ ବା ବ୍ୟକ୍ତି କିମ୍ବା ଗୋଷ୍ଠୀକୁ କୁତ୍ସିତ ଅନୁଭବ, ହିଂସ୍ର ମନୋଭାବ ଦେଇଥାଏ ତାହା ଅପସଂସ୍କୃତି । ତେବେ ଏସବୁ ଯେ ଅପସଂସ୍କୃତିର କେବଳ ମାତ୍ର ସ୍ୱରୂପ ତାହା କହିବା ସମୀଚୀନ ମନେ ହୁଏ ନାହିଁ । କାରଣ ଏହାର ଅନ୍ୟାନ୍ୟ ଦିଗନ୍ତ ରହିବା ଅସମ୍ଭବ ନୁହେଁ । ତେବେ ସଂସ୍କୃତିର ଅବବୋଧ ନେଇ ସ୍ପଷ୍ଟତା ରହିଲେ ତାହାରି ପୃଷ୍ଠଭୂମିରେ ଅପସଂସ୍କୃତିର ସ୍ୱରୂପନେଇ ଚିତ୍ରଟି ସ୍ପଷ୍ଟ ହୋଇପାରିବ ।

ଉପସଂହାରରେ, ସଂସ୍କୃତିର ବୌଦ୍ଧିକ ଓ ନାନ୍ଦନିକ ଅଭିବ୍ୟକ୍ତିର ଏକ ନୈତିକ ନିର୍ଯ୍ୟାସ ରହିବା ଆବଶ୍ୟକ । ଯେଉଁ ଚେତନା ବ୍ୟକ୍ତିକୁ ବା ଗୋଷ୍ଠୀକୁ ଶୃଙ୍ଖଳିତ ନାଗରିକ ହେବାରେ ପ୍ରେରଣା ଦିଏ, ମାନବିକ ପ୍ରୟାସଗୁଡ଼ିକ ପ୍ରତି ପ୍ରତିବଦ୍ଧତା ସୃଷ୍ଟି କରେ ଓ ସାମାଜିକ ହିତସାଧନକୁ ଗୁରୁତ୍ୱ ଦିଏ ତାହା ଉନ୍ନତ ସଂସ୍କୃତିର ବାର୍ତ୍ତା ବହନ କରିଥାଏ । ସେହିପରି ଯେଉଁ ସାଂସ୍କୃତିକ ପରିବେଶ କର୍ମସଂସ୍କୃତିକୁ ଜୀବନଧାରାରେ ମିଶାଇବାକୁ ଓ ସାଧୁତାକୁ ସାମାଜିକ କର୍ତ୍ତବ୍ୟରେ ପ୍ରତିଫଳିତ କରିବାକୁ ପ୍ରେରଣା ସୃଷ୍ଟି କରେ ତାହା ମହତ୍ତର ସଂସ୍କୃତିର ଚିତ୍ର ଦିଏ । ଉଦାରତା, ମାନବିକତା, ସମତା ଓ ନ୍ୟାୟବୋଧ ଯଦି ସାମାଜିକ ଜୀବନର ବିଭିନ୍ନ କ୍ଷେତ୍ରରେ ଆଦର୍ଶ ହୋଇ ରହେ ତାହା ଉନ୍ନତ ସାଂସ୍କୃତିକ ଚେତନାର ପରିଚୟ ଦିଏ । ପରନ୍ତୁ ଯେଉଁ ସାମାଜିକ ପରିବେଶ ବ୍ୟକ୍ତି ଓ ଗୋଷ୍ଠୀ ଜୀବନରେ ଏସବୁ ମୂଲ୍ୟବୋଧ ପ୍ରତି ପ୍ରେରଣା ସୃଷ୍ଟି ନକରି ଏକ ସ୍ପର୍ଶକାତରହୀନ ଦୃଷ୍ଟିଭଙ୍ଗୀ ଆଣେ ତାହା ଉନ୍ନତ ସଂସ୍କୃତିର ପରିଚାୟକ ନୁହେଁ । ଯଦି ଅନ୍ୟାୟ, ଭ୍ରଷ୍ଟାଚାର, ଭେଦଭାବମୂଳକ ଦୃଷ୍ଟିଭଙ୍ଗୀ ସାଂପ୍ରଦାୟିକତା ଜୀବନଧାରାରେ ଅନେକ କ୍ଷେତ୍ରରେ ପ୍ରତିଫଳିତ ହୁଏ, ତେବେ ତାହା କୌଣସି ଉନ୍ନତ ସଂସ୍କୃତିର ଚିତ୍ର ଦିଏ ନାହିଁ । ପୁନଶ୍ଚ କୌଣସି ସଂସ୍କୃତିର ପ୍ରାଚୀନତା ତାହାର ମହନୀୟତାର ସ୍ୱାକ୍ଷର ବହନ କରେନାହିଁ, ବରଂ ତା'ର ଗୁଣାତ୍ମକ ମୂଲ୍ୟ ଓ ସୁସ୍ଥ ସମାଜ ପାଇଁ ଆବେଦନ ତା'ର ମହନୀୟତାର ଚିତ୍ର ଦେଇଥାଏ । (୧୧.୮.୧୦)



# ମୌଳିକ ଶିକ୍ଷା ଓ ସାମ୍ପ୍ରତିକ ସ୍ଥିତି

ଇଂରାଜୀରେ ଏକ କଥା ଅଛି- 'ଗୋଟିଏ ଦେଶର ଭବିଷ୍ୟତ ତା'ର ଶ୍ରେଣୀଗୃହରେ ହିଁ ଗଢ଼ି ଉଠିଥାଏ' । କଥାଟିର ତାତ୍ପର୍ଯ୍ୟ ହେଉଛି ଏକ ଦେଶର ସମୃଦ୍ଧି ଓ ଗୁଣାତ୍ମକ ଜୀବନ ଦେଶର ଶିକ୍ଷା ବ୍ୟବସ୍ଥା ଉପରେ ଅନେକାଂଶରେ ନିର୍ଭରଶୀଳ । ଶିକ୍ଷାର ଅର୍ଥ ଓ ପରିସର ବହୁ ବ୍ୟାପକ । ତେବେ ଜଣେ ବିଦ୍ୟାର୍ଥୀ ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଯେଉଁ ଶିକ୍ଷା ଶିକ୍ଷାୟତନରୁ ଲାଭ କରେ ତାହାକୁ ଆନୁଷ୍ଠାନିକ ଶିକ୍ଷା କୁହାଯାଏ । ଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ରାଷ୍ଟ୍ରର ଭବିଷ୍ୟ ନିର୍ମାଣ ପାଇଁ ସ୍ୱପ୍ନ ନିହିତ ଥାଏ ।

ପରାଧୀନ ଭାରତବର୍ଷରେ ଜାତୀୟ ଆନ୍ଦୋଳନ ସହ ଭାରତରେ ଶିକ୍ଷାର ଭବିଷ୍ୟତ ରୂପରେଖ ନେଇ କେତେକ କ୍ରାନ୍ତିକାରୀ ବିଚାର ପ୍ରକାଶ ପାଇଥିଲା । ଜାତୀୟ ଆନ୍ଦୋଳନର କର୍ଣ୍ଣଧାର ଥିବା ମହାତ୍ମା ଗାନ୍ଧୀ ତାଙ୍କର କେତେକ ସହଯୋଗୀ ଶିକ୍ଷାବିତ୍‌ଙ୍କ ଜରିଆରେ ସମଗ୍ର ଦେଶ ପାଇଁ ଏକ ଶିକ୍ଷା ବ୍ୟବସ୍ଥାର ପରିକଳ୍ପନା କରିଥିଲେ । ଏହାକୁ 'ନଈ ତଲିମ' ବା ମୌଳିକ ଶିକ୍ଷା କୁହାଯାଉଥିଲା । ସେତେବେଳେ ଦେଶରେ ନିରକ୍ଷରତା ଓ ଦାରିଦ୍ର୍ୟ ଯେଉଁ ସ୍ତରରେ ଥିଲା, ସେଥିରେ ପରିବର୍ତ୍ତନ ପାଇଁ ଗାନ୍ଧୀଙ୍କ ବିଚାରରେ କେତେକ ନୂତନତ୍ୱ ଥିବା ମନେହୁଏ । ନିରକ୍ଷରତାକୁ ଦୂରକରି ସାକ୍ଷରତାର ହାର ବୃଦ୍ଧି କରିବାକୁ ପ୍ରୌଢ଼-ଶିକ୍ଷାକୁ ବି ପ୍ରାଧାନ୍ୟ ଦିଆଯାଇଥିଲା । ଚଉଦ ବର୍ଷ ପର୍ଯ୍ୟନ୍ତ ସମସ୍ତ ଶିଶୁ ଓ କିଶୋରଙ୍କୁ ବାଧ୍ୟତାମୂଳକ ଅବୈତନିକ ଶିକ୍ଷା ଦେବାର ପରିବେଶ ରାଷ୍ଟ୍ର ଯୋଗାଇଦେବ ବୋଲି ଆମ ସମ୍ବିଧାନରେ ପବିତ୍ର ପ୍ରତିଶ୍ରୁତି ଦିଆଯାଇଥିଲା । ସାକ୍ଷରତା ପରି ଏକ ମୌଳିକ ଆବଶ୍ୟକତାକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ନିଆଯାଇଥିଲା । ଏତଦ୍‌ବ୍ୟତୀତ ଦାରିଦ୍ର୍ୟରୁ ମୁକ୍ତି ପାଇଁ ବୃତ୍ତିଗତ ବା ଧନ୍ଦାମୂଳକ ଶିକ୍ଷାକୁ ଗାନ୍ଧୀ ଉଚ୍ଚ ସ୍ଥାନ ଦେଇଥିଲେ । ପ୍ରତ୍ୟେକ କିଶୋର ମୌଳିକ ଶିକ୍ଷା ଜରିଆରେ ଏକ ଧନ୍ଦା ଶିକ୍ଷା କରିବ ଯଦ୍ୱାରା ସେ ସମାଜରେ ସ୍ୱାବଲମ୍ବୀ ହୋଇ ବଞ୍ଚିବ । ସ୍ୱାବଲମ୍ବନଶୀଳତା ଦ୍ୱାରା ସମାଜରୁ ସକଳ ବେକାରି ସମସ୍ୟା ଦୂର ହୋଇପାରିବ । ସମସ୍ତ ବ୍ୟକ୍ତିଙ୍କୁ ଉଚ୍ଚଶିକ୍ଷା ଓ ସରକାରୀ କର୍ମସଂସ୍ଥାନ ଯୋଗାଇବା ଏକ ଅବାସ୍ତବ ପରିକଳ୍ପନା ହୋଇଥିବାରୁ ଗାନ୍ଧୀ ମୌଳିକ ଶିକ୍ଷାକୁ ପ୍ରାଧାନ୍ୟ ଦେଇଥିଲେ । ଶିକ୍ଷାକୁ ଡିଗ୍ରୀ-କୈନ୍ଦ୍ରିକ ନକରି ବୃତ୍ତି-କୈନ୍ଦ୍ରିକ ଓ ଜୀବନ-କୈନ୍ଦ୍ରିକ କରିବା ମୌଳିକ ଶିକ୍ଷାର ଆଭିମୁଖ୍ୟ ଥିଲା । ଏହା ସହ ଭାରତୀୟ ସମାଜରେ ଶରୀର  ଶ୍ରମ ପ୍ରତି ଯେଉଁ

ଅବଜ୍ଞା ଥିଲା, ସେହି ପୃଷ୍ଠଭୂମିରେ ଶ୍ରମର ମର୍ଯ୍ୟାଦାକୁ ମୌଳିକ ଶିକ୍ଷାରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଥିଲା । ଭାରତୀୟ ସମାଜର ମନସ୍ତତ୍ତ୍ୱ ଥିଲା ଯେ ଉଚ୍ଚଜାତି ବ୍ରାହ୍ମଣମାନେ ଶରୀର ଶ୍ରମ କରିବେ ନାହିଁ ଏବଂ ଦଳିତ ଓ ଶୁଦ୍ରମାନେ ଶିକ୍ଷାଲାଭ କରିବେ ନାହିଁ । ଏହି ସାମାଜିକ ଦୃଶ୍ୟପଟରେ ସାକ୍ଷରତାକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବେ ନେବା, ଶରୀର ଶ୍ରମକୁ ଗୁରୁତ୍ୱ ଦେବା ଓ ସ୍ୱାବଲମ୍ବନ ମୂଳକ ଶିକ୍ଷାର ପ୍ରସାର କରାଇବା ମୌଳିକ ଶିକ୍ଷାର ଆଦର୍ଶ ଥିଲା । ଏହା ସହିତ ଚାରିତ୍ରିକ ଶୃଙ୍ଖଳାକୁ ମଧ୍ୟ ଶିକ୍ଷାର ଏକ ଲକ୍ଷ୍ୟ ଭାବେ ଗ୍ରହଣ କରାଯାଇଥିଲା । ବ୍ୟକ୍ତି ଏକ ବୃହତ୍ତର ସମାଜର ଅଂଶବିଶେଷ ଭାବେ କେତେକ ନାଗରିକ ଶୃଙ୍ଖଳା ଓ ନୈତିକ ଆଦର୍ଶକୁ ଜୀବନଧାରାରେ ମିଶାଇବା ଆବଶ୍ୟକ । ସାଧୁତା, ସରଳତା, କର୍ମନିଷ୍ଠା, ଶୃଙ୍ଖଳାବୋଧ, ସମାଜ ପ୍ରତି ଏକ ଉତ୍ତରଦାୟୀ ଦୃଷ୍ଟିଭଙ୍ଗୀ ସମ୍ବେଦନଶୀଳତା ପରି ମହତ୍ତର ଗୁଣଗୁଡ଼ିକୁ ପ୍ରତ୍ୟେକ ଶିକ୍ଷାର୍ଥୀଙ୍କୁ ଛାତ୍ର ଜୀବନରୁ ଶିକ୍ଷା ଦେବା ଦରକାର । ବ୍ୟକ୍ତି ଚରିତ୍ରରେ ଏହି ଗୁଣଗୁଡ଼ିକର ବାସ୍ତବ ଅଭିବ୍ୟକ୍ତି ହିଁ ଏକ ଉନ୍ନତ ଜୀବନର ପରିଚୟ ଦେଇଥାଏ । ଏହି ଆଦର୍ଶ ଆଧାରରେ ବଞ୍ଚିବାର କଳାକୁ ଉନ୍ନତ କରିହେବ ବୋଲି ମୌଳିକ ଶିକ୍ଷାର ଲକ୍ଷ୍ୟ ରହିଥିଲା । ବସ୍ତୁତଃ ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ଉନ୍ନତି ପାଇଁ ବ୍ୟକ୍ତିର ଶାରୀରିକ, ବୌଦ୍ଧିକ ଓ ନୈତିକ ବା ଆଧ୍ୟାତ୍ମିକ ବିକାଶରେ ଶିକ୍ଷାକୁ ପ୍ରୟୋଗ କରିବାକୁ ହେବ । ଶରୀରର ଶକ୍ତି ଓ ସାମର୍ଥ୍ୟ ଆଧାରରେ ପ୍ରତ୍ୟେକ ବ୍ୟକ୍ତି ଶାରୀରିକ ଶ୍ରମକରିବ । ସ୍ୱାବଲମ୍ବୀ ହୋଇ ଜୀବନ ବଞ୍ଚିବାକୁ ହେଲେ ସମସ୍ତେ ଶ୍ରମର ମର୍ଯ୍ୟାଦାକୁ ସ୍ୱୀକାର କରିବେ । ନିଜର ବୃତ୍ତି ବା ଧନ୍ଦାକୁ ଉନ୍ନତ କରିବାକୁ ହେଲେ ବୌଦ୍ଧିକ ବିକାଶକୁ ଗୁରୁତ୍ୱ ଦେବାକୁ ହେବ । ନୂଆ ନୂଆ ପ୍ରୟୋଗ, ଗବେଷଣା ଓ ପ୍ରାକୃତିକ ପରିବେଶ ସହ ସମତାଳଯୁକ୍ତ ପ୍ରଯୁକ୍ତି ଓ ଚିକିତ୍ସା ବିଜ୍ଞାନର ଉନ୍ନତି ସାଧନ ପାଇଁ ବୌଦ୍ଧିକ ସ୍ତରରେ ପ୍ରୟାସ କରିବାକୁ ହେବ ।

ସକଳ ଅନାବଶ୍ୟକ ବିଳାସରୁ ନିଜକୁ ଦୂରେଇ ରଖିବା, ସରଳ ଜୀବନଧାରାକୁ ଜୀବନର ଆଭିମୁଖ୍ୟ ଭାବେ ନେବା, ଏକ ଶୋଷଣମୁକ୍ତ ବ୍ୟବସ୍ଥାର ବିକାଶ ପାଇଁ ସାମାଜିକ ଚେତନାକୁ ଋଦ୍ଧିମନ୍ତ କରିବା ଓ ଏକ ସାଧୁତାପୂର୍ଣ୍ଣ କର୍ମସଂସ୍କୃତିର ବିକାଶ କରାଇବାକୁ ଶିକ୍ଷାର ମୌଳିକ ଲକ୍ଷ୍ୟ ଭାବରେ ନେବାକୁ ଭାବନା ପ୍ରକାଶ ପାଇଥିଲା । ମୌଳିକ ଶିକ୍ଷା ସ୍ତରରେ ହାତ, ବୁଦ୍ଧି ଓ ଚରିତ୍ରର ସମନ୍ୱିତ ବିକାଶକୁ ଲକ୍ଷ୍ୟ ଭାବରେ ସ୍ୱୀକାର କରାଯାଇଥିଲା । ଏହି ମାନଦଣ୍ଡରେ ମୌଳିକ ଶିକ୍ଷାର ଏକ ଖସଡ଼ା ଗାନ୍ଧୀବାଦୀ ଶିକ୍ଷାବିତମାନେ ସ୍ୱାଧୀନତା ଆନ୍ଦୋଳନ ଅବସରରେ ପ୍ରସ୍ତୁତ କରିଥିଲେ ଯାହାକୁ ନଇ ତାଲିମ ବା ମୌଳିକ ଶିକ୍ଷା କୁହାଯାଉଥିଲା ।

ଗାନ୍ଧୀଙ୍କର ମୌଳିକ ଶିକ୍ଷା ତାଙ୍କ ପ୍ରଦର୍ଶିତ ସାମାଜିକ ବ୍ୟବସ୍ଥାର ଅଙ୍ଗବିଶେଷ ଥିଲା । ପରାଧୀନ ଭାରତରେ ଗାନ୍ଧୀ ଏକ ବିକଳ୍ପ ସାମାଜିକ ବ୍ୟବସ୍ଥାର ରୂପରେଖ ଆଙ୍କିଥିଲେ । ତାଙ୍କ ସ୍ୱପ୍ନର ଭାରତ ଥିଲା ଏକ ସ୍ୱାବଲମ୍ବନଶୀଳ ଗ୍ରାମୀଣ ଭାରତ । କୁଟୀରଶିଳ୍ପକୁ ଦେଶର ଅର୍ଥନୀତିର ମୂଳ ଭାବେ ନେଇ ଗ୍ରାମଗୁଡ଼ିକର ପୁନର୍ଗଠନ କରିବାକୁ ସେ ପରିକଳ୍ପନା କରିଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଏ ଦେଶର କୋଟି କୋଟି ଜନତା ଗାଆଁରେ ବାସ କରନ୍ତି ଓ ଗ୍ରାମର ଲୋକମାନଙ୍କୁ ଆର୍ଥିକ ସ୍ତରରେ ସ୍ୱାବଲମ୍ବୀ କରିବାକୁ ହେଲେ ସେମାନଙ୍କୁ କୁଟୀରଶିଳ୍ପ ମାଧ୍ୟମରେ ରୋଜଗାର ଦେଇହେବ ଓ ତା' ହେଲେ କୌଣସି ଶୋଷଣ ସମାଜରେ ରହିବ ନାହିଁ । କାଳକ୍ରମେ ସମାଜରୁ ବୈଷମ୍ୟ ଲୋପ ପାଇବ ଓ ସମାଜରୁ ଭେଦଭାବ ଲୋପ ପାଇଲେ ସମାଜ ଅହିଂସ ସମାଜରେ ରୂପାନ୍ତରିତ ହୋଇପାରିବ । ଏକ ଅହିଂସ, ସମତାପୂର୍ଣ୍ଣ ଓ ବ୍ୟକ୍ତି ମର୍ଯ୍ୟାଦା ଆଧାରିତ ସମାଜ ହେବ ଏକ ସର୍ବୋଦୟ ସମାଜ । ଏହି ପୃଷ୍ଠଭୂମିରେ ଗାନ୍ଧୀ ସହରୀ ସଭ୍ୟତା, ବୃହତ୍ ଶିଳ୍ପ, ଆଧୁନିକ ପ୍ରଯୁକ୍ତି, ପରିବେଶ ବିନାଶକାରୀ ଶିଳ୍ପ ବିକାଶର ବିରୋଧୀ ଥିଲେ । ଏକ ଗ୍ରାମୀଣ ପରିବେଶରେ ସର୍ବନିମ୍ନ ଆବଶ୍ୟକତା ଭିତରେ ଏକ ସରଳ ଜୀବନ ବଞ୍ଚିବାକୁ ସେ ଆଦର୍ଶ ବୋଲି ଭାବିଥିଲେ ।

ଗାନ୍ଧୀଙ୍କ ସାମାଜିକ ପୂନର୍ଗଠନ ଓ ପରିକଳ୍ପିତ ଆଦର୍ଶ ଜନରାଜ୍ୟ ଏହାର ନୈତିକ ଆବେଦନ ସତ୍ତ୍ୱେ ଅନେକାଂଶରେ ଏକ ୟୁଟୋପିଆର ଚିତ୍ର ଦେଇଥାଏ । ଶିଳ୍ପ ସଭ୍ୟତା, ଆଧୁନିକ ସମୃଦ୍ଧି ଓ ପ୍ରଯୁକ୍ତିର ଗାନ୍ଧୀ ପ୍ରାୟତଃ ବିରୋଧୀ ଥିଲେ । ଏହା ଦ୍ୱାରା ସମାଜରେ ଆର୍ଥିକ ବୈଷମ୍ୟ, ପରିବେଶର ଅସନ୍ତୁଳନ ଓ ଭୌତିକ ଭୋଗ ବିଳାସ ବୃଦ୍ଧି ପାଇବ ବୋଲି ସେ ଭାବିଥିଲେ । ଏହା ସହ ସମାଜରେ ହିଂସା, ଶୋଷଣ ଓ ଉପଭୋକ୍ତାବାଦୀ ଜୀବନଦୃଷ୍ଟିର ବିକାଶ ହେବ ବୋଲି ସେ କଳ୍ପନା କରିଥିଲେ । ମୋଟ ଉପରେ ତାଙ୍କର କଳ୍ପିତ ଗ୍ରାମ ସ୍ୱରାଜ ଭିତରେ କୁଟୀରଶିଳ୍ପ, ଶରୀରଶ୍ରମ, ସ୍ୱାବଲମ୍ବନଶୀଳ ଧନ୍ଦାମୂଳକ ଶିକ୍ଷା ଓ ନୀତିଶିକ୍ଷା ପ୍ରାଧାନ୍ୟ ନେଇଥିଲା । ବସ୍ତୁତଃ ଗାନ୍ଧୀଙ୍କ ମୌଳିକ ଶିକ୍ଷା ଏକ ଜୀବନଦର୍ଶନ ଉପରେ ଆଧାରିତ ଥିଲା ଓ ଏହାର ଉପଯୋଗିତା ସେହି ଯୁଗରେ ବେଶ୍ ପ୍ରାଧାନ୍ୟ ନେଇଥିଲା ।

ମୌଳିକ ଶିକ୍ଷାର ନୈତିକ ଆବେଦନ ସତ୍ତ୍ୱେ ଏହା ତ୍ରୁଟିଶୂନ୍ୟ କି ? କେବଳ ଧନ୍ଦାମୂଳକ ଶିକ୍ଷା ଦ୍ୱାରା ସୃଜନଶୀଳତା ଓ ବୈଜ୍ଞାନିକ ଗବେଷଣାକୁ ପ୍ରାଧାନ୍ୟ ଦେଇହେବ କି ? ଆଧୁନିକ ସମୃଦ୍ଧି ଓ ଉନ୍ନତ ମାନର ପ୍ରଯୁକ୍ତିକୁ ସେ ଯେପରି ହାନିକର ମନେକରିଛନ୍ତି ତାହାକୁ ପ୍ରତ୍ୟାଖ୍ୟାନ କରି ପ୍ରାଚୀନ ଯୁଗର ଉତ୍ପାଦନ ବ୍ୟବସ୍ଥାକୁ ଗ୍ରହଣ କରିବା ବାସ୍ତବ କି ? ଆଧୁନିକ ପ୍ରଯୁକ୍ତି ଓ ଜ୍ଞାନକୌଶଳ ଦ୍ୱାରା କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା

ଯେପରି ପୂରଣ କରାଯାଇପାରୁଛି, ତାହାକୁ ହସ୍ତଶିଳ୍ପ ଓ ଧନ୍ଦାମୂଳକ ଶିକ୍ଷାରେ କରିବା ସମ୍ଭବ କି ? ପୁନଶ୍ଚ ଗାନ୍ଧୀ ଭାରତୀୟ ଗ୍ରାମ୍ୟ ଜୀବନର ଶାନ୍ତି ଓ ଅହିଂସ ପରିବେଶ ଉପରେ ଯେପରି ପ୍ରାଧାନ୍ୟ ଦେଇଛନ୍ତି ତାହା କେତେଦୂର ସତ୍ୟ ? ବାସ୍ତବରେ ବୌଦ୍ଧିକ ଓ ସାଂସ୍କୃତିକ ମାନଦଣ୍ଡରୁ ଭାରତୀୟ ଗ୍ରାମମାନ ବହୁ ପଛରେ ଥିବା ମନେହୁଏ । ଜାତିଆଣ ମାନସିକତା ଓ ସାମନ୍ତବାଦ ଗ୍ରାମୀଣ ପରିବେଶକୁ ଯୁଗ ଯୁଗ ଧରି ଏତେ କଳୁଷିତ କରି ରଖିଛି ଯେ, ସ୍ୱାଧୀନତା ପ୍ରାପ୍ତିର ୬ଦଶନ୍ଧି ପରେ ମଧ୍ୟ ଜାତିଗତ ଭେଦଭାବ ଏବେ ବି ଗ୍ରାମ୍ୟ ଜୀବନର ବାସ୍ତବତା ଅଟେ । ଗ୍ରାମର ସାମନ୍ତବାଦୀ ପରମ୍ପରାରେ ଯାହା କିଛି ପରିବର୍ତ୍ତନ ଆସିଛି ତାହା ଆଧୁନିକ ଜୀବନ ପ୍ରବାହର ପ୍ରଭାବରୁ ହୋଇଛି । ତେବେ ବି ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ଗଣତାନ୍ତ୍ରିକ ଜୀବନଧାରା ଏ ଯୁଗର ଏହି ସାର୍ବଜନୀନ ଆଦର୍ଶଗୁଡ଼ିକ ଗ୍ରାମୀଣ ଜୀବନଶୈଳୀରେ ସୁଦୃଢ଼ ଭିତ୍ତି ନେଇପାରିନାହିଁ ।

ତେବେ ଆଜିର ପରିବର୍ତ୍ତିତ ପରିସ୍ଥିତିରେ ଗାନ୍ଧୀ ଯେଉଁ ନୈତିକ ଶୃଙ୍ଖଳାକୁ ଶିକ୍ଷାର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ନେଇଥିଲେ, ତାହାର ଏକ ସାର୍ବଜନୀନ ପ୍ରତିବେଦନ ଥିବା ମନେହୁଏ । ସୁତରାଂ ଯେକୌଣସି ଶିକ୍ଷା ବ୍ୟବସ୍ଥା ଭିତରେ ମାନବବାଦୀ ମୂଲ୍ୟବୋଧଗୁଡ଼ିକୁ ଶିକ୍ଷାର କିପରି ଅବିଚ୍ଛେଦ୍ୟ ଅଙ୍ଗ କରାଯିବ, ତାହା ବିଚାର କରିବା ଉଚିତ । (୧୮.୮.୧୦)



# ଉଚ୍ଚଶିକ୍ଷା ଓ ବର୍ତ୍ତମାନର ସ୍ଥିତି

ସ୍ୱାଧୀନ ଭାରତବର୍ଷରେ ଉଚ୍ଚଶିକ୍ଷାର ରୂପରେଖ ନେଇ ବହୁବିଚାର ବିମର୍ଶ ହୋଇଆସୁଛି । ସରକାର ବିଭିନ୍ନ ସମୟରେ କେତେକ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ନେଇ ଶିକ୍ଷା ନୀତି ବିଷୟରେ ପରାମର୍ଶ ଦେବାକୁ ନାନା କମିଶନ ଗଠନ କରିଛନ୍ତି । ସେ ମଧ୍ୟରେ ୧୯୪୮-୪୯ରେ ରାଧାକ୍ରିଷ୍ଣନ କମିଶନ, ୧୯୫୨-୫୩ରେ ମୁଦାଲିୟର କିମଶନ ଓ ୧୯୬୪-୬୬ରେ କୋଠାରୀ କମିଶନ ଜାତୀୟ ଶିକ୍ଷାନୀତି ଉପରେ ଅତି ପାଣ୍ଡିତ୍ୟପୂର୍ଣ୍ଣ ପରାମର୍ଶମାନ ସରକାରଙ୍କୁ ଦେଇଛନ୍ତି । ଏହିସବୁ ପରାମର୍ଶକୁ ଅନୁଧ୍ୟାନ କରି ବିଭିନ୍ନ ସମୟରେ ଜାତୀୟ ଶିକ୍ଷାନୀତିମାନ ସରକାର ପ୍ରଣୟନ କରିଛନ୍ତି ।

ସମୃଦ୍ଧ ଦେଶମାନଙ୍କର ଉନ୍ନତି ଓ ସାମଗ୍ରିକ ବିକାଶ ପାଇଁ ସେ ଦେଶର ଉଚ୍ଚଶିକ୍ଷା, ବୈଜ୍ଞାନିକ ଗବେଷଣା, ଅତ୍ୟାଧୁନିକ ପ୍ରଯୁକ୍ତି ଯେ ମୂଳଭିତ୍ତି ହୋଇରହିଛି, ତାହା ଭାରତର ଅନେକ ବୁଦ୍ଧିଜୀବୀ ଓ ରାଷ୍ଟ୍ରନୀତିଜ୍ଞ ସ୍ୱାଧୀନତାପରେ ଅନୁଭବ କରିଥିଲେ । ସୁତରାଂ ସ୍ୱାଧୀନତା ପରେ ଆମ ଦେଶର ବିକାଶ ପାଇଁ ଉଚ୍ଚଶିକ୍ଷା ଓ ଗବେଷଣା ଉପରେ ପ୍ରାଧାନ୍ୟ ଦିଆଯାଇଥିଲା । ଆମର ବିଶାଳ ଜନସଂଖ୍ୟାର କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତାକୁ ପୂରଣ କରିବାକୁ କୃଷି ଓ ଶିଳ୍ପ ଉପରେ ଅଧିକ ପ୍ରାଧାନ୍ୟ ଥିଲା । ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ହାସଲ କରିବାକୁ ବୈଷୟିକ ଶିକ୍ଷା, ବୈଜ୍ଞାନିକ ଗବେଷଣା ସେତେବେଳେ ବେଶ୍ ଦୃଷ୍ଟିଆକର୍ଷଣ କରିଥିଲା । ଫଳରେ ବହୁ ବୈଷୟିକ ଶିକ୍ଷାନୁଷ୍ଠାନ, ଗବେଷଣା ପ୍ରତିଷ୍ଠାନ ଓ ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କର ପରିମାଣାତ୍ମକ ଅଭିବୃଦ୍ଧି ସ୍ୱାଧୀନତା ପରେ ଅଗ୍ରଗତି କରିଚାଲିଲା । ପରିଣାମତଃ ଶିଳ୍ପ ଓ ପ୍ରଯୁକ୍ତି କ୍ଷେତ୍ରରେ ଆମର ଯଥେଷ୍ଟ ଲୋକଶକ୍ତି ମିଳିପାରୁଛି, ଉଚ୍ଚଶିକ୍ଷାର ପ୍ରସାର ଯୋଗୁ ସାମାଜିକ ଅନମନୀୟ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ଧାରା ଅବ୍ୟାହତ ରହିଛି ଓ ସାମାଜିକ ଚେତନାର ସ୍ତର ବୃଦ୍ଧି ପାଇବାରେ ଲାଗିଛି । ବୈଷୟିକ ଜ୍ଞାନକୌଶଳ କ୍ଷେତ୍ରରେ ଆମ ଦେଶର ଯୁବଶକ୍ତି ଯଥେଷ୍ଟ ଅଗ୍ରଗତି ହାସଲ କରିପାରିଛି । ଆଧୁନିକ ଶିକ୍ଷା ବ୍ୟବସ୍ଥା ଓ ବୈଷୟିକ ଶିକ୍ଷାନୁଷ୍ଠାନରୁ ବହୁ ସୁଫଳ ମଧ୍ୟ ଦେଶ ପାଇପାରିଛି ।

ଏସବୁ ସତ୍ତ୍ୱେ ବହୁ ସାମାଜିକ ବିଫଳତା ଆମର ଜନଜୀବନରେ ଦୃଷ୍ଟିଗୋଚର ହୋଇଥାଏ । ଆମର ଆର୍ଥିକ ବିକାଶ ଓ ସାମାଜିକ ପରିସ୍ଥିତିକୁ ଦୃଷ୍ଟିନିକ୍ଷେପ କଲେ

ଯେଉଁସବୁ ବିଫଳତା ଆମ ସମ୍ମୁଖକୁ ଆସିଥାଏ, ତାହାର କିଞ୍ଚିତ୍ ସୂଚନା ଏଠାରେ ଦେବା ଅପ୍ରାସଙ୍ଗିକ ନୁହେଁ । ଏବେ ବି ଆମ ଜନସଂଖ୍ୟାର ଏକ ତୃତୀୟାଂଶ ଠାରୁ ଅଧିକ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଜୀବନ ନିର୍ବାହ କରନ୍ତି । ସମାଜର ଅଗଣିତ ବ୍ୟକ୍ତି ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରନ୍ତି ନାହିଁ ଓ ଅସ୍ୱାସ୍ଥ୍ୟକର ପରିବେଶରେ ଜୀଉଁଛନ୍ତି । ସେମାନଙ୍କ ପିଲାଙ୍କ ପାଇଁ ଗୁଣାତ୍ମକ ଶିକ୍ଷା ସ୍ୱପ୍ନ ହୋଇ ରହିଛି । ପ୍ରାଥମିକ ଶିକ୍ଷା ସ୍ତରରୁ ଆମ ସାମାଜିକ ବିଷମତାର ଚିତ୍ରଟି ସ୍ପଷ୍ଟ ହୋଇଯାଉଛି । ଆମ ଦେଶର ଶିଶୁମାନଙ୍କ ମଧ୍ୟରୁ ଏକ ତୃତୀୟାଂଶ ପୁଷ୍ଟିହୀନତାରେ ଆକ୍ରାନ୍ତ ହୋଇ ରହିଛନ୍ତି ଓ ଶିଶୁ ମୃତ୍ୟୁହାର ଦେଶରେ ସର୍ବାଧିକ ହୋଇରହିଛି । ପୃଥିବୀର ନିରକ୍ଷର ଲୋକସଂଖ୍ୟାର ଏକ ମୁଖ୍ୟ ଅଂଶ ଭାରତରେ ରହିଛନ୍ତି । ଶିକ୍ଷାର ନାନା ଯୋଜନା ଓ ପରିକଳ୍ପନା ସତ୍ତ୍ୱେ ଏବେ ବି ଆମ ଦେଶର ଅଗଣିତ ଛାତ୍ରଛାତ୍ରୀ ପ୍ରାଥମିକ ଶିକ୍ଷା ସ୍ତରରୁ ଶିକ୍ଷା ଛାଡ଼ନ୍ତି । ଶିଶୁକନ୍ୟା ହତ୍ୟା ପରି ଅମାନବୀୟ ଘଟଣା ହିଁ ଆମ ଦେଶରେ ହେଉଛି । ଏପରିକି ଆମ ଦେଶର କିଛିଟା ସମୃଦ୍ଧ ରାଜ୍ୟ ଯଥା ପଞ୍ଜାବ, ଗୁଜରାଟ, ମହାରାଷ୍ଟ୍ର ଓ ହରିଆନାରେ ଏହା ଅଧିକ ହେଉଥିବା ଜଣାଯାଏ । ପରିଣାମତଃ ଏହି ରାଜ୍ୟମାନଙ୍କରେ ନାରୀ ପୁରୁଷମାନଙ୍କର ଅନୁପାତରେ ଯେଉଁ ତାରତମ୍ୟ ଦେଖାଯାଏ ତାହା ଭବିଷ୍ୟତ ପାଇଁ ବିଭିନ୍ନ ଆଶଙ୍କା ସୃଷ୍ଟିକରେ । ପୁନଶ୍ଚ ପୃଥିବୀରେ ଏଡ୍‌ସ ପରି ରୋଗରେ ଆକ୍ରାନ୍ତ ଜନସଂଖ୍ୟାର ଏକ ବଡ ଅଂଶ ଭାରତରେ ରହିଥିବା ବିଶ୍ୱ ସ୍ୱାସ୍ଥ୍ୟ ସଂଘ ବିବରଣୀରୁ ଜଣାପଡ଼େ । ଉତ୍କଟ ଦାରିଦ୍ର୍ୟ, ଶିଶୁଶ୍ରମିକ, ଶିଶୁମୃତ୍ୟୁହାର, ବେକାରୀ ସମସ୍ୟା, ଆର୍ଥିକ ବୈଷମ୍ୟ ଇତ୍ୟାଦି ସମସ୍ୟାଗୁଡ଼ିକ ଆମ ଦେଶରେ ଏବେ ବି ଉତ୍କଟ ହୋଇରହିଛି । ଆମ ଦେଶର ଅଗଣିତ ଜନଗଣ ସ୍ୱାସ୍ଥ୍ୟସେବା, ଶିକ୍ଷା ଓ ସୁସ୍ଥ ପରିବେଶରେ ବଞ୍ଚିବାର ସୁଯୋଗରୁ ବଞ୍ଚିତ ହୋଇ ରହିଛନ୍ତି ।

ଏତଦ୍‌ବ୍ୟତୀତ କେତେକ କ୍ଷେତ୍ରରେ ଆମ ସାମାଜିକ ଦୃଶ୍ୟପଟଟି ଅତ୍ୟନ୍ତ ଅମାନବୀୟ ହୋଇ ରହିଛି । ନାଗରିକ ଶୃଙ୍ଖଳାବୋଧର ଘୋର ଅଭାବ, ଜାତିଆଣ ଉଚ୍ଚନୀଚ ଭେଦଭାବ ଜନିତ ମାନସିକତା, ସାମ୍ପ୍ରଦାୟିକ ବିଦ୍ୱେଷ, ପ୍ରଶାସନିକ ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର ଇତ୍ୟାଦି ବହୁ ମନ୍ଦ କଥା ବା ସୋସିଆଲ ଇଭିଲ ଏବେ ବି ଆମ ଜନଜୀବନରେ କାୟା ବିସ୍ତାର କରିରହିଛି । ଆମ ସହରମାନଙ୍କର ପରିମଳ ବ୍ୟବସ୍ଥା ଏବେ ବି ଆନ୍ତର୍ଜାତିକ ମାନଦଣ୍ଡରେ ଅତି ନିମ୍ନମାନର ହୋଇ ରହିଛି । ଲୋକସଂଖ୍ୟାର ଚାପ, ଦାରିଦ୍ର୍ୟ, ନାଗରିକ ଶୃଙ୍ଖଳାବୋଧର ଅଭାବ ଆମର ପରିମଳ ବ୍ୟବସ୍ଥାକୁ ନିମ୍ନମାନର କରି ରଖିଛି । ଦୁର୍ନୀତି ଅଧିକାଂଶ ସ୍ତରରେ ଏକ ସାଧାରଣ ଘଟଣା ହୋଇଯାଇଛି । କେତେକ ରାଜ୍ୟରେ ଜାତିବିହୀନ ବିବାହ କରୁଥିବା ଯୁବକ–

ଯୁବତୀଙ୍କୁ ଅନର କିଲିଂ ନାମରେ ଯେପରି ହତ୍ୟା କରାଯାଉଛି, ତାହା ମଧ୍ୟଯୁଗୀୟ ବର୍ବରତା କହିଲେ ଅତ୍ୟୁକ୍ତି ହେବନାହିଁ । ଏହାସହିତ ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ ମଧ୍ୟ କୁସଂସ୍କାର ଆମ ଜନଜୀବନରେ କାୟା ବିସ୍ତାର କରି ରହିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଜଣେ ନାଗରିକର ମୌଳିକ କର୍ତ୍ତବ୍ୟ ବୋଲି ଆମ ସମ୍ବିଧାନରେ ଗ୍ରହଣ କରାଯାଇଥିଲେ ବି କୁସଂସ୍କାର ଆମ ସାମାଜିକ ଜୀବନଧାରାରେ ପାହାଡ଼ ସଦୃଶ ଛିଡ଼ା ହୋଇ ରହିଛି । ମୋଟ ଉପରେ ସମାଜର ବୃହତ୍ତର ପରିବେଶରେ ଦୁର୍ନୀତି, ଭ୍ରଷ୍ଟାଚାର, ଅପସଂସ୍କୃତି, ସନ୍ତ୍ରାସବାଦ, କୁସଂସ୍କାର କାୟା ବିସ୍ତାର କରି ରହିଛି ।

ଆମ ଦେଶର ଯେଉଁ ଛାତ୍ରଛାତୀମାନେ ଉନ୍ନତମାନର ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷା କରିବାର ସୁଯୋଗ ପାଉଛନ୍ତି ସେମାନେ ନିଶ୍ଚିତ ଭାବେ ସୌଭାଗ୍ୟଶାଳୀ । ସମାଜର ଅଗଣିତ ଛାତ୍ରଛାତୀ ସାଧାରଣ ଶିକ୍ଷାରୁ ବଞ୍ଚିତ ହେଉଥିବା ବେଳେ ବା ଦାରିଦ୍ର୍ୟ ଯୋଗୁ ଉଚ୍ଚଶିକ୍ଷାର ସ୍ୱପ୍ନ ଦେଖୁନଥିବା ବେଳେ କେତେକ ଛାତଛାତ୍ରୀ ପାରିବାରିକ ସ୍ୱଚ୍ଛଳତା ଓ ସଚେତନତା ଯୋଗୁ ଅତ୍ୟନ୍ତ ବ୍ୟୟବହୁଳ ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ିପାରୁଛନ୍ତି । ତେବେ ବିଡ଼ମ୍ବନାର ବିଷୟ ଖ୍ୟାତିସମ୍ପନ୍ନ ଉଚ୍ଚ ଶିକ୍ଷାନୁଷ୍ଠାନର କୃତୀ ଛାତ୍ରମାନେ ବିଦେଶୀ ସଂସ୍ଥାମାନଙ୍କରେ ଉଚ୍ଚ ବେତନ ପାଇଁ ଅତ୍ୟନ୍ତ ଆଗ୍ରହୀ ହେଉଛନ୍ତି । ଆଧୁନିକ ଶିକ୍ଷା ଓ ପ୍ରତିଯୋଗିତା ମେଧାବୀ ଛାତ୍ରମାନଙ୍କୁ ଅତ୍ୟନ୍ତ ସ୍ୱାର୍ଥସର୍ବସ୍ୱ କରିଦେଉଛି । ପୁନଶ୍ଚ ପ୍ରାଚୁର୍ଯ୍ୟ ଓ ବିଳାସ ସତ୍ତ୍ୱେ କେତେକ ଉଚ୍ଚଶିକ୍ଷିତ ଯୁବକ ଯୁବତୀ ଉଦ୍‌ଭ୍ରାନ୍ତ ଓ ହତାଶାବୋଧ ଭିତରେ ଜୀବନ ବଞ୍ଚୁଛନ୍ତି । ସାମାଜିକ ଅଙ୍ଗୀକାରବଦ୍ଧତା ଓ ଏକ ଉନ୍ନତ ଜୀବନଦୃଷ୍ଟି ଅଭାବରେ ସେମାନେ ଯେତିକି ସ୍ୱାର୍ଥପର ହେଉଛନ୍ତି, ସେତିକି ସଂକୀର୍ଣ୍ଣ ଓ ଅସହାୟବୋଧର ଶିକାର ମଧ୍ୟ ହେଉଛନ୍ତି । ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଧନର ଆକର୍ଷଣ ଓ ପ୍ରତିଯୋଗିତାର ଇଚ୍ଛାକୁ ଏପରି ପ୍ରସାର କରୁଛନ୍ତି ଫଳରେ ମୋଧବୀ ଯୁବକ ଯୁବତୀମାନଙ୍କର ସମସ୍ତ ସାମାଜିକ ଦାୟିତ୍ୱ ଓ ସୂକ୍ଷ୍ମ ଆବେଗ ନଷ୍ଟ ହୋଇଯାଉଛି ।

ସମାଜର ଯେଉଁମାନେ ଉଚ୍ଚଶିକ୍ଷା ସ୍ତରରେ ଆଗକୁ ଯାଇପାରୁଛନ୍ତି, ସେମାନେ ନିଜର କ୍ୟାରିୟର ଓ ରୋଜଗାର ଭିତରେ ସ୍ୱାର୍ଥକୈନ୍ଦ୍ରିକ ହୋଇଯିବା ସମାଜ ପାଇଁ ହିତକର ମନେହୁଏ ନାହିଁ । ଆମ ଚତୁଃପାର୍ଶ୍ୱରେ ଯେଉଁ ଦାରିଦ୍ର୍ୟ ଓ କ୍ଷୟଶୀଳ ପରିବେଶ ରହିଛି ସେଥିରେ ପରିବର୍ତ୍ତନ ଆଣିବାପାଇଁ ଆମର କୃତୀ ଯୁବକମାନେ ଚିନ୍ତା କରିବା ଆବଶ୍ୟକ । ଶିକ୍ଷା ସହ ସମାଜ ପାଇଁ ସମ୍ପୃକ୍ତି ଓ ଅଙ୍ଗୀକାରବଦ୍ଧତା ସଂଶ୍ଳିଷ୍ଟ ହେବା ଆବଶ୍ୟକ । ଶିକ୍ଷା ସହ ନୈତିକ ଚେତନାର ପ୍ରଶ୍ନଟି ସଂଶ୍ଳିଷ୍ଟ ହେଲେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇପାରିବ । ଏକ ଅର୍ଥପୂର୍ଣ୍ଣ ଓ ଉନ୍ନତ ଜୀବନର ମାନଦଣ୍ଡ କ'ଣ

ହୋଇପାରେ ଏହା ନେଇ ଛାତ୍ରମାନଙ୍କ ଭିତରେ ସଚେତନତା ବୃଦ୍ଧି କରିବା ଦରକାର । ଏହି ପୃଷ୍ଠଭୂମିରେ ମାନବିକତାବୋଧ ଓ ନୈତିକ ଆଚରଣକୁ କିପରି ସୁଚିନ୍ତିତ ଭାବେ ଶିକ୍ଷା ପାଠ୍ୟକ୍ରମରେ ସଂଶ୍ଲିଷ୍ଟ କରାଯିବ ତାହା ନେଇ ବିଚାରବିମର୍ଶ ଆବଶ୍ୟକ । ଏହା ସହ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବିଚାରଶୀଳତାର ପ୍ରସାରକୁ ମଧ୍ୟ ଗୁରୁତ୍ୱ ଦିଆଯିବା ଯଥାର୍ଥ ମନେହୁଏ । ଶିକ୍ଷିତ ଯୁବଗୋଷ୍ଠୀ କିପରି ଏକ ବୃହତ୍ତର ସମାଜର ହିତ ସାଧନକୁ ନିଜର ସକଳ ବୃତ୍ତିଗତ କର୍ତ୍ତବ୍ୟରେ ପ୍ରାଧାନ୍ୟ ଦେବେ ଓ ସମାଜ ପାଇଁ ନିଜର ସମ୍ପୃକ୍ତି ବ୍ୟକ୍ତ କରିବେ ତାହା ନେଇ ଶିକ୍ଷିତ ଯୁବମାନସକୁ ପ୍ରଶିକ୍ଷିତ କରିବା ଦରକାର । ଏହାହେଲେ ସାମୂହିକ ଜୀବନ ପ୍ରବାହରେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇପାରିବ । (ପ୍ରଗତିବାଦୀ ୨୫.୮.୧୦)



# ଜୀବନର ବିରୋଧାଭାସ

ମଣିଷର ସ୍ୱଭାବ ଭିତରେ ପଶୁତ୍ୱ ରହିଛି ଓ ବିଚାରଶୀଳତା ମଧ୍ୟ ରହିଛି । ମଣିଷର ବ୍ୟାଖ୍ୟା ଭିତରେ କୁହାଯାଏ ଯେ ମଣିଷ ହେଉଛି ଏକ ବିଚାରଶୀଳ ପ୍ରାଣୀ । ଆହାର, ଭୟ, ନିଦ୍ରା, ଯୌନ ଆବେଗ, ସ୍ୱାର୍ଥପରତା ବ୍ୟକ୍ତି ଚରିତ୍ରର ଅପରିହାର୍ଯ୍ୟ ଅଙ୍ଗ । ତେବେ ଏହା ସହ ମଣିଷ ଭିତରେ ଥିବା ବୁଦ୍ଧି ଓ ବିଚାରଶୀଳତା ହଜାର ହଜାର ବର୍ଷର ସାମାଜିକ ବିବର୍ତ୍ତନ ଧାରାରେ ଅଧିକରୁ ଅଧିକ ବିକଶିତ ହୋଇ ଚାଲିଛି । ବୁଦ୍ଧିର ବିକାଶ ଓ କୌତୂହଳ ପ୍ରବଣତା ଯୋଗୁ କାଳକ୍ରମେ ମଣିଷ ଭାଷାର ବ୍ୟବହାର କରିଛି । ପରିବେଶକୁ ବୁଝିବାକୁ ଆଗ୍ରହୀ ହୋଇଛି । ନାନା ସାମାଜିକ ସଂଗଠନ କରିଛି ତଥା ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାକୁ ସମର୍ଥ ହୋଇଛି । ପରିଣାମତଃ ସଭ୍ୟ ଦୃଷ୍ଟିଭଙ୍ଗୀ ଓ ସାଂସ୍କୃତିକ ଚେତନାର ମଧ୍ୟ ବିକାଶ ହୋଇଛି । ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ , ନୈତିକ-ଅନୈତିକ ପାର୍ଥକ୍ୟ ଜନିତ ବିଚାର ସମାଜରେ ସୃଷ୍ଟି ହୋଇଛି । ବ୍ୟକ୍ତିର ସାମାଜିକ ଅସ୍ତିତ୍ୱ କ୍ଷୁଦ୍ର ଗୋଷ୍ଠୀଠାରୁ ପ୍ରସାରିତ ହୋଇ ରାଷ୍ଟ୍ର ବା ଅନ୍ତରାଷ୍ଟ୍ରୀୟ ହୋଇଛି । କାଳକ୍ରମେ ସାମାଜିକ ସଂଗଠନମାନ ସୁଦୃଢ଼ ହେବା ସହ ନୈତିକ ମୂଲ୍ୟଚୟ ସାର୍ବଜନୀନ ଭାବେ ସ୍ୱୀକୃତ ହୋଇପାରିଛି । ସଭ୍ୟତାର କ୍ରମବିକାଶ ଧାରାରେ କେତେ ଉଚ୍ଚତର ମୂଲ୍ୟବୋଧ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇ ମଣିଷ ଜାତିର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ପଥ ଦେଖାଇଛି । ଏହା ସହ ଜ୍ଞାନ ବିଜ୍ଞାନର ବିକାଶ ଦ୍ୱାରା ପରିବେଶ ଉପରେ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ମଣିଷ ହାସଲ କରିପାରିଛି । ବିଡ଼ମ୍ବନାର ବିଷୟ ଏସବୁ ସହ ମଣିଷ ସମାଜରେ ବହୁ ଯୁଦ୍ଧ, ବିଭୀଷିକା ସଭ୍ୟତାର ଆରମ୍ଭ ସମୟରୁ ରହିଆସିଛି । ଗୋଷ୍ଠୀ ଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ, ସଂଘର୍ଷ ଓ ହିଂସା ବି ସୃଷ୍ଟି ହୋଇଛି । ଉଚ୍ଚନୀଚ ଭେଦଭାବ, ଅର୍ଥନୈତିକ ଶୋଷଣ, ଦୁର୍ବଳ ଜନଗୋଷ୍ଠୀ ଉପରେ ଅତ୍ୟାଚାର ବି ସମାଜରେ ନାନା ଭାବରେ ରହିଛି ଓ ଏସବୁର ବିଲୋପ ସମ୍ଭବ  ହୋଇନାହିଁ । ଗଣତାନ୍ତ୍ରିକ ଚେତନା, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ବିଶ୍ୱଦୃଷ୍ଟି ମୂଲ୍ୟବୋଧଗୁଡ଼ିକ ଯେତେ ଆନ୍ତର୍ଜାତିକ ସ୍ୱୀକୃତି ପାଇଲେ ମଧ୍ୟ ସେ ସବୁ ସମ୍ପୂର୍ଣ୍ଣ ରୂପେ ସାମାଜିକ ଜୀବନ ପ୍ରବାହରେ ପ୍ରତିଫଳିତ ହୋଇନାହିଁ । ଅପରପକ୍ଷରେ ମଣିଷକୁ ମଣିଷ ଶୋଷଣ କରୁଛି, ଅନ୍ୟର ଦୁଃଖର କାରଣ ହେଉଛି ଓ ସମାଜରେ ଥିବା ନାନା ଅନ୍ୟାୟ, ଅମାନବିକତା ଓ ଶୋଷଣ ମଣିଷ ହିଁ କରୁଛି । ଜୀବନ ପ୍ରବାହରେ ଏହି ବିରୋଧାଭାସ ସବୁ ଯୁଗରେ ରହିଛି ଓ ଏଥିରେ କେବଳ ଯାହା ପରିମାଣାତ୍ମକ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ସଭ୍ୟତା ଆଗକୁ ଯାଇଛି, ନୈତିକ

ମୂଲ୍ୟଚୟର ପ୍ରସାର ହୋଇଛି, ମାନବିକତାର କେତେ ନିର୍ଘୋଷ ବିଶ୍ୱସ୍ତରରେ ବ୍ୟକ୍ତ ହୋଇଛି, ଜ୍ଞାନ ବିଜ୍ଞାନର ବହୁ ଦିଗନ୍ତକୁ ମଣିଷ ସ୍ପର୍ଶ କରିଛି । ଏସବୁ ସତ୍ତ୍ୱେ ତଥାପି ଆମ ସଂସାରରେ ଗୋଷ୍ଠୀଗତ ବିଦ୍ୱେଷ, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଅବିଶ୍ୱାସ, ଧର୍ମ-ଧର୍ମ ମଧ୍ୟରେ ସଂଘର୍ଷ, ଅନ୍ୟାୟ ଓ ଶୋଷଣ ବଳବତ୍ତର ହୋଇରହିଛି । ଏହା ହିଁ ହେଉଛି ସଭ୍ୟତାର ପ୍ରହେଳିକା ।

ଏହି ପରିସ୍ଥିତିକୁ ବ୍ୟାଖ୍ୟା କରିବାକୁ ଯାଇ କୁହାଯାଏ ଯେ ମଣିଷର ମାନସିକ ସ୍ୱଭାବ କ୍ଷେତ୍ରରେ ବୌଦ୍ଧିକ ଓ ଆବେଗିକ ଦୁଇଟି ସ୍ତର ରହିଛି । ମଣିଷର ବୌଦ୍ଧିକ ସ୍ତରରେ ଜ୍ଞାନ, ବୁଦ୍ଧି, ବିଚାରଶୀଳତାର ଅଭିବ୍ୟକ୍ତି ହୋଇଥାଏ । ଅଥଚ ଆବେଗିକ ସ୍ତରରେ କାମନା, ବାସନା, ଅଭିଳାଷ, ଅଭାବବୋଧର ପରିପ୍ରକାଶ ହୋଇଥାଏ । ଭୌତିକ ଆବଶ୍ୟକତାଜନିତ ଅଭାବବୋଧ ବ୍ୟକ୍ତିର ସହଜାତ ପ୍ରବୃତ୍ତି । ଆମର ବଞ୍ଚି ରହିବା ପାଇଁ ଖାଦ୍ୟ ଓ ନାନା ସାଧନ ଆବଶ୍ୟକ ହୁଏ ଓ ତତ୍‌ଜନିତ ଅଭାବବୋଧ ଆମକୁ ସର୍ବଦା ଅସହ୍ୟବୋଧ ହୋଇଥାଏ । ଆମର ଅଭାବବୋଧ, ଅଭିଳାଷ, ଇଚ୍ଛାକୁ ପୂରଣ କରିବା ପାଇଁ ଆମର ବୁଦ୍ଧି ସାଧନ ଭାବେ କାର୍ଯ୍ୟ କରେ । ଏ କ୍ଷେତ୍ରରେ ବୁଦ୍ଧିକୁ ମାଧ୍ୟମ ବା ସାଧନ ଭାବେ ନେଇ ବ୍ୟକ୍ତି ତାହାର ଲକ୍ଷ୍ୟ ହାସଲ ଦିଗରେ ପ୍ରୟୋଗ କରିଥାଏ ।

ବ୍ୟକ୍ତିର ସ୍ୱଭାବ, ପ୍ରବୃତ୍ତିକୁ ଉନ୍ନତ, ରୁଚିଶୀଳ ଓ ସାମାଜିକ କରିବାକୁ ସମାଜରେ କେତେକେତେ ବ୍ୟବସ୍ଥା ସୃଷ୍ଟି ହୋଇଛି । ମଣିଷ ଯେହେତୁ ଏକ ପ୍ରାଣୀ ଓ ତାହାର ଯାନ୍ତବ ପ୍ରବୃତ୍ତି ରହିଛି ତାହାକୁ ଏକ ଶୃଙ୍ଖଳିତ ଧାରାରେ ପରିଚାଳିତ କରିବାକୁ ସମାଜରେ ପ୍ରୟାସ ହୋଇଛି । ସେହି ପ୍ରୟାସ ଭିତରେ କେତେ ନୀତି, ରାଜନୈତିକ ବ୍ୟବସ୍ଥା, ବିଧାନ, ଦଣ୍ଡସଂହିତା, ଧାର୍ମିକ ସଂଗଠନ ସୃଷ୍ଟି ହୋଇଛି । ମଣିଷ ସ୍ୱଭାବ ବିଶ୍ଳେଷଣ ପୃଷ୍ଠଭୂମିରେ କୁହାଯାଏ ଯେ, ବ୍ୟକ୍ତିର ପ୍ରବୃତ୍ତି ଅଧିକାରାତ୍ମକ ବା ପଜେସିଭ ହୋଇପାରେ ଓ ସୃଜନାତ୍ମକ ବା କ୍ରିଏଟିଭ ହୋଇପାରେ । ନିଜର ସ୍ୱାର୍ଥ ସାଧନ କରିବା, ନିଜର ଲକ୍ଷ୍ୟ ପୂରଣ ପାଇଁ ଯେକୌଣସି ପନ୍ଥା ଅବଲମ୍ବନ କରିବା, ସୁଖ ସମ୍ଭୋଗ ପାଇଁ ପ୍ରୟାସୀ ହେବା ବ୍ୟକ୍ତିର ସହଜାତ । ଏହାକୁ ଅଧିକାରାତ୍ମକ ପ୍ରବୃତ୍ତି କୁହାଯାଏ । ସମାଜରେ ସେଥିପାଇଁ ସବୁ ସମୟରେ ପ୍ରତିଯୋଗିତା ଲାଗି ରହିଥାଏ । ଆମ ସଂସାରରେ ବସ୍ତୁଗତ ସମ୍ବଳ ସୀମିତ ରହିଥିବାରୁ ଓ ମଣିଷର ଆବଶ୍ୟକତା ସୀମାହୀନ ଥିବାରୁ ବ୍ୟକ୍ତି-ବ୍ୟକ୍ତି, ଗୋଷ୍ଠୀ-ଗୋଷ୍ଠୀ ଓ ଏପରିକି ରାଷ୍ଟ୍ର ରାଷ୍ଟ୍ର ଭିତରେ ପ୍ରତିଯୋଗିତା, ଦ୍ୱନ୍ଦ୍ୱ ସୃଷ୍ଟି ହେଉଥାଏ । ପରିଣାମତଃ କେତେକ ନିଜର ଆବଶ୍ୟକତା ଓ ଅଭିଳାଷ ପୂରଣ କରିବାରେ ସମର୍ଥ ହେବାବେଳେ ଅନ୍ୟମାନେ ଏହି ଅଧିକାରରୁ ବା ସୁଯୋଗରୁ ବଞ୍ଚିତ ହୋଇଥାନ୍ତି । ଫଳତଃ ସମାଜରେ ଦ୍ୱନ୍ଦ୍ୱ, ସଂଘର୍ଷ ଓ ହିଂସାର ପରିବେଶ ଆସିଥାଏ । ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା, ପ୍ରତ୍ୟେକ ବ୍ୟକ୍ତିକୁ ଶିକ୍ଷା, ସ୍ୱାସ୍ଥ୍ୟସେବା, କର୍ମସଂସ୍ଥାନ, ସାମାଜିକ ନିରାପତ୍ତା ପ୍ରଦାନ କରିବା ସମାଜର ବା ରାଷ୍ଟ୍ରର ଦାୟିତ୍ୱ । ରାଷ୍ଟ୍ରୀୟ ବ୍ୟବସ୍ଥା ଏଥିପାଇଁ ଯେତେ ଉତ୍ତରଦାୟୀ ଓ ପ୍ରଗତିଶୀଳ ହୁଏ

ତାହା ସମାଜର ଜନଗଣଙ୍କ ଭିତରେ ଉତ୍ତମ ପରିବେଶ ସୃଷ୍ଟି କରିଥାଏ । ଅପରପକ୍ଷରେ ସାମାଜିକ ବ୍ୟବସ୍ଥା ଯଦି ଉନ୍ନତ ହେବା ପରିବର୍ତ୍ତେ ଭେଦଭାବ ମୂଳକ ଓ ବୈଷମ୍ୟପୂର୍ଣ୍ଣ ହୋଇଥାଏ ସେହି ପରିବେଶରେ ସାମାଜିକ ଅସ୍ଥିରତା, ବିଶୃଙ୍ଖଳା ଦେଖାଦେବା ସ୍ୱାଭାବିକ ହୋଇପଡ଼େ ।

ତେବେ ବ୍ୟକ୍ତି ପାଖରେ କେତେକ ସୃଜନାତ୍ମକ ପ୍ରବୃତ୍ତି ରହିଥାଏ ଓ ତାହାର ଅଭିବ୍ୟକ୍ତି ସମାଜରେ ପ୍ରତିଯୋଗିତା ବା ଦ୍ୱନ୍ଦ୍ୱ ସୃଷ୍ଟି କରେନାହିଁ । ଉତ୍ତମ ସ୍ୱାସ୍ଥ୍ୟ, କଳାତ୍ମକ ଦୃଷ୍ଟି, ମାନବିକ ଦରଦ, ବୈଜ୍ଞାନିକ ମନୋଭାବ, ସଭ୍ୟ ଆଚରଣ ଇତ୍ୟାଦି ବ୍ୟକ୍ତିଙ୍କ ପାଖରେ ସମ୍ଭବ ହୋଇପାରେ । ଏଥିପାଇଁ ସମାଜରେ କୌଣସି ପ୍ରତିଯୋଗିତାର ଆବଶ୍ୟକତା ପଡ଼େନାହିଁ କିମ୍ବା କେହି ଏହାର ଅଧିକାରୀ ହେଲେ ଅନ୍ୟ କେହି ଏଥିରୁ ବଞ୍ଚିତ ହୁଏ ନାହିଁ । ତେବେ ସମାଜରେ ସୃଜନାତ୍ମକ ପ୍ରବୃତ୍ତି ଅଧିକରୁ ଅଧିକ ବିକଶିତ ହେବା ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତୀକ ମନେହୁଏ । ନାଗରିକ ଶୃଙ୍ଖଳାବୋଧ, ନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ପ୍ରତି ଆନ୍ତରିକତା, ସମ୍ବେଦନଶୀଳ ମନୋଭାବ, ମାର୍ଜିତ ରୁଚି ଇତ୍ୟାଦି ପ୍ରବୃତ୍ତିଗୁଡ଼ିକର ପ୍ରସାର ପାଇଁ ସାମାଜିକ ବ୍ୟବସ୍ଥା ଯେତେ ଉନ୍ନତ ଓ ଅନୁକୂଳ ହୁଏ ତାହା ବ୍ୟକ୍ତି ଓ ସାମୂହିକ ଜୀବନର ଗୁଣାତ୍ମକ ମୂଲ୍ୟର ମାନବୃଦ୍ଧିରେ ସହାୟକ ହୋଇଥାଏ ।

ଏକଥା ସତ୍ୟ ଯେ ସମ୍ପ୍ରତି ଜ୍ଞାନ ବିଜ୍ଞାନର ବହୁ ବିକାଶ ହୋଇଛି, ଆଧୁନିକ ପ୍ରଯୁକ୍ତି ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ନାନା ସାଧନ ସୃଷ୍ଟି କରିପାରିଛି, ମଣିଷର ସାମାଜିକ ନିରାପତ୍ତା ସୁଦୃଢ଼ ହେବାରେ ଲାଗିଛି, ଆଧୁନିକ ଚିକିତ୍ସା ଉପଲବ୍ଧ ହୋଇପାରୁଛି ଓ ମନୋରଞ୍ଜନ ପାଇଁ ପରିବେଶ ଘର ଭିତରେ ମିଳିପାରୁଛି । ଏସବୁ ନିଶ୍ଚୟ ସଭ୍ୟତାର ଅବଦାନ ଯାହା ଗୋଟିଏ ଦୁଇଟି ଶତାବ୍ଦୀ ତଳେ ସମ୍ଭବ ନଥିଲା । ତେବେ ବ୍ୟକ୍ତିର ସୃଜନାତ୍ମକ ପ୍ରବୃତ୍ତିକୁ ଉନ୍ନତ କରିବାକୁ ପ୍ରୟାସର ଅଭାବ ରହିଛି । ମାନବିକ ପ୍ରବୃତ୍ତି ତ ପରିବର୍ତ୍ତନ ହୋଇଯିବ ନାହିଁ । ମଣିଷ ଭିତରେ ସ୍ୱାର୍ଥପରତା, ଆତ୍ମକୈନ୍ଦ୍ରିକ ଭାବନା, ଭୌତିକ କାମନା ବାସନା ରହିବ ହିଁ ରହିବ । ତେବେ ଏହାକୁ ଶୃଙ୍ଖଳିତ କରି ବ୍ୟକ୍ତି ସ୍ୱଭାବରେ ସୃଜନଶୀଳ ପ୍ରବୃତ୍ତି, ସକାରାତ୍ମକ ଜୀବନ ଦୃଷ୍ଟି, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଓ ଉନ୍ନତ ରୁଚି ସୃଷ୍ଟି କରାଯାଇପାରିଲେ ଜୀବନର ଗୁଣାତ୍ମକ ମାନରେ ଯଥେଷ୍ଟ ଉନ୍ନତି ଆସିପାରିବ । ଯେଉଁ ମହତ୍ତର ମୂଲ୍ୟବୋଧଗୁଡ଼ିକ ସଭ୍ୟତାରେ ବିଭିନ୍ନ ଦାର୍ଶନିକ ଚିନ୍ତନ ଦେଇ ବିକଶିତ ହୋଇଛି ସେସବୁକୁ କିପରି ଜୀବନଧାରାର ଅଙ୍ଗ କରାଯାଇପାରିବ ଓ ପ୍ରତ୍ୟେକ ବିଦ୍ୟାର୍ଥୀକୁ ମାନବିକ ସଂପ୍ରୀତି, ନୈତିକ ଜୀବନାଦର୍ଶ ପ୍ରାଥମିକ ସ୍ତରରୁ ଶିକ୍ଷା ଦିଆଯିବ ତାହା ନେଇ ଗମ୍ଭୀର ଭାବେ ଚିନ୍ତା କରିବାର ରହିଛି । ଏତଦ୍‌ବ୍ୟତୀତ ଯେଉଁ ଭାବନା, ବିଚାର ବ୍ୟକ୍ତିକୁ ସଂକୀର୍ଣ୍ଣ କରାଏ ଓ ହିଂସା ପାଇଁ ପ୍ରରୋଚନା ଦିଏ ତାହାକୁ ମଧ୍ୟ ପ୍ରତିହତ କରିବା ପାଇଁ ପ୍ରୟାସର ଆବଶ୍ୟକତା ରହିଛି । ସମାଜରେ ଯାହା କିଛି ବୈଷମ୍ୟ ରହିଛି ଓ ଯେଉଁ ସବୁ ପରିବେଶ

ବ୍ୟକ୍ତି ମାନସରେ ସମାଜ ପ୍ରତି ହିଂସା ଓ ଅବିଶ୍ୱାସର ମନୋଭାବ ସୃଷ୍ଟି କରୁଛି ତାହାକୁ ପରିବର୍ତ୍ତନ କରିବା ଏକ ବଡ଼ ଆହ୍ୱାନ ।

ଏହି ପୃଷ୍ଠଭୂମିରେ ବିଚାରଶୀଳତା ଓ ମାନବିକ ମୂଲ୍ୟବୋଧ ପ୍ରତି ପ୍ରତିବଦ୍ଧତା ଦୁଇଟି ମହତ୍ତର ଆଦର୍ଶ କହିଲେ ଅତ୍ୟୁକ୍ତି ହେବନାହିଁ । ମଣିଷ ଯେତେ ବିଚାରଶୀଳ ହେବ ସେ ଜୀବନର ଗୁଣାତ୍ମକମାନର ବୃଦ୍ଧି ପାଇଁ ସେତିକି ସ୍ୱଚ୍ଛତା ରଖିପାରିବ । କେଉଁ ପରିବେଶ ଓ ବ୍ୟବସ୍ଥା ସମାଜରେ ଶାନ୍ତି, ସ୍ଥିରତା ସୃଷ୍ଟି କରିପାରିବ ତାହାନେଇ ମଣିଷର ଗଭୀର ଅନୁଶୀଳନ ଆବଶ୍ୟକ । ତାହାଦ୍ୱାରା ଲୋକ ଚରିତ୍ର ଉନ୍ନତ ହେବା ସହ ସମାଜ ଆଗକୁ ଯିବ । କେଉଁ କଳ୍ପିତ ଦିଅଁ ଦେବତା ସମାଜକୁ ଆଗକୁ ନେବେନାହିଁ । ବରଂ ସବୁ କ୍ଷେତ୍ରରେ ମଣିଷର ପ୍ରୟାସ ହିଁ ନିର୍ଣ୍ଣାୟକ । ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ଶହ ଶହ ବର୍ଷର ପ୍ରୟାସ ରହିଛି । ସେହିପରି ସାମାଜିକ ବ୍ୟବସ୍ଥାକୁ ଉନ୍ନତ ଓ ଶୃଙ୍ଖଳିତ କରିବାକୁ ମଧ୍ୟ ନିଷ୍ଠାପର ପ୍ରୟାସର ଆବଶ୍ୟକତା ରହିଛି । ଯେଉଁଠି ଏଥିପାଇଁ ଯଥେଷ୍ଟ ସଚେତନତା ରହିଛି ସେହି ସାମାଜିକ ପରିବେଶ ଉନ୍ନତ ହୋଇଛି । ଅପରପକ୍ଷରେ ଯେଉଁଠି ଏଥିପାଇଁ ପ୍ରୟାସର ଅଭାବ ରହିଛି ସେଠି ମଣିଷ ଭାଗ୍ୟ, ଦିଅଁ ଦେବତା, ଚମତ୍କାରିତାରେ ଆସ୍ଥାବାନ ହୋଇ ପଛରେ ପଡ଼ି ରହିଛି । ସେଠିକାର ଜୀବନରେ ନାନା ବିରୋଧାଭାସ ଦୃଷ୍ଟିଗୋଚର ହୋଇଥାଏ ।

ଉପସଂହାରରେ, ଜ୍ଞାନ ବିଜ୍ଞାନର ବିକାଶ ସହ ତାହାର ଏକ ମାନବିକ ପ୍ରୟୋଗ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ସେହିପରି ଏକ ନ୍ୟାୟମୂଳକ ଓ ସମତା ଭିତ୍ତିକ ସମାଜ ବାସ୍ତବ ପକ୍ଷେ ସାମାଜିକ ଜୀବନ ପ୍ରବାହର ଆଦର୍ଶ ହେବା ଆବଶ୍ୟକ । ତାହା ସହିତ ସବୁରି କ୍ଷେତ୍ରରେ ମାନବିକ ଆବେଦନ ଓ ବିଚାରଶୀଳତା ପ୍ରାଧାନ୍ୟ ନେଇପାରିଲେ ସମାଜର ନ୍ୟାୟପୂର୍ଣ୍ଣ ବିକାଶ ସମ୍ଭବ । ତାହା ହେଲେ ସାମାଜିକ ପରିବେଶ ଉନ୍ନତ ହୋଇପାରିବ । ଏକ ଉନ୍ନତ ସାମାଜିକ ପରିବେଶ ବ୍ୟକ୍ତି ଭିତରେ ଉଚ୍ଚ ନାଗରିକ ଶୃଙ୍ଖଳାବୋଧ ଓ ଉତ୍ତରଦାୟୀ ଦୃଷ୍ଟିଭଙ୍ଗୀ ଆଣିପାରିବ । ପରିଣାମତଃ ସମାଜରୁ ଭେଦଭାବ, ହିଂସା, ଅମାନବିକତାର ହ୍ରାସ ହେବ । ବ୍ୟକ୍ତିର ଆବେଗିକ ସ୍ତରକୁ ଉନ୍ନତ କରିବାରେ ଶିକ୍ଷା, ଗଣମାଧ୍ୟମ, ସାମାଜିକ ପରିବେଶର ମୁଖ୍ୟ ଭୂମିକା ରହିଛି । ମାନବିକ ଦୃଷ୍ଟି ଓ ସାମାଜିକ ପରିବେଶର ଉନ୍ନତି ସାଧନ ଜୀବନର ବିରୋଧାଭାସକୁ ଦୂର କରିବାରେ ସହାୟକ ହେବ । (୮.୯.୧୦)



# ସାମାଜିକ ଚେତନା ଓ ଶିକ୍ଷା

କେଉଁଠି ଅଛି ଆମ ସାମାଜିକ ଚେତନାର ସ୍ତର ? ଆମେ କେତେଦୂର ସଭ୍ୟ, ସଂସ୍କୃତ ? ଆମର ସାମାଜିକ ଦୃଶ୍ୟପଟରେ ଆମ ନାଗରିକ ସମାଜ ବା ସିଭିଲ ସୋସାଇଟିର ସଚେତନତା କେତେ ? ଏହି ପୃଷ୍ଠଭୂମିରେ ଆମ ସାମାଜିକ ଜୀବନ ପ୍ରବାହରୁ କେତୋଟି ଘଟଣାକୁ ଉଲ୍ଲେଖ କରି ସେସବୁ କିପରି ସଭ୍ୟ ଜୀବନର ପରିପନ୍ଥୀ ତାହା ଦର୍ଶାଇବା ଏହି ଲେଖାଟିର ଉଦ୍ଦେଶ୍ୟ ।

ଆମ ଦେଶର କେତେକ ବୈଷୟିକ ଶିକ୍ଷାନୁଷ୍ଠାନରେ ର୍‍ୟାଗିଂ ପରି ଏକ ଅଶୋଭନୀୟ ପ୍ରଥା ରହିଥିବାର ଖବର ପ୍ରକାଶ ପାଉଛି । ତେବେ ଏକଦା ଯାହା ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ସୀମିତ ହୋଇ ରହିଥିଲା ତାହା ପରେ ସାଧାରଣ ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କ ଭିତରେ ମଧ୍ୟ ପ୍ରବେଶ କରିବାରେ ଲାଗିଛି । ପ୍ରଥମକରି ଶିକ୍ଷାନୁଷ୍ଠାନରେ ଆସି ନାମ ଲେଖାଇଥିବା ପିଲାମାନଙ୍କୁ ତାଙ୍କର ସିନିୟରମାନେ ର୍‍ୟାଗିଂ କରିବାର ଦେଖାଯାଏ । ଗୋଟିଏ ସ୍ତରରେ ଏହାର ଉଦ୍ଦେଶ୍ୟ ଥିଲା ନବାଗତ ବିଦ୍ୟାର୍ଥୀମାନଙ୍କ ସହିତ ପରିଚିତ ହେବା, ସେମାନଙ୍କ ସହିତ ଆତ୍ମୀୟତା ସୃଷ୍ଟି କରିବା ଓ ସାମାନ୍ୟ ହସ କୌତୁକ ଭିତରେ ପରସ୍ପରର ନିକଟତର ହେବା । କିନ୍ତୁ କାଳକ୍ରମେ ଏହା ଅତ୍ୟନ୍ତ ଅଶୋଭନୀୟତାରେ ପରିଣତ ହେଲା ଓ ଆତ୍ମୀୟତା ପରିବର୍ତ୍ତେ ଏହା ଅତ୍ୟାଚାରର ରୂପ ନେଲା । ନବାଗତ ପିଲାମାନଙ୍କୁ ନାନା ଶାରୀରିକ ଓ ମାନସିକ ସ୍ତରରେ ଯନ୍ତ୍ରଣା ଦେବା, ଅଶୋଭନୀୟ ବ୍ୟବହାର ଦେଖାଇବା ଓ ସେମାନଙ୍କୁ ମଧ୍ୟ ବାଧ୍ୟବାଧକତାରେ ଅଶୋଭନୀୟ କାର୍ଯ୍ୟ କରିବାକୁ ଉପର ଶ୍ରେଣୀର ପିଲାମାନେ ବାଧ୍ୟ କରିବାର ଶୁଣାଯାଏ । ଏପରି ମଧ୍ୟ କେହି କେହି ଛାତ୍ର ଏଥିରେ ଯନ୍ତ୍ରଣା ଜର୍ଜରିତ ହୋଇ ଆତ୍ମହତ୍ୟା କରିବାର ଖବର ପ୍ରକାଶ ପାଏ । ବେଳେବେଳେ ପିଲାମାନଙ୍କୁ ନିର୍ଯାତନା ଦ୍ୱାରା ସେମାନେ ମୃତ୍ୟୁବରଣ କରିବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ଏହାକୁ ପ୍ରତିହତ କରିବାପାଇଁ ବହୁ କଡ଼ା ନିୟମ ସରକାର କରିଛନ୍ତି ଓ ଶିକ୍ଷାନୁଷ୍ଠାନମାନଙ୍କରେ ପିଲାମାନେ ମଧ୍ୟ ର୍‍ୟାଗିଂ ନ କରିବାପାଇଁ ଶିକ୍ଷାନୁଷ୍ଠାନର କର୍ତ୍ତୃପକ୍ଷଙ୍କୁ ଲିଖିତ ଘୋଷଣାନାମା ଦେଇଥାନ୍ତି । କର୍ତ୍ତୃପକ୍ଷ ର୍‍ୟାଗିଂ ବିରୋଧି ସ୍କ୍ୱାର୍ଡ଼ ଗଠନ କରି ଏହାକୁ ପ୍ରତିହତ କରିବାକୁ ପ୍ରୟାସ କରିଥାନ୍ତି । ଏସବୁ ସତ୍ତ୍ୱେ ର୍‍ୟାଗିଂ ଶିକ୍ଷାନୁଷ୍ଠାନମାନଙ୍କରେ ହେଉଛି । କିନ୍ତୁ ସେସବୁ ଘଟଣା ପ୍ରାୟତଃ ପ୍ରକାଶ ପାଏ ନାହିଁ । ଯେଉଁ ଛାତ୍ରମାନେ ର୍‍ୟାଗିଂର ଶିକାର ହୁଅନ୍ତି, ସେମାନେ

ନାନା ଭୟର ପରିବେଶ ଭିତରେ ଏହା ପ୍ରକାଶ କରନ୍ତିନାହିଁ । ପ୍ରକାଶ କଲେ ବା କାହା ନାମରେ ଅଭିଯୋଗ କଲେ ସେମାନଙ୍କ ପ୍ରତି ଆକ୍ରୋଶମୂଳକ ଭାବେ ଅଧିକ ହିଂସା ପ୍ରକାଶ ପାଇବାର ସମ୍ଭାବନା ଥିବାରୁ ପିଲାମାନେ ଏହା କରିବାକୁ ସାହସ କରନ୍ତି ନାହିଁ । ତେବେ ବେଳେବେଳେ ଶାରୀରିକ ଯନ୍ତ୍ରଣା ଯୋଗୁ ଏହା ବାହାରକୁ ଆସେ ।

ମାନବିକ ଅଧିକାରର ଯେତେ ଉଲଂଘନ ରହିଛି, ତାହା ଭିତରେ ର୍‍ୟାଗିଂ ଏକ କୁତ୍ସିତ ଉଲଂଘନ କହିଲେ ଅତ୍ୟୁକ୍ତି ହେବନାହିଁ । ମାନବିକ ଅଧିକାରର ମୂଳତତ୍ତ୍ୱ ହେଉଛି ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାକୁ ସ୍ୱୀକାର କରିବା । ମୋ ପ୍ରତି ଯେଉଁ ଆଚରଣ ମୋତେ ପ୍ରୀତିପଦ ଲାଗିବ ନାହିଁ, ସେହି ପ୍ରକାରର ଆଚରଣ ମୁ ଅନ୍ୟ ପ୍ରତି ପ୍ରଦର୍ଶନ କରିବି ନାହିଁ ଏହା ହେଉଛି ନୈତିକ ଜୀବନ ଦୃଷ୍ଟିର ମୂଳ ଲକ୍ଷ୍ୟ । ଏହା ମଧ ମାନବିକ ଅଧିକାରରେ ସନ୍ଦେଶ । ମୋର ଅଧିକାର, ମର୍ଯ୍ୟାଦା, ସ୍ୱାଭିମାନ କେହି ଉଲଂଘନ କଲେ ମୋର ଯଦି ପ୍ରତିକ୍ରିୟା ହେଉଛି ମୁଁ କେଉଁ ଯୁକ୍ତି ବା ଆଦର୍ଶରେ ଅନ୍ୟର ଅଧିକାର, ମର୍ଯ୍ୟାଦା ଓ ସ୍ୱାଭିମାନକୁ ଲଂଘନ କରିବି ? ଏହି ଚେତନା ଆମ ସାମାଜିକ ଜୀବନ ପ୍ରବାହରେ ସୁଦୃଢ଼ ଭିତ୍ତି ନେଇନାହିଁ । ବରଂ ଅନ୍ୟକୁ ଅସମ୍ମାନିତ କରିବା ଓ ଅନ୍ୟର ସ୍ୱାଭିମାନକୁ ନଷ୍ଟ କରିବା ସେମାନଙ୍କର ଅଧିକାର ବୋଲି କେତେକ ମନେକରନ୍ତି । ଯଦି କୌଣସି ଭୟ ବା ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନର ଆଶଙ୍କା ନଥାଏ, ତେବେ ସେମାନେ ଏହା କରିବାରୁ ନିବୃତ୍ତ ହୁଅନ୍ତି ନାହିଁ । ଅବଶ୍ୟ ସବୁ ଛାତ୍ର ଏଥିରେ ସମ୍ପୃକ୍ତ ହୁଅନ୍ତି ନାହିଁ । ତେବେ ଯେଉଁ ମୁଷ୍ଟିମେୟ ଛାତ୍ର ଏହା କରନ୍ତି, ସେମାନଙ୍କୁ ଅନ୍ୟମାନେ ବିରୋଧ କରିପାରନ୍ତି ନାହିଁ ।

ମାନବିକ ଅଧିକାରର ଉଲଂଘନ ପୃଷ୍ଠଭୂମିରେ ଗଣତାନ୍ତ୍ରିକ ଚେତନାର ବିକାଶ ସହିତ ଆନ୍ତର୍ଜାତିକ ସ୍ତରରେ ବିଂଶ ଶତାବ୍ଦୀ ମଧଭାଗରୁ ମାନବିକ ଅଧିକାରର ସୁରକ୍ଷା ନେଇ ନାନା ଚିନ୍ତା ଚେତନା ପ୍ରକାଶ ପାଇଆସିଛି । ସଭ୍ୟତାର ବିକାଶ ସହ ମାନବବାଦୀ ବିଚାର ଓ ଜୀବନ ଦର୍ଶନର ଯେଉଁ ବିକାଶ ହୋଇଛି, ସେ ଭିତରେ ମଣିଷ-ମଣିଷ ଭିତରେ ଯେକୌଣସି ପ୍ରକାରର ବିଭେଦ, ବୈଷମ୍ୟକୁ ନିନ୍ଦନୀୟ କରାଯାଇଛି । ମୋର ସ୍ୱାଭିମାନ ମୋ ପାଇଁ ଯେପରି ମହତ୍ତ୍ୱପୂର୍ଣ୍ଣ, ପ୍ରତ୍ୟେକ ବ୍ୟକ୍ତିର ସ୍ୱାଭିମାନ ମଧ ତା’ ପାଇଁ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ପରିତାପର ବିଷୟ ଯେ, ନାନା ଆଳରେ ମଣିଷ ଉପରେ ମଣିଷର ଅତ୍ୟାଚାର ଚାଲୁ ରହିଛି । ମଣିଷକୁ ମଣିଷ ଶୋଷଣ କରୁଛି ଓ ଅନ୍ୟକୁ ନ୍ୟୂନ କରିଆସିଛି । ତେବେ ର୍‍ୟାଗିଂ ପୃଷ୍ଠଭୂମିରେ ଶିକ୍ଷାନୁଷ୍ଠାନମାନଙ୍କରେ ଯାହାସବୁ ଅଶୋଭନୀୟତା ପ୍ରକାଶ ପାଉଛି ତାହା କେତେଦୂର ଆମ ସାମାଜିକ ଚରିତ୍ରର ପ୍ରତିଫଳନ ? ଆମ ସମାଜରେ ଆମେ ନାନା ଅଶୋଭନୀୟ ପରିବେଶର ସମ୍ମୁଖୀନ ହେବା ଏକ ସାଧାରଣ ଘଟଣା । କୌଣସି କିଛି ଘଟଣାକୁ ଆଧାର କରି ରାସ୍ତା ବନ୍ଦ କରିବା, ଟାୟାର ଜାଳିବା, ଗାଡ଼ି ମୋଟର ଯାତାୟତକୁ ବନ୍ଦ କରିଦେବା ଆମ ସାମାଜିକ

ଜୀବନର ନିତିଦିନିଆ ଘଟଣା । ଆଇନକୁ ହାତକୁ ନେବା, ସର୍ବସାଧାରଣ ସମ୍ପତ୍ତିକୁ ନଷ୍ଟ କରିବା ଓ ସାଧାରଣ ଜନଜୀବନକୁ ଅସ୍ତବ୍ୟସ୍ତ କରିଦେବା ହେଉଛି ଆମର ମାନସିକତା । ଆମର ପରୀକ୍ଷା ଆମେ ଚାହିଁବା ମୁତାବକ ଯଦି କର୍ତ୍ତୃପକ୍ଷ ଘୁଞ୍ଚାଇଲେ ନାହିଁ ତେବେ ଆମେ ଆସି ରାସ୍ତାରେ ଜନସାଧାରଣଙ୍କୁ ଛାଡ଼ିବୁ ନାହିଁ । ଯଦି ଆମ ଅନୁଷ୍ଠାନର କୌଣସି ବ୍ୟକ୍ତିକୁ କେହି ସାମାନ୍ୟ ଅଶାଳୀନ ବ୍ୟବହାର ଦେଖାଇଲା ତେବେ ଆମେ ଆସି ସର୍ବସାଧାରଣ ସ୍ଥାନରେ ହମଲା କରିବୁ, ସରକାରୀ ଅଫିସର କାଚ, ଝରକା, କବାଟ ଭାଙ୍ଗିବୁ ଇତ୍ୟାଦି ନାନା ଘଟଣା ଆମେ ବହୁ ସମୟରେ ସାମ୍ନା କରିଥାଉ । ସେହିପରି ବିଭିନ୍ନ ସ୍ଥାନମାନଙ୍କରେ ରାସ୍ତା ଅବରୋଧ କରି ଅମୁକ ପୂଜା, ଯଜ୍ଞ ବା କୌଣସି ପୂଜାପୀଠ ନିର୍ମାଣ ପାଇଁ ସେହି ରାସ୍ତାରେ ଯାଉଥିବା ଗାଡ଼ି, ମଟରଠାରୁ ଚାନ୍ଦା ସଂଗ୍ରହ କରିବା, ଯଦି କେହି ନଦେଲା ତେବେ ତାକୁ ଗାଳିଗୁଲଜ ଓ ଏପରିକି ଆକ୍ରମଣ କରିବା ଘଟଣାମାନ ଆମ ସାମାଜିକ ଜୀବନ ପ୍ରବାହରେ ଦେହସୁହା କଥା । ଆମର ଧାର୍ମିକ ବିଶ୍ୱାସ ପାଇଁ ଆମେ ରାସ୍ତାରେ ଦଳ ଦଳ ହୋଇ ଚାଲାବେଳେ ଟ୍ରାଫିକ ନିୟମ ମାନିବୁ ନାହିଁ, ଅନ୍ୟକୁ ରାସ୍ତା ଦେବୁନାହିଁ କିମ୍ବା ଟ୍ରେନରେ ବିନା ଟିକେଟରେ ଯାତ୍ରା କରିବୁ ବୋଲି ଆମ ଚତୁଃପାର୍ଶ୍ୱରେ ଆମେ ବହୁ ସମୟରେ ଦେଖିବାକୁ ପାଏ । ସେହିପରି କେଉଁ ପୂଜାପାର୍ବଣ ବା ଧର୍ମାନୁଷ୍ଠାନ ଚାଲାବେଳେ ଆମେ ଜୋରରେ ମାଇକରେ ଗୀତ ବଜାଇବୁ ଓ ଏହାଦ୍ୱାରା ଶବ୍ଦ ପ୍ରଦୂଷଣ ନେଇ ବା ଅନ୍ୟର ଅସୁବିଧା ନେଇ କୌଣସି ସମ୍ପୃକ୍ତି ପ୍ରକାଶ କରିବୁ ନାହିଁ । ବର୍ଷସାରା ଆମର ନାନା ପୂଜା, ପାର୍ବଣ ଚାଲିଥାଏ । ବିଭିନ୍ନ ଚିତ୍ରିତ ମୂର୍ତ୍ତିମାନଙ୍କୁ ନେଇ ସର୍ବସାଧାରଣଙ୍କ ଜଳାଶୟରେ ଆମେ ବିସର୍ଜନ କରିବୁ । ମୂର୍ତ୍ତିମାନଙ୍କ ବିଷାକ୍ତ ରାସାୟନିକ ରଙ୍ଗ ଜଳରେ ମିଶି ଜଳକୁ କେତେ ପ୍ରଦୂଷିତ କରେ ସେ ବିଷୟ ପ୍ରତି ଆମେ ଆଦୌ ଧ୍ୟାନ ଦେବୁନାହିଁ । ଏହିସବୁ ଘଟଣା ଆମ ସାମାଜିକ ଜୀବନର ସାଧାରଣ ଘଟଣା ଯାହାନେଇ ଆମର ସଚେତନତାର ସ୍ତର ଉନ୍ନତ ହୋଇ ନାହିଁ ।

ଉଚ୍ଚଶିକ୍ଷା ପ୍ରତିଷ୍ଠାନ, କଲେଜ ଇତ୍ୟାଦି ଶିକ୍ଷାନୁଷ୍ଠାନ ଜରିଆରେ ସାମାଜିକ ପରିବର୍ତ୍ତନର ସୂତ୍ରଟି ଆରମ୍ଭ ହେବା ସାଧାରଣତଃ ସଭ୍ୟ ଦେଶମାନଙ୍କରେ ଦେଖାଯାଏ । ଛାତ୍ରମାନଙ୍କ ଭିତରେ ନାଗରିକ ଶୃଙ୍ଖଳାବୋଧ ଶିକ୍ଷାୟତନରୁ ହିଁ ଆରମ୍ଭ ହୁଏ । ଆଜିର ବିଦ୍ୟାର୍ଥୀମାନେ ଆସନ୍ତାକାଲିର ସଚେତନ ନାଗରିକ । ତେଣୁ ଶିକ୍ଷାୟତନର ବିଦ୍ୟାର୍ଥୀମାନେ ଯେପରି ସୁସ୍ଥ ନାଗରିକ ହୋଇ ଆତ୍ମମର୍ଯ୍ୟାଦାର ସହ ଜୀବନ ନିର୍ବାହ କରିବେ, ତାହା ତାଙ୍କୁ ଶିକ୍ଷା ଦେବା ଶିକ୍ଷାନୁଷ୍ଠାନର କର୍ତ୍ତବ୍ୟ । ଶିକ୍ଷା ତ କେବଳ ସାକ୍ଷରତା ବା ଡିଗ୍ରୀରେ ସୀମିତ ନୁହେଁ । ଶିକ୍ଷାର ଏକ ମୌଳିକ ଲକ୍ଷ୍ୟ ହେଉଛି ସାମାଜିକ ଚେତନାର ବିକାଶ । ବିଶେଷକରି ଏ ଯୁଗର ଯେଉଁ ସାର୍ବଜନୀନ ମୂଲ୍ୟବୋଧଗୁଡ଼ିକ ସାମାଜିକ ବିକାଶ ପ୍ରକ୍ରିୟାରେ ଅଭ୍ୟୁଦୟ ହୋଇଛି, ସେ ବିଷୟରେ ଆମର ଉଦୀୟମାନ ଶିକ୍ଷାର୍ଥୀମାନଙ୍କୁ ଶିକ୍ଷାଦେବା । ଅଧିକନ୍ତୁ

ମାନବିକ ଅଧିକାରର ସୁରକ୍ଷା, ବ୍ୟକ୍ତି ମର୍ଯ୍ୟାଦାବୋଧ, ଗଣତାନ୍ତିକ ମୂଲ୍ୟବୋଧ, ନାଗରିକ ଶୃଙ୍ଖଳାବୋଧ, ସାଧୁତା, କର୍ମସଂସ୍କୃତି ଇତ୍ୟାଦି ଆଦର୍ଶଗୁଡ଼ିକ ଶିକ୍ଷା ପାଠ୍ୟକ୍ରମର ଅଙ୍ଗ କରିବାକୁ ହେବ । ଏତଦ୍‌ବ୍ୟତୀତ ଆମ ସମ୍ବିଧାନରେ ବ୍ୟକ୍ତିର କର୍ତ୍ତବ୍ୟ ନେଇ ଯେଉଁ ମହତ୍ତର ଭାବନାଗୁଡ଼ିକ ବ୍ୟକ୍ତ ହୋଇଛି ସେ ବିଷୟରେ ମଧ୍ୟ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦେବା ଆବଶ୍ୟକ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଧର୍ମନିରପେକ୍ଷ ମାନବତାବୋଧ ଓ ସମତାଭିତ୍ତିକ ଜୀବନଦୃଷ୍ଟି ଆମ ରାଷ୍ଟ୍ରର ଆଦର୍ଶ । ସେହି ଆଦର୍ଶ ସକଳ ପ୍ରତି ସାମାଜିକ ଚେତନା ସୃଷ୍ଟି କରିବା ମଧ୍ୟ ଶିକ୍ଷାର ଆଭିମୁଖ୍ୟ ହେବା ଦରକାର । ମୋଟ ଉପରେ ଆଜିର ଛାତ୍ରଛାତ୍ରୀମାନେ ଆଗାମୀ ଦିନରେ ଯେପରି ଏକ ସୁସ୍ଥ ସମାଜରେ ଜୀବନ ନିର୍ବାହ କରିବେ ସେଥିପାଇଁ ପ୍ରୟାସର ଆବଶ୍ୟକତା ରହିଛି । କିନ୍ତୁ ପରିତାପର ବିଷୟ ଆମ ଦେଶର ଶିକ୍ଷାନୁଷ୍ଠାନ, ଆମର ନାଗରିକ ସମାଜ ଓ ସାମାଜିକ ଚେତନାର ସ୍ତର ଉନ୍ନତ ହୋଇପାରୁନାହିଁ । ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟଚୟ ନେଇ ଆମର ସାମାଜିକ ଚେତନା ଅତ୍ୟନ୍ତ ନ୍ୟୂନ ହୋଇ ରହିଛି । ଏକବିଂଶ ଶତାବ୍ଦୀରେ ବି ଆମ ଦେଶରେ ନିରକ୍ଷରତା କାୟା ବିସ୍ତାର କରି ରହିଛି । ଯେଉଁ ଛାତ୍ରଛାତ୍ରୀମାନେ ମାଧ୍ୟମିକ ଶିକ୍ଷା ପରେ ଉଚ୍ଚଶିକ୍ଷା ସ୍ତରକୁ ଆସୁଛନ୍ତି, ସେମାନଙ୍କ ଭିତରେ ନିଜର କ୍ୟାରିୟର ଓ ଉଚ୍ଚ ବେତନପ୍ରାପ୍ତ କର୍ମ ପାଇଁ ଅଧିକ ଆଗ୍ରହ ପ୍ରକାଶ ପାଉଛି । ଦେଶର ସଂସଦ ବା ବିଧାନସଭାମାନଙ୍କରେ ସଭ୍ୟମାନଙ୍କର ଉଚ୍ଚ ଶୃଙ୍ଖଳାବୋଧ ପ୍ରକାଶ ପାଏନାହିଁ । ସାଧାରଣ ଜୀବନଧାରାରେ ରାଜନୈତିକ ଲୋକମାନଙ୍କର ଓ ସାମ୍ପ୍ରଦାୟିକ ଶକ୍ତିମାନଙ୍କର ଯେଉଁ ପ୍ରଭାବ ରହୁଛି ସମାଜର ଗୁଣୀ, ଜ୍ଞାନୀ ଓ ଉନ୍ନତ ଚେତନାସମ୍ପନ୍ନ ବ୍ୟକ୍ତିମାନଙ୍କର ସେ ପ୍ରକାର ପ୍ରଭାବ ରହିପାରୁନାହିଁ ।

ସୁତରାଂ ସାମାଜିକ ଜୀବନକୁ ଉନ୍ନତ କରିବାକୁ ହେଲେ ଶିକ୍ଷାନୁଷ୍ଠାନକୁ ପ୍ରାଧାନ୍ୟ ଦେବାକୁ ହେବ । ଶିକ୍ଷାୟତନରୁ ସଭ୍ୟ ଆଚରଣ, ମାନବିକ ଦୃଷ୍ଟି ଓ ଗଣତାନ୍ତ୍ରିକ ମୂଲ୍ୟବୋଧଗୁଡ଼ିକ ବିଭିନ୍ନ ଭାବରେ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦେବାପାଇଁ ଯୋଜନା ପ୍ରସ୍ତୁତ କରିବାକୁ ହେବ । ଶିକ୍ଷାନୁଷ୍ଠାନର ମାନ ଉନ୍ନତ ନ ହେଲେ ସାମାଜିକ ଚେତନାର ସ୍ତର ଉନ୍ନତ ହେବନାହିଁ । ର୍‍ୟାଗିଂ ହେଉ ବା ଯେକୌଣସି ପ୍ରକାରର ଶୃଙ୍ଖଳାହୀନ ଆଚରଣ ହେଉ ଏହାକୁ ଦୂର କରିବାକୁ ହେଲେ ଶିକ୍ଷାୟତନରୁ ସେହିପରି ଏକ ବାତାବରଣ ସୃଷ୍ଟି କରିବାକୁ ପ୍ରୟାସ ଆବଶ୍ୟକ । ସାମାଜିକ ଚେତନାର ବିକାଶକୁ ଶିକ୍ଷାର ଏକ ମୌଳିକ ଲକ୍ଷ୍ୟ ଭାବରେ ନେଇ ସେ ପାଇଁ ଶିକ୍ଷା ସ୍ତରରେ ସଂସ୍କାର ପାଇଁ ପ୍ରୟାସ କଲେ ହୁଏତ ଆମ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇପାରିବ । (୧୫.୯.୧୦)



# ଏକ ଉତ୍କୃଷ୍ଟ ଜୀବନ

ଏକ 'ଉତ୍କୃଷ୍ଟ ଜୀବନ' କହିଲେ ପ୍ରକୃତରେ କ'ଣ ବୁଝାଏ ? ଏହା କିପରି ଲଭ୍ୟ । ମଣିଷ କିପରି ଏକ ଉତ୍ତମ ଜୀବନ ବଞ୍ଚିପାରିବ ? ଏହି ପ୍ରଶ୍ନଗୁଡ଼ିକ ଯେତେ ସରଳ ମନେହେଲେ ବି ଏହାର ଏକ ସାର୍ବଜନୀନ ଉତ୍ତର ଦେବା ପ୍ରାୟତଃ ସମ୍ଭବ ନୁହେଁ । ତେବେ ବିଭିନ୍ନ ସଂସ୍କୃତିରେ ଜୀବନର ମହତ୍ତ୍ୱ ଓ ଅନ୍ତିମ ପରିଣତି ନେଇ କେତେ କେତେ ତାତ୍ତ୍ୱିକ ପରିକଳ୍ପନାମାନ ରହିଛି । ଧର୍ମ, ଆଧ୍ୟାତ୍ମିକ ଅଭୀପ୍ସା ଭିତରେ ମଣିଷ ପାରଲୌକିକ ଜୀବନର ସ୍ୱପ୍ନ ବି ଦେଖିଛି । ଜୀବନର ନାନା ଦୁଃଖ, ଯନ୍ତ୍ରଣା, ନୈରାଶ୍ୟ, ପ୍ରତିକୂଳ ପରିସ୍ଥିତି ପରିପ୍ରେକ୍ଷୀରେ କେତେକ କଳ୍ପନାବିଳାସୀ ଏହି ଜୀବନକୁ ଅଳୀକ ମନେକରି ମୃତ୍ୟୁପରର ପାରଲୌକିକ ଜୀବନ ପାଇଁ କେତେ କେତେ ଛବିଳ କଳ୍ପନାମାନ କରିଛନ୍ତି । ପ୍ରତ୍ୟେକ ଧର୍ମ ଓ ପ୍ରାଚୀନ ସାହିତ୍ୟରେ ସ୍ୱର୍ଗ, ଈଶ୍ୱର ପ୍ରାପ୍ତି, ମୁକ୍ତି, ନିର୍ବାଣ ଇତ୍ୟାଦିର କେତେ କେତେ ସ୍ୱପ୍ନବିଭୋର କାହାଣୀମାନ ରହିଛି । ହେଲେ ଆଧୁନିକ ଦର୍ଶନ, ବିଜ୍ଞାନ ଓ ଜ୍ଞାନ ପୃଷ୍ଠଭୂମିରେ ସେଗୁଡିକ ଯେ ମଣିଷ ମନର କଳ୍ପନା ମାତ୍ର ତାହା ଜଣାଯାଏ । କେବଳ କଳ୍ପନା ରାଜ୍ୟରେ ମଣିଷ ଏସବୁରୁ ମନସ୍ତାତ୍ତ୍ୱିକ ଆନନ୍ଦ ହୁଏତ ପାଇଛି, ତେବେ ସାମାଜିକ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣିବାରେ ସେସବୁର ବିଶେଷ ମହତ୍ତ୍ୱ ନାହିଁ । ବରଂ ପ୍ରହେଳିକାର ବିଷୟ ଅତୀନ୍ଦ୍ରିୟ ଓ ପାରଲୌକିକ ଜୀବନର ସ୍ୱପ୍ନ ଭିତରେ ରହିଥିବା ବ୍ୟକ୍ତିମାନେ କୌଣସି ସାମାଜିକ ଅଙ୍ଗୀକାରବଦ୍ଧତା ପ୍ରକାଶ କରନ୍ତିନାହିଁ ଓ ସଭ୍ୟ ଜୀବନର ବିକାଶ କ୍ଷେତ୍ରରେ ସେପରି କିଛି ଅବଦାନ ଦେଇଥିବା ମନେହୁଏନାହିଁ ।

ଏକ ଉତ୍ତମ ଜୀବନର କର୍ମଭୂମି ହେଉଛି ଆମେ ଯେଉଁ ସମାଜରେ ବଞ୍ଚୁ ଓ ଯେଉଁ ବୃହତ୍ତର ସାମାଜିକ ପରିବେଶ ସହ ହୃଦୟର ସମ୍ପର୍କ ନିବିଡ଼ କରୁ । ପରିବାର, କ୍ଷୁଦ୍ର ଗୋଷ୍ଠୀ, ନିଜର ବୃତ୍ତିଗତ ଅସ୍ମିତା ଥିବା ବୃହତ୍ତର ଗୋଷ୍ଠୀ, ରାଷ୍ଟ୍ର ଓ ମାନବ ସମାଜ ହିଁ ଆମ ସମ୍ପର୍କର ପରିଧି । ଆମର ସୁଖ, ଶାନ୍ତି ଅନେକାଂଶରେ ଆମର ବୃହତ୍ତର ପରିବେଶରେ ଥିବା ସଦ୍‌ଭାବନା ଉପରେ ନିର୍ଭର କରେ । ଯଦି ଆମ ଚତୁଃପାର୍ଶ୍ୱରେ ହିଂସା, ଅନ୍ୟାୟ, ଅଶାନ୍ତି ଓ ବିଦ୍ୱେଷର ବାତାବରଣ ଥାଏ ତେବେ ବ୍ୟକ୍ତି ଚେତନାକୁ ତାହା ନାନା ଭାବରେ ପ୍ରଭାବିତ କରିଥାଏ । ମଣିଷ ଅନ୍ୟଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଏକ ଉତ୍କୃଷ୍ଟ ଜୀବନ

ବଞ୍ଚିବା ସମ୍ଭବ ନୁହେଁ । ହୁଏତ ଜଣେ ନିଜର ବିଚାର ଓ ଜୀବନଶୈଳୀରେ ଯେତେ ମାନବିକ, ଅହିଂସ ଓ ସମ୍ବେଦନଶୀଳ ହେଲେ ମଧ୍ୟ ତାହାର ପାରିପାର୍ଶ୍ୱିକ ପରିସ୍ଥିତିରେ ଯଦି ମହତ୍ତର ମୂଲ୍ୟବୋଧର ପ୍ରସାର ବା ଅଭିବ୍ୟକ୍ତି ନଥାଏ, ତେବେ ସେ ନିଜର ସମସ୍ତ ମହତ୍ତର କାମନା ସତ୍ତ୍ୱେ ମଧ୍ୟ ଅଶାନ୍ତି ଭିତରେ ରହିବାକୁ ବାଧ୍ୟ ହୁଏ । ସମାଜର ସଚେତନ ଓ ନୀତିବାନ ବ୍ୟକ୍ତିମାନେ ଯେତେବେଳେ ନିଜର ପାରିପାର୍ଶ୍ୱିକ ପରିବେଶରେ ଅନ୍ୟାୟ, ଅପସଂସ୍କୃତି ଓ ଅମାନବିକତାର ପ୍ରସାରକୁ ଦେଖନ୍ତି ତାହା ସେମାନଙ୍କର ହୃଦୟରେ ଗଭୀର ଆଘାତ ଦେଇଥାଏ । ସମାଜ ଏପରି ହୁଅନ୍ତା ଯେଉଁଠି ହିଂସା, ବିଦ୍ୱେଷ, ବିଭେଦ ଓ ଘୃଣା ପରିବର୍ତ୍ତେ ଏକ ମାନବିକତାର ବିଚାରବୋଧ ରହନ୍ତା, ଲୋକମାନଙ୍କର ଚେତନାରେ ବିଚାରଶୀଳତା ଓ ସମ୍ବେଦନଶୀଳ ଦୃଷ୍ଟିର ପ୍ରାଧାନ୍ୟ ରହନ୍ତା, ସେହି ଚିନ୍ତାରେ ସେମାନେ ଅଧିକ ଭାରାକ୍ରାନ୍ତ ହୁଅନ୍ତି । ସଭ୍ୟତାର ଇତିହାସରେ ସବୁ ଯୁଗରେ କିଛି କ୍ରାନ୍ତିକାରୀ ଦାର୍ଶନିକ, ମାନବବାଦୀ ଓ ହେତୁବାଦୀ ବିଚାରକ ଏହି ପ୍ରକାରର ଏକ ସ୍ୱପ୍ନ ପ୍ରକାଶ କରିଛନ୍ତି । ହେଲେ ବିଡମ୍ବନାର ବିଷୟ ସେହି ସ୍ୱପ୍ନ ସଫଳ ହୋଇନାହିଁ । ସଭ୍ୟତାର ଅନେକ ଅଗ୍ରଗତି ହୋଇଛି, ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ଜୀବନକୁ ସୁଖକର କରିବା ପାଇଁ ନାନା ସାଧନ ସୃଷ୍ଟି କରିପାରିଛି ଓ ଏପରିକି ସଭ୍ୟତାରେ ଅନେକ ସାର୍ବଜନୀନ ମୂଲ୍ୟବୋଧର ବିକାଶ ହୋଇଛି ତଥାପି ସମାଜରୁ ହିଂସା, ବିଭେଦ, ଅନ୍ୟାୟ ଓ ଅମାନବିକତାର ବିଲୁପ୍ତ ହୋଇନାହିଁ ।

ପୁନଶ୍ଚ ଏକ ଉତ୍କୃଷ୍ଟ ଜୀବନ କୌଣସି ଦିଅଁ ଦେବତା ବା କଳ୍ପିତ ଈଶ୍ୱର ମଣିଷକୁ ଦେଇପାରିବେ ନାହିଁ । ବରଂ ମଣିଷ ନିଜର ସୃଜନଶୀଳତା ଓ ବିଚାରଶୀଳତାର କ୍ରମୋନ୍ନତି ଦ୍ୱାରା ଏକ ଆଦିମ ସ୍ତରରୁ ଧୀରେ ଧୀରେ ସଭ୍ୟ ସ୍ତରକୁ ଉନ୍ନୀତ ହୋଇଛି । ପ୍ରକୃତି ଭିତରେ ଜୀବନକୁ ସରସ ସୁନ୍ଦର କରିବାପାଇଁ ଅନେକ ସମ୍ଭାବନା ରହିଛି । ଏହି ସମ୍ଭାବନାକୁ ଅନୁଶୀଳନ କରି ନୂଆ ନୂଆ ସନ୍ଧାନ ଭିତରେ ମଣିଷ ଜୀବନର ବସ୍ତୁଗତମାନକୁ ଉନ୍ନତ କରିଚାଲିଛି । ସେ ବଣ ଜଙ୍ଗଲରେ କୁଡ଼ିଆ କରି ରହିବାଠାରୁ ଏବେ ନଭଶ୍ଚୁମ୍ବୀ ପ୍ରାସାଦରେ ରହିପାରିଛି । ଶଗଡ଼ ଓ ଘୋଡ଼ା ଉପରେ ବସି ଯାଉଥିବା ମଣିଷ ଆଜି ଉଡାଜାହାଜରେ ଯାଇପାରୁଛି । ମହାମାରୀରେ ଆକ୍ରାନ୍ତ ହୋଇ ଅକାଳରେ ମୃତ୍ୟୁମୁଖରେ ପଡୁଥିବା ମଣିଷ ଆଧୁନିକ ଚିକିତ୍ସା ସାହାଯ୍ୟରେ ବହୁ ରୋଗ ସତ୍ତ୍ୱେ ଯନ୍ତ୍ରଣାବିହୀନ ଜୀବନ ନିର୍ବାହ କରିପାରୁଛି । ସାରା ବିଶ୍ୱର ଜ୍ଞାନରାଜିକୁ ତା'ର କମ୍ପ୍ୟୁଟର ଛବି ଉପରେ ପଢ଼ିପାରୁଛି । ଏସବୁ ମଣିଷର ପ୍ରୟାସ ଦ୍ୱାରା ସଭ୍ୟତାର ଇତିହାସରେ କ୍ରମବର୍ଦ୍ଧିଷ୍ଣୁ ଭାବେ ଉପଲବ୍ଧ ହୋଇଛି । ଏ ସମସ୍ତ ସକାରାତ୍ମକ ବିକାଶ ସତ୍ତ୍ୱେ ତଥାପି ଏକ ଉତ୍କୃଷ୍ଟ ଜୀବନ ମଣିଷ ପାଖରେ ଉପଲବ୍ଧ ହୋଇପାରୁନାହିଁ ।

ଆଧୁନିକ ଜୀବନ ପ୍ରବାହରେ ସୁଖର ବହୁ ସାଧନ ମଣିଷ ପାଇବାକୁ ସମର୍ଥ ହେଲେ ମଧ୍ୟ ମାନବିକ ଚେତନାର ସ୍ତରରେ ଏବେ ବି ନୈତିକ ଜୀବନ ଦୃଷ୍ଟି ସାର୍ବଜନୀନ ହୋଇପାରିନାହିଁ । ଏକ ମୈତ୍ରୀପୂର୍ଣ୍ଣ ଜୀବନର କଳା ସବୁସ୍ତରରେ ବିକଶିତ ହୋଇନାହିଁ । ଆମ ଚେତନାରେ ଅନେକ ଅସନ୍ତୁଳନ ରହିଛି । ଜୀବନରେ ସୁଖ-ଦୁଃଖ, ଆଶା-ନୈରାଶ୍ୟ, ସଫଳତା-ବିଫଳତା ରହିବ ହିଁ ରହିବ । ତେବେ ସାମାଜିକ ପରିବେଶ ଯେତେ ଅଧିକ ଉନ୍ନତ ଓ ଉତ୍ତରଦାୟୀ ହେବ, ତାହା ସମାଜରେ ଏକ ମୈତ୍ରୀପୂର୍ଣ୍ଣ ସମ୍ପର୍କର ପରିବେଶ ସୃଷ୍ଟି କରିବ । ଧର୍ମ, ଜାତି, ଜାତୀୟତା ଇତ୍ୟାଦିକୁ ନେଇ ଆମ ଚେତନାରେ ଯେଉଁ ବିଦ୍ୱେଷର ଭାବନା ରହିଛି, ତାହା କିପରି ଦୂରୀଭୂତ ହେବ ? କ୍ରୋଧ, ଲୋଭ, ହିଂସାର ମାନସିକତାକୁ ଆମେ କିପରି ଅତିକ୍ରମ କରିପାରିବା ? ସମାଜର ବୃହତ୍ତର ପରିବେଶରେ ଯେଉଁ ଅନ୍ୟାୟ, ବିଭେଦ, ବୈଷମ୍ୟର ବାତାବରଣ ରହିଛି ତାହା ବ୍ୟକ୍ତିମାନସରେ ସମାଜ ପ୍ରତି ଅବିଶ୍ୱାସର ମନୋଭାବ ସୃଷ୍ଟି କରୁଛି କି ? ଏକ ଭେଦଭାବମୂଳକ ବୈଷମ୍ୟପୂର୍ଣ୍ଣ ସମାଜରେ ବ୍ୟକ୍ତି ଓ ଗୋଷ୍ଠୀ ଚେତନା କିପରି ସଂସ୍କାରିତ ହୋଇପାରିବ ? ଏକ ସାସ୍କାରିତ ଚେତନାର ବିକାଶ ପାଇଁ ସାମାଜିକ ପରିବେଶରେ କଣ ପରିବର୍ତ୍ତନ ଆବଶ୍ୟକ ? ସାମାଜିକ ପରିବେଶ ଉନ୍ନତ ହେଲେ ବ୍ୟକ୍ତି ସମୂହ ସଂସ୍କାରିତ ଚେତନାର ଅଧିକାରୀ ହୋଇପାରିବେ ନା ବ୍ୟକ୍ତିମାନଙ୍କର ଚେତନାର ସ୍ତରରେ ସଂସ୍କାରବାଦୀ ଓ ମାନବବାଦୀ ଜୀବନଦୃଷ୍ଟିର ଅଧିକରୁ ଅଧିକ ଅଭିବ୍ୟକ୍ତି ଦ୍ୱାରା ସମାଜର ନୈତିକ ଉତ୍ତରଣ ତ୍ୱରାନ୍ୱିତ ହେବ ? ଅବଶ୍ୟ ବ୍ୟକ୍ତି ଓ ସମାଜ ପରସ୍ପରର ଅଭିନ୍ନ ହେବା ଦୃଷ୍ଟିରୁ ଗୋଟିକରେ ପରିବର୍ତ୍ତନର ପରିବେଶ ଅନ୍ୟଟିରେ ପରିବର୍ତ୍ତନର ଧାରାକୁ ଗଭୀର ଭାବେ ପ୍ରଭାବିତ କରିପାରିବ । ତେବେ ବ୍ୟକ୍ତି ମରଣଶୀଳ କିନ୍ତୁ ସମାଜ ଏକ ଅବାରିତ ଧାରା ଯାହାର ଅନ୍ତ ନାହିଁ । ସୁତରାଂ ସାମାଜିକ ପରିବେଶର ଉନ୍ନତି ସାଧନ ଦ୍ୱାରା ତା'ର ପ୍ରଭାବ ବ୍ୟକ୍ତିମାନସକୁ ପ୍ରେରଣା ଯୋଗାଇ ପାରିବ । ଏହି ପୃଷ୍ଠଭୂମିରେ ସାମାଜିକ ସ୍ତରରେ ଶିକ୍ଷା, ରାଜନୀତି, ପରମ୍ପରା, ସଂସ୍କୃତି ଇତ୍ୟାଦିର ଗୁଣାତ୍ମକ ମାନରେ ପରିବର୍ତ୍ତନ ବ୍ୟକ୍ତି ଚେତନାକୁ ପ୍ରଭାବିତ କରି ସମାଜର ନୈତିକ ଉତ୍ତରଣ ଦିଗରେ ସହାୟକ ହେବ ।

ଉତ୍କୃଷ୍ଟ ଜୀବନ ପାଇଁ ବନ୍ଧୁତା ଓ ସାଖ୍ୟଭାବ ଏହାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇପାରିବ । ମାନବିକ ସମ୍ପର୍କ ପୃଷ୍ଠଭୂମିରେ ବନ୍ଧୁତା ହିଁ ଏକ ନୈତିକ ଅଭିବ୍ୟକ୍ତିର ମହତ୍ତର ପରିପ୍ରକାଶ କହିଲେ ଅତ୍ୟୁକ୍ତି ହେବନାହିଁ । ବିଚାର, କର୍ମଧାରା ଇତ୍ୟାଦି ଭିତରେ ଭିନ୍ନତା ରହିଲେ ମଧ୍ୟ ହୃଦୟର ବନ୍ଧନ ଅନ୍ୟପାଖରେ ଦୃଢ ହୋଇପାରିବ । ଅନ୍ୟର ଆତ୍ମମର୍ଯ୍ୟାଦା ପ୍ରତି ସମ୍ମାନବୋଧ ବନ୍ଧୁତ୍ୱଭାବର ଏକ ବଡ ପରିପ୍ରକାଶ । ନିଜକୁ ଅନ୍ୟଠାରୁ

ଉଚ୍ଚ ବା ପୃଥକ ମନେକରୁଥିବା ମାନସିକତା ଭିତରେ ବନ୍ଧୁତ୍ୱଭାବ ସ୍ୱତଃସ୍ଫୂର୍ତ୍ତ ହୋଇପାରେ ନାହିଁ । ବରଂ ଏକ ସମତା ଭାବ ହୃଦୟର ବନ୍ଧନ ପାଇଁ ଅତ୍ୟାବଶ୍ୟକ ମନେହୁଏ ।

ଉତ୍କୃଷ୍ଟ ଜୀବନର ମାନଦଣ୍ଡ କ୍ଷେତ୍ରରେ ପ୍ରଶ୍ନ ଆସେ ମଣିଷ କେତେ ଆତ୍ମକୈନ୍ଦ୍ରିକ ନା କେତେ ସମାଜକୈନ୍ଦ୍ରିକ । ଯେଉଁ ବ୍ୟକ୍ତିଟି ଏକ ବୃହତ୍ତର ସମାଜ ପାଇଁ ତାର ସମ୍ପୃକ୍ତି ପ୍ରକାଶ କରେ ଓ ଅନ୍ୟର ପୀଡାକୁ ହୃଦୟରେ ଅନୁଭବ କରେ ସେଠି ଜୀବନର ଗୁଣାତ୍ମକମାନର ଉତ୍ତରଣ ହୁଏ । ପ୍ରତ୍ୟେକ ବ୍ୟକ୍ତି ତାର ଶିକ୍ଷା, ସ୍ୱାସ୍ଥ୍ୟସେବା, ନିରାପତ୍ତା ଓ ଜୀବନର ଆବଶ୍ୟକତା ପାଇଁ ଏକ ବୃହତ୍ତର ସମାଜ ଉପରେ ନିର୍ଭର କରେ । ସୁତରାଂ ପ୍ରତିଦାନରେ ସମାଜ ପ୍ରତି ଏକ ଉତ୍ତରଦାୟିତ୍ୱବୋଧ ଯଦି ବ୍ୟକ୍ତିର କର୍ମସଂସ୍କୃତିରେ ପ୍ରକାଶିତ ହୁଏ, ତେବେ ତାହା ଜୀବନରେ ଉତ୍କୃଷ୍ଟତାର ସ୍ୱାକ୍ଷର ବହନ କରେ । ସମାଜରୁ କମ୍ ନେବା ଓ ସମାଜକୁ ଅଧିକ ଦେବା ଏକ ମହତ୍ତର ଜୀବନଦୃଷ୍ଟିର ପରିଚାୟକ । 'ଜଗତର ମଙ୍ଗଳ ପାଇଁ ମୁଁ ନର୍କକୁ ଯିବାକୁ ପ୍ରସ୍ତୁତ'- ଏକ ମାନବୀୟ ଅଭିବ୍ୟକ୍ତି । ପରନ୍ତୁ 'ମୋର ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ହିଁ ମୋ ପାଇଁ ସବୁଠାରୁ ଶ୍ରେୟ' ଏକ ଆତ୍ମକୈନ୍ଦ୍ରିକ ଜୀବନର ପରିଚୟ ଦିଏ ।

ଏକ ଉତ୍ତମ ଜୀବନର ଏକ ବ୍ୟକ୍ତିଗତ ଆବଶ୍ୟକତା ହେଉଛି ଏକ ସୁସ୍ଥ ଶରୀର ଓ ସୁସ୍ଥ ମନ । ଶାରୀରିକ ସୁସ୍ଥତା ସହ ମାନସିକ ସୁସ୍ଥତା ବ୍ୟକ୍ତି ଜୀବନକୁ ଅଧିକ ପ୍ରାତିପଦ କରିଥାଏ । ସ୍ୱାବଲମ୍ବନଶୀଳତା ଓ ସ୍ୱାଭିମାନ ଏକ ଉତ୍କୃଷ୍ଟ ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ଏହାସହିତ ଆମ ଚତୁଃପାର୍ଶ୍ୱରେ ଥିବା ବିଭିନ୍ନ ସୁଯୋଗର ନୀତିପୂର୍ଣ୍ଣ ଉପଯୋଗ କରିବା ଓ ଜୀବନର ପ୍ରତ୍ୟେକ ସମୟକୁ ସୃଜନଶୀଳ କାର୍ଯ୍ୟରେ ବିନିଯୋଗ କରିବା ଉତ୍କୃଷ୍ଟ ଜୀବନର ଲକ୍ଷଣ ହୋଇପାରିବ । ଜୀବନର ଯେଉଁ ପରିସ୍ଥିତିରେ ନୈରାଶ୍ୟ, ଦୁଃଖ ଆସେ ତାକୁ ନିଜର ବିଚାରବୁଦ୍ଧି ଦ୍ୱାରା ସମାଧାନ କରିବାକୁ ଚେଷ୍ଟା କରିବା ଆବଶ୍ୟକ । ଆମର ପ୍ରିୟ ପରିଜନ ଓ ବନ୍ଧୁମାନେ ଆମପାଇଁ ସହାନୁଭୂତିର ହାତ ଯେ ବଢ଼ାଇ ପାରିବେ ସେ ବିଶ୍ୱାସ ଅନ୍ୟ ଉପରେ ରଖିବା ଦରକାର । ସଂସାରରେ ମନ୍ଦ ଲୋକ ତ ରହିଛନ୍ତି ତା' ସହିତ ବହୁ ଭଲ ମଣିଷ ବି ରହିଛନ୍ତି, ଯେଉଁମାନେ ଅନ୍ୟର ଦୁଃଖ, ସମସ୍ୟା ପ୍ରତି ବେଶ୍ ସହାନୁଭୂତିଶୀଳ । ସେଥିପାଇଁ ତ କିଛି ଲୋକ ନିଜ ଜୀବନର ସମସ୍ତ ସୁଖକୁ ପରିତ୍ୟାଗ କରି ସମାଜର ଦୁଃଖ ଦୂର କରିବାକୁ ପ୍ରୟାସ କରିଛନ୍ତି । ସ୍ୱର୍ଗରୁ ଅଗ୍ନି ଚୋରି କରି ମଣିଷ ପାଇଁ ଆଣିଥିବା ଗ୍ରୀକ ପୁରାଣର ଏକ ଚରିତ୍ର ପ୍ରମିଥିଅସ ହେଉଛି ସେହି ଚେତନାର ଏକ ପ୍ରତୀକ । ବିଶ୍ୱର ମଙ୍ଗଳ କରିବାକୁ ଯାଇ ପ୍ରମିଥିଅସ ସ୍ୱର୍ଗରୁ ମର୍ତ୍ତ୍ୟକୁ ଅଗ୍ନି ଆଣିଛନ୍ତି କିନ୍ତୁ ଜୀବନସାରା ସ୍ୱର୍ଗର ଦେବତା ଜୀୟସର କ୍ରୋଧରେ ଯନ୍ତ୍ରଣାରେ ଜର୍ଜରିତ ହୋଇଛନ୍ତି ।

କୁଷ୍ଠ ରୋଗ, ବସନ୍ତ ରୋଗ ପରି ମାରାତ୍ମକ ରୋଗମାନଙ୍କର ନିଦାନ ବାହାର କରିଥିବା ବୈଜ୍ଞାନିକ ଗଣ ହେଉଛନ୍ତି ମାନବଦରଦୀ ଓ ସେମାନଙ୍କର ଅବଦାନ ଯୋଗୁ ଅନେକ ବ୍ୟକ୍ତି ଯନ୍ତ୍ରଣାରୁ ମୁକ୍ତି ପାଇଛନ୍ତି । ଅନ୍ୟର ଯନ୍ତ୍ରଣାକୁ ଦୂର କରିବାପାଇଁ ଜୀବନକୁ ଉତ୍ସର୍ଗ କରିଥିବା ମଣିଷମାନେ ହିଁ ସଭ୍ୟତାର ପଥ ପ୍ରଦର୍ଶକ । ଏହି ତ୍ୟାଗ ଭାବ ହିଁ ଉତ୍କୃଷ୍ଟ ଜୀବନର ମାପକାଠି ଯାହା ସବୁ ଯୁଗରେ ଓ ସବୁ ସଂସ୍କୃତିରେ ହେତୁବାଦୀ ଚିନ୍ତାନାୟକମାନେ ଘୋଷଣା କରି ଆସିଛନ୍ତି । (୨୨.୯.୧୦)



# ନୈତିକ ଚେତନାର କ୍ରମବିକାଶ

ନୈତିକ ଶୃଙ୍ଖଳାର ତାତ୍ପର୍ଯ୍ୟ କ'ଣ ? ଏକ ଗୁଣାତ୍ମକ ଜୀବନ ସହ ନୈତିକତାର କଣ ସମ୍ପର୍କ ରହିଛି ? ନୈତିକତାର ସଂଜ୍ଞା, ସ୍ୱରୂପ ଓ ତାତ୍ପର୍ଯ୍ୟ ନେଇ ନାନା ଗମ୍ଭୀର ଚର୍ଚ୍ଚା ଦର୍ଶନ ପରିସରରେ ହୋଇଛି । ନୈତିକ ଆଚରଣ ଯେ, ସଭ୍ୟ ଜୀବନଧାରାର ଏକ ଅପରିହାର୍ଯ୍ୟ ଅଙ୍ଗ ଏହା ସାଧାରଣତଃ ବିଶ୍ୱାସ କରାଯାଏ । ତେବେ ସାମାଜିକ ଜୀବନ ପ୍ରବାହରେ ନାନା ଅନୈତିକତାର ବି ଅଭିବ୍ୟକ୍ତି ଦେଖିବାକୁ ମିଳେ । ପ୍ରତ୍ୟେକ ସମାଜରେ ଅନୈତିକ ଅଭିବ୍ୟକ୍ତିର ଦୃଷ୍ଟାନ୍ତ ରହୁଥିଲେ ମଧ୍ୟ ଅନୈତିକତା ସାମାଜିକ ଶ୍ରେୟ ଭାବେ ସ୍ୱୀକୃତ ହେବା ସମ୍ଭବ ନୁହଁ । କୌଣସି ବ୍ୟକ୍ତି ଅନୈତିକ ଭାବରେ ଉଚ୍ଚ ପଦପଦବୀର ଅଧିକାରୀ ହେବା, ପ୍ରାଚୁର୍ଯ୍ୟ ଭିତରେ ଜୀବନ ବଞ୍ଚିବା ଓ ସାମାଜିକ ସମ୍ମାନର ଅଧିକାରୀ ହେବାର ଦୃଷ୍ଟାନ୍ତ ସମାଜରେ ରହିପାରେ । ଏପରିକି ନୀତିବାଦୀ ଲୋକମାନେ ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରତିକୂଳ ପରିବେଶର ସମ୍ମୁଖୀନ ହେବା, ନିଜର ନ୍ୟାୟୋଚିତ କାର୍ଯ୍ୟ ହାସଲ କରିନପାରିବା ଓ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହେବାର ସମ୍ଭାବନା ମଧ୍ୟ ରହିପାରେ । ଏସବୁ ସତ୍ତ୍ୱେ ଅନୈତିକତାକୁ ଏକ ଆଦର୍ଶ ଭାବେ ସମାଜରେ ପ୍ରୋତ୍ସାହନ ଦିଆଯାଇପାରିବ ନାହିଁ । କାରଣ ସାମାଜିକ ଜୀବନ ପ୍ରବାହରେ ଅନୈତିକ କାର୍ଯ୍ୟ ବ୍ୟତିକ୍ରମ ନ ହୋଇ ଏକ ଧାରାରେ ପରିଣତ ହେଲେ ସାମାଜିକ ସଂହତି ବିପନ୍ନ ହୋଇଥାଏ ଓ ସମାଜ କ୍ଷୟଶୀଳ ହୋଇଥାଏ । ଏକ କ୍ଷୟଶୀଳ ସମାଜରେ ଜୀବନର ଗୁଣାତ୍ମକ ମାନ ନିମ୍ନମାନର ହେବା ସହ ସାମାଜିକ ସଂହତି, ସ୍ଥିରତା ଓ ବିକାଶ ନାନା ଭାବରେ ବାଧାପ୍ରାପ୍ତ ହୋଇଥାଏ ।

ନୈତିକତାର ପ୍ରସଙ୍ଗଟି ବେଶ୍ ଜଟିଳ ଓ ଏହାର ଏକ ସାର୍ବଜନୀନ ଉତ୍ତର ଦେବା ସମ୍ଭବତଃ ସହଜ ନୁହେଁ । ନୈତିକତାର ଉତ୍ସ କ'ଣ , କେଉଁ କାର୍ଯ୍ୟକୁ ନୈତିକ ବା ଅନୈତିକ କୁହାଯିବ ଏହାର ମାନଦଣ୍ଡ କ'ଣ, ନୈତିକତା ଓ ଆଇନ ଭିତରେ କ'ଣ ସମ୍ପର୍କ ରହିଛି- ପ୍ରଶ୍ନଗୁଡ଼ିକ ବେଶ୍ ଜଟିଳ । ସାମାଜିକ ପରିସ୍ଥିତିର ଜଟିଳତା ଓ ବ୍ୟକ୍ତି ସମ୍ମୁଖୀନ ହେଉଥିବା ପରିସ୍ଥିତିର ଗମ୍ଭୀରତା ପୃଷ୍ଠଭୂମିରେ କୌଣସି କାର୍ଯ୍ୟର ଯଥାର୍ଥ ମୂଲ୍ୟାୟନ ବି ସହଜ ମନେ ନ ହୋଇପାରେ । ଏସବୁକୁ ସ୍ୱୀକାର କଲେ ମଧ୍ୟ ନୈତିକ-ଅନୈତିକ, ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ ପ୍ରସଙ୍ଗଗୁଡିକ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ହିଁ ବିଚାର୍ଯ୍ୟ । ଜଣେ ବ୍ୟକ୍ତି ସ୍ୱେଚ୍ଛାକୃତ ଭାବେ ଯାହା କରେ, ତାହା ହିଁ ଭଲ -ମନ୍ଦ ମୂଲ୍ୟାୟନ ସ୍ତରର ପ୍ରସଙ୍ଗ । ସାମାଜିକ ସମ୍ପର୍କ ବାହାରେ ଭଲ-ମନ୍ଦ, ନୀତି-ଅନୀତିର ପ୍ରସଙ୍ଗ ନିରର୍ଥକ ମନେହୁଏ । ପୁନଶ୍ଚ ଉତ୍ତମ ସ୍ୱଭାବ,

ନୈତିକ ଆଚରଣ ବ୍ୟକ୍ତିର ସହଜାତ ସ୍ୱଭାବ କି ? କେତେକଙ୍କ ମତରେ ନୈତିକ ଆବେଗ ବ୍ୟକ୍ତି ସ୍ୱଭାବରେ ଅନ୍ତର୍ନିହିତ । କ'ଣ ଭଲ, କ'ଣ ମନ୍ଦ, କେଉଁ କାର୍ଯ୍ୟ ଯଥାର୍ଥ ଓ କେଉଁ କାର୍ଯ୍ୟ ଅନୈତିକ ଏହା ବ୍ୟକ୍ତି ସ୍ୱତଃ ଜାଣିଥାଏ । ଏହା ଏକ ପ୍ରବୃତ୍ତିଗତ ଜ୍ଞାନ । ସାଧୁତା, ଶୃଙ୍ଖଳାବୋଧ, ସତ୍ୟ ପରାୟଣତା ଇତ୍ୟାଦି ଆହାର, ନିଦ୍ରା, ଭୟ ପରି ବ୍ୟକ୍ତିର ସହଜାତ ବୋଲି କେତେକ ମତ ପୋଷଣ କରିଥାନ୍ତି । ତେବେ ଏହି ମତଟି ଯଥାର୍ଥ ମନେହୁଏ ନାହିଁ । ଆହାର, ନିଦ୍ରା, ଭୟ, ଯୌନ ଆବେଗ ବ୍ୟକ୍ତିର ଯେପରି ସହଜାତ ପ୍ରବୃତ୍ତି, ନୈତିକତା ସେପରି ବ୍ୟକ୍ତିର ସହଜାତ ସ୍ୱଭାବ ନୁହେଁ । ଅପରପକ୍ଷରେ ବ୍ୟକ୍ତିର ନୈତିକ ବିଚାରବୋଧ ଓ ଜୀବନଦୃଷ୍ଟି ତାର ସାମାଜିକ ପରିବେଶ, ଶିକ୍ଷା, ସଂସ୍କାର, ସାଂସ୍କୃତିକ ଘଟଣା ପ୍ରବାହ ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଥାଏ । ବ୍ୟକ୍ତିର ନୈତିକ ବିଚାର ଓ ଅବବୋଧ ପାରିବାରିକ, ସାମାଜିକ, ଶୈକ୍ଷିକ ଓ ସାଂସ୍କୃତିକ ପରିବେଶ ନେଇ ବିକଶିତ ହୋଇଥାଏ । ସ୍ଥଳବିଶେଷରେ ହୁଏତ କିଛି ବ୍ୟତିକ୍ରମ ଥାଇପାରେ, ତେବେ ମୋଟାମୋଟି ଭାବେ ବ୍ୟକ୍ତିର ଦୃଷ୍ଟିଭଙ୍ଗୀ ଓ ନୈତିକ ସୃଜନଶୀଳତା ଅନେକାଂଶରେ ସାମାଜିକ ପରିବେଶ ଦ୍ୱାରା ଯେ ପ୍ରଭାବିତ ହୋଇଥାଏ ଏହା କହିବା ଅସମୀଚୀନ ନୁହେଁ ।

ସାମାଜିକ ବିକାଶଧାରାରେ ନୈତିକ ମୂଲ୍ୟଚୟ ଗୁଡିକର କ୍ରମବିକାଶ ହେବା ବି ଜଣାଯାଏ । ଆଦିମ ସମାଜରେ ବ୍ୟକ୍ତିର ନୈତିକ ଦୃଷ୍ଟିଭଙ୍ଗୀର ପରିସର ନିଜ ଗୋଷ୍ଠୀ ଜୀବନ ଭିତରେ ସୀମିତ ରହିଥିଲା । ବ୍ୟକ୍ତିର ସାମାଜିକ ପରିଚୟ ଯେତେବେଳେ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମିତ ରହିଥିଲା ଓ ବ୍ୟକ୍ତିର ଗତିଶୀଳତା, କର୍ମକ୍ଷେତ୍ର ଓ ସାମାଜିକ ସମ୍ବନ୍ଧ ଅତି ସୀମିତ ଥିଲା, ସେତେବେଳେ ଶାରୀରିକ ଦକ୍ଷତା ଯୋଦ୍ଧୃଭାବକୁ ଉଚ୍ଚ ସ୍ଥାନ ଦିଆଯାଉଥିଲା । ଟ୍ରାଇବାଲ ମୋରାଲିଟି ବୋଲି ଯାହା କୁହାଯାଉଛି, ତାହା ଭିତରେ ଉଚ୍ଚତର ମୂଲ୍ୟଚୟର ବିକାଶ ହୋଇନଥିଲା । ବରଂ ନିଜ ଗୋଷ୍ଠୀର ନିରାପତ୍ତା, ସୁରକ୍ଷା ଓ ସୀମିତ ସମ୍ପର୍କକୁ ଆଧାର କରି କେତେକ ଚଳଣି, ଆଦର୍ଶ, ରୀତି-ନୀତି, ଭଲ-ମନ୍ଦର ଧାରଣା ସୃଷ୍ଟି ହୋଇଥିଲା । ଅନ୍ୟ ଗୋଷ୍ଠୀକୁ କବଳିତ କରିବା, ସେମାନଙ୍କ ପ୍ରତି କ୍ରୂରତା ଦେଖାଇବା ବୀରର କାର୍ଯ୍ୟ ବୋଲି ସାମାଜିକ ସ୍ୱୀକୃତି ପାଉଥିଲା । ପ୍ରାଚୀନ ସମାଜରେ ଦଳର ମୁଖ୍ୟ ବା ରାଜାମାନେ ସ୍ୱୟମ୍ବରମାନ ଆୟୋଜନ କରୁଥିଲେ ଓ ଶାରୀରିକ ସାମର୍ଥ୍ୟର ପ୍ରତିଯୋଗିତାରେ ସଫଳ ହେଉଥିବା ବ୍ୟକ୍ତିମାନଙ୍କୁ ସମ୍ମାନିତ ବା କନ୍ୟାଦାନ କରୁଥିଲେ । ସେହି ଯୁଗର ଏହି ଚଳଣି ଆଜି ଅବାନ୍ତର ମନେହୁଏ । ବସ୍ତୁତଃ ସେ ଯୁଗର ମାନସିକତାରେ ନୈତିକତାର ପରିସର ଅତି ସୀମିତ ରହିବା ସହ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ଗୋଟିଏ ଗୋଷ୍ଠୀ ଜୀବନ ଭିତରେ ସୀମାବଦ୍ଧ ରହିଥିଲା ।

ସାମାଜିକ ବିକାଶଧାରାରେ ଧାର୍ମିକ ଚେତନାର ଅଭ୍ୟୁଦୟ ସହ ନୈତିକ ଦୃଷ୍ଟିଭଙ୍ଗୀରେ କେତେକ ପରିବର୍ତ୍ତନ ଆସିଲା । ଧର୍ମମାନଙ୍କର ଯଦିବା ପ୍ରାଥମିକ ଅବସ୍ଥାରେ ଏକ ଏକ

ସାଂସ୍କୃତିକ ଜାଗରଣ ଭାବେ ବିଭିନ୍ନ ଭୂଖଣ୍ଡରେ ଉଦ୍ଭବ ହୋଇଥିଲା କାଳକ୍ରମେ ପ୍ରତ୍ୟେକଟି ଏକ ଅନୁଷ୍ଠାନରେ ପରିଣତ ହୋଇ ବୃହତ୍ତର ସାମାଜିକ ଗୋଷ୍ଠୀ ଭିତରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କଲା । ଧାର୍ମିକ ବିଶ୍ୱାସ ସହ ନୈତିକ ଦୃଷ୍ଟିଭଙ୍ଗୀରେ ଉନ୍ନତି ଆସିଲା ଓ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ କ୍ଷୁଦ୍ର ଗୋଷ୍ଠୀ ଠାରୁ ବୃହତ୍ତର ସମାଜ ପ୍ରତି ପ୍ରସାରିତ ହେଲା । ଏହା ସହିତ ସେବା, କରୁଣା, ଦୟା ପରି ଆଦର୍ଶଗୁଡ଼ିକ ଧାର୍ମିକ ଚେତନାର ଅଙ୍ଗ ହେଲା । ତେବେ ଧର୍ମର କେତେକ ବିଶ୍ୱାସ ପବିତ୍ର ଓ ଧର୍ମଗ୍ରନ୍ଥର ବାଣୀ ଈଶ୍ୱରଦତ୍ତ ବୋଲି ଭାବନା ଯୋଗୁ ଧାର୍ମିକ ମୂଲ୍ୟଚୟ 'ସମ୍ପ୍ରଦାୟ ଭିତ୍ତିକ' ହୋଇ ଉଠିଲା । କେତେକ ଅଜ୍ଞତା ଓ କୁସଂସ୍କାରଜନିତ ଭାବାବେଗ ଯୋଗୁ ବିଭିନ୍ନ ହିଂସାତ୍ମକ କାର୍ଯ୍ୟ, ନିର୍ଦ୍ଦୟ ଆଚରଣକୁ ଧର୍ମୀୟ ସ୍ୱୀକୃତି ଦିଆଗଲା । ଦିଅଁ ଦେବତାଙ୍କ ପାଖରେ ବଳି ପକାଇଲେ ଦିଅଁ ସନ୍ତୁଷ୍ଟ ହୋଇ ଆମର ଅଭିଳାଷ ପୂର୍ଣ୍ଣ କରିବେ ବୋଲି ଭାବନାର ବିକାଶ ହେଲା । ମାନସିକ ଉନ୍ମାଦନାଜନିତ ରୋଗ ବା ପାଗଳାମୀକୁ ସଇତାନର ଅନୁପ୍ରବେଶ ଭାବି ଅଗଣିତ ବ୍ୟକ୍ତିଙ୍କୁ ଅକଥନୀୟ ଯନ୍ତ୍ରଣା ଦେବା ବା ନିଆଁରେ ପୋଡ଼ି ମାରିବା ଧର୍ମୀୟ ସ୍ୱୀକୃତି ପାଇଲା । ବିଜ୍ଞାନର ପ୍ରଗତିକୁ ଓ ନୂତନ ଜ୍ଞାନକୁ ବିରୋଧ କରାଗଲା । ବ୍ୟକ୍ତିର ଦୁଃଖ ଦୁର୍ଦ୍ଦଶାକୁ କର୍ମଫଳ, ଈଶ୍ୱରୀୟ ଦଣ୍ଡ, ଭାଗ୍ୟ ଲିଖନ ବୋଲି କେତେ କେତେ ତାତ୍ତ୍ୱିକ ପରିଭାଷାରେ ବ୍ୟକ୍ତ କରାଗଲା । ସୁତରାଂ ଧାର୍ମିକ ବିଶ୍ୱାସ ସ୍ତରରେ ନୈତିକ ଚେତନାର ବିକାଶ ହୋଇଥିଲେ ମଧ୍ୟ ଏହା ବି ନାନା ଭାବରେ ଅହେତୁକ ଓ ଅମାନବିକ ହୋଇ ରହିଥିଲା ।

ସାମାଜିକ ବିକାଶଧାରାରେ କାଳକ୍ରମେ ଜନକଲ୍ୟାଣକାରୀ ରାଷ୍ଟ୍ର ଭାବନାର ବିକାଶ ହେଲା । ରାଜନୈତିକ ଚିନ୍ତନ ଦେଇ ସାର୍ବଭୌମ ରାଷ୍ଟର ବିକାଶ ସହ ଗଣତନ୍ତ୍ର ଓ ଧର୍ମ ନିରପେକ୍ଷତା ରାଷ୍ଟ୍ରୀୟ ଆଦର୍ଶ ଭାବେ ସ୍ୱୀକୃତ ହେଲା । ଜନମଙ୍ଗଳକାରୀ ରାଷ୍ଟ୍ରସମୂହ ମଧ୍ୟ ଦେଇ କାଳକ୍ରମେ ସାର୍ବଜନୀନ ନୈତିକ ମୂଲ୍ୟଚୟର ଉଦ୍ଭବ ହେଲା । ମାନବବାଦୀ ଦୃଷ୍ଟିଭଙ୍ଗୀର ବିକାଶ କାଳକ୍ରମେ ସାର୍ବଜନୀନ ମୂଲ୍ୟବୋଧ ଭାବେ ସ୍ୱୀକୃତ ହେଲା । ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ସମତାଭାବ ଓ ସାମାଜିକ ନ୍ୟାୟ ଆଦର୍ଶଗୁଡ଼ିକ ସାର୍ବଜନୀନ ହେବାକୁ ଲାଗିଲା । ମଣିଷ ମଣିଷ ଭିତରେ ବିଭିନ୍ନ ସମାଜରେ ରହିଥିବା ନାନା ଭେଦଭାବ ବିରୋଧରେ ନୈତିକ ଚେତନା ସୃଷ୍ଟିହେଲା । ସାର୍ବଜନୀନ ଶିକ୍ଷାର ପ୍ରସାର ସହ ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା ପାଇବା ଓ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତାର ଏକ ଜନ୍ମଗତ ଅଧିକାର ବୋଲି ବିଚାରର ପ୍ରସାର ହେଲା । ରାଜନୈତିକ ପରିବର୍ତ୍ତନ, ନୈତିକ ଚେତନାର ଉତ୍ତରଣରେ ସହାୟକ ହେଲା ।

ପରିଣାମତଃ ନାଗରିକ ଶୃଙ୍ଖଳାବୋଧ ସଭ୍ୟ ଜୀବନଦୃଷ୍ଟିର ଅଙ୍ଗବିଶେଷ ହେଲା । ଯେଉଁ ସମାଜରେ ନାଗରିକ ସଚେତନତାର ସ୍ତର ଯେତେ ଉନ୍ନତ ହେଲା ସେହି ସମାଜ ସେତେ ସଭ୍ୟ ବୋଲି ସ୍ୱୀକୃତ ହେଲା । ଯେଉଁଠି ନାଗରିକ ଶୃଙ୍ଖଳାର ସ୍ତର ଉନ୍ନତ ହୋଇନାହିଁ

ସେହି ସାମାଜିକ ଦୃଶ୍ୟପଟ୍ଟ ଅନୁନ୍ନତ ହୋଇରହିଛି । ତେବେ ନାଗରିକ ସଚେତନତାର ସ୍ତର କିପରି ଉନ୍ନତ ହେବ ? ନାଗରିକ ସଚେତନତାର ଆଧାର ହେଉଛି ଜନଗଣଙ୍କର କର୍ମସଂସ୍କୃତି, ସମତାଭାବ, ସାମାଜିକ ନ୍ୟାୟଜନିତ ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ଅଙ୍ଗୀକାରବଦ୍ଧତା ଓ ବ୍ୟକ୍ତି ମର୍ଯ୍ୟାଦା ପ୍ରତି ସମ୍ମାନବୋଧ । କହିବା ନିଷ୍ପ୍ରୟୋଜନ ଯେ, ଏହି ମୂଲ୍ୟବୋଧଗୁଡ଼ିକ ଆମ ଜନଜୀବନରେ ସୁଦୃଢ଼ ଭିତ୍ତି ନେଇପାରି ନାହିଁ । ଆମର କର୍ମସଂସ୍କୃତି ଏବେ ବି ନିମ୍ନସ୍ତରରେ ରହିଛି । ଜଣେ ସାଧାରଣ ନାଗରିକର କାର୍ଯ୍ୟଟି ଯେତେ ନ୍ୟାୟସଙ୍ଗତ ହେଲେ ମଧ୍ୟ ତାହା ଆମ ବ୍ୟବସ୍ଥାରେ ଅକ୍ଲେଶରେ ହୋଇପାରେ ନାହିଁ । ସାମାଜିକ ଭେଦଭାବ ପୂର୍ଣ୍ଣ ଏକ ରାଷ୍ଟ୍ରରେ ରାଜନୈତିକ ଗଣତନ୍ତ୍ର ସାମାଜିକ ସ୍ତରକୁ ପୂର୍ଣ୍ଣ ପ୍ରସାରିତ ହୋଇପାରୁ ନାହିଁ । ମଧ୍ୟଯୁଗୀୟ ମାନସିକତାରୁ ଆମ ସାମାଜିକ ବ୍ୟବସ୍ଥା ସମ୍ପୂର୍ଣ୍ଣ ମୁକ୍ତ ହୋଇନାହିଁ । ଜାତି, ଧର୍ମ ନାମରେ ଉଚ୍ଚ-ନୀଚ ମନୋଭାବ ଓ ବିଦ୍ୱେଷ ଭାବ ଆମର ସାମାଜିକ ଦୃଶ୍ୟପଟ୍ଟରେ ଭରପୂର ହୋଇରହିଛି । ମାନବିକ ମର୍ଯ୍ୟାଦାର ଦୃଷ୍ଟିଭଙ୍ଗୀ ଆମର ସାମାଜିକ ସମ୍ବନ୍ଧ ସ୍ତରରେ ପ୍ରତିଫଳିତ ହେଉନାହିଁ । ଯୁଗ ଯୁଗର ଅନ୍ଧ ସଂସ୍କାରରୁ ଆମେ ମୁକ୍ତ ହୋଇପାରି ନାହୁଁ । ପ୍ରହେଳିକାର ବିଷୟ ପରମ୍ପରାର ଦୁହାଇଦେଇ ଆଧୁନିକ ବିଜ୍ଞାନର ସାଧନ ସକଳକୁ କୁସଂସ୍କାରର ପ୍ରସାର ଦିଗରେ ବିନିଯୋଗ କରାଯାଉଛି ।

ତେବେ ଆଶ୍ୱାସନର ବିଷୟ ଆମ ଦେଶରେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଛି ଓ ଆମର ରକ୍ଷଣଶୀଳ ମାନସିକତା ସତ୍ତ୍ୱେ ଧର୍ମନିରପେକ୍ଷ ମୂଲ୍ୟବୋଧକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବେ ଦେଶର ସମ୍ବିଧାନ ଗ୍ରହଣ କରିଛି । ଶିକ୍ଷାର ପ୍ରସାର ସହ ଧୀରେ ଧୀରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ଅଧିକାର ନେଇ ସଚେତନତା ପ୍ରକାଶ ପାଉଛି । ଏହି ସକାରାତ୍ମକ ଅଗ୍ରଗତି ହୁଏତ ଭବିଷ୍ୟତରେ ଆମ ଦୃଷ୍ଟିଭଙ୍ଗୀରେ ଓ ନୈତିକ ବିଚାରବୋଧ ସ୍ତରରେ ଗୁଣାତ୍ମକ ପରିବର୍ତ୍ତନ ସୃଷ୍ଟି କରିବ । ଏହି ମୂଲ୍ୟବୋଧ ସକଳକୁ ଜାତୀୟ ଜୀବନରେ ସାର୍ବଜନୀନ କରିବା ପାଇଁ ଆମକୁ ଅନେକ ଦୂର ଯିବାକୁ ହେବ । (୨୯.୯.୧୦)



# ନୈତିକ ଚେତନାର ମାନବିକ ରୂପ

ନୈତିକ ଜୀବନ ପାଇଁ ବ୍ୟକ୍ତିକୁ କେଉଁଠାରୁ ପ୍ରେରଣା ମିଳେ ? ଧାର୍ମିକ ବିଶ୍ୱାସ ଅନୁଯାୟୀ ଈଶ୍ୱର ବିଶ୍ୱାସ ହିଁ ବ୍ୟକ୍ତିକୁ ନୈତିକ ଜୀବନ ପାଇଁ ପ୍ରେରଣା ଦେଇଥାଏ ଓ ଈଶ୍ୱର ବିଶ୍ୱାସର ଅଭାବରେ ବ୍ୟକ୍ତିର ନୈତିକ ଜୀବନ ଶୃଙ୍ଖଳିତ ହୋଇପାରେ ନାହିଁ । ଏହି ବିଚାର ଯଥାର୍ଥ କି ? ବାସ୍ତବ ଅନୁଭୂତିରେ ଆମେ ଦେଖୁ ଯେ ସମାଜର ବହୁ ବ୍ୟକ୍ତି ଈଶ୍ୱର ଓ ଧର୍ମରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରନ୍ତି ଅଥଚ ବ୍ୟକ୍ତିଗତ ଆଚରଣରେ ନାନା ଗର୍ହିତ ଓ ଅନୈତିକ କାର୍ଯ୍ୟ ମଧ୍ୟ କରନ୍ତି । ଆମ ଚତୁଃପାର୍ଶ୍ୱରେ ଆମେ ଅନେକ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ କେତେ ପୂଜାସ୍ଥଳକୁ ଯାଇ ପ୍ରାର୍ଥନା କରନ୍ତି, ହେଲେ ସାମାଜିକ କର୍ତ୍ତବ୍ୟ କ୍ଷେତ୍ରରେ କୌଣସି ସାଧୁତା ଅବଲମ୍ବନ କରନ୍ତି ନାହିଁ । ଜଣେ ସରକାରୀ କର୍ମଚାରୀ ହୁଅନ୍ତୁ, ବ୍ୟବସାୟୀ ହୁଅନ୍ତୁ ବା ସାଧାରଣ ବ୍ୟକ୍ତି ହୁଅନ୍ତୁ ଅନେକ ବ୍ୟକ୍ତି ପନ୍ଥାର ପବିତ୍ରତାକୁ ରକ୍ଷା କରିବା ଦୂରର କଥା ସେଥିରେ ବିଶ୍ୱାସ ବି କରନ୍ତି ନାହିଁ । ସେମାନେ କେତେ ଢଙ୍ଗରେ ପୂଜା କରନ୍ତି କିନ୍ତୁ ଲାଞ୍ଚ ନିଅନ୍ତି, ବ୍ୟବସାୟରେ ଅସାଧୁ ପନ୍ଥା ଅବଲମ୍ବନ କରନ୍ତି, ସରକାରଙ୍କୁ କର ଫାଙ୍କନ୍ତି ଇତ୍ୟାଦି । ଏସବୁକୁ ସୁଚାରୁରୂପେ କରି ଧରା ନପଡ଼ିବାକୁ ପ୍ରାର୍ଥନା କରନ୍ତି । ଦିଅଁଙ୍କ ପାଖରେ ନଡ଼ିଆ ବାଡ଼ାନ୍ତି, ଦୀପ ଜାଳନ୍ତି ଓ କେତେ ମାନସିକ କରନ୍ତି । ଏପରିକି ସମାଜରେ ଏପରି ମଧ୍ୟ ଲୋକ ଆମେ ଆମ ଚାରିପାଖରେ ଦେଖେ ଯେଉଁମାନେ ଧାର୍ମିକ ବିଶ୍ୱାସ ଦ୍ୱାରା ପରିଚାଳିତ ହୋଇ ଅନ୍ୟକୁ ନ୍ୟୂନ ମନେକରନ୍ତି, ସାମାଜିକ ଭେଦଭାବରେ ବିଶ୍ୱାସ କରନ୍ତି ଓ ଅନ୍ୟ ଧର୍ମର ଲୋକଙ୍କ ପ୍ରତି ଘୃଣାଭାବ ପୋଷଣ କରନ୍ତି । ସେମାନେ ନିଜର କଳ୍ପିତ ଈଶ୍ୱର ଓ ପୂଜାସ୍ଥଳକୁ ପବିତ୍ର ମନେକରିବା ବେଳେ ଅନ୍ୟର ଈଶ୍ୱର ଓ ପୂଜାସ୍ଥଳକୁ ନଷ୍ଟ କରିବାକୁ କୁଣ୍ଠାବୋଧ କରିନ୍ତି ନାହିଁ । ତେବେ ସମାଜରେ ଏପରି ଲୋକ ମଧ୍ୟ ଦେଖାଯା'ନ୍ତି ଯେଉଁମାନେ କୌଣସି ପୂଜାସ୍ଥଳକୁ ଯାଇ ପ୍ରାର୍ଥନା କରନ୍ତି ନାହିଁ, ଧାର୍ମିକ ଆବେଗରେ ପରିଚାଳିତ ହୁଅନ୍ତି ନାହିଁ, ପରନ୍ତୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉଚ୍ଚ ନାଗରିକ ନୈତିକ ଶୃଙ୍ଖଳା ମାନନ୍ତି, ମଣିଷର ମର୍ଯ୍ୟାଦାକୁ ସମ୍ମାନ କରନ୍ତି ଓ କୌଣସି ପ୍ରକାର ଭେଦଭାବରେ ବିଶ୍ୱାସ କରନ୍ତି

ନାହିଁ । ଆମେ ଏପରି ଅନେକ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ଧର୍ମ, ଈଶ୍ୱରଙ୍କ ବିଷୟରେ ବହୁ କଥା କୁହନ୍ତି ଅଥଚ ଅନୈତିକ କାର୍ଯ୍ୟରେ କୌଣସି ବିରୋଧାଭାସ ଦେଖନ୍ତି ନାହିଁ । ଏପରିକି ଅନ୍ୟାୟ ଉପାୟରେ ଅର୍ଥ ଉପାର୍ଜନ କରିବାବେଳେ ସେମାନେ ବିବେକର ଦଂଶନ ପାଇବା ପରିବର୍ତ୍ତେ ବରଂ ନିଜର 'ପାରିବା ପଣିଆ' ନେଇ ଗର୍ବ ଅନୁଭବ କରନ୍ତି ଓ ଏପରିକି ଆତ୍ମସନ୍ତୋଷ ଲାଭ କରନ୍ତି । ଗୋଟିଏ ପଟରେ ଈଶ୍ୱର ବିଶ୍ୱାସକୁ ଏକ ବ୍ୟକ୍ତିଗତ ବିଶ୍ୱାସ କହି ସେଥିରୁ ମୁକ୍ତ ଥିବା କିଛି ପ୍ରତିଭାବାନ ଓ ପ୍ରଜ୍ଞାବାନ ବ୍ୟକ୍ତି ନିଜର ବ୍ୟକ୍ତିଗତ ଜୀବନରେ ଉଚ୍ଚ ନୈତିକ ଶୃଙ୍ଖଳା ରକ୍ଷା କରିବାବେଳେ ସମାଜର ବହୁ ଲୋକ ଈଶ୍ୱର ବିଶ୍ୱାସରୁ ପ୍ରେରଣା ନେଇ ଗର୍ହିତ କାର୍ଯ୍ୟରେ ବ୍ରତୀ ହେବା ସାଧାରଣ ଘଟଣା । ସୁତରାଂ ଈଶ୍ୱର ଭାବନା ଓ ନୈତିକତା ଭିତରେ ଯେ କୌଣସି ସମ୍ବନ୍ଧ ନାହିଁ ଏହା ସାଧାରଣ ଅନୁଭବରେ ଓ ଦାର୍ଶନିକ ଚିନ୍ତନରେ ଏକ ପ୍ରତିପାଦ୍ୟ ବିଷୟ । ସ୍ଥଳ ବିଶେଷରେ ନୈତିକତା ଓ ଈଶ୍ୱର ବିଶ୍ୱାସ ଭିତରେ କେବଳ ମନସ୍ତାତ୍ତ୍ୱିକ ସମ୍ବନ୍ଧ ରହିପାରେ, କିନ୍ତୁ ଈଶ୍ୱର ଓ ନୈତିକତା ବୈଚାରିକ ସ୍ତରରେ ପୃଥକ ଭାବନା ଓ ଏହି ଦୁଇ ଭାବନା ଭିତରେ କୌଣସି ତର୍କ ସଂଗତ ସମ୍ବନ୍ଧ ନାହିଁ ।

ପ୍ରଶ୍ନ ହେବ-ନୈତିକତାର ଆଧାର କ'ଣ ? ନୈତିକତାର ଆଧାର ଭକ୍ତିନିଷ୍ଠ ନ ହୋଇ ଯୁକ୍ତିନିଷ୍ଠ ହେଲେ ଏହାର ଯେ ସକାରାତ୍ମକ ପ୍ରଭାବ ରହିବ ଏହା କୁହାଯାଇପାରେ । ନୈତିକ ଜୀବନଦୃଷ୍ଟି ବା ନୈତିକ ଆଚରଣର ଅନ୍ତର୍ନିହିତ ପବିତ୍ରତା ଉପରେ କେହି ବିଶ୍ୱାସ କଲେ କିମ୍ବା ନୈତିକ ଆଚରଣ ଯେ ସଭ୍ୟ ଜୀବନର ପରିମାପକ ଏହା ଗ୍ରହଣ କଲେ ହୁଏତ ନୈତିକ ଆଚରଣ ପାଇଁ ଜଣେ ଅଭିନିବେଶ ପାଇଥାଏ । କିମ୍ବା ନୈତିକ ଆଚରଣ ଓ ପନ୍ଥାର ପବିତ୍ରତା ଦ୍ୱାରା ସାମାଜିକ ଶାନ୍ତି ଓ ସଦ୍‌ଭାବନା ସୁଦୃଢ଼ ହୋଇପାରିବ ଏବଂ ସାମାଜିକ ଜୀବନରେ ଶୃଙ୍ଖଳା ରହିଲେ ବ୍ୟକ୍ତି ସୁଖ ଶାନ୍ତିରେ ରହିପାରିବ ଏହି ବିଶ୍ୱାସରୁ ଜଣେ ନୈତିକ ଆଚରଣ ପ୍ରତି ଗଭୀର ଶ୍ରଦ୍ଧା ପ୍ରଦର୍ଶନ କରିପାରିବ । ସୁତରାଂ ନୈତିକ ଜୀବନ ପାଇଁ ପ୍ରେରଣା ଅନେକ ସ୍ତରରୁ ଆସିପାରେ ଓ ଏହା ଯୁକ୍ତିଶୀଳ ଆଧାର ଉପରେ ପ୍ରତିଷ୍ଠିତ ହେଲେ ଏହାର ସ୍ଥାୟୀ ପ୍ରଭାବ ରହିଥାଏ ।

ପୁନଶ୍ଚ ଏହା ଏକ ଐତିହାସିକ ସତ୍ୟ ଯେ ଆମ ସଂସାରରେ ଧର୍ମ ଈଶ୍ୱରଙ୍କୁ ନେଇ ନାନା ବିଭୀଷିକା ସୃଷ୍ଟି ହୋଇଛି । ଧର୍ମକୁ ଆଳକରି ଦେଶର ବିଭାଜନ ହୋଇଛି, ପଶୁତ୍ୱର ଆବେଗ ସୃଷ୍ଟି ହୋଇଛି । ସମାଜ ଭାଗ ଭାଗ ହୋଇଛି । ଧର୍ମ ଓ ଈଶ୍ୱରଙ୍କୁ ଆଳକରି ନାନା ଅଧର୍ମ, ଅନ୍ୟାୟ ଓ ଅମାନବିକତାର ଝଡ ମଣିଷ ହିଁ

ସୃଷ୍ଟି କରିଛି । ଧର୍ମାନ୍ଧ ଲୋକମାନେ ମତୁଆଲା ହୋଇ ଅନ୍ୟର ସଂସାରକୁ ଉଚ୍ଛନ୍ନ କରିଦେଇଛନ୍ତି ଓ ଅନ୍ୟର ରକ୍ତରେ ହୋରି ଖେଳିଛନ୍ତି । ପ୍ରତ୍ୟେକ ଧର୍ମରେ କିଛି ଉଦାରବାଦୀ ବ୍ୟକ୍ତି ରହିଛନ୍ତି ଯେଉଁମାନେ ଧର୍ମକୁ ମାନବିକତାର ମନ୍ତ୍ରରେ ପ୍ଲାବିତ କରିବାକୁ ପ୍ରୟାସ କରିଛନ୍ତି । ସେମାନେ ମନୁଷ୍ୟବାଦୀ ଧର୍ମର ପରିକଳ୍ପନା କରିଛନ୍ତି ଓ ଏପରିକି ନିଜ ଧର୍ମର ଧର୍ମାନ୍ଧତା ବିରୋଧରେ ଲଢେଇ କରିଛନ୍ତି । ତେବେ ସାମ୍ପ୍ରଦାୟିକତାର ଯେଉଁ ଝଡ଼ ଇତିହାସର ବିଭିନ୍ନ କାଳଖଣ୍ଡରେ ସୃଷ୍ଟି ହୋଇଛି ସେଥିରେ ସମାଜର ସାଧାରଣ ମଣିଷମାନେ ସର୍ବସ୍ୱାନ୍ତ ଓ ଆହତ ହୋଇଛନ୍ତି ।

ଏହି ପରିପ୍ରେକ୍ଷୀରେ ଧର୍ମନିରପେକ୍ଷତା ଏକ ମହତ୍ତର ମୂଲ୍ୟବୋଧ ଭାବେ ମାନବିକ ସମ୍ପ୍ରୀତିର ପ୍ରତୀକ ହୋଇରହିଛି । ସୁତରାଂ ନୈତିକ ଚେତନାର ବିକାଶ କ୍ଷେତ୍ରରେ 'ନିରପେକ୍ଷ ମାନବବାଦ' ସବୁଠାରୁ ବଡ ଆଦର୍ଶ ଭାବେ ସ୍ୱୀକୃତ ହୋଇଛି । ସବୁ ଯୁଗରେ ମାନବବାଦୀମାନେ ମଣିଷ ସମାଜରେ ଥିବା ରାଶି ରାଶି ଅନ୍ୟାୟ, ଶୋଷଣ, ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ସେମାନେ ବିଶ୍ୱାସ କରିଛନ୍ତି ଯେ, ମଣିଷର ପ୍ରୟାସ ଓ ସଦ୍‌ଭାବନା ଦ୍ୱାରା ଆମ ସଂସାର ଅଧିକ ପ୍ରୀତିମୟ ହୋଇପାରିବ । ସେମାନେ ଜୀବନର ମହତ୍ତର ଆବେଗଗୁଡିକର ବିକାଶକୁ ଗୁରୁତ୍ୱ ଦେଇ ଆସିଛନ୍ତି । ଆମ ସଂସାରରେ ହିଂସ୍ର, ନୈରାଶ୍ୟବାଦୀ, ଅତ୍ୟାଚାରୀ ଓ ପରପୀଡାରେ ସନ୍ତୋଷ ଲାଭ କରୁଥିବା ମଣିଷ ଯେପରି ରହିଛନ୍ତି ସେହିପରି ଅଛନ୍ତି ଦରଦୀ, ସାହାଯ୍ୟକାରୀ, ସମ୍ବେଦନଶୀଳ ଓ ଅନ୍ୟର ଦୁଃଖକୁ ନିଜର ଦୁଃଖ ବୋଲି ଅନୁଭବ କରୁଥିବା ବହୁ ମଣିଷ । ଏହି ସମ୍ବେଦନଶୀଳ ବ୍ୟକ୍ତିମାନେ ଆମ ସଂସାରରେ ସୁଖ, ଶାନ୍ତି ଓ ସଦ୍‌ଭାବନାର ବାର୍ତ୍ତା ନେଇ ଆସିଛନ୍ତି ଓ ମଣିଷ ଭିତରେ ଏକ ଉନ୍ନତ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ଗଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ସେମାନେ ଏକ ସୁନ୍ଦର ବିଶ୍ୱର କଳ୍ପନା କରିଛନ୍ତି । ଏକ ହିଂସାରହିତ, ଅଧିକ ମାନବିକ, ନ୍ୟାୟପୂର୍ଣ୍ଣ ଓ ପ୍ରୀତିମୟ ସଂସାରର ସ୍ୱପ୍ନରେ ବିଭୋର ହୋଇଛନ୍ତି । ଈଶ୍ୱର ଓ ଧର୍ମର ପ୍ରେରଣାରୁ ଏହା ସମ୍ଭବ ନୁହେଁ ବୋଲି ସେମାନେ ବିଶ୍ୱାସ କରିଛନ୍ତି । ବରଂ ବିଜ୍ଞାନ, ନୈତିକତା, ଏକ ଉନ୍ନତ ଜୀବନଦର୍ଶନ ଓ କଳାତ୍ମକ ଅଭିଭକ୍ତି ହିଁ ସେମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛି । ଆଧୁନିକ ବିଜ୍ଞାନ ଦ୍ୱାରା ଆମ ସଂସାରରୁ ଦାରିଦ୍ର୍ୟ, ରୋଗ ଓ ଯନ୍ତ୍ରଣାକୁ ଦୂର କରାଯାଇପାରିବ । ଆଧୁନିକ ବିଜ୍ଞାନକୁ ବିଶ୍ୱ ହିତ ଦିଗରେ ବିନିଯୋଗ କରିବା ସହ ଆମ ସଂସାରରୁ ହିଂସା, ଯୁଦ୍ଧ, ଅବିଶ୍ୱାସର ବାତାବରଣକୁ ଦୂରକଲେ ଜୀବନ ଅଧିକ ପ୍ରୀତିମୟ ହୋଇପାରନ୍ତା । ଯୁଦ୍ଧର ଆଶଙ୍କା ଓ ରାଷ୍ଟ୍ରମାନଙ୍କର ପ୍ରତିରକ୍ଷା ବ୍ୟୟକୁ ସାମାଜିକ ହିତ ଦିଗରେ ବିନିଯୋଗ କରିପାରିଲେ ସମ୍ଭବତଃ ଆମ ସଂସାରରୁ ସମସ୍ତ

ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି ଦୂର ହୋଇପାରନ୍ତା ଓ ସବୁ ମଣିଷ ଉନ୍ନତ ସ୍ୱାସ୍ଥ୍ୟସେବାର ସୁଯୋଗ ପାଇପାରନ୍ତେ । ଏହି ପୃଷ୍ଠଭୂମିରେ ଏକ ଶୋଷଣମୁକ୍ତ ଓ ସମତାଭିତ୍ତିକ ବିଶ୍ୱର ପରିକଳ୍ପନା ପାଇଁ ଆବଶ୍ୟକ ଏକ ମାନବଧର୍ମୀ ଜୀବନ-ଦର୍ଶନ । ସେହିପରି ଆମ ସଂସାରରେ ଯେଉଁ କଳାତ୍ମକ ସୃଜନଶୀଳତା ରହିଛି, ତାହା ଆମ ଜୀବନକୁ ଅଧିକ ସରସ ସୁନ୍ଦର କରିପାରିବ । ଏସବୁର ସମନ୍ୱିତ ପ୍ରଭାବରେ ଜୀବନ ଅଧିକ ପ୍ରୀତିମୟ ହୋଇପାରିବ ।

ସବୁ ସଂସ୍କୃତିରେ ମାନବଦରଦୀ ବୁଦ୍ଧିଜୀବୀମାନେ ଏହିପରି ଏକ ସୁନ୍ଦର ପୃଥିବୀର ସ୍ୱପ୍ନ ଦେଖିଛନ୍ତି । ଅତୀତରେ ତାହା ସମ୍ଭବ ହୋଇନାହିଁ । ସମ୍ପ୍ରତି ତାହାର ରୂପାୟନ ଆଧୁନିକ ବିଜ୍ଞାନ ଯୋଗୁ ସମ୍ଭବ ହେବାର ସମ୍ଭାବନା ସୃଷ୍ଟି ହୋଇଛି । ଏଥିପାଇଁ ଆବଶ୍ୟକ ଏକ ନୈତିକ ଚେତନାର ପ୍ରସାର । ବିଭିନ୍ନ ଧର୍ମ ଜୀବନର ଅନ୍ତିମ ଲକ୍ଷ୍ୟ ନେଇ କେତେ କେତେ କାଳ୍ପନିକ କାହାଣୀ ଶୁଣାଇଛନ୍ତି । କିନ୍ତୁ ମାନବବାଦୀ ନୈତିକ ଚେତନାର ଆଧାର ହେଉଛି ଆମର ଏହି ସଂସାରକୁ ଆମେ ଅଧିକ ପ୍ରୀତିମୟ କରିବା । ମୃତ୍ୟୁର ବାସ୍ତବତାକୁ ସ୍ୱୀକାର କରିବା, କିନ୍ତୁ ମଣିଷ ଜାତିର ସ୍ଥାୟିତ୍ୱକୁ ଗ୍ରହଣ କରିବା ଫଳରେ ମଣିଷ ଜାତି କିପରି ଅଧିକରୁ ଅଧିକ ଏକ ସୁଖମୟ ଶୃଙ୍ଖଳିତ ଓ ପ୍ରୀତିମୟ ପରିବେଶରେ ଜୀବନକୁ ଅଧିକ ସରସ, ସୁନ୍ଦର କରିପାରିବ ତାହା ବିଚାର କରିବା ଆବଶ୍ୟକ । ଆମ ସଂସାରରେ ବହୁ ଭାଷା, ଚଳଣି, ଧାର୍ମିକ ଆବେଗ, କଳାତ୍ମକ ଅନୁରାଗ ରହିବ, କିନ୍ତୁ ସବୁରି ଭିତରେ ଏକ ମହତ୍ତର ଚେତନାର ଅଭିବ୍ୟକ୍ତି ରହିଲେ ଆମର ବହୁତ୍ୱ ମାନବିକ ଏକତ୍ୱରେ ରୂପାନ୍ତରିତ ହୋଇପାରିବ । ଆମର ଶିକ୍ଷା, ସାଂସ୍କୃତିକ ବିଭବ, ରାଜନୈତିକ ଆଦର୍ଶ ଇତ୍ୟାଦିର ମୂଳ ଭିତ୍ତି ଏକ ମାନବବାଦୀ ଜୀବନଦର୍ଶନ ହେଲେ ଆମ ସଂସାରରେ ଚେତନାର ନବ ରୂପାନ୍ତର ହେବ । ଏହି ଉତ୍ତରଣ ନୈତିକ ଚେତନାର ମାନବିକ ରୂପ ମଧ୍ୟ ଦେଇ ରୂପରେଖ ନେଇପାରିବ । (୬.୧୦.୧୦)



# ଗାନ୍ଧୀ କ'ଣ କହିଥାନ୍ତେ ?

୨୦୧୦ ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀ ଦିନ ଭୁବନେଶ୍ୱରସ୍ଥିତ ଏକ ପବ୍ଲିକ୍ ସ୍କୁଲରେ ଗାନ୍ଧୀଜୟନ୍ତୀ ପାଳନ ପାଇଁ ଏକ ଅଭିନବ ଆଲୋଚନାଚକ୍ର ଆୟୋଜିତ ହୋଇଥିଲା । ସେହି ଆଲୋଚନାଚକ୍ରରେ ଜଣେ ବିଚାରପତି ହୋଇଥିଲେ ଓ ଗାନ୍ଧୀଙ୍କୁ ଏକ ବିଚାରାଳୟ ଭିତରେ ଛିଡା କରାଯାଇଥିଲା । ଓଡ଼ିଶାର ଜଣେ ବିଶିଷ୍ଟ ଗାନ୍ଧୀବାଦୀ ବୁଦ୍ଧିଜୀବୀ ଗାନ୍ଧୀ ଭୂମିକାରେ ଥିଲେ ଓ ପିଲାମାନେ ଗାନ୍ଧୀଙ୍କୁ ନାନା ପ୍ରଶ୍ନ ପଚାରିଥିଲେ ଓ ଏପରିକି ଗାନ୍ଧୀଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଥିଲେ । ଯିଏ ଗାନ୍ଧୀ ଭୂମିକାରେ ଥିଲେ ସେ ଗାନ୍ଧୀଙ୍କ ମାନଦଣ୍ଡରୁ ପ୍ରଶ୍ନମାନଙ୍କର ଉତ୍ତର ଦେଲେ ଓ ତା'ପରେ ଉପସ୍ଥିତ ଅତିଥିମାନେ କିଛି ଆଲୋଚନା କଲେ । ପିଲାମାନେ ଯେଉଁସବୁ ପ୍ରଶ୍ନ ପଚାରିଥିଲେ ତା' ଭିତରେ ତିନିଟି ପ୍ରଶ୍ନ ମୋତେ ଅଧିକ ଆକର୍ଷଣୀୟ ମନେ ହୋଇଥିଲା ଓ ମୋର କିଛି ମନ୍ତବ୍ୟ ମୁଁ ସେଠାରେ ରଖିଥିଲି । ସେହି ବକ୍ତବ୍ୟ ହିଁ ପାଠକଙ୍କର ବିଚାର ପାଇଁ ମୁଁ ଏଠାରେ ରଖୁଛି ।

ଜଣେ ବିଦ୍ୟାର୍ଥୀଙ୍କର ପ୍ରଶ୍ନ ଥିଲା-ବାବ୍ରୀ ମସ୍‌ଜିଦ୍ ଓ ରାମ ଜନ୍ମଭୂମି ପ୍ରସଙ୍ଗ ଉପରେ ଆଜି ଗାନ୍ଧୀ କ'ଣ କହିଥାନ୍ତେ ? ଏହା ସୁବିଦିତ ଯେ ଗାନ୍ଧୀ ନିଜକୁ ସନାତନୀ ହିନ୍ଦୁ କହୁଥିଲେ ଓ ହିନ୍ଦୁ ଧର୍ମ ଉପରେ ତାଙ୍କର ଗଭୀର ବିଶ୍ୱାସ ରହିଥିଲା । ଗାନ୍ଧୀ ଯେଉଁ ମାନସିକତାରେ ନିଜକୁ ହିନ୍ଦୁ କହୁଥିଲେ ବା ଧର୍ମରେ ବିଶ୍ୱାସ କରୁଥିଲେ ତାହାର ଆଧାର ଥିଲା ମାନବିକତା ଓ ନୈତିକତା । ତାଙ୍କ ପାଇଁ ଧର୍ମ ମାନବିକ ଉତ୍କର୍ଷରେ ରୂପାନ୍ତରିତ ହୋଇଥିଲା; ସାଂପ୍ରଦାୟିକତା ବା କେଉଁ ଧର୍ମକୁ ଘୃଣାରେ ନୁହେଁ । ତେବେ ବାବ୍ରୀ ମସ୍‌ଜିଦ ଓ ରାମ ଜନ୍ମଭୂମି ପ୍ରସଙ୍ଗ ଉପରେ ଆଜି ଗାନ୍ଧୀ ଥିଲେ କହିଥାନ୍ତେ-''ହେ ମୋର ହିନ୍ଦୁ ଭାଇମାନେ, ତୁମେମାନେ ମୁସଲମାନମାନଙ୍କ ପ୍ରାର୍ଥନା ପାଇଁ ଅଯୋଧ୍ୟାରେ ଗୋଟିଏ ମସ୍‌ଜିଦ୍ ନିର୍ମାଣ କରିଦିଅ ଓ ହେ ମୋର ମୁସଲମାନ ଭାଇମାନେ, ହିନ୍ଦୁମାନେ ସେମାନଙ୍କର ଭକ୍ତି-ନୈବେଦ୍ୟ ଅର୍ପଣ କରିବାକୁ ତୁମେମାନେ ଅଯୋଧ୍ୟାରେ ଗୋଟିଏ ରାମ ମନ୍ଦିର ନିର୍ମାଣ କରିଦିଅ । ହେ ଧର୍ମବିଶ୍ୱାସୀଗଣ, ଯଦି ଏହା କରିପାରିବ ତେବେ ତୁମେ ତୁମ ସଭ୍ୟ ଜୀବନଦୃଷ୍ଟିର ପରିଚୟ ଦେବା ସହ ତୁମ ଧର୍ମର ମହନୀୟତାକୁ ପ୍ରତିପାଦନ କରିପାରିବ ।'' ପ୍ରଶ୍ନ ହୋଇପାରେ ଗାନ୍ଧୀ ଏପରି କହିଥାନ୍ତେ ବୋଲି କିଛି ଆଧାର ଅଛି ନା ଏହା ଏକ କଳ୍ପନା ? ଏହାର ଅନେକ ଆଧାର ଥିବା ମୋର ମନେ ହୁଏ । ସ୍ୱାଧୀନତା

ସମୟରେ ସାଂପ୍ରଦାୟିକ ଦଙ୍ଗାର ଯେଉଁ ଭୟଙ୍କର ପରିବେଶ ସୃଷ୍ଟି ହୋଇଥିଲା, ସେଥିରେ ଗାନ୍ଧୀ ଯେଉଁ ଭୂମିକା ନିର୍ବାହ କରିଥିଲେ ସେଥିରୁ ତାଙ୍କର ମହନୀୟତାର ବହୁ ଉଦାହରଣ ଦେଖିବାକୁ ମିଳେ । କେତେକ ଜାଗାରେ ହିନ୍ଦୁମାନେ ଅଭିଯୋଗ କରିଥିଲେ ଯେ ମୁସଲମାନମାନେ ସେମାନଙ୍କର ପିଲାମାନଙ୍କୁ ହତ୍ୟା କରିଛନ୍ତି ଓ କେତେକ ଜାଗାରେ ମୁସଲମାନମାନେ ଅଭିଯୋଗ କରିଥିଲେ ଯେ ହିନ୍ଦୁମାନେ ସେମାନଙ୍କ ସଂସାରକୁ ଧ୍ୱଂସ କରି ଦେଇଛନ୍ତି । ସମସ୍ତଙ୍କ ଦୁଃଖରେ ସମଭାଗୀ ହୋଇ ଗାନ୍ଧୀ ପରାମର୍ଶ ଦେଇଥିଲେ- ''ହିନ୍ଦୁମାନେ ଅନାଥ ହୋଇଥିବା ମୁସଲମାନ ପିଲାଙ୍କର ଧାର୍ମିକ ସ୍ୱାଧୀନତା ରକ୍ଷା କରି ସେମାନଙ୍କୁ ଆପଣାର ଘରେ ଆଶ୍ରୟ ଦେଇ ମଣିଷ କରନ୍ତୁ ଓ ମୁସଲମାନମାନେ ସେହିପରି ଅସହାୟ ହୋଇଥିବା ହିନ୍ଦୁ ପିଲାମାନଙ୍କର ଦାୟିତ୍ୱ ନିଅନ୍ତୁ ।'' ଏହି ମାନବିକ ଆବେଦନ ଯେ ଏକ ମହାନ୍ ସଭ୍ୟ ମୂଲ୍ୟବୋଧ ତାହା ଗାନ୍ଧୀ କେବଳ ପ୍ରଚାର କରୁ ନଥିଲେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପ୍ରୟୋଗ କରିବାକୁ ପ୍ରୟାସ କରିଥିଲେ । ସହନଶୀଳତା, ଉଦାରତା, ମାନବିକ ସଂପ୍ରୀତି ହେଉଛି ସଭ୍ୟ ମୂଲ୍ୟବୋଧ କିନ୍ତୁ ହିଂସା, ପ୍ରତିହିଂସା ଓ ଘୃଣା ହେଉଛି ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ।

ଦ୍ୱିତୀୟ ପ୍ରଶ୍ନଟି ଥିଲା- ବର୍ତ୍ତମାନର ବିକାଶ ଓ ସମୃଦ୍ଧିକୁ ନେଇ । ଗାନ୍ଧୀ ଶିଳ୍ପ, କଳକାରଖାନା, ଆଧୁନିକ ପ୍ରଯୁକ୍ତିକୁ ବିରୋଧ କରୁ ନଥିଲେ କି ? ତାଙ୍କର ଗ୍ରାମ ସ୍ୱରାଜ ଭାବନା ଆଜିର ବିକାଶ ଓ ସମୃଦ୍ଧି ସହ ସମତାଳ କି ? ଗାନ୍ଧୀ ଯେଉଁ କାଳଖଣ୍ଡରେ ବଞ୍ଚିଥିଲେ ସେ ସମୟରେ ସାମ୍ରାଜ୍ୟବାଦୀ ଶୋଷଣ ଦ୍ୱାରା ସାରା ପୃଥିବୀରେ ଭୟଙ୍କର ବିଦ୍ୱେଷର ବାତାବରଣ ରହିଥିଲା । ଏହା ସହିତ ଅର୍ଥନୈତିକ ଶୋଷଣ ପାଇଁ ସାମ୍ରାଜ୍ୟବାଦର ବିସ୍ତାର କରିବାକୁ ଉନ୍ନତ ଦେଶମାନଙ୍କରେ ତିକ୍ତତା ରହିଥିଲା ଓ ତା'ର ପରିଣାମ ହୋଇଥିଲା ଦୁଇ ଦୁଇଟି ବିଶ୍ୱଯୁଦ୍ଧ । ଏହି ପରିବେଶରେ ଏକ ଶୋଷଣହୀନ ସ୍ୱାବଲମ୍ବୀ ବ୍ୟବସ୍ଥାକୁ ଗାନ୍ଧୀ ସମର୍ଥନ କରୁଥିଲେ । ତାଙ୍କର ବିଚାର ଥିଲା ଯେ ଏକ ଗ୍ରାମୀଣ ପରିବେଶରେ ସ୍ୱଳ୍ପ ଆବଶ୍ୟକତା ଭିତରେ ଏକ ସୁନ୍ଦର ଓ ପ୍ରୀତିପଦ ଜୀବନ ବଞ୍ଚିହେବ । ତେବେ ସଭ୍ୟତାର ବିକାଶଧାରାରେ ମଣିଷ ନିଶ୍ଚୟ ଜ୍ଞାନ ବିଜ୍ଞାନରେ ଆଗକୁ ଯିବ ଓ ଜୀବନର ଭୌତିକ ମାନକୁ ଉନ୍ନତ କରିବ । ଗାନ୍ଧୀ ଯୁଗର ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞ ଓ ଗାନ୍ଧୀଙ୍କ ଅନୁଗାମୀ କୁମାରପ୍ପା ଯେଉଁ ବିକଳ୍ପ ବିକାଶର ଚିତ୍ର ଦେଇଛନ୍ତି ଓ ଯାହା ପ୍ରତି ଗାନ୍ଧୀଙ୍କର ପୂର୍ଣ୍ଣ ସମର୍ଥନ ଥିଲା ତାହା ଯଥାର୍ଥରେ ବିଚାର୍ଯ୍ୟ । ସମୃଦ୍ଧିର ଏକ ମାନବିକ ଦିଗ ଉପରେ କୁମାରପ୍ପା ଗୁରୁତ୍ୱ ଦେଇଥିଲେ । ବିକାଶ ଦ୍ୱାରା ଯଦି ଆମେ ବିନାଶର ନିକଟତର ହେଉ ତେବେ ତାହା ପ୍ରକୃତ ସମୃଦ୍ଧି ନୁହେଁ । ସକଳ ସମୃଦ୍ଧି ଏକ ନିରନ୍ତର ବା ସଷ୍ଟେନବୁଲ ବିକାଶ ହେବା ଆବଶ୍ୟକ । ପୁନଶ୍ଚ ଏହା ପରିବେଶ-ଉପଯୋଗୀ ହେବା ଦରକାର । ଅଧିକନ୍ତୁ ଏହା ସମାଜରେ ଧନୀ ଗରିବ ଭିତରେ ବିଶାଳ ପ୍ରଭେଦ ସୃଷ୍ଟି କରିବା ଯଥାର୍ଥ ନୁହେଁ ।

ସୁତରାଂ ଆଜିର ବିକାଶ କେତେ ଦୂର ଏକ ନିରନ୍ତର ଧାରା, କେତେଦୂର ପରିବେଶ ଅନୁକୂଳ ଓ କେତେଦୂର ସମତାଭିତ୍ତିକ ତାହା ବିଚାର କରିବା ଆବଶ୍ୟକ । ଯଦି ସମୃଦ୍ଧି ଭବିଷ୍ୟତର ମଣିଷ ଜାତି ପାଇଁ ଏକ ଭୟଙ୍କର ଚିତ୍ର ଦିଏ, ପରିବେଶକୁ ବିଷାକ୍ତ କରିଦିଏ ଓ ମୁଷ୍ଟିମେୟଙ୍କର ପ୍ରାଚୁର୍ଯ୍ୟ, ବିଳାସ ବଢ଼ାଇବା ସହିତ ଅଗଣିତ ମଣିଷଙ୍କୁ ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା ଓ ଅଧିକାରରୁ ବଞ୍ଚିତ କରେ ତାହା ଯଥାର୍ଥରେ ବିକାଶ ନୁହେଁ । ସୁତରାଂ ଗାନ୍ଧୀ ବିକାଶର ବିରୋଧୀ ନ ଥିଲେ ବରଂ ବିକାଶକୁ ଏକ ମାନବିକ ରୂପ ଦେବାକୁ ଚାହୁଁଥିଲେ । କେବଳ ଗାନ୍ଧୀ ନୁହନ୍ତି, ଅନେକ ଗାନ୍ଧୀବାଦୀ ଅର୍ଥନୀତି ସହିତ ନୈତିକ ଜୀବନଦୃଷ୍ଟିର ସମନ୍ୱୟ ଆଣିବାକୁ ପ୍ରୟାସ କରିଥିଲେ ।

ତୃତୀୟ ପ୍ରଶ୍ନଟି ଥିଲା-ବର୍ତ୍ତମାନର ହିଂସା ପ୍ରବଣ ସମାଜରେ ଅହିଂସାର ଉପଯୋଗିତା କିପରି ରହିଛି ! ଅହିଂସା ଦ୍ୱାରା ହିଂସାକୁ ପ୍ରତିରୋଧ କରାଯାଇ ପାରିବ କି ? ଏହି ପୃଷ୍ଠଭୂମିରେ ଏହା ଅନସ୍ୱୀକାର୍ଯ୍ୟ ଯେ ସଭ୍ୟତାର ଆରମ୍ଭ କାଳରୁ ସମାଜରେ ଓ ପୃଥିବୀରେ ହିଂସାର ପରିବେଶ ଲାଗି ରହିଛି । ପୁରାଣର କାହାଣୀ ଭିତରେ ହେଉ ବା ମଣିଷ ସମାଜର ଇତିହାସରେ ହେଉ ଯୁଦ୍ଧ ତ ହିଂସାର ଏକ ଅଭିବ୍ୟକ୍ତି, ତେବେ ସମାଜରେ ନାନା ଭାବରେ ଓ ନାନାରୂପରେ ହିଂସା ରହିଛି । ତେବେ ଅତୀତରେ ଜାତି, ଧର୍ମ, ରାଜ୍ୟବିସ୍ତାର ଇତ୍ୟାଦି ନାନା କାରଣରୁ ରାଜ୍ୟ-ରାଜ୍ୟ ବା ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଯୁଦ୍ଧ ହେଉଥିଲା । ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ଯୁଦ୍ଧ ଯେଉଁ ଭୂଖଣ୍ଡରେ ହେଉଥିଲା, ସେହି ଭୌଗୋଳିକ ପରିବେଶ ଓ ଦୁଇଟି ଅଞ୍ଚଳରେ ଯାହା କ୍ଷୟକ୍ଷତି ହେଉଥିଲା, ତାହା ସମଗ୍ର ମଣିଷ ଜାତିର କ୍ଷତିସାଧନ କରୁନଥିଲା । କିନ୍ତୁ ବିଂଶ ଶତାବ୍ଦୀର ଦୁଇଟି ବିଶ୍ୱଯୁଦ୍ଧ ପରଠାରୁ ଯେଉଁ ସଭ୍ୟତା-ବିଧ୍ୱଂସୀ ମାରଣାସ୍ତ୍ର ପୃଥିବୀର ବିଭିନ୍ନ ରାଷ୍ଟ୍ର ନିର୍ମାଣ କରିଛନ୍ତି, ତାହାର କ'ଣ ପ୍ରଭାବ ରହିବ ତାହା ସହଜରେ ଅନୁମେୟ । ଯଦି କୌଣସି କାରଣରୁ ଯୁଦ୍ଧର ପରିବେଶ ଆସେ ଓ ଅଣୁ ଅସ୍ତ୍ରର ପ୍ରୟୋଗ ହୁଏ ତେବେ ସାରା ପୃଥିବୀ ଧ୍ୱଂସ ସ୍ତୂପରେ ପରିଣତ ହୋଇଯିବ । ଏହିପରି ଏକ ସ୍ଥିତିରେ ଯୁଦ୍ଧଜନିତ ହିଂସା ଯେ ମଣିଷ ସଭ୍ୟତାର ମୃତ୍ୟୁ ଘଣ୍ଟି ବଜାଇବ ଏହା ନିଃସନ୍ଦେହ ମନେହୁଏ । ଗାନ୍ଧୀ ଯେଉଁ ଅହିଂସାର ପ୍ରବକ୍ତା ଥିଲେ ତାହା ଅନ୍ୟ କେତେକ ମୂଲ୍ୟବୋଧ ସହ ସଂଶ୍ଳିଷ୍ଟ । ସେହି ମୂଲ୍ୟବୋଧ ଭିତରେ ପ୍ରେମ, ସମତା ଓ ବ୍ୟକ୍ତି ମର୍ଯ୍ୟାଦା ସଂଶ୍ଳିଷ୍ଟ । 'ପ୍ରେମ' ଏକ ମହତ୍ତର ମୂଲ୍ୟବୋଧ ଯାହା ସମାଜରେ ମଣିଷକୁ ଉନ୍ନତ ଓ ସଂସ୍କୃତିସମ୍ପନ୍ନ କରାଏ । ଯେ କୌଣସି ଭେଦଭାବ ପ୍ରେମ ବା ସଂପ୍ରୀତିର ପ୍ରତିକୂଳ । ଦୁଃଖର ବିଷୟ ଜାତି, ଧର୍ମ, ଭାଷା, ଜାତୀୟତା, ପରମ୍ପରା, ସଂସ୍କୃତି ଜନିତ ଅସ୍ମିତାକୁ ନେଇ ଆମ ସଂସାରରେ ଏତେ ଭେଦଭାବ ଜନିତ ମାନସିକତା ରହିଛି ଯାହା ମଣିଷ ମଣିଷ ଭିତରେ ଘୃଣା ଓ ବିଦ୍ୱେଷ ସୃଷ୍ଟି କରିଥାଏ । ସେହି ଭେଦଭାବ ଜନିତ ଦୃଷ୍ଟିକୋଣର ଊର୍ଦ୍ଧ୍ୱକୁ ଯାଇ ସାରା ମଣିଷ ଜାତିକୁ ପ୍ରେମର ଦୃଷ୍ଟିରେ ଦେଖିବା ଏକ ମହତ୍ତର ଜୀବନଦୃଷ୍ଟି ।

ଏହି ଦୃଷ୍ଟିଭଙ୍ଗୀର ଅନ୍ୟ ଏକ ଅଭିବ୍ୟକ୍ତି ହେଉଛି ସମତାଭାବ । ସମତାର ନାନା ଦିଗନ୍ତ ଭିତରେ ଏହାର ଏକ ମୌଳିକ ତାତ୍ପର୍ଯ୍ୟ ହେଉଛି ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାକୁ ସ୍ୱୀକାର କରିବା । ପ୍ରତ୍ୟେକ ମଣିଷ ଯେ କୌଣସି ସାମାଜିକ ପରିଚୟ ନେଇ ଏକ ମର୍ଯ୍ୟାଦାବାନ ବ୍ୟକ୍ତି ଭାବରେ ଜୀବନ ବଞ୍ଚିବା ତା'ର ଏକ ଜନ୍ମଗତ ଅଧିକାର । ଏହି ମୂଲ୍ୟବୋଧ ଯେତେ ସାର୍ବଜନୀନ ହେବ ସଭ୍ୟତାର ସେତିକି ଗୁଣାତ୍ମକ ଉତ୍ତରଣ ଘଟିବ । ମୋଟ ଉପରେ ସମାଜରେ ହିଂସା ଏକ ଆଦର୍ଶ ନୁହେଁ, ବରଂ ଅହିଂସା ଏକ ଆଦର୍ଶ, ଏକ ମୂଲ୍ୟବୋଧ । ପୁନଶ୍ଚ ଅହିଂସା ଓ ସାମାଜିକ ନ୍ୟାୟ ପରସ୍ପରର ପରିପୂରକ । ଗୋଟିକର ଅଭାବରେ ଅନ୍ୟଟିର ଭିତ୍ତି ସୁଦୃଢ ହେବ ନାହିଁ । ମୋଟ ଉପରେ କହିଲେ ଅହିଂସା ଅନେକ ମୂଲ୍ୟବୋଧର ଆଧାର । ପରନ୍ତୁ ହିଂସାର ଅଭିବ୍ୟକ୍ତି ନାନା ଭାବରେ ହେବା ସମ୍ଭବ । ତେବେ ହିଂସା କେବେ ବି ଏକ ସଭ୍ୟ-ମୂଲ୍ୟବୋଧ ନୁହେଁ, ବରଂ ଅହିଂସା ହିଁ ଏକ ସଭ୍ୟ ଦୃଷ୍ଟି ଓ ସଭ୍ୟତାର ବିକାଶ ପାଇଁ ଅବଶ୍ୟମ୍ଭାବୀ ।

ଏକଥା ସତ୍ୟ ଗାନ୍ଧୀଙ୍କର କେତେକ ବିଚାର କ୍ଷେତ୍ରରେ ଅସ୍ପଷ୍ଟତା ବା ତ୍ରୁଟି ରହିଥିଲା । ତାଙ୍କର ବ୍ୟକ୍ତିଗତ ଜୀବନରେ ସେ ବାପା ହିସାବରେ ଅସଫଳ ହୋଇଛନ୍ତି ଓ ନିଜର ପୁତ୍ର ରାମଦାସଙ୍କୁ ବି ପ୍ରଭାବିତ କରିପାରି ନାହାନ୍ତି । କେତେକ ନିଷ୍ପତ୍ତି କ୍ଷେତ୍ରରେ ବିଚାରଶୀଳତାଠାରୁ ବେଳେବେଳେ ଦୂରେଇ ଯାଇଛନ୍ତି । ଏହା ସତ୍ତ୍ୱେ ଗାନ୍ଧୀ ସମାଜ ପାଇଁ ଯେଉଁ ସଭ୍ୟ ମୂଲ୍ୟବୋଧଗୁଡିକର ବାର୍ତ୍ତାବହ ହୋଇଛନ୍ତି ଓ ଯାହାକୁ ଜୀବନସାରା ପ୍ରୟୋଗ କରିଛନ୍ତି ତାହା ଇତିହାସରେ ଏକ ମହନୀୟ ଘଟଣା । ସେହି ମୂଲ୍ୟବୋଧ ଯେ ସାମଗ୍ରିକ ଭାବରେ ମଣିଷ ଜାତିର ଶାନ୍ତିପୂର୍ଣ୍ଣ ଓ ନ୍ୟାୟଭିତ୍ତିକ ସହାବସ୍ଥାନ ପାଇଁ ପ୍ରେରଣାର ଉତ୍ସ ଏହା ନିଃସନ୍ଦେହ । ମୋଟ ଉପରେ ଗାନ୍ଧୀ ସଭ୍ୟ ଜୀବନର ଓ ମାନବିକ ମୂଲ୍ୟବୋଧର ଜଣେ ବିଶିଷ୍ଟ ପ୍ରବକ୍ତା ଭାବେ ଇତିହାସରେ ଯେ ସବୁଦିନ ପାଇଁ ରହିବେ ଏହା ଅନସ୍ୱୀକାର୍ଯ୍ୟ । (୧୩.୧୦.୧୦)



# ଦୁଇଟି ଜାତୀୟ ଘଟଣା: କ୍ରିୟା ଓ ପ୍ରତିକ୍ରିୟା

ଗୋଟିଏ ଗୋଟିଏ ଘଟଣା ଏକ ରାଷ୍ଟ୍ରର ଇତିହାସରେ ନିର୍ଣ୍ଣାୟକ ମନେହୋଇଥାଏ । ନିର୍ଣ୍ଣାୟକ ଏଥିପାଇଁ ଯେ ସେହି ଘଟଣା ବହୁ ଭାବରେ ଭବିଷ୍ୟତର ଘଟଣା ପ୍ରବାହକୁ ପ୍ରଭାବିତ କରିଥାଏ ବା ତା'ର ଅନେକ ସୁଦୂରପ୍ରସାରୀ ପ୍ରଭାବ ରହିଥାଏ । ଫରାସୀ ବିପ୍ଳବ ଫ୍ରାନ୍ସର ଜାତୀୟ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଥିବା ବା ଚୀନାରେ କମ୍ୟୁନିଷ୍ଟ ବିପ୍ଳବ ଚୀନର ଭବିଷ୍ୟତ ନିର୍ମାଣ ଦିଗରେ ଉଲ୍ଲେଖନୀୟ ଭୂମିକା ନେଇଥିବା ଇତିହାସରେ ସୁବିଦିତ । ଏହି ପୃଷ୍ଠଭୂମିରେ ଆମ ଦେଶର ଜାତୀୟ ଦୃଶ୍ୟପଟରେ ଦୁଇଟି ଘଟଣାର ପ୍ରଭାବକୁ ବିଚାର କରିବା ଏଠାରେ ଆମର ଲକ୍ଷ୍ୟ ।

ପ୍ରଥମ ଘଟଣାଟି ହେଉଛି ୧୯୩୦ରେ ମହାତ୍ମା ଗାନ୍ଧୀଙ୍କର ଲବଣ ସତ୍ୟାଗ୍ରହଜନିତ ଦାଣ୍ଡିଯାତ୍ରା । ଭାରତୀୟ ଜାତୀୟ ଆନ୍ଦୋଳନ କ୍ଷେତ୍ରରେ ଯେତେ ଯେତେ ପଦକ୍ଷେପ ନିଆଯାଇଛି ସେ ମଧ୍ୟରେ ଲବଣ ସତ୍ୟାଗ୍ରହର ଏକ ସୁଦୂରପ୍ରସାରୀ ଓ ଦେଶବ୍ୟାପୀ ପ୍ରଭାବ ରହିଥିଲା । ବ୍ରିଟିଶ ସରକାର ଲୁଣ ମାରିବା କ୍ଷେତ୍ରରେ ଯେଉଁ କଟକଣା ଓ ଲୁଣ ଉପରେ ଟିକସ ବସାଇଥିଲେ, ତାହା ବିରୋଧରେ ଗାନ୍ଧୀଙ୍କର ଏହି କାର୍ଯ୍ୟକ୍ରମ ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରତି ଏକ ଆହ୍ୱାନ ଥିଲା । ତେବେ ଗାନ୍ଧୀ ଲବଣ ସତ୍ୟାଗ୍ରହ ଆରମ୍ଭ ପୂର୍ବରୁ ତାଙ୍କର କାର୍ଯ୍ୟପନ୍ଥା ନେଇ ସେତେବେଳର ଭାଇସ୍‌ରାୟ ଆରଉଇନ୍‌ଙ୍କୁ ପତ୍ର ଲେଖିଥିଲେ । ବଞ୍ଚି ରହିବାକୁ ଏ ଦେଶର ସାଧାରଣ ମଣିଷ ଯେଉଁ ଲୁଣ ଟିକକ ଖାଇବାକୁ ବାଧ୍ୟ ହେଉଛି ସରକାର ସେଥିରେ ଯେଉଁ ଟିକସ ବସାଇଛନ୍ତି, ତାହା ଏ ଦେଶର ଅଗଣିତ ଗରିବଙ୍କ ଉପରେ ବୋଝ ହୋଇ ରହିଛି । ସେହି ପତ୍ରରେ ଗାନ୍ଧୀ ଉଲ୍ଲେଖ କରିଥିଲେ ଯେ, ଏ ଦେଶର ଜଣେ ସାଧାରଣ ମଣିଷର ଦୈନିକ ଆୟ ମାତ୍ର ଦୁଇଅଣା (ଆଜିର ହିସାବରେ ବାର ପଇସା) ହୋଇଥିବା ବେଳେ ଭାଇସ୍‌ରାୟଙ୍କ ଦୈନିକ ଦରମା ପ୍ରାୟ ସାତଶହ ଟଙ୍କା । ଭାଇସ୍‌ରାୟଙ୍କ ପ୍ରତି କୌଣସି ବ୍ୟକ୍ତିଗତ ଆକ୍ଷେପ ନରଖି ଓ ସେ କିପରି ତାଙ୍କ ଦରମାକୁ ଦାନ ଖଇରାତରେ ବ୍ୟୟ କରନ୍ତି ତାହାର ପ୍ରଶଂସା କରି ଗାନ୍ଧୀ ଗୋଟିଏ ବ୍ୟବସ୍ଥାକୁ ସମାଲୋଚନା କରିଥିଲେ । ତାଙ୍କର ମନ୍ତବ୍ୟ ଥିଲା ଯେ, ଯେଉଁ ଶାସନ ବ୍ୟବସ୍ଥା ସାଧାରଣ ମଣିଷର ଖାଉଥିବା ଲୁଣଠାରୁ ଟିକସ ନେଇ ଭାଇସ୍‌ରାୟଙ୍କ ପାଇଁ ଏଭଳି ମୋଟା ଦରମାର ବ୍ୟବସ୍ଥା କରିଛି ସେହି ଶାସନ ବ୍ୟବସ୍ଥା ନିନ୍ଦନୀୟ ଓ ତାହାର ମୂଳୋତ୍ପାଟନ ହେବା

ଆବଶ୍ୟକ । ଗାନ୍ଧୀ ଜଣେ ଇଂରେଜ ଲୋକଙ୍କୁ ଏ ପତ୍ର ଦେଇ ଦୂତ ଭାବେ ଭାଇସ୍‌ରାୟଙ୍କ ପାଖକୁ ପଠାଇଥିଲେ ଓ ଭାଇସରାୟ ଏ ଚିଠିଟି ଗ୍ରହଣ କରିବାକୁ ମିରଟରେ ହେଉଥିବା ଏକ ମ୍ୟାଚ ଛାଡ଼ି ଦିଲ୍ଲୀ ଆସି ପତ୍ରଟି ଗ୍ରହଣ କରିଥିଲେ । ଭାଇସ୍‌ରାୟଙ୍କ ତରଫରୁ ଗାନ୍ଧୀଙ୍କ ପ୍ରସ୍ତାବିତ ଲବଣ ସତ୍ୟାଗ୍ରହ ବିଷୟରେ ତାଙ୍କର ସେକ୍ରେଟେରୀ ଲେଖିଲେ ଯେ, ଗାନ୍ଧୀଙ୍କ କାର୍ଯ୍ୟପନ୍ଥା ଦେଶର ଆଇନ ବିରୋଧରେ ଯିବ ଓ' ଦେଶର ଶାନ୍ତି ଶୃଙ୍ଖଳାକୁ ବିପନ୍ନ କରିବ । ଗାନ୍ଧୀଙ୍କ କର୍ମପନ୍ଥାର ସୂଚନା ପାଇ ଭାଇସ୍‌ରାୟ ମର୍ମାହତ । ତେବେ ଭାଇସରାୟ ଏହି ଘଟଣା ପରେ ଗାନ୍ଧୀଙ୍କୁ ଆଲୋଚନା ପାଇଁ ଡ଼ାକିଲେ ନାହିଁ କିମ୍ବା ଲବଣ ସତ୍ୟାଗ୍ରହ ପାଇଁ ଗାନ୍ଧୀ ଯିବାବେଳେ ତାଙ୍କୁ ଗିରଫ କଲେନାହିଁ ।

ପରିଣାମତଃ ୧୯୩୦ମାର୍ଚ୍ଚ ୧୨ ତାରିଖ ଦିନ ଗାନ୍ଧୀ ତାଙ୍କର ଆଶ୍ରମରୁ ଦାଣ୍ଡି ସମୁଦ୍ର ଉପକୂଳ ଦିଗରେ ୭୯ ଜଣ ସହଯୋଗୀଙ୍କୁ ନେଇ ତାଙ୍କର ଯାତ୍ରା ଆରମ୍ଭ କଲେ । ଦିନକୁ ଦୁଇଥରରେ ହାରାହାରୀ ୧୮/୧୯ କି.ମି. ଚାଲି ତିନିଶହ ଗ୍ରାମ ଦେଇ ୨୪ ଦିନ ଯାତ୍ରା ପରେ ଦାଣ୍ଡି ସମୁଦ୍ର କୂଳରେ ଏପ୍ରିଲ ୫ରେ ପହଞ୍ଚିଲେ । ସେତେବେଳକୁ ହଜାର ହଜାର ଲୋକ ଗାନ୍ଧୀଙ୍କ ସହ ଯୋଗ ଦେଇଥିଲେ ଓ ପ୍ରତ୍ୟେକ ଗ୍ରାମରେ ଗାନ୍ଧୀଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ବ୍ରିଟିଶ ସରକାର ଏକଚାଟିଆ ଭାବେ ମରାଉଥିବା ଲୁଣ ବ୍ୟତୀତ ଅନ୍ୟ କେହି ଲୁଣ ମାରିବା ସରକାରଙ୍କ ଆଇନ ଅନୁସାରେ ଦଣ୍ଡନୀୟ ଥିଲା । ମାତ୍ର ଏପ୍ରିଲ ୬ ତାରିଖ ସକାଳେ ଗାନ୍ଧୀ ଦାଣ୍ଡି ସମୁଦ୍ର ବେଳାଭୂମିରୁ ଟିପରେ ଟିପେ ଲୁଣ ଗୋଟାଇ ଆଣି ବ୍ରିଟିଶ ସାମ୍ରାଜ୍ୟବାଦକୁ ବିରାଟ ଆହ୍ୱାନର ସମ୍ମୁଖୀନ କରାଇଥିଲେ । ଏହାପରେ ସାରାଦେଶ ଲବଣ ଆଇନ ଭଙ୍ଗକରିବାକୁ ଚଳଚଞ୍ଚଳ ହୋଇଉଠିଲା । ଭାରତବର୍ଷର ବିଭିନ୍ନ ରାଜ୍ୟରେ ସତ୍ୟାଗ୍ରହୀମାନେ ଲବଣ ଆଇନକୁ ଉଲଂଘନ କରି ସମଗ୍ର ଦେଶରେ ସ୍ୱାଧୀନତା ପାଇଁ ଏକ ଜାଗରଣ ସୃଷ୍ଟି କରିଥିଲେ । ଅଧିକାଂଶ ଗାନ୍ଧୀଙ୍କର ଜୀବନୀ ଲେଖକ ଏହି ଘଟଣାଟିକୁ ଚମତ୍କାର ଭାବେ ବଶ୍ଲେଷଣ କରିଛନ୍ତି । ଗାନ୍ଧୀ ସମୁଦ୍ରକୂଳରୁ ଟିପେ ଲୁଣ ଗୋଟାଇ ପ୍ରବଳ ପରାକ୍ରମୀ ସରକାରଙ୍କ ଆଇନକୁ ଯେପରି ଲଂଘନ କଲେ ତାହା ଗାନ୍ଧୀ ପରି ଜଣେ କଳାକାରଙ୍କ ଉଚ୍ଚକୋଟୀର ଅଭିନୟ ଚାତୁରୀ ବୋଲି କେତେକ ବର୍ଣ୍ଣନା କରିଛନ୍ତି । ଏହି ଘଟଣା ସମଗ୍ର ଦେଶରେ ଏକ ନୂତନ ଜାଗରଣ ସୃଷ୍ଟି କରିଥିଲା ଓ ଲବଣ ଆଇନକୁ ବିଭିନ୍ନ ସ୍ଥାନରେ ଭଙ୍ଗ କରି ଦେଶର ବହୁ ତୁଙ୍ଗନେତା ଗିରଫ ହୋଇଥିଲେ । ପରାଧୀନ ଭାରତବର୍ଷର ସବୁ ଅଞ୍ଚଳରେ ଏହା ସ୍ୱାଧୀନତା ପାଇଁ ଏକ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା ।

ଦ୍ୱିତୀୟ ଘଟଣାଟି ହେଉଛି ୧୯୨୭ ମସିହାର ମାର୍ଚ୍ଚ ୧୯,୨୦ ମହାରାଷ୍ଟ୍ରର ମହାଡ଼ଠାରେ ଦଳିତ ସମ୍ମିଳନୀ । କୋଲାବ ଜିଲ୍ଲାର ମହାଡ଼ଠାରେ ଡିପ୍ରେସେଡ୍ କ୍ଲାସର

କର୍ମକର୍ତ୍ତାମାନେ ଆମ୍ବେଦକରଙ୍କ ନେତୃତ୍ୱରେ ଦଳିତ ଲୋକଙ୍କ ନାଗରିକ ଅଧିକାର ପାଇଁ ଏକ ସମ୍ମିଳନୀର ଅୟୋଜନ କଲେ । ମହାରାଷ୍ଟ୍ରରେ ପ୍ରାୟ ସବୁ ଜିଲ୍ଲାରୁ ଦଶହଜାର ଦଳିତ ଲୋକ ସେହି ସମ୍ମିଳନୀରେ ଯୋଗ ଦେଇଥିଲେ । ସେହି ସମ୍ମିଳନୀକୁ ସଫଳ କରିବାପାଇଁ ଦଳିତ ନେତାମାନେ ଦୁଇମାସ ଧରି ପ୍ରୟାସ କରିଥିଲେ । ଏତେ ଲୋକଙ୍କର ରହିବା ଓ ପାଣି ପିଇବା ପାଇଁ ମଧ୍ୟ ବ୍ୟବସ୍ଥା କରିଥିଲେ । କାରଣ ସେତେବେଳେ ଦଳିତମାନେ ସବର୍ଣ୍ଣ ଉଚ୍ଚଜାତିର ଲୋକଙ୍କ ଘରେ ପାଣି ବି ପିଇ ପାରୁନଥିଲେ । ଅସହାୟ, ମୂକ, ଭୋକିଲା ଓ ନିରୀହ ଲୋକମାନଙ୍କୁ ଆମ୍ବେଦକର ଭାଷଣ ଦେଇ ସେମାନଙ୍କୁ କିପରି ଅସ୍ପୃଶ୍ୟ କରି ନାନା ନିର୍ଯାତନା ଦିଆଯିବା ସହ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ କରାଯାଇଛି ତାହା ଅତି ଭାବଗର୍ଭକ ଭାବେ ବର୍ଣ୍ଣନା କଲେ । ସେମାନଙ୍କୁ ତଥାକଥିତ ଉଚ୍ଚଜାତିର ଲୋକମାନେ କିପରି ଚାପିକରି ରଖିଛନ୍ତି ତାହା ବୁଝାଇବା ସହିତ ଶିକ୍ଷା, ସ୍ୱାବଲମ୍ବନଶୀଳତା ଓ ସ୍ୱାଭିମାନ ଉପରେ ଗୁରୁତ୍ୱ ଦେଇଥିଲେ । ସରକାର ବି କିପରି ସେମାନଙ୍କ ଦୁର୍ଦ୍ଦଶା ପ୍ରତି ଉଦାସୀନ ତାହା ମଧ୍ୟ ବୁଝାଇଲେ । ଯେଉଁମାନେ ଆଜି ଏହି ସମ୍ମିଳନୀରେ ଉପସ୍ଥିତ ରହିଛନ୍ତି, ସେମାନେ ନିଜ ଲୋକଙ୍କ ପାଖକୁ ଏହି ବାର୍ତ୍ତା ନେବେ ଯେ ସେମାନଙ୍କର ପିଲାମାନେ ଯେପରି ପାଠ ପଢ଼ିବେ ଓ ଆତ୍ମମର୍ଯ୍ୟାଦା ନେଇ ଜୀବନ ବଞ୍ଚିବେ । ତଥାକଥିତ ଅସ୍ପୃଶ୍ୟମାନେ ଯେପରି ସେମାନଙ୍କର ନାଗରିକ ଅଧିକାର ପାଇବେ, ସେଥିପାଇଁ ସଂଗ୍ରାମ ପାଇଁ ସେ ଆହ୍ୱାନ ଦେଇଥିଲେ । ସେହି ସମ୍ମିଳନୀ ପୂର୍ବରୁ ମାହାଡ଼ ମ୍ୟୁନିସିପାଲିଟି ସରକାରୀ ପରିଚାଳିତ ସ୍କୁଲ ଓ ଡାକ୍ତରଖାନା ତଥା ସର୍ବସାଧାରଣ ଜଳାଶୟରୁ ଜଳ ବ୍ୟବହାର କରିବାପାଇଁ ଦଳିତମାନଙ୍କର ଅଧିକାର ଅଛି ବୋଲି ଏକ ନିୟମ କରିଥିଲେ । ତେବେ ଉଚ୍ଚଜାତିର ଲୋକଙ୍କ ବିରୋଧ ଯୋଗୁ ତାହା କାର୍ଯ୍ୟକାରୀ କରାଯାଉନଥିଲା । ସେ ଦିନ ସଭାରେ ନିଷ୍ପତ୍ତି ହେଲା ଯେ ଚୌଦ୍ୱାର ସର୍ବସାଧାରଣ ପୁଷ୍କରିଣୀରୁ ଯାଇ ସେମାନେ ଜଳ ପିଇବେ । ନିଷ୍ପତ୍ତି ଅନୁଯାୟୀ ତା ପରଦିନ ହଜାର ହଜାର ଦଳିତ ଲୋକ ଆମ୍ବେଦକରଙ୍କ ନେତୃତ୍ୱରେ ଯାଇ ଜଳାଶୟରୁ ଆଞ୍ଜୁଳାରେ ପାଣି ପିଇ ହିନ୍ଦୁ ଜାତି ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେମାନେ ସେଠାରୁ ଫେରି ସମ୍ମିଳନୀର ସମାପ୍ତି ଘୋଷଣା କଲେ । ଏହାପରେ ଅନେକ ପ୍ରତିନିଧି ସ୍ଥାନ ଛାଡ଼ି ନିଜ ନିଜ ଅଞ୍ଚଳକୁ ବାହାରିଗଲେ ଓ କେତେକ ଖାଦ୍ୟ ଖାଇ ସ୍ଥାନ ଛାଡ଼ିବାକୁ ପ୍ରସ୍ତୁତ ହେଉଥିଲେ । ଏହି ସମୟରେ ସହରରେ ପ୍ରଚାରିତ ହୋଇଗଲା ଯେ ଦଳିତ ଅସ୍ପୃଶ୍ୟମାନେ ପୋଖରୀରୁ ପାଣି ପିଇ ସ୍ଥାନୀୟ ମନ୍ଦିର ଭିତରେ ପ୍ରବେଶ କରିବେ । ଶହ ଶହ ଲୋକ ଠେଙ୍ଗା ଓ ମାରଣାସ୍ତ୍ର ଧରି ସମ୍ମିଳନୀ ସ୍ଥାନକୁ ଆସି ସେଠାରେ ଥିବା ଲୋକମାନଙ୍କୁ ପିଟିଲେ, ସେମାନଙ୍କର ଖାଦ୍ୟପଦାର୍ଥ ନଷ୍ଟକଲେ ଓ ସମ୍ମିଳନୀ ସ୍ଥାନଟିକୁ ଭାଙ୍ଗିରୁଜି ପକାଇଲେ । ଲୋକମାନେ କ'ଣ ହେଉଛି ବୁଝିବା ପୂର୍ବରୁ ସେମାନଙ୍କ ଉପରେ ଆକ୍ରମଣରୁ ଅନେକ କ୍ଷତ ବିକ୍ଷତ

ହେଲେ । ସେଠାରେ ଏକ ଖଣ୍ଡଯୁଦ୍ଧର ପରିବେଶ ସୃଷ୍ଟି ହୋଇଥାଆନ୍ତା, କିନ୍ତୁ ଆମ୍ବେଦକର ଶାନ୍ତି ଓ ଅହିଂସ ରହିବାକୁ ନିଜର ଲୋକମାନଙ୍କୁ ବାରମ୍ବାର ନିବେଦନ କଲେ । ଏହାପରେ ପୋଲିସ ଘଟଣାସ୍ଥଳରେ ପହଞ୍ଚିଲେ । ତେବେ ଘଟଣାଟି ଏହିଠାରେ ସରିଲା ନାହିଁ । କିଛି ଦିନ ଭିତରେ ରକ୍ଷଣଶୀଳ ଉଚ୍ଚଜାତିର ଲୋକମାନଙ୍କର ବୈଠକ ହେଲା ଓ ଦଳିତମାନେ ଚୌଦ୍ୱାର ପୁଷ୍କରିଣୀରୁ ଜଳ ଗ୍ରହଣ ଦ୍ୱାରା ତାହା ଯେପରି ଅପବିତ୍ର ହେଲା, ତାହାକୁ ପବିତ୍ର କରାଯିବା ଆବଶ୍ୟକ ବୋଲି ପ୍ରସ୍ତାବ ହେଲା । ଗୋବର, ଗୋ-ମୂତ୍ର, କ୍ଷୀର ୧୦୮ଟି କଳସୀରେ ନିଆଯାଇ ପୁଷ୍କରିଣୀରେ ଢଳାଗଲା ଓ ବ୍ରାହ୍ମଣମାନେ ମନ୍ତ୍ରପାଠ କରି ଜଳାଶୟକୁ ଶୋଧନ କଲେ । ଏହାପରେ ଗାଁ ଗାଁ କୁ ସମ୍ବାଦ ପଠାଗଲା ଓ ବିଭିନ୍ନ ଗ୍ରାମମାନଙ୍କରେ ଦଳିତମାନଙ୍କୁ ଏସବୁ ଧର୍ମବିରୋଧୀ କାର୍ଯ୍ୟ ଭବିଷ୍ୟତରେ ନ କରିବାକୁ ଧମକ ଦିଆଗଲା । ଯେଉଁଠି କିଛି ପ୍ରତିବାଦ ହେଲା ସେହି ଲୋକମାନଙ୍କୁ ଆର୍ଥିକ ବାସନ୍ଦ କରାଗଲା ଓ ଦଳିତମାନଙ୍କ ପ୍ରତି ସତର୍କ ରହିବାକୁ ସବର୍ଣ୍ଣ ଲୋକମାନେ ସଂଘଟିତ ହେବାକୁ ଲାଗିଲେ । କୌତୂହଳର ବିଷୟ ଯେଉଁ ପୁଷ୍କରିଣୀରୁ ମୁସଲମାନ, ଖ୍ରୀଷ୍ଟିଆନ ଇତ୍ୟାଦି ଅନ୍ୟ ଧର୍ମର ଲୋକମାନେ ଅବାଧରେ ଜଳ ନେଇପାରୁଥିଲେ, ନିଜ ଧର୍ମର ଦଳିତମାନଙ୍କ ପ୍ରତି ତଥାକଥିତ ଉଚ୍ଚଜାତିର ଲୋକମାନେ ଏପରି ଅସହିଷ୍ଣୁ ହେବା ଆମ୍ବେଦକରଙ୍କ ପରି ସଚେତନ ଶିକ୍ଷିତ ଓ ସ୍ୱାଭିମାନୀ ମଣିଷଙ୍କୁ ବହୁ ଆଘାତ ଦେଇଥିଲା । ଧର୍ମର ଧ୍ୱଜାଧାରୀ ଲୋକମାନେ କିପରି ନିଜର ବିବେକ ହରାଇ ବସିଛନ୍ତି, ତାହା ଆମ୍ବେଦକରଙ୍କ ପ୍ରାଣର ବେଦନାକୁ ତାଙ୍କ ଜୀବନୀ ଲେଖକମାନେ ପ୍ରକାଶ କରିଛନ୍ତି ।

ଏ ଦୁଇଟି ଘଟଣା ଭାରତୀୟ ଇତିହାସରେ ଦୁଇଟି ଭିନ୍ନ ସ୍ଥିତିର ସୂଚନା ଦିଏ । ଗାନ୍ଧୀ ବ୍ରିଟିଶ ସାମ୍ରାଜ୍ୟବାଦ ଓ ରାଜନୈତିକ ପରାଧୀନତା ବିରୋଧରେ ଲଢ଼ିବା ବେଳେ ସମଗ୍ର ଦେଶର ଅକୁଣ୍ଠ ସମର୍ଥନ ଲାଭ କରିଥିଲେ । ସାରାଦେଶ ଏକ ନୈତିକ ଶକ୍ତି ଭାବେ ତାଙ୍କ ପଛରେ ଛିଡ଼ା ହୋଇଥିଲା । କିନ୍ତୁ ଆମ୍ବେଦକର ! ସେ ଯେତେବେଳେ ଯୁଗ ଯୁଗର ସାମାଜିକ ଦାସତ୍ୱ, ଅତ୍ୟାଚାର ଓ ବର୍ବରତା ବିରୋଧରେ ସ୍ୱର ଉଠାଉଥିଲେ ତାଙ୍କୁ ନାନା ବିରୋଧର ସମ୍ମୁଖୀନ ହେବାକୁ ପଡୁଥିଲା । ତେବେ ଏହି ଘଟଣା କଂଗ୍ରେସ ଓ ଦେଶର ପ୍ରଗତିଶୀଳ ବୁଦ୍ଧିଜୀବୀଙ୍କର ଆଖି ଖୋଲି ଥିଲା । ପରାଧୀନ ଭାରତରେ ଓ ଏପରିକି ସ୍ୱାଧୀନ ଭାରତରେ ଜାତୀୟ ଓ ଆନ୍ତର୍ଜାତିକ ପ୍ରତିଷ୍ଠା ଥିବା ବହୁ ବ୍ୟକ୍ତି ସାମାଜିକ ଶୋଷଣ ଓ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କଲାବେଳେ ବେଶ ସତର୍କତାର ସହ ଏହା କରିବାର ବହୁ ଦୃଷ୍ଟାନ୍ତ ଥିଲେ ବି ତାହା ଏଠାରେ ଆଲୋଚନା କରିବା ସମ୍ଭବ ନୁହେଁ ।

ଭାରତବର୍ଷରେ ଅନେକ ସମାଜ ସଂସ୍କାରକ ଭାରତୀୟ ସମାଜର ଅନ୍ୟାୟ, ବୈଷମ୍ୟକୁ ଅନୁଭବ କରିଛନ୍ତି । ତେବେ ସେମାନେ ସଂସ୍କାରର ବାର୍ତ୍ତାକୁ ଏକ ନିର୍ଦ୍ଦିଷ୍ଟ ପରିସର ଭିତରେ ସୀମିତ ରଖିଛନ୍ତି । କିନ୍ତୁ ଫୁଲେ, ପେରିୟାର, ଆମ୍ବେଦକର ସାମାଜିକ ବିପ୍ଳବର ଯେଉଁ ପରିକଳ୍ପନା କରିଥିଲେ, ତାହା ଏ ପର୍ଯ୍ୟନ୍ତ ଏ ଦେଶରେ ସମ୍ଭବ ହୋଇନାହିଁ । ରାଜନୈତିକ ଗଣତନ୍ତ୍ର ସାମାଜିକ ଗଣତନ୍ତ୍ରରେ ଏ ପର୍ଯ୍ୟନ୍ତ ବି ସମ୍ପୂର୍ଣ୍ଣ ରୂପାୟିତ ହୋଇନାହିଁ । ସଭ୍ୟ ଜୀବନର ସ୍ତରକୁ ଆସିବା ପାଇଁ ଆହୁରି ଅନେକ ବାଟ ଯିବାକୁ ବାକି ଅଛି । (୨୦.୧୦.୧୦)



# ମଧ୍ୟଯୁଗୀୟ ମାନସିକତା

ମଣିଷ ବିଚାରଶୀଳ । ବିଚାରଶୀଳତା ମଣିଷ ସ୍ୱଭାବର ସ୍ୱାତନ୍ତ୍ର୍ୟ । ଏହି ବିରାରଶୀଳ ସାମର୍ଥ୍ୟ ଯୋଗୁ ତ ମଣିଷ ସାମାଜିକ ବିକାଶଧାରାରେ ଏକ ଆଦିମ ଅବସ୍ଥାରୁ ଆଜିର ଉନ୍ନତ ସ୍ଥିତି ସ୍ତରକୁ ଆସିବାରେ ସମର୍ଥ ହୋଇପାରିଛି । ଏହି ବିକାଶ ବା ଉତରଣ ପଶ୍ଚାତ୍‌ରେ ରହିଛି ହଜାର ହଜାର ବର୍ଷର ପ୍ରୟାସ । ମଣିଷ ପ୍ରକୃତି, ପରିବେଶ ଓ ଜୀବନର ରହସ୍ୟକୁ ବୁଝିବାକୁ ପ୍ରୟାସ କରିବା ଯୋଗୁ ହିଁ ସେ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତିର ପାହାଚରେ ଆଗକୁ ଯାଇଛି । ତେବେ ବିଡ଼ମ୍ୱନାର ବିଷୟ ମଣିଷର ବିଚାରଶୀଳତା ଏକ ସାର୍ବଜନୀନ ଲକ୍ଷଣ ଭାବେ ସବୁ ମଣିଷଙ୍କ ପାଖରେ ଅଭିବ୍ୟକ୍ତ ହୋଇନାହିଁ । ବରଂ ଏହା ଏକ ସାଂସ୍କୃତିକ ମୂଲ୍ୟବୋଧ ଭାବେ ଧୀରେ ଧୀରେ ସମାଜରେ ବିକଶିତ ହୋଇଛି ଓ ମୁଷ୍ଟିମେୟ ବ୍ୟକ୍ତି ବଚାରଶୀଳ ଭାବେ ଜୀବନର ଘନଘଟା ବା ପ୍ରାକୃତିକ ଘଟଣା ପ୍ରବାହକୁ ବୁଝିବାକୁ ପ୍ରୟାସ କରିଛନ୍ତି । ପ୍ରହେଳିକାର ବିଷୟ ସମାଜରେ ଅଗଣିତ ମଣିଷ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଚିନ୍ତା କରିପାରନ୍ତି ନାହିଁ, କେତେକ ବ୍ୟକ୍ତି ତ୍ରୁଟିପୂର୍ଣ୍ଣ ଭାବେ ଚିନ୍ତା କରିଥାନ୍ତି ଓ ସବୁଠାରୁ ବିଡ଼ମ୍ୱନାର ବିଷୟ ଯୁକ୍ତିଶୀଳ ଭାବେ ଚିନ୍ତା କରୁଥିବା ବ୍ୟକ୍ତିମାନଙ୍କୁ ସମାଜରେ ନାନା ନିର୍ଯାତନା ସହ୍ୟ କରିବାକୁ ପଡ଼ିଥାଏ । ଯେଉଁମାନେ ସଭ୍ୟତାର ପଥପ୍ରଦର୍ଶକ ହୋଇଛନ୍ତି, ନୂତନ ବିଚାର ଦ୍ୱାରା ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛନ୍ତି, ପ୍ରକୃତିର ଯଥାର୍ଥ ରହସ୍ୟକୁ ଉନ୍ମୋଚନ କରି ଜ୍ଞାନ ରାଜ୍ୟରେ ନୂଆ ଦିଗନ୍ତ ସୃଷ୍ଟି କରିଛନ୍ତି ସେମାନେ ନିଜର ସମସାମୟିକ ସମାଜରେ ବହୁ ଦୁଃଖ ଓ ନିର୍ଯାତନାର ଶରବ୍ୟ ହୋଇଛନ୍ତି । ସକ୍ରେଟିସଙ୍କ ଠାରୁ ମହାତ୍ମା ଗାନ୍ଧୀ ଓ ମାର୍ଟିନ ଲୁଥର କିଙ୍ଗ୍ ଜୁନିୟରଙ୍କ ପର୍ଯ୍ୟନ୍ତ, ବ୍ରୁନୋ, ଗାଲିଲିଓଙ୍କ ଠାରୁ ଡାରଓ୍ୱିନ, ଆବ୍ରାହମ ଲିଙ୍କନ ଓ ବର୍ଟ୍ରାଣ୍ଡ ରସେଲଙ୍କ ପର୍ଯ୍ୟନ୍ତ ପ୍ରତିଭାବାନ ମଣିଷମାନେ ନାନା ବିରୋଧର ସମ୍ମୁଖୀନ ହୋଇଛନ୍ତି ଓ ଏପରିକି ହିଂସାର ଶରବ୍ୟ ହୋଇଛନ୍ତି । ତାହାର କାରଣ ହେଉଛି ସେମାନେ ବିଚାରଶୀଳ ଭାବେ ଚିନ୍ତା କରିଛନ୍ତି ତଥା ସତ୍ୟ ଓ ସଭ୍ୟ ମୂଲ୍ୟବୋଧର ପ୍ରସାର କରିବାକୁ ପ୍ରୟାସ କରିଛନ୍ତି ।

ୟୁରୋପୀୟ ନବସଂସ୍କାର ଯୁଗଠାରୁ ବିଜ୍ଞାନର ଯେଉଁ ବିକାଶ ପର୍ବ ଆରମ୍ଭ ହେଲା, ତାହାଦ୍ୱାରା ଚିନ୍ତାରାଜ୍ୟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । କାଳକ୍ରମେ ଚିନ୍ତା ରାଜ୍ୟରେ ଜ୍ଞାନ ବିଜ୍ଞାନର ପ୍ରସାର ସହ ସଭ୍ୟ ମୂଲ୍ୟବୋଧ ଗୁଡ଼ିକର ପ୍ରସାର ହେବାକୁ

ଲାଗିଲା । ଗଣତାନ୍ତ୍ରିକ ମୂଲ୍ୟଚୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ସାମାଜିକ ନ୍ୟାୟ ପରି ସଭ୍ୟ ମୂଲ୍ୟବୋଧଗୁଡ଼ିକ ସମାଜରେ ନବସଂସ୍କାର ପରବର୍ତ୍ତୀ ସମୟରେ ବିକଶିତ ହେଲା । ଯେଉଁ ରାଷ୍ଟ୍ରସକଳ ତାହାର ସାମାଜିକ ଜୀବନ ପ୍ରବାହରେ ଏହି ମୂଲ୍ୟଚୟର ଯେତିକି ପ୍ରସାର କଲେ ସେମାନେ ସେତିକି ସଭ୍ୟ ବୋଲି ବିବେଚିତ ହେଲେ ଓ ଯେଉଁ ସମାଜରେ ଏହି ମୂଲ୍ୟଚୟ ପ୍ରତି ବିଶେଷ ସଚେତନତା ସୃଷ୍ଟି ହୋଇନାହିଁ ସେସବୁ ଅନୁନ୍ନତ ଅବସ୍ଥାରେ ରହିବା ମନେହୁଏ । ତେବେ ପ୍ରାୟତଃ ବିଂଶ ଶତାବ୍ଦୀର ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରେ ସାରା ପୃଥିବୀରେ ଆନ୍ତର୍ଜାତିକ ସଂଗଠନ ଓ ଆନ୍ତର୍ଜାତୀୟ ଚେତନାର ବିକାଶ ଲାଭ କଲା । ଏହାର ପରିଣାମରୁ ସଭ୍ୟ ମୂଲ୍ୟବୋଧଗୁଡ଼ିକ ବିଭିନ୍ନ ରାଷ୍ଟ୍ରର ଜାତୀୟ ଆଦର୍ଶ ଭାବେ ସ୍ୱୀକୃତ ହେଲା । ବିଭିନ୍ନ ରାଷ୍ଟ୍ରର ସାମ୍ବିଧାନିକ ବ୍ୟବସ୍ଥାରେ ଏହି ସବୁ ମୂଲ୍ୟଚୟକୁ ଗ୍ରହଣ କରାଯିବା ସହ ସାର୍ବଜନୀନ ଶିକ୍ଷା, ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର, ଆଇନ ଦୃଷ୍ଟିରେ ସମସ୍ତେ ସମାନ ଇତ୍ୟାଦିକୁ ଗ୍ରହଣ କରାଗଲା । ସ୍ୱାଧୀନତା ପରେ ଆମ ଦେଶରେ ମଧ ବ୍ୟକ୍ତିର ମୌଳିକ ଅଧିକାରକୁ ସ୍ୱୀକୃତି ଦିଆଗଲା । କୌଣସି ଭେଦଭାବମୂଳକ ବ୍ୟବସ୍ଥା ଆଇନ ଦୃଷ୍ଟିରେ ନିଷିଦ୍ଧ ହେଲା । ଏହାସହିତ ପରବର୍ତ୍ତୀ ସମୟରେ ସମ୍ବିଧାନରେ 'ମୌଳିକ କର୍ତ୍ତବ୍ୟ' ନେଇ କେତେକ ଆଦର୍ଶକୁ ଗ୍ରହଣ କରାଗଲା । ଉଦାହରଣ ସ୍ୱରୂପ ସମ୍ବିଧାନର ଚତୁର୍ଥ ଭାଗର ୫୧ (କ)ରେ ଉଲ୍ଲେଖ କରାଗଲା ଯେ 'ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିକୋଣ, ମାନବ ଭାବ ତଥା ଜ୍ଞାନାର୍ଜନ କ୍ଷେତ୍ରରେ ସଂସ୍କାର ଭାବନାର ବିକାଶ କରିବେ ।' ଏହି ଲକ୍ଷ୍ୟ ବିକାଶ କରାଇବା ଜଣେ ବ୍ୟକ୍ତିର ମୌଳିକ କର୍ତ୍ତବ୍ୟ, କାରଣ ଏହା ସଭ୍ୟ ଜୀବନର ମାନଦଣ୍ଡ । ସଭ୍ୟ ମୂଲ୍ୟଚୟକୁ ସାମାଜିକ ଜୀବନ ପ୍ରବାହରେ ପ୍ରତିଫଳିତ କରିବା ଜୀବନର ଗୁଣାତ୍ମକମାନର ଅଭିବୃଦ୍ଧିର ଏକ ମାନଦଣ୍ଡ ମନେହୁଏ । ମୁକ୍ତ ମନ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବିକତାବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଜୀବନର ଗୁଣାତ୍ମକ ଉତ୍କର୍ଷ ଅଭିବୃଦ୍ଧିର ଯେ ମୌଳିକ ଆଧାର ଏହା କହିଲେ ଅତ୍ୟୁକ୍ତ ହେବନାହିଁ । ଏହି ଆଦର୍ଶଗୁଡ଼ିକ ଯେ ଆମର ରାଷ୍ଟ୍ରୀୟ ଲକ୍ଷ୍ୟ ଏହା ଆମ ସମ୍ବିଧାନର ପ୍ରଗତିଶୀଳ ସ୍ୱରୂପର ଚିତ୍ର ବହନ କରେ ।

କିନ୍ତୁ ପରିତାପର ବିଷୟ ଆମର ସାମାଜିକ ଦୃଶ୍ୟପଟ ଏହି ଲକ୍ଷ୍ୟଠାରୁ ବହୁ ଦୂରରେ ରହିଛି । ମଧ୍ୟଯୁଗୀୟ ବହୁ ବିଶ୍ୱାସ ଏବେ ବି ଆମ ଜନଜୀବନରେ ପ୍ରଭାବ ବିସ୍ତାର କରି ରହିଆସିଛି । ମଧ୍ୟଯୁଗୀୟ ବିଶ୍ୱାସ କ୍ଷେତ୍ରରେ ସାମନ୍ତବାଦ ଓ ପାରଲୌକିକ ଭାବନା ପ୍ରାଧାନ୍ୟ ନେଇଥିଲା । ସେତେବେଳେ ପ୍ରାକୃତିକ ଦୁର୍ବିପାକ ହେଲେ ମଣିଷ ଅସହାୟ ହୋଇ ପଡୁଥିଲା । ବାତ୍ୟା, ବନ୍ୟା, ମରୁଡ଼ି ପରି ପରିବେଶରେ ମଣିଷ ନିରୁପାୟ ହୋଇ ମୃତ୍ୟୁକୁ ସାମ୍ନା କରୁଥିଲା । ଏହା ସହିତ ହଇଜା, ବସନ୍ତ ପରି ମହାମାରୀଗୁଡ଼ିକ ଏପରି ବ୍ୟାପି

ଯାଉଥିଲା ଯେ ଗାଁ ଗାଁରେ ମୃତ୍ୟୁର ତାଣ୍ଡବ ସୃଷ୍ଟି ହେଉଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ପରିବେଶ ଲାଗି ରହିଥିଲା । ଜୀବନ ଥିଲା ଅତ୍ୟନ୍ତ ବିପଦସଙ୍କୁଳ । ଭୟର ବାତାବରଣ ସର୍ବତ୍ର ରହିଥିଲା । ପ୍ରତିକୂଳ ପ୍ରାକୃତିକ ପରିବେଶରେ ମଣିଷ ନିଜକୁ ଅସହାୟ ମନେ କରୁଥିଲା । ଏହିପରି ସାମାଜିକ ପରିବେଶରେ ଏହି ବିଶ୍ୱାସ ବ୍ୟାପକ ଥିଲା ଯେ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ରକୁ କେହି ଦିଅଁ ଦେବତା ନିୟନ୍ତ୍ରଣ କରୁଛି । ସେହି ଦିଅଁ ଦେବତାର କୋପରୁ ରୋଗ ସୃଷ୍ଟି ହେଉଛି, ପ୍ରାକୃତିକ ଅଘଟଣମାନ ଘଟୁଛି । ସେହି ଦିଅଁ ଦେବତାଙ୍କୁ ସନ୍ତୁଷ୍ଟ କରିବା ଦ୍ୱାରା ଅଘଟଣ ଘଟିବ ନାହିଁ, ଜୀବନ ନିରାପଦ ରହିପାରିବ । ଏହି ମାନସିକତା ଦ୍ୱାରା ପରିଚାଳିତ ହୋଇ ବିଭିନ୍ନ ଦେବୀପୀଠମାନଙ୍କରେ କେତେ ପଶୁମାନଙ୍କୁ ବଳି ଦିଆଯାଉଥିଲା । ତା ପୂର୍ବରୁ ନରବଳିର ପରମ୍ପରା ମଧ୍ୟ ଥିଲା । ନରବଳି ଦ୍ୱାରା ଭଲ ଫସଲ ହେବ, ଦେବୀଙ୍କର କୃପା ମିଳିବ, ରୋଗ ମହାମାରୀ ହେବ ନାହିଁ । ଏହି ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା । ତେବେ ଏହା ବିରୁଦ୍ଧରେ ଦୃଢ ଆଇନ ହେବା ଓ ସାମାଜିକ ସଂସ୍କାର କ୍ଷେତ୍ରରେ ଦୃଷ୍ଟିଭଙ୍ଗୀରେ କିଛି ପରିବର୍ତ୍ତନ ଯୋଗୁ ନରବଳି ବନ୍ଦହେଲା । ତେବେ ମଇଁଷି, ଛେଳି, କୁକୁଡ଼ା, ମେଣ୍ଢା ଇତ୍ୟାଦି ପଶୁବଳି ଶକ୍ତିପୀଠମାନଙ୍କରେ ପ୍ରଚଳନ ରହିଲା । ଏସବୁ ଧାର୍ମିକ ବିଶ୍ୱାସ, ଆମ ପରମ୍ପରା, ସାଂସ୍କୃତିକ ଐତିହ୍ୟ କହି ମୁଷ୍ଟିମେୟ ଲୋକ ଏହାକୁ ବଳବତ୍ତର ରଖିଲେ । ଏହାଦ୍ୱାରା ସେମାନେ ଲାଭବାନ ବି ହେଲେ । ସାଧାରଣ ଅଜ୍ଞ ମଣିଷ ବୃହତ୍ତର ସମାଜ ଉପରେ ଭରସା କରିନପାରି ପାରଲୌକିକ ଶକ୍ତିରେ ବିଶ୍ୱାସ କରିବା ସହ ଦିଅଁ ଦେବତା ପାଖରେ ବଳି ଦେଇ ତା'ର ଅଭିଷ୍ଟ ପୂରଣ କରିପାରିବ ବୋଲି ବିଶ୍ୱାସ ଭିତରେ ରହିଲା । କିଛି ବ୍ୟକ୍ତି ବି 'ବିଶ୍ୱାସଦ୍ୱାରା ସବୁ ସାଧିତ ହୋଇପାରିବ' ବୋଲି ଭାବନାକୁ ବେଶ୍ ଚତୁରତାର ସହ ବିକାଶ କରାଇଲେ । ବଳି ସହ ଗୁଣି, ତନ୍ତ୍ର, ମନ୍ତ୍ର, ଖଟବିଦ୍ୟା, ନଖଦର୍ପଣ, ଗୁହ୍ୟବିଦ୍ୟା ଇତ୍ୟାଦି ବି ସମାଜରେ ବେଶ୍ ବ୍ୟାପକ ଭାବେ ରହିଥିବା ଦେଖାଯାଏ । ଶାସନ, ପୁଲିସ, ଚିକିତ୍ସା ବ୍ୟବସ୍ଥା ଅଭାବରେ ରାଜତନ୍ତ୍ର ଯୁଗରେ ତାନ୍ତ୍ରିକମାନେ ଲୋକମାନଙ୍କ ଅଜ୍ଞତାର ସୁଯୋଗ ନେଇ ସେମାନଙ୍କୁ ତନ୍ତ୍ର, ମନ୍ତ୍ର ନାମରେ ଅକ୍ଳେଶରେ ଠକି ପାରୁଥିଲେ । ସେଥିପାଇଁ ବିଭିନ୍ନ ପ୍ରକାର ବିଧାନମାନ ବାହାର କରିଥିଲେ । କେତେକ ହସ୍ତକୌଶଳ ଜନିତ କିଛି ଚମତ୍କାରିତା ଦେଖାଇ ସେମାନଙ୍କ ଅଲୌକିକ ସାମର୍ଥ୍ୟ ନେଇ ଲୋକମାନଙ୍କ ଭିତରେ ନାନା ଅହେତୁକ ବିଶ୍ୱାସ ସୃଷ୍ଟି କରିଥିଲେ । ଗୁପ୍ତଧନ ପ୍ରାପ୍ତ କରିବା ପାଇଁ ଅଲୌକିକ ଶକ୍ତି ହାସଲ ପାଇଁ କେତେ କେତେ ତନ୍ତ୍ର ସାଧନା, ଜପ, ତପ, ପୂଜାବିଧି, ମନ୍ତ୍ର ଇତ୍ୟାଦି ବି ସମାଜରେ ବ୍ୟାପକ ଭାବେ ରହିଥିଲା ଓ ବଳି ଦିଆଯାଉଥିଲା । ଏହିସବୁ ମଧ୍ୟଯୁଗୀୟ ଭାବନା ଗୁଡ଼ିକର ବଶବର୍ତ୍ତୀ ହୋଇ ମହିଳାମାନଙ୍କୁ ଡାହାଣୀ ଭାବି ହତ୍ୟା ବି କରାଯାଉଥିଲା ଓ ନିରୀହ ଲୋକମାନଙ୍କୁ ନାନା ନିର୍ଯ୍ୟାତନା ଦିଆଯାଉଥିଲା । ତାନ୍ତ୍ରିକମାନେ କେତେ କେତେ ରଙ୍ଗରେ

ଓ ଢଙ୍ଗରେ ସାଧାରଣ ମଣିଷକୁ ନିଜର ଧୂର୍ତ୍ତତା ଭିତରେ ଚମତ୍କାରିତା ଦେଖାଇ ପ୍ରଭାବିତ କରୁଥିଲେ । ଅଜ୍ଞତା, ଭୟ, ବୃହତ୍ତର ସମାଜ ଉପରେ ଅନାସ୍ଥା ଇତ୍ୟାଦି ନାନା ସାମାଜିକ ଓ ମନସ୍ତାତ୍ତ୍ୱିକ କାରଣ ଯୋଗୁ ଏହି ବ୍ୟବସ୍ଥା ସମାଜରେ ଚଳିଆସୁଥିଲା । ସେହିପରି ଜାତିଆଣ ଭେଦଭାବ, ଅସ୍ପୃଶ୍ୟତା ପରି ଉତ୍କଟ ସାମାଜିକ ବ୍ୟବସ୍ଥା ଆମ ଜନଜୀବନର ଅଙ୍ଗ ହୋଇ ରହିଥିଲା । ଏବେ ବି ଆମ ସମାଜରେ ଓ ବିଶେଷତଃ ଗାଆଁ ଗହଳରେ ଏହି ପ୍ରଥାର ପ୍ରଚଳନ ବ୍ୟାପକ ଥିବା ଦେଖାଯାଏ । ନିକଟରେ ଗଞ୍ଜାମ ଜିଲାରେ ଖଟ ବିଦ୍ୟାଦ୍ୱାରା ଗୁଣି କରିଥିବା ସନ୍ଦେହରେ ମହିଳାଙ୍କୁ ନିର୍ଯାତନା ଦିଆଯିବାରୁ ସେ ଆତ୍ମହତ୍ୟା କରିଥିବା ସମ୍ବାଦ ପ୍ରକାଶ ପାଇଛି (ପ୍ରଗତିବାଦୀ ଅକ୍ଟୋବର ୧୪) । ଏହି ବର୍ଷ ମଧ୍ୟରେ ଶତାଧିକ ମହିଳା ଏଭଳି ନିର୍ଯାତିତା ହୋଇଥିବା ଜଣାପଡ଼ିଛି । ରୋଗ ବାଧକରେ ଚିକିତ୍ସା ଅଭାବରେ ଲୋକ ମୃତ୍ୟୁବରଣ କଲେ କେହି ଗୁଣି କରି ମାରିଦେଇଛି ବୋଲି ବିଶ୍ୱାସ କରି କିଛି କପଟୀ ତାନ୍ତ୍ରିକଙ୍କୁ ଡାକି 'ଖଟବିଦ୍ୟା' ଦ୍ୱାରା ନିରୀହ ମହିଳାଙ୍କୁ ଧରି ନିର୍ଯାତନା ଦିଆଯାଉଛି । ସେହିପରି ବିଭିନ୍ନ ଦେବୀ ପୀଠମାନଙ୍କରେ ପଶୁମାନଙ୍କୁ ବଳି ଦିଆଯାଇ ସେ ସ୍ଥାନକୁ ରକ୍ତରଞ୍ଜିତ କରାଯାଉଛି । ଯେଉଁଠି କେହି ସଂସ୍କାରିତ ବ୍ୟକ୍ତି ବଳି ବନ୍ଦ କରିବାକୁ ପଦକ୍ଷେପ ନେଲେ ସେମାନଙ୍କୁ ବିଧର୍ମୀ, ନାସ୍ତିକ କହି ଚିତ୍ରଣ କରାଯାଉଛି । ଏହା ହିଁ ଏକବିଂଶ ଶତାବ୍ଦୀରେ ଆମ ସମାଜରେ ଘଟୁଛି ।

ଧାର୍ମିକ ବିଶ୍ୱାସ ନାମରେ କୁସଂସ୍କାରକୁ ସ୍ୱୀକୃତି ଦିଆଯିବା ବଡ ବିଡ଼ମ୍ବନା । ଯେଉଁ ବ୍ୟକ୍ତିମାନେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛନ୍ତି ସେମାନଙ୍କୁ ଧାର୍ମିକ ବିଶ୍ୱାସର ଅନ୍ଧକାର ଭିତରେ ଥିବା ଅଜ୍ଞ ଓ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ସେମାନଙ୍କ ଶକ୍ତି ବଳରେ ଦବାଇ ଦେଇଆସୁଛନ୍ତି । ବିଚାରଶୀଳତା ଓ ବିବେକବୋଧ ଏବେ ବି ଆମ ଜନଜୀବନରେ ବ୍ୟାପକ ଭିତ୍ତି ନେଇପାରିନାହିଁ । ଆମ ସମ୍ବିଧାନର ଆଦର୍ଶ ଓ ସଭ୍ୟ ଜୀବନ ଦୃଷ୍ଟିର ପ୍ରଭାବଠାରୁ ସାଧାରଣ ମଣିଷମାନେ ଯୋଜନ ଦୂରରେ ରହିଛନ୍ତି । ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ମଧ୍ୟଯୁଗୀୟ ମାନସିକତା ଏବେ ବି ଏକବିଂଶ ଶତାବ୍ଦୀରେ ଆମ ସମାଜରେ ବ୍ୟାପକ ଭାବେ ରହିଛି । ଏହା ହିଁ ବିଡ଼ମ୍ବନା । (୨୭.୧୦.୧୦)



# ଅନ୍ଧବିଶ୍ୱାସୀ କିଏ ?

ଏକ ଆଲୋଚନାଚକ୍ରରେ କେତେକ ବକ୍ତା ବାରମ୍ବାର 'ଅନ୍ଧବିଶ୍ୱାସୀ' ଶବ୍ଦଟି ପ୍ରୟୋଗ କରି ଅନ୍ଧବିଶ୍ୱାସ କିପରି ଜ୍ଞାନ ଓ ସଭ୍ୟ ଜୀବନ ଦୃଷ୍ଟିର ପରିପନ୍ଥୀ ତାହା ବୁଝାଉଥିଲେ । ସେହି ସଭାରେ ଜଣେ ଦୃଷ୍ଟିହୀନ ଚିନ୍ତାଶୀଳ ଶ୍ରୋତା ଥିଲେ ଓ ସେ ଏକ ଅଭିଯୋଗ ଉଠାଇଥିଲେ । ସେହି ବନ୍ଧୁ ଜଣଙ୍କ କହିଲେ ଯେ, ସେ ଜଣେ ଦୃଷ୍ଟିହୀନ ବ୍ୟକ୍ତି ଓ ତାଙ୍କର ଦେଖିବାର ସାମର୍ଥ୍ୟ ନାହିଁ । କିନ୍ତୁ ସେ ତ ମୁକ୍ତ ମନ ପୋଷଣ କରନ୍ତି, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ତାଙ୍କର ଗଭୀର ଆସ୍ଥା ରହିଛି ଓ ସେ କୁସଂସ୍କାରରୁ ମୁକ୍ତ ବୋଲି ମନେକରନ୍ତି । ସୁତରାଂ ଅନ୍ଧବିଶ୍ୱାସ ଶବ୍ଦଟି ଏକ ଯଥାର୍ଥ ଶବ୍ଦ ନୁହେଁ । ଏହା ଦୃଷ୍ଟିହୀନ ଲୋକଙ୍କର ମର୍ଯ୍ୟାଦା ପ୍ରତି ଅସମ୍ମାନଜନକ ।

କଥାଟି ଏକ ଗମ୍ଭୀର ବିଷୟ । ପ୍ରତ୍ୟେକ ଦୃଷ୍ଟିହୀନ ବ୍ୟକ୍ତି କ'ଣ ଅନ୍ଧବିଶ୍ୱାସୀ ? ଅନ୍ଧ ଶବ୍ଦ ସହ ଅନ୍ଧବିଶ୍ୱାସ ଶବ୍ଦର ସାଦୃଶ୍ୟରୁ ଏହା ସାଧାରଣତଃ ବିଶ୍ୱାସ କରାଯାଏ ଯେ, ଅନ୍ଧ ବ୍ୟକ୍ତିମାନେ କୁସଂସ୍କାରରେ ବିଶ୍ୱାସ କରିବା ସହଜ କାରଣ ସେମାନେ କିଛି ଦେଖିବାକୁ ସମର୍ଥ ନୁହନ୍ତି । ସେମାନେ ଯେହେତୁ ଶାରୀରିକ ଅକ୍ଷମତା ଯୋଗୁଁ ଦେଖିବାକୁ ଅସମର୍ଥ ତେଣୁ ସେମାନଙ୍କୁ ଯାହା କୁହାଯାଏ ସେମାନେ ସେଥିରେ ବିଶ୍ୱାସ କରିବା ସମ୍ଭବ । ତେବେ ଏକ ଶାରୀରିକ ଅକ୍ଷମତା ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ଦିଗରେ ଆଦୌ ପ୍ରତିବନ୍ଧକ ନୁହେଁ । ଜଣେ ଦୃଷ୍ଟିହୀନ ଲୋକ ଯେ କୁସଂସ୍କାରୀ ଏହା ଆଧାରହୀନ ଓ ଅଯୌକ୍ତିକ ମନେହୁଏ । ଜଣେ ଦୃଷ୍ଟିହୀନ ବ୍ୟକ୍ତି ବା ସେପରି କିଛି ଶାରୀରିକ ଅକ୍ଷମତା ଥିବା ବ୍ୟକ୍ତି ଜଣେ ବୁଦ୍ଧିଜୀବୀ, ପ୍ରାଜ୍ଞ, ଦାର୍ଶନିକ, ବୈଜ୍ଞାନିକ ଯାହା କିଛି ହେବା ସମ୍ଭବ । ଗ୍ରୀକ୍ କବି ହୋମର(ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀର) ଥିଲେ ଦୃଷ୍ଟିହୀନ, ହେଲେ ତାଙ୍କର କବି ପ୍ରତିଭା ତାଙ୍କୁ ଇତିହାସରେ ଅମର କରିରଖିଛି । ଭୀମ ଭୋଇ ବି ଅନ୍ଧ ଥିଲେ ବୋଲି କୁହାଯାଏ, ତେବେ ତାଙ୍କର ମାନବବାଦୀ ଦୃଷ୍ଟି ଓ କବିତ୍ୱ ତାଙ୍କୁ ଓଡ଼ିଆ ସାହିତ୍ୟରେ ଅମର କରିଛି । ଆମ ସମୟରେ ବିଶିଷ୍ଟ ବୈଜ୍ଞାନିକ ଷ୍ଟିଫେନ୍ ହକିଂ ଏ ଯୁଗର ଜଣେ ବିସ୍ମୟ । ତାଙ୍କର ସମଗ୍ର ଶରୀର ଯୁବକ ଅବସ୍ଥାରୁ ପକ୍ଷାଘାତ (ପାରାଲିଟିକ) ଓ ସେ କଥା କହିବାକୁ ଅସମର୍ଥ । ଏହି ଶାରୀରିକ ଅବସ୍ଥା ସତ୍ତ୍ୱେ ସେ ହେଉଛନ୍ତି 'ବ୍ଲାକ ହୋଲ' ମତର ପ୍ରବକ୍ତା ଓ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ, ପଦାର୍ଥ

ବିଜ୍ଞାନୀ । ଏହି ବୈଜ୍ଞାନିକ ପୃଥିବୀର ଉତ୍ପତ୍ତି ସଂପର୍କୀୟ ନୂତନ ପ୍ରକଳ୍ପର ଜନକ । ଏହି ପରି ଖୋଜିଲେ ବହୁ ଉଦାହରଣ ଇତିହାସରୁ ଓ ବିଭିନ୍ନ ସଭ୍ୟତାରୁ ମିଳିପାରିବ । ଜଣେ ଶାରୀରିକ ଦୃଷ୍ଟିରୁ କିଛି ଅକ୍ଷମ ହେଲେ ବି ପ୍ରଜ୍ଞାବାନ ବା ପ୍ରତିଭାଧର ହେବା ଅସମ୍ଭବ ନୁହେଁ । ସେଥିପାଇଁ ସାଂପ୍ରତିକ ପରିଭାଷାରେ 'ଶାରୀରିକ ଅକ୍ଷମ' ଏକ ଅସମ୍ମାନଜନକ ଶବ୍ଦ ହେଲାଣି, ଏବେ ଏହା ବଦଳରେ 'ଭିନ୍ନକ୍ଷମ' ଶବ୍ଦର ପ୍ରୟୋଗ ହେଉଛି ।

ତେବେ ମୂଳ ପ୍ରସଙ୍ଗଟି ହେଉଛି ଅନ୍ଧବିଶ୍ୱାସୀ କିଏ ? 'ଅନ୍ଧବିଶ୍ୱାସୀ' ଶବ୍ଦ ଏକ ବାଚ୍ୟାର୍ଥ ଅର୍ଥରେ ଦୃଷ୍ଟିହୀନ ବ୍ୟକ୍ତିକୁ ବୁଝାଏ ନାହିଁ, ବରଂ ଏହାର ଏକ ଲକ୍ଷଣାର୍ଥ ଥିବା ମନେହୁଏ । ଯେଉଁମାନେ ଚିନ୍ତା କରିବାର ସାମର୍ଥ୍ୟ ହରାଇଛନ୍ତି ବା ମାନସିକ ସ୍ତରରେ ନାନା ଆଧାରହୀନ ଭାବନାରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରନ୍ତି, ସେମାନଙ୍କୁ ଅନ୍ଧବିଶ୍ୱାସୀ କହିବା ସମ୍ଭବତଃ ଅଧିକ ଯୁକ୍ତିଯୁକ୍ତ ହେବ । ଅବଶ୍ୟ ପ୍ରତ୍ୟେକ ବ୍ୟକ୍ତିର ଚିନ୍ତା କରିବାର ସହଜାତ ସାମର୍ଥ୍ୟ ରହିଛି । ଜଣେ ମାନସିକ ସ୍ତରରେ ଅନଗ୍ରସର ରହିଥିଲେ ସେ ହୁଏତ ଚିନ୍ତା କରିବାକୁ ଅସମର୍ଥ ହୋଇପାରେ । ମନୋବିଜ୍ଞାନ ସ୍ତରରେ ମଣିଷ ବୁଦ୍ଧିର ପରିମାପକର କେତେକ ମାନଦଣ୍ଡ ରହିଛି । ସେହି ମାନଦଣ୍ଡରେ ମାନସିକ ସ୍ତରରେ ଅନଗ୍ରସର ବ୍ୟକ୍ତିମାନଙ୍କୁ ନିର୍ଣ୍ଣୟ କରାଯାଏ । ପୁନଶ୍ଚ ମାନସିକ ଅନଗ୍ରସର ବ୍ୟକ୍ତିଙ୍କ ମଧ୍ୟରେ କେତେକ ଶ୍ରେଣୀକରଣ ବି କରାଯାଇଛି, ତେବେ ତାହା ଏଠାରେ ଆମର ଅଲୋଚ୍ୟ ବିଷୟ ନୁହେଁ ।

ତେବେ ଯେଉଁମାନେ ବିଭିନ୍ନ ଅନ୍ଧସଂସ୍କାର ଓ ଭ୍ରମାତ୍ମକ ବିଚାରର ଶିକାର ହୋଇ ଚିନ୍ତାକରିବାର ସାମର୍ଥ୍ୟ ରଖନ୍ତି ନାହିଁ ବା ସତ୍ୟକୁ ଜାଣିବାକୁ କୌଣସି କୌତୂହଳତା ପୋଷଣ କରନ୍ତି ନାହିଁ ସେମାନେ ହିଁ ଅନ୍ଧବିଶ୍ୱାସୀ । କାରଣ ସେମାନଙ୍କର ଅନୁସନ୍ଧିତ୍ସା ନଥାଏ ଓ କୁସଂସ୍କାର ସେମାନଙ୍କର ଜୀବନଧାରାକୁ କବଳିତ କରିଥାଏ । ଏହି ଅନ୍ଧସଂସ୍କାର ଗୁଡ଼ିକ ବିଭିନ୍ନ ଶ୍ରେଣୀର ହୋଇପାରେ । ଗୋଟିଏ ସାମାଜିକ ପରମ୍ପରାରେ ଏପରି ନାନା ଅହେତୁକ ବିଶ୍ୱାସ ଓ ଭାବନାର ପ୍ରଚଳନ ଥାଏ ଯାହା ପିଲାଟି ବେଳୁ ଜଣଙ୍କର ମାନସିକତାକୁ ଆଚ୍ଛନ୍ନ କରିଦିଏ । ପ୍ରତ୍ୟେକ ବ୍ୟକ୍ତି ଜନ୍ମରୁ ପ୍ରାୟତଃ କୌତୂହଳୀ ଥାଏ, କିନ୍ତୁ କାଳକ୍ରମେ ସାମାଜିକ ଚଳଣି, ପାରିବାରିକ ପରିସ୍ଥିତି, ଶିକ୍ଷା ଇତ୍ୟାଦି ସ୍ତରରୁ ଏପରି କେତେକ ଅହେତୁକ ଭାବନାର ପ୍ରଭାବରେ ଆସେ ଯାହା ତାହାର ମାନସିକତାକୁ ସଂପୂର୍ଣ୍ଣ ଆକ୍ରାନ୍ତ କରିଯାଏ । ପାରିପାର୍ଶ୍ୱିକ ପରିସ୍ଥିତି ବ୍ୟକ୍ତିଗତ ରୁଚି, ସ୍ୱଭାବରେ ଏପରି ଗଭୀର ପ୍ରଭାବ ସୃଷ୍ଟି କରେ ଯେଉଁଥିରୁ ବ୍ୟକ୍ତି ମୁକ୍ତ ହୋଇପାରେ ନାହିଁ । ସେହିପରି ସମାଜରେ କେତେକ ବ୍ୟକ୍ତି କୂପମଣ୍ଡୁକ ସୁଲଭ

ନିଜର ସଂସାରରେ ନାନା ଅପସିଦ୍ଧାନ୍ତ ଓ ଭ୍ରମାତ୍ମକ ବିଶ୍ୱାସ ଭିତରେ ଜୀବନ ବଞ୍ଚନ୍ତି । ଧର୍ମ ଜଗତରେ ଏହି ଲୋକମାନଙ୍କର ସଂଖ୍ୟା ସବୁଠାରୁ ଅଧିକ ମନେ ହୁଏ । ନିଜର ଧର୍ମକୁ ଏକମାତ୍ର ମହାନ ଧର୍ମ ମନେକରିବା, ନିଜର ଧର୍ମଶାସ୍ତ୍ରକୁ ଚିରନ୍ତନ ଓ ଶାଶ୍ୱତ ବୋଲି ଭାବିବା, ନିଜର ପୂଜାପାଠକୁ ପବିତ୍ର ଓ ଅନ୍ୟର ପୂଜାପାଠକୁ ଘୃଣାକରିବା ଓ ନିଜ ଧର୍ମର ପରମ୍ପରାକୁ ଅଲଙ୍ଘନୀୟ ମନେକରିବାର ମାନସିକତା ଆମ ସଂସାରରେ ବହୁ ପ୍ରବଳ ରହିଥିବା ମନେହୁଏ । ଏତଦ୍‌ବ୍ୟତୀତ ଗୁଡ଼ିଏ ଆଧାରହୀନ ତାତ୍ତ୍ୱିକ ବିଶ୍ୱାସ ବା ସ୍ପେକୁଲେସନକୁ ଦିବ୍ୟ ସତ୍ୟ ବା ଈଶ୍ୱରଦତ୍ତ ଜ୍ଞାନ ବୋଲି ଅନେକ ଲୋକ ବିଶ୍ୱାସ କରିଆସିଛନ୍ତି । ଆତ୍ମା, ଈଶ୍ୱର, ସ୍ୱର୍ଗ, ନରକ, ମୁକ୍ତି, ପୁନର୍ଜନ୍ମ, ବିଚାର ଦିବସ ପରି ଗୁଡ଼ାଏ ଭାବନା ଅନେକ ସମୟରେ ମଣିଷର ବୌଦ୍ଧିକ ବିଚାରକୁ ଏପରି ଆଚ୍ଛାଦିତ କରି ରଖିଥାଏ ଯେ ସେ ସେଥିରୁ ମୁକ୍ତ ହୋଇପାରେ ନାହିଁ । ସେହିପରି ଭାଷା ଜନିତ ଜଟିଳତାରୁ କେତେକ କ୍ଷେତ୍ରରେ ଏକ ରୁଦ୍ଧ ମାନସିକତା ସୃଷ୍ଟି ହୋଇଥାଏ । ଶବ୍ଦର ଇନ୍ଦ୍ରଜାଲ ଭିତରେ ମଣିଷ ବୋଧଶକ୍ତି ବେଳକେ ବିପର୍ଯ୍ୟସ୍ତ ହୋଇଥାଏ । କେତେକ ଶବ୍ଦ ସେମାନଙ୍କର ଅସ୍ପଷ୍ଟତା ଭିତରେ ମଣିଷର ବୁଦ୍ଧିକୁ ଆଚ୍ଛାଦିତ କରିଦିଏ । ଏପରି କେତେକ ଶବ୍ଦର ପ୍ରୟୋଗ ରହସ୍ୟବାଦୀ, ଯୋଗୀ ବା ତାନ୍ତ୍ରିକମାନେ ବିଶେଷତଃ କରିଥାନ୍ତି । ଅନିର୍ବଚନୀୟ ସତ୍ତା, ଅତିମାନସ ଅବତରଣ, ବିଶ୍ୱଚେତନା, ଆତ୍ମସିଦ୍ଧି, ଈଶ୍ୱରପ୍ରାପ୍ତି ଇତ୍ୟାଦି ଗୁଡ଼ିଏ ଆଳଙ୍କାରିକ ଶବ୍ଦ । ଏହି ଶବ୍ଦର ଇନ୍ଦ୍ରଜାଲ ଭିତରେ ବୌଦ୍ଧିକ ସ୍ପଷ୍ଟତା ରହିପାରେ ନାହିଁ ଓ ଗୁଡ଼ିଏ ଛବିଳ ଚିନ୍ତା ମନକୁ ଆକ୍ରାନ୍ତ କରିଦିଏ । ଏପରି କେତେକ ଶବ୍ଦ ବେଳକେ ବ୍ୟବହାର କରାଯାଏ ଯାହା ବାସ୍ତବ ଜଗତର କୌଣସି ସ୍ଥିତିକୁ ବୁଝାଏ ନାହିଁ । ଫଳରେ ନାନା କିମ୍ଭୁତକିମ୍ଭାକାର କଳ୍ପନା ଦ୍ୱାରା ମଣିଷ ପରିଚାଳିତ ହୋଇଥାଏ । ଭାଷାଗତ ଅସ୍ପଷ୍ଟତା ଓ ଛବିଳ ଚିନ୍ତାଦ୍ୱାରା ପରିଚାଳିତ ହୋଇଗଲେ କିପରି ନାନା ତାତ୍ତ୍ୱିକ ଭାବନାର ଉତ୍ପତ୍ତି ହୋଇଥାଏ ତାହା ବିଂଶ ଶତାବ୍ଦୀର ଦାର୍ଶନିକ ଅନୁଶୀଳନର ଏକ ପ୍ରମୁଖ ବିଷୟ । ଭାଷାଗତ ଜଟିଳତାରୁ ସୃଷ୍ଟ ଦାର୍ଶନିକ ସିଦ୍ଧାନ୍ତ ଗୁଡ଼ିକ ପରସ୍ପର ବିରୋଧୀ ଓ ଜଗତ ବିଷୟରେ ଛଦ୍ମକଥନ ମାତ୍ର । ଭାଷାର ଅସ୍ପଷ୍ଟ ବ୍ୟବହାରକୁ ଜାଣିଲେ ସେହି ସମସ୍ୟାମାନଙ୍କର ସମାଧାନ ସମ୍ଭବ । ଦାର୍ଶନିକ ସମସ୍ୟାର ସମାଧାନ ହେଉଛି ସେମାନଙ୍କର ଅସ୍ପଷ୍ଟ ସ୍ୱରୂପକୁ ଭାଷା ବିଶ୍ଳେଷଣ ଦ୍ୱାରା ବ୍ୟକ୍ତ କରିବା । ବସ୍ତୁତଃ ଭାଷାଗତ ଜଟିଳତା ତାର୍କିକ ବିଚାର ଅଭାବରେ ନାନା ଅସ୍ପଷ୍ଟତା ସୃଷ୍ଟି କରିଥାଏ । ସେହିପରି ତନ୍ତ୍ର, ଦେବ-ଦେବୀ ଆରାଧନା, ମନ୍ତ୍ର, ଭାଗ୍ୟ, ବିଧିଲିଖନ ଇତ୍ୟାଦି ବିଷୟକୁ ନେଇ ନାନା ଅପଶାସ୍ତ୍ରମାନ ମଣିଷ ଚିନ୍ତାରାଜ୍ୟକୁ ବହୁ ସମୟରେ କବଳିତ କରିବା ଦେଖାଯାଏ । ନାନା ଅପରୀକ୍ଷିତ ତଥ୍ୟ ଓ କେତେକ ବିଶ୍ୱାସ ପ୍ରତି ଅହେତୁକ ଶ୍ରଦ୍ଧା

ଦ୍ୱାରା ବ୍ୟକ୍ତିର ମନ ମଧ୍ୟ ବେଳକେ ଆଚ୍ଛାଦିତ ହୋଇଥାଏ ଯାହା ମୁକ୍ତ ମନ ଓ କୌତୂହଳ ପ୍ରବଣତାକୁ ନଷ୍ଟ କରିଦିଏ ।

ସାମାଜିକ କ୍ରମବିକାଶ ଧାରାରେ ଅତୀତରେ ଯେତେବେଳେ ମଣିଷର ବିଚାରବୋଧ ଓ ପ୍ରାକୃତିକ ପରିବେଶ ନେଇ ଜ୍ଞାନ ଅତି ସୀମିତ ଥିଲା ସେତେବେଳେ ଧାର୍ମିକ ବିଶ୍ୱାସ ଜୀବନର ପ୍ରତ୍ୟେକ ସ୍ତରକୁ କବଳିତ କରି ରଖିଥିଲା । ସବୁ ସମାଜରେ ବହୁ ଦେବଦେବୀ ପୂଜା, ଉଦ୍ଦଣ୍ଡ ଆରାଧନା, ନାନା ମନ୍ତ୍ର, ତନ୍ତ୍ର, ବିଧିବିଧାନମାନ ସୃଷ୍ଟି ହୋଇଥିଲା । ଦୃଷ୍ଟିର ଅନ୍ତରାଳରେ ନାନା ଶକ୍ତି ଆମ ଜୀବନର ଘଟଣାପ୍ରବାହକୁ ତଥା ପ୍ରକୃତିର ବିଭିନ୍ନ ବିଭାଗକୁ ନିୟନ୍ତ୍ରଣ କରୁଥିବାର ବିଶ୍ୱାସ ରହିଥିଲା । ଧନ, ଜ୍ଞାନ, ସୁଖମୟ ଦାମ୍ପତ୍ୟ ଜୀବନ, ଯାନ୍ତ୍ରିକ କୌଶଳ, ଜନ୍ମ, ମୃତ୍ୟୁ ଏପରି ଜୀବନର ପ୍ରତ୍ୟେକ ସ୍ତରରେ କୌଣସି ଦେବ ବା ଦେବୀଙ୍କୁ କଳ୍ପନା କରାଯାଇଥିଲା । ସେହିପରି ବର୍ଷା, ବାୟୁ, ଅଗ୍ନି, ମାଟି ପ୍ରତ୍ୟେକ ପ୍ରାକୃତିକ କ୍ଷେତ୍ର ପାଇଁ ମଧ୍ୟ ବିଭିନ୍ନ ଦେବ-ଦେବୀଙ୍କର କଳ୍ପନା କରାଯାଇଥିଲା । ପ୍ରତ୍ୟେକ ଦେବ ଦେବୀଙ୍କୁ କିପରି ସନ୍ତୁଷ୍ଟ କରାଯିବ ସେଥି ପାଇଁ ବହୁ ଆନୁଷଙ୍ଗିକ ମନ୍ତ୍ର, ପୂଜା, ବିଧାନମାନ ସୃଷ୍ଟି ହୋଇଥିଲା । ଏହାର ବହୁପରେ ସାଂଗଠନିକ ଧର୍ମମାନଙ୍କର ଅଭ୍ୟୁଦୟ ହେଲା ଓ ଏକେଶ୍ୱରବାଦର ଭାବନା କେତେକ ଧର୍ମରେ ଆସିଲା । ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ସହ ଏକେଶ୍ୱରବାଦ, ଆତ୍ମାର ଅମରତ୍ୱ, ମୁକ୍ତି, ସ୍ୱର୍ଗପ୍ରାପ୍ତି ଇତ୍ୟାଦି ଭାବନାର ଉଦ୍ରେକ ହେଲା ।

ତେବେ ଏସବୁ ବିଶ୍ୱାସର ହୁଏତ ଜୀବନ କ୍ଷେତ୍ରରେ ମନସ୍ତାତ୍ତ୍ୱିକ ପ୍ରଭାବ ରହିଛି । କିନ୍ତୁ ଏହି ସବୁ ବିଶ୍ୱାସରୁ ସୃଷ୍ଟ ଅନ୍ଧ ବିଶ୍ୱାସଗୁଡ଼ିକ କେବଳ ଜ୍ଞାନର ବିକାଶରେ ଯେ ପରିପନ୍ଥୀ ତାହା ନୁହଁ ସେଗୁଡ଼ିକ ସଭ୍ୟ ଜୀବନଦୃଷ୍ଟିର ମଧ୍ୟ ପ୍ରତିକୂଳ । ଯାହା ଆଧାରହୀନ, ଯୁକ୍ତିରହିତ, ଅବୈଜ୍ଞାନିକ ଓ ଅହେତୁକ ସେଗୁଡ଼ିକ ହିଁ କୁସଂସ୍କାର । ମଣିଷ ମୁକ୍ତ ମନ ଓ ବିଚାରଶୀଳ ମାନସିକତା ରଖିବା ଦ୍ୱାରା କୁଂସ୍କାରରୁ ମୁକ୍ତ ରହିପାରିବ । କୁସଂସ୍କାରମୁକ୍ତ ମାନସିକତା ହିଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯାହା ହିଁ ହେତୁବାଦର ଏକ ମୌଳିକ ନିର୍ଯ୍ୟାସ । (୩.୧୧.୧୦)



# ଦର୍ଶନର ଦିଗନ୍ତ

୨୦୧୦ ଅକ୍ଟୋବର ମାସରେ ବମ୍ବେ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆଫ୍ରୋ-ଏସିଆନ ଦର୍ଶନ ସଂଘର ସମ୍ମିଳନୀ ମୁମ୍ବାଇଠାରେ ଅନୁଷ୍ଠିତ ହୋଇଥିଲା । ଆଫ୍ରିକା ଓ ଏସିଆ ମହାଦେଶରୁ କେତେକ ଦେଶର ପ୍ରବୀଣ ଦର୍ଶନ ଅଧ୍ୟାପକମାନେ ଏଥିରେ ଯୋଗ ଦେଇଥିଲେ । କେତେକ ମାନବୀୟ ସମସ୍ୟା, ବିଶ୍ୱସ୍ତରୀୟ ସଂକଟ, ଗୁଣାତ୍ମକ ଜୀବନ, ଶାନ୍ତିପୂର୍ଣ୍ଣ ବିଶ୍ୱ ଇତ୍ୟାଦି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ମଧ୍ୟ ଆଲୋଚନା ସହ ବିଭିନ୍ନ ଦେଶର ଦାର୍ଶନିକ ଓ ବୌଦ୍ଧିକ ପରମ୍ପରା ଉପରେ ସୋପାନମାନ ଅନୁଷ୍ଠିତ ହୋଇଥିଲା । ଏହା ସହିତ ଆଫ୍ରିକୀୟ ଓ ଏସୀୟ ରାଷ୍ଟ୍ରମାନଙ୍କରେ ଗଣତନ୍ତ୍ର, ମାନବିକ ଅଧିକାର, ସାମାଜିକ ନ୍ୟାୟ, ମହିଳା ସଶକ୍ତିକରଣ ପ୍ରସଙ୍ଗ ଉପରେ ମଧ୍ୟ ଆଲୋଚନାଚକ୍ର କାର୍ଯ୍ୟକ୍ରମ ଥିଲା । ବହୁ ବିଜ୍ଞ ଅଧ୍ୟାପକ, ଗବେଷକ ଓ ବୁଦ୍ଧିଜୀବୀଗଣ ନିଜ ନିଜ ଦେଶର ଦାର୍ଶନିକ ପରମ୍ପରା ବିଷୟରେ ତଥ୍ୟଭିତ୍ତିକ ବିଚାରମାନ ଉପସ୍ଥାପନ କରିବାର ଅବକାଶ ପାଇଥିଲେ ।

ସବୁ ଯୁଗରେ ଓ ସବୁ ସଭ୍ୟତାରେ ଦାର୍ଶନିକମାନେ ସମାଜକୁ ମହତ୍ତର ଜୀବନ ବିଷୟରେ ଦିଗ୍‌ଦର୍ଶନମାନ ଦେବାକୁ ପ୍ରୟାସ କରିଛନ୍ତି । ଜୀବନର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ସେମାନେ ଗଭୀର ଚିନ୍ତା ପ୍ରକଟକରି ଆସିଛନ୍ତି । ଯେଉଁଠି ସଭ୍ୟତାର ବିକାଶ ହୋଇଛି, ସେଠାରେ କେତେକ ପ୍ରତିଭାବାନ ବ୍ୟକ୍ତି ଜୀବନର ଶ୍ରେୟ, ସାମାଜିକ ନ୍ୟାୟ, ନୈତିକ ମୂଲ୍ୟବୋଧ ଇତ୍ୟାଦି ପ୍ରସଙ୍ଗ ଉପରେ ଗମ୍ଭୀର ଆଲୋଚନା କରିଆସିଛନ୍ତି । ପ୍ରତ୍ୟେକ ଦେଶର ସାମାଜିକ ଜୀବନ ପ୍ରବାହରେ କେତେ କେତେ ସୃଜନାତ୍ମକ ଜାଗରଣ ସୃଷ୍ଟି ହୋଇଛି । ଆଧୁନିକ ବିଜ୍ଞାନର ବିକାଶ ହେବାର ବହୁ ପୂର୍ବରୁ ଦର୍ଶନ, ସାହିତ୍ୟ, କଳା, ଧାର୍ମିକ ଚେତନା ଇତ୍ୟାଦି ପ୍ରତ୍ୟେକ ଭୂ-ଖଣ୍ଡର ଜାତୀୟ ସଂସ୍କୃତିକୁ ଋଦ୍ଧିମନ୍ତ କରିଆସିଛି । ସାମାଜିକ ଜୀବନର ଗୁଣାତ୍ମକ ବିକାଶରେ ଏସବୁର ଗଭୀର ପ୍ରଭାବ ରହିଛି । ଏହା ସହିତ ନାନା ରାଜନୈତିକ ଆଲୋଡ଼ନ, ଘନଘଟା, ଯୁଦ୍ଧର ବିଭୀଷିକା ବିଭିନ୍ନ ଜନଗୋଷ୍ଠୀର ଜୀବନ ଓ ପ୍ରବାହକୁ ନାନା ଭାବରେ ପ୍ରଭାବିତ କରିଛି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କର ସାମାଜିକ ଓ ରାଜନୈତିକ ଇତିହାସର ଏକ ସୁଦୀର୍ଘ କାହାଣୀ ରହିଛି । ପରବର୍ତ୍ତୀ ଯୁଗରେ ରାଷ୍ଟ୍ର ଭାବନାର ଅଭ୍ୟୁଦୟ ଓ ରାଷ୍ଟ୍ରୀୟ ସଂହତି ଜନିତ ଆବେଗ ପୃଥିବୀର ଭୌଗୋଳିକ ମାନଚିତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ରାଷ୍ଟ୍ରୀୟ ଚେତନାକୁ ଆଧାର କରି ପ୍ରତ୍ୟେକ ବ୍ୟକ୍ତିର

ଏକ ସ୍ୱତନ୍ତ୍ର ଅସ୍ମିତା ସୃଷ୍ଟି ହୋଇଛି । ଗୋଟିଏ ଭୌଗୋଳିକ ଭୂଖଣ୍ଡର ଜନଗଣ ଏକ ରାଷ୍ଟ୍ରୀୟ ପରିଚୟ ଭିତରେ ନିଜର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ସଂହତିକୁ ସୁଦୃଢ଼ ଭିତ୍ତି ଦେବାକୁ ପ୍ରୟାସ କରିଛନ୍ତି । ରାଷ୍ଟ୍ରୀୟ ସଂହତି ଓ ଅସ୍ମିତାଜନିତ ଆବେଗ ଆମ ସଂସାରରେ ଦୃଢ଼ ହେବାଦ୍ୱାରା ଏକ ନୂତନ ପରିବେଶ ଓ ପରିସ୍ଥିତିର ଅଭ୍ୟୁଦୟ ହୋଇଛି ।

କିନ୍ତୁ ଦାର୍ଶନିକମାନେ ଏକ ଭୌଗୋଳିକ ବା ରାଷ୍ଟ୍ରୀୟ ସୀମା ଭିତରେ ଆବଦ୍ଧ ନ ରହି ଜ୍ଞାନ, ସତ୍ତା, ଆଚାର, ସୌନ୍ଦର୍ଯ୍ୟ ଇତ୍ୟାଦି ପ୍ରସଙ୍ଗ ଉପରେ ତାତ୍ତ୍ୱିକ ପ୍ରଶ୍ନମାନ ଉଠେଇଛନ୍ତି, ଯାହାର ଏକ ସାର୍ବଜନୀନ ତାତ୍ପର୍ଯ୍ୟ ରହିଛି । ଜ୍ଞାନର ଉତ୍ସ କ'ଣ ? ଏହାର ସୀମା ଅଛି କି ? ସତ୍ୟର ସ୍ୱରୂପ କିପରି ସ୍ଥିର କରାଯିବ ? କୌଣସି ବିଚାର ବୈଧ ବା ଅବୈଧ ଏହା ସ୍ଥିର କରିବାକୁ କେଉଁ ମାନଦଣ୍ଡକୁ ନିଆଯିବ ? ଦୃଶ୍ୟମାନ ଓ ପରିବର୍ତ୍ତନଶୀଳ ଦୁନିଆରେ କୌଣସି ଶାଶ୍ୱତ ସତ୍ତା ରହିଛି କି ? ଯଦି ଅଛି ତାହାର ସଂଜ୍ଞା ଓ ସ୍ୱରୂପ କିପରି ଜାଣିହେବ ? ନୀତି, ନ୍ୟାୟ, ନୈତିକତା କାହାକୁ କୁହାଯାଏ ? ଏହାର କୌଣସି ସାର୍ବଜନୀନ ମହତ୍ତ୍ୱ ରହିଛି ନା ଏହା ସାମାଜିକ ଜୀବନ ପ୍ରବାହରେ ଭିନ୍ନ ଭିନ୍ନ, ସୁତରାଂ ଆଞ୍ଚଳିକ ? ଏକ ଉତ୍କୃଷ୍ଟ ଜୀବନ କାହାକୁ କହିବା ? ଜୀବନର କିଛି ଅନ୍ତିମ ଲକ୍ଷ୍ୟ ରହିଛି କି ? ସୌନ୍ଦର୍ଯ୍ୟ ବ୍ୟକ୍ତିନିଷ୍ଠ ନା ବସ୍ତୁନିଷ୍ଠ ? ସୌନ୍ଦର୍ଯ୍ୟର କୌଣସି ସାର୍ବଜନୀନ ଆବେଦନ ରହିଛି କି ? ଏଭଳି ଅସଂଖ୍ୟ ପ୍ରଶ୍ନ ଓ ପ୍ରସଙ୍ଗକୁ ନେଇ ବିଭିନ୍ନ ସଭ୍ୟତାରେ ଦାର୍ଶନିକମାନେ ନାନା ଗମ୍ଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ସେହି ଭାବନା, ବିଚାର ଓ ଅନୁଶୀଳନ ମଧ୍ୟଦେଇ ଦର୍ଶନର ଇତିହାସ ପୁଷ୍ଟ ହୋଇଛି । ସବୁ ଦେଶରେ ଯେଉଁ ବୁଦ୍ଧିଦୀପ୍ତ ବ୍ୟକ୍ତିଗଣ ଏସବୁ ପ୍ରସଙ୍ଗ ଉପରେ ଗଭୀର ଚିନ୍ତା ପ୍ରକଟ କରିଛନ୍ତି ସେମାନେ ହିଁ ଦାର୍ଶନିକ । ଦାର୍ଶନିକମାନେ କ୍ରାନ୍ତିକାରୀ ଚିନ୍ତକ ଓ ବୌଦ୍ଧିକ ଅନୁସନ୍ଧିତ୍ସୁ ।

ତେବେ ଦାର୍ଶନିକ ଜ୍ଞାନ ବିଜ୍ଞାନ ପରି ବସ୍ତୁନିଷ୍ଠ ସତ୍ୟତା ଉପରେ ଆଧାରିତ ନୁହେଁ । ଦର୍ଶନର ଇତିହାସ ପ୍ରାଚୀନ ଓ ଦାର୍ଶନିକ ସିଦ୍ଧାନ୍ତ କ୍ଷେତ୍ରରେ ପରସ୍ପର-ବିରୋଧୀ ଭାବନା ରହିବା ସ୍ୱାଭାବିକ । ବିଶେଷକରି ତତ୍ତ୍ୱମୀମାଂସା କ୍ଷେତ୍ରରେ ନାନା ପରସ୍ପର ବିରୋଧୀ ସିଦ୍ଧାନ୍ତମାନେ ଦର୍ଶନ ଇତିହାସରେ ସୁବିଦିତ । ଗୋଟିଏ ତାତ୍ତ୍ୱିକ ସିଦ୍ଧାନ୍ତ ଆଧାରରେ ଜଣେ ଦାର୍ଶନିକ ଜଗତର ଓ ଏପରିକି ଜୀବନର ଅବବୋଧ କରିଥାନ୍ତି । ସେ ଯେଉଁ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରନ୍ତି ତାହାରି ମାନଦଣ୍ଡରେ ସେ ବିଶ୍ୱର ଏକ ବ୍ୟାଖ୍ୟା କରି ତାହା ଯେ ଅବଶ୍ୟମ୍ଭାବୀ ଏହା ମନେକରନ୍ତି । ଗୋଟିଏ ଉଦାହରଣ ନିଆଯାଉ । ବିଶ୍ୱର ମୌଳିକ ସତ୍ତା କିଛି ଅଛି କି ? ଯଦି ଅଛି ତାହାର ସ୍ୱରୂପ ଜଡ଼, ଚେତନ ନା ଅନ୍ୟ କିଛି ? ତାହା ଏକ ଦୁଇ ନା ଅନେକ ? ଏହି ପ୍ରଶ୍ନମାନଙ୍କର ଅନୁଶୀଳନରୁ କାହାପାଇଁ ଏହା ଚେତନ ତ କାହାପାଇଁ ଏହା ଭୌତିକ ବୋଲି ବିଶ୍ୱାସ ପ୍ରକାଶ ପାଇଛି । କେହି କିଛି ଯୁକ୍ତିର ଆଶ୍ରୟ ନେଇ ଏହାକୁ

ଏକ ବୋଲି କହିବାବେଳେ କେହି ଏହାକୁ ଦୁଇ ବା ଅନ୍ୟ କେହି ଏହାକୁ ବହୁବିଧ ବୋଲି କଳ୍ପନା କରିଛନ୍ତି । ଅବଶ୍ୟ ଜଣେ ଦାର୍ଶନିକ କୌଣସି ତାତ୍ତ୍ୱିକ ସିଦ୍ଧାନ୍ତ ଅବତାରଣା କଲାବେଳେ କେତେକ ଯୁକ୍ତିର ଆଶ୍ରୟ ନେଇଥାନ୍ତି । ତେବେ ସେହି ଯୁକ୍ତିକୁ ସେ ବେଶ୍ ଭାବଗର୍ଭକ ଭାବେ ପ୍ରକାଶ କରିଥିବା ହେତୁ ତାତ୍ତ୍ୱିକ ଭାବନା ଜନଜୀବନରେ କିଛି ପ୍ରଭାବ ସୃଷ୍ଟି କରିଥାଏ । କିନ୍ତୁ ପରବର୍ତ୍ତୀ ସମୟରେ ତାଙ୍କ ଯୁକ୍ତିର କୌଣସି ତ୍ରୁଟିପୂର୍ଣ୍ଣ ଦିଗକୁ ଦର୍ଶାଇ ଅନ୍ୟ ଦିଗରୁ ଏକ ଭିନ୍ନ ସିଦ୍ଧାନ୍ତର ଅବତାରଣା ଅନ୍ୟ ଜଣେ ଦାର୍ଶନିକ କରିଥାନ୍ତି । ତାଙ୍କ ବିଚାର ସେ ପର୍ଯ୍ୟନ୍ତ ଚିନ୍ତା ଜଗତରେ ପ୍ରଭାବ ବିସ୍ତାର କରିଥାଏ ଯେ ପର୍ଯ୍ୟନ୍ତ ସେହି ସିଦ୍ଧାନ୍ତର ତ୍ରୁଟି ବା ଯୁକ୍ତିର ଅବୈଧତାର ସୂଚନା ମିଳି ନଥାଏ । ଏହିପରି ତତ୍ତ୍ୱ ମୀମାଂସା ସ୍ତରରେ ନାନାବିଧ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା ଦେଖିବାକୁ ମିଳେ । ସେ ସବୁର ତୁଳନାତ୍ମକ ଅଧ୍ୟୟନରୁ ସେସବୁ କିପରି ପରସ୍ପର ବିରୋଧୀ ତାହା ଜଣାପଡ଼େ । ସୁତରାଂ ଦର୍ଶନର ଇତିହାସରେ ଜଗତର, ମୌଳିକ ସତ୍ତାର ଓ ଜୀବନର ଅବବୋଧ ନେଇ ନାନାବିଧ ସିଦ୍ଧାନ୍ତମାନଙ୍କର ଅବତାରଣା ସୃଷ୍ଟି ହୋଇଛି । ଦାର୍ଶନିକ ସିଦ୍ଧାନ୍ତମାନଙ୍କର ବିଶ୍ଳେଷଣ କରିଥିବା ଆଧୁନିକ ଯୁଗର ଦାର୍ଶନିକମାନେ ଗୋଟିଏ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତର (ମେଟାଫିଜିକାଲ ସିଷ୍ଟମ) ସମାଲୋଚକଙ୍କୁ ଜଣେ ତତ୍ତ୍ୱମୀମାଂସାର ସହୋଦର ଭାଇ ବୋଲି ବିଚାର କରିଛନ୍ତି । ସେ ଗୋଟିଏ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତକୁ ସମାଲୋଚନା କରିବାକୁ ଯାଇ ଏକ ବିରୋଧୀ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତର ଅବତାରଣା କରିବାକୁ ପ୍ରୟାସ ମାତ୍ର କରିଥାନ୍ତି । ପ୍ରାଚ୍ୟ ହେଉ ବା ପାଶ୍ଚାତ୍ୟ ହେଉ ଦାର୍ଶନିକ ବିଚାର ଅବତାରଣା କ୍ଷେତ୍ରରେ ପ୍ରାଚୀନ ଯୁଗରେ ଏହିଭଳି ବହୁବିଧ ପରସ୍ପର ବିରୋଧୀ ସିଦ୍ଧାନ୍ତମାନ ଦର୍ଶନ ସ୍ତରରେ ବିକାଶ ଲାଭ କରିଛି । ତେବେ ଗୋଟିଏ ତାତ୍ତ୍ୱିକ ସିଦ୍ଧାନ୍ତର ମୌଳିକ ତ୍ରୁଟି କେବଳ ଜଣେ ପ୍ରଖର ଧୀଶକ୍ତି ସମ୍ପନ୍ନ ବ୍ୟକ୍ତି ହିଁ ଦେଖାଇପାରନ୍ତି ।

ପ୍ରାଚୀନ ଯୁଗର ତତ୍ତ୍ୱମୀମାଂସୀ ସମ୍ପର୍କିତ ଦାର୍ଶନିକ ପରମ୍ପରା ବିଂଶ ଶତାବ୍ଦୀୟ ଅନୁଶୀଳନରେ ବେଶ୍ ଆଲୋଡ଼ନ ଆଣିଥିଲା । ସମସ୍ତ ତତ୍ତ୍ୱମୀମାଂସୀୟ ଜ୍ଞାନ ଯେ ଅବୈଧ ଯୁକ୍ତି ଉପରେ ଆଧାରିତ ଓ ସେସବୁ ଜଗତ ବିଷୟକ କୌଣସି ଜ୍ଞାନର ଅବତାରଣା କରନ୍ତି ନାହିଁ, ତାହା ଆଧୁନିକ ବିଶ୍ଳେଷଣରେ ଅଧିକ ସ୍ପଷ୍ଟ ହେବାକୁ ଲାଗିଲା । ଭାଷାଜନିତ ଜଟିଳତା, ଛବିଳ ଚିନ୍ତନ, କାଳ୍ପନିକ ବ୍ୟାଖ୍ୟା, ଅବୈଧ ଯୁକ୍ତି ଇତ୍ୟାଦି ଯୋଗୁ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ଯେ ଚିନ୍ତା ରାଜ୍ୟରେ ସୃଷ୍ଟି ହୋଇଛି ତାହା ଜଣାପଡିବା ଦ୍ୱାରା ଦାର୍ଶନିକ ଚିନ୍ତନରେ ତତ୍ତ୍ୱମୀମାଂସା ବିଶେଷ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଲାନାହିଁ । ଯେଉଁ ଦାର୍ଶନିକ ସିଦ୍ଧାନ୍ତ ଏକଦା ଚିନ୍ତା ରାଜ୍ୟରେ ବେଶ୍ ଭାବଗର୍ଭକ ମନେହେଉଥିଲା, ତାହା ସାମ୍ପ୍ରତିକ ଯୁଗର ବିଚାର ଓ ଚିନ୍ତନ ଆଧାରରେ ଅପାଂକ୍ତେୟ ହୋଇଉଠିଲା । ବସ୍ତୁତଃ ଦର୍ଶନର ସଂଜ୍ଞା, ସ୍ୱରୂପ, ପରିସର ନେଇ ପ୍ରାଚୀନ ଯୁଗର ବିଚାରରେ ଆମୂଳଚୂଳ ପରିବର୍ତ୍ତନ ହେଲା । ଦର୍ଶନ ଛବିଳ

ଚିନ୍ତନଜନିତ ତତ୍ତ୍ୱ ମୀମାଂସୀୟ ସିଦ୍ଧାନ୍ତ ପରିବର୍ତ୍ତେ ବିଶ୍ଳେଷଣ, ତାର୍କିକ ପଦ୍ଧତି, ବୌଦ୍ଧିକ ସ୍ପଷ୍ଟତାକୁ ଗୁରୁତ୍ୱ ଦେଲା । ବିଜ୍ଞାନ ଯେପରି ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଜନିତ ଏକ ସାର୍ବଜନୀନ ମାନଦଣ୍ଡକୁ ଆଧାରକରି ଏହାର ସିଦ୍ଧାନ୍ତ ବା ଥିଓରିମାନଙ୍କୁ ପ୍ରତିଷ୍ଠା କଲା, ଦର୍ଶନ ସେହିପରି ଏକ ବିଶ୍ଳେଷଣାତ୍ମକ ପଦ୍ଧତିକୁ ଆଧାର ଭାବେ ନେଇ ବିଭିନ୍ନ ସିଦ୍ଧାନ୍ତର ଅବତାରଣା କରିବାକୁ ପ୍ରୟାସ କଲା । ଏହି ପରିପ୍ରେକ୍ଷୀରେ ଧର୍ମର ପାରଲୌକିକ ବିଶ୍ୱାସଗୁଡ଼ିକ କିପରି ପ୍ରାଚୀନ ଯୁଗର କଳ୍ପନା ମାତ୍ର ତାହା ଦର୍ଶନ ପରିସରରେ ବେଶ୍ ସୁଦୃଢ଼ ହୋଇଉଠିଲା । ଅବିନାଶୀ ଆତ୍ମା, ମୁକ୍ତି, ମୋକ୍ଷ, ଈଶ୍ୱରପ୍ରାପ୍ତି ଭଳି ଭାବନାଗୁଡ଼ିକ ଯେ କେବଳ ଛବିଳ ଚିନ୍ତନ ଜନିତ ଆଧାରହୀନ ବିଶ୍ୱାସ (ଗ୍ରସ ଆସମ୍ପସନ) ତାହା ଦର୍ଶନ ପରିସରରେ ସ୍ପଷ୍ଟ ହେବାକୁ ଲାଗିଲା । ବୌଦ୍ଧିକ ସ୍ପଷ୍ଟତା, ପ୍ରତ୍ୟୟମାନଙ୍କର ବିଶ୍ଳେଷଣ, ତର୍କଭିତ୍ତିକ ଅନୁଶୀଳନ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ପ୍ରମୁଖ ଭୂମିକା ନେଲା । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଦର୍ଶନର ନୂତନ ଦିଗନ୍ତ ଚିନ୍ତା ରାଜ୍ୟରୁ ବହୁ ଅହେତୁକ କଳ୍ପନାକୁ ଦୂର କରିବାରେ ସମର୍ଥ ହେଲେ । ମୁକ୍ତମନ, ଅନିସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ତର୍କଶୀଳ ଆଧାରକୁ ଉଭୟ ଭିନ୍ନଭିନ୍ନ ଲକ୍ଷ୍ୟରେ ବିଜ୍ଞାନ ଓ ଦର୍ଶନ ଗ୍ରହଣ କରିନେଲେ । ପରିଣାମତଃ ଦର୍ଶନ ଓ ବିଜ୍ଞାନ ସତ୍ୟାନ୍ୱେଷଣକୁ ପ୍ରାଧାନ୍ୟ ଦେଲେ । ତେବେ ବିଜ୍ଞାନ ପ୍ରକୃତିରେ ଘଟୁଥିବା ଘଟଣା ଓ ବସ୍ତୁମାନଙ୍କୁ ପ୍ରାକୃତିକ ନିୟମ ଓ ସିଦ୍ଧାନ୍ତ ଜରିଆରେ ବ୍ୟାଖ୍ୟା କରିବାବେଳେ ଦର୍ଶନ ପ୍ରତ୍ୟୟଗତ ବିଶ୍ଳେଷଣ ଓ ତାର୍କିକ ଅନୁଶୀଳନକୁ ଏହାର ଲକ୍ଷ୍ୟ ଭାବରେ ଗ୍ରହଣକଲା ।

ଆଧୁନିକ ଯୁଗର ଦାର୍ଶନିକମାନେ ବିଶ୍ୱଶାନ୍ତି, ସଂପ୍ରୀତି, ମାନବିକ ମହତ୍ତ୍ୱ, ଗୁଣାତ୍ମକ ଜୀବନ ପାଇଁ ଗମ୍ଭୀର ଚିନ୍ତାପ୍ରକଟ କରୁଛନ୍ତି । ବିଭିନ୍ନ ଦେଶର ବୌଦ୍ଧିକ ବିକାଶଧାରାରେ ଦରଦୀ ଓ ମାନବବାଦୀ ଚିନ୍ତାନାୟକମାନେ ଏକ ହିଂସାରହିତ, ଭେଦଭାବଶୂନ୍ୟ ସମାଜର ପରିକଳ୍ପନା କରିଛନ୍ତି । ସେମାନଙ୍କ ଚିନ୍ତାଧାରାରେ ରହିଥିବା ଏକ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଦ୍ୱାରା ସମାଜର ନୈତିକ ଉତ୍ତରଣ ସମ୍ଭବପର ହୋଇଛି । ସେହିମାନଙ୍କର ଚିନ୍ତନ ମଧ୍ୟ ଦେଇ ସେମାନଙ୍କ ସମାଜରେ ସଭ୍ୟ ମୂଲ୍ୟବୋଧଗୁଡ଼ିକର ଅଭ୍ୟୁଦୟ ହୋଇଛି । ଏ ସତ୍ତ୍ୱେ ସେମାନେ ଦେଶ, କାଳ ଉର୍ଦ୍ଧ୍ୱରେ ସାର୍ବଜନୀନ ସତ୍ୟ ଓ ମୂଲ୍ୟବୋଧର ପ୍ରବକ୍ତା କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କୃଷ୍ଟ ଜୀବନ ଓ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ସଭ୍ୟତାରେ ଦାର୍ଶନିକମାନଙ୍କର ସ୍ୱପ୍ନହୋଇ ରହିଛି । (୧୦.୧୧.୧୦)



# ଦର୍ଶନ ଓ ଦାରିଦ୍ର୍ୟ

ବମ୍ବେ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିବା ଆଫ୍ରୋଏସିଆନ ଦର୍ଶନ ସଂଘ ସମ୍ମିଳନୀରେ ଆଫ୍ରିକା ଓ ଏସିଆ ଏଇ ଦୁଇ ମହାଦେଶରୁ କେତେକ ଦେଶର ପ୍ରବୀଣ ଦର୍ଶନ ଅଧ୍ୟାପକମାନେ ଯୋଗ ଦେଇଥିଲେ । ଚାରିଦିନ ଧରି ବିଭିନ୍ନ ସୋପାନ ଓ ଆଲୋଚନାଚକ୍ରରେ ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଦାର୍ଶନିକମାନେ ସେମାନଙ୍କର ସୁଚିନ୍ତିତ ମନ୍ତବ୍ୟ ଉପସ୍ଥାପନ କରିଥିଲେ । ତେବେ "ପାରିବେଶିକ ସଂକଟ ଓ ଆଗାମୀ ବିଶ୍ୱ" ଶୀର୍ଷକ ଆଲୋଚନାଚକ୍ରରେ ଜାପାନରୁ ଆସିଥିବା ଦୁଇଜଣ ପ୍ରବୀଣ ଅଧ୍ୟାପକ ପ୍ର. ନୋବୁମିଚି ଇଓ୍ୱାସା ଓ ପ୍ର. ଏଇଜି ହାଟୋରିଙ୍କ ଆଲୋଚନା ଅତ୍ୟନ୍ତ ଭାବଗର୍ଭକ ଥିଲା । ଅଲୋଚନା ଶେଷରେ ଅଧ୍ୟାପକ ଇଓ୍ୱାସାଙ୍କୁ ବଧାଇ ଜଣାଇ ଜାପାନ ବିଷୟରେ କେତେକ ସାଧାରଣ ପ୍ରଶ୍ନ କରିଥିଲି । ଏସୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଜାପାନ ଏକ ଶିଳ୍ପ-ସମୃଦ୍ଧ ରାଷ୍ଟ୍ର । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବହୁ ପରାଭବ ପାଇ ଧ୍ୱସ୍ତ-ବିଧ୍ୱସ୍ତ ହୋଇଥିବା ଏକ ରାଷ୍ଟ୍ର କେତୋଟି ଦଶନ୍ଧି ଭିତରେ ପୁନଶ୍ଚ ଏକ ଅଗ୍ରଣୀ ରାଷ୍ଟ୍ର ଭାବରେ ନିଜକୁ ପ୍ରସ୍ତୁତ କରିନେଇପାରିଲା । ଜାପାନରେ ଦେଖିବାକୁ ଗଲେ ବିଶେଷ ପ୍ରାକୃତିକ ସମ୍ପଦ ନାହିଁ, ପ୍ରକୃତି ଅନେକାଂଶରେ ପ୍ରତିକୂଳ । ଏସବୁ ସତ୍ତ୍ୱେ ଜାପାନ ଏକ ସମୃଦ୍ଧ ରାଷ୍ଟ୍ର । ସେଠାରେ ଜୀବନର ଗୁଣାତ୍ମକ ମାନ ଅତି ଉଚ୍ଚସ୍ତରର ଓ ସାଧାରଣ ଜୀବନ ପ୍ରବାହରେ ସେପରି ଦାରିଦ୍ର୍ୟ ନାହିଁ । ତେବେ ଅଧ୍ୟାପକ ଇଓ୍ୱାସାଙ୍କୁ ତାଙ୍କ ଦେଶରେ ଦର୍ଶନ ଓ ମାନବ - ଶାସ୍ତ୍ର (ହ୍ୟୁମାନିଟିଜ) ବିଷୟରେ ଛାତ୍ରଛାତ୍ରୀମାନେ ଅଧ୍ୟୟନ କରିବାକୁ ଆଗ୍ରହ କରନ୍ତି କି ନାହିଁ ବୋଲି ପ୍ରଶ୍ନ କରିଥିଲି । ମୋର ଧାରଣା ଥିଲା ଯେ, ଜାପାନ ଭଳି ଶିଳ୍ପ - ସମୃଦ୍ଧ ରାଷ୍ଟ୍ରମାନଙ୍କରେ ବିଜ୍ଞାନ, ପ୍ରଯୁକ୍ତି, ଇଞ୍ଜିନିୟରିଂ ଇତ୍ୟାଦି ବିଷୟରେ ପ୍ରାଧାନ୍ୟ ଦିଆଯାଏ, ଅଥଚ ସାହିତ୍ୟ, ଦର୍ଶନ, ମାନବଶାସ୍ତ୍ର ଇତ୍ୟାଦି ଅଧ୍ୟୟନକୁ ବୋଧହୁଏ ଗୁରୁତ୍ୱ ଦିଆଯାଏ ନାହିଁ । ତେବେ ମୋର ଏହି ଅଜ୍ଞତା ପ୍ର.ଇଓ୍ୱାସାଙ୍କ ଉତ୍ତରରେ ଦୂରହୋଇ ଯାଇଥିଲା । ତାଙ୍କ ଦେଶରେ ବିଜ୍ଞାନ, ଇଞ୍ଜିନିୟରିଂ ଇତ୍ୟାଦିର ଅଧ୍ୟୟନ କ୍ଷେତ୍ରରେ ଯେପରି ଆଗ୍ରହ ରହିଛି, ଦର୍ଶନ ଓ ମାନବ ଶାସ୍ତ୍ର ଇତ୍ୟାଦି ଅଧ୍ୟୟନ ପ୍ରତି ମଧ୍ୟ ସେହିପରି ଆଗ୍ରହ ରହିଛି । ଏସବୁର ଅଧ୍ୟୟନ ଓ ଗବେଷଣା ନ ଥିଲେ ସମାଜର ନୈତିକ ଓ ଗୁଣାତ୍ମକ ବିକାଶ କିପରି ସମ୍ଭବ ହେବ ବୋଲି ସେ ମୋତେ ଓଲଟା ପ୍ରଶ୍ନ କରିଥିଲେ । ତାଙ୍କ ସହ ସାଧାରଣ ଆଲୋଚନା ଭିତରେ ମୋର ଧାରଣା ହେଲା ଜାପାନ ଯେ କେବଳ ଏକ

ଶିଳ୍ପ ସମୃଦ୍ଧ ରାଷ୍ଟ୍ର ତାହା ନୁହେଁ, ସେଠାରେ ସାମାଜିକ ଜୀବନ ପ୍ରବାହରେ ଶୃଙ୍ଖଳାବୋଧ, ଉଚ୍ଚ ନାଗରିକ କର୍ତ୍ତବ୍ୟଜ୍ଞାନ, ଜନଗଣଙ୍କର କର୍ମ ସଂସ୍କୃତି ଓ ସାଧୁତାଭାବ ମଧ୍ୟ ବେଶ୍ ଉଚ୍ଚସ୍ତରରେ । ଏହି କର୍ମ ସଂସ୍କୃତି ଓ ସାଧୁତା ଯୋଗୁ ସେହି ରାଷ୍ଟ୍ର ନାନା ପ୍ରତିକୂଳତା ସତ୍ତ୍ୱେ ପୃଥିବୀରେ ଏକ ଉନ୍ନତ ରାଷ୍ଟ୍ରର ମର୍ଯ୍ୟାଦା ଲାଭ କରିପାରିଛି । ସାଧାରଣ ଜୀବନ ପ୍ରବାହରେ ଆନ୍ଦୋଳନ, କାର୍ଯ୍ୟବନ୍ଦ, ଛାତ୍ର ଅଶାନ୍ତି, ଶ୍ରମିକ ଅଶାନ୍ତି, ଷ୍ଟ୍ରାଇକ, ହରତାଳ ତାଙ୍କ ଦେଶରେ ଅଚିନ୍ତନୀୟ ।

ମୁମ୍ବାଇ ସହରରେ ପ୍ରାୟ ଗୋଟିଏ ସପ୍ତାହ ଅବସ୍ଥାନ କାଳରେ ସେଠାରେ ଦୁଇଟି ଭାରତର ଚିତ୍ର ସ୍ପଷ୍ଟ ଦେଖିବାକୁ ପାଇଲି । ଯେ କେହି ବି, ଏହାକୁ ନିଜର ଅନୁଭବରେ ଆଣିପାରିବ । ଅତ୍ୟୁଚ୍ଚ ଅଟ୍ଟାଳିକା, ବର୍ଣ୍ଣାଢ଼୍ୟବଜାର, ଅତି ଦାମିକା ତାରକା ହୋଟେଲ, ବ୍ୟସ୍ତବହୁଳ ଜୀବନ, ସବୁଆଡ଼େ ଜନସମୁଦ୍ର ମୁମ୍ବାଇରେ ପାଦ ଦେଉ ଦେଉ ଜଣଙ୍କର ଦୃଷ୍ଟିକୁ ଆସିବ । ସେହିପରି ଶହ ଶହ ବସ୍ତି ବା ସ୍ଲମ୍, ଅତି ଅସ୍ୱାସ୍ଥ୍ୟକର ପରିବେଶରେ ରହୁଥିବା ଲକ୍ଷ ଲକ୍ଷ ମଣିଷ, ପେଟପାଟଣା ପାଇଁ ଖଟୁଥିବା ଲୋକମାନଙ୍କର ଦୟନୀୟ ଜୀବନ, ଉତ୍କଟ ଦାରିଦ୍ର୍ୟ, ବଞ୍ଚି ରହିବା ପାଇଁ ଜୀବନ-ମରଣ ସଂଗ୍ରାମ ଏହା ବି ବେଶ୍ ନଜରକୁ ଆସିବ । ତେବେ ମୁମ୍ବାଇରେ ରହିଥିବା ସମୟରେ ଓଡ଼ିଶାର ଜଣେ ବନ୍ଧୁ ଯେ ଏକ ବ୍ୟାଙ୍କରେ ଅଫିସର ଅଛନ୍ତି ତାଙ୍କ ଘରକୁ ଯିବାକୁ ଅନୁରୋଧ ଜଣାଇ ନିମନ୍ତ୍ରଣ କଲେ । ସମ୍ମିଳନୀ ଶେଷରେ ତାଙ୍କ ଘରକୁ ଯିବାଦ୍ୱାରା ଏକ ଅପୂର୍ବ ଅନୁଭୂତି ଲାଭ କଲି । ଏକ ଛତିଶ ମହଲା ବିଶିଷ୍ଟ ଆପାର୍ଟମେଣ୍ଟରେ ବନ୍ଧୁ ଜଣକ ୨୪ତମ ମହଲାରେ ରୁହନ୍ତି । ସେଠାରେ ପହଞ୍ଚି ତାଙ୍କ ଘରେ ଅତିଥି ହେବା ଭିତରେ ଘର ଭିତରର ପରିବେଶ ବେଶ ଅତ୍ୟାଧୁନିକ ମନେହେଲା । ବନ୍ଧୁ ଜଣଙ୍କ ତାଙ୍କ ଆପାର୍ଟମେଣ୍ଟର କେତେକ ମହଲାକୁ ନେଇ ସେ ପରିବେଶଟି ବିଷୟରେ ମୋତେ ଅବଗତ କରାଇଲେ । ଷଷ୍ଠ ମହଲାରେ ଥିବା ଗୋଟିଏ ପାର୍କରେ ସେ ମୋତେ ବୁଲାଇ ସେଠିକାର ବଗିଚା ଫୁଲଗଛ ଦେଖାଇଲେ । ପଞ୍ଚମ ମହଲାରେ ଥିବା ସୁଇମିଂପୁଲକୁ ନେଇ ସେଠିକାର ପରିବେଶ ଦେଖି ମୁ କିଛିଟା ଆଶ୍ଚର୍ଯ୍ୟହେଲି । ଗୋଟିଏ ଆପାର୍ଟମେଣ୍ଟର ଗୋଟିଏ ମହଲାରେ ସୁଇମିଂପୁଲ ରହିବା ଓ ସେଥିରେ ଲୋକମାନେ ସନ୍ତରଣ କରିବା ମୁଁ କଳ୍ପନା ବି କରିନଥିଲି । ଏକ ଛତିଶ ମହଲା କୋଠାରେ ଏତେ ଲୋକଙ୍କର ମଟର କାର ରଖିବାକୁ ତଳର ଜାଗା ବ୍ୟତୀତ ଚାରି ମହଲା ପର୍ଯ୍ୟନ୍ତ ଗାଡ଼ି ଉଠାଇ କାର ରଖିବାର ବ୍ୟବସ୍ଥା ମଧ୍ୟ ଦେଖିଲି । ପରିଷ୍କାର ପରିଚ୍ଛନ୍ନ ପରିବେଶ, ଅତ୍ୟାଧୁନିକ ଲିଫ୍ଟ ବ୍ୟବସ୍ଥା ଆପାର୍ଟମେଣ୍ଟର ଲୋକମାନଙ୍କ ମନୋରଞ୍ଜନ ପାଇଁ ଫ୍ଲାଟର ଗୋଟିଏ ମହଲାରେ ପାର୍କ, ଭ୍ରମଣ ଓ ବ୍ୟାୟାମ ପାଇଁ ଗୋଟିଏ ମହଲାର ସୁଯୋଗ ଦେଖି ଆଧୁନିକ ପ୍ରଯୁକ୍ତିର ମାର୍ଭେଲ ବା ଚମତ୍କାରିତା ଅନୁଭବ କଲି । ଆଧୁନିକ ବିଜ୍ଞାନ ଓ ଇଞ୍ଜିନିୟରିଂ କୌଶଳ

ସାହାଯ୍ୟରେ ମଣିଷ କିପରି ଅସମ୍ଭବକୁ ସମ୍ଭବ କରିବାକୁ ସମର୍ଥ ହୋଇପାରିଛି, ତାହା ସେଦିନ ମୋତେ ଅଭିଭୂତ କରିଥିଲା । ବନ୍ଧୁଙ୍କ ପାଖରୁ ବିଦାୟ ନେବା ପୂର୍ବରୁ କଥା ପ୍ରସଙ୍ଗରେ ତାଙ୍କୁ ସେଠାକାର ଘର ଭଡ଼ା ବିଷୟରେ ପଚାରି ଯାହା ଶୁଣିଲି ତାହା ମୋତେ ଅଧିକ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେ କହିଲେ ଯେ ସେହି ଘରଭଡ଼ା ବ୍ୟାଙ୍କ ଦିଏ, ତାଙ୍କୁ କିଛି ଆର୍ଥିକ ଚାପ ଏଥିପାଇଁ ପଡ଼େନାହିଁ । ତେବେ କଥାବାର୍ତ୍ତାରୁ ଜାଣିଲି ସେହି ବହୁ ମହଲା ବିଶିଷ୍ଟ ଘରେ ତାଙ୍କ ଘରର ଭଡ଼ା ହେଉଛି ମାସକୁ ୧ ଲକ୍ଷ ୩୭ହଜାର ଟଙ୍କା, ଯାହା ମୋର କଳ୍ପନାର ବାହାରେ ଥିଲା ।

ବନ୍ଧୁଙ୍କ ଘରୁ ଫେରିବା ବାଟରେ କେତେଗୁଡ଼ିଏ ସ୍ଲମ ନଜରରେ ପଡ଼ିଲା । ରାସ୍ତାକଡ଼ରେ ଥିବା ଫୁଟପାଥରେ ଠେଲା ଟ୍ରଲି ଉପରେ ଲୋକ ଶୋଇଥିବାର ଦୃଶ୍ୟ ବି ଦେଖି ଦେଖି ଆସିଲି । ତେବେ ଏହି ସମୟରେ ରାସ୍ତାକଡ଼ରେ ଓସ୍କାର ପୁରସ୍କାର ପାଇଥିବା 'ସ୍ଲମ ଡ଼ଗ୍ ମିଲେନିୟର' ସିନେମାର ଏକ ପୋଷ୍ଟର ନଜରକୁ ଆସିଲା । ସେହି ସିନେମାଟି ଆନ୍ତର୍ଜାତୀୟ ସ୍ତରରେ ପୁରସ୍କୃତ ହେବା ଆମ ପାଇଁ ଗର୍ବ କି ଲଜ୍ଜା, ତାହା ମୁ ଭାବିପାରୁନାହିଁ । କୁହାଯାଉଛି ମୁମ୍ବାଇର ଏକ ସ୍ଲମ ଯାହା ଧରାବୀ ଅଞ୍ଚଳରେ ରହିଛି ତାହାକୁ ନେଇ ଏହି ଚଳଚ୍ଚିତ୍ରଟି ହୋଇଛି । ସେହି ଧରାବୀ ଅଞ୍ଚଳର ସ୍ଲମ୍‌ରେ ଲକ୍ଷାଧିକ ଲୋକ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଝୁମ୍ପୁଡ଼ି ଘର ଭିତରେ ରହିଛନ୍ତି । ମୁମ୍ବାଇରେ ମୂଲିଆ କାମ କରୁଥିବା, ରାସ୍ତାକଡ଼ରେ ବସି ଜିନିଷପତ୍ର ବିକୁଥିବା, ନିର୍ମାଣ କାର୍ଯ୍ୟରେ ଶ୍ରମିକ ହୋଇଥିବା, ବାବୁମାନଙ୍କ ଘରେ ବାସନ ମାଜୁଥିବା ଅଗଣିତ ମଣିଷ ସ୍ଲମ୍‌ମାନଙ୍କରେ ରହନ୍ତି ଓ ଧରାବୀ ସ୍ଲମ ହେଉଛି ମୁମ୍ବାଇରେ ଥିବା ସହସ୍ରାଧିକ ସ୍ଲମ ମଧ୍ୟରେ ସବୁଠାରୁ ଏକ ବଡ଼ ସ୍ଲମ । ସେଠିକାର ଦରିଦ୍ର ଲୋକମାନେ ମୁଠେ ଖାଇ କେବଳ ବଞ୍ଚିବାକୁ ଶ୍ରମ ଓ ସଂଗ୍ରାମ କରିନ୍ତି । ସ୍ଲମମାନଙ୍କର ପିଲାମାନେ କଅଁଳ ବୟସରୁ ଟ୍ରେନରେ ଝାଡୁ କରନ୍ତି, ରାସ୍ତାକଡ଼ରେ ଜୋତା ପଲିସ କରନ୍ତି, ମଇଳାଗଦା ଭିତରୁ ଜରି, ବୋତଲ ଗୋଟାଇ ବିକ୍ରି କରିନ୍ତି, କେବଳ ଗଣ୍ଡିଏ ଖାଦ୍ୟ ପାଇବାପାଇଁ । ପିଲାଟିବେଳୁ ସେମାନଙ୍କୁ ଜୀବନର ବୋଝ ମୁଣ୍ଡରେ ନେଇ ବାଟ ଚାଲିବାକୁ ହୁଏ । ଦେଶର କୌଣସି ଯୋଜନା ଓ ପ୍ରଗତି ସେମାନଙ୍କର ଜୀବନ ପାଖକୁ ଯାଇପାରେ ନାହିଁ । ଶିକ୍ଷା, ଚିକିତ୍ସା ଓ ଉତ୍ତମ ଜୀବନଶୈଳୀ ସେମାନଙ୍କ ପାଇଁ ସାତ ସପନ ହୋଇ ରହିଛି । ବ୍ୟାଙ୍କ ବନ୍ଧୁଙ୍କ ଭଳି ମୁମ୍ବାଇରେ ରହୁଥିବା କେତେ ଲୋକଙ୍କର ଅତ୍ୟାଧୁନିକ ଜୀବନଶୈଳୀ ଓ ସ୍ଲମମାନଙ୍କରେ ରହୁଥିବା ଅଗଣିତ ମଣିଷଙ୍କର ଜୀବନ ସଂଗ୍ରାମ ଭିତରେ ଥିବା ପାର୍ଥକ୍ୟ ଯେକୌଣସି ସଚେତନ ମଣିଷଙ୍କ ପାଇଁ ଏକ ପ୍ରହେଳିକା ମନେହେବ । ଏହି ଦୁଇ ଭାରତ ଭିତରେ କିପରି ଓ ସ୍ୱାଧୀନତାର କେତେବର୍ଷ ପରେ ସେତୁ ନିର୍ମାଣ ହୋଇପାରିବ ତାହା ଚିନ୍ତାକରି ପାରୁନାହିଁ ।

ଜାପାନର ପ୍ରଫେସରଙ୍କ ପାଖରୁ ତାଙ୍କ ଦେଶର କର୍ମସଂସ୍କୃତି, ଲୋକଙ୍କର ସାଧୁତା ବିଷୟରେ ମୁଁ ବେଶ୍ ଅନୁମାନ କରିଥିଲି । ଜାପାନ ଭଳି ସ୍କାଣ୍ଡିନେଭିଆନ ରାଷ୍ଟ୍ରମାନେ ତଥା ୟୁରୋପର ଅନେକ ରାଷ୍ଟ୍ର ଅତ୍ୟନ୍ତ ପ୍ରାକୃତିକ ପ୍ରତିକୂଳ ପରିବେଶରେ ରହିଥିଲେ ମଧ୍ୟ ସେଠାର ଜନଗଣଙ୍କ ଜୀବନଧାରଣର ମାନ ଅତି ଉଚ୍ଚସ୍ତରରେ ରହିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସାହାଯ୍ୟରେ ସେମାନେ ବଞ୍ଚିବାର ମାନକୁ ଉନ୍ନତ କରିପାରିଛନ୍ତି । ଉନ୍ନତ ଶିକ୍ଷା, ସ୍ୱାସ୍ଥ୍ୟସେବା ଓ କର୍ମନିଯୁକ୍ତି ସବୁ ମଣିଷଙ୍କୁ ମିଳିପାରୁଛି । ଦେଶର ସମୃଦ୍ଧି ସମାଜର ସବୁ ମଣିଷଙ୍କୁ ମିଳିପାରୁଛି । ଦେଶର ସମୃଦ୍ଧି ସମାଜର ସବୁ ମଣିଷଙ୍କ ପାଇଁ ଉପଲବ୍ଧ ହୋଇପାରୁଛି । ସେସବୁ ଦେଶର ସମୃଦ୍ଧି ଓ ଜୀବନର ଉନ୍ନତ ଗୁଣାତ୍ମକ ମାନ ମଣିଷ ଦ୍ୱାରା ସମ୍ଭବ ହୋଇଛି କେଉଁ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ହୋଇନାହିଁ । ଆମ ଦେଶରେ ଧାର୍ମିକ କର୍ମକାଣ୍ଡ, ପୂଜା, ପାର୍ବଣ, ଦିଅଁ ଦେବତାଙ୍କୁ ଆରାଧନାରେ ଆମେ କେତେ ମସଗୁଲ ହେଉଛେ । କିନ୍ତୁ ଆମର ଦାରିଦ୍ର୍ୟ ଘୁଞ୍ଚିପାରୁନାହିଁ । ଆମ ଦାରିଦ୍ର୍ୟ ପଛରେ ଯାହା ଅର୍ଥନୈତିକ ଓ ରାଜନୈତିକ କାରଣ ଥାଉ ନା କାହିଁକି ଆମର ଜୀବନ ଓ ସମାଜ ପ୍ରତି ଦୃଷ୍ଟିଭଙ୍ଗୀ ଆମ ସମୃଦ୍ଧି ପାଇଁ ଅନେକାଂଶରେ ପ୍ରତିକୂଳ ହୋଇ ରହିଛି । ଆମର ଅହେତୁକ ବିଶ୍ୱାସ ଓ ଜୀବନ-ଦର୍ଶନ ଆମ ଦାରିଦ୍ର୍ୟ ଓ ନିମ୍ନମାନର ଜୀବନଧାରଣ ପାଇଁ କେତେ ଦାୟୀ ତାହା ବିଚାର୍ଯ୍ୟର ବସ୍ତୁ ।

ଉପସଂହାରରେ ଏହା କହିବା ଯଥାର୍ଥ ହେବ ଯେ ମଣିଷର ପ୍ରୟାସ ଦ୍ୱାରା ହିଁ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଛି, ସଭ୍ୟତାର କ୍ରମବିକାଶ ହୋଇଛି ଓ ସଭ୍ୟ ମୂଲ୍ୟବୋଧଗୁଡ଼ିକର ବିକାଶ ହୋଇଛି । ଏକ ଆଦିମ ସ୍ତରରୁ ଏକ ଅତ୍ୟାଧୁନିକ ସ୍ତରକୁ ଆସିବାରେ ସଂଘଟିତ ପ୍ରୟାସ ନିର୍ଣ୍ଣାୟକ ହୋଇଛି । ଏକ ସୁଖକର ଓ ପ୍ରୀତିପଦ ସାମାଜିକ ଜୀବନ ପାଇଁ ଏକ ଜୀବନଧର୍ମୀ ଦର୍ଶନ ପ୍ରେରଣା ଯୋଗାଇ ଆସିଛି । ଅଥଚ ପାରଲୌକିକ କଳ୍ପନା ଓ ଧାର୍ମିକ ଆବେଗ ଯେଉଁ ସମାଜରେ ପ୍ରାଧାନ୍ୟ ନେଇ ଆସିଛି, ସେହି ସମାଜ ବହୁ ପଛରେ ପଡ଼ିରହିଛି । ଅନ୍ୟାୟ, ବୈଷମ୍ୟ ଓ ଦୁଃଖ ଦୈନ୍ୟ ସ୍ଥିତି ଭାଗ୍ୟର ଲିଖନ ବୋଲି ବିଶ୍ୱାସ ଦେଇଥିବା ଦର୍ଶନ ବୃହତ୍ତର ସମାଜ ପ୍ରତି ସୃଜନାତ୍ମକ ଓ ସକାରାତ୍ମକ ପ୍ରତିବଦ୍ଧତା ସୃଷ୍ଟି କରିନାହିଁ । (ପ୍ରଗତିବାଦୀ ୧୭.୧୧.୧୦)



# ବିଚାର ଓ ଆଚାର

"ସମସ୍ତେ ସୁଖୀ ହୁଅନ୍ତୁ । ସମସ୍ତେ ଭଦ୍ର ଦର୍ଶନ କରନ୍ତୁ, ଅର୍ଥାତ୍ ଭଲକଥା ଦେଖନ୍ତୁ । କେହି ବି ଦୁଃଖୀ ହୁଅନ୍ତୁ ନାହିଁ ।" ଏହି ପ୍ରକାରର ଭାବନା ବିଭିନ୍ନ ଦେଶର ମାନବ ଦରଦୀ ଦାର୍ଶନିକ ଓ ହେତୁବାଦୀମାନେ ସର୍ବଦା କଳ୍ପନା କରିଛନ୍ତି । ସେମାନେ ସର୍ବଦା ଏକ ସୁନ୍ଦର ସମାଜର ସ୍ୱପ୍ନ ଦେଖିଛନ୍ତି ଯେଉଁଠି ଶୋଷଣ, ଅନ୍ୟାୟ, ଅତ୍ୟାଚାର ଓ ଅମାନବିକତା ନଥିବ । କିନ୍ତୁ ବାସ୍ତବରେ ହେତୁବାଦୀ ଦାର୍ଶନିକମାନଙ୍କର ସ୍ୱପ୍ନ ସର୍ବଦା ସ୍ୱପ୍ନ ରେ ରହିଛି, ବାସ୍ତବତାରେ ପରିଣତ ହୋଇନାହିଁ । ଏହି ଦାର୍ଶନିକମାନଙ୍କର ଜୀବନ ଜିଜ୍ଞାସାରେ ଯେଉଁ ମହତ୍ତର ବିଚାରର ପ୍ରତିଫଳନ ହୋଇଛି ତାହା ହିଁ ସଭ୍ୟ ମୂଲ୍ୟବୋଧ । ସେହି ମୂଲ୍ୟବୋଧଗୁଡ଼ିକ ଜୀବନର ଗୁଣାତ୍ମକ ଉତ୍କର୍ଷ ଦିଗରେ ବହୁ ପ୍ରେରଣା ଯୋଗାଇଛି । ସେହି ମୂଲ୍ୟବୋଧ ଓ ବିଚାରଗୁଡ଼ିକ ଯେଉଁ ଦେଶର ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ, ସେମାନେ ସେତିକି ସଭ୍ୟ ଓ ସଂସ୍କୃତି ସମ୍ପନ୍ନ । ଅଥଚ ଯେଉଁ ସାମାଜିକ ଜୀବନ ପ୍ରବାହରେ ସେହି ମୂଲ୍ୟବୋଧ ସକଳର ପ୍ରତିଫଳନ ଯେତେ କମ୍ ତାହା ସେତିକି ଅନୁନ୍ନତ ।

ବିଜ୍ଞାନର ବିକାଶ ଦ୍ୱାରା ନାନା ନୂଆନୂଆ ପ୍ରଯୁକ୍ତିର ସୂତ୍ରପାତ ହୋଇଛି । ନୂଆନୂଆ ପ୍ରଯୁକ୍ତିର ପରିଣାମରୁ ବଞ୍ଚିବାର ଭୌତିକମାନ ବୃଦ୍ଧି ପାଇଛି । ଆଜି ଜଣେ ଯେଉଁ ସୁବିଧା ସୁଯୋଗ ପାଇପାରୁଛି, ତାହା ପଚାଶ ବର୍ଷ ତଳେ ଅଚିନ୍ତନୀୟ ଥିଲା । ଆଜି ତ' ଘରେ ବସି ଇଣ୍ଟରନେଟ୍, ମୋବାଇଲ ଫୋନ ଇତ୍ୟାଦି ଜରିଆରେ ପୃଥିବୀର ଯେକୌଣସି ବିଷୟରେ ଜାଣିହେଉଛି ବା ଯେକୌଣସି ବ୍ୟକ୍ତି ସହ ସଂଯୋଗ ସ୍ଥାପନ ହୋଇପାରୁଛି । ଆଧୁନିକ ଚିକିତ୍ସା ଦ୍ୱାରା ଅନେକ ରୋଗ ବାଧକକୁ ନିୟନ୍ତ୍ରଣ କରାଯାଉଛି । ବଞ୍ଚିବାର ହାରାହାରି ବୟସ ବଢ଼ିଚାଲିଛି, ଗମନାଗମନର ପ୍ରଭୂତ ବିକାଶ ଯୋଗୁ ଆମ ସଂସାର କ୍ଷୁଦ୍ର ହୋଇଯାଇଛି । ଗୋଟିଏ ଶତାବ୍ଦୀ ତଳେ ଅନ୍ୟ ଦେଶକୁ ଯିବା ଅତ୍ୟନ୍ତ କଷ୍ଟକର ବ୍ୟାପାର ଥିଲା । ଏବେ ଯେକୌଣସି ଅଞ୍ଚଳକୁ ଯାଇ କାମ କରିବାରେ ପ୍ରତିବନ୍ଧକ ନାହିଁ । ଏପରିକି ବିଦେଶରେ ଯାଇ ବୃତ୍ତି କରିବା ବା ପାଠ ପଢ଼ିବା ସାଧାରଣ ବ୍ୟାପାର ହୋଇ ଉଠିଲାଣି । ଆଧୁନିକ ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତି ଦ୍ୱାରା ପୃଥିବୀ ଏକ ବିଶ୍ୱ-ଗ୍ରାମରେ ପରିଣତ ହୋଇଗଲାଣି, ପୃଥିବୀରୁ ଦୂରତ୍ୱ କମିଗଲାଣି ।

ଅତୀତରେ ବିଭିନ୍ନ ଜନଗୋଷ୍ଠୀକୁ ନେଇ ଆମ ସଂସାରରେ ବହୁ ଭାଷା, ସଂସ୍କୃତି, ପରମ୍ପରା, ଧାର୍ମିକ ଧାରାମାନ ସୃଷ୍ଟି ହୋଇଥିଲା । ମଣିଷର ସାମାଜିକ ଜୀବନ ପ୍ରବାହ ଦେଇ ଏ ସବୁର ଉଦ୍ଭବ ଅବଶ୍ୟମ୍ଭାବୀ ମନେହୁଏ । ଅତୀତରେ ଯେହେତୁ ଗମନାଗମନର ସୁଯୋଗ ନଥିଲା ଓ ସଭ୍ୟତା-ସଭ୍ୟତା ମଧ୍ୟରେ ଆଦାନ-ପ୍ରଦାନ ଅତି ସୀମିତ ଥିଲା ତେଣୁ ଗୋଟିଏ ଜନଗୋଷ୍ଠୀ ଅନ୍ୟ ଜନଗୋଷ୍ଠୀ ବିଷୟରେ ଜାଣିବାର ଅବକାଶ ନଥିଲା । ଫଳରେ ଏକ କ୍ଷୁଦ୍ର ପରିବେଷ୍ଟନୀ ଭିତରେ ଏକ ଜନଗୋଷ୍ଠୀ ନିଜସ୍ୱ 'ଅସ୍ମିତା'ର ଏକ ପରିଚୟଟିଏ ସୃଷ୍ଟି କରିଥିଲା । ରାଜନୈତିକ ସ୍ତରରେ ରାଷ୍ଟ୍ରୀୟ ଭାବନାର ବିକାଶ ଦ୍ୱାରା ସମ୍ପ୍ରତି ପ୍ରତି ବ୍ୟକ୍ତିବିଶେଷ ଏକ ରାଷ୍ଟ୍ରୀୟ ପରିଚୟ ନେଇପାରିଛି । ପ୍ରତ୍ୟେକ ବ୍ୟକ୍ତିର ଏକ ରାଷ୍ଟ୍ରୀୟ ପରିଚୟ ଆନ୍ତର୍ଜାତିକ ପୃଷ୍ଠଭୂମିରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ମନେହେଉଛି । ତେବେ ଜାତୀୟତାର ପରିଚୟ ବ୍ୟତୀତ ବ୍ୟକ୍ତିର ଭାଷା, ଧର୍ମ, ଆଞ୍ଚଳିକତା, ବୃତ୍ତି ଇତ୍ୟାଦିକୁ ନେଇ ଜଣେ ବ୍ୟକ୍ତିର ନାନାବିଧ ପରିଚୟର ଭାବନା ମଧ୍ୟ ସମାଜରେ ସୃଷ୍ଟି ହୋଇଛି । ଅତୀତରେ ଗୋଟିଏ ଭାଷା କହୁଥିବା ବା କିଛି ଧାର୍ମିକ କର୍ମକାଣ୍ଡ ପାଳନ କରୁଥିବା ଲୋକମାନେ ଗୋଟିଏ ଭୌଗୋଳିକ ସୀମା ଭିତରେ ସୀମାବଦ୍ଧ ହୋଇ ନିଜର ଏକ ନିଜସ୍ୱ ଅସ୍ମିତା ସୃଷ୍ଟି କରିଥିଲେ । ସେହି ଯୁଗରେ ପୃଥକ ଅସ୍ମିତା ଥିବା ଗୋଷ୍ଠୀମାନଙ୍କ ଭିତରେ କଳହ ଓ ବିଦ୍ୱେଷ ସ୍ୱାଭାବିକ ଥିଲା । ତେବେ କାଳକ୍ରମେ ସାମାଜିକ ଓ ସାଂସ୍କୃତିକ ଚେତନାର ସମ୍ପ୍ରସାରଣ ଓ ପରିବର୍ତ୍ତନ ଯୋଗୁ ଭାଷା, ଜାତି, ଜାତୀୟତା, ଧର୍ମ ଇତ୍ୟାଦିକୁ ନେଇ ବିଭିନ୍ନ ଜନଗୋଷ୍ଠୀମାନଙ୍କ ମଧ୍ୟରେ ଯେଉଁ ବିଦ୍ୱେଷର ମନୋଭାବ ସୃଷ୍ଟି ହୋଇଥିଲା, ତାହା ଅନେକାଂଶରେ ଦୂର ହେବାକୁ ଲାଗିଲା । ସମ୍ପ୍ରତି ଜଣେ ବ୍ୟକ୍ତି ଏକ ଭାଷା ଭିତରେ ସୀମିତ ରହିନାହିଁ । ସେ ବିଭିନ୍ନ ଭାଷା ଜାଣିବାକୁ ବାଧ୍ୟ ହେଉଛି । ଧର୍ମ ବା ଜାତୀୟତାକୁ ଆଧାର କରି ଆମ ସଂସାରରୁ ମତାନ୍ଧତା ଓ ସଂକୀର୍ଣ୍ଣତା ଦୂର ହୋଇ ଆସୁଛି । ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ କ୍ରମବର୍ଦ୍ଧିଷ୍ଣୁ ଭାବେ ବିଂଶ ଶତାବ୍ଦୀ ମଧ୍ୟଭାଗରୁ ସାରା ପୃଥିବୀରେ ବୃଦ୍ଧି ପାଇଚାଲିଛି । ଏସବୁ ପଶ୍ଚାତରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବଳିଷ୍ଠ ଅବଦାନ ରହିଛି । ତା ସହିତ ରହିଛି ମାନବବାଦୀ ଦର୍ଶନ ଓ ଏକ ସମ୍ପ୍ରସାରିତ ସାମାଜିକ ଚେତନା ।

ଅତୀତରେ ବ୍ୟକ୍ତି ସତ୍ତା ଏକ କ୍ଷୁଦ୍ର ପରିବେଷ୍ଟନୀ ମଧ୍ୟରେ ନିଜ ପରମ୍ପରାରେ ଚଳି ଆସୁଥିବା ପନ୍ଥା ଓ ବ୍ୟବସ୍ଥାକୁ ମାନି ନେଉଥିଲା । କିନ୍ତୁ କାଳକ୍ରମେ ଶିକ୍ଷା, ଗଣମାଧ୍ୟମ ବ୍ୟକ୍ତି ଚେତନାକୁ ଏପରି ସମ୍ପ୍ରସାରିତ କରିବାର ପରିବେଶ ସୃଷ୍ଟିକଲା, ଯଦ୍ଦ୍ୱାରା ପ୍ରତ୍ୟେକ ପରମ୍ପରା ବା ସଂସ୍କୃତିର ଭଲମନ୍ଦ ନେଇ ମୂଲ୍ୟାୟନ କରିବାର ମାନସିକତା ସୃଷ୍ଟି ହେଲା । ଗୋଟିଏ ସଂସ୍କୃତିର ମହତ୍ତର ଭାବନା ବିଶ୍ୱ ଚେତନାର ଅଙ୍ଗ ହେବାକୁ ଲାଗିଲା । ସେହିପରି ପରମ୍ପରା ଆଧାରରେ ଏକ କ୍ଷୁଦ୍ର ଗୋଷ୍ଠୀର ସାମନ୍ତବାଦୀ ଦୃଷ୍ଟିଭଙ୍ଗୀ, ଭେଦଭାବମୂଳକ

ବିଚାରବୋଧ ଓ ବ୍ୟକ୍ତି ମର୍ଯ୍ୟାଦା ବିରୋଧୀ ମାନସିକତା ବିରୋଧରେ ପ୍ରତିବାଦର ସ୍ୱର ଗୁଞ୍ଜରି ଉଠିଲା । ଅତୀତର ସାମନ୍ତବାଦୀ ଦୃଷ୍ଟିଭଙ୍ଗୀ ଯେ ସଭ୍ୟ ଜୀବନ-ଦୃଷ୍ଟିର ପରିପନ୍ଥୀ ଏହି ଭାବନା ସଭ୍ୟତାର କ୍ରମବିକାଶ ଧାରାରେ ସୁଦୃଢ଼ ହେଲା । ତେବେ ସାଆନ୍ତିଆ ଓ ସାମନ୍ତବାଦୀ ପରମ୍ପରା କେବେଠାରୁ ସଭ୍ୟ ଦୃଷ୍ଟିଭଙ୍ଗୀର ବିରୋଧୀ ବୋଲି ଭାବନା ସୃଷ୍ଟି ହୋଇଥିଲେ ମଧ୍ୟ କେତେକ ସମାଜରେ ଏହାର ନାନା ଛାପ ଏବେ ବି ରହିଆସିଛି । ବିଶେଷକରି ରକ୍ଷଣଶୀଳ ସାମାଜିକ ପରିବେଶରେ ଯୁଗ ଯୁଗ ଧରି ଯେଉଁ ଅଗଣତାନ୍ତ୍ରିକ ଓ ଅହେତୁକ ପରମ୍ପରାର ଭିତ୍ତି ରହିଛି ତାହାର ବିଲୋପ ସମ୍ଭବ ହୋଇନାହିଁ । ଉଦାହରଣ ସ୍ୱରୂପ ଭାରତୀୟ ସମାଜରେ ଯୁଗଯୁଗଧରି ଜାତିଆଣ ପରମ୍ପରାର ପରିବେଶ ରହିଛି । ଜାତିଆଣ ଭେଦଭାବ ସମାଜକୁ ବିଭାଜିତ କରିବା ସହ ଏକ ବୈଷମ୍ୟମୂଳକ ପରିବେଶ ସୃଷ୍ଟି କରିଆସିଛି । ଜାତିଆଣ ବିଚାରବୋଧ ଆଧାରରେ ଯେଉଁସବୁ ବିଧିବିଧାନ, ଚଳଣିଗୁଡ଼ିକ ପରମ୍ପରାରେ ସ୍ୱୀକୃତି ଲାଭ କରିଛନ୍ତି, ତାହାର ବିଲୋପ ସହଜ ହେଉନାହିଁ । ସେହିପରି କେତେକ ଧାର୍ମିକ ବିଶ୍ୱାସ ପରମ୍ପରା ନାମରେ ସମାଜରେ ପ୍ରଚଳିତ ରହିଛି । ନାନା ଅର୍ଥହୀନ କର୍ମକାଣ୍ଡ, ପଶୁବଳି, କେତେକ ଅଶୋଭନୀୟ ପ୍ରଥା ପରମ୍ପରା ନାମରେ ସମାଜରେ ପ୍ରଚଳିତ ରହିଛି । ଏସବୁ ସହିତ ମୁଷ୍ଟିମେୟ ଲୋକଙ୍କର ଭାବାବେଗ ଏତେ ସଂଶ୍ଳିଷ୍ଟ ହୋଇ ରହିଛି ଯେ, ସେସବୁ ବିରୋଧରେ ଯେତେ ସଂସ୍କାରବାଦୀ ଓ ଜୀବନଧର୍ମୀ ଆଲୋଡ଼ନ ଆସିଲେ ମଧ୍ୟ ଜନଜୀବନରୁ ସେଗୁଡ଼ିକ ଲୋପ ପାଉନାହିଁ । ପୁନଶ୍ଚ ସାମାଜିକ ଜୀବନ ପ୍ରବାହରେ କେତେକ ଗୋଷ୍ଠୀ ସନ୍ତ୍ରାସବାଦ ଓ ସାମ୍ପ୍ରଦାୟିକତାବାଦରେ ମଧ୍ୟ ଆସ୍ଥା ପୋଷଣ କରୁଛନ୍ତି । ନାନା ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଘଟଣା ପ୍ରବାହରେ ନିଷ୍ପେସିତ ହୋଇ ରହିଥିବା ଜନଗଣଙ୍କ ମଧ୍ୟରେ ସାମାଜିକ ଚେତନାର ଜାଗରଣ ଦ୍ୱାରା ସେମାନେ ପ୍ରତିହିଂସା ପରାୟଣ ହେଉଛନ୍ତି । ଗୋଟିଏ ସମୟରେ ନିଷ୍ପେସିତ ହୋଇ ରହିଥିବା ଜନଗଣ ଯଦି ଗଣତାନ୍ତ୍ରିକ ପ୍ରକ୍ରିୟାରେ ସେମାନଙ୍କ ଅଧିକାର ଓ ନ୍ୟାୟ ପାଇପାରୁନାହାନ୍ତି, ସେମାନେ ହିଂସାତ୍ମକ ପ୍ରତିବାଦ କରିବା ବା ସନ୍ତ୍ରାସବାଦୀ ହେବା ଅସ୍ୱାଭାବିକ ନୁହେଁ । ଅନ୍ୟାୟ ଅତ୍ୟାଚାର ଓ ଶୋଷଣର ପରିଣାମରୁ ସନ୍ତ୍ରାସବାଦ ଜନ୍ମନେବା ଇତିହାସରେ ଦେଖାଯାଏ । ପୁନଶ୍ଚ ଏକ ଗଣତାନ୍ତ୍ରିକ ପ୍ରକ୍ରିୟା ସଭ୍ୟ ଜୀବନଧାରାର ପ୍ରତିଫଳନ ହେଲେ ବି ଗଣତାନ୍ତ୍ରିକ ଜୀବନଶୈଳୀ ବାସ୍ତବରେ କେତେଦୂର ସାମାଜିକ ଜୀବନର ଅନ୍ତର୍ଚ୍ଚେତନାକୁ ସ୍ପର୍ଶ କରିଛି, ତାହା ହିଁ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଗଣତନ୍ତ୍ର ଯେଉଁପରି ଏକ ରାଜନୈତିକ ବିଷୟ ସେହିପରି ଏକ ସାମାଜିକ ମୂଲ୍ୟବୋଧ । ମାନବିକ ଅଧିକାର, ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ସମତାଭାବ ଗଣତାନ୍ତ୍ରିକ ଆଦର୍ଶର ମୂଳମନ୍ତ୍ର । ଏସବୁର ଅଭାବରେ ରାଜନୈତିକ ଗଣତନ୍ତ୍ର ଅନେକାଂଶରେ ଅର୍ଥହୀନ । ଯେଉଁ ଦେଶର

ସାମାଜିକ ଜୀବନ ପ୍ରବାହରେ ଏହି ମୂଲ୍ୟବୋଧ ଗୁଡ଼ିକର ଭିତ୍ତି ସୁଦୃଢ଼ ନୁହେଁ ସେ ଦେଶରେ ଗଣତାନ୍ତ୍ରିକ ବ୍ୟବସ୍ଥାଟି ଅର୍ଥହୀନ ହୋଇପଡ଼େ । ପରିଣାମତଃ ଦୁର୍ନୀତି ଜନଜୀବନରେ ଓ ବିଶେଷକରି ପ୍ରଶାସନିକ ବ୍ୟବସ୍ଥାର ଅଙ୍ଗ ହୋଇପଡ଼େ । ଦୁର୍ନୀତି କିପରି ଆମ ଜାତୀୟ ଜୀବନର ବିଭିନ୍ନ ସ୍ତରରେ କାୟା ବିସ୍ତାର କରି ରହିଛି, ତାହା ବେଶ୍ ଜଣାଶୁଣା । ପଞ୍ଚାୟତଠାରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ପ୍ରତ୍ୟେକଟି ସରକାରୀ ଦପ୍ତରରେ ଯଦି ଅନୀତି ଓ ଦୁର୍ନୀତିର ରାଜୁତି ଲଲେ ତେବେ ସାମାଜିକ ଜୀବନ ପ୍ରବାହ କଳୁଷିତ ହୋଇପଡ଼େ । ଏକ କଳୁଷିତ ମାନସିକତା ଭିତରୁ ନାନା ଅନୈତିକ ଅଶୋଭନୀୟ ଓ ଅଯୌକ୍ତିକ ବିଚାରର ପରିପ୍ରକାଶ ଘଟେ । ଏହିପରି ସାମାଜିକ ଓ ରାଜନୈତିକ ପରିବେଶରେ 'ପନ୍ଥାର ପବିତ୍ରତା' ଭାବନା ଜନମାନସରୁ ଦୂର ହୋଇଯାଏ । ଯେକୌଣସି ପନ୍ଥାରେ ନିଜର ଲକ୍ଷ୍ୟ ହାସଲ କରିବାର ମାନସିକତା ସମାଜରେ ପ୍ରବଳ ହୋଇଉଠେ । ନିଜର ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନେବା ଓ ତାହାକୁ ଯୁଗର ଆବଶ୍ୟକତା ବୋଲି ବିଚାର କରିବା ଗୋଟିଏ କ୍ଷୟଶୀଳ ପରିବେଶର ଚିତ୍ର ଦେଇଥାଏ । ସେହିପରି ଧାର୍ମିକ ଚେତନା ସାମ୍ପ୍ରଦାୟିକ ଚେତନାରେ ରୂପାନ୍ତରିତ ହେଲେ ଧର୍ମ କୌଣସି ନୈତିକ ପ୍ରେରଣା ସୃଷ୍ଟି କରିପାରେ ନାହିଁ । ଧର୍ମରେ ଯାହା କିଛି କୁସଂସ୍କାର ଓ କାଳ୍ପନିକ ତତ୍ତ୍ୱ ରହିଥିଲେ ବି ସ୍ଥଳବିଶେଷରେ ଧର୍ମ ବ୍ୟକ୍ତି ସତ୍ତାକୁ ପବିତ୍ର ହୃଦୟର ଅଧିକାରୀ ହେବାକୁ କେତେକ ପ୍ରେରଣା ଦେଇଆସିଛି । କିନ୍ତୁ ଏକ କ୍ଷୟଶୀଳ ପରିବେଶରେ ଧର୍ମ ଏକ ରାଜନୈତିକ ଆୟୁଧ ଭାବେ ବ୍ୟବହୃତ ହୋଇ ଲୋକମାନଙ୍କୁ ଅକ୍ଳେଶରେ ମତୁଆଲା କରିପାରେ । ସେହି ପରିବେଶରେ ଅନ୍ତରରେ କୌଣସି ମାନବିକତା ବା ସମ୍ବେଦନଶୀଳତା ରଖି ନ ଥିବା ବ୍ୟକ୍ତିବିଶେଷ ଧର୍ମର ମଙ୍ଗ ଧରନ୍ତି । ସେପରି ସ୍ଥଳେ ଶାନ୍ତି, ସଦ୍‌ଭାବନା ଓ ମାନବିକ ମହନୀୟତା ଧାର୍ମିକ ଚେତନାରୁ ଦୂର ହୋଇଯାଏ । ଯେତେବେଳେ ଅସହିଷ୍ଣୁ ଓ ଅହଙ୍କାରୀ ଲୋକମାନେ ଧର୍ମର ଧ୍ୱଜାଧାରୀ ହୁଅନ୍ତି ହିଂସା, ଦଙ୍ଗା ଓ ବର୍ବରତା ହିଁ ତାର ପରିଣତି ହୁଏ ।

ତେବେ ସବୁ ସଭ୍ୟତାରେ ଓ ସବୁ ସନ୍ଧିକ୍ଷଣରେ ଦାର୍ଶନିକମାନେ ସାମାଜିକ ପରିବେଶ ଓ ବ୍ୟକ୍ତି ଚରିତ୍ରକୁ ଅନୁଶୀଳନ କରି ନୂତନ ଦିଗ୍‌ଦର୍ଶନ ଦେଇଥାନ୍ତି । ଏମାନେ ଏକ ସାର୍ଥକ ଜୀବନ ନେଇ ଗମ୍ଭୀର ଚିନ୍ତା ପ୍ରକଟ କରିଥାନ୍ତି । ବିଶେଷକରି ହେତୁବାଦୀ ଦାର୍ଶନିକମାନେ ଏକ ସୁଖକର ଓ ପ୍ରୀତିପଦ ଦୁନିଆଁର ବାସ୍ତବ ରୂପାୟନକୁ ଅଧିକ ଗୁରୁତ୍ୱ ଦେଇ ଆସିଛନ୍ତି । ପରଲୋକ ପରିବର୍ତ୍ତେ ଏହି ଜୀବନକୁ ସରସ, ସୁନ୍ଦର ଓ ମଙ୍ଗଳମୟ କରିବାକୁ ସେମାନେ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । ମଣିଷର ଆଖିରୁ ଲୁହ ପୋଛିବାର କର୍ତ୍ତବ୍ୟକୁ ଏକ ସାର୍ଥକ ଜୀବନର ମାନଦଣ୍ଡ ଭାବେ ନେଇଛନ୍ତି । ଅନ୍ୟର ଦୁଃଖ ନିବାରଣ

ଜନିତ ମାନବିକ ହୃଦୟ ଦ୍ୱାରା ଜୀବନ ଅଧିକ ସୃଜନଶୀଳ ଓ ଆନନ୍ଦମୟ ହୋଇପାରିବ ଏହି ବିଚାର ଦେଇ ଆସିଛନ୍ତି ।

ହେତୁବାଦୀ ମନିଷୀମାନେ ହିଁ ବିଚାର ଓ ଆଚାର ଭିତରେ ସର୍ବଦା ସମନ୍ୱୟ ଆଣିବାକୁ ପ୍ରୟାସ କରିଛନ୍ତି । ବିଚାର ଯଦି ଆଚରଣରେ ପ୍ରତିଫଳିତ ନ ହୁଏ, ତେବେ ବ୍ୟକ୍ତି ଜୀବନ ହେଉ ବା ଗୋଷ୍ଠୀ ଜୀବନ ହେଉ ଏହା ସାମାଜିକ ଶ୍ରେୟ ହାସଲ କରିପାରେ ନାହିଁ । (ପ୍ରଗତିବାଦୀ - ୨୪.୧୧.୧୦)



# ବିବେକର ସ୍ୱର

ସାମାଜିକ ପ୍ରବୃତ୍ତି ବ୍ୟକ୍ତିର ସହଜାତ । ପ୍ରତ୍ୟେକ ମଣିଷ ଭିତରେ ସାମାଜିକ ପ୍ରବୃତ୍ତି ରହିଛି । ମଣିଷ ଯେହେତୁ ନିଜ ଜୀବନର ଆବଶ୍ୟକତା ନିଜେ ପୂରଣ କରିପାରିବ ନାହିଁ, ତେଣୁ ସେ ଅନ୍ୟ ଉପରେ ନିର୍ଭର କରିବାକୁ ବାଧ୍ୟ । ପ୍ରତ୍ୟେକ ବ୍ୟକ୍ତି ତା'ର ସାମର୍ଥ୍ୟାନୁଯାୟୀ ସମାଜକୁ କିଛି ଅବଦାନ ଦିଏ ଓ ସମାଜ ଉପରେ ନିର୍ଭର କରି ଜୀବନଧାରଣ କରେ । ତେବେ ସ୍ୱାର୍ଥପରତା ଓ ନିସ୍ୱାର୍ଥପରତା ବ୍ୟକ୍ତି ସ୍ୱଭାବ ସହିତ ଜଡ଼ିତ । ସମାଜରେ ଏପରି ଲୋକ ଆମେ ଦେଖିବାକୁ ପାଇବା ଯେଉଁମାନେ ଦରଦୀ ଓ ପରୋପକାରୀ । ପୁନଶ୍ଚ ସମାଜରେ ଏପରି ଲୋକ ମଧ୍ୟ ପାଇବା ଯେଉଁମାନେ ସ୍ୱାର୍ଥପର । ଏପରିକି ଜଣେ ବ୍ୟକ୍ତି ବେଶ୍ ଶିକ୍ଷିତ, ସଂସ୍କୃତିସମ୍ପନ୍ନ ହୋଇ ମଧ୍ୟ ଅତ୍ୟନ୍ତ ସ୍ୱାର୍ଥପର ହୋଇପାରନ୍ତି ଅର୍ଥାତ୍ ନିଜର ସ୍ୱାର୍ଥ ପାଇଁ ଯାହା କିଛି କରିପାରନ୍ତି । ସେହିପରି ସମାଜର କେତେକ ବ୍ୟକ୍ତି ଅସାମାଜିକ କାର୍ଯ୍ୟରେ ବ୍ରତୀ ହୁଅନ୍ତି । ଜଣେ ଅସାମାଜିକ ହେବା ପଛରେ ନାନା ସାମାଜିକ, ମନସ୍ତାତ୍ତ୍ୱିକ, ଅର୍ଥନୈତିକ କାରଣ ହୁଏତ ରହିପାରେ । ସମାଜରେ ବ୍ୟକ୍ତିବିଶେଷ ଅସାମାଜିକ ହେବା ବା ସ୍ୱାର୍ଥପର ହେବା ସମ୍ଭବ ହେଲେ ମଧ୍ୟ ବ୍ୟକ୍ତି ଭିତରେ ସାମାଜିକ ପ୍ରବୃତ୍ତି ଯେ ଅନ୍ତର୍ନିହିତ ଭାବେ ଥାଏ ଏହା ଅସ୍ୱୀକାର କରିହେବ ନାହିଁ । ତେବେ ପ୍ରଶ୍ନ ହେଉଛି ସାମାଜିକ ପ୍ରବୃତ୍ତି ପରି 'ବିବେକ' ବ୍ୟକ୍ତିର ସହଜାତ କି ? ପ୍ରତ୍ୟେକ ବ୍ୟକ୍ତି କ'ଣ ବିବେକ ଦ୍ୱାରା ପରିଚାଳିତ ହୁଏ । ବିବେକ ଦ୍ୱାରା ପରିଚାଳିତ ହେବା କହିଲେ ପ୍ରକୃତରେ କ'ଣ ବୁଝାଏ ? ବିବେକର କିଛି ସାର୍ବଜନୀନ ମାନଦଣ୍ଡ ରହିବା ସମ୍ଭବ କି ? ଜଣେ ବ୍ୟକ୍ତି ତାର ଚିନ୍ତାର ପରିସରରେ ଯାହା ଯଥାର୍ଥ ମନେକରେ, ତାହା ତା' ପାଇଁ ବିବେକ କି ? ସେପରି ହେଲେ ବିଭିନ୍ନ ବ୍ୟକ୍ତିର ବିବେକ ବା ଅନ୍ତଃପ୍ରଜ୍ଞା ଭିତରେ ବିରୋଧ କାହିଁକି ରହିଛି ? ବାସ୍ତବ ଅନୁଭୂତିରେ ଆମେ ଦେଖୁ ବିଭିନ୍ନ ବ୍ୟକ୍ତିଙ୍କ କାର୍ଯ୍ୟଧାରା, ସମାଜ ପ୍ରତି ଦୃଷ୍ଟିଭଙ୍ଗୀ ଓ ଜୀବନର ଆଦର୍ଶବୋଧ ଭିତରେ ମୌଳିକ ପାର୍ଥକ୍ୟ ରହିଛି । ପ୍ରତ୍ୟେକ ନିଜର ବିବେକ ଦ୍ୱାରା ପରିଚାଳିତ ହେଉଥିଲେ ମଧ୍ୟ ସେମାନେ ପରସ୍ପରଠାରୁ ନାନା କ୍ଷେତ୍ରରେ ପୃଥକ୍ ମନେହୁଅନ୍ତି । ଏହି ପୃଷ୍ଠଭୂମିରେ ବିବେକବୋଧର କିଛି ସାର୍ବଜନୀନ ଆଧାର ରହିଛି କି ?

ବିବେକର ସଂଜ୍ଞା ଓ ସ୍ୱରୂପ ଏକ ଜଟିଳ ପ୍ରଶ୍ନ । ବିବେକବୋଧ ସହିତ ନୈତିକ ପ୍ରଶ୍ନ ବି ଜଡିତ । ଜଣେ ବିବେକବାନ ବ୍ୟକ୍ତି ନ୍ୟାୟ, ଅନ୍ୟାୟ ବା ଭଲମନ୍ଦ ଭିତରେ ପାର୍ଥକ୍ୟ କରିପାରେ । ଭଲ-ମନ୍ଦ ଭିତରେ ପାର୍ଥକ୍ୟ କରିବାର ସାମର୍ଥ୍ୟ ବ୍ୟକ୍ତି ସ୍ୱଭାବରେ ନାନା ଜଟିଳ ସାମାଜିକ ପ୍ରଭାବ ଦେଇ ବିକଶିତ ହୋଇଥାଏ । ସାମାଜିକ ପରିବେଶ, ଶିକ୍ଷା, ପାରିବାରିକ ସଂସ୍କାର ବ୍ୟକ୍ତିର ନିଜସ୍ୱ ବିଚାରବୋଧ ଇତ୍ୟାଦି ପ୍ରଭାବର ସମ୍ମିଳିତ ପରିଣାମରୁ ବ୍ୟକ୍ତି ଭଲ-ମନ୍ଦ ଭିତରେ ପାର୍ଥକ୍ୟ କରିପାରେ । ସେହିପରି ବ୍ୟକ୍ତି ଭିତରେ ବିବେକବୋଧର ବିକାଶ ଜୀବନର ଗୁଣାତ୍ମକ ମାନ ପାଇଁ ବହୁଭାବରେ ନିର୍ଣ୍ଣାୟକ ମନେହୁଏ । ବ୍ୟକ୍ତି ଯଦି କେତେକ ନୀତି, ଆଦର୍ଶ ଓ ମୂଲ୍ୟବୋଧ ପ୍ରତି ପ୍ରତିବଦ୍ଧ ରହେ ଓ ସେ ପାଇଁ ଯେକୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ରୁହେ, ତେବେ ସେ ଜଣେ ଆଦର୍ଶବାଦୀ ବ୍ୟକ୍ତି ଭାବେ ଗୁଣାତ୍ମକ ଜୀବନର ଅଧିକାରୀ ହୁଏ । ସାଧୁତା, କର୍ତ୍ତବ୍ୟନିଷ୍ଠା ଓ ମାନବିକତା ଯେଉଁ କ୍ଷେତ୍ରରେ ବ୍ୟକ୍ତି ଆଚରଣରେ ପ୍ରତିଫଳିତ ହେଉଥାଏ, ତାହା ବ୍ୟକ୍ତି ଚରିତ୍ରର ଗୁଣାତ୍ମକ ମାନର ପରିଚୟ ଦିଏ କହିଲେ ଅତ୍ୟୁକ୍ତି ହେବନାହିଁ । ସେହିପରି ବିବେକବୋଧ ସହ ବିଚାରଶୀଳତାର ପ୍ରସଙ୍ଗଟି ଜଡିତ ହେବା ମନେହୁଏ । ଜଣେ ନିଜର ବିଚାରଶୀଳ ବୁଦ୍ଧିକୁ ଭଲ ଦିଗରେ ବ୍ୟବହାର କରିପାରେ କିମ୍ବା ମନ୍ଦ ଉଦ୍ଦେଶ୍ୟରେ ବି ବିନିଯୋଗ କରିପାରେ । ବୁଦ୍ଧିମାନ ବ୍ୟକ୍ତିମାନେ ମନ୍ଦ କାର୍ଯ୍ୟ କରିବା ଯେ ସମ୍ଭବ ଏହା ଅନୁଭୂତିରୁ ଆସିଥାଏ । ମଣିଷର କାମନା, ବାସନା, ନାନା ଇଚ୍ଛା ତାର ଆବେଗିକ ସ୍ତରରୁ ଆସିଥାଏ । ସେହି ଆବେଗିକ ସ୍ତର ଉନ୍ନତ, ରୁଚିପୂର୍ଣ୍ଣ ଓ ବିବେକାନୁମୋଦିତ ହୋଇପାରେ କିମ୍ବା ଏହା ଅନୈତିକ ହୋଇପାରେ । ତେବେ ଯେଉଁ କ୍ଷେତ୍ରରେ ବ୍ୟକ୍ତିର ଆବେଗିକ ସ୍ତର ଉନ୍ନତ ନୁହେଁ, ସେ କ୍ଷେତ୍ରରେ ମନ୍ଦ ଉଦ୍ଦେଶ୍ୟରେ ବି ଜଣେ ନିଜର ବୁଦ୍ଧିକୁ ପ୍ରୟୋଗ କରିପାରେ । ଜଣେ ସ୍ୱାର୍ଥପର ଲୋକ ବା ଦୁର୍ନୀତିଗ୍ରସ୍ତ ଲୋକ ନିଜର ସାମାଜିକ ସମ୍ମାନ ନ ହରାଇ ବା କୌଣସି ଦଣ୍ଡ ନ ପାଇ କିପରି ଦୁର୍ନୀତିମୂଳକ କାର୍ଯ୍ୟ ନେଇ ଆଣି ଥୋଇପାରିବ, ସେ ପାଇଁ ବେଶ୍ କୌଶଳ ଅବଲମ୍ବନ କରିପାରେ । ଅନୈତିକ କାର୍ଯ୍ୟରେ ଲିପ୍ତ ବ୍ୟକ୍ତିମାନେ ବେଶ୍ ବୁଦ୍ଧିମାନ ବି ହୋଇପାରନ୍ତି । ଅର୍ଥାତ୍ ବୁଦ୍ଧି ଏକ ସାଧନ ଭାବରେ ଭଲ ଦିଗରେ ବା ମନ୍ଦ ଦିଗରେ ବିନିଯୋଗ ହୋଇପାରେ । ତେବେ ବ୍ୟକ୍ତିର ଆବେଗିକ ସ୍ତର ଉନ୍ନତ ହେବାଦ୍ୱାରା ବୁଦ୍ଧି ଓ ବିଚାରଶୀଳତା ମହତ୍ତର ଲକ୍ଷ୍ୟରେ ବ୍ୟବହୃତ ହୁଏ, ନଚେତ୍ ବୁଦ୍ଧି ମନ୍ଦ ଦିଗରେ ବି ପ୍ରୟୋଗ ହୋଇପାରେ । ସୁତରାଂ ବିବେକବୋଧ ମୁଖ୍ୟତଃ ଏକ ନୈତିକ ଦୃଷ୍ଟି ସହ ଅନେକାଂଶରେ ସଂଶ୍ଳିଷ୍ଟ ହେବା ଦେଖାଯାଏ । ନୈତିକ ଦୃଷ୍ଟି ସହ ଗୁଣାତ୍ମକ ଜୀବନ ଓ ବିଚାରଶୀଳତାର ନିବିଡ଼ ସମ୍ପର୍କ ରହିଥିବା ମନେହୁଏ । ସେହିପରି ବ୍ୟକ୍ତିର ବିବେକବୋଧ, ସାମାଜିକ ମୂଲ୍ୟବୋଧ ଓ ଶୃଙ୍ଖଳା ସହିତ ଜଡିତ । ଯେଉଁ ସାମାଜିକ ପରିବେଶରେ ସାଧୁତା, କର୍ତ୍ତବ୍ୟନିଷ୍ଠା, ନାଗରିକ ଶୃଙ୍ଖଳାବୋଧ ପରି

ମୂଲ୍ୟଚୟଗୁଡ଼ିକ ଅଧିକ ବିକଶିତ ସେଠିକାର ଜନଜୀବନରେ ବ୍ୟକ୍ତି ସ୍ୱଭାବରେ ବିବେକର ପ୍ରତିଫଳନ ଅଧିକ ହେବା ଦେଖାଯାଏ । ଅଥଚ ଯେଉଁ ସାମାଜିକ ପରିବେଶରେ ସାଧୁତା, କର୍ତ୍ତବ୍ୟନିଷ୍ଠା ଓ ସାମାଜିକ ଶୃଙ୍ଖଳାର ଅଭାବ ସାଧାରଣ ଘଟଣା ଅଟେ, ସେ କ୍ଷେତ୍ରରେ ବ୍ୟକ୍ତି ଚରିତ୍ରରେ ସ୍ଖଳନ ଦେଖାଦେବା ସାଧାରଣ ଘଟଣା ହୋଇପାରେ । ସାମାଜିକ ଶୃଙ୍ଖଳାର ପ୍ରଭାବ ବ୍ୟକ୍ତି ବ୍ୟବହାରକୁ କିପରି ପ୍ରଭାବିତ କରିଥାଏ, ଦୁଇଟି ଉଦାହରଣରୁ ବିଚାର କରାଯାଇପାରେ ।

ସ୍କୁଲରେ ପଢୁଥିବାବେଳେ ଜାପାନ ଦେଶର ଗୋଟିଏ କାହାଣୀ ଆମର ପଢା ଯାଉଥିଲା । ତାହା ଏବେ ବି ମୋର ସ୍ମୃତି ଭିତରେ ଅମଳିନ ରହିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ଘଟଣା । ଜଣେ ପ୍ରୌଢ଼ ଦମ୍ପତିଙ୍କର ଏକମାତ୍ର ପୁଅ ଦେଶର ଆହ୍ୱାନରେ ଯୁଦ୍ଧକ୍ଷେତ୍ରକୁ ଚାଲିଯାଇଛି । ବୁଢାବୁଢୀ ଘରେ ଥାନ୍ତି । ଯୁଦ୍ଧର ପରିବେଶରେ ଖାଦ୍ୟ ପଦାର୍ଥର ଘୋର ଅଭାବ । ପ୍ରତ୍ୟେକ ପରିବାରକୁ ସରକାରଙ୍କ ତରଫରୁ କଣ୍ଟ୍ରୋଲ କରି ସପ୍ତାହକୁ ଥରେ ଲେଖାଏଁ ସାଧାରଣ ବଣ୍ଟନ ଜରିଆରେ ଖାଦ୍ୟ ସାମଗ୍ରୀ ଦିଆଯାଉଥାଏ । ବୃଦ୍ଧ ବ୍ୟକ୍ତି ଥରେ ଯାଇ ସପ୍ତାହକ ପାଇଁ ରେସନ ଆଣିଲେ । ଘରେ ଆସି ଦେଖିଲାବେଳକୁ ତାଙ୍କର ଯେତିକି ରେଶନ ଆଣିବା କଥା ଭୁଲରେ ସେ ଅଧିକା ଆଣିଛନ୍ତି । କଣ୍ଟ୍ରୋଲ ଦୋକାନଟି ତାଙ୍କ ଗାଁଠାରୁ ଦୂରରେ ଅବସ୍ଥିତ । ବୃଦ୍ଧଜଣଙ୍କ ଭୁଲରେ ଆଣିଥିବା ଅଧିକା ସାମଗ୍ରୀ ଫେରାଇ ଦେବାକୁ ସେହି ଅବସ୍ଥାରେ ବହୁ କଷ୍ଟରେ ସେଠାକୁ ଗଲେ । ନିଜର ଅଧିକ କଣ୍ଟ୍ରୋଲ ସାମଗ୍ରୀକୁ ଫେରାଇ ଘରକୁ ଫେରିବାବେଳେ ସେ ଅସୁସ୍ଥ ହୋଇପଡିଲେ । ଏତେ ବାଟ ପୁଣିଥରେ ଯିବା ଆସିବା ଦ୍ୱାରା ସେ ଅସୁସ୍ଥ ହେବାର ଆଶଙ୍କା କରି ମଧ ସେ ପୁଣିଥରେ କଷ୍ଟ ସ୍ୱୀକାର କରି ନିଜର ଖାଦ୍ୟ ସାମଗ୍ରୀ ଫେରାଇବାକୁ ଗଲେ । ଘଟଣାଟି ଏକ ସାଧାରଣ ଘଟଣା ହେଲେ ବି ଏଥିରୁ ସାମାଜିକ ପରିବେଶ ଓ ବ୍ୟକ୍ତି ଚରିତ୍ରର ଯେଉଁ ବାର୍ତ୍ତାଟି ମିଳେ ତାହା ହିଁ ଗୁରୁତ୍ୱପୂର୍ଣ୍ଣ ।

ନିକଟରେ ଟେଲିଭିଜନରେ ଓଡ଼ିଶାର ଏକ ଘଟଣା ହଠାତ୍ ଦୃଷ୍ଟିକୁ ଆସିଲା । ଗୋଟିଏ ଅଣ୍ଡା ବୋଝେଇ ଟ୍ରକ୍ ଅଣ୍ଡା ନେଇ ଗଲାବେଳେ ଦୁର୍ଘଟଣାର ସମ୍ମୁଖୀନ ହେଲା । ଅଣ୍ଡା ଟ୍ରକ୍‌ଟି ଦୁର୍ଘଟଣାର ସମ୍ମୁଖୀନ ହୋଇଥିବା ସମ୍ବାଦ ଆଖପାଖ ଅଞ୍ଚଳରେ ପହଞ୍ଚିବା କ୍ଷଣି ଲୋକମାନେ ଅଣ୍ଡା ଟ୍ରକ୍ ପାଖକୁ ଆସି ଯିଏ ଯେତେ ପାରିଲେ ଅଣ୍ଡା ଲୁଟପାଟ କରିବା ଆରମ୍ଭ କରିଦେଲେ । ଆତ୍ମସନ୍ତୋଷରେ ଲୋକମାନେ ଲୁଟପାଟ କରିବାର ଚିତ୍ରଟିରୁ ଲୋକ ଚରିତ୍ରର ବାର୍ତ୍ତାମିଳେ । ଜଣେ ବିବେକବାନ ବ୍ୟକ୍ତି ଅନ୍ୟାୟ ଉପାୟରେ କିଛି ପାଇଲେ ବା ଅନ୍ୟାୟ କାର୍ଯ୍ୟ କଲେ ସେଥିରେ ଗଭୀର ମାନସିକ ଯନ୍ତ୍ରଣା ପାଇବା ଏକ ସଭ୍ୟ ଦୃଷ୍ଟିଭଙ୍ଗୀ । ଅଥଚ ଅନ୍ୟାୟ କାର୍ଯ୍ୟରେ ସମ୍ପୃକ୍ତ ବ୍ୟକ୍ତି ଖୁସି ହେବା, ଆତ୍ମସନ୍ତୋଷ

ଲାଭ କରିବା ଓ ବାହାବାନେବା କେଉଁ ମାନସିକତାର ପରିଚୟ ଦିଏ ? ଆମ ସମାଜରେ ଆମେ ବହୁ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ଅସାଧୁ ଓ ଅନ୍ୟାୟ ଭାବରେ ଅର୍ଥ ଉପାର୍ଜନ କରୁଥିଲେ ମଧ୍ୟ ସେଥିପାଇଁ କୌଣସି ଆତ୍ମପୀଡା ପାଆନ୍ତି ନାହିଁ ବରଂ ଗର୍ବ ଅନୁଭବ କରନ୍ତି ଓ ନିଜେ କରିତ୍‌କର୍ମା ବୋଲି ବାହାବା ନେଇଥା'ନ୍ତି ।

ଆମେ ସାମାଜିକ ଜୀବନ ପ୍ରବାହରେ ବହୁ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ବେଶ୍ ଧର୍ମପ୍ରାଣ ବୋଲି ମନେହୁଅନ୍ତି । ସେମାନେ ପ୍ରତିଦିନ ଘରେ ପୂଜା ନ କଲେ ଅନ୍ନ ଛୁଅନ୍ତି ନାହିଁ । କେଉଁଆଡ଼େ ବାହାରିବା ବେଳକୁ କେତେ ଠାକୁରଙ୍କ ପାଖରେ ଭକ୍ତିରେ ପ୍ରଣାମ କରନ୍ତି । ସାହି, ବସ୍ତିରେ ପୂଜା ପାର୍ବଣରେ ଭକ୍ତିରେ ଗଦ୍ ଗଦ୍ ହୁଅନ୍ତି । ବ୍ୟବସାୟୀମାନେ ଦୋକାନ ଘରେ କେତେ ଦିଅଁ ଦେବତାଙ୍କର ଫଟୋ ରଖନ୍ତି । ଦୋକାନ କାରବାର ପୂର୍ବରୁ ଧୂପ ଲଗାନ୍ତି, ପୂଜା କରନ୍ତି, ଭକ୍ତିରେ ପ୍ରଣାମ କରନ୍ତି । କିନ୍ତୁ ସାମାଜିକ ଆଚରଣରେ ସାଧୁତା ରକ୍ଷା କରନ୍ତି ନାହିଁ । ଜିନିଷ ଅପମିଶ୍ରଣ କରନ୍ତି, ଗରାଖମାନଙ୍କୁ ଠକନ୍ତି, ମିଟର ଟାମ୍ପରିଂ କରନ୍ତି, ଟାକ୍ସ ଫାଙ୍କନ୍ତି, ସରକାରଙ୍କୁ ଭୁଲ ରିଟର୍ଣ୍ଣ ଦିଅନ୍ତି ଇତ୍ୟାଦି ଇତ୍ୟାଦି । ଆମର ବିଭିନ୍ନ ଅଫିସମାନଙ୍କରେ ଆମେ ବହୁ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ନିଜ ଟେବୁଲ କାଚ ତଳେ କେତେ ଦେବଦେବୀଙ୍କ ଫଟୋ ରଖିଥାନ୍ତି । ଅଫିସ ସିଟରେ ବସିବା ପୂର୍ବରୁ ପ୍ରଣାମ କରନ୍ତି, ପ୍ରାର୍ଥନା ନକରି କୌଣସି କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ, ଦେଉଳ, ମନ୍ଦିରକୁ ନିୟମିତ ଯାଆନ୍ତି, ଭକ୍ତିରେ ବିଭୋର ହୁଅନ୍ତି କିନ୍ତୁ ନିଜର କର୍ତ୍ତବ୍ୟ ପାଳନ କରିବା କ୍ଷେତ୍ରରେ କୌଣସି ସାଧୁତା ରକ୍ଷା କରନ୍ତି ନାହିଁ । ଲାଞ୍ଚ ନିଅନ୍ତି, ସାଧାରଣ ଲୋକଙ୍କୁ ଅସୁବିଧାରେ ପକାନ୍ତି, ସୁଯୋଗ ପାଇଲେ ସର୍ବସାଧାରଣ ସମ୍ପତ୍ତିକୁ ହଡ଼ପ କରନ୍ତି, ସବୁଥିରେ ଉତ୍କୋଚ ଖୋଜନ୍ତି ଇତ୍ୟାଦି ଇତ୍ୟାଦି । ସାମାଜିକ ବ୍ୟବହାର କ୍ଷେତ୍ରରେ ନୈତିକ ମୂଲ୍ୟବୋଧ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହନ୍ତି । ସେମାନଙ୍କର ପ୍ରାର୍ଥନା, ପୂଜା, ଭକ୍ତିଭାବ କୌଣସି ମହତ୍ତର ଜୀବନ ପାଇଁ ପ୍ରେରଣା ଦିଏ ନାହିଁ ବା ଏକ ନୀତିପୂର୍ଣ୍ଣ ଜୀବନ ପାଇଁ ଅଭିନିବେଶ ଯୋଗାଏ ନାହିଁ । ସେମାନେ ଯେଉଁ ଦୁର୍ନୀତି କରନ୍ତି, ଅସାଧୁ ଉପାୟରେ ଅର୍ଥ ଉପାର୍ଜନ କରନ୍ତି ସେଥିରେ କିପରି ଧରାପଡ଼ିବେ ନାହିଁ ସେଥିପାଇଁ ଦିଅଁ ଦେବତାଙ୍କୁ ପୂଜା କରନ୍ତି । ବିଶ୍ୱାସ କରନ୍ତି ଯେ ଠାକୁରଙ୍କ କୃପାରୁ ତାଙ୍କୁ ଦରମା ଗଣ୍ଡାକ ଛଡ଼ା ବାହାରୁ ଦି' ପଇସା ଅନାୟାସରେ ମିଳିପାରୁଛି ।

ସମାଜରେ କେତେକ ମୁଷ୍ଟିମେୟ ଲୋକଙ୍କୁ ଆମେ ଦେଖୁ ଯେଉଁମାନେ ଭାରି ନିଷ୍ଠାବାନ ବ୍ୟକ୍ତି । ସେମାନେ ନିଜର କର୍ତ୍ତବ୍ୟକୁ ସୁଚାରୁରୂପେ ସମ୍ପାଦନ କରନ୍ତି । ଜ୍ଞାତସାରରେ କୌଣସି ଅନ୍ୟାୟ କରନ୍ତି ନାହିଁ । ଯଥାସମ୍ଭବ ନିଜର ସାମାଜିକ କର୍ତ୍ତବ୍ୟ

କ୍ଷେତ୍ରରେ ସାଧୁତା ରକ୍ଷା କରନ୍ତି । କୌଣସି ପରିସ୍ଥିତିରେ କିଛି ଅନ୍ୟାୟ କାର୍ଯ୍ୟରେ ସମ୍ପୃକ୍ତ ହେଲେ ଗଭୀର ଆତ୍ମପୀଡ଼ା ଲାଭ କରନ୍ତି ଓ ମନସ୍ତାପ କରନ୍ତି । ସାଧୁତା ଓ କର୍ତ୍ତବ୍ୟନିଷ୍ଠାକୁ ସେମାନେ ଜୀବନର ବ୍ରତ ଭାବେ ଗ୍ରହଣ କରନ୍ତି, ତେବେ ବହୁ କ୍ଷେତ୍ରରେ ନାନା ପ୍ରତିକୂଳ ପରିବେଶର ସମ୍ମୁଖୀନ ହୁଅନ୍ତି ।

ସାମାଜିକ ପରିବେଶ ବ୍ୟକ୍ତି ପାଇଁ ଶୃଙ୍ଖଳାଜନିତ ଅଭିନିବେଶ ଯୋଗାଇପାରେ କିମ୍ବା ପରିସ୍ଥିତି ସହିତ ଖାପ ଖୁଆଇ ନେଇ ବାସ୍ତବବାଦୀ ହେବାକୁ ଶିକ୍ଷା ଦେଇପାରେ । ଯେଉଁଠି ସାମାଜିକ ଜୀବନର ପରିବେଶ ବ୍ୟକ୍ତିକୁ ନୈତିକତା ଓ ଉତ୍ତରଦାୟିତ୍ୱବୋଧର ପ୍ରେରଣା ଦିଏ ସେଠାରେ ଜୀବନର ଗୁଣାତ୍ମକ ମାନ ଉନ୍ନତ ମନେହୁଏ । ଅଥଚ ଯେଉଁଠି ଏହା ବ୍ୟକ୍ତିକୁ ନ୍ୟାୟ-ଅନ୍ୟାୟ ପ୍ରତି ସ୍ପର୍ଶକାତରହୀନ କରେ ତାହା କ୍ଷୟଶୀଳ ମନେହୁଏ । ବିବେକବୋଧ, ସାଧୁତା, ବିଚାରଶୀଳତା ଓ ମାନବିକତା ପରସ୍ପର ସହ ସଂଲଗ୍ନ ଓ ଏଗୁଡ଼ିକ ସଭ୍ୟ ଜୀବନର ମାନଦଣ୍ଡ ମନେହୁଏ । ଅଥଚ ଧାର୍ମିକ ଭକ୍ତିଭାବ, ପୂଜା ପ୍ରାର୍ଥନା ସେପରି କିଛି ଗୁଣାତ୍ମକ ଜୀବନର ସ୍ୱାକ୍ଷର ବହନ କରେନାହିଁ । ଏଗୁଡ଼ିକ ବ୍ୟକ୍ତିଗତ ବିଶ୍ୱାସ ଓ ଭୟଜନିତ ମାନସିକତାର ଅଭିବ୍ୟକ୍ତି ମାତ୍ର । (୧.୧୨.୧୦)



# କୁସଂସ୍କାରର ମନସ୍ତତ୍ତ୍ୱ

ନିକଟରେ ମାନବ ସେବା ସଂସ୍ଥାନ (ସର୍ଭିସ ଟୁ ହ୍ୟୁମାନିଟି ଫାଉଣ୍ଡେସନ) ଦ୍ୱାରା ନିମନ୍ତ୍ରିତ ହୋଇ ଜଗତ୍‌ସିଂହପୁରସ୍ଥିତ ଶିଶୁ ଅନନ୍ତ ଆଶ୍ରମର ଏକ କାର୍ଯ୍ୟକ୍ରମରେ ଯୋଗଦେବାକୁ ଯାଇଥିଲି । ଶିଶୁ ଆଶ୍ରମ ଏକ ଅନାଥାଶ୍ରମ, ଯେଉଁଥିରେ ଅନେକ ଅନାଥ ଓ ଅସହାୟ ପିଲାମାନଙ୍କୁ ରଖାଯାଇ ଶିକ୍ଷା ଦିଆଯାଉଛି । ସେଠାରେ 'ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ' ବିଷୟରେ କହିବାକୁ ଅନୁଷ୍ଠାନର ନିର୍ଦ୍ଦେଶକ ମୋତେ କହିଥାନ୍ତି । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ଶିଶୁ ଆଶ୍ରମରେ କାମ କରୁଥିବା ଜଣେ ଝିଅଙ୍କ ସହ ମୋତେ ପରିଚିତ କରାଇଦେଲେ । ସେ ଝିଅଙ୍କ ମୁହଁରୁ ମୁଁ ତାଙ୍କ କରୁଣ କାହାଣୀ ଶୁଣି ସ୍ତବ୍ଧ ହୋଇଗଲି । ଝିଅ ଜଣଙ୍କର ଘର ସୁନ୍ଦରଗଡ଼ ଜିଲ୍ଲାର ଏକ ଗ୍ରାମରେ । ତାଙ୍କୁ ସେତେବେଳେ ଦଶବର୍ଷ ହୋଇଥାଏ । ତାଙ୍କର ଗୋଟିଏ ଭଉଣୀକୁ ୬ବର୍ଷ ଓ ସାନଭାଇଟିକୁ ମାତ୍ର ଏକବର୍ଷ ହୋଇଥାଏ । ତାଙ୍କ ଗ୍ରାମରେ କେତେକ ଲୋକଙ୍କ ଦେହ ଅସୁସ୍ଥ ହେଲା । ବର୍ଷେ, ଦୁଇବର୍ଷ ମଧ୍ୟରେ କେତେଜଣ ମୃତ୍ୟୁମୁଖରେ ପଡ଼ିଲେ । ଲୋକଙ୍କ ବିଶ୍ୱାସ ହେଲା ଯେ, କେହି ଗୁଣିକରି ଲୋକଙ୍କୁ ମାରିଦେଉଛି । ଯେଉଁ ଲୋକମାନେ ଅସୁସ୍ଥ ହେଉଛନ୍ତି କୌଣସି ସ୍ତ୍ରୀ ଲୋକର କୁଦୃଷ୍ଟିରୁ ଏହା ହେଉଛି । ସେହି ଗାଆଁକୁ ଜଣେ ତାନ୍ତ୍ରିକଙ୍କୁ ଡକାଗଲା । ସେ ତାଙ୍କର ପୂଜା ଇତ୍ୟାଦି କରି ଏହି ଝିଅଙ୍କ ବାପା, ମା'ଙ୍କୁ ଏଥିପାଇଁ ଦାୟୀ କଲେ । ଝିଅର ବାପା ଗୁଣି ଜାଣେ ଓ ମା' ଜଣେ ଡ଼ାହାଣୀ ବୋଲି ଲୋକ ଧରିନେଲେ । ଗାଆଁ ଲୋକଙ୍କର କ୍ରୋଧ ପରିବାର ଉପରେ ପଡ଼ିଲା । ଝିଅଟିର ବାପା, ମାଆଙ୍କୁ ଡାକିନେଇ ଲୋକମାନେ ପିଟିପିଟି ମାରିଦେଲେ । ଏହାପରେ ଏହି ଝିଅଟି ଯିଏ ପ୍ରାଥମିକ ସ୍କୁଲରେ ପଢୁଥିଲା, ବାପା, ମା'ଙ୍କୁ ହରାଇ ଦୁଇଟି ଭାଇ ଭଉଣୀଙ୍କୁ ନେଇ ଅନାଥ ହୋଇଗଲା । ନାନା ଝଡ଼ଝଞ୍ଜା ଭିତରେ ସଂଗ୍ରାମ କରି ଝିଅଟି ନିଜର ଭାଇ ଭଉଣୀଙ୍କୁ ବଞ୍ଚାଇଲା । ଏବେ ସେ ଶିଶୁ ଆଶ୍ରମରେ କିଛି କାମ କରି ଭଉଣୀକୁ କଲେଜରେ ଓ ଭାଇକୁ ସ୍କୁଲରେ ପଢ଼ାଉଛି । ମାନବ ସେବା ସଂସ୍ଥାନ ବି ସାହାଯ୍ୟ ଓ ସହାନୁଭୂତିର ହାତ ସେମାନଙ୍କୁ ବଢ଼ାଇଛି । ଏହି ଘଟଣା ପ୍ରାୟ ୧୫ବର୍ଷ ତଳର କଥା ହେବ ବୋଲି ଝିଅଟି ମୁହଁରୁ ମୁଁ ଶୁଣିବାକୁ ପାଇଲି ।

ପ୍ରାୟ ୪/୫ବର୍ଷ ତଳେ ରାଉରକେଲା ସ୍ଥିତ ଓଡ଼ିଶା ହେତୁବାଦୀ ସଂଗଠନର ଏକ ଆଲୋଚନା ଚକ୍ରରେ ଯୋଗଦେବା ବେଳେ କେତେକ ବନ୍ଧୁଙ୍କଠାରୁ ସୁନ୍ଦରଗଡ଼ ଜିଲ୍ଲାରେ ଗୁଣିଗାରେଡ଼ି, ମନ୍ତ୍ର ତନ୍ତ୍ରରେ ବିଶ୍ୱାସ, ଗାଆଁ ଗହଳିରେ ବହୁ_ବ୍ୟାପକ ଥିବା ମୁଁ ଶୁଣିଥିଲି ।

ଏଥିପାଇଁ ଗାଆଁ ଗହଳିରେ ବହୁ ଆଇନ ଶୃଙ୍ଖଳା ପରିସ୍ଥିତି ବି ସୃଷ୍ଟି ହେଉଥିବା ସମ୍ବାଦ ବେଳେବେଳେ ବାହାରେ । ହେତୁବାଦୀ ସାଥୀମାନେ କେତେକ ଯୋଜନା କରି ସୁନ୍ଦରଗଡ଼ ଜିଲ୍ଲାରେ ଲୋକମାନଙ୍କ ଭିତରୁ କୁସଂସ୍କାର ଦୂର କରିବାକୁ କିଛି ପ୍ରୟାସ କରିଥିଲେ । କେବଳ ସୁନ୍ଦରଗଡ଼ ଜିଲ୍ଲା ନୁହେଁ, ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଓ ବିଶେଷତଃ ଆଦିବାସୀବହୁଳ ଗ୍ରାମମାନଙ୍କରେ ଏ ପ୍ରକାର ବିଶ୍ୱାସ ବହୁ ବ୍ୟାପକ ଭାବେ ରହିଛି । ମନ୍ତ୍ର, ତନ୍ତ୍ର, ଗୁଣି, ଖଟବିଦ୍ୟା, କୁଲାବୁଲା, ନଖଦର୍ପଣ ଇତ୍ୟାଦି ଗୁଡ଼ିଏ ଆଧାରହୀନ ବିଶ୍ୱାସ । ତେବେ ଏବେ ବି ଏହି ପ୍ରକାର ବିଶ୍ୱାସ ଆମର ଜନଜୀବନରେ ବ୍ୟାପକ ଭାବେ ରହିଛି । ବିଜ୍ଞାନର ପ୍ରଭୂତ ବିକାଶ ସତ୍ତ୍ୱେ ମଧ୍ୟ ଏହି ବିଶ୍ୱାସ ଏତେ ବଦ୍ଧମୂଳ ହୋଇ ରହିଛି ଯେ ଏହା ଲୋକଙ୍କ ଭିତରୁ ଦୂର ହେଉନାହିଁ । କୌଣସି ଘଟଣା ପଶ୍ଚାତର କାରଣ ଯେତେବେଳେ ମଣିଷ ଜାଣିନଥିଲା ସେତେବେଳେ ସେ ନାନା ଅହେତୁକ ଓ ଅବୈଜ୍ଞାନିକ କାରଣକୁ ଗ୍ରହଣ କରୁଥିଲା । ଆଜି ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ ବୈଜ୍ଞାନିକ ଦୃଷ୍ଟଭଙ୍ଗୀର ବିକାଶ ଅଭାବରେ କୁସଂସ୍କାର ସମାଜରେ ବ୍ୟାପକ ହୋଇ ରହିଛି । ତେବେ କେତେକ କୁସଂସ୍କାରଜନିତ ବିଶ୍ୱାସରୁ କେତେକ କ୍ଷେତ୍ରରେ ହିଂସାତ୍ମକ ଘଟଣାମାନ ଘଟୁଛି । କୌଣସି ହିଂସାତ୍ମକ ଘଟଣା ଘଟିଲେ ହୁଏତ ପୁଲିସ ଓ ପ୍ରଶାସନ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛି । କିନ୍ତୁ ସାଧାରଣ କ୍ଷେତ୍ରରେ କୁସଂସ୍କାର ପ୍ରସାର କରୁଥିବା ବ୍ୟକ୍ତିବିଶେଷଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହେଉନାହିଁ । ଖୁବ୍ ନିକଟରେ ଦୁଇଟି ଘଟଣା ପ୍ରତି ଦୃଷ୍ଟି ଆକର୍ଷଣ କରୁଛି ।

ନିକଟରେ ଏକ ସମ୍ବାଦ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା ଯେ ବରଗଡ଼ ଜିଲ୍ଲା ବରପାଲି ଅଞ୍ଚଳରେ ଗୁପ୍ତଧନ ପାଇବାପାଇଁ ଜଣେ ଗୁଣିଆଙ୍କ ନିର୍ଦ୍ଦେଶରେ ଏକ ଦଶମାସର ସନ୍ତାନକୁ ବଳି ଦେବାକୁ କେତେକ ଯୋଜନା କରିଥିଲେ । (ପ୍ରଗତିବାଦୀ ୧୯.୧୧.୧୦) ଗୁଣିଆ କହିଥିଲେ ଯେ ଚଣ୍ଡୀ ପୂଜାପାଠ, ହୋମ ଯଜ୍ଞ କରି ଏକ ନରବଳି ଦେଲେ ଗୁପ୍ତଧନ ସୁନାହଣ୍ଡା ମିଳିପାରିବ । ପୂଜାପାଠ ଚାଲିଥିବା ବେଳେ ଏହା ଜଣାପଡ଼ିବାରୁ ଲୋକେ ଯାଇ ପୁଲିସ ସାହାଯ୍ୟରେ ଶିଶୁଟିକୁ ଉଦ୍ଧାର କଲେ । ବିଳମ୍ୱ ହୋଇଥିଲେ ଶିଶୁଟିକୁ ବଳି ଦିଆଯାଇଥାନ୍ତା । ସାଧାରଣ ଲୋକମାନେ ଏବେ ବି ଏହି ପ୍ରକାର ବିଶ୍ୱାସର ବଶବର୍ତ୍ତୀ ହେବା ଘଟଣାରୁ ଆମର ସାମାଜିକ ବିକାଶର ଚିତ୍ର ବେଶ୍ ଅନୁମେୟ ।

ଦ୍ୱିତୀୟ ଘଟଣାଟି ହେଲା ୨୦୧୦ ନଭେମ୍ବର ୧୬ତାରିଖ ରାତିରେ ହଠାତ ପ୍ରଚାରିତ ହେଲା ଯେ ଜହ୍ନ ଭିତରେ ସାଇବାବାଙ୍କ ଆବିର୍ଭାବ ହେଉଛି । ଏହି ଗୁଜବରେ ବିଶ୍ୱାସ କରି ଦଳ ଦଳ ଲୋକ ଜହ୍ନ ଦେଖିବାକୁ ପଦାକୁ ବାହାରିଲେ । ଜହ୍ନକୁ ମଝିରେ ମଝିରେ ବାଦଲ ଢାଙ୍କିଦେଉଥାଏ, ବାଦଲରୁ ଜହ୍ନ ବାହାରିଲେ ଲୋକମାନେ ଜହ୍ନକୁ ଦେଖୁଥାନ୍ତି । ସେହି ଜହ୍ନ ଭିତରେ କେତେ ଲୋକଙ୍କୁ କେତେକଥା ଦେଖାଯାଉଥାଏ । ଏପରିକି ବହୁ ଶିକ୍ଷିତ ଲୋକ ବି ଚମତ୍କାରିତା ବା ମିରାକଲ୍‌ରେ ବିଶ୍ୱାସ କରିବା ଦେଖାଯାଏ । କିଛି ଲୋକଙ୍କର

ବିଶ୍ୱାସ ଯେ କେହି ଯଦି କିଛି ଚମତ୍କାରିତା ଦେଖାଇ ପାରୁଛି ତେବେ ସେ ନିଶ୍ଚୟ ଜଣେ ମହାନ ବ୍ୟକ୍ତି । ତାଙ୍କର ଭକ୍ତ ବା ଶରଣାପନ୍ନ ହେଲେ ଆମର ଅଭିଷ୍ଟ ପୂରଣ ହେବ । ଆମ ଦେଶରେ ବହୁ ବାବା, ମାତା, ଯୋଗୀ, ସନ୍ନ୍ୟାସୀ, ସ୍ୱାମୀ, ମହାରାଜ ଲୋକଙ୍କର ଏହି ମାନସିକତାକୁ ବେଶ୍ ଭଲ ଭାବେ ଜାଣନ୍ତି । ତେଣୁ ସେମାନେ କୌଶଳପୂର୍ଣ୍ଣ ଭାବରେ କିଛି ଚମତ୍କାରିତା ଦେଖାଇ ଅଗଣିତ ମଣିଷଙ୍କୁ ଆକୃଷ୍ଟ କରିଥାନ୍ତି । କିଏ ହାତରୁ ବିଭୂତି ବାଣ୍ଟି, କିଏ ସୁନା ଚେନ ବାହାର କରି, କିଏ ପାଣିରେ ପ୍ରଦୀପ ଜାଳି, କିଏ ଶ୍ୱାସ ପ୍ରଶ୍ୱାସ ବନ୍ଦକରି, କିଏ ଶୂନ୍ୟରେ ଭାସିବାର ଅଭିନୟ କରି ଗୋଟିଏ ଗୋଟିଏ ସାମ୍ରାଜ୍ୟ ବିସ୍ତାର କରିଛନ୍ତି । ଏହି ଧର୍ମାବତାରମାନେ ଲୋକମାନଙ୍କର ସରଳ ବିଶ୍ୱାସର ସୁଯୋଗ ନେଇ ବହୁ ସମ୍ପତ୍ତିର ମାଲିକ ହୋଇଛନ୍ତି । ସତ୍ୟ, ନ୍ୟାୟ ଓ ନୈତିକତାର କେତେ ବାଣୀ ଶୁଣାଇ ଆସିଛନ୍ତି ଅଥଚ ସେମାନେ କୌଣସି ସମୟରେ ତାଙ୍କର ଚମତ୍କାରିତାର ପ୍ରମାଣ ଦେବାକୁ ବୈଜ୍ଞାନିକ ବା ହେତୁବାଦୀଙ୍କର ଆହ୍ୱାନ ଗ୍ରହଣ କରନ୍ତି ନାହିଁ । ବରଂ ଆଧ୍ୟାତ୍ମିକତା, ଯୋଗ ନାମରେ ସେମାନେ ଜନମାନସକୁ ବିଭ୍ରାନ୍ତ କରନ୍ତି । ଧର୍ମକୁ ଆଖିଠାର ମାରି ଭକ୍ତମାନଙ୍କ ସାହାଯ୍ୟରେ ସେମାନଙ୍କ ଚମତ୍କାରିତାର କାହାଣୀକୁ ପ୍ରସାର କରି ଅନୈତିକ ଭାବରେ ନିଜର ସାମ୍ରାଜ୍ୟ ବିସ୍ତାର କରିଛନ୍ତି । ସମସ୍ତ ବୈଜ୍ଞାନିକ ସାଧନର ଉପଯୋଗ ଓ ଉପଭୋଗ କରି ସେମାନେ ବିଜ୍ଞାନର ନିନ୍ଦା କରନ୍ତି ।

ଗାଆଁ ଗହଳର ଅଗଣିତ ମଣିଷ ଅଶିକ୍ଷା ଓ ଦାରିଦ୍ର୍ୟ ଭିତରେ ମନ୍ତ୍ର, ତନ୍ତ୍ର, ଗୁଣିବିଦ୍ୟା, ଖଟବିଦ୍ୟା, ବଳିପ୍ରଥା ଇତ୍ୟାଦିରେ ବିଶ୍ୱାସ କରିନ୍ତି । ପ୍ରତିକୂଳ ପରିସ୍ଥିତିରେ ଥିବାବେଳେ ବା ନିଜର ଅଭିଷ୍ଟ ସାଧନ ପାଇଁ ଲୋକମାନେ ଏହି ସବୁ କଥାକୁ ସହଜରେ ବିଶ୍ୱାସ କରିଥାନ୍ତି । ଯେତେବେଳେ ମଣିଷ ନିଜର ସାମାଜିକ ବ୍ୟବସ୍ଥା ଉପରେ ଭରସା କରିପାରେ ନାହିଁ, ସେତେବେଳେ ସେ ନାନା ଗୁହ୍ୟ ବିଦ୍ୟା, ଚମତ୍କାରିତା ଓ ମନ୍ତ୍ର ତନ୍ତ୍ରରେ ବିଶ୍ୱାସ କରିବା ସ୍ୱାଭାବିକ ହୋଇଥାଏ । ରୋଗ ବାଧକରେ ପଡ଼ିଥିବା ସାଧାରଣ ମଣିଷଟିଏ ଯଦି ଚିକିତ୍ସାର ସୁଯୋଗ ନେବା କଳ୍ପନା କରିପାରେ ନାହିଁ ସେତେବେଳେ କାଳେ ଗୁଣି, ମନ୍ତ୍ର ବା ବଳିଦେଲେ ଭଲ ହୋଇଯିବ ଏହି ବିଶ୍ୱାସରେ ପ୍ରଭାବିତ ହୋଇଥାଏ । ବିଶେଷକରି ଯେତେବେଳେ ବ୍ୟକ୍ତିବିଶେଷ ଆଧୁନିକ ଜ୍ଞାନବିଜ୍ଞାନ ଓ ବୃହତ୍ତର ସାମାଜିକ ପରିବେଶ ଉପରେ ଆସ୍ଥା ରଖିବାକୁ ସମର୍ଥ ହୁଏନାହିଁ, ସେତେବେଳେ ସିଏ ଭାଗ୍ୟ, ଠାକୁର, ମନ୍ତ୍ରତନ୍ତ୍ରରେ ବିଶ୍ୱାସୀ ହୋଇଥାଏ । ପୁନଶ୍ଚ ପରମ୍ପରାକ୍ରମେ ସମାଜରେ ଚଳି ଆସିଥିବା ନାନା ବିଶ୍ୱାସ, ପୂଜା, କର୍ମକାଣ୍ଡ ଜନମାନସକୁ ବହୁ ଭାବରେ ପ୍ରଭାବିତ କରିଥାଏ । ଏଥିରୁ ଲାଭବାନ ହେଉଥିବା ଗୋଷ୍ଠୀମାନେ ଏହାକୁ ପ୍ରଚାର, ପ୍ରସାର କରିଥାନ୍ତି । ଏହାକୁ ପରମ୍ପରା, ଐତିହ୍ୟ କହି ଜାବୁଡ଼ି ଧରିବାର ମାନସିକତା ପୋଷଣ କରନ୍ତି । କୁସଂସ୍କାର ଯେ କେବଳ ଅଶିକ୍ଷିତ ଓ ଗରିବ ଲୋକମାନଙ୍କ ପାଖରେ ରହିଛି ତାହା ନୁହେଁ, ଏହାର ମୂଳ ସମାଜର ବହୁ ତଳକୁ ଭେଦିକରି

ରହିଛି । ଏପରିକି ସମାଜର ବହୁ ପ୍ରତିଷ୍ଠିତ ବ୍ୟକ୍ତି ମଧ୍ୟ ନାନା ଜଟିଳ, ମନସ୍ତାତ୍ତ୍ୱିକ କାରଣରୁ କୁସଂସ୍କାରରେ ବିଶ୍ୱାସ କରି ଆସିଛନ୍ତି । ଆଜି ବି ଆମ ସମାଜରେ ଭୂତପ୍ରେତର ନାନା ବିଶ୍ୱାସ ବ୍ୟାପକ ହୋଇ ରହିଛି । କୌଣସି ବିଦ୍ୟାଳୟରେ ଛାତ୍ରୀମାନେ କିଛି ଅସ୍ୱାଭାବିକ ବ୍ୟବହାର ଦେଖାଇଲେ ତାହାକୁ 'ଭୂତଲାଗୁଛି' ବୋଲି ବିଶ୍ୱାସ କରାଯାଉଛି । ଏବେ ବି ସମାଜର ପ୍ରତିଷ୍ଠିତ ଲୋକମାନେ ଭାଗ୍ୟ, କୋଷ୍ଠୀ, ଜାତକ, ହସ୍ତରେଖା, ଶୁଭ-ଅଶୁଭ ମୁହୂର୍ତ୍ତ, ବାସ୍ତୁଜ୍ଞାନ ଇତ୍ୟାଦି ଅବୈଜ୍ଞାନିକ କଥାକୁ ବିଶ୍ୱାସ କରୁଛନ୍ତି । ତେବେ ଯେଉଁଠି କିଛି ହିଂସାତ୍ମକ ଘଟଣା ଘଟୁଛି, ତାହାକୁ ଆଇନ ଓ ପ୍ରଶାସନ ଗୁରୁତ୍ୱ ଦେଉଛି, ଅଥଚ କୁସଂସ୍କାରକୁ ପ୍ରସାର କରୁଥିବା ବ୍ୟକ୍ତି ବା ମାଧ୍ୟମ ବିରୋଧରେ ଆଇନଗତ କାର୍ଯ୍ୟାନୁଷ୍ଠାନ ହେଉନାହିଁ ।

ସାମାଜିକ ପରିବେଶକୁ ଉନ୍ନତ କରିବାକୁ ହେଲେ ଜନମାନସରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସଂସ୍କାରିତ ଚେତନାର ବାର୍ତ୍ତା ପ୍ରସାର କରିବାକୁ ହେବ । ଏହା ବି ଆମର ଏକ ସାମ୍ବିଧାନିକ କର୍ତ୍ତବ୍ୟ । ଆମଦେଶର ସମ୍ବିଧାନରେ ବ୍ୟକ୍ତିର ମୌଳିକ କର୍ତ୍ତବ୍ୟ ପୃଷ୍ଠଭୂମିରେ ଉଲ୍ଲେଖ ଅଛି 'ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ତଥା ଜ୍ଞାନାର୍ଜନ ଓ ସଂସ୍କାର ଭାବନାର ବିକାଶ କରିବେ ।' (ସମ୍ବିଧାନ ଭାଗ-୪(କ), ଧାରା-୫୧) ତେବେ ଏହା କେବଳ ପୋଥି ବାଇଗଣ ହୋଇ ରହିଛି, ବାସ୍ତବରେ ରୂପାୟିତ ହୋଇନାହିଁ । ଏହି ସାମ୍ବିଧାନିକ କର୍ତ୍ତବ୍ୟ ପାଳନ ପାଇଁ ଆମକୁ ପ୍ରୟାସ କରିବାକୁ ହେବ । ସେଥିପାଇଁ ଶିକ୍ଷାସ୍ତରରୁ ଉଦ୍ୟମ କରିବା ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଷୟରେ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦେଲେ ତାହାର ସୁଦୂରପ୍ରସାରୀ ପ୍ରଭାବ ରହିବ । ଏହାସହିତ ସାମ୍ପ୍ରତିକ ଯୁଗରେ ଜନମତକୁ ପ୍ରଭାବିତ କରିବାରେ ଗଣମାଧ୍ୟମ ଜରିଆରେ ଉଦ୍ୟମ କରାଯାଇ ପାରିବ । ଗଣମାଧ୍ୟମଦ୍ୱାରା ଲୋକମାନଙ୍କର ଦୃଷ୍ଟିଭଙ୍ଗୀରେ ବି ଗୁଣାତ୍ମକ ପରିବର୍ତ୍ତନ ଆଣିହେବ । ଶିକ୍ଷା ଓ ଗଣମାଧ୍ୟମ ସାମାଜିକ ସ୍ତରରେ ଜନଚେତନାକୁ ପ୍ରଭାବିତ କରିବାରେ ପ୍ରମୁଖ ଭୂମିକା ନେଇପାରିବ । ଯଦି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ଗୁରୁତ୍ୱ ଦିଆନଯାଏ, ତେବେ ବିଜ୍ଞାନ ଓ ପ୍ରଯୁକ୍ତି ବିଜ୍ଞାନର ଯେତେ ବିକାଶ ହେଲେ ମଧ୍ୟ ସାମାଜିକ ଜୀବନସ୍ତରରୁ କୁସଂସ୍କାରର ବିଲୋପ ହେବନାହିଁ । କୁସଂସ୍କାର ଉଚ୍ଚନୀଚ ଭେଦଭାବ, ଜାତିଆଣ ମାନସିକତା ପରି ସାମାଜିକ କଳଙ୍କକୁ (ସୋସିଆଲ ଇଭିଲ) ଦୂର କରିବାକୁ ହେଲେ ଯୋଜନାବଦ୍ଧ ପ୍ରୟାସର ଯେ ଆବଶ୍ୟକ ରହିଛି ଏହା ନିଃସନ୍ଦେହ ମନେହୁଏ । (୦୮.୧୨.୧୦)



# ଦୁଇଟି ଦିବସର ତାତ୍ପର୍ଯ୍ୟ

ସଭ୍ୟତାର କ୍ରମବିକାଶ ଧାରାରେ ଜୀବନର ଭୌତିକମାନ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତ ହୋଇଚାଲିଛି । ଅତୀତରେ କୃଷିର ଉଦ୍ଭାବନ ବା ଭାଷା ପାଇଁ ଲିପିର ଉଦ୍ଭାବନ ସଭ୍ୟତାର ବିକାଶ କ୍ଷେତ୍ରରେ ବେଶ୍ ନିର୍ଣ୍ଣାୟକ ହୋଇଥିବ । କୃଷିର ଉଦ୍ଭାବନ ଦ୍ୱାରା ସଭ୍ୟତାର ବିକାଶ ଆରମ୍ଭ ହେବା ନୃତତ୍ତ୍ୱବିତ୍‌ମାନେ ମତ ଦେଇଥାନ୍ତି । ସେହିପରି ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ଲିପିର ଉଦ୍ଭାବନ ସଭ୍ୟତାର ଇତିହାସରେ ବେଶ୍ ମାଇଲଖୁଣ୍ଟ ମନେହୁଏ । ସଭ୍ୟତାର କ୍ରମୋନ୍ନତି ଯେ ହଜାର ହଜାର ବର୍ଷ ଧରି ବିକଶିତ ହୋଇଚାଲିଛି ଏହା ନିଃସନ୍ଦେହ । ତେବେ ଆଜି ଯେତେ ସୁବିଧାଜନକ ସ୍ଥିତିରେ ମଣିଷ ଜୀବନ ନିର୍ବାହ କରୁଛି, ତାହା ଶହେ ଦୁଇଶହ ବର୍ଷ ତଳେ ଅଚିନ୍ତନୀୟ ଥିଲା । ଏଠାରେ ଏକ କୌତୂହଳ କଥା ବ୍ୟକ୍ତ କରୁଛି । 'ସାମାଜିକ ଉତ୍କର୍ଷ ସାଧନରେ ବିଜ୍ଞାନର ଅବଦାନ' ପ୍ରସଙ୍ଗ ଉପରେ ଥରେ ଗମ୍ଭୀର ଆଲୋଚନା ହେଉଥାଏ । ଜଣେ ବନ୍ଧୁ ଏକ ମଜାକଥା କହିଲେ । ଊନବିଂଶ ଶତାବ୍ଦୀର ସବୁଠାରୁ ବଡ଼ ଉଦ୍ଭାବନ କ'ଣ ବୋଲି ସେ ପ୍ରଶ୍ନଟିଏ ଉଠାଇଲେ । ଅନେକ କଥା ଆଲୋଚକମାନେ କହିବା ଭିତରେ ସେ ମନ୍ତବ୍ୟ ଦେଲେ ଯେ ତାଙ୍କ ବିଚାରରେ ବିଦ୍ୟୁତ୍ ବ୍ୟବହାର (ଇଲେକ୍‌ଟ୍ରିସିଟି) ଯେପରି ସବୁଠାରୁ ଗୋଟିଏ ବଡ଼ ଉଦ୍ଭାବନ ଥିଲା, ସେପରି ପାଇଖାନା ବ୍ୟବହାର (ସେଫ୍‌ଟି ଲାଟ୍ରିନ) ମଧ୍ୟ ସେ ଶତାବ୍ଦୀର ସବୁଠାରୁ ବଡ଼ ଉଦ୍ଭାବନ ଥିଲା । ଆଜି ବିଦ୍ୟୁତ୍ ଶକ୍ତି ବା ଇଲେକଟ୍ରିକ୍ କରେଣ୍ଟ ଅଭାବରେ ଜୀବନ ଦୁର୍ବିସହ ମନେହେବ । ସେହିପରି ସହରୀ ଜୀବନରେ ଘରଭିତରେ ପାଇଖାନାର ବ୍ୟବହାର ନଥିଲେ କ'ଣ ପରିସ୍ଥିତି ହୁଅନ୍ତା ବନ୍ଧୁ ଜଣକ ବେଶ୍ ବ୍ୟଙ୍ଗଭରା ଭାବରେ ବ୍ୟକ୍ତ କଲେ । ସଭ୍ୟତାର ଇତିହାସ ହଜାର ହଜାର ବର୍ଷ ଧରି ଅଗ୍ରଗତି କରିଥିଲେ ବି ଆଧୁନିକ ବିଜ୍ଞାନ ମାତ୍ର ଦୁଇ ତିନି ଶତାବ୍ଦୀ ଭିତରେ ଯେଉଁ ଜ୍ଞାନ, ପ୍ରଯୁକ୍ତି ଓ ସାଧନମାନ ସୃଷ୍ଟି କରିଛି ତାହା ଆଜିର ଜୀବନଧାରାକୁ ବହୁ ଦୃଷ୍ଟିରୁ ଉନ୍ନତ କରିପାରିଛି ।

ବିଜ୍ଞାନ ଯେପରି ନୂତନ ଆବିଷ୍କାର ଓ ଉଦ୍ଭାବନ ଦ୍ୱାରା ଜୀବନର ଭୌତିକ ମାନକୁ ଉନ୍ନତ କରିଚାଲିଛି ସେହିପରି ସଭ୍ୟ ମୂଲ୍ୟବୋଧଗୁଡ଼ିକର କ୍ରମବିକାଶ ଜୀବନର

ଗୁଣାତ୍ମକ ମାନକୁ ଉନ୍ନତ କରିବାରେ ସହାୟକ ହୋଇଛି । ରାଜତନ୍ତ୍ର ଶାସନ ବ୍ୟବସ୍ଥାରେ 'ଜୋର ଯାହାର ମୁଲକ ତାହାର' ନିୟମ ପ୍ରାୟତଃ ବଳବତ୍ତର ରହିଥିଲା । ବିଭିନ୍ନ ଭୂଖଣ୍ଡରେ ସଦାସର୍ବଦା ଯୁଦ୍ଧର ବିଭୀଷିକା ଲାଗି ରହିଥିଲା । ନିଜ ରାଜ୍ୟର ସୀମାକୁ ବୃଦ୍ଧି କରିବା ବା ରାଜ୍ୟ ଜୟ କରିବାର ମାନସିକତା ସାରା ପୃଥିବୀରେ ବଳବତ୍ତର ଥିଲା । ପରାଜିତ ହେବାର ଆଶଙ୍କା ନଥିଲେ ଅନ୍ୟ ଅଞ୍ଚଳକୁ ଆକ୍ରମଣ କରିବା ସାରା ପୃଥିବୀରେ ଶହ ଶହ ବର୍ଷ ଧରି ସ୍ୱାଭାବିକ ଥିଲା । କାଳକ୍ରମେ ଏହି ମାନସିକତାରେ ପରିବର୍ତ୍ତନ ଆସିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହ ପରିଣାମ ପରେ ଏକ ଯୁଦ୍ଧ-ରହିତ ପୃଥିବୀର ସ୍ୱପ୍ନ ବହୁ ମହତ୍ତ୍ୱାକାଂକ୍ଷୀ ଓ ଶାନ୍ତିପ୍ରିୟ ମାନବବାଦୀ ବିକାଶ କରିବାକୁ ଚାହିଁଲେ । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଯେଉଁସବୁ ବିଷୟକୁ ନେଇ ଗଭୀର ମତପାର୍ଥକ୍ୟ ରହିଛି, ତାହାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଆନ୍ତର୍ଜାତିକ ସ୍ତରରେ ଉଦ୍ୟମ ହେଲା । ବିଶ୍ୱ ଜାତିସଂଘ ପରି ଆନ୍ତର୍ଜାତିକ ସଂଗଠନମାନ ସାରା ପୃଥିବୀରେ କେତେକ ମୂଲ୍ୟବୋଧକୁ ସାର୍ବଜନୀନ କରିବାକୁ ପ୍ରୟାସ କଲେ । ସେହି ମୂଲ୍ୟବୋଧର ମହନୀୟତା ଓ ସାର୍ବଜନୀନତାକୁ ଗୁରୁତ୍ୱ ଦେବାପାଇଁ ନିର୍ଦ୍ଦିଷ୍ଟ ଦିବସରେ ତାହା ପାଳନକୁ ପ୍ରାଧନ୍ୟ ଦେଲେ । ଏଠାରେ ଦୁଇଟି ଦିବସର ସୂଚନା ଦେବାକୁ ଚାହୁଁଛି । ଗୋଟିଏ ହେଉଛି ନଭେମ୍ବର୧୬ ଆନ୍ତର୍ଜାତିକ ସହନଶୀଳତା ଦିବସ (ଇଣ୍ଟରନ୍ୟାସନାଲ ଡେ ଅଫ୍ ଟଲରାନ୍ସ) ଓ ଆଉ ଗୋଟିଏ ହେଉଛି ଡିସେମ୍ବର ୧୦, ମାନବିକ ଅଧିକାର ଦିବସ (ହ୍ୟୁମାନ ରାଇଟ୍‌ସ ଡେ) ।

ସହନଶୀଳତା ଏକ ଉଚ୍ଚ ମୂଲ୍ୟବୋଧ । ଯେକୌଣସି ହିଂସା, ଘୃଣା, ବିଦ୍ୱେଷ ଓ ଯୁଦ୍ଧ ସଭ୍ୟଜୀବନର ପରିପନ୍ଥୀ । ସହନଶୀଳତା ସମାଜରେ ସଂହତି, ସହଯୋଗ ଓ ଶାନ୍ତିର ପରିବେଶ ଆଣିଥାଏ । ପୃଥିବୀରେ ପ୍ରଚଳିତ ଅଧିକାଂଶ ଧର୍ମ ଭିତରେ ଯାହା ଅନ୍ତର୍ନିହିତ ପାର୍ଥକ୍ୟ ଥିଲେ ମଧ୍ୟ ପ୍ରତ୍ୟେକ ଧର୍ମର ନୈତିକ ଆଧାର ଭିତରେ ଶାନ୍ତି, କରୁଣା, ପ୍ରେମ, ମୈତ୍ରୀ ଇତ୍ୟାଦି ମୂଲ୍ୟବୋଧକୁ ଗୁରୁତ୍ୱ ଦିଆଯାଇଛି । ତେବେ ବିଡ଼ମ୍ବନାର ବିଷୟ ପ୍ରତ୍ୟେକ ଧର୍ମର ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ନିଜ ନିଜର ବିଚାର ଆଦର୍ଶ ସୃଷ୍ଟି କରି ସଂସାରରେ ଅନେକ ହିଂସା ଓ ବିଦ୍ୱେଷର ତାଣ୍ଡବଲୀଳା ସୃଷ୍ଟିକରିଛନ୍ତି । ସେହିମାନେ ସାମ୍ପ୍ରଦାୟିକତାର ବିଷମଞ୍ଜି ବୁଣିଥାନ୍ତି । ଧର୍ମ ନାମରେ ସନ୍ତ୍ରାସବାଦକୁ ସେମାନେ ବେଶ୍ କୌଶଳତାର ସହ ପ୍ରସାର କରିଆସିଛନ୍ତି । ଧର୍ମ ଯେଉଁଠି ପ୍ରେମ ଓ ମାନବିକ ସମ୍ବେଦନଶୀଳତାରେ ରୂପାନ୍ତରିତ ହୁଏ, ତାହା ମଣିଷକୁ ମହତ୍ତର ଜୀବନ ପାଇଁ ପ୍ରେରଣା ଦିଏ । କିନ୍ତୁ ପରିତାପର ବିଷୟ ଯେ ଧର୍ମ କିଛି ବ୍ୟକ୍ତିଙ୍କୁ ଉନ୍ମାଦଗ୍ରସ୍ତ କରିଛି ଓ ପରିଣାମତଃ ସମାଜ ଉପରେ ସଂଘବଦ୍ଧ ବିପର୍ଯ୍ୟୟର ବାଦଲ ଛାଇ ହୋଇଛି । ଧର୍ମ ନାମରେ

ଅତୀତରେ ବହୁ ବୈଜ୍ଞାନିକଙ୍କୁ ନାନା ନିର୍ଯାତନା ସହିବାକୁ ହୋଇଛି ଓ ଅସହିଷ୍ଣୁତାର ପରିବେଶ ସୃଷ୍ଟିହୋଇଛି । ଏହି ପରିପ୍ରେକ୍ଷୀରେ ସାମ୍ପ୍ରଦାୟିକତା ଓ ଧର୍ମ ନିରପେକ୍ଷତା ଦୁଇଟି ପରସ୍ପର ବିରୋଧୀ ଆଦର୍ଶ କହିଲେ ଅତ୍ୟୁକ୍ତି ହେବନାହିଁ । ସାମ୍ପ୍ରଦାୟିକତା, ସହିଷ୍ଣୁତା ଓ ଅସହିଷ୍ଣୁତା ଅମାନବିକତାର ପ୍ରତୀକ ହେବାବେଳେ ଧର୍ମନିରପେକ୍ଷତା, ଓ ମାନବିକତାର ଜୟଗାନ କରିଥାଏ । ମଣିଷ ନିଜର ମାନବିକ ଚେତନାକୁ ଧ୍ୱଂସ କରି ପାଶବିକତା ଓ ବିଦ୍ୱେଷକୁ ନିଜର ସଂସ୍କୃତି ବୋଲି ଗ୍ରହଣ କରିବା ଦ୍ୱାରା ସାମ୍ପ୍ରଦାୟିକ ହୋଇଥାଏ । ଅଥଚ ଧର୍ମନିରପେକ୍ଷତା ସହନଶୀଳତା, ଉଦାରତା ଓ ମାନବିକ ମହତ୍ତ୍ୱକୁ ସର୍ବଦା ଗୁରୁତ୍ୱ ଦେଇଥାଏ ।

ଆନ୍ତର୍ଜାତିକ ସହିଷ୍ଣୁତା ଦିବସ ଜାତି, ଧର୍ମ, ବର୍ଣ୍ଣ, ଜାତୀୟତା ନିର୍ବିଶେଷରେ ସାରା ବିଶ୍ୱରେ ଶାନ୍ତି, ମୈତ୍ରୀ ଓ ମାନବିକତାର ଭାବନାକୁ ବ୍ୟକ୍ତକରିଥାଏ । ରାଷ୍ଟ୍ର ରାଷ୍ଟ୍ର ଭିତରେ ବା ଗୋଷ୍ଠୀ ଗୋଷ୍ଠୀ ଭିତରେ ଯାହା କିଛି ମତପାର୍ଥକ୍ୟ ରହିଛି, ତାହାର ଅହିଂସ ଓ ଶାନ୍ତିପୂର୍ଣ୍ଣ ସମାଧାନ ବାହାର କରିବାକୁ ଏହା ନିବେଦନ କରିଥାଏ । ଯେଉଁ ସମସ୍ୟା ଶାନ୍ତିପୂର୍ଣ୍ଣ ଓ ବିଚାରଶୀଳ ଭାବେ ସମାଧିତ ହେବା ଜଟିଳ ମନେହେଉଛି, ତାହା ହିଂସାତ୍ମକ ପନ୍ଥାରେ ଅଧିକ ଜଟିଳ ହୋଇ ଉଠିବ । ବିଶେଷକରି ଆଜିର ଆଣବିକ ଯୁଗରେ ଏକ ଯୁଦ୍ଧ ମଣିଷ ସଭ୍ୟତା ପାଇଁ ଭୟଙ୍କର ଆହ୍ୱାନ ସୃଷ୍ଟି କରିବ । ବସ୍ତୁତଃ ହିଂସା, ବର୍ବରତା, ଅସହିଷ୍ଣୁତା କୌଣସି ସମୟରେ ମଣିଷର ମୂଲ୍ୟବୋଧ ହୋଇପାରିବ ନାହିଁ । ଅପରପକ୍ଷରେ ଅହିଂସା ଓ ସହନଶୀଳତା ହିଁ ସଭ୍ୟ ମୂଲ୍ୟବୋଧ ଭାବେ ଆନ୍ତର୍ଜାତିକ ସ୍ତରରେ ଆଜି ସ୍ୱୀକୃତି ।

ସେହିପରି ଡିସେମ୍ବର ୧୦ହେଉଛି ମାନବିକ ଅଧିକାର ଦିବସ । ସାମନ୍ତବାଦୀ ସଂସ୍କୃତିରେ ଉଚ୍ଚ ନୀଚ ଭେଦଭାବ ଓ ସାମାଜିକ ବିଷମତାକୁ କେତେ ଧର୍ମୀୟ ସ୍ୱୀକୃତି ଦିଆଯାଇଥିଲା । ଧର୍ମ ସମର୍ଥିତ ରାଜତନ୍ତ୍ର ଓ ସାମନ୍ତବାଦ ସାଧାରଣ ମଣିଷକୁ ଦାସତ୍ୱର ବନ୍ଧନ ଭିତରେ ଶୋଷଣ କରି ଆସିଛନ୍ତି । ପ୍ରତ୍ୟେକ ସଭ୍ୟତାରେ ମହିଳାମାନଙ୍କୁ ଯୁଗ ଯୁଗ ଧରି ନ୍ୟୂନ କରି ରଖିବାର ଇତିହାସ ସୁବିଦିତ । ଶହ ଶହ ବର୍ଷଧରି ବର୍ଣ୍ଣଗତ, ଲିଙ୍ଗଗତ ଓ ଜାତିଗତ ଭେଦଭାବ ପୃଥିବୀର ଅଧିକାଂଶ ଦେଶର ସାମାଜିକ ଜୀବନର ଆଦର୍ଶ ହୋଇ ରହିଥିଲା । କିନ୍ତୁ କାଳକ୍ରମେ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ମଧ୍ୟଯୁଗୀୟ ମାନସିକତା ବିରୋଧରେ ୟୁରୋପୀୟ ନବଜାଗରଣ ପରବର୍ତ୍ତୀ ଯୁଗରେ ଯେଉଁ ବିଚାରର ଅଭ୍ୟୁଦୟ ଘଟିଲା, ତାହାର ପରିଣତି ସ୍ୱରୂପ ଏକ ମାନବବାଦୀ ଚେତନାର ବିକାଶ କାଳକ୍ରମେ ଦୃଢ଼ ଭିତ୍ତି ନେବାକୁ ଲାଗିଲା । ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧଜନିତ

ସଂସ୍କାର ଯାହା ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ପରି ଗଣତାନ୍ତ୍ରିକ ରାଷ୍ଟ୍ରର ରାଜନୈତିକ ସଂସ୍କୃତି ଭାବେ ଗୃହୀତ ହୋଇସାରିଥିଲା ତାହାର ଏକ ପରିବର୍ଦ୍ଧିତ ରୂପ ୧୯୪୮ମସିହା ଡିସେମ୍ବର ୧୦ ଦିନ ଏକ ବିଶ୍ୱ ଘୋଷଣାନାମାରେ ପ୍ରତିଫଳିତ ହେଲା । ପୃଥିବୀର ବହୁ ଦେଶ ଏହି ଘୋଷଣାନାମାରେ ସ୍ୱାକ୍ଷର କରି ବିଶ୍ୱ ଇତିହାସରେ ଏକ ନୂତନ ଦିଗନ୍ତ ସୃଷ୍ଟିକଲେ ।

ମାନବିକ ଅଧିକାରର ଯେଉଁ ଘୋଷଣାନାମାଟି ଆନ୍ତର୍ଜାତିକ ସ୍ତରରେ ଗୃହୀତ ହୋଇଛି, ସେଥିରେ ୩୦ଟି ଧାରା ରହିଛି । ଜାତି, ଲିଙ୍ଗ, ଧର୍ମ, ବର୍ଣ୍ଣ, ଜାତୀୟତା ଇତ୍ୟାଦିକୁ ଆଧାର କରି କୌଣସି ବ୍ୟକ୍ତିକୁ ଶୋଷଣ କରିବାକୁ ଅନୈତିକ ବୋଲି ଦର୍ଶାଯାଇଛି । ଯେକୌଣସି ପ୍ରକାର ଦାସତ୍ୱ, ନିଷ୍ଠୁରତା ଓ ଭେଦଭାବକୁ ନିନ୍ଦନୀୟ କରାଯାଇଛି । ନିରାପଦ ଭାବେ ବଞ୍ଚିବା ଓ ନିଜର ସାମର୍ଥ୍ୟକୁ ବିକଶିତ କରାଇବା ପ୍ରତ୍ୟେକ ବ୍ୟକ୍ତିର ଏକ ଅଧିକାର । ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା, ଆତ୍ମମର୍ଯ୍ୟାଦା ଓ ସ୍ୱାଭିମାନକୁ ଏଥିରେ ଗୁରୁତ୍ୱ ଦିଆଯାଇଛି । ପ୍ରାପ୍ତବୟସ୍କ ପୁରୁଷ ଓ ନାରୀ ସ୍ୱଇଚ୍ଛାରେ ବିବାହ କରିବା ଓ ପରିବାର ଗଠନ କରିବାକୁ ସ୍ୱୀକୃତି ଦିଆଯାଇଛି । ପ୍ରତ୍ୟେକ ନାଗରିକ ନିଜ ଦେଶର ରାଜନୈତିକ ବ୍ୟବସ୍ଥାରେ ଅଂଶଗ୍ରହଣ କରିବାର ଅଧିକାରକୁ ମଧ୍ୟ ଗ୍ରହଣ କରାଯାଇଛି । ପ୍ରତ୍ୟେକ ଶିଶୁ ସାମାଜିକ ସୁରକ୍ଷା ପାଇବା ତାହାର ଅଧିକାର ବୋଲି କୁହାଯାଇଛି । ମୋଟ ଉପରେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମମର୍ଯ୍ୟାଦା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ନ୍ୟାୟପୂର୍ଣ୍ଣ ଅଧିକାରକୁ ବିଶ୍ୱ ଘୋଷଣାନାମାରେ ସ୍ୱୀକୃତି ଦିଆଯିବା ମଣିଷ ଇତିହାସରେ ଏକ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ ।

ସହନଶୀଳତାଜନିତ ବିଶ୍ୱଶାନ୍ତି ଓ ମାନବିକ ଅଧିକାର ଘୋଷଣାନାମାଜନିତ ବ୍ୟକ୍ତି ମର୍ଯ୍ୟାଦାବୋଧ ବିଶ୍ୱସ୍ତରରେ ଏକ ନୈତିକ ନିବେଦନ ମାତ୍ର । ଏହି ସଭ୍ୟ ମୂଲ୍ୟବୋଧଗୁଡ଼ିକ ଚିନ୍ତା ସ୍ତରରେ ଆସିଥିଲେ ମଧ୍ୟ ବାସ୍ତବପକ୍ଷେ ବିଭିନ୍ନ ଦେଶର ପ୍ରତ୍ୟେକ ସମାଜରେ ଗୃହୀତ ହୋଇନାହିଁ । ତେବେ ସନ୍ତ୍ରାସବାଦ ଓ ଭେଦଭାବ ଯେ ସଭ୍ୟ ଜୀବନଧାରାର ପରିପନ୍ଥୀ ଏହି ବିଚାର ବିଶ୍ୱ ସ୍ତରରେ ମାନବବାଦୀ ଓ ହେତୁବାଦୀ ଜୀବନଦର୍ଶନରୁ ଆସିଛି । ଯେଉଁ ସମାଜ ବା ରାଷ୍ଟ୍ର ଏହି ମୂଲ୍ୟବୋଧର ଯେତେ ଅଧିକ ରୂପାୟନ କରିପାରିଛି ତାହା ସେତିକି ସଭ୍ୟ ଓ ସଂସ୍କୃତିସମ୍ପନ୍ନ ପ୍ରତୀୟମାନ ହୁଏ । ଯେଉଁଠି ସାମାଜିକ ଜୀବନ ପ୍ରବାହରେ ଏସବୁର ବିଶେଷ ପ୍ରତିଫଳନ ଦେଖିବାକୁ ମିଳେନାହିଁ, ସେଠାରେ ସମାଜ ଅନେକ ପଛରେ ରହିଥିବା ମନେହୁଏ । ତେବେ ବୈଚାରିକ ସ୍ତରରେ ଏହି ଦୁଇଟି ଦିବସ ନଭେମ୍ବର ୧୬ ଓ ଡିସେମ୍ବର ୧୦ ଶାନ୍ତିପୂର୍ଣ୍ଣ ବିଶ୍ୱ ଓ ମାନବିକ ମହତ୍ତ୍ୱର ପ୍ରତୀକ ଭାବେ ସାରା ପୃଥିବୀରେ ପାଳିତ ହେଉଛି ।

ଉପସଂହାରରେ ଦିବସ ପାଳନ ଏକ ଔପଚାରିକ ଆଦର୍ଶ ଭିତରେ ସୀମିତ ରହିବା ଯଥେଷ୍ଟ ନୁହେଁ ବରଂ ଏହି ଦିବସର ତାତ୍ପର୍ଯ୍ୟର ବାର୍ତ୍ତାକୁ ପ୍ରତ୍ୟେକ ଦେଶରେ ପ୍ରସାର କରିବାକୁ ଯଥେଷ୍ଟ ପ୍ରୟାସ ହେବା ଆବଶ୍ୟକ । ଏହି ମୂଲ୍ୟବୋଧ ଯଦି ସକଳ ମାନବିକ, ସାମାଜିକ ଓ ଆନ୍ତର୍ଜାତିକ ସମ୍ବନ୍ଧ ସ୍ତରରେ ବାସ୍ତବରେ ଅଧିକରୁ ଅଧିକ ପ୍ରତିଫଳିତ ହେବ, ତେବେ ପୃଥିବୀରେ ଏକ ସକାରାତ୍ମକ, ସାଂସ୍କୃତିକ ପରିବର୍ତ୍ତନର ବାତାବରଣ ସୃଷ୍ଟିହେବ । ତାହାଦ୍ୱାରା ଏକ ସୁନ୍ଦରତର ପୃଥିବୀର ରୂପାୟନ ସହ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ଉତ୍ତରଣ ଘଟିବ । (୧୫.୧୨.୧୦)



# ମାନବିକତାର ଜୟଗାନ

ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ସମ୍ମାନର ସହ ବଞ୍ଚିବା ତାର ଏକ ମୌଳିକ ଅଧିକାର । ଏହି ଭାବନା ଏକ ସଭ୍ୟ ମୂଲ୍ୟବୋଧ । ତେବେ ଏହି ମୂଲ୍ୟବୋଧ ସାମାଜିକ ବିକାଶ ପ୍ରକ୍ରିୟାରେ ସଭ୍ୟତାରେ ଖୁବ୍ ପରେ ସୃଷ୍ଟି ହୋଇଛି । ଏହା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଜାତିଗତ, ଧର୍ମଗତ ବା ରାଷ୍ଟ୍ରୀୟ ପରିଚୟ ରହିପାରେ, କିନ୍ତୁ ଏସବୁ ଜୀବନର ଆକସ୍ମିକ ଘଟଣା ମାତ୍ର । ସେହିପରି ଭାଷା, ଯୋଗ୍ୟତା, ବୃତ୍ତି ଆଧାରରେ ବ୍ୟକ୍ତିର ଏକ ଅସ୍ମିତା ବି ରହିବା ସମ୍ଭବ । ଭାଷା ଦୃଷ୍ଟିରୁ କେହି ଓଡ଼ିଆ, କେହି ତେଲୁଗୁ, କେହି ଇଂରେଜ ବା କେହି ଆଉ କିଛି ହୋଇପାରନ୍ତି । ସେହିପରି କେହି ଉଚ୍ଚଶିକ୍ଷିତ, ରାଷ୍ଟ୍ରନୀତିଜ୍ଞ, ଗବେଷକ, କଳାକାର ବା ଆଉ କିଛି ହୋଇପାରନ୍ତି । ବୃତ୍ତି ଦୃଷ୍ଟିରୁ କେହି ବ୍ୟବସାୟୀ, ଶିକ୍ଷକ, ମିସ୍ତ୍ରୀ, କୃଷକ, ସୈନିକ ବା ଆଉ କିଛି ହୋଇପାରନ୍ତି । ସାମାଜିକ ଜୀବନ ପ୍ରବାହରେ ସବୁ କାର୍ଯ୍ୟର ମହତ୍ତ୍ୱ ରହିଛି । ସାମାଜିକ ଜୀବନ ପ୍ରବାହକୁ ପ୍ରତ୍ୟେକ ବ୍ୟକ୍ତିର ପ୍ରତ୍ୟକ୍ଷ ବା ପରୋକ୍ଷ ଅବଦାନ ରହିଛି । ତେବେ ଅତୀତରେ ସମାଜରେ ନାନା ଭେଦଭାବର ପରମ୍ପରା ରହିଥିଲା । ଲିଙ୍ଗଗତ, ଜାତିଗତ, ବର୍ଣ୍ଣଗତ ବା ବୃତ୍ତିଗତ ମାନଦଣ୍ଡରେ ନାନା ବୈଷମ୍ୟ ସମାଜରେ ଶହ ଶହ ବର୍ଷ ଧରି ଦୃଢ଼ ହୋଇ ରହିଥିଲା । ଏହା ପଶ୍ଚାତରେ ନାନା ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ କାରଣମାନ ରହି ଆସୁଥିଲା, କିନ୍ତୁ ସାମାଜିକ ବିକାଶ ପ୍ରକ୍ରିୟାରେ କାଳକ୍ରମେ ଗଣତାନ୍ତ୍ରିକ ଚେତନାର ବିକାଶ ହେବା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ ଭାବନା ଚିନ୍ତା ସ୍ତରରେ କିଛି ଆଲୋଡ଼ନ ସୃଷ୍ଟିକଲା । ଗୋଟିଏ ଗୋଟିଏ ଅଧିକାର ପାଇଁ ଇତିହାସରେ ନାନା ବିପ୍ଳବ, ଯୁଦ୍ଧ ଓ ସଂଘର୍ଷମାନ ସୃଷ୍ଟି ହୋଇଛି । ରାଜତନ୍ତ୍ର ପରିବର୍ତ୍ତେ ଲୋକତନ୍ତ୍ରର ପ୍ରତିଷ୍ଠା ପାଇଁ ଇତିହାସରେ କେତେ ସଂଘର୍ଷ ଓ ବିପ୍ଳବ ହୋଇଛି । ମହିଳାମାନେ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ଭୋଟ ଦେବାର ଓ ରାଜନୈତିକ ବ୍ୟବସ୍ଥାରେ ଅଂଶଗ୍ରହଣ କରିବାର ଅଧିକାର ପାଇଁ ନାନା ସଂଗ୍ରାମ କରିଛନ୍ତି । ବିଭିନ୍ନ ସମାଜରେ ଥିବା ଲିଙ୍ଗଗତ ବିଭେଦ ଆଧାରରେ ମହିଳାମାନଙ୍କୁ ଯେପରି ନ୍ୟୂନ କରି ରଖାଯାଇଥିଲା ତାହା ବିରୁଦ୍ଧରେ ବି ନାନା ସଂଗ୍ରାମ ହୋଇଛି । ସେହିପରି ବର୍ଣ୍ଣବୈଷମ୍ୟ ଆଧାରରେ କେତେକ ରାଷ୍ଟ୍ରରେ କଳାଲୋକମାନଙ୍କୁ ଯେପରି ମାନବିକ ମର୍ଯ୍ୟାଦାରୁ ବଞ୍ଚିତ କରି ଶୋଷଣ କରାଯାଉଥିଲା ତାହା ବିରୁଦ୍ଧରେ ସେଠାରେ ଗୃହ ଯୁଦ୍ଧ ସୃଷ୍ଟି ହୋଇଛି । ଏହିପରି ଦେଖିଲେ

ସାମାଜିକ ନ୍ୟାୟ, ମାନବିକ ଅଧିକାର, ଗଣତାନ୍ତ୍ରିକ ବ୍ୟବସ୍ଥା ଇତ୍ୟାଦି ସଭ୍ୟତାର ବିକାଶ ଧାରାରେ ବହୁ ରାଜନୈତିକ ସଂଘର୍ଷ ପ୍ରକ୍ରିୟାରେ ସୃଷ୍ଟି ହୋଇଛି । କେତେକ ରାଷ୍ଟ୍ରର ଜାତୀୟ ଜୀବନରେ ହୋଇଥିବା ବିପ୍ଳବ ବିଶ୍ୱ ଦୃଶ୍ୟପଟରେ ନାନା ଗୁଣାତ୍ମକ ପରିବର୍ତ୍ତନ ପାଇଁ ଅଭିନିବେଶ ଯୋଗାଇଛି । ରାଜନୈତିକ ଗଣତନ୍ତ୍ର ପାଇଁ ଫରାସୀ ରାଷ୍ଟ୍ରବିପ୍ଳବ, ଆର୍ଥିକ ସମତା ଓ ଶୋଷଣହୀନ ସମାଜ ପାଇଁ ରୁଷ ବିପ୍ଳବ ବା ଚୀନ ବିପ୍ଳବ, ସାମ୍ରାଜ୍ୟବାଦର ବିଲୋପ ପାଇଁ ଗାନ୍ଧୀଙ୍କର ଅହିଂସା ସଂଗ୍ରାମମାନ ଇତିହାସରେ ବେଶ୍ ଉଲ୍ଲେଖନୀୟ ହୋଇରହିଛି । ଏସବୁ ଯେପରି ସଭ୍ୟତାର କ୍ରମବିକାଶରେ ଯୁଗାନ୍ତକାରୀ ଘଟଣା ସେହିପରି ଏଥିରୁ ନିସୃତ କେତେକ ଆଦର୍ଶ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ମଧ୍ୟ ଉଲ୍ଲେଖନୀୟ ।

ବିଶ୍ୱ ଇତିହାସରେ ''ମାନବିକ ଅଧିକାରର ବିଶ୍ୱ-ଘୋଷଣା''(ୟୁନିଭର୍ସାଲ ଡିକ୍ଲାରେସନ ଅଫ ହ୍ୟୁମାନ ରାଇଟସ୍) ଏକ ଯୁଗାନ୍ତକାରୀ ଘଟଣା । ଏହି ଘୋଷଣାନାମା ପଶ୍ଚାତରେ ଯାହା କିଛି ରାଜନୈତିକ, ସାଂସ୍କୃତିକ, ବୌଦ୍ଧିକ ଭିତ୍ତିଭୂମି ଥାଉ ନା କାହିଁକି ଏହା ମୁଖ୍ୟତଃ ଏକ ସଭ୍ୟ ଓ ସାର୍ବଜନୀନ ମୂଲ୍ୟବୋଧ ଭାବେ ଆଜି ବିଶ୍ୱସ୍ତରରେ ସ୍ୱୀକୃତ । ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ମହତ୍ତ୍ୱ ଓ ମର୍ଯ୍ୟାଦା ରହିଛି । କୌଣସି ବ୍ୟକ୍ତିକୁ ନ୍ୟୂନ କରିବା, ହୀନ ଦୃଷ୍ଟିରେ ଦେଖିବା ବା ତା ପ୍ରତି ଅଶୋଭନୀୟ ବ୍ୟବହାର ପ୍ରଦର୍ଶନ କରିବା ସଭ୍ୟ ମୂଲ୍ୟବୋଧର ପରିପନ୍ଥୀ । ଏହି ଆଦର୍ଶ ଆନ୍ତଃ-ରାଷ୍ଟ୍ରୀୟ ଓ ଆନ୍ତଃ-ସାଂସ୍କୃତିକ (ଇଣ୍ଟର-ନେସନାଲ ଓ ଇଣ୍ଟର-କଲଚରାଲ) । ସଭ୍ୟ ଜୀବନ ଦୃଷ୍ଟିର ବିକାଶରେ ଏହି ଘୋଷଣାନାମର ଏକ ସାର୍ବଜନୀନ ଓ ସର୍ବକାଳୀନ ମହତ୍ତ୍ୱ ଥିବା ମନେ ହୁଏ । ସଭ୍ୟତାର ବିକାଶ ଧାରାରେ ଏହି ମୂଲ୍ୟବୋଧର ଅଭ୍ୟୁଦୟ ଓ ବିଶ୍ୱଘୋଷଣା ମାତ୍ର କେତୋଟି ଦଶନ୍ଧି ହେଲେ ମଧ୍ୟ ଏହାର ଆଦର୍ଶ ଯେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ତାହା ମନେହୁଏ ।

ଅତୀତରେ ସାମାଜିକ ଦୃଶ୍ୟପଟରେ ଏହି ଭାବନାର ବହୁଳ ଅଭାବ ଦୃଷ୍ଟିଗୋଚର ହୁଏ । ସାମନ୍ତବାଦୀ ସମାଜରେ ବା ରାଜତନ୍ତ୍ର ଯୁଗରେ ବ୍ୟକ୍ତିର କୌଣସି ମହତ୍ତ୍ୱ ହିଁ ନଥିଲା । ସାମନ୍ତବାଦୀ ସମାଜ ବ୍ୟବସ୍ଥାରେ ନାନା ଭେଦଭାବ, ଶୋଷଣ ଓ ଏପରିକି ଦାସତ୍ୱ ଭାବନା ବେଶ୍ ବଳବତ୍ତର ଥିଲା । ଜାତିଭେଦ, ଲିଙ୍ଗଭେଦ, ରଙ୍ଗଭେଦର ଉଚ୍ଚ-ନୀଚ ମାନସିକତା ସୁଦୃଢ ଥିଲା । ଭେଦଭାବ ଜନିତ ବ୍ୟବସ୍ଥାକୁ ସୁଦୃଢ କରିବାକୁ କେତେକେତେ ଶାସ୍ତ୍ର ପୁରାଣ ଓ ଏପରିକି ସାମାଜିକ ତତ୍ତ୍ୱର ସୃଷ୍ଟି ହୋଇଥିଲା । 'ସବୁ ଆଙ୍ଗୁଠି ସମାନ ହେବେ ନା ସବୁ ମଣିଷ ସମାନ ହେବେ' ବୋଲି କେତେକେତେ ଯୁକ୍ତିର ଆଶ୍ରୟ ନିଆଯାଉଥିଲା । ସେହିପରି ରାଜତନ୍ତ୍ର ଯୁଗରେ ଆଇନର ଶାସନ ଭାବନା ନ ଥିଲା । ରାଜାଙ୍କ ମତ ହିଁ ଅଲଘନୀୟ ଥିଲା । କାଳେ ତାଙ୍କ ମତ ପ୍ରତି କେହି ଆଙ୍ଗୁଳି ନିର୍ଦ୍ଦେଶ କରିବେ, ସେଥିପାଇଁ ରାଜାଙ୍କୁ ଈଶ୍ୱରଙ୍କ ପ୍ରତିନିଧି ମନେ କରାଯାଉଥିଲା । ରାଜାଙ୍କୁ ବିରୋଧ କରିବା ଅର୍ଥ ଈଶ୍ୱରଙ୍କ

ନିର୍ଦ୍ଦେଶକୁ ଅମାନ୍ୟ କରିବା ବୋଲି ବିଚାର ରହିଥିଲା । ତେବେ ଏହି ସବୁ ଭାବନା ବିରୁଦ୍ଧରେ କାଳକ୍ରମେ ନୂତନ ବିଚାର ଓ ଚେତନାର ଅଭ୍ୟୁଦୟ ହେଲା । ଆଇନର ଶାସନ ଦ୍ୱାରା ରାଜନୈତିକ ବ୍ୟବସ୍ଥା ଏକ ଗଣତାନ୍ତ୍ରିକ ଭିତ୍ତି ନେବାର ପରିବେଶ କାଳକ୍ରମେ ସୃଷ୍ଟି ହେଲା । ସେହି ବିକାଶଧାରାରେ ପ୍ରତ୍ୟେକ ବ୍ୟକ୍ତିର କେତେକ ସୁଯୋଗକୁ ତାହାର ମୌଳିକ ଅଧିକାର ବୋଲି ଗ୍ରହଣ କରାଗଲା । ବଞ୍ଚିବାର ଅଧିକାର, କେତେକ ସ୍ୱାଧୀନତା ଉପଭୋଗ କରିବାର ଅଧିକାର ଓ ଶାନ୍ତିପୂର୍ଣ୍ଣ ଜୀବନ ଧାରଣର ଅଧିକାର ବ୍ୟକ୍ତିର ମୌଳିକ ଓ ପ୍ରାକୃତିକ ଅଧିକାର ବୋଲି କାଳକ୍ରମେ ସଭ୍ୟତାର ବିକାଶରେ ଗୃହୀତ ହେବାକୁ ଲାଗିଲା ।

ତେବେ ବ୍ୟକ୍ତିର ଅଧିକାରକୁ ସ୍ୱୀକୃତି ଦେବାର ପ୍ରଶ୍ନ ସହ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପରିବେଶର ସମ୍ବନ୍ଧ ଥିବା ମନେହୁଏ । ଏକ ରାଜନୈତିକ ସ୍ଥିରତା ଅଭାବରେ ଏହି ସବୁ ଅଧିକାରର ଉଲ୍ଲଂଘନ ସାଧାରଣ ଘଟଣା ହୋଇପଡ଼େ । ରାଜତନ୍ତ୍ର ଯୁଗରେ ରାଜ୍ୟ ରାଜ୍ୟ ମଧ୍ୟରେ ଯେଉଁ ଯୁଦ୍ଧର ପରିବେଶ ରହୁଥିଲା, ତାହା ଦ୍ୱାରା ନାଗରିକ ଜୀବନ ସର୍ବଦା ବାଧାପ୍ରାପ୍ତ ହେଉଥିଲା । ରାଜନୈତିକ ଶୋଷଣ, ଅତ୍ୟାଚାର ଓ ଏପରିକି ଗଣସଂହାରର ବୀଭତ୍ସ କାହାଣୀ ଇତିହାସରେ ଦେଖିବାକୁ ମିଳେ । ଏହା ସହିତ ସାମ୍ପ୍ରତିକ ଦୃଶ୍ୟପଟରେ ଗଣଶିକ୍ଷାର ପ୍ରସାର ଦ୍ୱାରା ବ୍ୟକ୍ତିର ମର୍ଯ୍ୟାଦା ଓ ଅଧିକାର ନେଇ ସାମାଜିକ ଚେତନାର ସ୍ତର ବେଶ୍ ବୃଦ୍ଧି ପାଇଥିବା ମନେହୁଏ । କିନ୍ତୁ ପ୍ରାୟ କିଛି ଶତାବ୍ଦୀ ତଳେ ଗଣଶିକ୍ଷାର କୌଣସି ଭାବନା ଆସି ନଥିଲା । ଏପରିକି ସମାଜବାଦୀ ସମାଜମାନଙ୍କରେ ଶିକ୍ଷା କେବଳ ମୁଷ୍ଟିମେୟ ବ୍ୟକ୍ତିଙ୍କର ସୁଯୋଗ ହୋଇ ରହିଥିଲା ଓ ସମାଜର ନିଷ୍ପେସିତ, ଦଳିତବର୍ଗର ପାଠ ପଢ଼ିବାର ସୁଯୋଗ ଓ ଏପରିକି ଅଧିକାର ବି ନଥିଲା । ଏସବୁ ସହ ସର୍ବନିମ୍ନ ଆର୍ଥିକ ସୁଯୋଗ ନ ଥିଲେ ବ୍ୟକ୍ତି ଅଧିକାରର କୌଣସି ଅର୍ଥ ହିଁ ରହିବ ନାହିଁ । ଯେଉଁ ଯେଉଁ ସମାଜରେ ସାମାଜିକ ଦାସତ୍ୱର ପରମ୍ପରା ରହିଥିଲା ସେହିସବୁ ସମାଜରେ ଶୋଷିତ ଲୋକମାନଙ୍କୁ ସର୍ବଦା ସର୍ବନିମ୍ନ ଆର୍ଥିକ ସୁଯୋଗରୁ ବଞ୍ଚିତ କରାଯାଉଥିଲା । ବ୍ୟକ୍ତିର ସର୍ବନିମ୍ନ ଆର୍ଥିକ ସ୍ୱଚ୍ଛଳତା ନଥିଲେ ଓ ତା ପାଇଁ ଅନ୍ନ ଚିନ୍ତା ଚମତ୍କାର ଥିଲେ ସେ ନିଜର ଅଧିକାରକୁ ଏକ ସ୍ୱାଭିମାନର ପ୍ରଶ୍ନ ଭାବେ ନେବା ସହଜ ହେବନାହିଁ । ସୁତରାଂ ସାମାଜିକ ବିକାଶଧାରାରେ ମାନବିକ ଅଧିକାରକୁ ଏକ ସ୍ୱୀକୃତ ଆଦର୍ଶ ଭାବେ ଗ୍ରହଣ କରିବା ପାଇଁ ରାଜନୈତିକ, ଶୈକ୍ଷିକ ଓ ଆର୍ଥିକ ଅନୁକୂଳ ପରିବେଶ ଅବଶ୍ୟମ୍ଭାବୀ ମନେହୁଏ । ତେବେ ଏସବୁ ସହିତ ସମାଜର ସାଂସ୍କୃତିକ ଦୃଶ୍ୟପଟ ମାନବିକ ଅଧିକାରର ବିକାଶ କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯେଉଁ ସାମାଜିକ ଦୃଶ୍ୟପଟରେ ଜାତିପ୍ରଥା ବା ଅସ୍ପୃଶ୍ୟତା ପରି ବ୍ୟବସ୍ଥାର ଏକ ସାଂସ୍କୃତିକ ଇତିହାସ ରହିଛି, ସେସବୁ ସମାଜରେ ପ୍ରତିକ୍ଷେତ୍ରରେ ମାନବିକ ଅଧିକାରର ଉଲ୍ଲଂଘନ ଏକ ସାଧାରଣ ଘଟଣା ହୋଇଥାଏ । ଯେତେ ସାମ୍ବିଧାନିକ ବା ଆଇନଗତ

ବ୍ୟବସ୍ଥା ଦ୍ୱାରା ଜାତି-ବିଭାଜନ ଜନିତ ବୈଷମ୍ୟକୁ ଦୂର କରିବା ରାଷ୍ଟ୍ରର ଲକ୍ଷ୍ୟ ହୋଇଥିଲେ ବି ଯଦି ଲୋକଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ପାଇଁ ପ୍ରୟାସ ନ ହୁଏ, ତେବେ ସାମାଜିକ ଭେଦଭାବ ଦୂର ହେବା ସମ୍ଭବ ହୁଏନାହିଁ । ସମାଜରେ ରାଜନୈତିକ ବା ଅର୍ଥନୈତିକ ପରିବର୍ତ୍ତନ ଯେତେ ସହଜସାଧ ମନେହୁଏ ସେ ତୁଳନାରେ ସାଂସ୍କୃତିକ ଓ ସାମାଜିକ ପରିବର୍ତ୍ତନ ଏତେ ସହଜସାଧ ମନେ ହୁଏ ନାହିଁ । ଏକ ଭେଦଭାବ ମୂଳକ ବ୍ୟବସ୍ଥାର ପ୍ରଚଳନ ଶତାବ୍ଦୀ ଶତାବ୍ଦୀ ଧରି ଜନଚେତନାକୁ ପ୍ରଭାବିତ କରି ରଖିବାଦ୍ୱାରା ତାହାର ସଂସ୍କାର ଓ ମୂଳୋତ୍ପାଟନ ଜଟିଳ ମନେହୁଏ । କାରଣ ଏହି ବ୍ୟବସ୍ଥା ଯେତେ ଯୁକ୍ତି ବିରୋଧୀ ଓ ମାନବିକତା ବିରୋଧୀ ହୋଇଥିଲେ ମଧ ତାହା ସମାଜର ବିଭିନ୍ନ କ୍ଷେତ୍ର ସହିତ ସଂଶ୍ଳିଷ୍ଟ ହୋଇ ରହିଥାଏ । ଶୋଷିତ ଗୋଷ୍ଠୀର ଆର୍ଥିକ ସ୍ଥିତିରେ ଉନ୍ନତି, ଆଇନର ମାନବିକ ରୂପ ନେଇ ସାମାଜିକ ସଚେତନତା ବୃଦ୍ଧି ପାଇଁ ପ୍ରୟାସ, ସମାଜର ସାଧାରଣ ଲୋକଙ୍କର ମାନସିକତା ପରିବର୍ତ୍ତନ ଓ ଗୁଣାତ୍ମକ ଶିକ୍ଷାର ପ୍ରସାର ଦ୍ୱାରା ଏକ ଅର୍ଥନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ହେବା ସମ୍ଭବ ହୋଇଥାଏ ।

ଅନ୍ୟର ଅଧିକାରକୁ ସ୍ୱୀକୃତି ଦେବାର ଦୃଷ୍ଟିଭଙ୍ଗୀ ହେଉଛି ଏକ ସଭ୍ୟ ଜୀବନ ଦୃଷ୍ଟି । ମାନବ ସଭ୍ୟତାର ଇତିହାସରେ ହିଂସା, ଯୁଦ୍ଧ, ବିଭୀଷିକା, ଅନ୍ୟାୟ, ଶୋଷଣ ଓ ଭେଦଭାବ ସବୁବେଳେ ରହି ଆସିବାର କାହାଣୀ ସୁବିଦିତ । ମାନବିକତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ଜନିତ ମୂଲ୍ୟବୋଧ ଏ ସବୁକୁ ଦୂରକରି ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ସମ୍ମାନକୁ ଗୁରୁତ୍ୱ ପ୍ରଦାନ କରିଥାଏ । ଏହା ଯେଉଁ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ ସେହି ସମାଜରେ ଜୀବନର ଗୁଣାତ୍ମକମାନ ସେତେ ଉନ୍ନତ, ଅଥଚ ଏହାର ଅଭିବ୍ୟକ୍ତି ଯେତେ କମ୍ ସାମାଜିକ ପରିବେଶ ସେତେ ଅନୁନ୍ନତ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ, ଗଣତାନ୍ତ୍ରିକ ଚେତନାର ଅଭିବୃଦ୍ଧି, ଗଣଶିକ୍ଷାର ପରିବେଶ, ସାମାଜିକ ନ୍ୟାୟ ଜନିତ ସଚେତନତା ବୃଦ୍ଧି ଇତ୍ୟାଦିର ସମ୍ମିଳିତ ପ୍ରଭାବରୁ ମାନବିକ ମହତ୍ତ୍ୱର ଦୃଷ୍ଟିଭଙ୍ଗୀ ସୃଷ୍ଟି ହୋଇପାରିଛି । ବିଶ୍ୱସ୍ତରରେ ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱକୁ ସ୍ୱୀକୃତି ଦେବା ହେଉଛି ମାନବିକତାର ଜୟଗାନ । (୨୨.୧୨.୧୦)



# ମାନବବାଦୀ ଜୀବନଦୃଷ୍ଟି (୧)

ମାନବବାଦ ଏକ ଜୀବନ ଦର୍ଶନ । ଦୃଷ୍ଟିଭଙ୍ଗୀ ଅନୁଯାୟୀ ବିଭିନ୍ନ ଜୀବନ ଦର୍ଶନ ରହିବା ସମ୍ଭବ । ବିଭିନ୍ନ ଜୀବନ ଦର୍ଶନ ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିପାରେ । ଏହା ସହିତ ଏକ ଜୀବନ ଦର୍ଶନ ଭିତରେ ମାନବବାଦୀ ଦୃଷ୍ଟିଭଙ୍ଗୀର କିଛି ଝଲକ ନିହିତ ରହିପାରେ । ମାନବବାଦୀ ଦୃଷ୍ଟିଭଙ୍ଗୀର ବିଭିନ୍ନ ଦିଗନ୍ତର ପରିକଳ୍ପନା ବୈଚାରିକ ସ୍ତରରେ ବି କରାଯାଇପାରେ । ବିଭିନ୍ନ ଜୀବନ ଦର୍ଶନ ଭିତରେ ମାନବବାଦୀ ଦୃଷ୍ଟିଭଙ୍ଗୀର ଉପାଦାନ ନିହିତ ଥିଲେ ମଧ୍ୟ ମାନବବାଦକୁ ଏକ ସ୍ୱତନ୍ତ୍ର ଦର୍ଶନ ଭାବରେ ବିଚାର କରାଯାଇପାରେ । ମାନବବାଦୀ ଜୀବନ ଦର୍ଶନର କେତେକ ସାଧାରଣ ତାତ୍ପର୍ଯ୍ୟକୁ ସୂଚାଇବା ଏଠାରେ ଆମର ଲକ୍ଷ୍ୟ ।

ମାନବବାଦର ଏକ ପ୍ରମୁଖ ବିଚାର ହେଉଛି- 'ମଣିଷ ହିଁ ସବୁର ମାନଦଣ୍ଡ' । ସକଳ ଜ୍ଞାନବିଜ୍ଞାନ ମଣିଷର ମସ୍ତିଷ୍କ ଚାଳନାରୁ ହିଁ ସମ୍ଭବ ହୋଇଛି । ସଭ୍ୟତାର ସକଳ ବିକାଶ ମଣିଷର ପ୍ରୟାସ ଯୋଗୁ ସୋପାନ ସୋପାନ ଦେଇ ଉଦ୍ଭବ ହୋଇଛି । ଜ୍ଞାନ, ବିଜ୍ଞାନ, ଉନ୍ନତ ସାମାଜିକ ବ୍ୟବସ୍ଥା, ରାଜନୈତିକ ଆଦର୍ଶ, ନୈତିକ ମୂଲ୍ୟବୋଧ, ନାଗରିକ ଶୃଙ୍ଖଳାଜ୍ଞାନ ସବୁ କିଛି ମଣିଷର ଉଦ୍ୟମରୁ ଧୀରେ ଧୀରେ କ୍ରମବିକଶିତ ହୋଇଛି । ଆଜି ବିଜ୍ଞାନର ପ୍ରତ୍ୟେକ ସୋପାନରେ ଜ୍ଞାନର ଯେଉଁ ବିସ୍ଫୋରଣ ହୋଇଛି, ତାହା ପଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ସେହିପରି ଚିକିତ୍ସା ବିଜ୍ଞାନ ହେଉ ବା ଗମନାଗମନର ଉନ୍ନତି ବିଧାନ ହେଉ ପ୍ରତ୍ୟେକର ଏକ ବିସ୍ତୃତ ଇତିହାସ ରହିଛି । ସେହିପରି ସାମାଜିକ ଆଦର୍ଶଗୁଡ଼ିକ ମଧ୍ୟ ବିକଶିତ ହୋଇଛି । ଏସବୁ ନାନା ଅନୁସନ୍ଧିତ୍ସା, ଚିନ୍ତନ ଓ ମାନବିକ ଉଦ୍ୟମରୁ ସମ୍ଭବ ହୋଇଛି । ସକଳ ଆଦର୍ଶ, ମୂଲ୍ୟବୋଧ, ଉନ୍ନତ ଜୀବନଶୈଳୀ ସାମାଜିକ ବିକାଶଧାରାରେ କ୍ରମବର୍ଦ୍ଧିଷ୍ଣୁ ଭାବେ ଅଗ୍ରଗତି କରିଛି । ନାନା ପରିବର୍ତ୍ତନ ଓ କ୍ରମୋନ୍ନତି ଦେଇ ବିଭିନ୍ନ ଭୂଖଣ୍ଡରେ ସଭ୍ୟତାର ବିକାଶ ହୋଇଛି । କାଳକ୍ରମେ ସାମାଜିକ ଓ ରାଜନୈତିକ ଘଟଣାପ୍ରବାହ ଦେଇ କେତେକ ଭୂଖଣ୍ଡମାନ ଏକ ଏକ ରାଷ୍ଟ୍ର ସୃଷ୍ଟି କରିଛନ୍ତି । ରାଷ୍ଟ୍ରୀୟ ଭାବନାର ବିକାଶ ଦ୍ୱାରା ପୃଥିବୀ ନାନା ରାଷ୍ଟ୍ରରେ ବିଭକ୍ତ ହୋଇଯାଇଛି । ପ୍ରତ୍ୟେକ ରାଷ୍ଟ୍ରର ନିର୍ଦ୍ଦିଷ୍ଟ ସୀମା, ସାର୍ବଭୌମତ୍ୱ ଓ ସରକାର ନେଇ ଜନଗଣ ନିଜର ଏକ ଅସ୍ମିତା ସୃଷ୍ଟି କରିଛନ୍ତି । ଏସବୁ ବି ମଣିଷର ପ୍ରୟାସ ଓ ବିଚାର ମଧ୍ୟ

ଦେଇ ଉଦ୍ଭବ ହୋଇଛି । ପୁନଶ୍ଚ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସହଯୋଗ, ଆଦାନ ପ୍ରଦାନ, ପାରସ୍ପରିକତା, ବ୍ୟବସାୟ ବାଣିଜ୍ୟ ଇତ୍ୟାଦି ମଧ୍ୟ ଦେଇ ରାଷ୍ଟ୍ରସଂଘର ସୃଷ୍ଟି ହୋଇଛି । ଆଧୁନିକ ଜ୍ଞାନକୌଶଳ ଓ ବିଜ୍ଞାନର ବିକାଶ ଦ୍ୱାରା ନାନା ଆନ୍ତର୍ଜାତିକ ଓ ଆନ୍ତଃରାଷ୍ଟ୍ରୀୟ ସଂଗଠନମାନ ଉଦ୍ଭବ ହୋଇଛି । ଏସବୁ ମଣିଷର ପ୍ରୟାସ ଯୋଗୁ ସମ୍ଭବ ହୋଇଛି ।

ବିଭିନ୍ନ ସଭ୍ୟତା, ଜନଗୋଷ୍ଠୀ ବା ରାଷ୍ଟ୍ରମାନଙ୍କରେ ବିକାଶ ବା ସମୃଦ୍ଧି ସମାନ୍ତରାଳ ଭାବେ ନ ହୋଇଥିବା ଅନୁଭୂତିରୁ ସ୍ପଷ୍ଟ ମନେହୁଏ । କେତେକ ରାଷ୍ଟ୍ର ଯଥେଷ୍ଟ ବିକଶିତ ହୋଇ ନାଗରିକମାନଙ୍କର ଜୀବନର ମାନକୁ ଉନ୍ନତ କରିପାରିବାକୁ ସମର୍ଥ ହୋଇଛନ୍ତି । ଅନ୍ୟ କେତେକ ରାଷ୍ଟ୍ରରେ ପ୍ରଚୁର ଦାରିଦ୍ର୍ୟ ଯୋଗୁ ଲୋକଙ୍କର ଜୀବନଧାରଣର ମାନ ଯଥେଷ୍ଟ ନ୍ୟୂନ ହୋଇରହିଛି । ଯେଉଁମାନେ ଉନ୍ନତ ଜୀବନଶୈଳୀର ଅଧିକାରୀ ହୋଇଛନ୍ତି ସେମାନଙ୍କୁ କୌଣସି ଦୈବୀ ଆଶୀର୍ବାଦ ମିଳିନାହିଁ ବା ଯେଉଁ ଲୋକମାନେ ଅତ୍ୟନ୍ତ ଅନୁନ୍ନତ କିମ୍ବା ନିରକ୍ଷର ରହି ଜୀବନ ବଞ୍ଚୁଛନ୍ତି, ସେମାନଙ୍କୁ କୌଣସି ଦୈବୀ ଅଭିଶାପ ମିଳିନାହିଁ । ଆର୍ଥାତ୍ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଥିବା ପାର୍ଥକ୍ୟ ବା ଗୋଟିଏ ରାଷ୍ଟ୍ରର ଜନଗଣଙ୍କ ମଧ୍ୟରେ ଥିବା ବିଭେଦ ପଶ୍ଚାତ୍‌ରେ କୌଣସି ଅତୀନ୍ଦ୍ରିୟ ଶକ୍ତି ବା ଈଶ୍ୱରୀୟ କାରଣ ନାହିଁ । ଏସବୁ ହିଁ ମଣିଷଜନିତ ବ୍ୟବସ୍ଥା ଓ ସାମାଜିକ ପ୍ରକ୍ରିୟାର ପରିଣତିରୁ ସମ୍ଭବ ହୋଇଛି । ମଣିଷ ଭିତରେ ରହିଥିବା ସୃଜନଶୀଳତା ତଥା ସାମାଜିକ ପରିବେଶ ହିଁ ବହୁ ସମୟରେ ସମାଜ ବିକାଶ କ୍ଷେତ୍ରରେ ନିର୍ଣ୍ଣାୟକ ମନେହୋଇଛି । ମଣିଷ ଭିତରର ସୃଜନଶୀଳତା, ସାମାଜିକ ପରିସ୍ଥିତି, ରାଜନୈତିକ ପରିବେଶ ଓ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀର ସମ୍ମିଳିତ ପ୍ରଭାବରୁ ମଣିଷର ଗୋଷ୍ଠୀ ଜୀବନ ଉନ୍ନତ ବା ଅନୁନ୍ନତ ହୋଇ ରହିଛି । ଏକ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଯେଉଁଠି ମଣିଷ ଅନୁସନ୍ଧିତ୍ସୁ ହୋଇଛି, ପ୍ରକୃତି ଓ ପରିବେଶକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କରିଛି, ଜୀବନକୁ ଅଧିକ ନିରାପଦ କରିବାକୁ ଉପାୟ ଚିନ୍ତା କରିଛି, ସାମାଜିକ ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାକୁ ପ୍ରଯତ୍ନ କରିଛି, ସବୁ ମଣିଷଙ୍କର ଆବଶ୍ୟକତା ପୂରଣ ପାଇଁ ଉପଯୁକ୍ତ ସାମାଜିକ ଅନୁଷ୍ଠାନ ସୃଷ୍ଟି କରିବାରେ ଯତ୍ନଶୀଳ ହୋଇଛି ସେଠି ଜୀବନର ଗୁଣାତ୍ମକ ବିକାଶ ତ୍ୱରାନ୍ୱିତ ହୋଇଛି । ମଣିଷକୁ ମୂଲ୍ୟ ଦେଉଥିବା ଓ ମଣିଷର ଜୀବନକୁ ଗୁରୁତ୍ୱପୂର୍ଣ୍ଣ ମନେକରୁଥିବା ମାନବବାଦୀ ଜୀବନ ଦୃଷ୍ଟି ଦ୍ୱାରା ବଞ୍ଚିବାର ଭୌତିକ ଓ ନୈତିକ ମାନ ଉନ୍ନତ ହୋଇପାରିଛି । ଅଥଚ ଯେଉଁ ଜୀବନଦୃଷ୍ଟି ମଣିଷର ଜୀବନକୁ ଗୁରୁତ୍ୱ ଦେଇନାହିଁ, କେତେ କେତେ ଅତୀନ୍ଦ୍ରିୟ ସ୍ୱପ୍ନ ଭିତରେ କଳ୍ପିତ ଅତିପ୍ରାକୃତିକ ଶକ୍ତି ପାଖରେ ଶରଣ ପଶିଛି, ସମାଜ ପ୍ରତି ସ୍ପର୍ଶକାତର ଶୂନ୍ୟ ଦୃଷ୍ଟିଭଙ୍ଗୀ ଆଣିଛି, ସେଠାରେ ସଭ୍ୟତାର ଅଗ୍ରଗତି ଶିଥିଳ ହୋଇଛି ଓ ଜୀବନର ଗୁଣାତ୍ମକ ମାନ ଅନୁନ୍ନତ ହୋଇ ରହିଛି ।

ମାନବବାଦ ଇହଲୋକକୁ ଗୁରୁତ୍ୱ ଦିଏ । ପାରଲୌକିକ ବିଶ୍ୱାସଜନିତ ମୁକ୍ତି ବା ମୋକ୍ଷର କାଳ୍ପନିକ ତତ୍ତ୍ୱ ବଖାଣ କରେ ନାହିଁ । ଏକ ମାନବକୈନ୍ଦ୍ରିକ ଜୀବନଦର୍ଶନ ସଂସାରକୁ ଉନ୍ନତ ଓ ପ୍ରୀତିପୂର୍ଣ୍ଣ କରିବାର ସ୍ୱପ୍ନ ପୋଷଣ କରେ । ସାରା ବିଶ୍ୱରେ ସୁଖ, ଶାନ୍ତି ଓ ଭ୍ରାତୃତ୍ୱର ପରିବେଶ କଳ୍ପନା କରେ । ସଂସାରରେ ଯାହା କିଛି ମନ୍ଦ ବା ଅଶୁଭ ରହିଛି ତାକୁ ବୁଝିବାକୁ ପ୍ରୟାସ କରେ ଓ ସକଳ ମନ୍ଦ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ବିଚାରଶୀଳ ଭାବେ ପନ୍ଥାର ସନ୍ଧାନ କରେ । ପ୍ରାକୃତିକ ବିପର୍ଯ୍ୟୟ, ରୋଗ ବାଧକ ବା କୌଣସି ଅଘଟଣକୁ ସେ କେଉଁ ଦେବତାର ଅଭିଶାପ, ଭାଗ୍ୟଫଳ ବା ନିୟତିର ନିର୍ଦ୍ଦେଶ ବୋଲି ନିଏନାହିଁ । ଜୀବନର ଯେକୌଣସି ସମସ୍ୟା ଓ ସଂକଟର ସମାଧାନ ପାଇଁ ସେ ଗମ୍ଭୀର ଭାବେ ବିଚାର ବିମର୍ଶ କରି ପନ୍ଥା ବାହାର କରିବାକୁ ଉଦ୍ୟମ କରିଥାଏ । ଏହାଦ୍ୱାରା ତ ସଭ୍ୟତାର ଅଗ୍ରଗତି ହୋଇଛି ଓ ଏକ ଆଦିମ ଅବସ୍ଥାରୁ ଆଜିର ଅତ୍ୟାଧୁନିକ ପରିବେଶ ଆସିପାରିଛି । ବିଚାରଶୀଳ ଭାବେ ଜୀବନର ଆହ୍ୱାନକୁ ମୁକାବିଲା କରିବା ଓ ସେଥିପାଇଁ ନିଷ୍ଠାପର ଭାବେ ପ୍ରୟାସୀ ହେବା ମାନବବାଦୀ ଜୀବନଦର୍ଶନର ଆଭିମୁଖ୍ୟ । ଆଧୁନିକ ବିଜ୍ଞାନର ଅଗ୍ରଗତି ପୂର୍ବରୁ ସାରା ପୃଥିବୀରେ ଏହି ମାନସିକତା ରହିଥିଲା ଯେ, ଜୀବନର ସକଳ ଘଟଣାପ୍ରବାହ ଓ ପ୍ରାକୃତିକ ପରିବେଶ କୌଣସି କିଛି ଅତୀନ୍ଦ୍ରିୟ ଶକ୍ତିଦ୍ୱାରା ନିୟନ୍ତ୍ରିତ ହେଉଛି । ପ୍ରାକୃତିକ ଦୁର୍ବିପାକ ପଶ୍ଚାତ୍‌ରେ ମନ୍ଦ ଶକ୍ତିର ପ୍ରଭାବ ରହିଛି । ରୋଗ ବାଧକ ଦେବତାର କୋପରୁ ସୃଷ୍ଟି ହେଉଛି ।

ସେହି ଅତୀନ୍ଦ୍ରିୟ ଶକ୍ତି, ଅତି ପ୍ରାକୃତିକ ସତ୍ତାକୁ ସନ୍ତୁଷ୍ଟ କରିବାକୁ କେତେ ପୂଜା, ପ୍ରାର୍ଥନା, ପଶୁବଳି, ନରବଳି ଇତ୍ୟାଦିର ପରମ୍ପରା ସୃଷ୍ଟି ହୋଇଥିଲା । ବିଭିନ୍ନ ଜନଗୋଷ୍ଠୀ ଭିତରେ ନାନା ଧାର୍ମିକ ଆବେଗଜନିତ ପୂଜା, କର୍ମକର୍ମାଣିର ପରମ୍ପରାମାନ ଗଢ଼ିଉଠିଥିଲା । ଏହା ସହିତ ଭାଗ୍ୟ, କର୍ମଫଳ, ଦିଅଁଦେବତା ପାଖରେ ଶରଣ ଇତ୍ୟାଦି କେତେକେତେ ବିଧାନମାନ ମଣିଷର ମାନସିକତାକୁ ଆଚ୍ଛନ୍ନ କରି ରଖିଥିଲା । କିନ୍ତୁ କାଳକ୍ରମେ ମୁଷ୍ଟିମେୟ ବ୍ୟକ୍ତିଙ୍କର ଅନୁସନ୍ଧିତ୍ସା ଓ ବୌଦ୍ଧିକ ଜିଜ୍ଞାସା ମଧ୍ୟ ଦେଇ ନାନା ରୋଗର କାରଣ ଜଣାପଡ଼ିବାରୁ ମହାମାରୀ ରୋଗମାନଙ୍କୁ ନିୟନ୍ତ୍ରଣ କରାଯାଇପାରିଲା । ଯେଉଁଠି ଆଗେ ବାତ୍ୟା, ବନ୍ୟାଜନିତ କୌଣସି ପ୍ରାକୃତିକ ଦୁର୍ବିପାକ ହେଉଥିଲା, ସେଠିକାର ଜନଗଣ ଅସହାୟଭାବେ ମୃତ୍ୟୁ ମୁଖରେ ପଡୁଥିଲେ । ତେବେ ଆଧୁନିକ ଗମନାଗମନ ଓ ଯାତାୟତ ଯୋଗୁ ଆଜି ସେ ପ୍ରକାର ସ୍ଥିତିରେ ଅନେକ ପରିବର୍ତ୍ତନ ଆସିପାରିଛି । ଯେଉଁଠି କିଛି ପ୍ରାକୃତିକ ଦୁର୍ବିପାକ ସୃଷ୍ଟି ହେଉଛି, ତାହାର ପୂର୍ବ ସୂଚନା ପାଇ ମଣିଷ ସତର୍କ ହେଉଛି ଓ ଏପରିକି ସାରା ପୃଥିବୀରୁ ସହାନୁଭୂତିର ହାତ ସେଠାକୁ ପ୍ରସାରିତ ହୋଇପାରୁଛି । ଗୋଟିଏ ପଟେ ଆଧୁନିକ ଜ୍ଞାନର ବିକାଶ ଓ ଅପରପକ୍ଷରେ ବିଶ୍ୱ

ଭ୍ରାତୃତ୍ୱର ଭାବନା ଆମ ସଂସାରରୁ କେତେକ ଦୁଃଖ, ଦୁର୍ଦ୍ଦଶା ହ୍ରାସ କରିବାରେ ସମର୍ଥ ହୋଇଛି । ଏସବୁ ହିଁ ମାନବବାଦୀ ଜୀବନ ଦର୍ଶନର ଅନ୍ତର୍ନିହିତ ତାତ୍ପର୍ଯ୍ୟ ।

ଏ ସତ୍ତ୍ୱେ ଆଜି ବି ଆମ ସଂସାରରେ ବହୁ ଦୁଃଖ ଦୁର୍ଦ୍ଦଶା ରହିଛି; ତେବେ ପ୍ରାକୃତିକ ଦୁର୍ବିପାକଜନିତ ଦୁଃଖ ଅପେକ୍ଷା ମାନବକୃତ ପରିସ୍ଥିତିରୁ ମଣିଷର ଯନ୍ତ୍ରଣା ବୃଦ୍ଧି ପାଇବାରେ ଲାଗିଛି । ନାନା କାରଣ ନେଇ ମଣିଷ ମଣିଷ ଭିତରେ କେତେ ପ୍ରାଚୀର ଛିଡ଼ା ହୋଇଛି । ସଂସାରରେ ନାନା ଭେଦଭାବ ରହିଛି । ମଣିଷକୁ ମଣିଷ ଶୋଷଣ କରୁଛି ଓ ଅନ୍ୟର ଦୁଃଖ ଯନ୍ତ୍ରଣାର କାରଣ ହେଉଛି । ହିଂସା, ପ୍ରତିହିଂସା, ସନ୍ତ୍ରାସବାଦ, ଶୋଷଣ, ଅତ୍ୟାଚାରର ପରିବେଶ ସବୁ ଯୁଗରେ ମଣିଷ ସମାଜରେ ରହିଛି । ତେବେ ଆଜି ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ଓ ଉନ୍ନତ ପ୍ରଯୁକ୍ତି ଯୋଗୁ ଏହା ଭୟଙ୍କର ପରିସ୍ଥିତି ସୃଷ୍ଟିକରୁଛି । ଏହି ପୃଷ୍ଠଭୂମିରେ ମାନବବାଦ ଏକ ମହତ୍ତର ଜୀବନ ଦର୍ଶନର ବାର୍ତ୍ତା ବହନକରେ । ମାନବବାଦ ଜାତି, ବର୍ଣ୍ଣ, ଲିଙ୍ଗ, ଜାତୀୟତା ନିର୍ବିଶେଷରେ ମଣିଷର ଜୟଗାନ କରିଥାଏ । ଏହା ସମ୍ବେଦନଶୀଳ ଜୀବନ ଦୃଷ୍ଟିକୁ ସର୍ବାଧିକ ଗୁରୁତ୍ୱ ଦିଏ । ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀକୁ ସାର୍ବଜନୀନ ଭାବେ ସାରା ପୃଥିବୀରେ ପ୍ରସାର କରିପାରିଲେ ସମ୍ଭବତଃ ସଂସାରରୁ ହିଂସାତ୍ମକ ବାତାବରଣର ପରିବର୍ତ୍ତନ ହୋଇପାରିବ । ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱକୁ ସ୍ୱୀକାର କଲେ ସଂସାରରୁ ମନୁଷ୍ୟକୃତ ଉତ୍ପୀଡନ ବନ୍ଦ ହୋଇପାରିବ । ମାନବ ଦରଦୀ ହେତୁବାଦୀ ଦାର୍ଶନିକମାନେ ସବୁ ସଭ୍ୟତାରେ ଏକ ହିଂସାରହିତ ବିଶ୍ୱର ପରିକଳ୍ପନା କରିଛନ୍ତି । ସେହିମାନଙ୍କ ବିଚାରଧାରାରେ ଥିବା ମାନବିକ ସଂପ୍ରୀତିକୁ ସାରା ବିଶ୍ୱରେ ପ୍ରସାର କରିବା ଓ ମଣିଷର ବୁଦ୍ଧିକୁ ସକାରାତ୍ମକ ଦିଗରେ ନିୟୋଜିତ କରିବା ଦ୍ୱାରା ଏକ ସୁନ୍ଦର ପୃଥିବୀର ରୂପରେଖ ସମ୍ଭବ ହୋଇପାରିବ । (ପ୍ରଥମ ଭାଗ) । (୨୯.୧୨.୧୦)



# ମାନବବାଦୀ ଜୀବନଦୃଷ୍ଟି (୨)

ମାନବବାଦୀ ଜୀବନ ଦୃଷ୍ଟିରେ ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ସମାଜ ଦୀର୍ଘସ୍ଥାୟୀ । ମାନବ ଜାତିର କ୍ରମୋନ୍ନତି ଧାରାରେ ଆମେ ଆଜି ଯେଉଁ ପରିସ୍ଥିତିରେ ରହିଛେ ଓ ଯେଉଁ ସୁବିଧା ସୁଯୋଗର ଅଧିକାରୀ ହୋଇଛେ ତାହା ପଶ୍ଚାତ୍‌ରେ ରହିଛି ଆମ ପୂର୍ବସୁରୀ ବା ପୂର୍ବ ପୁରୁଷଙ୍କର ଅବଦାନ । ଜ୍ଞାନ, ବିଜ୍ଞାନ, ଦର୍ଶନ, ସାହିତ୍ୟ, କଳା, ସଂସ୍କୃତି, ସାମାଜିକ ସ୍ଥିରତା, ନୀତି, ମୂଲ୍ୟବୋଧ ଇତ୍ୟାଦି ହଜାର ହଜାର ବର୍ଷର ସାମାଜିକ ବିବର୍ତ୍ତନ ଧାରାରେ ବିକାଶ ଲାଭ କରିଛି । ଏହା କେଉଁ ଦିଅଁ ଦେବତାର ଆଶୀର୍ବାଦରୁ ଉଦ୍ଭବ ହୋଇନାହିଁ ବା ସ୍ୱର୍ଗରୁ ଖସିନାହିଁ । ଏହା ମଣିଷର ସୃଜନଶୀଳ ଅନୁସନ୍ଧିତ୍ସା ଓ ବିଚାରଶୀଳ ପ୍ରୟାସରୁ ହିଁ ସମ୍ଭବ ହୋଇଛି । ସେହିପରି ଆମର ସୃଜନଶୀଳ ଅବଦାନ ଓ ଉତ୍ତର ଦାୟିତ୍ୱବୋଧରୁ ଆଗାମୀ ବିଶ୍ୱର ଜନଗଣ ଅଧିକ ସୁଖକର ଓ ପ୍ରୀତିପଦ ଜୀବନ ବଞ୍ଚିବାକୁ ସମର୍ଥ ହେବେ ।

ଆଗାମୀ ପୀଢ଼ିର ଜନଗଣ ଜୀବନକୁ ଅଧିକ ସୁଖକର ଓ ଅର୍ଥପୂର୍ଣ୍ଣ ଭାବରେ ବଞ୍ଚିବାପାଇଁ ଆମର ବି କିଛି ଉତ୍ତରଦାୟିତ୍ୱ ରହିଛି । ଆମେ କେବଳ ଆମର ସୁଖ ଶାନ୍ତିରେ ସନ୍ତୁଷ୍ଟ ରହିବା ଯଥେଷ୍ଟ ନୁହେଁ । ବରଂ ମଣିଷ ସମାଜ କିପରି ସ୍ଥାୟୀ ଭାବରେ ସୁଖକର ଓ ପ୍ରୀତିଭରା ଜୀବନ ନିର୍ବାହ କରିପାରିବେ ତାହା ହିଁ ମାନବବାଦୀ ଜୀବନ-ଦର୍ଶନର ସାରମର୍ମ । ବସ୍ତୁତଃ ମାନବବାଦ ଏକ ଗୁଣାତ୍ମକ ଜୀବନକୁ ଗୁରୁତ୍ୱ ଦିଏ । ଆମ ସଂସାରକୁ ସରସ, ସୁନ୍ଦର ଓ ପ୍ରୀତିମୟ କରିବାକୁ ପନ୍ଥାର ସନ୍ଧାନ କରେ । ଏହା କୌଣସି ପାରଲୌକିକ ସ୍ୱପ୍ନରେ ବିଭୋର ହୋଇ ଜୀବନ ପ୍ରତି ବୀତସ୍ପୃହ ରହେନାହିଁ ବା ସମାଜ ପ୍ରତି ନକାରାତ୍ମକ ମନୋଭାବ ପୋଷଣ କରେ ନାହିଁ । ମାନବବାଦର ତାତ୍ପର୍ଯ୍ୟ ହେଉଛି ଯେ ଏହା ଜୀବନର ଗୁଣାତ୍ମକ ବିକାଶ, ଜୀବନଧର୍ମୀ ମୂଲ୍ୟବୋଧ ଓ ସର୍ବଜନହିତୈଷୀ ଆଦର୍ଶ ଉପରେ ନିର୍ଭର କରେ । ସମାଜର ରାଜନୈତିକ ଦୃଶ୍ୟପଟ, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ପରିବେଶ ଓ ନୈତିକ ଉତ୍ତରଦାୟିତ୍ୱବୋଧ ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରିବାରେ ସହାୟକ ହୋଇଥାଏ । ଗୋଟିଏ ରାଜନୈତିକ ବ୍ୟବସ୍ଥା ଯେତେ ଅଧିକ ସାମାଜିକ ନ୍ୟାୟ, ଜନକଲ୍ୟାଣକାରୀ ଆଭିମୁଖ୍ୟ, ଆଇନର ଶାସନ, ଉନ୍ନତ ନାଗରିକ ଶୃଙ୍ଖଳାବୋଧ, ମାନବିକ ଉତ୍କର୍ଷ ଓ ଅଧିକାରକୁ ଗୁରୁତ୍ୱ ଦିଏ ତାହା ଏକ ଉନ୍ନତ ବ୍ୟବସ୍ଥାର ସ୍ୱାକ୍ଷର ବହନ କରେ । ଅପରପକ୍ଷରେ ରାଜନୈତିକ ବ୍ୟବସ୍ଥା ଯଦି ଦୁର୍ନୀତି, ଭ୍ରଷ୍ଟାଚାର ଓ ଦାୟିତ୍ୱହୀନ

କର୍ମସଂସ୍କୃତିର ପ୍ରସାରରେ ସହାୟକ ହୁଏ, ତାହା ରାଷ୍ଟ୍ରର ଓ ବୃହତ୍ତର ସମାଜର ମଙ୍ଗଳ ସାଧନ କରିପାରେ ନାହିଁ । ସେହିପରି ଗୋଟିଏ ଅର୍ଥନୈତିକ ବ୍ୟବସ୍ଥା ଯଦି ସମାଜରେ ସମତା, ସ୍ୱାବଲମ୍ବନଶୀଳତା, ନିରନ୍ତର ପ୍ରଗତିର ସମ୍ଭାବନା ଓ ପରିବେଶ ଉପଯୋଗୀ ସମୃଦ୍ଧିର ବାତାବରଣ ସୃଷ୍ଟିକରେ, ତେବେ ତାହା ସମାଜ ପାଇଁ ମଙ୍ଗଳକର ହୋଇଥାଏ । ଅପରପକ୍ଷରେ ଅର୍ଥନୈତିକ ବ୍ୟବସ୍ଥା ଯଦି ସମାଜରେ ଶୋଷଣ, ବୈଷମ୍ୟ, ଧନୀ ଦରିଦ୍ର ଭିତରେ ବିରାଟ ପ୍ରଭେଦ ସୃଷ୍ଟି କରିବା ସହିତ ପରିବେଶକୁ ଧ୍ୱଂସାଭିମୁଖୀ କରେ, ତେବେ ତାହା ସମାଜ ପାଇଁ ମଙ୍ଗଳପ୍ରଦ ହୋଇପାରେ ନାହିଁ । ସମାଜରେ ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନର ସକଳ ଆବଶ୍ୟକତା ଯଦି ପୂରଣ କରିବାକୁ ସମର୍ଥ ହୁଏ ତେବେ ସେହି ବ୍ୟବସ୍ଥା ଉନ୍ନତ ମନେହୁଏ । ସେହିପରି ସମାଜର ସାଂସ୍କୃତିକ ପରିବେଶ ବ୍ୟକ୍ତି ଭିତରେ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା ସହିତ ତାକୁ ଜଣେ ମର୍ଯ୍ୟାଦାବାନ ନାଗରିକର ସ୍ୱୀକୃତି ଦେବା ଆବଶ୍ୟକ । ଜାତି, ଧର୍ମ, ଭାଷା, ଆଞ୍ଚଳିକତା, ଆର୍ଥିକ ସ୍ଥିତି ନିର୍ବିଶେଷରେ ବ୍ୟକ୍ତି ଯଦି ସମାଜରେ ସମ୍ମାନଜନକ ଭାବେ ଜୀବନ ବଞ୍ଚିବାର ପରିବେଶ ପାଏ, ତେବେ ସେ ତା'ର ସମୁଚିତ ବିକାଶ ସହ ସମାଜର ଜୀବନଧାରାକୁ ସମୃଦ୍ଧ କରିବାର ଅବକାଶ ପାଏ । ପୁନଶ୍ଚ ବ୍ୟକ୍ତି ଭିତରେ ନୈତିକ ଶୃଙ୍ଖଳା ସୃଷ୍ଟିକରିବା କ୍ଷେତ୍ରରେ ସାମାଜିକ ପରିବେଶର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ସମାଜରେ ନ୍ୟାୟ, ସାଧୁତା, କର୍ତ୍ତବ୍ୟନିଷ୍ଠା ଓ ଆଇନପ୍ରତି ସମ୍ମାନ ରହିଥିଲେ ସମାଜ ପ୍ରଗତିଶୀଳ ହୁଏ । ଅପରପକ୍ଷରେ ଯେଉଁ ପରିବେଶରେ ଅସାଧୁ ଉପାୟରେ ଜୀବନର ଆବଶ୍ୟକତା ପୂରଣ ପାଇଁ ମାନସିକତା ରହିଥାଏ ଓ ସବୁ ସ୍ତରରେ ଅନ୍ୟାୟ, ଦୁର୍ନୀତି ବ୍ୟାପକ ହେଉଥାଏ, ସେହି ସାମାଜିକ ପରିବେଶ କ୍ଷୟଶୀଳ ମନେହୁଏ । ସାମାଜର ଜନଗଣ ବୃହତ୍ତର ପରିବେଶ ଉପରେ ନିର୍ଭର କରିବାର ଆତ୍ମବିଶ୍ୱାସ ରଖିବା ଆବଶ୍ୟକ । ଅପରପକ୍ଷରେ ଯଦି ସେମାନେ ଏହା ହରାଇ ଦିଅନ୍ତି, ତେବେ ସେମାନେ ଏକ ଅସହାୟବୋଧଜନିତ ମାନସିକତାରୁ ଅନ୍ୟାୟ ଓ ଦୁର୍ନୀତିରେ ସମ୍ପୃକ୍ତ ହୋଇଯାନ୍ତି । ମଣିଷ ଯେଉଁ ପରିବେଶରେ ବୃହତ୍ତର ସାମାଜିକ ଅନୁଷ୍ଠାନ ଓ ରାଷ୍ଟ୍ର ଉପରେ ଆସ୍ଥା ସ୍ଥାପନ କରିପାରେନାହିଁ, ସେ କ୍ଷେତ୍ରରେ ସେ ଭାଗ୍ୟ, ଅଲୌକିକ ଶକ୍ତି ଉପରେ ବିଶ୍ୱାସ କରେ । ଏହା ଏକ ସାଧାରଣ ମନସ୍ତତ୍ତ୍ୱ ଯେ, ଭୟ ଓ ନୈରାଶ୍ୟ ବ୍ୟକ୍ତି ଭିତରେ ରହିଲେ ସେ ସାଧାରଣତଃ କେତେ କେତେ ପୂଜା ଏବଂ ଅହେତୁକ ସତ୍ତାରେ ବିଶ୍ୱାସ ସ୍ଥାପନ କରେ । ମାନବବାଦ ମଣିଷର ପ୍ରୟାସ, ବୌଦ୍ଧିକ ଅନୁସନ୍ଧିତ୍ସା ବୃହତ୍ତର ସମାଜ ଉପରେ ବିଶ୍ୱାସ ଓ ଉତ୍ତରଦାୟୀ ମୂଲ୍ୟବୋଧ ଉପରେ ଆସ୍ଥା ସ୍ଥାପନ କରିଥାଏ । ଯେଉଁଠି ନାଗରିକ ଶୃଙ୍ଖଳାବୋଧ ଓ ଜନଗଣଙ୍କର କର୍ମସଂସ୍କୃତି ଉଚ୍ଚମାନର ଥାଏ ସେଠାରେ ମଣିଷ ବୃହତ୍ତର ସମାଜ ଉପରେ ଭରସା ରଖିପାରେ । ଏହାର ଅଭାବରେ ଜନଜୀବନ ଓ ସାମାଜିକ ପରିବେଶ ଅନୁନ୍ନତ ରହେ । ଏକ ଅନୁନ୍ନତ ପରିବେଶରେ

ଜୀବନର ମାନ ତୁଳନାତ୍ମକ ଭାବେ ନିମ୍ନସ୍ତରରେ ରହିଥାଏ । ତେବେ ସାମାଜିକ ପରିବେଶକୁ ଉନ୍ନତ କରିବାରେ କୌଣସି ଦେବତା ବା ଆଧିଦୈବିକ ଶକ୍ତିର କିଛି ଭୂମିକା ନ ଥାଏ । ବରଂ ଏସବୁ ମଣିଷ ମନର କଳ୍ପନା ବୋଲି ପ୍ରତୀତ ହୁଏ । ମୋଟ ଉପରେ କହିଲେ ମାନବବାଦ ସବୁକିଛିକୁ ମଣିଷ ହାତ ଓ ମସ୍ତିଷ୍କର ପରିଣାମ ଭାବେ ନିଏ । ମଣିଷ ହିଁ ତା'ର ସମାଜକୁ ସରସ, ସୁନ୍ଦର ଓ ପ୍ରୀତିପୂର୍ଣ୍ଣ କରିବାକୁ ସମର୍ଥ ବୋଲି ଏହା ଗ୍ରହଣ କରେ ।

ମାନବବାଦ ଏକ ଦର୍ଶନ ଭାବରେ ଜୀବନର ଶ୍ରେୟ ସାଧନକୁ ଗୁରୁତ୍ୱ ଦିଏ । ଏହା ବ୍ୟକ୍ତି-ବ୍ୟକ୍ତି ଭିତରେ କୌଣସି ଭେଦଭାବର ପ୍ରାଚୀର ଛିଡ଼ା କରାଏ ନାହିଁ । ସକଳ ସାମାଜିକ ବୈଷମ୍ୟ ଓ ବିଭେଦକୁ ମଣିଷକୃତ ଭାବନା ବୋଲି ଗ୍ରହଣ କରେ । ସୁତରାଂ ଏକ ଭେଦଭାବବିହୀନ ସମ୍ବନ୍ଧ ଓ ସମ୍ପ୍ରୀତିକୁ ଗୁରୁତ୍ୱ ଦେଇଥାଏ । ଏହାକୁ ଜୀବନର ଆଦର୍ଶ ଭାବରେ ଗ୍ରହଣ କରିବା କ୍ଷେତ୍ରରେ କେତେକ ନୀତି ପ୍ରତି ଏହା ଦୃଷ୍ଟିଆକର୍ଷଣ କରିଥାଏ । ଶୃଙ୍ଖଳିତ ନାଗରିକ ଜୀବନକୁ ଏହା ପ୍ରାଥମିକତା ଦେଇଥାଏ । ସେହି ପରିପ୍ରେକ୍ଷୀରେ ମାନବଧର୍ମୀ ପ୍ରୟାସଗୁଡ଼ିକ ପ୍ରତି ଆସ୍ଥା ସ୍ଥାପନକୁ ପ୍ରାଧାନ୍ୟ ଆରୋପ କରିଥାଏ । ତାହାଦ୍ୱାରା ସାମାଜିକ ହିତ ସାଧନଜନିତ ମାନବିକ ଉତ୍କର୍ଷ ଯେ ଆସିପାରିବ ଏହା ବିଶ୍ୱାସ କରାଯାଏ । ସେହିପରି କର୍ତ୍ତବ୍ୟ ପ୍ରତି ପ୍ରତିବଦ୍ଧତା ଓ ଏକ କର୍ମସଂସ୍କୃତିକୁ ଏହା ମଧ୍ୟ ପ୍ରାଧାନ୍ୟ ଦେଇଥାଏ । ସାଧୁତା, କର୍ତ୍ତବ୍ୟବୋଧ ଓ ନିରପେକ୍ଷତାକୁ ଏହା ଜୀବନଧାରାରେ ମିଶାଇବାକୁ ଆବେଦନ ରଖେ । ମୋଟ ଉପରେ କହିଲେ ମାନବବାଦ ବ୍ୟକ୍ତି ଓ ଗୋଷ୍ଠୀ ଜୀବନରେ ଶୃଙ୍ଖଳା, ସାଧୁତା, ମାନବଧର୍ମୀ ପ୍ରୟାସ, ଭେଦଭାବମୁକ୍ତ ପରିବେଶ ଓ ସାମାଜିକ ହିତ ସାଧନକୁ ସର୍ବାଧିକ ପ୍ରାଧାନ୍ୟ ଦେଇଥାଏ । ଏହିପରି ଏକ ଜୀବନଦର୍ଶନର ପ୍ରସାର ଦ୍ୱାରା ସାମାଜିକ ଉତ୍କର୍ଷ ସମ୍ଭବ ବୋଲି ଏହା ଗ୍ରହଣ କରେ ।

ପ୍ରତ୍ୟେକ ଧର୍ମର ନୈତିକ ଆବେଦନ ଭିତରେ କେତେକ ମାନବବାଦୀ ବିଚାରର ଝଲକ ଦେଖିବାକୁ ମିଳେ । ସେହିପରି ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଥିବା କେତେକ କୃତି ଭିତରେ ବି ମାନବବାଦର କିଛି ଲକ୍ଷଣ ଅଭିବ୍ୟକ୍ତ ହେବା ଦେଖାଯାଏ । ତେବେ ଏସବୁ ସହ ନାନା କାଳ୍ପନିକ କାହାଣୀ ଓ ଅତୀନ୍ଦ୍ରିୟ ଭାବନାର ପ୍ରାବଲ୍ୟ ରହିଥାଏ । କିନ୍ତୁ ଆଧୁନିକ ଯୁଗରେ ଯେଉଁ ମାନବବାଦର ପ୍ରସାର ହେଲା ତାହା ପଶ୍ଚାତରେ ମୌଳିକତଃ ତିନିଟି ବିଚାରର ପ୍ରାଧାନ୍ୟ ରହିଥିଲା । ସେଗୁଡ଼ିକ ହେଲା ମୁକ୍ତମନଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସମତା ତଥା ବ୍ୟକ୍ତି ମର୍ଯ୍ୟାଦାଜନିତ ଗଣତାନ୍ତ୍ରିକ ବିଚାରବୋଧ ଓ ନିରପେକ୍ଷ ମୂଲ୍ୟବୋଧ । ଏ ପ୍ରତ୍ୟେକର ନାନା ଦିଗନ୍ତ ରହିଛି ଓ ସେଗୁଡ଼ିକ ସଭ୍ୟ ଜୀବନର ବହୁ ଦିଗକୁ ପ୍ରଭାବିତ କରିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଦ୍ୱାରା ପ୍ରକୃତିର ରହସ୍ୟକୁ

ନାନା ଭାବରେ ଜାଣିବାକୁ ମଣିଷ ସମର୍ଥ ହେଲା । ସେହି ପ୍ରୟାସ ଭିତରେ ଧର୍ମଭିତ୍ତିକ କଳ୍ପନାଗୁଡ଼ିକ ଅସାର ବୋଲି ପ୍ରମାଣିତ ହେବାକୁ ଲାଗିଲା । ପ୍ରକୃତିର ନିୟମ ଓ ଶୃଙ୍ଖଳାର ଆବିଷ୍କାର ଦ୍ୱାରା ଜ୍ଞାନର ବିକାଶ ତ୍ୱରାନ୍ୱିତ ହେବା ସହ ଜୀବନର ଭୌତିକ ମାନରେ ନାନା ପରିବର୍ତ୍ତନ ହେଲା । ଗଣତାନ୍ତ୍ରିକ ମୂଲ୍ୟବୋଧର ପ୍ରସାର ଯୋଗୁ ରାଜତନ୍ତ୍ର, ସାମନ୍ତବାଦ, ଏକଛତ୍ରବାଦ ଇତ୍ୟାଦିର ବିଲୋପ ସହ ମାନବିକ ମର୍ଯ୍ୟାଦାର ଚେତନା ଦୃଢ଼ୀଭୂତ ହେବାକୁ ଲାଗିଲା । ଏସବୁ ସହ ନିରପେକ୍ଷ ମୂଲ୍ୟଚୟର ବିକାଶ ଯୋଗୁ ଏକ ସର୍ବଜନହିତୈଷୀ ବିଶ୍ୱରବୋଧ ଓ ଆନ୍ତର୍ଜାତିକ ମନୋଭାବର ବିକାଶ ତ୍ୱରାନ୍ୱିତ ହେଲା । ଏସବୁ ସଭ୍ୟତାର ବିକାଶଧାରାରେ ନୂତନ ଦିଗନ୍ତର ସୂଚନା ଦେଲେ । 'ସମଗ୍ର ମଣିଷ ଜାତି ଏକ ଓ ଅଭିନ୍ନ' - ଏହି ଦୃଷ୍ଟିକୋଣର ବିକାଶ ପାଇଁ ଏସବୁ ନାନା ସକାରାତ୍ମକ ଅଭିନିବେଶ ଯୋଗାଇଲା ।

ବସ୍ତୁତଃ ମାନବବାଦ ସମଗ୍ର ବିଶ୍ୱପାଇଁ ଶାନ୍ତି, ମୈତ୍ରୀ ଓ ପ୍ରୀତିର ବାର୍ତ୍ତା ବହନ କରିବା ମନେହୁଏ ! ମାନବବାଦର ଏହି ବାର୍ତ୍ତା ଯଦି ସମଗ୍ର ବିଶ୍ୱରେ ଦୃଢ ଭିତ୍ତି ନେବ, ତେବେ ଆଗାମୀ ଦିନରେ ନୂତନ ପୀଢ଼ିର ମଣିଷମାନେ ଅଧିକ ସୁଖକର ଓ ପ୍ରୀତିପଦ ଦୁନିଆରେ ବଞ୍ଚିବାକୁ ସମର୍ଥ ହେବେ । ମାନବବାଦୀ ଓ ହେତୁବାଦୀମାନେ ଏହିଭଳି ଏକ ଦୁନିଆର ସ୍ୱପ୍ନ ଦେଖିଥାନ୍ତି । (୫.୧.୧୧)



# ମାନବିକ ମହତ୍ତ୍ୱ

ଜଣେ ମଣିଷ ଆଉ ଜଣେ ମଣିଷକୁ କେଉଁ ଦୃଷ୍ଟିରେ ଦେଖିବା ଉଚିତ? ଏହି ପ୍ରଶ୍ନଟି ଏକ ବ୍ୟକ୍ତିଗତ ପ୍ରଶ୍ନ ନୁହେଁ, ବରଂ ଏକ ନୈତିକ ପ୍ରଶ୍ନ କାରଣ ଏହି ପ୍ରଶ୍ନ ସହ ସାମାଜିକ, ନୈତିକ ଓ ସାଂସ୍କୃତିକ ମୂଲ୍ୟ ନିହିତ। ଗୋଟିଏ ସମାଜର ସାଂସ୍କୃତିକ ମୂଲ୍ୟଚୟର ପରିଚୟ ଏହି ପ୍ରଶ୍ନର ଉତ୍ତରରୁ ଅନୁମାନ କରାଯିବା ସମ୍ଭବ। ସେହି ପରି ଏକ ସମାଜର ଜନଗଣଙ୍କ ନୈତିକ ଦୃଷ୍ଟିଭଙ୍ଗୀର ପରିଚୟ ବି ଏଥିରୁ ଅନୁମାନ କରାଯାଇପାରେ। ଯେଉଁ ସମାଜରେ ମାନବିକ ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଏ ସେଠାରେ ସମାଜର ନୈତିକ ସ୍ତର ଉନ୍ନତ ବୋଲି ଅନୁଭବ କରାଯାଏ। ଅଥଚ ଯେଉଁ ସମାଜରେ ଏହାର ବ୍ୟତିକ୍ରମ ଏକ ସାଧାରଣ ଘଟଣା ସେହି ସାମାଜିକ ଦୃଶ୍ୟପଟଟି କ୍ଷୟଶୀଳ ବୋଧହୁଏ। ମନୁଷ୍ୟକୁ ମନୁଷ୍ୟୋଚିତ ମୂଲ୍ୟ ଓ ସମ୍ମାନ ପ୍ରଦାନ କରିବା ଏକ ସଭ୍ୟ ଆଦର୍ଶ। ସଭ୍ୟତାର ବିକାଶଧାରାରେ ଏହି ମୂଲ୍ୟବୋଧଟି ବହୁ ପରେ ବିକଶିତ ହୋଇଛି। ହୁଏତ ଅତୀତର କେତେକ ପ୍ରାଚୀନ ଗ୍ରନ୍ଥରେ ବିଶ୍ୱ ଏକ ପରିବାର, ସମସ୍ତେ ସୁଖରେ ରୁହନ୍ତୁ, ବିଶ୍ୱଭ୍ରାତୃତ୍ୱ ପରି ମୂଲ୍ୟବୋଧର କିଛି ଝଲକ ଦେଖିବାକୁ ମିଳିଥାଏ। ତେବେ ଏସବୁ କୌଣସି ମହାନ୍ ମାନବଦରଦୀ ବ୍ୟକ୍ତିଙ୍କର ବ୍ୟକ୍ତିଗତ ଉଚ୍ଛ୍ୱାସ ମାତ୍ର। ସବୁ ସଭ୍ୟତାରେ କେହି କେହି କ୍ରାନ୍ତିକାରୀ ବିଚାରକ ଜୀବନଶ୍ରଦ୍ଧାର ଆବେଗରେ ଏହି ମୂଲ୍ୟର ଇଙ୍ଗିତ ଦେଇଛନ୍ତି। କିନ୍ତୁ ପରିତାପର ବିଷୟ ବାସ୍ତବପକ୍ଷେ ଆମ ସଂସାରରେ ଏହି ମୂଲ୍ୟଚୟ ସେପରି ସୁଦୃଢ଼ ଭିତ୍ତି ନେଇନାହିଁ। ବରଂ ନାନା କାରଣରୁ ମଣିଷ ଜାତି ବହୁ ଭାବରେ ବିଭକ୍ତ ହୋଇଯାଇଛି। ଜାତିଗତ, ବର୍ଣ୍ଣଗତ, ଲିଙ୍ଗଗତ, ଭାଷାଗତ, ବୃତ୍ତିଗତ, ଧର୍ମଗତ ନାନା କାରଣ ଦେଇ ସମାଜ ଭାଗ ଭାଗ ହୋଇ ରହିଛି ଓ ଗୋଷ୍ଠୀଗୋଷ୍ଠୀ ମଧ୍ୟରେ ନାନା ତିକ୍ତତା ଓ ବିଦ୍ୱେଷର ବାତାବରଣ ସୃଷ୍ଟି ହୋଇଛି। ଉଦାହରଣ ସ୍ୱରୂପ ଅତୀତରେ ସାମ୍ପ୍ରଦାୟିକ ବିଚାରରୁ ସମାଜରେ ନାନା ଭେଦଭାବ ସୃଷ୍ଟି ହୋଇଛି। ଗୋଷ୍ଠୀ ମାନସିକତା ଜନିତ ବିଚାର ଯେତେବେଳେ ଅନୈତିକ ହୋଇ ପରାକ୍ରମୀ ହୋଇଉଠେ, ତାହା ସଂସାରରେ ନାନା ତିକ୍ତତା ଓ ଭେଦଭାବର ପରିବେଶ ସୃଷ୍ଟି କରିଥାଏ। ଏହା ସହିତ ଆମ ସଂସାରରେ ରାଜତନ୍ତ୍ର ଯୁଗରେ ବା ଏକଛତ୍ରବାଦୀ ବ୍ୟବସ୍ଥାରେ ଯୁଦ୍ଧର ବିଭୀଷିକା ସର୍ବଦା ଲାଗି ରହିଥିଲା। ଯୁଦ୍ଧର ବିଭୀଷିକା ସହ ବିଜଡ଼ିତ ଶାସକ ଗୋଷ୍ଠୀ ଓ ଏହାର ସୈନିକମାନେ

ପରାଜିତ ଗୋଷ୍ଠୀର ଜନଗଣଙ୍କ ଉପରେ ନାନା ବର୍ବରୋଚିତ କାଣ୍ଡମାନ ସୃଷ୍ଟି କରି ଆସୁଥିଲେ । ଅପର ସମ୍ପତ୍ତିକୁ ଲୁଣ୍ଠନ କରିବା, ମହିଳାମାନଙ୍କୁ ନିର୍ଯାତନା ଦେବା, ସାଂସ୍କୃତିକ ପୀଠକୁ ନଷ୍ଟ କରିବାର ମାନସିକତା ସାରା ପୃଥିବୀରେ ବ୍ୟାପକ ହୋଇ ରହିଥିଲା । ରାଜତନ୍ତ୍ର, ସାମନ୍ତବାଦ ଓ ସାଂପ୍ରଦାୟିକତାବାଦର ପ୍ରଭାବ ଯେଉଁ ଯୁଗରେ ରହିଥିଲା, ସେ ସମୟରେ ସାଧାରଣ ଜନଗଣଙ୍କ ଉପରେ ଅନ୍ୟାୟ, ଅତ୍ୟାଚାର, ଶୋଷଣ ଅତି ସାଧାରଣ ଘଟଣା ହୋଇ ରହିଥିଲା ।

ଇଉରୋପରେ ଯେଉଁ ନବଜାଗରଣ ବା ରେନେସାଁ ଆସିଲା ତା'ର ପ୍ରଭାବରେ ଚିନ୍ତାରାଜ୍ୟରେ ଚୂଳମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । ବୃହତ୍ତର ପୃଥିବୀର ସନ୍ଧାନ ଓ ବିଜ୍ଞାନର ନୂଆନୂଆ ଆବିଷ୍କାର ଆସ୍ତେ ଆସ୍ତେ ନୂଆନୂଆ ମୂଲ୍ୟବୋଧ ସୃଷ୍ଟିକଲା । ବିଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ଆବିଷ୍କାର ଓ ଉଦ୍‌ଭାବନ ଗୁଡ଼ିକ ମାନବିକ କଲ୍ୟାଣ ସାଧନରେ ସହାୟକ ହେଲା । ଯେଉଁ ଜ୍ଞାନ ଯେଉଁ ଭୂଖଣ୍ଡ ବା ରାଷ୍ଟ୍ରରେ ସୃଷ୍ଟି ହୋଇଥିଲେ ମଧ୍ୟ ତାହା ଅଧିକରୁ ଅଧିକ ସାର୍ବଜନୀନ ହେବାକୁ ଲାଗିଲା । ମାନବଜାତିର କଲ୍ୟାଣ ସାଧନ ପାଇଁ ଅନୁରାଗ କେତେ କେତେ ମହତ୍ତ୍ୱପୂର୍ଣ୍ଣ ଉତ୍ସାହ ସୃଷ୍ଟିକରି ଚାଲିଲା । ଅତୀତରେ ସଭ୍ୟତାର ସୁଫଳ ଏକ ସୁବିଧାପ୍ରାପ୍ତ ବିଶେଷ ଗୋଷ୍ଠୀ ପାଇଁ ସୀମିତ ରହିଥିଲା । କାଳକ୍ରମେ ଏହି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ସଭ୍ୟତାର ସୁଫଳରେ ସାଧାରଣ ମଣିଷର ବି ଭାଗ ରହିଲା । ସମାଜର ଦୁଃଖ, ଯନ୍ତ୍ରଣା, ରୋଗ ଇତ୍ୟାଦିକୁ ଅତୀତରେ ମଣିଷ ଭାଗ୍ୟ, ଈଶ୍ୱରୀୟ ଅଭିଶାପ, ଦୈବୀ ଦଣ୍ଡ ବୋଲି ଭାବିଥିଲା । କୌଣସି ଲୋକ କୁଷ୍ଠରୋଗରେ ଆକ୍ରାନ୍ତ ହେଉଥିଲେ ସେ ଜଣେ ପାପୀ ଭାବି ତାକୁ ଅତ୍ୟନ୍ତ ଅମାନବିକ ଭାବରେ ସମାଜଚ୍ୟୁତ ହେବାକୁ ପଡୁଥିଲା । କୌଣସି ମାନସିକ ବିକୃତି ଜନିତ ବ୍ୟକ୍ତି ଭିତରେ ମନ୍ଦଶକ୍ତିର ପ୍ରବେଶର ଭାବନାରୁ ତାକୁ ବହୁ ଭାବରେ ନିର୍ଯାତନା ଦିଆଯାଉଥିଲା । ଏପରିକି ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଜନିତ ନୂତନ ଜ୍ଞାନକୁ ଧର୍ମବିରୋଧୀ, ଈଶ୍ୱର ବିରୋଧୀ କୁହାଯିବାର ମାନସିକତା ସମାଜରେ ବହୁଦିନ ଧରି ରହିଥିଲା । ତେବେ ଚିନ୍ତାଧାରାରେ ପରିବର୍ତ୍ତନର ଯେଉଁ କ୍ଷୁଦ୍ର ଧାରାଟି ୟୁରୋପୀୟ ରେନେସାଁ ପରେ ସୃଷ୍ଟି ହୋଇଥିଲା, ତାହା କାଳକ୍ରମେ ବ୍ୟାପକ ହେଲା ଓ ନୂତନ ସାଂସ୍କୃତିକ ପ୍ରବାହ ସୃଷ୍ଟିକଲା । ସେହି ପ୍ରବାହର ପରିଣାମ ସ୍ୱରୂପ ଗଣତାନ୍ତ୍ରିକ ଚେତନା, ମାନବିକ ମର୍ଯ୍ୟାଦା, ଧର୍ମନିରପେକ୍ଷ ନୀତିବୋଧ ଇତ୍ୟାଦି ସାର୍ବଜନୀନ ମୂଲ୍ୟବୋଧ ଭାବେ ସ୍ୱୀକୃତ ହେବାକୁ ଲାଗିଲା । ସମତା, ସାମାଜିକ ନ୍ୟାୟ, ମାନବିକ ଅଧିକାର ଇତ୍ୟାଦି ମୂଲ୍ୟଚୟର କ୍ରମବିକାଶ ସଭ୍ୟତାର ବିକାଶଧାରାରେ ନୂତନ ଦିଗନ୍ତ ସୃଷ୍ଟିକଲା । ସବୁ ମଣିଷ ସମାନ, ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦା ଓ ସୁଖରେ ବଞ୍ଚିବା ତା'ର ଏକ ଅଧିକାର କାଳକ୍ରମେ ସାର୍ବଜନୀନ ସଭ୍ୟ ମୂଲ୍ୟବୋଧ ବୋଲି ବୈଶ୍ବିକ

ସ୍ତରରେ ଗୃହୀତ ହେବାକୁ ଲାଗିଲା । ଯେଉଁ ଆଧାରରେ ହେଉ ନା କାହିଁକି ସାମାଜିକ ଭେଦଭାବ ଅନୈତିକ ଓ ଅମାନବିକ ବୋଲି ଅଧିକରୁ ଅଧିକ ସ୍ୱୀକୃତ ହେବାକୁ ଲାଗିଲା । ପରିଣାମତଃ ସାମନ୍ତବାଦୀ ଓ ରାଜତନ୍ତ୍ର ଯୁଗରେ ସବୁ ସମାଜରେ ରହିଥିବା ସନ୍ତାପଗୁଡ଼ିକ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିଲା । ଜାତି, ଜାତୀୟତା ଓ ଧାର୍ମିକ ଆବେଗ ଜନିତ ଉଗ୍ର ମନୋଭାବ ମାନବିକ ମହତ୍ତ୍ୱ ଓ ସଭ୍ୟ ଜୀବନ- ଦୃଷ୍ଟିର ପରିପନ୍ଥୀ ବୋଲି ବିଚାର ଆସ୍ତେ ଆସ୍ତେ ବିସ୍ତାରଲାଭ କରିବା ମନେହୁଏ ।

ସେହିପରି ମୋର ମଙ୍ଗଳ ଓ ସୁଖକର ଜୀବନ ସହିତ ଅନ୍ୟର ମଙ୍ଗଳ ଓ ସୁଖକର ଜୀବନ ପ୍ରତି ଅନୁରାଗ ମାନବୀୟ ଚେତନାର ଏକ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ । ବ୍ୟକ୍ତି ଯେତେବେଳେ ନିଜର ମଙ୍ଗଳ ସହିତ ବୃହତ୍ତର ସମାଜ ଓ ବିଶ୍ୱର ମଙ୍ଗଳକୁ ସନ୍ନିହିତ କରିବାର ମାନସିକତା ପୋଷଣ କରେ, ତାହା ଏକ ଗୁଣାତ୍ମକ ଜୀବନର ସ୍ୱାକ୍ଷର ବହନ କରିଥାଏ । ଜୀବନ-ଶ୍ରଦ୍ଧାର ଏହି ଦର୍ଶନ ହିଁ ହେତୁବାଦୀ ମୂଲ୍ୟବୋଧର ସାରମର୍ମ । ମନୁଷ୍ୟକୁ ମନୁଷ୍ୟୋଚିତ ମୂଲ୍ୟ ଓ ସମ୍ମାନ ପ୍ରଦାନ କରିବା ଏକ ମହାନ୍ ଆଦର୍ଶ ଭାବେ ଆଜି ଗୃହୀତ । ଏହା ସହିତ କୌଣସି ଅପରାଧରେ ସମ୍ପୃକ୍ତ ବ୍ୟକ୍ତି କାରାଗାରରେ ବନ୍ଦୀ ଜୀବନ ବିତାଉଥିଲେ ମଧ୍ୟ ସେ ସେଠାରେ ଅତ୍ୟାଚରିତ ହେବ ନାହିଁ ଓ ସୁସ୍ଥ ଜୀବନ ବି ବଞ୍ଚିବ । ଯେ କୌଣସି ପ୍ରକାର ଉତ୍ପୀଡ଼ନ ନିନ୍ଦନୀୟ ଓ ମାନବିକ ମହତ୍ତ୍ୱର ଯେ ପରିପନ୍ଥୀ ଏହି ବିଚାର ଏକ ସଭ୍ୟ ମୂଲ୍ୟବୋଧ ଭାବେ ଆଜି ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ।

ବସ୍ତୁତଃ ଯେଉଁ ସାମାଜିକ ଦୃଷ୍ଟି ମଣିଷକୁ ନ୍ୟୂନକରେ ଓ ମାନବିକ ମର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରେ ତାହା ଯେ ଅମାନବିକ ଓ ଅନୈତିକ ଏହି ବିଚାର ଆଧୁନିକ ଜୀବନପ୍ରବାହର ଏକ ବିବର୍ତ୍ତିତ ମୂଲ୍ୟବୋଧ । ଯାହା ମଣିଷ ମଣିଷ ଭିତରେ ବିଭେଦ ସୃଷ୍ଟିକରେ, ଯାହା ଘୃଣା ଓ ବିଦ୍ୱେଷର ମାନସିକତା ଆଣେ ବା ବ୍ୟକ୍ତି ମର୍ଯ୍ୟାଦାକୁ ନ୍ୟୂନ କରେ ତାହା ସଭ୍ୟ ମୂଲ୍ୟବୋଧର ପରିପନ୍ଥୀ । ମଣିଷ ସମାଜ ଭିତରେ ଏକ ଏକତ୍ୱବୋଧ ସୃଷ୍ଟିକରିବା ଆଧୁନିକ ଜୀବନ ପ୍ରବାହର ଏକ ସାର୍ବଜନୀନ ମୂଲ୍ୟବୋଧ ।

ଆଜି ଆମ ସଂସାରରେ ଅନେକ ଦାରିଦ୍ର୍ୟ ରହିଛି, ଅନ୍ୟାୟ ବି ରହିଛି । ତେବେ ସଭ୍ୟତାର କ୍ରମ ବିକାଶଧାରାରେ ଆମେ ଆଜି ଏକ ଉନ୍ନତ ସ୍ଥିତି ଭିତରେ ରହିବାର ଅବକାଶ ପାଇଛେ । ସଭ୍ୟତାର କ୍ରମବିକାଶଧାରାରେ ସମ୍ପ୍ରତି ଯେଉଁ ମୂଲ୍ୟବୋଧ ଗୁଡ଼ିକର ଅଭ୍ୟୁଦୟ ହୋଇଛି ତାହା ମାନବିକ ଏକତ୍ୱ ଦିଗରେ ଏକ ସକାରାତ୍ମକ ପରିବେଶ ସୃଷ୍ଟି କରିପାରିଛି । ମାନବିକ ଏକତ୍ୱବୋଧ ପ୍ରସାର କ୍ଷେତ୍ରରେ କେତେକ ପ୍ରତିବନ୍ଧକ ତ ନିଶ୍ଚୟ

ରହିଛି, ତଥାପି ଆଧୁନିକ ଜୀବନ ପ୍ରବାହରେ ଏପରି କୌଣସି ବିପର୍ଯ୍ୟୟ ଘଟି ନାହିଁ ଯାହା ମଣିଷର ଭବିଷ୍ୟତ ନେଇ ନୈରାଶ୍ୟ ଆଣିବ । କେତେକ ସମାଜରେ ଓ ରାଷ୍ଟ୍ରରେ କିଛି ଅମାନବିକତାର ଲକ୍ଷଣ ବା ଦୌରାତ୍ମ୍ୟ ରହିଛି, ତଥାପି ସଭ୍ୟ ମୂଲ୍ୟବୋଧ ପ୍ରତି ସ୍ୱୀକୃତି ଅନେକ ବୃଦ୍ଧି ପାଇଛି । ବିଶ୍ୱବ୍ୟାପୀ ମାନବ ସମାଜକୁ ଏକତ୍ୱବୋଧ ଡୋରିରେ ବାନ୍ଧି ପାରିବାର ପରିବେଶ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସୃଷ୍ଟି କରିବାରେ ସମର୍ଥ ହୋଇଛି ।ଏହା ସହିତ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ସର୍ବଜନହିତୈଷୀ ମାନସିକତା ଓ ବିଶ୍ୱଦୃଷ୍ଟି ମାନବବାଦୀ ଜୀବନଦର୍ଶନ ଦ୍ୱାରା ଋଦ୍ଧିମନ୍ତ ହୋଇଚାଲିଛି । ପ୍ରତ୍ୟେକ ସଭ୍ୟତାରେ ବା ଧର୍ମରେ ଥିବା ନୈତିକ ଓ ମାନବିକ ଉତ୍କର୍ଷର ସମନ୍ୱୟରେ ଏକ ବିଶ୍ୱଗତ ଜୀବନ ଦୃଷ୍ଟି ବିକାଶ ଲାଭ କରୁଛି । ତାହା ହିଁ ହେଉଛି ମାନବ ସଭ୍ୟତାର ଏକ ନୈତିକ ଉତ୍ତରଣ ।
(୧୯.୧.୧୧)



# ସାରସ୍ୱତ ସାଧକଙ୍କ ସ୍ମୃତିରେ

ସାରସ୍ୱତ ସାଧକ ଚିତ୍ତରଂଜନ ଦାସଙ୍କର ୨୦୧୧ ଜାନୁୟାରୀ ୧୬ତାରିଖ ଦିନ ଦେହାନ୍ତ ହୋଇଯାଇଛି । ପରିଣତ ବୟସରେ ବି ଶେଷ ପର୍ଯ୍ୟନ୍ତ ତାଙ୍କର କଲମ ଚଳଚଞ୍ଚଳ ରହିଥିଲା ।  ସେ ଥିଲେ ଓଡ଼ିଶାର ଏକ ବିରଳ ବ୍ୟକ୍ତିତ୍ୱ । ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ତାଙ୍କର ଅବଦାନ ଅତୁଳନୀୟ । ସ୍ୱାଧୀନତା ସଂଗ୍ରାମୀ, ଶିକ୍ଷାବିତ୍, ସମାଜସେବୀ, ପ୍ରାବନ୍ଧିକ ଓ ଜଣେ ବିଶିଷ୍ଟ ବୁଦ୍ଧିଜୀବୀ ଭାବେ ସେ ଓଡ଼ିଶାର ଜନଜୀବନରେ ପରିଚିତ । ଶିକ୍ଷା, ସାହିତ୍ୟ, ସମାଜଶାସ୍ତ୍ର, ମନସ୍ତତ୍ତ୍ୱ ଇତ୍ୟାଦି ବହୁ ବୌଦ୍ଧିକ କ୍ଷେତ୍ର ଉପରେ ତାଙ୍କର ଅଧ୍ୟୟନ ଓ ରାଶି ରାଶି ପୁସ୍ତକ ରହିଛି । ତାଙ୍କର ଲେଖା ଓଡ଼ିଶାର ସବୁସ୍ତରର ପାଠକମାନଙ୍କ ପ୍ରାଣକୁ ସ୍ପର୍ଶ କରିଥିବା ମନେହୁଏ । ତାଙ୍କର ଅଭିନବ ଶୈଳୀ, ଶାଣିତ ବ୍ୟଙ୍ଗ, ସୃଜନାତ୍ମକ ଅଭିବ୍ୟକ୍ତି, ଶବ୍ଦଯୋଜନାରେ ନୂତନତ୍ୱ ଓ ସମାଜ ପାଇଁ ବାର୍ତ୍ତା ତାଙ୍କ ଲେଖାର ବୈଶିଷ୍ଟ୍ୟ । ଏତଦ୍‌ବ୍ୟତୀତ ବିଶ୍ୱର କେତେକ ବିଶିଷ୍ଟ ଲେଖକଙ୍କର ସୃଜନାତ୍ମକ କୃତିମାନଙ୍କୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି । ଶ୍ରୀଅରବିନ୍ଦଙ୍କର ବହୁ ଜଟିଳ ପୁସ୍ତକକୁ ଓ ଶ୍ରୀମାଙ୍କର ସମସ୍ତ କୃତି ଓଡ଼ିଆରେ ଅନୁବାଦ କରିବାରେ ସେ ସମର୍ଥ ହୋଇଛନ୍ତି । ତାଙ୍କର ଅନେକ ଅନୁବାଦ ଦ୍ୱାରା ଓଡ଼ିଆ ସାହିତ୍ୟ ପୁଷ୍ଟହୋଇଛି । ବହୁ ଦେଶ ଯାଇଛନ୍ତି, ବହୁ ଭାଷାରେ ପାରଦର୍ଶିତା ଲାଭ କରିଛନ୍ତି ଓ ପୃଥିବୀର କେତେକ ଉନ୍ନତ ରାଷ୍ଟ୍ରର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ  କରିଛନ୍ତି । ବିଭିନ୍ନ ଦେଶ ବିଷୟରେ ସେ ଯେଉଁ ସବୁ ଭ୍ରମଣ କାହାଣୀମାନ ଲେଖିଛନ୍ତି ତାହା ମଧ୍ୟ ଓଡ଼ିଆ ଭ୍ରମଣ ସାହିତ୍ୟକୁ ପୁଷ୍ଟ କରିଛି । ଏହା ସହିତ ଡାଏରୀ ସାହିତ୍ୟ ଦିଗଟିଏ ତାଙ୍କ ଲେଖା ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଛି । ସେ ପ୍ରତିଦିନ ନିଜର ଅନୁଭବ ଓ ଭାବନାକୁ ନେଇ ଯେଉଁ ଡାଏରୀମାନ ଲେଖିଛନ୍ତି ତାହା 'ରୋହିତର ଡାଏରୀ' ଭାବେ ୨୩ଖଣ୍ଡରେ ପ୍ରକାଶିତ ହୋଇଛି । ଏହା ସହିତ ଚମ୍ପତିମୁଣ୍ଡାରେ ଶିକ୍ଷକତାବେଳେ ସେ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଯେଉଁ ଭାବଗର୍ଭିକ ଓ ପ୍ରେରଣାଦାୟକ ବାର୍ତ୍ତାସବୁ ଲେଖିଛନ୍ତି ତାହା 'ଜୀବନ ବିଦ୍ୟାଳୟ' ଓ 'ଜଙ୍ଗଲ ଚିଠି' ଭାବେ ପ୍ରକାଶିତ ହୋଇଛି । ଜଣେ ଶିକ୍ଷକର ସ୍ୱପ୍ନ, ସାଧନା ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧର ଯେଉଁ ବାର୍ତ୍ତା ସେ ପୁସ୍ତକମାନଙ୍କରେ ରହିଛି ତାହାର ଏକ ସର୍ବକାଳୀନ ମୂଲ୍ୟ ରହିଥିବା ମନେ ହୁଏ । ତାଙ୍କର ଆତ୍ମଜୀବନୀ 'ମିତ୍ରସ୍ୟ ଚକ୍ଷୁସା' ରେ ତାଙ୍କ ଜୀବନର

ବୌଦ୍ଧିକ ଉତ୍ତରଣ ଓ ବିଶ୍ୱଦୃଷ୍ଟିର ନାନା ଦିଗନ୍ତ ରହିଛି । ବହୁ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଦାର୍ଶନିକ, ବୁଦ୍ଧିଜୀବୀ, ଶିକ୍ଷାବିତ୍ ଓ ମାନବବାଦୀଙ୍କ ସହ ତାଙ୍କର ସଂପର୍କର ଯେଉଁ ଚିତ୍ର ରହିଛି, ଯେଉଁମାନେ ତାଙ୍କ ଜୀବନଦୃଷ୍ଟିକୁ ପ୍ରଭାବିତ କରିଛନ୍ତି, ତାହା ମଧ୍ୟ ଓଡ଼ିଶାର ପାଠକମାନଙ୍କ ପାଇଁ ପ୍ରେରଣାଦାୟକ ହୋଇ ରହିଛି । ଅଳ୍ପ କବିତା ଲେଖିଛନ୍ତି ଓ ଶିଶୁ ସାହିତ୍ୟକୁ ମଧ୍ୟ ଅବଦାନ ଦେଇଛନ୍ତି । ଓଡ଼ିଶାର କେତେକ ସମ୍ବାଦପତ୍ରରେ ବର୍ଷ ବର୍ଷ ଧରି ସେ ସାପ୍ତାହିକ ସ୍ତମ୍ଭକାର ଭାବେ ନିୟମିତ ଯେଉଁ ଲେଖାମାନ ଲେଖିଛନ୍ତି ସେସବୁ ବି ସଙ୍କଳିତ ହୋଇ କେତେ ଖଣ୍ଡରେ ପ୍ରକାଶିତ ହୋଇଛି । ସାମାଜିକ ସ୍ତରର ବିଭିନ୍ନ ପ୍ରସଙ୍ଗ ଉପରେ ସେ ନିଜର ଭାବଗର୍ଭକ ବିଚାର ପ୍ରକାଶ କରି ଆସିଛନ୍ତି । ତାଙ୍କର ସାରସ୍ୱତ ସାଧନା ଓ ଅବଦାନ ପାଇଁ ଓଡ଼ିଶା ଓ ଜାତୀୟ ସ୍ତରର କେତେକ ପୁରସ୍କାର ପାଇଛନ୍ତି । ତେବେ ଏହା ତାଙ୍କ ପାଇଁ ସେପରି କିଛି ବଡ଼ ଗୌରବର କଥା ନୁହେଁ, ବରଂ ଜୀବନସାରା ଜଣେ ସୃଜନଶୀଳ ସ୍ରଷ୍ଟା ଭାବରେ ସମାଜକୁ କିଛି ନୂତନ ବାର୍ତ୍ତା ଓ ଦିଗଦର୍ଶନ ଦେବାକୁ ସେ ପ୍ରୟାସ କରିଛନ୍ତି । ତାଙ୍କର ପ୍ରୟାସ ଦ୍ୱାରା ଓଡ଼ିଆ ଭାଷାର କେତେକ ବିଭାଗ ବେଶ୍ ଋଦ୍ଧିମନ୍ତ ହୋଇଛି । ସେ ବହୁ ବ୍ୟକ୍ତିଙ୍କୁ ପ୍ରଭାବିତ କରିଛନ୍ତି ଓ ତାଙ୍କ ଦ୍ୱାରା ପ୍ରେରଣା ପାଇ କେତେକ ସାହିତ୍ୟ ସାଧନାରେ ବ୍ରତୀ ହୋଇଛନ୍ତି । ତାଙ୍କର ବିଦାୟ ଅନେକ ଗୁଣଗ୍ରାହୀ ପାଠକ ଓ ଅନୁଗାମୀଙ୍କ ଚକ୍ଷୁକୁ ଲୋତକାପ୍ଲୁତ କରିଛି । ସମ୍ଭବତଃ ଓଡ଼ିଶାର ଜନଜୀବନରେ ଓ ସାହିତ୍ୟ ସାଧନା କ୍ଷେତ୍ରରେ ତାଙ୍କର ସ୍ଥାନ ଅପୂରଣୀୟ ରହିବ ।

କିଶୋର ବୟସରୁ ଚିତ୍ତରଂଜନ ସମାଜ ପାଇଁ ସ୍ୱପ୍ନ ଦେଖିଛନ୍ତି । ରେଭେନ୍ସାରେ ପାଠ ପଢୁଥିବାବେଳେ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ କାରାବରଣ କରିଛନ୍ତି । ଏହା ପରେ ଶାନ୍ତିନିକେତନରେ ଅଧ୍ୟୟନ କରିବାକୁ ଯାଇ ଦର୍ଶନ, ସାହିତ୍ୟ କ୍ଷେତ୍ରରେ ଗଭୀର ଅନୁଶୀଳନର ପରିବେଶ ପାଇଛନ୍ତି । ବହୁ ପ୍ରବୀଣ ଅଧ୍ୟାପକ, ଆନ୍ତର୍ଜାତିକ ବିଦ୍ୱାନଙ୍କ ସହ ସମ୍ବନ୍ଧ ଓ ଉନ୍ନତ ପାଠାଗାର ତାଙ୍କ ଭିତରର ଅନୁସନ୍ଧିତ୍ସା ଓ ସୃଜନଶୀଳତାକୁ ପରିପୁଷ୍ଟ କରିଛି । ଏହା ପରେ ଡେନ୍‌ମାର୍କ ଯାଇ କୋପେନହେଗେନ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନ, ନୃତତ୍ତ୍ୱ ଓ ସମାଜବିଜ୍ଞାନ ଅଧ୍ୟୟନରେ ବ୍ରତୀ ହୋଇଛନ୍ତି । ଏହି ସମୟରେ ବିଭିନ୍ନ ଦେଶ ଭ୍ରମଣ କରିଛନ୍ତି । ବହୁ ଭାଷା ଶିକ୍ଷା କରିଛନ୍ତି, ଅନେକ ପ୍ରବୀଣ ଦାର୍ଶନିକ ଓ ଚିନ୍ତାନାୟକଙ୍କ ସଂସ୍ପର୍ଶରେ ଆସିଛନ୍ତି । ଏହି ଅଧ୍ୟୟନ, ଅନୁସନ୍ଧିତ୍ସା ଓ ଜ୍ଞାନ-ପିପାସା ତାଙ୍କୁ ଜୀବନରେ ଜଣେ ଶିକ୍ଷକ ହେବାର ପ୍ରେରଣା ଦେଇଛି । ଜୀବନରେ ଶିକ୍ଷକତା ଓ ସାରସ୍ୱତ ସାଧନା ହିଁ ତାଙ୍କ ପାଇଁ ସବୁଠାରୁ ବଡ ଆକର୍ଷଣୀୟ ହୋଇଛି । ପଢିବା, ଲେଖିବା ଓ ନିଜର ଜ୍ଞାନକୁ ଶ୍ରଦ୍ଧାଳୁ ବିଦ୍ୟାର୍ଥୀମାନଙ୍କୁ ବିତରଣ କରିବା ତାଙ୍କ ପାଇଁ ସାର୍ଥକ ଜୀବନର

ମାନଦଣ୍ଡ ହୋଇଉଠିଛି । ଏହାରି ଭିତରେ ସେ ଜଣେ ସୃଜନଶୀଳ ସାଧକ ଓ ଜିଜ୍ଞାସୁ ଜ୍ଞାନ-ତପସ୍ୱୀ ହୋଇ ଜୀବନ ଅତିବାହିତ କରିଛନ୍ତି ।

ବଞ୍ଚିବାର ସାର୍ଥକତା କେଉଁଥିରେ ନିହିତ ? ଏହି ପ୍ରଶ୍ନଟି ଅନେକାଂଶରେ ଏକ ଦାର୍ଶନିକ ପ୍ରଶ୍ନ । ତେବେ ବାସ୍ତବ ଜୀବନରେ ଅନେକ ବ୍ୟକ୍ତି ନିଜର ଉପାର୍ଜନ, ପାରିବାରିକ ଜୀବନ ଓ ସୁଖ କାମନାରେ ବ୍ରତୀ ହୁଅନ୍ତି, କିନ୍ତୁ ସମାଜରେ ଅଳ୍ପ କେତେକ ବ୍ୟକ୍ତି ବ୍ୟକ୍ତିଗତ କାମନା ବାସନାର ଊର୍ଦ୍ଧ୍ୱକୁ ଯାଇ ଏକ ବୃହତ୍ତର ସମାଜ ପ୍ରତି ନିଜର କାର୍ଯ୍ୟରେ, ବିଚାରରେ ଓ ପ୍ରତିବଦ୍ଧତାରେ ସଂପୃକ୍ତି ପ୍ରକାଶ କରନ୍ତି । ଏକ ବୃହତ୍ତର ପରିବେଶ ସହିତ ହୃଦୟର ବନ୍ଧନକୁ ଦୃଢ଼ କରନ୍ତି ଓ ସମାଜର ସାମୂହିକ ମଙ୍ଗଳ ସାଧନ ପାଇଁ ଅନ୍ତରର ଶ୍ରଦ୍ଧା ପ୍ରକାଶ କରନ୍ତି । ଏକ ପରିବ୍ୟାପ୍ତ ସାମାଜିକ ଚେତନା ଭିତରେ ଜୀବନର ସାର୍ଥକତାକୁ ଅନୁଭବ କରନ୍ତି । ସୃଜନଶୀଳତା ଓ ମାନବିକ ସଂପ୍ରୀତିଜନିତ ସମ୍ବେଦନଶୀଳତା ତାଙ୍କ ପାଇଁ ସାର୍ଥକ ଜୀବନର ମାନଦଣ୍ଡ ହୋଇଉଠେ । ଏହା ହିଁ ତାଙ୍କର ଜୀବନ ଦର୍ଶନ ହୋଇଯାଏ । ଚିତ୍ତରଞ୍ଜନଙ୍କର ଏହିପରି ଏକ ଜୀବନ ଦର୍ଶନ ରହିଥିବା ମନେହୁଏ ।

ଭାରତବର୍ଷର ତିନିଜଣ ଚିନ୍ତାନାୟକଙ୍କର ବିଚାର ତାଙ୍କୁ ଗଭୀର ପ୍ରଭାବିତ କରିଥିବା ମନେହୁଏ । ଛାତ୍ର ଜୀବନରେ ସେ ଗାନ୍ଧୀଙ୍କର ପ୍ରେରଣାରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ସହ ଗାନ୍ଧୀ ଓ ସେ ଯୁଗର ଜନନାୟକମାନଙ୍କର ସାମାଜିକ କ୍ରାନ୍ତିର ଯେଉଁ ସ୍ୱପ୍ନ ରହିଥିଲା ତାହା ତାଙ୍କୁ ବେଶ୍ ପ୍ରଭାବିତ କରିଥିଲା । ଅହିଂସ କ୍ରାନ୍ତି ଦ୍ୱାରା ସାମାଜିକ ପୁନର୍ଗଠନ ଜରିଆରେ ସମାଜରେ ସମତା, ଭ୍ରାତୃତ୍ୱଭାବ ଓ ମାନବିକ ମର୍ଯ୍ୟାଦା ସୃଷ୍ଟି ପାଇଁ ସେ ସ୍ୱପ୍ନ ବିଭୋର ହୋଇଥିଲେ । ଶାନ୍ତିନିକେତନରେ ଜଣେ ତପସ୍ୱୀ ବିଦ୍ୟାର୍ଥୀ ଭାବେ ସେ କବିଗୁରୁ ରବୀନ୍ଦ୍ରନାଥଙ୍କ ଆଦର୍ଶରେ ଗଭୀର ଅନୁପ୍ରାଣିତ ହୋଇଥିଲେ । କବିଗୁରୁଙ୍କର ଶିକ୍ଷାରେ ନୂତନ ପ୍ରୟୋଗ ଓ ସାହିତ୍ୟ ମାଧ୍ୟମରେ ଜୀବନର ସୁନ୍ଦରତମ ଅନୁଭୂତି ତାଙ୍କୁ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରକୁ ଗଭୀର ଭାବେ ଆକର୍ଷିତ କରିଥିଲା । ଏହା ପରେ ପରବର୍ତ୍ତୀ ଜୀବନରେ ସେ ଯୋଗୀ ଓ ରହସ୍ୟବାଦୀ ଶ୍ରୀ ଅରବିନ୍ଦଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଶ୍ରୀଅରବିନ୍ଦ ଚେତନାର ଯେଉଁ ରୂପାନ୍ତର ଓ ବିବର୍ତ୍ତନର ବାର୍ତ୍ତା ଦେଇଛନ୍ତି ତାହା ଚିତ୍ତରଞ୍ଜନଙ୍କୁ ଅଧିକ ସ୍ୱପ୍ନବିଭୋର କରିଛି ।

ସେହିପରି ପାଶ୍ଚାତ୍ୟ ଚିନ୍ତାମାନସ ମଧ୍ୟ ତାଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି । ପାଶ୍ଚାତ୍ୟ ଭୂଖଣ୍ଡର ବହୁ ପ୍ରଜ୍ଞାବାନ୍, ଯଶସ୍ୱୀ ଚିନ୍ତାନାୟକଙ୍କର ବିଚାର ତାଙ୍କର ଅନ୍ତର୍ଚେତନାକୁ ସ୍ପର୍ଶ କରିଛି । ନିଷ୍ପାପ ଜୀବନର ଅଧିକାରୀ, ତ୍ୟାଗୀ, ଭୂମାବାଦୀ

ସିନୋଜାଙ୍କର ଜୀବନ ଓ ଦର୍ଶନ ଚିତ୍ତରଞ୍ଜନଙ୍କର ପ୍ରାଣକୁ ସ୍ପର୍ଶ କରିଛି । ସିନୋଜାଙ୍କ ପରି ଆଲବର୍ଟ ସ୍ୱାଇଦ୍‌ଜରଙ୍କୁ ଚିତ୍ତରଞ୍ଜନ ଆଦର୍ଶ ଭାବରେ ନେଇଛନ୍ତି । ଯେଉଁମାନେ ଦର୍ଶନକୁ ଏକ ମୂଲ୍ୟବୋଧ ଭାବେ ନେଇ ବୃହତ୍ତର ପୃଥିବୀର ମଙ୍ଗଳ ପାଇଁ ଜୀବନକୁ ଉତ୍ସର୍ଗ କରିଛନ୍ତି, ସେହିମାନଙ୍କର ଚିନ୍ତାଧାରାରେ ସେ ଅଧିକ ପ୍ରଭାବିତ ହୋଇଛନ୍ତି । ସେହିପରି ଇସ୍ରାଏଲର ବିଶିଷ୍ଟ ମନୋବିଜ୍ଞାନୀ ଓ ମାନବବାଦୀ- ଦର୍ଶନର ପ୍ରବକ୍ତା ମାର୍ଟିନ ବୁବରଙ୍କର ଋଷିପ୍ରତିମ ଚରିତ୍ର, ଶାଣିତ ପଜ୍ଞା ଓ ବିଶ୍ୱଦୃଷ୍ଟି ଚିତ୍ତରଞ୍ଜନଙ୍କ ଜୀବନଦୃଷ୍ଟିରେ ଗଭୀର ପ୍ରଭାବ ସୃଷ୍ଟି କରିଛି । ପାଶ୍ଚାତ୍ୟ ଦେଶମାନଙ୍କର ବହୁ ପ୍ରବୀଣ ଚିନ୍ତାନାୟକ, ମାନବ ଦରଦୀ ଓ ବିଶ୍ୱ ଭ୍ରାତୃତ୍ୱର ପ୍ରବକ୍ତାମାନଙ୍କର ସର୍ଜନାତ୍ମକ ସୃଷ୍ଟି ଚିତ୍ତରଞ୍ଜନଙ୍କର ଜୀବନଦୃଷ୍ଟିକୁ ନାନା ଭାବରେ ପ୍ରଭାବିତ କରିଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡର ବହୁ ବିଦ୍ୱାନ, ମନୀଷୀଙ୍କର ସର୍ଜନାତ୍ମକତା ଚିତ୍ତରଞ୍ଜନଙ୍କର ବୌଦ୍ଧିକ ଅନ୍ତର୍ଦୃଷ୍ଟିକୁ ନାନା ଭାବରେ ପରିପୁଷ୍ଟ କରିଛି । ଏସବୁ ମଧ୍ୟଦେଇ ବୌଦ୍ଧିକ ଜୀବନ ପ୍ରତି ଅନୁରାଗ ଓ ମାନବିକ ସଂପ୍ରୀତି ପ୍ରତି ଶ୍ରଦ୍ଧା ତାଙ୍କ ଜୀବନର ଆଦର୍ଶ ହୋଇଉଠିଛି ।

ଚିତ୍ତରଞ୍ଜନଙ୍କ ଶିକ୍ଷକ ଜୀବନ ଓ ସ୍ରଷ୍ଟା ଜୀବନର ପରିଧି ଗମ୍ଭୀର ଓ ବିଶାଳ ମନେହୁଏ । ଏକ ଗଭୀର ଜୀବନବୋଧ ଓ ଏକ ଅନ୍ତର୍ଦୃଷ୍ଟି ତାଙ୍କ ସୃଷ୍ଟି ଭିତରେ ଅନୁଭବ କରିହୁଏ । ଏକ ଅନୁପମ ସୃଜନଶୀଳତା, ପରିବ୍ୟାପ୍ତ ସାମାଜିକ ଚେତନା ଓ ବ୍ୟଙ୍ଗାତ୍ମକ ରସିକତା ତାଙ୍କର ଲେଖାରେ ଦେଖିବାକୁ ମିଳେ । ମାନବିକତା ଓ ମଣିଷପଣିଆର ଏକ ଅନ୍ତର୍ନିହିତ ବାର୍ତ୍ତା ବହୁ ପ୍ରବନ୍ଧର ଅନ୍ତଃସ୍ୱର ହେବା ଦେଖାଯାଏ । ତାଙ୍କର କଳାତ୍ମକ ସୃଜନଶୀଳତା ଭିତରେ ମାନବପ୍ରୀତି, ସାମାଜିକ ପ୍ରତିବଦ୍ଧତା, ସମ୍ବେଦନଶୀଳ ହୃଦୟଗ୍ରାହିତା ଓ ଜିଜ୍ଞାସାବୋଧର ଏକ ସମନ୍ୱିତ ଅଭିବ୍ୟକ୍ତି ଦେଖିବାକୁ ମିଳେ । ଆଜି ଚିତ୍ତରଞ୍ଜନ ନାହାନ୍ତି, କିନ୍ତୁ ତାଙ୍କର ସାହିତ୍ୟକୃତି, ମାନବିକ ଅନୁରାଗ ଓ ମହତ୍ତର ଆକାଂକ୍ଷାଗୁଡ଼ିକ ଓଡ଼ିଶାର ସାହିତ୍ୟାକାଶକୁ ବହୁଦିନ ଆଲୋକିତ କରି ରଖିବ । (୨୧.୧.୧୧)



# ଅମାନବିକ ପରମ୍ପରା

ମଣିଷ ପ୍ରତି ମଣିଷର ଦୃଷ୍ଟିଭଙ୍ଗୀ କ'ଣ ହେବା ଉଚିତ ? ଏହି ପ୍ରଶ୍ନଟି ଯେ ଏକ ନୈତିକ ଓ ସାଂସ୍କୃତିକ ପ୍ରଶ୍ନ ଏ ବିଷୟରେ ପୂର୍ବରୁ ଆମେ ଆଲୋଚନା କରିଥିଲେ । ଏହି ପୃଷ୍ଠଭୂମିରେ ଆମ ସାମାଜିକ ଜୀବନ ପ୍ରବାହରୁ ଦୁଇଟି ଘଟଣାର ଅବତାରଣା କରୁଛି ।

କିଛି ଦିନ ତଳେ ଓଡ଼ିଶାରେ ଦଳିତମାନଙ୍କ ଅଧିକାର ସମ୍ପର୍କୀୟ ଏକ ଆଲୋଚନାଚକ୍ରରେ ଜଣେ ସାଂସଦ ଅତ୍ୟନ୍ତ ଭାବବିହ୍ୱଳ ଭାବରେ ତାଙ୍କର ଅନୁସନ୍ଧାନଜନିତ ଏକ ଘଟଣା ବ୍ୟକ୍ତକଲେ । ଓଡ଼ିଶାର ଗାଁଗହଳରେ ଏବେ ବି ଅସ୍ପୃଶ୍ୟତା କିପରି ବଳବତ୍ତର ରହିଛି ଓ ଜାତିବାଦୀ ମାନସିକତା ଆମ ସମାଜରୁ ଦୂର ହୋଇନାହିଁ ତାହା ତାଙ୍କ ବକ୍ତବ୍ୟର ସାରମର୍ମ ଥିଲା । ସାଂସଦ ମହାଶୟ 'ଅଧିକାର' ନାମରେ ଏକ ପାକ୍ଷିକ ପତ୍ରିକା ପ୍ରକାଶ କରନ୍ତି ଓ ଏହି ପତ୍ରିକାରେ ମାନବିକ ଅଧିକାର ଉଲଂଘନଜନିତ କାହାଣୀମାନ ପ୍ରତ୍ୟେକ ସଂଖ୍ୟାରେ ଅନୁସନ୍ଧାନ କରି ପ୍ରକାଶ କରି ଆସୁଛନ୍ତି । ସେଦିନ ସେ ଯେଉଁ ଘଟଣାଟିର ଅବତାରଣା କଲେ ତାହା ହେଉଛି କେନ୍ଦ୍ରାପଡା ଜିଲ୍ଲାର ଗୋଟିଏ ଗ୍ରାମର ଘଟଣା । ଏହି ବିଷୟରେ ବିଭିନ୍ନ ସମ୍ବାଦପତ୍ରରେ ବି ସମ୍ବାଦ ପ୍ରକାଶ ପାଇଥିଲା । ଏକ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ କେନ୍ଦ୍ରାପଡା ଜିଲ୍ଲାର ଏକ ନୋଡାଲ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ମଧ୍ୟାହ୍ନ ଭୋଜନ ପରିଚାଳନା ଦାୟିତ୍ୱ ନେଇଥିଲା । ପୂର୍ବ ପାଚିକା ଯିବାପରେ ସେଠାରେ ଦୁଇଜଣ ମହିଳାଙ୍କୁ ପାଚିକା କାର୍ଯ୍ୟ ତୁଲାଇବା ପାଇଁ ସ୍ୱୟଂସହାୟିକା ଗୋଷ୍ଠୀ ବିଡିଓଙ୍କ ସ୍ୱୀକୃତି ନେଇ ରଖିଥିଲେ । ତେବେ ସେମାନେ ଦଳିତବର୍ଗର ହୋଇଥିବାରୁ ଗ୍ରାମର କେତେକ ଜାତିବାଦୀ ବ୍ୟକ୍ତି ତାହାକୁ ବିରୋଧ କଲେ ଓ ଦଳିତ ମହିଳା ରୋଷେଇ କଲେ ଗାଁର ସବର୍ଣ୍ଣ ପିଲାମାନେ ଖାଦ୍ୟ ଖାଇବେ ନାହିଁ ବୋଲି ଅଡ଼ି ବସିଲେ । ଏପରିକି ପାଚିକାମାନଙ୍କୁ ସ୍କୁଲରେ ପୂରାଇ ନଦେବା, ତାଙ୍କୁ ତାଲା ପକାଇଦେବା ପରି ଘଟଣା ସୃଷ୍ଟି କଲେ । ସ୍ୱୟଂସହାୟକ ଗୋଷ୍ଠୀର ଦାୟିତ୍ୱରେ ଥିବା ସମ୍ପାଦକ, ଅନ୍ୟ ଜଣେ ଦଳିତ ମହିଳା ଏହି ଅନ୍ୟାୟ ବିରୋଧରେ ସ୍ୱର ଉଠାଇଲେ । ଅସ୍ପୃଶ୍ୟତାଜନିତ ବାଛବିଚାର ବିରୋଧରେ ତାଙ୍କର ପ୍ରତିବାଦ ଯୋଗୁ ପରିସ୍ଥିତି ଏପରି ହେଲା ଯେ, ସେହି ମହିଳା ଜଣକ ସାମାଜିକ ସ୍ତରରେ ନାନା ଅସମ୍ମାନ ଓ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେଲେ । ତାଙ୍କର ସ୍ୱାମୀ ନ ଥିବା ଯୋଗୁ ସେ ଗୋଟିଏ ସ୍ୱେଚ୍ଛାସେବୀ ସଂସ୍ଥାରେ କାମ ଧରି କିଛି

ଉପାର୍ଜନ କରୁଥିଲେ । ସେ ସ୍ଥାନକୁ ଯିବାପାଇଁ ଜାତିବାଦୀ ଲୋକଙ୍କ ଭୟରେ ତାଙ୍କୁ କେହି ଅଟୋରେ ବସାଇଲେ ନାହିଁ । ତାଙ୍କ ବିରୋଧରେ ଜାତିବାଦୀ ଲୋକମାନେ ବିଭିନ୍ନ ପ୍ରକାର କୁତ୍ସାରଟନା କଲେ । ସାମାଜିକ କଟାକ୍ଷ, ଘୃଣା ଓ ଅସହଯୋଗର ସାମ୍ନା କରି ନ ପାରି ଭଦ୍ରମହିଳା ନିଜର ଏକମାତ୍ର କନ୍ୟାକୁ ଛାଡ଼ି ଶେଷରେ ଆତ୍ମହତ୍ୟା କଲେ । ସାଂସଦ ମହାଶୟ ତାଙ୍କ ପତ୍ରିକା 'ଅଧିକାର'ରେ ଏହି ଘଟଣାର ବିସ୍ତୃତ ବିବରଣୀ ପରେ ପ୍ରକାଶ କରିଛନ୍ତି ।

ଦ୍ୱିତୀୟ ଘଟଣାଟି ହେଉଛି କର୍ଣ୍ଣାଟକ ପ୍ରଦେଶର ଦକ୍ଷିଣ କନ୍ନଡ଼ ଜିଲ୍ଲାରେ ଥିବା ସୁବ୍ରମଣ୍ୟ ମନ୍ଦିରର ଘଟଣା । ସେହି ମନ୍ଦିରର ଏକ ପରମ୍ପରା ହେଉଛି ଯେ ବର୍ଷର ଗୋଟିଏ ପର୍ବରେ ମନ୍ଦିରରେ ସ୍ୱତନ୍ତ୍ର ପୂଜା ଅନୁଷ୍ଠିତ ହୁଏ ଓ ଏହାପରେ ପୂଜକ ଗୋଷ୍ଠୀର ଲୋକମାନେ କଦଳୀ ପତ୍ରରେ ପ୍ରସାଦ ସେବନ କରନ୍ତି । ସେହି ଉଚ୍ଛିଷ୍ଟ କଦଳୀପତ୍ର ଉପରେ ଅନ୍ୟମାନେ ଗଡ଼ିଲେ ସେମାନଙ୍କର ରୋଗ ଭଲ ହେବ ବୋଲି ଏକ ଲୋକବିଶ୍ୱାସ ରହିଛି । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଲୋକମାନେ, ପ୍ରାୟତଃ ଦଳିତ ଶ୍ରେଣୀ ଲୋକମାନେ, ସେମାନଙ୍କର ରୋଗ ଭଲହେବ ବୋଲି ଭାବି ଆସି ସେହି ଉଚ୍ଛିଷ୍ଟ ପତ୍ର ଉପରେ ଗଡ଼ନ୍ତି । ଚଳିତ ବର୍ଷ ପ୍ରଥମଥର ପାଇଁ ଏହି ପ୍ରଥା ଓ ଏଥିପାଇଁ କରାଯାଉଥିବା ପୂଜା ବନ୍ଦ କରିବାକୁ କେତେକ ପ୍ରଗତିଶୀଳ ବ୍ୟକ୍ତି ପ୍ରତିବାଦ କଲେ । ସେମାନେ ସରକାର, ମନ୍ଦିର କର୍ତ୍ତୃପକ୍ଷ ଓ ମଠାଧୀଶମାନଙ୍କୁ ଏହି ଅବୈଜ୍ଞାନିକ ପରମ୍ପରା ବନ୍ଦ କରିବାକୁ ନିବେଦନ କଲେ । ତେବେ ମନ୍ଦିର ପରିଚାଳକମାନେ ଚାରିଶହ ବର୍ଷର ଏହି ପରମ୍ପରା ବନ୍ଦ ହୋଇପାରିବ ନାହିଁ ବୋଲି ଜିଦ୍ ଧରିଲେ । ପ୍ରଗତିଶୀଳ ଲୋକମାନେ ପୂଜାଦିନ ସେଠାରେ ଧାରଣା ଦେବାକୁ ପୋଲିସର ଅନୁମତି ଲୋଡ଼ିଲେ । ଗଣ୍ଡଗୋଳର ଆଶଙ୍କା କରି ପୋଲିସ ଅନୁମତି ଦେଲେ ନାହିଁ ଓ ପରମ୍ପରା ଅନୁଯାୟୀ ସେହି ସ୍ୱତନ୍ତ୍ର ପୂଜା ଓ ଉତ୍ସବ ଅନୁଷ୍ଠିତ ହେଲା । ତେବେ ଏହାକୁ ଦୂରଦର୍ଶନର କେତେକ ଚାନେଲ ପ୍ରସାରଣ କଲେ ଓ ବିଭିନ୍ନ ସମ୍ବାଦପତ୍ରରେ ଏହାର ବିବରଣୀ ବି ପ୍ରକାଶ ପାଇଲା । 'ଦି ହିନ୍ଦୁ' ସମ୍ବାଦପତ୍ରରେ (୨୦.୧୨.୧୦) ବିଶିଷ୍ଟ ସ୍ତମ୍ଭକାର ଏସ. ବିଶ୍ୱନାଥନ ଏହି ଘଟଣାକୁ ନେଇ ଏକ ଲେଖା ପ୍ରକାଶ କରିଛନ୍ତି । ତେବେ ଭାରତବର୍ଷର ଜଣେ ମୁଖମନ୍ତ୍ରୀ ଦୂରଦର୍ଶନରୁ ଏହି ଘଟଣା ଦେଖି ଏହା ଦଳିତମାନଙ୍କ ମର୍ଯ୍ୟାଦା ହାନିକାରକ କହି ଏହାକୁ ତୁରନ୍ତ ବନ୍ଦ କରିବାକୁ କହିଛନ୍ତି । ଏସବୁ ସତ୍ତ୍ୱେ ଏହି ପ୍ରକାରର ଅବୈଜ୍ଞାନିକ ଓ ଅମାନବିକ ବିଶ୍ୱାସ ଧାର୍ମିକ ପରମ୍ପରା ଆଳରେ ଆମ ସମାଜରେ ପାଳିତ ହେଉଛି ।

ଏହି ଦୁଇଟି ଘଟଣା ଆମ ସାମାଜିକ ଜୀବନରେ ରହିଥିବା ରାଶି ରାଶି ଅପସଂସ୍କୃତି, ଅନ୍ଧବିଶ୍ୱାସ ଓ ଅମାନବିକତାର ପ୍ରତୀକ ମାତ୍ର । ଆମ ସାମାଜିକ ଜୀବନ କେଉଁ ସ୍ତରର

ରହିଛି ? ଆମର ପରମ୍ପରାଜନିତ ଧର୍ମବିଶ୍ୱାସ ଓ ମଣିଷ ପ୍ରତି ଦୃଷ୍ଟିଭଙ୍ଗୀର ମାନ ଆଜିର ଯୁଗରେ ଏପରି ନିମ୍ନଗାମୀ ହୋଇ ରହିଛି କାହିଁକି ? ସଭ୍ୟତାର ଆଲୋକ କାହିଁକି ଆମ ଜନଜୀବନରେ ସର୍ବବ୍ୟାପୀ ହୋଇପାରୁନାହିଁ ? ହୁଏତ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେଲେ ଏକ ବିରାଟ ପୋଥି ହେବ । ଦାରିଦ୍ର୍ୟ, ଅଶିକ୍ଷା, ପରମ୍ପରା ପ୍ରତି ଅହେତୁକ ଶ୍ରଦ୍ଧା, ଜାତିବାଦୀ ସାମାଜିକ ବ୍ୟବସ୍ଥା ପରି ନାନା କାରଣ ବି ଏହା ପଶ୍ଚାତରେ ରହିଛି । ପୁନଶ୍ଚ ପ୍ରତ୍ୟେକଟି କାରଣ ଅତି ଜଟିଳ ଓ ଏହା ନାନା ସାମାଜିକ, ମନସ୍ତାତ୍ତ୍ୱିକ ଓ ସାଂସ୍କୃତିକ ପ୍ରସଙ୍ଗ ସହିତ ମଧ୍ୟ ସଂଶ୍ଳିଷ୍ଟ । ଆମ ସମାଜ ଯୁଗ ଯୁଗ ଧରି ଏକ ବିଭାଜିତ ସମାଜ ହୋଇ ରହିଛି । ଜାତିଆଣ ମାନସିକତା ଯୁଗ ଯୁଗ ଧରି ଭାରତୀୟ ଜନଜୀବନକୁ ଭାଗ ଭାଗ କରି ଆସିଛି । ଜାତିର ସିଡ଼ି ଉପରେ ରହିଥିବା ଲୋକମାନେ ଗୋଟିଏ ବ୍ୟବସ୍ଥାରେ ସମ୍ମାନିତ ଓ ସୁରକ୍ଷିତ ହୋଇ ରହିଥିବା ହେତୁ ପରମ୍ପରାର ଦ୍ୱାହି ଦେଇ ନାନା କୁସଂସ୍କାରକୁ ସମାଜରେ ପ୍ରସାର କରିଆସିଛନ୍ତି । ତେବେ ପ୍ରହେଳିକାର ବିଷୟ ଯେଉଁମାନେ ଗୋଟିଏ ବ୍ୟବସ୍ଥାରେ ଶୋଷିତ ହୋଇଛନ୍ତି, ସେମାନଙ୍କର ମାନସିକତାରେ ପରମ୍ପରା ପ୍ରତି ଅହେତୁକ ବିଶ୍ୱାସ ମଧ୍ୟ ରହିଛି । ସ୍ୱାଭିମାନ, ଆତ୍ମସମ୍ମାନ, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟବୋଧ ନେଇ ସଚେତନତା ସେମାନଙ୍କ ଭିତରେ ପ୍ରବେଶ କରିନାହିଁ । ଦାରିଦ୍ର୍ୟ ଓ ଅଶିକ୍ଷା ହିଁ ସେମାନଙ୍କୁ ନ୍ୟୂନ କରି ରଖିଛି । ଯେଉଁ ମୁଷ୍ଟିମେୟ ବ୍ୟକ୍ତି ଶିକ୍ଷା ଓ ସଂସ୍କାରିତ ଚେତନା ଭିତରକୁ ଆସିଛନ୍ତି ସେମାନେ ପ୍ରଚଳିତ ପରାମ୍ପରା ଯେତେ ଅମାନବିକ ହେଲେ ମଧ୍ୟ ତାହାକୁ ଦୂର କରିବାକୁ ଅସହାୟ ହେଉଛନ୍ତି । ସାମାଜିକ ଚାପର ବଶବର୍ତ୍ତୀ ହୋଇ ମଧ୍ୟ ସେମାନେ ବି ପ୍ରଚଳିତ ବ୍ୟବସ୍ଥା ସହ ନିଜକୁ ମିଶାଇବାକୁ ବାଧ୍ୟ ହେଉଛନ୍ତି । ସାମାଜିକ ଦୌରାତ୍ମ୍ୟକୁ ସାମ୍ନାକରି ନପାରିଲେ କେହି ସ୍ୱାଭିମାନୀ ମଣିଷ ଆତ୍ମହତ୍ୟା କରୁଛନ୍ତି । ଜଣେ ମଣିଷ ଭାବେ ଅନ୍ୟଜଣେ ମଣିଷକୁ କିପରି ଗ୍ରହଣ କରିବା ଉଚିତ- ପ୍ରଶ୍ନଟି ବିଷୟରେ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବା ପାଇଁ ଅନେକ ବାଟ ଯିବାକୁ ରହିଛି । ଯେହେତୁ ଏହି ସଚେତନତା ଆମ ସମାଜରେ ଦୃଢ଼ ଭିତ୍ତି ନେଇନାହିଁ, ତେଣୁ ସାମାଜିକ ବିକାଶଧାରାକୁ ଆଗକୁ ନେବାକୁ ହେଲେ ଏହା ଉପରେ ଗଭୀର ଚିନ୍ତନର ଆବଶ୍ୟକତା ରହିଛି । ଯେଉଁଠି ମଣିଷ ପ୍ରତି ମଣିଷର ଦୃଷ୍ଟିଭଙ୍ଗୀ ଏପରି ଆମାନବିକ ହୋଇ ରହିଥାଏ ସେଠାରେ ସଂସ୍କୃତିର ଅବକ୍ଷୟ ହୁଏ । ସାଂସ୍କୃତିକ ଅବକ୍ଷୟର ନାନା ଦିଗନ୍ତପ୍ରସାରୀ ନକାରାତ୍ମକ ପ୍ରଭାବ ରହିଥାଏ । କହିବା ନିଷ୍ପ୍ରୟୋଜନ ଯେ ଆମର ଏହି ସାଂସ୍କୃତିକ ଅବକ୍ଷୟ ଯୁଗଯୁଗ ଧରି ଆମ ସମାଜକୁ ଓ ଏପରିକି ଅର୍ଥନୀତିକୁ ନ୍ୟୂନ କରି ରଖିଛି । ସମାଜରେ ମୁଷ୍ଟିମେୟ ଲୋକଙ୍କ ଭିତରେ ଜାତିବାଦୀ ଉଗ୍ରମନ୍ୟତା ଯେପରି ରହିଛି, ଠିକ୍ ସେହିପରି ଅନ୍ୟମାନଙ୍କ ମନରେ ହୀନମନ୍ୟତା ହିଁ ରହିଛି । ତେବେ ଉଗ୍ରମନ୍ୟତା ଭିତରେ ଥିବା ଲୋକମାନେ ଅଧିକ

ସୁଯୋଗର ସ୍ଥିତିରେ ରହିଛନ୍ତି । ସାମାଜିକ ସମ୍ମାନ ଓ ଆର୍ଥିକ ନିରାପତ୍ତା ଅଭାବରେ ଅଗଣିତ ବ୍ୟକ୍ତି ହୀନମନ୍ୟତାର ଶିକାର ହୋଇ ଆସିଛନ୍ତି ।

ଏହି ସାମାଜିକ ସ୍ଥିତିର ପରିବର୍ତ୍ତନ ପାଇଁ ସାମାଜରେ ଏକ ସାଂସ୍କୃତିକ ଆଲୋଡ଼ନ ଆଣିବା ଅବଶ୍ୟକ ମନେହୁଏ । ମଣିଷ ପ୍ରତି ସାଖ୍ୟ ଓ ସହୃଦୟତାର ଦୃଷ୍ଟିକୋଣଟି ଯେ ସଭ୍ୟ ଜୀବନର ମାନଦଣ୍ଡ ଏହି ବିଚାରକୁ ସାମାଜରେ ବ୍ୟାପକ କରିବାକୁ ହେଲେ ଶିକ୍ଷା ଓ ଗଣମାଧ୍ୟମର ଏକ ପ୍ରମୁଖ ଭୂମିକା ଥିବା ମନେହୁଏ । ମାନବବାଦୀ ଜୀବନଦୃଷ୍ଟି, ବୈଜ୍ଞାନିକ ବିଚାରବୋଧ ଓସାମାଜିକ ନ୍ୟାୟ ପରି ମୂଲ୍ୟଚୟକୁ ସବୁ ସ୍ତରରେ ଗୁରୁତ୍ୱ ଦିଆଯାଇ ଯଦି ପ୍ରସାର କରାଯାଏ, ତେବେ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ହୋଇପାରିବ । ଏ ସବୁର ଅଭାବରେ ସମାଜର ଭୌତିକ ବିକାଶ ସତ୍ତ୍ୱେ ଜୀବନଦୃଷ୍ଟି ନ୍ୟୁନ ହୋଇ ରହିବ ।

ମାନବବାଦୀ ଜୀବନଦୃଷ୍ଟି, ବୈଜ୍ଞାନିକ ବିଚାରବୋଧ ଓ ସାମାଜିକ ନ୍ୟାୟ ପରି ମୂଲ୍ୟଚୟକୁ ସବୁ ସ୍ତରରେ ଗୁରୁତ୍ୱ ଦିଆଯାଇ ଯଦି ପ୍ରସାର କରାଯାଏ, ତେବେ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ହୋଇପାରିବ । ଏ ସବୁର ଅଭାବରେ ସମାଜର ଭୌତିକ ବିକାଶ ସତ୍ତ୍ୱେ ଜୀବନଦୃଷ୍ଟି ନ୍ୟୁନ ହୋଇ ରହିବ । (୨.୨.୧୧)



# ଉତ୍ତମ ଜୀବନ

ଉତ୍ତମ ଜୀବନ ବା ଗୁଡ୍ ଲାଇଫ କାହାକୁ କୁହାଯାଏ ? ଜୀବନର ଶ୍ରେୟ ବା ମୂଲ୍ୟ କେଉଁଥିରେ ନିହିତ ? ବ୍ୟକ୍ତି ଉତ୍ତମ ଜୀବନ କିପରି ବଞ୍ଚିପାରିବ ? ଏହି ପ୍ରଶ୍ନ ଗୁଡ଼ିକ ଉପରେ ଦାର୍ଶନିକମାନେ, ଧର୍ମ ପ୍ରବକ୍ତାମାନେ, ସୃଜନଶୀଳ ସାହିତ୍ୟିକମାନେ, ବୈଜ୍ଞାନିକମାନେ ଗଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ଉତ୍ତମ ଜୀବନର ସଂଜ୍ଞା, ସ୍ୱରୂପ ଓ ଉପଯୋଗିତା ବିଷୟରେ ଅସଂଖ୍ୟ ସାହିତ୍ୟ ସୃଷ୍ଟି ହୋଇଛି । ତଥାପି ମଧ୍ୟ ଏହା ଉପରେ ମଣିଷର ଚିନ୍ତନ ଓ ଅନୁଶୀଳନ ସୀମାହୀନ ଭାବେ ଚାଲୁ ରହିଛି । ଏହାର କାରଣ ହେଉଛି ମଣିଷର ଜୀବନ ବହୁ କ୍ଷେତ୍ରରେ ବେଶ୍ ରହସ୍ୟମୟ ବୋଧ ହୁଏ । ମଣିଷ ଭିତରେ ମହାନୁଭବତା ଯେପରି ରହିଛି ସେହିପରି ସ୍ୱାର୍ଥପରତା ଓ ପାଶବିକତା ମଧ୍ୟ ରହିଛି । କେତେକ ବ୍ୟକ୍ତି ନିଜ ଜୀବନକୁ ଅନ୍ୟର ହିତ ପାଇଁ ଉତ୍ସର୍ଗ କରିବା ଯେପରି ଦେଖାଯାଏ, ସେହିପରି ଅନ୍ୟ କେତେକ ବ୍ୟକ୍ତି ଅନ୍ୟ ଉପରେ ଦୁଃଖର ଝଡ ବୁହାଇ ଦେଇ ଆନନ୍ଦ ଲାଭ କରିବା ବି ଦେଖାଯାଏ । ମଣିଷ ସ୍ୱଭାବରେ ସ୍ନେହ, ପ୍ରୀତି, ମମତା, ସମଭାଗିତା ଯେପରି ଦେଖାଯାଏ ସେହିପରି ହିଂସା, ପ୍ରତିହିଂସା, ବର୍ବରତା ଓ ଅମାନବିକତା ବି ଦେଖାଯାଏ । ଏହି ବିରୋଧାଭାସ ପୃଷ୍ଠଭୂମିରେ 'ଉତ୍ତମ ଜୀବନ' ବିଷୟଟି ଯେତେ ସହଜ ମନେହେଲେ ବି ଏହା ଉପରେ ଚିନ୍ତା କରିବା ବେଳେ ଏହାର ନାନା ଦିଗନ୍ତ ବିଚାର ସ୍ତରକୁ ଆସିଥାଏ । ବିଷୟଟିର ବ୍ୟାପକତା ଓ ଜଟିଳତା ଦୃଷ୍ଟିରୁ ଏହାର ଏକ ସାମଗ୍ରିକ ଚିତ୍ର ଦେବା ଆଦୌ ସମ୍ଭବ ନୁହେଁ । ବରଂ ଆମେ ଏହାର କେତୋଟି ସାଧାରଣ ଦିଗକୁ ଅଧିକ ଆଲୋଚନା ପାଇଁ ପାଠକମାନଙ୍କ ଦୃଷ୍ଟିକୁ ଆଣିବାକୁ କିଞ୍ଚିତ ଉଦ୍ୟମ କରିବା ।

କିଛିକୁ ଉତ୍ତମ କହିବାର ଗୋଟିଏ ସାଧାରଣ ଲକ୍ଷଣ ହେଉଛି ଏହା ଉପାଦେୟ । ଯାହା ଉପାଦେୟ ବା ଯାହାର ମୂଲ୍ୟ ରହିଛି ତାହାକୁ ସାଧାରଣତଃ ଉତ୍ତମ କୁହାଯାଏ । ଅନେକ କିଛି ଆମ ପାଇଁ ଉପାଦେୟ କିନ୍ତୁ ସେଗୁଡ଼ିକର ନିଜସ୍ୱ ମୂଲ୍ୟ ବା ସ୍ୱତଃ ମୂଲ୍ୟ ନାହିଁ । ଅର୍ଥ, କ୍ଷମତା, ଜ୍ଞାନ, ନୀରୋଗ ଶରୀର ଆମ ପାଇଁ ଉପାଦେୟ କିନ୍ତୁ ସେଗୁଡ଼ିକର ନିଜସ୍ୱ ମୂଲ୍ୟ ନାହିଁ । ଏସବୁ ଅନ୍ୟ ଲକ୍ଷ୍ୟ ପାଇଁ ଆବଶ୍ୟକ ହେଉଥିବାରୁ ସେସବୁର ପରତଃ ମୂଲ୍ୟ ରହିଛି । ଅର୍ଥର ନିଜସ୍ୱ ମୂଲ୍ୟ ନାହିଁ, କିନ୍ତୁ ଅର୍ଥ ଦ୍ୱାରା ଆମେ ଜୀବନର ଆବଶ୍ୟକତା ପୂରଣ କରିବାକୁ ସମର୍ଥ ହେଉଥିବାରୁ ଏହାର ମୂଲ୍ୟ ରହିଛି, ଯାହାକୁ

ପରତଃ ମୂଲ୍ୟ କହିପାରିବା । ଏକ ନିର୍ଜନ ଦ୍ୱୀପରେ ଥିବା ବ୍ୟକ୍ତି ପାଇଁ ଅର୍ଥର ମୂଲ୍ୟ ନାହିଁ । ଆମ ଦେଶରେ ପାଉଣ୍ଡର ମୂଲ୍ୟ ନାହିଁ ବା ଇଂଲଣ୍ଡରେ ଟଙ୍କାର ମୂଲ୍ୟ ନାହିଁ । ଏହି ପୃଷ୍ଠଭୂମିରେ ଏକ ଉତ୍ତମ ଜୀବନର ସ୍ୱତଃ ମୂଲ୍ୟ ରହିଛି ଓ ଅନ୍ୟ ଏକ ମତରେ ଏହାର ପରତଃ ମୂଲ୍ୟ ରହିଛି । ଯେଉଁମାନେ ଏହାର ପରତଃ ମୂଲ୍ୟ ରହିଛି ବୋଲି କହିବେ ସେମାନଙ୍କର ମତ ହେବ ଯେ ସୁଖ, ଶାନ୍ତି ଓ ଆନନ୍ଦରେ ବଞ୍ଚିବା ହିଁ ଆମର ଲକ୍ଷ୍ୟ ଓ ଏହି ଲକ୍ଷ୍ୟ ପାଇଁ ଏକ ଉତ୍ତମ ଜୀବନ ଆବଶ୍ୟକ । ସୁତରାଂ ଉତ୍ତମ ଜୀବନର ପରତଃ ମୂଲ୍ୟ ରହିଛି କାରଣ ଏହା ଅନ୍ୟ ଲକ୍ଷ୍ୟ ପୂରଣ ପାଇଁ ଅଭିପ୍ରେତ । ସାମାଜିକ ସୁଖ, ଶାନ୍ତି ହିଁ ଆମର କାମ୍ୟ ଓ ସେହି ଲକ୍ଷ୍ୟ ପାଇଁ ଆମେ ଏକ ଉତ୍ତମ ଜୀବନ ଚାହୁଁ । ଆମେ କାହିଁକି ଏକ ଉତ୍ତମ ଜୀବନ ଚାହୁଁ- ଉତ୍ତର ହେବ ସୁଖ, ଶାନ୍ତି ଓ ଆନନ୍ଦରେ ବଞ୍ଚିବାକୁ ଏହା ଚାହୁଁ । କିନ୍ତୁ ସୁଖ, ଶାନ୍ତି ଓ ଆନନ୍ଦରେ କାହିଁକି ବଞ୍ଚିବୁ ତାହାର ଉତ୍ତର ଦେବା ସମ୍ଭବ ନୁହେଁ । ସୁଖ, ଶାନ୍ତି ଓ ଆନନ୍ଦର ଏହି ଦୃଷ୍ଟିରୁ ସ୍ୱତଃ ମୂଲ୍ୟ ରହିଛି । କାରଣ କେହି ଦୁଃଖ ଓ ଅଶାନ୍ତିକୁ ଲକ୍ଷ୍ୟ ଭାବରେ ଜୀବନରେ ଗ୍ରହଣ କରେନାହିଁ । ତେବେ ହୁଏତ ସାମୟିକ ଭାବେ ଏକ ଲକ୍ଷ୍ୟ ଉଦ୍ଦେଶ୍ୟରେ ଜଣେ ଦୁଃଖ ବା କଷ୍ଟବରଣ କରିଥାଏ । ଜଣେ ବିଦ୍ୟାର୍ଥୀ ବୌଦ୍ଧିକ ପ୍ରତିଷ୍ଠା ପାଇଁ ଅକ୍ଳାନ୍ତ ପରିଶ୍ରମ କରିପାରେ, ଜଣେ କୌଣସିଥିରେ ସଫଳତା ପାଇଁ ଦୁଃସାହସିକ କାର୍ଯ୍ୟରେ ବ୍ରତୀ ହୋଇପାରେ । ତେବେ ଲକ୍ଷ୍ୟ ରହେ ଏହାଦ୍ୱାରା ପ୍ରତିଷ୍ଠା, ସଫଳତା ମିଳିବ ଯାହା ଅଧିକ ସୁଖପ୍ରଦ ଓ ଆନନ୍ଦଦାୟକ ସ୍ଥିତିକୁ ନେବ । ତେଣୁ ସାମୟିକ ଭାବେ କଷ୍ଟ ହେଉଥିଲେ ମଧ୍ୟ ଜଣେ ଅନ୍ୟ ଏକ ଲକ୍ଷ୍ୟ ଉଦ୍ଦେଶ୍ୟରେ ଦୁଃଖ କଷ୍ଟ ସହିଥାଏ । କିନ୍ତୁ ଦୁଃଖ କଷ୍ଟ ଓ ଅଶାନ୍ତିକୁ କେହି ଜୀବନର ଲକ୍ଷ୍ୟ ଭାବି ଅଗ୍ରସର ହୁଏନାହିଁ । ଅବଶ୍ୟ କେହି କହିପାରନ୍ତି ନାହିଁ ଯେ, ସୁଖ, ଶାନ୍ତି ଓ ଆନନ୍ଦ ଆମର କାମ୍ୟ ଓ ଏହାର ସ୍ୱତଃ ମୂଲ୍ୟ ରହିଛି । ସେହିପରି ଅନ୍ୟ କେତେକ କଥାର ମଧ୍ୟ ସ୍ୱତଃ ମୂଲ୍ୟ ରହିଛି । ଏହି ପୃଷ୍ଠଭୂମିରେ ଅନ୍ୟ ଦୁଇଟି କଥା ବିଚାରକୁ ନିଆଯାଉ । କେତେକ କହିବେ ଯେ, ସୁଖ, ଆନନ୍ଦ ଓ ଶାନ୍ତିର ଯେପରି ସ୍ୱତଃ ମୂଲ୍ୟ ରହିଛି ସେହିପରି ଜ୍ଞାନର ଜୀବନରେ ସ୍ୱତଃ ମୂଲ୍ୟ ରହିଛି । ମଣିଷର ଜ୍ଞାନ ଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଥାଏ ଓ ଜ୍ଞାନର ଅଭାବରେ ଜୀବନ ଅତ୍ୟନ୍ତ ଯନ୍ତ୍ରଣାଦାୟକ ଓ ଦୁର୍ବିସହ ହୋଇପାରେ । ଦୁଇଶହ, ତିନିଶହ ବର୍ଷ ତଳେ ଯେତେବେଳେ ବିଭିନ୍ନ ରୋଗର କାରଣ ଓ ଚିକିତ୍ସା ଜଣା ନଥିଲା, ସେତେବେଳେ ହଇଜା, ବସନ୍ତ ଓ ପ୍ଲେଗ ପରି ମହାମାରୀ ଆରମ୍ଭ ହେଲେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁମୁଖରେ ପଡୁଥିଲେ । କେହି କୁଷ୍ଠରୋଗରେ ଆକ୍ରାନ୍ତ ହେଲେ ତାଙ୍କ ଜୀବନ ଦୁର୍ବିସହ ହୋଇଉଠୁଥିଲା । ଏହିପରି ଶହେ ଦୁଇଶହ ବର୍ଷ ତଳେ ଯେତେବେଳେ ଗମନାଗମନର ବିକାଶ ହୋଇନଥିଲା କୌଣସି ପ୍ରାକୃତିକ ଦୁର୍ବିପାକ ହେଲେ ଲୋକମାନେ

ନିଃସହାୟ ଭାବେ ମୃତ୍ୟୁମୁଖରେ ପଡୁଥିଲେ । କିନ୍ତୁ ଚିକିତ୍ସା ବିଜ୍ଞାନରେ ଅଗ୍ରଗତି ଓ ଆଧୁନିକ ଗମନାଗମନର ବିକାଶ ଯୋଗୁ ଅନେକ ରୋଗରୁ ମଣିଷ ରକ୍ଷା ପାଇପାରୁଛି ଓ କୌଣସି ପ୍ରାକୃତିକ ବିପର୍ଯ୍ୟୟ ହେଲେ ସହାନୁଭୂତିର ସାହାଯ୍ୟ ଯୋଗୁ ଆସନ୍ନ ମୃତ୍ୟୁରୁ ମଣିଷ ଉଦ୍ଧାର ପାଇବା ସମ୍ଭବ ହେଉଛି । ସେହି ଦୃଷ୍ଟିରୁ ଜ୍ଞାନର ବିକାଶ ସଭ୍ୟତାକୁ ବହୁ ସୁଖ, ନିରାପତ୍ତା ଦେଇପାରିଛି । ଜ୍ଞାନର ବିକାଶ ସଭ୍ୟତାର ଗୁଣାତ୍ମକ ମାନବୃଦ୍ଧିରେ ଯେପରି ସହାୟକ ସେହିପରି ଜ୍ଞାନଲିପ୍‌ସା ଜୀବନର ଏକ ମହତ୍ତର ଅଭୀପ୍‌ସା । ଜ୍ଞାନର ଯେ ସ୍ୱତଃ ମୂଲ୍ୟ ରହିଛି ଏହା କେତେକ ଭାବିଥାନ୍ତି । ଜ୍ଞାନର ସ୍ୱତଃ ମୂଲ୍ୟ ରହିଛି ନା ଜ୍ଞାନ ଉନ୍ନତ ଜୀବନ, ସୁଖଶାନ୍ତି ଓ ଆନନ୍ଦ ପାଇଁ ସାଧନ ମାତ୍ର ତାହା ନେଇ ଦର୍ଶନର ନୀତିଶାସ୍ତ୍ରରେ ନାନା ବିତର୍କ ରହିଛି । ତେବେ ସେହି ବିତର୍କ ଏଠାରେ ଆମର ଆଲୋଚ୍ୟ ବିଷୟ ନୁହେଁ । ସୁଖ, ଶାନ୍ତି, ଆନନ୍ଦ, ଜ୍ଞାନ ଜୀବନର ମୂଲ୍ୟ ବୃଦ୍ଧିରେ ଯେ ଅତ୍ୟନ୍ତ ଉପଯୋଗୀ ଏହା ନିଃସନ୍ଦେହ ମନେହୁଏ ।

ସେହିପରି ସଦ୍‌ଗୁଣ ଓ ନୈତିକ ମୂଲ୍ୟଚୟକୁ କେତେକ ଜୀବନରେ ସର୍ବାଧିକ ମହତ୍ତ୍ୱ ଦେଇଥାନ୍ତି । ନୈତିକ ମୂଲ୍ୟବୋଧ ଓ ସଦାଚାର ଜନିତ ସଦ୍‌ଗୁଣର ସ୍ୱତଃ ମୂଲ୍ୟ ରହିଛି । ଏହି ମୂଲଚୟ ସ୍ୱରୂପରେ ହିଁ ମହନୀୟ । ଯାହା ସ୍ୱରୂପରେ ମହନୀୟ ଓ ଯାହା ଜୀବନଠାରୁ ଅଧିକ ମହତ୍ତର ସେହି ମୂଲ୍ୟବୋଧକୁ ଗୁରୁତ୍ୱ ଦେବା ହିଁ ହେଉଛି ଏକ ମହନୀୟ କାର୍ଯ୍ୟ । ଇତିହାସରେ ଏହିପରି କେତେ ମହନୀୟ ବ୍ୟକ୍ତିଙ୍କୁ ଆମେ ଦେଖୁ ଯେଉଁମାନେ କେତେକ ମୂଲ୍ୟବୋଧକୁ ଜୀବନଠାରୁ ଅଧିକ ମହତ୍ତର ମନେ କରିଥାନ୍ତି । ସକ୍ରେଟିସ୍ ସତ୍ୟବାଦିତା ଓ ସାଧୁତାକୁ, ବୁଦ୍ଧ କରୁଣାକୁ, ଇମାନୁଏଲ କାଣ୍ଟ ମହତ୍ତର ଇଚ୍ଛାକୁ, ଗାନ୍ଧୀ ଅହିଂସାକୁ ଓ ଅନ୍ୟ କେହି ଅନ୍ୟ କିଛି ମୂଲ୍ୟବୋଧକୁ ଜୀବନରେ ସର୍ବଶ୍ରେଷ୍ଠ ମୂଲ୍ୟ ଦେଇଛନ୍ତି । ତେବେ ପ୍ରଶ୍ନ ହେଉଛି ଏସବୁ ସଦାଚାର ଜନିତ ମୂଲ୍ୟବୋଧ କ'ଣ ସ୍ୱରୂପରେ ମହନୀୟ ନା ଏସବୁ ମୂଲ୍ୟବୋଧ ସାମାଜିକ ସୁଖ, ଶାନ୍ତି ଓ ଆନନ୍ଦ ପାଇଁ ଅଭିପ୍ରେତ । ଯଦି ସେସବୁ ସୁଖ, ଶାନ୍ତି ପାଇଁ ଅଭିପ୍ରେତ ତେବେ ସେ ସବୁର କେବଳ ସାଧନ ମୂଲ୍ୟ ବା ପରତଃ ମୂଲ୍ୟ ରହିଛି । ଯଦି ସେସବୁ କୌଣସି ଲକ୍ଷ୍ୟ ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ସେ ସବୁ ସ୍ୱରୂପରେ ହିଁ ମହନୀୟ ତେବେ ସେ ସବୁର ସ୍ୱତଃ ମୂଲ୍ୟ ରହିଛି । ଏହା ଉପରେ ଦର୍ଶନ ପରିସରରେ ନାନା ବିତର୍କ ମଧ୍ୟ ରହିଛି । ତେବେ ସେହି ବିତର୍କ ଭିତରେ ପ୍ରବେଶ ନ କରି ଉତ୍ତମ ଜୀବନର ମାନଦଣ୍ଡ ନିରୂପଣ କଲାବେଳେ ଏହି ଦୁଇଟି ପ୍ରସଙ୍ଗ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଏକ ଉତ୍ତମ ଜୀବନ ନୀତିବିରୋଧୀ ବା ମୂଲ୍ୟବୋଧରହିତ ଜୀବନକୁ ବୁଝାଏ ନାହିଁ । ଏହା ନୀତିବୋଧ, ସଦାଚାର ଓ କେତେକ ମହତ୍ତର ଆଦର୍ଶର

ବିକାଶ ଓ ଜୀବନଧାରାରେ ପ୍ରତିଫଳନର ସୂଚନା ଦିଏ । ସେହିପରି ଉତ୍ତମ ଜୀବନ ସହିତ ସାମାଜିକ ସୁଖ, ଶାନ୍ତି ଓ ଆନନ୍ଦର ଭାବଟି ସଂଶ୍ଳିଷ୍ଟ ହୋଇଥାଏ ।

ଏଠାରେ ସୁଖ ଓ ଆନନ୍ଦ ଭିତରେ ଏକ ପାର୍ଥକ୍ୟ କରାଯାଇପାରେ । ବ୍ୟକ୍ତି ବହୁ କ୍ଷେତ୍ରରୁ ସୁଖକର ଅନୁଭୂତି ଲାଭ କରିଥାଏ । ଭଲ ସିନେମାଟିଏ ଦେଖିଲେ, କବିତାଟିଏ ଲେଖିଲେ, ବନ୍ଧୁ ମେଳରେ ହସଖୁସି ହେଲେ, କୌଣସି ପର୍ଯ୍ୟଟନସ୍ଥଳୀ ବୁଲିଗଲେ ସୁଖକର ଅନୁଭୂତି ମିଳିଥାଏ । ଜୀବନରେ ବହୁ ସୁଖକର ଅନୁଭୂତି ଥାଇ ମଧ୍ୟ ଆନନ୍ଦ ନ ଥାଇପାରେ । ତେବେ ଆନନ୍ଦର ସହ ଜୀବନ, ବିନା ସୁଖକର ଅନୁଭୂତି ବ୍ୟତୀତ ସମ୍ଭବ ନୁହେଁ, ସୁଖର ଉତ୍ସ ଯାହା ହେଉ ନା କାହିଁକି । ଅର୍ଥାତ୍ ସୁଖକର ଅନୁଭବର ସମନ୍ୱିତ ପରିଣତି ହେଉଛି ଆନନ୍ଦ । ପୁନଶ୍ଚ ଯେଉଁମାନେ ସୁଖବାଦକୁ ନୈତିକ ମୂଲ୍ୟାୟନ କ୍ଷେତ୍ରରେ ପ୍ରାଧାନ୍ୟ ଦେଇଥାନ୍ତି, ସେମାନେ ସୁଖ ଭିତରେ ଗୁଣାତ୍ମକ ପାର୍ଥକ୍ୟ ମଧ୍ୟ କରିଥାନ୍ତି । ସବୁ ସୁଖାନୁଭୂତି ସମାନ ନୁହେଁ, ସେମାନଙ୍କ ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ମଧ୍ୟ ରହିଛି । ପୁନଶ୍ଚ ବ୍ୟକ୍ତିଗତ ସୁଖ ଅପେକ୍ଷା ବୃହତ୍ତର ସମାଜର ସୁଖ ଶାନ୍ତିକୁ ସେମାନେ ପ୍ରାଧାନ୍ୟ ଦେଇଥାନ୍ତି । ବ୍ୟକ୍ତି ନିଜର ଆଚରଣ ଦ୍ୱାରା ଯଦି ବହୁଜନଙ୍କର ହିତ ଓ ସୁଖ ସାଧନ କରେ ତାହା ହିଁ ଜୀବନର ଗୁଣାତ୍ମକ ମାନର ପରିଚୟ ଦେଇଥାଏ । ମୋଟ ଉପରେ କହିଲେ ଉତ୍ତମ ଜୀବନ ସହ ନୈତିକ ମୂଲ୍ୟବୋଧ, ସାମାଜିକ ସୁଖଶାନ୍ତି ଜନିତ ବହୁଜନ ହିତାୟକୁ ପ୍ରାଧାନ୍ୟ ଦିଆଯାଇପାରେ । (୯.୨.୧୧)



# ଉତ୍ତମ ଜୀବନ ଓ ଧର୍ମ

ଉତ୍ତମ ଜୀବନର ସଂଜ୍ଞା, ସ୍ୱରୂପ ଓ ଉପଯୋଗିତା ବିଷୟରେ ଅସଂଖ୍ୟ ସାହିତ୍ୟ ସୃଷ୍ଟି ହୋଇଛି । ତଥାପି ମଧ ଏହା ଉପରେ ମଣିଷର ଚିନ୍ତନ ଓ ଅନୁଶୀଳନ ସୀମାହୀନ ଭାବେ ଚାଲୁ ରହିଛି । ଏହାର କାରଣ ହେଉଛି ଉତ୍ତମ ଜୀବନ (ଗୁଡ୍ ଲାଇଫ) ପୃଷ୍ଠଭୂମିରେ ନୈତିକ ମୂଲ୍ୟଚୟକୁ ଜୀବନଧାରାରେ ଗୁରୁତ୍ୱ ଦେବା ଓ ଏକ ବୃହତ୍ତର ସମାଜର ହିତ ସାଧନକୁ ଲକ୍ଷ୍ୟ ଭାବରେ ନେବାକୁ କେତେକ ଗୁରୁତ୍ୱ ଦେଇଥାନ୍ତି । ଯେଉଁମାନେ ସୁଖବାଦକୁ ପ୍ରାଧାନ୍ୟ ଦେଇଥାନ୍ତି ସେମାନଙ୍କ ମତରେ ସୁଖ, ଶାନ୍ତି ଓ ଆନନ୍ଦ ହିଁ ଜୀବନର ଶ୍ରେୟ । ତେବେ ଆମର ନୈତିକ ମୂଲ୍ୟ ସକଳର ଲକ୍ଷ୍ୟ ହେଉଛି ସାମାଜିକ ଜୀବନ ପ୍ରବାହରେ ଶାନ୍ତି ଓ ଆନନ୍ଦର ପରିବେଶ ସୃଷ୍ଟି କରିବା । ସତ୍ୟବାଦିତା, କର୍ତ୍ତବ୍ୟପରାୟଣତା, ନ୍ୟାୟବୋଧ, ଅହିଂସାଭାବ, ସମ୍ବେଦନଶୀଳତା ଇତ୍ୟାଦି ମୂଲ୍ୟଚୟ ଯେଉଁ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ, ସେହି ସମାଜ ସେତିକି ଉନ୍ନତ ଓ ସଭ୍ୟ । ଏହି ମୂଲ୍ୟବୋଧଗୁଡ଼ିକ ଜନଜୀବନରେ ପ୍ରତିଫଳିତ ହେବା ଦ୍ୱାରା ସୁଖ, ଶାନ୍ତି ଓ ଆନନ୍ଦମୟ ପରିବେଶ ରହିବା ସମ୍ଭବ । ଉତ୍ତମ ଜୀବନ ପାଇଁ ଏଗୁଡ଼ିକ ସାଧନ ଓ ପ୍ରଧାନ ଅବଲମ୍ବନ । ଅପରପକ୍ଷରେ ଅନ୍ୟ କେତେକଙ୍କ ମତରେ ଏକ ମହତ୍ତର ଓ ଉତ୍ତମ ଜୀବନ ହିଁ ଆମର ଲକ୍ଷ୍ୟ ଓ ସେହି ଲକ୍ଷ୍ୟର ପରିଣାମ ହେଉଛି ସୁଖ, ଶାନ୍ତି । ସମତାଭାବ, ସତ୍ୟବାଦିତା, ଶୃଙ୍ଖଳାବୋଧ, ସମ୍ବେଦନଶୀଳତା ପରି ମୂଲ୍ୟଚୟଗୁଡ଼ିକ ଉତ୍କୃଷ୍ଟ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ଓ ସେଥିରୁ ହିଁ ସୁଖ, ଶାନ୍ତିର ପରିବେଶ ଆସିବା ସମ୍ଭବ । ଏହି ପ୍ରଶ୍ନ ଉପରେ ନାନା ବିତର୍କ କରାଯାଇପାରେ । ତେବେ କେଉଁଟି ସାଧ୍ୟ ଓ କେଉଁଟି ସାଧନ, କାହାର ସ୍ୱତଃମୂଲ୍ୟ ରହିଛି ଓ କାହାର ପରତଃମୂଲ୍ୟ ରହିଛି ସେହି ବିତର୍କ ଜଟିଳ ମନେହେଲେ ବି ଏକ ଉତ୍ତମ ଜୀବନ ପୃଷ୍ଠଭୂମିରେ ନୈତିକ ଜୀବନଧାରା ଓ ସୁଖ ଶାନ୍ତିପୂର୍ଣ୍ଣ ସାମାଜିକ ପରିବେଶ ଉଭୟ ମହତ୍ତ୍ୱପୂର୍ଣ୍ଣ ମନେହୁଏ ।

ଏକ ଉତ୍ତମ ଜୀବନ ବଞ୍ଚିବା ପାଇଁ ବ୍ୟକ୍ତିକୁ କେଉଁ ସ୍ତରରୁ ପ୍ରେରଣା ଓ ଅଭିନିବେଶ ମିଳେ ? ଏକ ସାଧାରଣ ଧାରଣା ହେଉଛି ଧର୍ମ ଭାବନାରୁ ଏହି ପ୍ରେରଣା ମିଳିଥାଏ । ଏଠାରେ 'ଧର୍ମ' ଭାବନାକୁ ଏହାର ପ୍ରଚଳିତ ଅର୍ଥରେ ଯାହା ହିନ୍ଦୁଧର୍ମ, ବୌଦ୍ଧଧର୍ମ,

ଇସଲାମଧର୍ମ ପୃଷ୍ଠଭୂମିରେ ବ୍ୟବହୃତ ହୋଇଥାଏ ସେହି ଅର୍ଥରେ ବିଚାର କରାଯାଇଛି । ଏକଥା ସତ୍ୟ ଯେ ପୃଥିବୀରେ ଅନେକ ଧର୍ମ ରହିଛି ଓ ପ୍ରତ୍ୟେକ ଧର୍ମର ଏକ ଐତିହାସିକ ଭିତ୍ତି ରହିଛି । ପ୍ରତ୍ୟେକ ଧର୍ମ ନିଜ ନିଜ ଧାରାରେ ଉତ୍ତମ ଜୀବନର ସର୍ବୋତ୍ତମ ଲକ୍ଷ୍ୟକୁ ଅବଧାରଣା କରିଛି । ପ୍ରତ୍ୟେକଟି ଧର୍ମ ଏକ ସାଂସ୍କୃତିକ ପ୍ରବାହ ଭାବେ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କର ଜୀବନଧାରା, ସାମାଜିକ ବ୍ୟବସ୍ଥା, ରାଜନୀତି, ନୀତିବୋଧ, ଜୀବନର ଅନ୍ତିମ ଲକ୍ଷ୍ୟକୁ ବହୁଭାବରେ ପ୍ରଭାବିତ କରିଛି । ଅଧିକାଂଶ ଧର୍ମ ବିଶ୍ୱାସ କରିଆସିଛନ୍ତି ଯେ ଏ ବିଶ୍ୱ ଈଶ୍ୱରସୃଷ୍ଟ ଓ ସବୁ କିଛି ଈଶ୍ୱର ନିୟନ୍ତ୍ରିତ । ଈଶ୍ୱର ତାଙ୍କ ସ୍ୱରୂପରେ ମନୁଷ୍ୟକୁ ସୃଷ୍ଟି କରିଛନ୍ତି । ଈଶ୍ୱରଙ୍କ ନିର୍ଦ୍ଦେଶିତ ବାଣୀ ଧର୍ମଗ୍ରନ୍ଥରେ ଲିପିବଦ୍ଧ ରହିଛି ଓ ଯାହା ଧର୍ମଗ୍ରନ୍ଥରେ ରହିଛି ତାହା ଶାଶ୍ୱତ ଓ ଅଲଂଘ୍ୟ । ନୀତି-ଅନୀତି ଓ ଭଲ ମନ୍ଦର ପାର୍ଥକ୍ୟ ଈଶ୍ୱର ନିର୍ଣ୍ଣୟ କରିଛନ୍ତି ।

ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯୁଗ ଓ ନବସଂସ୍କାର ଯୁଗର ଅୟମାରମ୍ଭ ପରଠୁ ଧର୍ମବିଶ୍ୱାସ ପ୍ରତି ବୌଦ୍ଧିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ଆଧୁନିକ ବିଜ୍ଞାନ ବସ୍ତୁନିଷ୍ଠ ଭାବେ ଏଭଳି ଅନେକ ବିଷୟ ପ୍ରତିଷ୍ଠା କଲା ଯାହା ଧାର୍ମିକ ବିଶ୍ୱାସର ପରିପନ୍ଥୀ । କୌଣସି ଈଶ୍ୱର ବିଶ୍ୱକୁ କେତୋଟି ଦିନରେ ବା ମଣିଷକୁ ନିଜ ସ୍ୱରୂପରେ ସୃଷ୍ଟି କରିନାହାନ୍ତି । କୋଟି କୋଟି ବର୍ଷର ପରିବର୍ତ୍ତନ ମଧ୍ୟ ଦେଇ ପୃଥିବୀ ଏହି ସ୍ତରକୁ ଆସିଛି । ସେହିପରି ଲକ୍ଷ ଲକ୍ଷ ବର୍ଷର ନାନା ଜୈବିକ ବିବର୍ତ୍ତନ ମଧ୍ୟଦେଇ ଜୀବଜଗତର ଉଦ୍ଭବ ହୋଇଛି । ସେହିପରି ସମାଜର ସକଳ ରାଜନୈତିକ ଆଦର୍ଶ, ଅର୍ଥନୈତିକ ବ୍ୟବସ୍ଥା, ନୀତି, ମୂଲ୍ୟବୋଧ ଇତ୍ୟାଦି ସାମାଜିକ ବିକାଶ ପ୍ରକ୍ରିୟାରେ ସମାଜରେ ବିକଶିତ ହୋଇଛି । ପୁନଶ୍ଚ ସାମ୍ରାଜ୍ୟବାଦର ବିସ୍ତାର ଦ୍ୱାରା ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ଦ୍ୱାରା ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ ବିଭିନ୍ନ ସ୍ତରରେ କରାଯାଇଛି । ଏହି ଅଧ୍ୟୟନରୁ ତାତ୍ତ୍ୱିକ ପ୍ରଶ୍ନ ସକଳ ଉପରେ ଧର୍ମମାନଙ୍କର ଦୃଷ୍ଟିଭଙ୍ଗୀ ଓ ବିଶ୍ୱାସ ପରସ୍ପରଠାରୁ ପୃଥକ୍ ବୋଲି ସ୍ପଷ୍ଟ ହେଲା । ଧାର୍ମିକ ମାନସିକତାରେ ଏହି ବିଶ୍ୱାସ ରହିଥିଲା ଯେ ମଣିଷର ସକଳ ଦୁଃଖ ଯାତନା ଦୈବୀକୃତ । ପ୍ରତ୍ୟେକ ଧର୍ମରେ ଜୀବନର ଅନ୍ତିମ ଲକ୍ଷ୍ୟ ନେଇ ନାନା କଳ୍ପନା ରହିଥିଲା । କେତେକ ଧର୍ମ ପୂର୍ବଜନ୍ମ-ପରଜନ୍ମର କଳ୍ପନା କରିଥିବାବେଳେ ଅନ୍ୟ କେତେକ ଧର୍ମ ମାତ୍ର ଗୋଟିଏ ଜନ୍ମର ଭାବନା ଆଣି ଜୀବନର ଶେଷରେ ସ୍ୱର୍ଗ ବା ନରକ ପ୍ରାପ୍ତି ଭାବନା ସୃଷ୍ଟି କରିଥିଲେ । ପ୍ରତ୍ୟେକ ଧର୍ମ ନିଜସ୍ୱ କଳ୍ପନାରେ ମୃତ୍ୟୁ ପରେ ବ୍ୟକ୍ତିର ସଚେତନ ସତ୍ତା ବା ଆତ୍ମା ଥିବା ବିଶ୍ୱାସ କରୁଥିଲେ । କେତେକ ଧର୍ମ ଜନ୍ମ-ଜନ୍ମାନ୍ତର ଦେଇ ମୁକ୍ତି ପାଇବାର ପରିକଳ୍ପନା କରିଥିବାବେଳେ ଅନ୍ୟ କେତେକ ଧର୍ମ ଏକମାତ୍ର ଜନ୍ମ ପରେ ବ୍ୟକ୍ତିର ଆତ୍ମା ସ୍ୱର୍ଗଗାମୀ

ବା ନରକଗାମୀ ହେବା ଭାବନା ଆଣିଥିଲେ । ପ୍ରତ୍ୟେକ ଧର୍ମ ନିଜ ନିଜର କଳ୍ପନା ଭିତରେ ଜୀବନର ଲକ୍ଷ୍ୟର ଭାବନା ସୃଷ୍ଟି କରିଥିଲେ । ତେବେ ଆଧୁନିକ ବିଜ୍ଞାନର ବିକାଶ, ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ ଓ ଦାର୍ଶନିକ ଚିନ୍ତନର ଗମ୍ଭୀରତା ଦେଇ ମଣିଷର ବୌଦ୍ଧିକ ଭାବରାଜ୍ୟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । କାଳକ୍ରମେ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଲା ଓ ଧର୍ମନିରପେକ୍ଷତା ସଭ୍ୟ ଜୀବନର ମାନଦଣ୍ଡ ହେଲା । ଧର୍ମ ବ୍ୟକ୍ତିଗତ ବିଶ୍ୱାସରେ ସୀମିତ ରହିଲା ଓ ଧର୍ମତାନ୍ତ୍ରିକ ଶାସନ ବ୍ୟବସ୍ଥାରୁ ରାଜନୀତି ଓ ଶାସନ ମୁକ୍ତ ହେଲା ।

ପୁନଶ୍ଚ ଦାର୍ଶନିକ ଯୁକ୍ତିର ଗଭୀରତା ମଧ୍ୟ ଦେଇ ଏହି ସନ୍ଦେହ ସୃଷ୍ଟିହେଲା ଯେ ଏକ ଈଶ୍ୱର ନିୟନ୍ତ୍ରିତ ଓ ଈଶ୍ୱର ସୃଷ୍ଟ ପୃଥିବୀରେ ଏତେ ଦୁଃଖ, ଅନ୍ୟାୟ, ପ୍ରାକୃତିକ ବିପର୍ଯ୍ୟୟ ଜନିତ ମନ୍ଦ ବା ଇଭିଲ କାହିଁକି ରହିଛି ? ଯଦି ଈଶ୍ୱର କରୁଣାମୟ ତେବେ ସେ ସଂସାରରୁ ସକଳ ଅନ୍ୟାୟ, ଅତ୍ୟାଚାର ଓ ଅମାନବିକ କାର୍ଯ୍ୟ ଜନିତ ମଣିଷର ଦୁଃଖକୁ ଦୂର କରିପାରନ୍ତେ । ଯଦି ସେହି ଈଶ୍ୱର ସର୍ବଶକ୍ତିମାନ, ତେବେ ପ୍ରାକୃତିକ ବିପର୍ଯ୍ୟୟର ଦୁଃଖରେ ଜର୍ଜରିତ ହେଉଥିବା ମଣିଷର ଦୁଃଖକୁ ସେ ଦୂର କରିପାରନ୍ତେ । କିନ୍ତୁ ସକଳ ପ୍ରକାରର ଅନ୍ୟାୟ, ଦୁର୍ବିପାକ ଜନିତ ଇଭିଲ ଆମ ସଂସାରରେ ରହିଛି ଓ ମଣିଷର ସଂସାରକୁ ଉଚ୍ଛନ୍ନ କରିଦେଉଛି । ସୁତରାଂ ଆମର ଈଶ୍ୱର ସମ୍ଭବତଃ କରୁଣାମୟ ନୁହନ୍ତି କିମ୍ବା ସର୍ବଶକ୍ତିମାନ ନୁହନ୍ତି । ଏହି ପ୍ରକାରର ନାନା ଯୁକ୍ତି ଦର୍ଶନ ପରିସରରେ ଗମ୍ଭୀର ଭାବେ ଆଲୋଚିତ ହେଲା ।

ଏସବୁ ସତ୍ତ୍ୱେ ଧର୍ମମାନଙ୍କରେ ଏପରି କେତେକ ମୂଲ୍ୟବୋଧର ଉଲ୍ଲେଖ ରହିଛି ଯାହା ଏକ ଉତ୍ତମ ଜୀବନ ପାଇଁ ପ୍ରେରଣା ଯୋଗାଇପାରିବ । ପ୍ରତ୍ୟେକ ଧର୍ମ ପରମ୍ପରାରେ ଉଲ୍ଲେଖ ଥିବା ଅସଂଖ୍ୟ କାହାଣୀ, ଉପକଥା, କିମ୍ବଦନ୍ତୀ ଓ ଗଳ୍ପ ଜରିଆରେ ଜନମାନସକୁ ନୈତିକ ଉପଦେଶାତ୍ମକ ବାର୍ତ୍ତା ଦିଆଯାଇଛି । ଧର୍ମରୁ ମହତର ପ୍ରେରଣା ନେଇ କିଛି ବ୍ୟକ୍ତି ସମାଜର ଅସହାୟ ମଣିଷର ସେବା ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି । ପ୍ରତ୍ୟେକ ଧର୍ମରେ ନୈତିକତାକୁ ପ୍ରାଧାନ୍ୟ ଦିଆଯାଇଛି । ଧର୍ମର ଏହି ସକାରାତ୍ମକ ଦିଗ ବ୍ୟକ୍ତି ମାନସକୁ ମହତ୍ତର ଜୀବନ ପାଇଁ ପ୍ରେରଣା ଯୋଗାଇଛି ।

ଧର୍ମ, ଈଶ୍ୱର ବିଶ୍ୱାସ ଯେଉଁ କ୍ଷେତ୍ରରେ ବ୍ୟକ୍ତିକୁ ମହତ୍ତର ଜୀବନ ପାଇଁ ପ୍ରେରଣା ଯୋଗାଇଛି ତାହା ସ୍ୱାଗତଯୋଗ୍ୟ । ଯଦି ପ୍ରକୃତରେ ଧାର୍ମିକ ଚେତନା ମାନବିକତାର ମନ୍ତ୍ରରେ ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ପ୍ରଭାବିତ କରି ସାରା ବିଶ୍ୱରେ ଭାତୃତ୍ୱର ଦୃଷ୍ଟିଭଙ୍ଗୀ ସୃଷ୍ଟି କରିପାରନ୍ତା, ତେବେ ସେହି ଧର୍ମ ଅନୁକରଣୀୟ । ହଁ, ପ୍ରତ୍ୟେକ ଧର୍ମୀୟ ପରମ୍ପରାରେ

କେତେକ ସନ୍ଥ, ମହାତ୍ମା ଓ ମାନବବାଦୀ ବ୍ୟକ୍ତି ରହିଛନ୍ତି ଯେଉଁମାନେ ମହତ୍ତର ଜୀବନ ପାଇଁ ବାର୍ତ୍ତା ଦେଇ ଆସିଛନ୍ତି । ସକଳ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ସେମାନେ ବିଶ୍ୱ ମାନବିକତାର ବାର୍ତ୍ତାବହ । କିନ୍ତୁ ଧର୍ମରେ ଏପରି ଉପାଦାନ ମଧ୍ୟ ରହିଛି, ଯାହା ଜନଗଣଙ୍କୁ ନାନା ଭାବରେ ମତୁଆଲା କରି ନାନା ହିଂସା, ଅଧର୍ମ ଓ ଅନ୍ୟାୟର ଝଡ଼ ବୁହାଇଛି । ଧାର୍ମିକ ଦୃଷ୍ଟି ଯେଉଁଠି ସଂକୀର୍ଣ୍ଣତାରେ ପରିଣତ ହୋଇଛି ସେଠି ସାଂପ୍ରଦାୟିକତା, ମୌଳବାଦ ଓ ଫାଶୀବାଦର ଉତ୍‌ଥାନ ହୋଇଛି । ଧର୍ମ ଧର୍ମାନ୍ଧତାରେ ରୂପାନ୍ତରିତ ହୋଇ ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ କଳୁଷିତ କରିବାରେ ଲାଗିଛି ।

ଉପସଂହାରରେ ନୈତିକତା ଓ ମାନବିକତା ହିଁ ଉତ୍ତମ ଜୀବନର ଆଧାର ହୋଇପାରିବ । କହିବା ନିଷ୍ପ୍ରୟୋଜନ ଯେ, ଯଦି ଧର୍ମ ଜିଜ୍ଞାସା ମାନବିକତାରେ ରୂପାନ୍ତରିତ ହୁଏ, ଏହା ଉତ୍ତମ ଜୀବନ ପାଇଁ ପ୍ରେରଣାଦାୟକ ହେବ । କିନ୍ତୁ ବାସ୍ତବପକ୍ଷେ ଧର୍ମ କୁସଂସ୍କାର, ଭେଦଭାବ, ସାଂପ୍ରଦାୟିକତା ଓ ହିଂସ୍ରତା ସୃଷ୍ଟି କରି ସମାଜକୁ ଭାଗ ଭାଗ କରିବା ଦେଖାଯାଏ । ସୁତରାଂ ଧର୍ମବିଶ୍ୱାସ ଏକ ଉତ୍ତମ ଜୀବନର ମାନଦଣ୍ଡ ନୁହେଁ । ବରଂ ନୈତିକତା, ସମ୍ବେଦନଶୀଳତା ଓ ସାମାଜିକ ସୁଖଶାନ୍ତି ପ୍ରତି ପ୍ରତିବଦ୍ଧତା ଏକ ଉତ୍ତମ ଜୀବନର ମାନଦଣ୍ଡ । ଧର୍ମନିରପେକ୍ଷ ମାନବବାଦୀମାନେ ଏହି ପ୍ରକାରର ମୂଲ୍ୟବୋଧର ଶ୍ରେଷ୍ଠ ପ୍ରବକ୍ତା । ଧର୍ମ ବିଶ୍ୱାସ ଅବିଶ୍ୱାସ ନିର୍ବିଶେଷରେ ଏହି ମୂଲ୍ୟଚୟ ଉପରେ ପ୍ରଗାଢ଼ ଆସ୍ଥା ଓ ଜୀବନଧାରାରେ ପ୍ରତିଫଳନ ହିଁ ଉତ୍ତମ ଜୀବନର ଅଭିବ୍ୟକ୍ତି । (୧୬.୨.୧୧)



# ଉତ୍ତମ ଜୀବନ ଓ ଜୀବନର ବିରୋଧାଭାସ

ଉତ୍ତମ ଜୀବନଟିଏ କିପରି ବଞ୍ଚିହେବ ? ଜୀବନରେ ଅନେକ ସୁଖ, ଦୁଃଖ, ଆଶା, ନିରାଶା ରହିବା ଅପରିହାର୍ଯ୍ୟ । ସାମାଜିକ ଜୀବନ ପ୍ରବାହରେ ଅନେକ ଘଟଣାର ସମ୍ମୁଖୀନ ହେବାକୁ ହୁଏ । ନିଜର ଦାୟିତ୍ୱବୋଧ ଆସିବା ପରଠୁ ନିଜର କର୍ତ୍ତବ୍ୟ, ଶୃଙ୍ଖଳା, ସମାଜ ପ୍ରତି ଦୃଷ୍ଟିଭଙ୍ଗୀ, ଜୀବନର ମୂଲ୍ୟ ଆସ୍ତେ ଆସ୍ତେ ବ୍ୟକ୍ତି ସ୍ୱଭାବରେ ରୂପରେଖ ନେଇଥାଏ । ବିଭିନ୍ନ କର୍ମ କରିବାକୁ ହୁଏ, ସାମାଜିକ ସମ୍ବନ୍ଧ ଯୋଡିବାକୁ ହୁଏ, ପାରିବାରିକ ଜୀବନର ଉତ୍ତରଦାୟିତ୍ୱ ନେବାକୁ ହୁଏ ଓ ସ୍ୱାବଲମ୍ବୀ ହୋଇ ବଞ୍ଚିବାର ମନୋଭାବ ଆସେ । ଏସବୁ ନେଇ ବ୍ୟକ୍ତିର ଦୃଷ୍ଟିଭଙ୍ଗୀ, ଚରିତ୍ର ଓ ବ୍ୟକ୍ତିତ୍ୱ ଗଢ଼ି ଉଠିଥାଏ । ବ୍ୟକ୍ତି ସ୍ୱଭାବକୁ ସାମାଜିକ ପରିବେଶ ବି ଅନେକାଂଶରେ ପ୍ରଭାବିତ କରିଥାଏ । ପୁନଶ୍ଚ ବ୍ୟକ୍ତିର କେତେକ ସହଜାତ ପ୍ରକୃତି ବ୍ୟକ୍ତିର ସୃଜନ କ୍ଷେତ୍ରରେ ବି ସହାୟକ ହୁଏ । ବ୍ୟକ୍ତିର ସହଜାତ ସ୍ୱଭାବ, ଶିକ୍ଷା, ସାମାଜିକ ପରିବେଶର ପ୍ରଭାବର ସମନ୍ୱିତ ପରିଣାମରୁ ବ୍ୟକ୍ତି ଚରିତ୍ରଟି ରୂପରେଖ ନେଇଥାଏ । ତେବେ ବ୍ୟକ୍ତି ସ୍ୱଭାବ ଓ ଚରିତ୍ର ଏତେ ଜଟିଳ ଯେ ବ୍ୟକ୍ତିତ୍ୱର ମୂଲ୍ୟାୟନ ପାଇଁ ଏକ ସାଧାରଣ ମାନଦଣ୍ଡ ନିରୂପଣ କରିବା ସହଜସାଧ୍ୟ ମନେହୁଏ ନାହିଁ । ତଥାପି ଯଦି ଜଣେ ନିଜର ସାମାଜିକ ଦାୟିତ୍ୱ ଓ କର୍ତ୍ତବ୍ୟ କ୍ଷେତ୍ରରେ ନିଷ୍ଠା ପ୍ରଦର୍ଶନ କରେ, ଅନ୍ୟାୟ ଓ ଅନୈତିକ ପନ୍ଥାରୁ ନିଜକୁ ଦୂରେଇ ରଖେ, ଉଚ୍ଚ ନାଗରିକ ଶୃଙ୍ଖଳାବୋଧ ଦ୍ୱାରା ପରିଚାଳିତ ହୁଏ, ତେବେ ସେ ଯେ ଏକ ଉତ୍ତମ ଜୀବନର ଅଧିକାରୀ ତାହା ହୁଏତ କୁହାଯାଇପାରେ । ଏକ ଉତ୍ତମ ଜୀବନର ପରିକଳ୍ପନା ଭିତରେ ନୈତିକ ଓ ନାଗରିକ ଶୃଙ୍ଖଳା ପ୍ରତି ନିଷ୍ଠା, କର୍ତ୍ତବ୍ୟ ପ୍ରତି ଉତ୍ତର ଦାୟିତ୍ୱବୋଧ ଓ ସର୍ବୋପରି ଏକ ମାନବଦରଦୀ ବା ସମ୍ବେଦନଶୀଳ ମନୋଭାବ ଉତ୍ତମ ଜୀବନର ମାନଦଣ୍ଡ ହୋଇପାରେ । ଏକ ଉତ୍ତମ ଜୀବନ ଏକ ସାଧାରଣ ଜୀବନ ବା ଆଭରେଜ ଲାଇଫଠାରୁ ଉନ୍ନତ ହେବା ମନେହୁଏ । ସମାଜରେ ବହୁ ପ୍ରକାରର ବ୍ୟକ୍ତିଙ୍କୁ ଆମେ ନିତିଦିନିଆ ଅନୁଭୂତିରେ ଦେଖୁ । ସେମାନଙ୍କ ମଧ୍ୟରୁ କେତେକଙ୍କୁ ଆମେ ଉତ୍ତମ ବ୍ୟକ୍ତି ବା ଭଲ ମଣିଷ ବୋଲି ଭାବୁ ଓ ଅନ୍ୟ କେତେକଙ୍କୁ ସେହି ମାନଦଣ୍ଡରେ ଆମେ ଉତ୍ତମ ବ୍ୟକ୍ତି କହିପାରେନାହିଁ ।

ନିଜର ସାମାଜିକ କର୍ତ୍ତବ୍ୟ କ୍ଷେତ୍ରରେ ଶୃଙ୍ଖଳିତ ଆଚରଣ, ନାଗରିକ ସଚେତନତା ଓ ବୃହତ୍ତର ସମାଜ ପ୍ରତି ଏକ ମାନବିକ ଦୃଷ୍ଟି ଏକ ଗୁଣାତ୍ମକ ଜୀବନର ବି ମାନଦଣ୍ଡ

ହୋଇପାରେ । ଈଶ୍ୱର ବିଶ୍ୱାସ, ପୂଜା, ଆରାଧନା, ଧାର୍ମିକ କର୍ମକାଣ୍ଡକୁ ଏକ ସମୟରେ ଗୁଣାତ୍ମକ ଜୀବନର ମାନଦଣ୍ଡ ବୋଲି ନିଆଯାଉଥିଲା ଓ ତାହା ହିଁ ଉତ୍ତମ ଜୀବନ ବଞ୍ଚିବାର ଅବିଚ୍ଛେଦ୍ୟ ଅଙ୍ଗ ଥିଲା । କିନ୍ତୁ ଏସବୁ କେହି କରିପାରନ୍ତି ସେସବୁ ସହ ଉତ୍ତମ ଜୀବନର ବିଶେଷ ସମ୍ପର୍କ ନ ଥିବା ମନେହୁଏ । ବରଂ ଆମର ନୈତିକ ଆଚରଣ ଓ ସମାଜ ପ୍ରତି ଉତ୍ତର ଦାୟିତ୍ୱବୋଧ ହିଁ ଉତ୍ତମ ଜୀବନଧାରାର ପରିମାପକ ହୋଇପାରେ । ତେବେ ସାମାଜିକ ଜୀବନ ପ୍ରବାହରେ ଆମେ ବହୁ ବ୍ୟକ୍ତିଙ୍କୁ ଦେଖୁ ଯେଉଁମାନେ ବହୁତ ଧର୍ମବିଶ୍ୱାସୀ, ପୂଜା ଆରାଧନାକୁ ଜୀବନଧାରାରେ ମିଶାଇ ଦେଇଛନ୍ତି, ପୂଜାସ୍ଥଳ ନିର୍ମାଣ କରିବାରେ ଅକୁଣ୍ଠିତ ସାହାଯ୍ୟ କରନ୍ତି ଓ ଦିଅଁ ଦେବତାଙ୍କ ପାଖରେ ମାନସିକ କରି ତୀର୍ଥ କରନ୍ତି । କିନ୍ତୁ ବାସ୍ତବ ଜୀବନରେ କୌଣସି ଉଚ୍ଚ ନାଗରିକ ଶୃଙ୍ଖଳା ପ୍ରତି ପ୍ରତିବଦ୍ଧତା ପ୍ରକାଶ କରନ୍ତିନାହିଁ । ବହୁ ସରକାରୀ କର୍ମଚାରୀ ଲାଞ୍ଚ ନିଅନ୍ତି, ଉତ୍କୋଚ ନେବାରେ ବିବେକର କୌଣସି ଦଂଶନ ପାଆନ୍ତି ନାହିଁ । ବହୁ ବ୍ୟବସାୟୀ ପ୍ରାର୍ଥନା, ଧୂପ ଦୀପ ଜାଳି ପ୍ରତିଦିନ ବ୍ୟବସାୟ ଆରମ୍ଭ କରନ୍ତି କିନ୍ତୁ ଅନ୍ୟକୁ ଠକନ୍ତି, ଅପମିଶ୍ରଣ କରନ୍ତି, ଟାକ୍ସ ଫାଙ୍କନ୍ତି ଓ ସେଥିରେ ବିବେକର ଦଂଶନ ପାଆନ୍ତି ନାହିଁ । ଆମେ କେତେକ ନେତା ଓ କ୍ଷମତାଧାରୀଙ୍କୁ ଦେଖୁ ଯେଉଁମାନେ ଜନସେବା ପାଇଁ ରାଜନୀତିରେ ସମ୍ପୃକ୍ତି ହୋଇଥିବା କୁହନ୍ତି ଅଥଚ ସରକାରୀ ଅର୍ଥ ଆତ୍ମସାତ କରନ୍ତି, ନିର୍ବାଚନରେ ଜିତିବାକୁ ଅସାଧୁ ଉପାୟ ଅବଲମ୍ୱନ କରନ୍ତି କିନ୍ତୁ ବିବେକର ଦଂଶନ ଅନୁଭବ କରନ୍ତି ନାହିଁ । ବହୁ ଯୋଗୀ, ବାବା, ମାତା ସାଧୁ ବୋଲି ପ୍ରବଚନ ଦିଅନ୍ତି, ଈଶ୍ୱରପ୍ରାପ୍ତି, ମୁକ୍ତି ଜୀବନର ଅନ୍ତିମ ଲକ୍ଷ୍ୟ ବିଷୟରେ କେତେ କେତେ ଆଧ୍ୟାତ୍ମିକ ତତ୍ତ୍ୱ ଶୁଣାନ୍ତି କିନ୍ତୁ ବେଶ୍ ବିଳାସପୂର୍ଣ୍ଣ ଜୀବନ ବଞ୍ଚନ୍ତି । ବହୁ ସମ୍ପତ୍ତିର ମାଲିକ ହୋଇଥାନ୍ତି ଓ ନିଜର ଏକ ଏକ ଭକ୍ତ ମଣ୍ଡଳୀ କରି ଅବତାର ହୋଇଯାଆନ୍ତି । ନିଜ ନିଜ ଆଶ୍ରମରେ ବେଳେବେଳେ ଜଘନ୍ୟ କାର୍ଯ୍ୟ କରନ୍ତି, ଅନୈତିକ କାର୍ଯ୍ୟରେ ବ୍ରତୀ ହୁଅନ୍ତି । ଏସବୁ କରି ମଧ୍ୟ ଧର୍ମ ପ୍ରବଚନ ଶୁଣାନ୍ତି । ଦେଉଳ ମନ୍ଦିରର କେତେକ ପୂଜକ ପ୍ରତିଦିନ ଦିଅଁ ଦେବତାଙ୍କୁ ପୂଜା କରନ୍ତି, ଭକ୍ତମାନଙ୍କର ମନୋବାଞ୍ଛା ପୂରଣ କରିବାରେ ତାଙ୍କ ଦିଅଁ ଭକ୍ତର ଡାକ ସର୍ବଦା ଶୁଣନ୍ତି ବୋଲି କେତେ ପ୍ରଚାର କରନ୍ତି କିନ୍ତୁ ଭକ୍ତମାନଙ୍କୁ ଲୁଟନ୍ତି । ଦିଅଁ ଦେବତାଙ୍କୁ ନିଜର ସମ୍ପତ୍ତି ଭାବି ବ୍ୟବହାର କରନ୍ତି ଓ ନିଜର ଆଚରଣରେ କୌଣସି ସାଧୁତା ବା ମାନବିକତା ପ୍ରଦର୍ଶନ କରନ୍ତି ନାହିଁ । ଏହିପରି ଉଦାହରଣ ଓ ସାମାଜିକ ଜୀବନର ଘଟଣାମାନଙ୍କୁ ଲେଖିଲେ ବଡ ପୋଥି ହୋଇପାରିବ । ଦୁର୍ନୀତି କରୁଥିବା, ଅସାଧୁ ଉପାୟରେ ଉପାର୍ଜନ କରୁଥିବା, ଅନ୍ୟକୁ ଶୋଷଣ କରୁଥିବା, ଲୋକମାନଙ୍କର ଅଜ୍ଞତାର ସୁଯୋଗ ନେଇ କୁସଂସ୍କାରର ପ୍ରସାର କରୁଥିବା ବହୁ ବ୍ୟକ୍ତିଙ୍କୁ ସାମାଜିକ ଜୀବନ ପ୍ରବାହରେ ଆମେ ଦେଖୁ । କୌଣସି ଅନ୍ୟାୟ କାର୍ଯ୍ୟରେ ବ୍ରତୀ ହେଲେ ଜଣେ ବିବେକୀ ମଣିଷ ସେଥିପାଇଁ ଦୁଃଖ କରେ, ଆତ୍ମପୀଡା ପାଏ ଓ ବିବେକର ଦଂଶନରେ ମ୍ରିୟମାଣ ହୁଏ । କିନ୍ତୁ ଏପରି ଅନେକ

ବ୍ୟକ୍ତିଙ୍କୁ ଆମେ ଦେଖୁ ଯେଉଁମାନେ ଅସଦ ପନ୍ଥା ଅବଲମ୍ବନ କରି ଲକ୍ଷ୍ୟ ହାସଲ କରିବାକୁ ସମର୍ଥ ହେଉଥିବାରୁ ନିଜକୁ କରିତ୍କର୍ମା ମନେକରନ୍ତି । ଅନ୍ୟ ସମ୍ପ୍ରଦାୟ ଲୋକଙ୍କ ଉପରେ ଆକ୍ରମଣ କରି ବା ଜାତୀୟ ସମ୍ପତ୍ତି ନଷ୍ଟ କରି ଆତ୍ମ ସନ୍ତୋଷ ଲାଭ କରନ୍ତି । ନିଜ ପଦ ଓ କ୍ଷମତାର ଅପବ୍ୟବହାର କରି ମନ୍ଦ ଉପାୟରେ ଅର୍ଜନ କରିଥିବା ନିଜର ଅର୍ଥରୁ କିଛି ଭାଗ ମନ୍ଦିର ଦେଉଳ କରିବାରେ ବ୍ୟୟ କରନ୍ତି ଓ ଧର୍ମପ୍ରାଣ ବ୍ୟକ୍ତି ଭାବରେ ନିଜର ସାମାଜିକ ପରିଚୟ ସୃଷ୍ଟି କରନ୍ତି । ଆମ ସମାଜରେ ଆମେ ଏପରି ବ୍ୟକ୍ତିମାନଙ୍କୁ ଦେଖୁ ଯେଉଁମାନେ ସାହି ବସ୍ତିରୁ ପୂଜା ନାମରେ ଚାନ୍ଦା ସଂଗ୍ରହ କରନ୍ତି । ସଂଗୃହୀତ ଅର୍ଥରେ ପୂଜା ନାମରେ ମାଇକରେ ପରିବେଶ କମ୍ପାନ୍ତି, ନିଶା ପାଣି ସେବନ କରି ମଉଜ କରନ୍ତି ଓ ସେଥିରେ ଆତ୍ମତୃପ୍ତି ଲାଭ କରନ୍ତି ।

ଜନଜୀବନର ଏହି ବିରୋଧାଭାସ ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ ଉତ୍ତମ ଜୀବନ ବଞ୍ଚିବାର ପରିବେଶ ସାମାଜିକ ଜୀବନପ୍ରବାହ ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଥାଏ । ଯେଉଁଠି ସାମାଜିକ ବ୍ୟବସ୍ଥାରେ ନାଗରିକ ଶୃଙ୍ଖଳାବୋଧ ଉନ୍ନତ ହୋଇଛି, ସାଧୁତା ଓ କର୍ତ୍ତବ୍ୟ ସଚେତନତା ଉଚ୍ଚ ସ୍ଥାନ ନେଇଛି ସେଠାରେ ଉନ୍ନତ ଜୀବନର ପରିବେଶ ଅଧିକ ରହିଛି । ଯେଉଁଠି ବୃହତ୍ତର ସମାଜ ଉପରେ ଆସ୍ଥା ଓ ବିଶ୍ୱାସ ଦୃଢ ହୋଇନାହିଁ, ଅସୁରକ୍ଷିତ ମାନସିକତା ରହିଛି ଓ ପନ୍ଥାର ପବିତ୍ରତା ନେଇ ଜନଗଣଙ୍କର ନୈତିକ ଦୃଷ୍ଟି ଉନ୍ନତ ହୋଇନାହିଁ ସେଠାରେ ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଛି । ଏହା ସହିତ ଯେଉଁଠି ସମାଜରେ ଭେଦଭାବ ମୂଳକ ପରିବେଶ ଦୃଢ ହୋଇରହିଛି, ବୈଷମ୍ୟ ଓ ଦାରିଦ୍ର୍ୟରେ ଅଗଣିତ ବ୍ୟକ୍ତି ଜୀବନର ସର୍ବନିମ୍ନ ଆବଶ୍ୟକତାଠାରୁ ବଞ୍ଚିତ ହୋଇ ରହିଛନ୍ତି, ସେଠାରେ ଜୀବନର ମାନ ନିମ୍ନଗାମୀ ହୋଇ ରହିବା ସ୍ୱାଭାବିକ ମନେହୁଏ । ବସ୍ତୁତଃ ନୈତିକ ଶୃଙ୍ଖଳାବୋଧ, ପନ୍ଥାର ପବିତ୍ରତା, କର୍ମକ୍ଷେତ୍ରରେ ସାଧୁତା, ସମାଜ ପ୍ରତି ସକାରାତ୍ମକ ମନୋଭାବ ଉତ୍ତମ ଜୀବନ ପାଇଁ ଅବଲମ୍ବନ ମନେହୁଏ । ଏଥିପାଇଁ ସାମାଜିକ ପରିବେଶର ଯେ ପ୍ରମୁଖ ଭୂମିକା ରହିଛି ଏହା ନିଃସନ୍ଦେହ ଭାବେ କୁହାଯାଇପାରେ । (୨୩.୨.୧୧)



# ଉତ୍ତମ ଜୀବନ ଓ ହେତୁବାଦ (୧)

ଉତ୍ତମ ଜୀବନ ଏକ ସଫଳ ଜୀବନ କି ? ଜୀବନର ସଫଳତା କେଉଁଥିରେ ନିହିତ ? ସଫଳ ଜୀବନ କହିଲେ ପ୍ରକୃତରେ କ'ଣ ବୁଝାଏ ? ବିଭିନ୍ନ ବ୍ୟକ୍ତି ଉତ୍ତମ ଜୀବନ ବଞ୍ଚିବାକୁ ବହୁ ପ୍ରୟାସ କରି ମଧ୍ୟ ନାନା ଭାବରେ ସାମାଜିକ ବିରୋଧ ଓ ସମାଲୋଚନାର ଶରବ୍ୟ ହୋଇଛନ୍ତି । ସେହିପରି କେତେକ ବ୍ୟକ୍ତି ଜୀବନରେ ବହୁ ସଫଳତା ହାସଲ କରିଛନ୍ତି, କ୍ଷମତାଧର ହୋଇଛନ୍ତି, ମାନସମ୍ମାନର ଅଧିକାରୀ ହୋଇଛନ୍ତି ଓ ବହୁ ପ୍ରାଚୁର୍ଯ୍ୟ ଭିତରେ ଜୀବନ ଅତିବାହିତ କରୁଛନ୍ତି । ଏହି ସଫଳତାକୁ ଉତ୍ତମ ଜୀବନ କହିପାରିବା କି ? ନୈତିକ ମାନଦଣ୍ଡରୁ ବହୁ ସଫଳ ବ୍ୟକ୍ତି ଉତ୍ତମ ଜୀବନ ବଞ୍ଚିପାରିନାହାନ୍ତି । ସୁତରାଂ ଉତ୍ତମ ଜୀବନର ମାନଦଣ୍ଡ ଓ ସଫଳ ଜୀବନର ମାନଦଣ୍ଡ ଏହି ଦୃଷ୍ଟିରୁ ପୃଥକ୍ । ଏକ ଉତ୍ତମ ଜୀବନ ସହିତ ନୈତିକତା, ନାଗରିକ ଶୃଙ୍ଖଳାବୋଧ, ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଜଡ଼ିତ ହେବାବେଳେ ଏକ ସଫଳ ଜୀବନ ସହିତ ସାମାଜିକ ପ୍ରତିଷ୍ଠା, ପ୍ରାଚୁର୍ଯ୍ୟ, ଆର୍ଥିକ ନିରାପତ୍ତା ଇତ୍ୟାଦି ସଂଶ୍ଳିଷ୍ଟ ହେବା ମନେହୁଏ । ସମାଜର ସାଧାରଣ ଜୀବନ ପ୍ରବାହରେ ବହୁ ଲୋକ ଉତ୍ତମ ଜୀବନ ଅପେକ୍ଷା ସଫଳତାକୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ଛାତ୍ର ଜୀବନରୁ ବା ପ୍ରାଥମିକ ଅବସ୍ଥାରୁ ସେମାନେ ନିଜର ବୃତ୍ତି, ପ୍ରତିଷ୍ଠା, ରୋଜଗାର, ଆର୍ଥିକ ନିରାପତ୍ତାକୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ବୁଦ୍ଧିମାନ ଛାତ୍ରମାନେ ନିଜର କ୍ୟାରିୟର, ଉଚ୍ଚ କର୍ମସଂସ୍ଥାନ, ପଦପଦବୀ ପ୍ରତି ବେଶ ଯତ୍ନବାନ ହେବା ସାଧାରଣ ଘଟଣା ଅଟେ । ତେବେ ସମାଜରେ ଏସବୁ ସହ କେତେକ ଉତ୍ତମ ଜୀବନ ପାଇଁ ମଧ୍ୟ ଆଗ୍ରହୀ ହୁଅନ୍ତି । କିନ୍ତୁ ମୁଷ୍ଟିମେୟ ଲୋକ ସଫଳତାକୁ ଗୁରୁତ୍ୱ ନଦେଇ ଉତ୍ତମ ଜୀବନ ପ୍ରତି ଅଧିକ ଯତ୍ନବାନ ହୁଅନ୍ତି । ସାଧୁତା, ନାଗରିକ ଶୃଙ୍ଖଳାବୋଧ, ଅନ୍ୟର ସୁଖ ଦୁଃଖ ପ୍ରତି ସମଭାଗିତା ଓ ସର୍ବୋପରି ସମ୍ବେଦନଶୀଳତାକୁ ଜୀବନରେ ସର୍ବାଧିକ ମୂଲ୍ୟ ଦିଅନ୍ତି ଏବଂ ଜୀବନରେ ଏହି ସବୁ ମୂଲ୍ୟବୋଧକୁ ପ୍ରାଧାନ୍ୟ ଦେଇ ଜୀବନ ନିର୍ବାହ କରିବାକୁ ପ୍ରୟାସ କରନ୍ତି ।

ସଭ୍ୟତାର ଇତିହାସରେ ହେତୁବାଦୀମାନେ ହିଁ ସର୍ବଦା ଏକ ଉତ୍ତମ ଜୀବନର ବାର୍ତ୍ତାବହ ହୋଇଛନ୍ତି । ଅବଶ୍ୟ ଯେଉଁମାନେ ଉତ୍ତମ ଜୀବନର ବାର୍ତ୍ତାବହ ହୋଇଛନ୍ତି,

ସମସ୍ତେ ହେତୁବାଦୀ ନୁହନ୍ତି, କିନ୍ତୁ ସମସ୍ତ ହେତୁବାଦୀମାନେ ଉତ୍ତମ ଜୀବନର ବାର୍ତ୍ତାଦେବା ସହ ଏହାକୁ ଜୀବନଧାରାରେ ପ୍ରାଧାନ୍ୟ ଦେଇଛନ୍ତି । ତେବେ ହେତୁବାଦର ପ୍ରକୃତ ତାତ୍ପର୍ଯ୍ୟ କ'ଣ ଓ ଏହାର ଉପଯୋଗିତା କେଉଁଠି ରହିଛି ? ହେତୁବାଦର ନାନା ଦିଗନ୍ତ ରହିଥିଲେ ବି ଏହାର ଏକ ଯଥାର୍ଥ ତାତ୍ପର୍ଯ୍ୟ ହେଉଛି ଏକ ବିଚାରଶୀଳ ଦୃଷ୍ଟି । ତେବେ ହେତୁବାଦ ଦୁଇଟି ମୌଳିକ ଆଦର୍ଶ ଉପରେ ଆଧାରିତ, ତାହା ହେଲା ବିଚାରଶୀଳତା ଓ ମାନବିକତା । ବିଚାରଶୀଳତା କହିଲେ ଏକ ମୁକ୍ତ ମନ ଜନିତ ଅନୁସନ୍ଧିତ୍ସା ଓ ବୈଜ୍ଞାନିକ ମାନସିକତାକୁ ବୁଝାଇଥାଏ । ମୁକ୍ତ ମନ ପୋଷଣ କରିବା, ଜୀବନର ଘଟଣାପ୍ରବାହ ଓ ପ୍ରାକୃତିକ ପରିବେଶକୁ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ବୁଝିବାକୁ ପ୍ରୟାସ କରିବା ହିଁ ହେତୁବାଦୀ ଜୀବନ ଦର୍ଶନର ଏକ ମୁଖ୍ୟ ପ୍ରସଙ୍ଗ । ଆଜି ଯଦି ସଭ୍ୟତାରେ ଏତେ ବିକାଶ ହୋଇଛି ତାହା ସମ୍ଭବ ହୋଇଛି ମଣିଷର ଚିନ୍ତା, କୌତୂହଳତା ଓ ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଯୋଗୁ । ଏକ ଆଦିମ ସ୍ତରରୁ ନାନା ସୋପାନ ଦେଇ ସଭ୍ୟତାର ବିକାଶ ହୋଇଛି ଓ ଏହା ପଛରେ ରହିଛି ମଣିଷର କୌତୂହଳ ପ୍ରବଣତା । ସୁତରାଂ ମୁକ୍ତ ମନର ପ୍ରଶ୍ନ ମଧ୍ୟ ଦେଇ ମଣିଷ ତା'ର ଜୀବନ ଓ ପ୍ରକୃତିକୁ ବୁଝିବାକୁ ପ୍ରୟାସ କରିଛି ଓ ସେହି ପ୍ରୟାସ ମଧ୍ୟ ଦେଇ ସେ ଅଧିକରୁ ଅଧିକ ସଭ୍ୟ ଓ ଉନ୍ନତ ହେବା ସହ ଜୀବନର ଭୌତିକ ଓ ନୈତିକ ମାନରେ ଗୁଣାତ୍ମକ ପରିବର୍ତ୍ତନ କରିବାରେ ସମର୍ଥ ହୋଇଛି । ସେହିପରି ମାନବିକତା ହେଉଛି ମଣିଷ ପ୍ରତି ସମ୍ବେଦନଶୀଳ ଓ ନ୍ୟାୟପୂର୍ଣ୍ଣ ଜୀବନଦୃଷ୍ଟି । ଯେତେବେଳେ ବ୍ୟକ୍ତି ଅନ୍ୟ ପ୍ରତି ଭ୍ରାତୃତ୍ୱର ଭାବନା ସୃଷ୍ଟି କରିଛି, ସଖ୍ୟ ଓ ସହୃଦୟତାର ଦୃଷ୍ଟିରେ ଅନ୍ୟକୁ ଦେଖିଛି ସେତେବେଳେ ସେ ଦରଦୀ ହୋଇଛି ଓ ଜୀବନ ପ୍ରତି ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ନେଇଛି । ସମତା, ସମଭାଗିତା, ନ୍ୟାୟଯୁକ୍ତ ମନୋଭାବ ଓ ସମ୍ବେଦନଶୀଳତା ହିଁ ମାନବିକତାର ମୌଳିକ ଆଧାର । ବିଚାରଶୀଳତା ଦ୍ୱାରା ଏହି ମୂଲ୍ୟବୋଧ ସକଳର ବିକାଶ ହୋଇଛି । ମଣିଷର ଦୃଷ୍ଟିଭଙ୍ଗୀ ଅଧିକରୁ ଅଧିକ ଗୋଷ୍ଠୀ ଓ କ୍ଷୁଦ୍ରତର ପରିସରଠାରୁ ବ୍ୟାପକତର ଓ ବୃହତ୍ତର ସମାଜ ପ୍ରତି ପ୍ରସାରିତ ହୋଇଛି । କାଳକ୍ରମେ ଏହା ବିଶ୍ୱବ୍ୟାପୀ ହେବାରେ ଲାଗିଛି ଓ ଯେକୌଣସି ଭେଦଭାବ ଅମାନବିକ ବୋଲି ବିଚାର ସୃଷ୍ଟି କରିପାରିଛି । ମୋଟ ଉପରେ କହିଲେ ହେତୁବାଦ ବିଚାରଶୀଳତା ଓ ମାନବିକତାର ସ୍ତମ୍ଭ ଉପରେ ଆଧାରିତ ଏକ ଜୀବନଦର୍ଶନ ଭାବେ ସଭ୍ୟତାରେ ବିକଶିତ ହୋଇଛି ।

ଏକଥା ସତ୍ୟ ଯେ ଜୀବନରେ ଅନେକ ଦୁଃଖ ରହିଛି । ଅନେକ ଘଟଣା ମଣିଷର ଚକ୍ଷୁକୁ ଲୋତକପୂର୍ଣ୍ଣ କରିଥାଏ । ତେବେ ଯେଉଁମାନେ ସମାଜରେ ରହିଥିବା ଦୁଃଖକୁ

ଦୂର କରିବାକୁ ପ୍ରୟାସ କରିଛନ୍ତି ଓ ଯେଉଁମାନଙ୍କର ପ୍ରୟାସ ଯୋଗୁ ଅଗଣିତ ମଣିଷ ଦୁଃଖ ଯାତନାରୁ ମୁକ୍ତି ପାଇଛନ୍ତି, ସେମାନଙ୍କର ସଭ୍ୟତାକୁ ଅବଦାନ ଅତୁଳନୀୟ । ଜାତି, ଧର୍ମ, ଜାତୀୟତା ନିର୍ବିଶେଷରେ ଯେଉଁମାନେ ଅନ୍ୟର ଦୁଃଖ ଦୂର କରିବାରେ ସଫଳ ହୋଇଛନ୍ତି ଓ ସୁଖ ତଥା ଆନନ୍ଦର ପରିବେଶ ଆଣି ଦେଇଛନ୍ତି ସେହିମାନେ ହିଁ ଇତିହାସର ସବୁଠାରୁ ଉନ୍ନତ ବ୍ୟକ୍ତି । କୁଷ୍ଠରୋଗର ଚିକିତ୍ସା ବାହାର କରି ଯିଏ ସବୁ ଦେଶର କୁଷ୍ଠରୋଗୀଙ୍କ ଓଠରେ ହସ ସୃଷ୍ଟି କରିଛନ୍ତି, ଯିଏ ଇଲେକ୍‌ଟ୍ରିକାଲ ଆଲୁଅର ଉଦ୍ଭାବନ କରି ରାତିକୁ ଆଲୋକିତ କରିଛନ୍ତି, ଉନ୍ନତ ଚାଷ ପ୍ରଣାଳୀ ଦ୍ୱାରା ଉତ୍ପାଦନକୁ ବହୁ ଗୁଣିତ କରିଛନ୍ତି, କମ୍ପ୍ୟୁଟର ଉଦ୍ଭାବନ କରି ଜ୍ଞାନର ବିକାଶ ଘଟାଇଛନ୍ତି, ସେହିଭଳି ଜ୍ଞାନ ପିପାସୁ ବ୍ୟକ୍ତିମାନେ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଛନ୍ତି । ସେହିମାନଙ୍କର ହେତୁବାଦୀ କୌତୂହଳ ପ୍ରବଣତା ଯୋଗୁ ଜୀବନରୁ ଦୁଃଖ ଯନ୍ତ୍ରଣା କମିଛି ଓ ସଭ୍ୟତାର ବିକାଶ ତ୍ୱରାନ୍ୱିତ ହୋଇଛି ।

ଏଠାରେ ହେତୁବାଦୀ ଦୃଷ୍ଟିଭଙ୍ଗୀକୁ ଅନ୍ୟ ଦୃଷ୍ଟିଭଙ୍ଗୀଠାରୁ ପୃଥକ୍ କରାଯାଇପାରେ । ସଂସାରରେ ଥିବା ରାଶି ରାଶି ଦୁଃଖର କାରଣକୁ ଯଦି ଶ୍ରେଣୀ ବିଭାଜନ କରାଯାଏ, ତେବେ ମୁଖ୍ୟତଃ ଦୁଇଟି କାରଣ ସମ୍ମୁଖକୁ ଆସିଥାଏ । ଆମର ଅଧିକାଂଶ ଦୁଃଖ ଯନ୍ତ୍ରଣା ଯେଉଁ କାରଣରୁ ଆସିଥାଏ, ତାହାର ଉତ୍ସ ହେଉଛି ପ୍ରାକୃତିକ ବା ମାନବିକ । ପ୍ରାକୃତିକ କାରଣରୁ ରୋଗ ସୃଷ୍ଟିହୁଏ, ପ୍ରାକୃତିକ ଦୁର୍ବିପାକରୁ ମଣିଷର ସଂସାର ଉଚ୍ଛନ୍ନ ହୋଇଥାଏ । ତେବେ ମଣିଷ ଏହି ପ୍ରାକୃତିକ କାରଣକୁ ବୁଦ୍ଧି ପ୍ରୟୋଗ କରି ବୁଝିବାକୁ ପ୍ରୟାସ କରିଥାଏ ଓ ସେଥିରୁ ଉଦ୍ଧାର ପାଇଁ ଉପାୟ ଚିନ୍ତା କରିଥାଏ । ସେହି ପ୍ରୟାସରୁ ହିଁ ତ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ସଭ୍ୟତାର ଚକ ଆଗକୁ ଯାଇଛି । ଅପର ଘଟଣାଟି ହେଉଛି ମଣିଷ ଦ୍ୱାରା ମଣିଷର ଦୁଃଖ ଦୁର୍ଦ୍ଦଶା ବୃଦ୍ଧି ପାଇଛି ଓ ଏହା ହିଁ ସବୁଠାରୁ ବଡ଼ ବିଡ଼ମ୍ବନା । ଯୁଦ୍ଧ, ବିଭୀଷିକା, ଦାସତ୍ୱ, ଉଚ୍ଚନୀଚ ଭେଦଭାବ, ନାନା ଶୋଷଣ, ଅନ୍ୟାୟ ଓ ବୈଷମ୍ୟ ଏ ସମାଜରେ ମଣିଷ ସୃଷ୍ଟି କରିଛି ଏବଂ ଅନ୍ୟର ଦୁଃଖର କାରଣ ହୋଇଛି । ମଣିଷର ଦୁର୍ବୁଦ୍ଧି, ଅଜ୍ଞତା ଓ ଅବିବେକିତା ଯୋଗୁ ଆମ ସଂସାରରେ ବହୁ ଦୁଃଖ ଓ ଅନ୍ୟାୟର ଝଞ୍ଜା ବହିଛି । ତେବେ ସମାଜରେ ଯାହା ଦୁଃଖ, ଯନ୍ତ୍ରଣା ଓ ଅମାନବୀୟ ଘଟଣାମାନ ରହିଛି ତାହାକୁ କେଉଁ ଦିଅଁ ଦେବତା ବା ଈଶ୍ୱର ଦୂର କରିପାରିବେ ନାହିଁ । ବରଂ ମଣିଷ ହିଁ ନିଜର ବିଚାରଶୀଳତା ଓ ମାନବିକତାର ପ୍ରସାର କରି ସେହି ପରିବେଶକୁ ଉନ୍ନତ କରିପାରିବ ।

ହେତୁବାଦୀ ଜୀବନ-ଦର୍ଶନ ଏହି ସିଦ୍ଧାନ୍ତ କରିଆସିଛି ଯେ, ମଣିଷର ପ୍ରୟାସ ଦ୍ୱାରା ଜୀବନ ଉନ୍ନତ ଓ ପ୍ରୀତିପଦ ହୋଇପାରିବ । ଜୀବନର ଗୁଣାତ୍ମକମାନ ମଣିଷର ପ୍ରୟାସ ଦ୍ୱାରା ଉନ୍ନତ ହୋଇଛି ଓ ଆଜି ସମାଜରେ ଯାହା କିଛି ମନ୍ଦ, ଅଶୁଭ ବା ଜଟିଳ

ରହିଛି ତାହା ବିଚାରଶୀଳତା ଓ ମାନବିକତାର ପ୍ରସାର ଦ୍ୱାରା ଦୂର କରାଯାଇପାରିବ । ଏକ ମାନବିକ, ନ୍ୟାୟପୂର୍ଣ୍ଣ ପୃଥିବୀ ଓ ସୁନ୍ଦର ସାମାଜିକ ପରିବେଶ ମଣିଷର ପ୍ରୟାସ ଦ୍ୱାରା ସମ୍ଭବ ହୋଇପାରିବ । ଆମେ ଉଦ୍ୟମ କରି ଆମର ଅର୍ଥନୀତି, ସମାଜ, ରାଜନୈତିକ ବ୍ୟବସ୍ଥା, ସଂସ୍କୃତି ଇତ୍ୟାଦି ସକଳ ଦିଗକୁ ଉନ୍ନତ ଆଉ ନ୍ୟାୟଯୁକ୍ତ କରିପାରିବା । ନୈତିକ ଉତ୍କର୍ଷ, ଶୋଭନୀୟ ଦୃଷ୍ଟିଭଙ୍ଗୀ ଓ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ଆମର ନିଷ୍ଠାପର ପ୍ରୟାସ ଦ୍ୱାରା ବ୍ୟାପକ ହୋଇପାରିବ । ଏହା ହିଁ ହେତୁବାଦୀଙ୍କର ଜୀବନାଦର୍ଶ ଓ ଏହି ବିଚାରାଦର୍ଶରେ ବିଶ୍ୱାସୀ ବ୍ୟକ୍ତିମାନେ ହିଁ ହେତୁବାଦୀ । ସେମାନେ ସର୍ବଦା ମଣିଷ ପ୍ରତି ଉତ୍ତରଦାୟୀ ଓ ସେମାନଙ୍କର ଜୀବନଦୃଷ୍ଟି ମାନବକୈନ୍ଦ୍ରିକ ଏବଂ ଇହଲୌକିକ । କୌଣସି ପାରଲୌକିକ ଜଗତ, ସ୍ୱର୍ଗ, ମୁକ୍ତି ସେମାନଙ୍କର କାମ୍ୟ ନୁହେଁ । ସେସବୁ କେବଳ କଳ୍ପନା ମାତ୍ର । ହେତୁବାଦୀଙ୍କର କାମ୍ୟ ହେଉଛି ଏକ ପ୍ରୀତିପୂର୍ଣ୍ଣ, ଭ୍ରାତୃତ୍ୱଭରା ଓ ସମତାପୂର୍ଣ୍ଣ ପୃଥିବୀର ରୂପାୟନ । (୨.୩.୧୧)



# ଉତ୍ତମ ଜୀବନ ଓ ହେତୁବାଦ (୨)

ଉତ୍ତମ ଜୀବନର ସ୍ୱରୂପ ନିର୍ଣ୍ଣୟ କରିବା ଜଟିଳ ମନେହେଲେ ବି ଏହାର ଏକ ବ୍ୟାବହାରିକ ମାନଦଣ୍ଡ ନିରୂପଣ କରିବା ଅସମ୍ଭବ ନୁହେଁ । ଏହି ପୃଷ୍ଠଭୂମିରେ ଉତ୍ତମ ଜୀନବ ସହ ନୈତିକ ମୂଲ୍ୟବୋଧ, ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦିଆଯାଇପାରେ । ସେହିପରି ହେତୁବାଦର ପରିସର ବ୍ୟାପକ ହେଲେ ମଧ୍ୟ ବିଚାରଶୀଳ ଦୃଷ୍ଟି ଓ ମାନବବାଦୀ ସମ୍ବେଦନଶୀଳତାକୁ ଏହାର ଦୁଇଟି ପ୍ରଧାନ ଆଧାର ଭାବେ ନିଆଯାଇପାରେ । ଏହି ପୃଷ୍ଠଭୂମିରେ ହେତୁବାଦୀମାନେ ଉତ୍ତମ ଜୀବନର ପ୍ରବକ୍ତା କହିଲେ ଅତ୍ୟୁକ୍ତି ହେବନାହିଁ, ଯଦିବା ସେମାନେ ପ୍ରାୟତଃ ବହୁ ବିରୋଧ ଓ ପ୍ରତିକୂଳ ସ୍ଥିତିକୁ ଜୀବନରେ ସାମ୍ନା କରିଥାନ୍ତି ।

ଇତିହାସର ଏହା ବିଡ଼ମ୍ବନା ଯେ ପୃଥିବୀର ବିଭିନ୍ନ ସଭ୍ୟତାରେ ବିଚାରଶୀଳ ଓ ଦରଦୀ ମଣିଷମାନେ ବହୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ଯେଉଁମାନେ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଛନ୍ତି ଓ ଯେଉଁମାନେ ସଭ୍ୟ ଜୀବନଧାରାରେ ପଥପ୍ରଦର୍ଶକ ସେମାନେ ନିଜର ସମସାମୟିକ ସମାଜରେ ବହୁ ତାଡ଼ନା ସହ୍ୟ କରିଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ଓ ଏପରିକି ବହୁ ବିପର୍ଯ୍ୟୟ ଓ ନାନା ନିର୍ଯାତନାର ଶରବ୍ୟ ହୋଇଛନ୍ତି । କାରଣ ସେମାନେ ଦୂରଦ୍ରଷ୍ଟା ଓ ନିଜ ସମୟଠାରୁ ବହୁ ଆଗକୁ ଭାବିପାରନ୍ତି । କିନ୍ତୁ ସାମାଜିକ ପରିବେଶରେ ରକ୍ଷଣଶୀଳତା ଓ ଧାର୍ମିକ ମାନସିକତା କୌଣସି ସଂସ୍କାର ଓ ନୂତନ ମୂଲ୍ୟବୋଧକୁ ହଠାତ୍ ଗ୍ରହଣ କରିପାରେ ନାହିଁ । ଯେଉଁଠି ରକ୍ଷଣଶୀଳତାର ପ୍ରାଧାନ୍ୟ ଜନଜୀବନକୁ କବଳିତ କରି ରଖିଥାଏ, ସେଠାରେ କୌଣସି ପ୍ରଗତିଶୀଳ ଆଦର୍ଶ ସହଜରେ ଗୃହୀତ ହୋଇପାରେ ନାହିଁ । ପୁନଶ୍ଚ ରକ୍ଷଣଶୀଳ ବ୍ୟବସ୍ଥାକୁ ଧର୍ମ, ସଂସ୍କୃତି ଓ ପରମ୍ପରା ସହ ସଂଶ୍ଳିଷ୍ଟ କରାଯାଇ ସଂସ୍କାରବାଦୀ ଭାବନା ଓ କୌଣସି ବୈଜ୍ଞାନିକ ବିଚରକୁ ସଂସ୍କୃତି ବିରୋଧୀ, ଧର୍ମ ବିରୋଧୀ କୁହାଯାଇ ଜନଗଣଙ୍କର ଭାବପ୍ରବଣତାକୁ ଅକ୍ଲେଶରେ ପ୍ରଭାବିତ କରାଯାଏ । ବିଶେଷକରି କ୍ଷମତାଧର ବ୍ୟକ୍ତିମାନେ ବା ସାମାଜିକ ଓ ରାଜନୈତିକ ପ୍ରଭାବ ଥିବା ସମ୍ପନ୍ନ ବ୍ୟକ୍ତିମାନେ ଯଦି କୁସଂସ୍କାରୀ ହୋଇଯାନ୍ତି, ତେବେ ସେମାନେ ସ୍ୱାଧୀନ ଚିନ୍ତାର ବା ସଂସ୍କାରିତ ଚେତନାର ବ୍ୟକ୍ତିମାନଙ୍କ ପ୍ରତି ଅସୂୟା

ମନୋଭାବ ପୋଷଣ କରିବାର ବହୁ ଦୃଷ୍ଟାନ୍ତ ଇତିହାସରେ ମିଳେ । ସମାଜର ଶାସକ ଓ ପ୍ରଭାବଶାଳୀ ଶ୍ରେଣୀ ନିଜ ସ୍ୱାର୍ଥର ପରିପନ୍ଥୀ କୌଣସି ମହତ୍ତର ଭାବନାକୁ ସହଜରେ ଗ୍ରହଣ କରିପାରନ୍ତି ନାହିଁ । ପରିଣାମସ୍ୱରୂପ ପ୍ରଗତିଶୀଳ ବୁଦ୍ଧିଜୀବୀ ଓ ଚିନ୍ତାନାୟକମାନେ ସାମାଜିକ ପରିବେଶରେ ବରୋଧର ସମ୍ମୁଖୀନ ହୁଅନ୍ତି । ସତ୍ୟ, ଜ୍ଞାନ ପ୍ରତି ଉତ୍ସର୍ଗୀକୃତ ଓ ମାନବିକତାର ଜୟଗାନ କରିଥିବା ବିଭିନ୍ନ ସଭ୍ୟତାର ବହୁ ମନୀଷୀ କିପରି ନିଜର ସମସାମୟିକ ସମାଜ ଦ୍ୱାରା ନିଷେସିତ ହେଉଛନ୍ତି ତାହାର କେତୋଟି ମାତ୍ର ଉଦାହରଣ ଦିଆଯାଇପାରେ ।

ନ୍ୟାୟ ଓ ବିଚାରଶୀଳତା ପ୍ରତି ଉତ୍ସର୍ଗୀକୃତ ବ୍ୟକ୍ତି ସକ୍ରେଟିସଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯିବା ଇତିହାସରେ ସୁବିଦିତ । ମାନବ ଦରଦୀ ଓ କରୁଣାର ପ୍ରତୀକ ଯୀଶୁଖ୍ରୀଷ୍ଟଙ୍କୁ ବର୍ବରୋଚିତ ଭାବେ କ୍ରୁଶବିଦ୍ଧ କରାଯାଇଛି । ନିଷ୍ପାପ ଜୀବନର ଅଧିକାରୀ ଭୂମାବାଦୀ ମହାନ ଦାର୍ଶନିକ ସ୍ପିନୋଜା ସାମାଜିକ ସ୍ତରରେ ବାସନ୍ଦ ହୋଇ ଦୟନୀୟ ଭାବେ ଜୀବନ ନିର୍ବାହ କରିଛନ୍ତି । ସତ୍ୟାନ୍ୱେଷୀ ପ୍ରବୀଣ ବୈଜ୍ଞାନିକ ଗାଲିଲିଓଙ୍କୁ ବନ୍ଦୀ ଜୀବନ ବିତାଇବାକୁ ହୋଇଛି । ମହାନ୍ ବୁଦ୍ଧିଜୀବୀ ବ୍ରୁନୋଙ୍କୁ ସର୍ବସାଧାରଣରେ ପୋଡ଼ି ହତ୍ୟାକରାଯାଇଛି । ସତ୍ୟ ଓ ଅହିଂସାର ପ୍ରବକ୍ତା ମହାତ୍ମା ଗାନ୍ଧୀ ଧର୍ମାନ୍ଧ ମାନସିକତାରେ ଉଦଭ୍ରାନ୍ତ ଆତତାୟୀର ଗୁଳିରେ ମୃତ୍ୟୁବରଣ କରିଛନ୍ତି । ମାନବିକ ଅଧିକାର ଓ ଏକ ସମତାଭିତ୍ତିକ ସମାଜର ପ୍ରବକ୍ତା ମାର୍ଟିନ ଲୁଥର କିଙ୍ଗ ଜୁନିୟର ବି ଗୁଳିର ଶିକାର ହୋଇଛନ୍ତି । କେତେ କେତେ ବୈଜ୍ଞାନିକଙ୍କ ନୂତନ ଉଦ୍ଭାବନ ଓ ଅବିଷ୍କାର ସେମାନଙ୍କୁ ନାନା ବିରୋଧ ଓ ସାମାଜିକ କଟାକ୍ଷର ସମ୍ମୁଖୀନ କରାଇଛି । ସଭ୍ୟତାକୁ ଓ ଚିନ୍ତାରାଜ୍ୟକୁ ଅମୂଲ୍ୟ ଅବଦାନ ଦେଇଥିବା ବହୁ ବ୍ୟକ୍ତି ନିଜର ସମସାମୟିକ ସମାଜ ଦ୍ୱାରା ନାନା ଭାବରେ ନିର୍ଯାତିତ ହେବାର କରୁଣ କାହାଣୀ ଇତିହାସରେ ରହିଛି । ଏହା ସଭ୍ୟତାରେ ଅଙ୍କ ବହୁତ ହୋଇଛି । ତଥାପି ସେହି ସତ୍ୟଦ୍ରଷ୍ଟା ଓ ଦରଦୀ ଚିନ୍ତାନାୟକଙ୍କର ଅବଦାନ ଯୋଗୁ ନୂଆ ବିଚାର ଆସିଛି, ସାମାଜିକ ଓ ରାଜନୈତିକ ଢାଞ୍ଚାରେ ପରିବର୍ତ୍ତନର ସୂତ୍ରପାତ ହୋଇଛି, ସଭ୍ୟ ମୂଲ୍ୟବୋଧ ସୃଷ୍ଟି ହୋଇଛି, ଜ୍ଞାନବିଜ୍ଞାନର ବିକାଶ ହୋଇଛି ଓ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଛି । କିନ୍ତୁ ସେମାନେ ନିଜ ସମସାମୟିକ ସମାଜରେ କେତେ ନିନ୍ଦା ଓ ଅପଯଶ ନେଇ ଜୀବନ ନିର୍ବାହ କରିଛନ୍ତି । ସେହିମାନେ ବିବେକର ଯେଉଁ ସ୍ୱର ସୃଷ୍ଟି କରିଛନ୍ତି, ତାହାର ଧ୍ୱନି ଓ ପ୍ରତିଧ୍ୱନିକୁ ପରିବର୍ତ୍ତନ-ବିରୋଧୀ ରକ୍ଷଣଶୀଳ ବ୍ୟକ୍ତିମାନେ ସାମୟିକ ଭାବେ ଦବାଇ ଦେଇଥିଲେ ମଧ୍ୟ ତାହାକୁ ନଷ୍ଟ କରିପାରିନାହାନ୍ତି । ମଣିଷର ସୃଜନଶୀଳତା, ବିବେକବୋଧ ରୁଦ୍ଧ ମାନସିକତା ଓ ପଶୁ ଶକ୍ତି ପାଖରେ ହାର ମାନିଯାଇନାହିଁ ।

ତେବେ ଧର୍ମଧ୍ୱଜାଧାରୀ ପ୍ରଭାବଶାଳୀ ବ୍ୟକ୍ତିମାନେ ରାଷ୍ଟ୍ରଶକ୍ତିକୁ ନିଜ ସ୍ୱାର୍ଥ ପାଇଁ ବିନିଯୋଗ କରୁଥିବା ପରିପ୍ରେକ୍ଷୀରେ ହେତୁବାଦୀମାନେ ହିଁ ନାନା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି । ତଥାପି ସେମାନେ ଜ୍ଞାନର ବିକାଶ ଓ ନୈତିକ ମୂଲ୍ୟବୋଧର ପ୍ରସାରଜନିତ ଉତ୍ତମ ଜୀବନର ଯେଉଁ ସ୍ଫୁଲିଙ୍ଗଟି ସୃଷ୍ଟି କରିଥାନ୍ତି, ତାହାର ସୁଫଳ ସମାଜ ପାଏ, ଭବିଷ୍ୟତ ଜନଗଣ ପାଆନ୍ତି ।

ଏକଥା ସତ୍ୟ ଯେ, ମଣିଷ ସ୍ୱଭାବରେ ଯେପରି ମହନୀୟତା ରହିଛି ସେହିପରି ପାଶବିକତା ରହିଛି । ମଣିଷର ସୁଗୁଣ ଓ ମହତ ସ୍ୱଭାବ ବିକଶିତ ହେଲେ କେତେ ସୃଜନଶୀଳ ଓ ସମ୍ବେଦନଶୀଳ ସମ୍ଭାବନାରେ ଜୀବନ ମହନୀୟ ହୋଇପାରେ । ଅଥଚ ମଣିଷର ପାଶବିକତା ଓ ସ୍ୱାର୍ଥପରତା ବ୍ୟକ୍ତି ସ୍ୱଭାବକୁ କବଳିତ କଲେ ମଣିଷ ଯେକୌଣସି ହୀନକାର୍ଯ୍ୟ କରିପାରେ । ବସ୍ତୁତଃ ବ୍ୟକ୍ତିର ସ୍ୱଭାବ, ନୀତିବୋଧ, ଜୀବନ ଓ ସମାଜ ପ୍ରତି ଦୃଷ୍ଟିଭଙ୍ଗୀ, କର୍ମସଂସ୍କୃତି ବହୁଭାବରେ ସାମାଜିକ ପରିବେଶ ଦ୍ୱାରା ପ୍ରଭାବିତ ହୋଇଥାଏ । ପାରିବାରିକ ପରିବେଶ, ଶିକ୍ଷା, ସାମାଜିକ ପରିସ୍ଥିତି ବ୍ୟକ୍ତି ସ୍ୱଭାବକୁ ମହତ୍ତର କରିପାରେ କିମ୍ବା ହୀନତର କରିପାରେ । ତେବେ ବ୍ୟକ୍ତି ସ୍ୱଭାବ ଓ ସାମାଜିକ ପରିବେଶର ସାମ୍ପ୍ରତିକ ସ୍ଥିତି ଭିତରେ ସର୍ବଦା କିଛି ଦ୍ୱନ୍ଦ୍ୱ, ବିବାଦ, ଅନୈକ୍ୟ ରହିବ ଓ ସମାଜ କେବେହେଲେ ନୈତିକ ପୂର୍ଣ୍ଣତା ଲାଭ କରିଯିବ ନାହିଁ । ତେବେ ମଣିଷର ଉଦ୍ୟମରୁ ସାମାଜିକ ପରିବେଶରେ ଗୁଣାତ୍ମକ ପରିବର୍ତ୍ତନ ଦ୍ୱାରା ଜୀବନ ପ୍ରବାହରୁ ଦ୍ୱନ୍ଦ୍ୱ ଓ ଅନୈକ୍ୟକୁ ବହୁ ଭାବରେ କମାଯାଇପାରିବ । ସାମାଜିକ ଜୀବନକୁ ଅଧିକ ସରସ ଓ ଦ୍ୱନ୍ଦ୍ୱମୁକ୍ତ କରିବାପାଇଁ ତଥା ଅନ୍ୟାୟ, ଶୋଷଣ, ବୈଷମ୍ୟ ଇତ୍ୟାଦି ଅମାନବିକ ପରିସ୍ଥିତିର ନିରାକରଣ ପାଇଁ ବିଚାରଶୀଳ ବ୍ୟକ୍ତିମାନେ ବାଟ ଖୋଜନ୍ତି । ସେମାନେ ପରିସ୍ଥିତିକୁ ଅନୁଶୀଳନ କରନ୍ତି ଓ ଉନ୍ନତ ସ୍ଥିତି ପାଇଁ ଗଭୀର ଚିନ୍ତାପ୍ରକଟ କରନ୍ତି । ସେମାନେ କେଉଁ ଦିଅଁ ଦେବତା ପାଖରେ ଶରଣ ପଶନ୍ତି ନାହିଁ, ସବୁକିଛିକୁ ମାୟା କହି ସଂସାରତ୍ୟାଗୀ ହୁଅନ୍ତି ନାହିଁ ବା ସବୁକିଛି ପୂର୍ବନିର୍ଦ୍ଦିଷ୍ଟ ଭାବି ଏକ ବିରାଗ ଭାବ ଆଣି ଉଦାସୀନ ରହନ୍ତି ନାହିଁ । ପରନ୍ତୁ ସେମାନେ ମଣିଷର ସୃଜନଶୀଳତାରେ ଆସ୍ଥା ରଖି ଯେକୌଣସି ପରିସ୍ଥିତିରେ ସମାଧାନ ପାଇଁ ପ୍ରୟାସ କରନ୍ତି । ଏହା ହିଁ ହେଉଛି ହେତୁବାଦୀ ଦୃଷ୍ଟିଭଙ୍ଗୀ । ହେତୁବାଦଜନିତ ଏହି କୌତୂହଳ ପ୍ରବଣତା ଓ ସୃଜନଶୀଳତା ମଧ୍ୟ ଦେଇ ସଭ୍ୟତାର ଚକ ଆଗକୁ ଯାଇଛି । ଜ୍ଞାନବିଜ୍ଞାନର ବିକାଶ ହୋଇଛି, ନୈତିକ ଓ ମାନବିକ ମୂଲ୍ୟଚୟର ଅଭିବୃଦ୍ଧି ଘଟିଛି ଓ ଜୀବନର ମାନ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତ ହୋଇଚାଲିଛି । ତେବେ ଏସବୁ ସମାଜରେ ହଠାତ୍ ଘଟିନାହିଁ । କେତେ

ଦ୍ୱନ୍ଦ୍ୱ, ବିରୋଧ, ସଂଘର୍ଷମୟ ସ୍ଥିତି ଦେଇ ସଭ୍ୟ ଜୀବନର ପରିବେଶ ଧୀରେ ଧୀରେ ସୃଷ୍ଟି ହେବାରେ ଲାଗିଛି । ହେତୁବାଦୀମାନେ ବହୁ ତ୍ୟାଗ ବିନିମୟରେ ସମାଜକୁ ଦିଗ୍‌ଦର୍ଶନ ଦେଇଛନ୍ତି, ଜୀବନର ଗୁଣାତ୍ମକ ମାନରେ ଉନ୍ନତି ପାଇଁ ସର୍ବଦା ନିଜର ସମ୍ପୃକ୍ତି ପ୍ରକାଶ କରିଆସିଛନ୍ତି ।

ଉପସଂହାରରେ ଏକ ଉତ୍ତମ ଜୀବନ ହୁଏତ ସଫଳ ଜୀବନ ନ ହୋଇପାରେ । କାରଣ ଯେଉଁମାନେ କ୍ଷମତା, ପ୍ରାଚୁର୍ଯ୍ୟ ଓ ସମ୍ପନ୍ନତା ଭିତରେ ଜୀବନ ନିର୍ବାହ କରିଛନ୍ତି, ସେମାନେ ବ୍ୟକ୍ତିଗତ ଭାବେ ହୁଏତ ଅନୁକୂଳ ପରିସ୍ଥିତି ଯୋଗୁ ସଫଳତା ଲାଭ କରିଛନ୍ତି । କିନ୍ତୁ ଯେଉଁମାନେ ସମାଜ ପ୍ରତି ନିଜର ସମ୍ପୃକ୍ତି ପ୍ରକାଶ କରିଛନ୍ତି ଓ ନିଜର ସାମର୍ଥ୍ୟ ଭିତରେ ସୃଜନଶୀଳ ଅବଦାନ ଦେଇ ସମାଜକୁ ଆଗକୁ ନେଇଛନ୍ତି, ସେମାନଙ୍କର ବ୍ୟକ୍ତିଗତ ବିଫଳତା ସତ୍ତ୍ୱେ ସେମାନେ ଅନେକାଂଶରେ ସଫଳ ମଣିଷ ବୋଲି କୁହାଯାଇପାରେ । ବୃହତ୍ତର ସମାଜର ଗୁଣାତ୍ମକ ଉନ୍ନତି ପାଇଁ ଯେଉଁମାନେ ତ୍ୟାଗ ସ୍ୱୀକାର କରିଛନ୍ତି ଓ ଏକ ସମ୍ବେଦନଶୀଳ ଜୀବନକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି ସେହି ମାନସିକତା ଉତ୍ତମ ଜୀବନର ଲକ୍ଷଣ ସହ ସମତାଳ ମନେହୁଏ । ଜଣେ ଯୁଗାନ୍ତକାରୀ ଚିନ୍ତାନାୟକଙ୍କ ମତରେ ଦାର୍ଶନିକମାନେ ଆମ ସଂସାରକୁ ନାନା ଭାବରେ ବ୍ୟାଖ୍ୟା କରିଛନ୍ତି, କିନ୍ତୁ ଆବଶ୍ୟକ ଏକ ଶ୍ରେଣୀହୀନ ଓ ଶୋଷଣମୁକ୍ତ ସମାଜରେ ଏହାକୁ ପରିବର୍ତ୍ତନ କରିବା । ସେହିପରି ଉତ୍ତମ ଜୀବନ ନେଇ କେତେ କେତେ ତତ୍ତ୍ୱର ବ୍ୟାଖ୍ୟାନ ହୋଇଛି । କିନ୍ତୁ ଉତ୍ତମ ଜୀବନଟିଏ ବଞ୍ôବା ସବୁଠାରୁ ବଡ଼ ଆହ୍ୱାନ ହୋଇଛି । ହେତୁବାଦୀମାନେ ଅନେକାଂଶରେ ଉତ୍ତମ ଜୀବନ ବଞ୍ôବାକୁ ପ୍ରୟାସ କରିଆସିଛନ୍ତି । (ପ୍ରଗତିବାଦୀ- ୯.୩.୧୧)



# ଉତ୍ତମ ଜୀବନ ଓ ଜୀବନ ଯନ୍ତ୍ରଣା

ଜୀବନ ସହ ଦୁଃଖ ଓ ଯନ୍ତ୍ରଣା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ଜୀବନ ଥିବା ପ୍ରତ୍ୟେକ ପ୍ରାଣୀର ଦୁଃଖ, ଯନ୍ତ୍ରଣା ରହିଛି । ତେବେ ଏଠାରେ ଆମେ ମଣିଷର ଦୁଃଖ, ଯନ୍ତ୍ରଣା ବିଷୟରେ କିଞ୍ଚିତ ଆଲୋଚନା କରିବା, ପଶୁ ବା ଇତର ପ୍ରାଣୀଙ୍କର ଦୁଃଖ ବିଷୟରେ ନୁହେଁ । ମଣିଷ କେବେ ଇଚ୍ଛାକୃତ ଭାବେ ଦୁଃଖ, ଯନ୍ତ୍ରଣା ଚାହେଁ ନାହିଁ କାରଣ ଦୁଃଖ ଯନ୍ତ୍ରଣା ବ୍ୟକ୍ତିକୁ କଷ୍ଟକର ଅନୁଭୂତି ଦେଇଥାଏ । ଏହା ଏପରି ଆବେଗ ସୃଷ୍ଟିକରେ ଯାହା ପ୍ରାଣକୁ ଆନ୍ଦୋଳିତ କରେ ଓ ମନକୁ ଭାରାକ୍ରାନ୍ତ କରିଥାଏ । ଏହା ସୁଖକର ଆବେଗର ପ୍ରତିକୂଳ । ଏକ ସୁଖକର ଆବେଗ ମୁହଁରେ ହସ, ଆନନ୍ଦ ଆଣିବା ବେଳେ ଏକ ଦୁଃଖକର ଆବେଗ ଏହାର ବିପରୀତ ଅନୁଭୂତି ଦେଇଥାଏ ଓ ବେଳକେ ଚକ୍ଷୁକୁ ଲୋତକପୂର୍ଣ୍ଣ କରିଥାଏ । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ଥିଲା ବା ଆଜି ଯେତେବେଳେ ସଭ୍ୟ ଜୀବନର ବିକାଶ ହୋଇଛି କୌଣସି ସ୍ଥିତିରେ ଏକ ଦୁଃଖ ରହିତ ସମାଜର ଚିତ୍ର ଆମେ ପାଇବା ନାହିଁ । ଜୀବନ ସହିତ ଏପରି ଅନେକ ଘଟଣା ସଂଯୋଜିତ ହୋଇ ରହିଛି ଯାହା ମଣିଷ ପାଇଁ ପ୍ରତିକୂଳ ହେବା ସହ ମଣିଷର ଆଖିକୁ ଲୋତକପୂର୍ଣ୍ଣ କରିଆସିଛି । ଆମ ସଂସାରରେ ଅନେକ ଦୁଃଖ ତ ରହିଛି ତା' ସହିତ ମନ୍ଦ ବା ଇଭିଲ ବି ରହିଛି । ବରଂ ମନ୍ଦରୁ ଅନେକ ଦୁଃଖ ସୃଷ୍ଟି ହୋଇଆସିଛି । ଅର୍ଥାତ୍ ମନ୍ଦ ଯଦି କାରଣ, ତାହାର ପରିଣତି ହେବ ଦୁଃଖ, ଯାହା ଅଶୁଭ, ଅନିଷ୍ଟକର, ଅହିତ, ଅମଙ୍ଗଳକର ତାହା ହିଁ ହେଉଛି ମନ୍ଦ ଓ ଏହି ମନ୍ଦରୁ ଦୁଃଖର ନିଷ୍ପନ୍ନ ହୋଇଥାଏ । ପୁନଶ୍ଚ ଦୁଃଖ ବିଭିନ୍ନ ସ୍ତରର ହୋଇପାରେ ଓ ବିଭିନ୍ନ ପ୍ରକାରର ହୋଇପାରେ । ଏହା ବ୍ୟକ୍ତିର ହୋଇପାରେ, ପରିବାରର ହୋଇପାରେ, ଏକ ଦଳ ବା ବୃହତ୍ତର ଗୋଷ୍ଠୀର ହୋଇପାରେ ଓ ଏପରିକି ଏକ ରାଷ୍ଟ୍ରର ବି ହୋଇପାରେ ।

ସ୍ଥଳବିଶେଷରେ ଶାରୀରିକ ଯନ୍ତ୍ରଣା ଓ ମାନସିକ ଯନ୍ତ୍ରଣା ଭିତରେ ପାର୍ଥକ୍ୟ ଅଣାଯାଏ । କେତେକ ଦୁଃଖ, ଯନ୍ତ୍ରଣା, ଶାରୀରିକ ହୋଇପାରେ ଓ ଅନ୍ୟ କେତେକ ମାନସିକ ହୋଇପାରେ । କୌଣସି ରୋଗରେ ଆକ୍ରାନ୍ତ ହୋଇ କଷ୍ଟ ପାଇବା, ଏକ ଦୁର୍ଘଟଣାରେ ଏକ ଗୋଡ଼ ହରାଇବା, ଦାରିଦ୍ର୍ୟ ଯୋଗୁ ପେଟର ଜ୍ୱାଳା ସହ୍ୟ କରିବାର ଦୁଃଖକୁ ହୁଏତ ଶାରୀରିକ ଦୁଃଖ ପର୍ଯ୍ୟାୟର ଯନ୍ତ୍ରଣା ଭାବେ ନିଆଯାଇପାରେ । ଅପର ପକ୍ଷରେ ଶାରୀରିକ କଷ୍ଟ ଜନିତ ପରିବେଶ ନ ଥାଇ ବି ମାନସିକ ସ୍ତରରେ ଜଣେ ବହୁ

କଷ୍ଟ ବା ଆଘାତ ଭିତରେ ଜୀବନ ବଞ୍ଚୁଥାଇ ପାରେ । ଜଣେ ଆର୍ଥିକ ସ୍ଥିତି ଦୃଷ୍ଟିରୁ ବେଶ୍ ସ୍ୱଚ୍ଛଳ, କୌଣସି ଅଭାବବୋଧ ତାଙ୍କର ନାହିଁ, ସେପରି କିଛି ରୋଗ ଯନ୍ତ୍ରଣା ବି ନାହିଁ ତଥାପି ଜୀବନର ଘଟଣା ପ୍ରବାହ ତାଙ୍କ ପାଇଁ ବେଶ ପ୍ରତିକୂଳ ହୋଇ ତାଙ୍କୁ ନାନା ମାନସିକ ଯନ୍ତ୍ରଣା ଦେଇଛି । କେହି ତାଙ୍କର ଯୋଗ୍ୟ ଓ ଶିକ୍ଷିତା କନ୍ୟାକୁ ବିବାହ ଦେଇ ନ ପାରିବାରୁ, ଅନ୍ୟ କେହି ଏକମାତ୍ର ପୁତ୍ରକୁ ହରାଇଥିବାରୁ ବା ଆଉ କେହି ଅତ୍ୟନ୍ତ ଭଲ ପାଠ ପଢ଼ି ଓ ନିଜ ଯୋଗ୍ୟତା ସତ୍ତ୍ୱେ ଏକ ସମ୍ମାନ ଜନକ କର୍ମସଂସ୍ଥାନ ପାଇ ନଥିବା ହେତୁ ନାନା ଦୁଃଖ, ମନସ୍ତାପ ଭିତରେ ଜୀବନ ଅତିବାହିତ କରୁଛନ୍ତି । କେହି ଅଭାବ, ଅନାଟନ ଓ ଦାରିଦ୍ର୍ୟ ଭିତରେ କଷ୍ଟରେ ଜୀବନ ଅତିବାହିତ କରୁଛନ୍ତି ତ ଅନ୍ୟ କେହି ସ୍ୱଚ୍ଛଳତା ଭିତରେ ଥାଇ ବି ସୁଖ, ଶାନ୍ତି ପାଉନାହାନ୍ତି ।

ତେବେ ଆମର ଦୁଃଖ, ଯନ୍ତ୍ରଣାକୁ ଶାରୀରିକ ଓ ମାନସିକ ଭାବରେ ବିଭାଜନ କରା ନ ଯାଇ ବରଂ ଏହା କହିଲେ ଯଥାର୍ଥ ହେବ ଯେ ସମସ୍ତ ଦୁଃଖ, ଯନ୍ତ୍ରଣା ଏକ ମାନସିକ ଅବସ୍ଥା । ଦୁଃଖ ଅର୍ଥ ମାନସିକ ଅନୁଭବ; ଓ ଏହି ଦୃଷ୍ଟିରୁ ସମସ୍ତ ଦୁଃଖ, ଯନ୍ତ୍ରଣା ସ୍ୱରୂପତଃ ମାନସିକ । ତେବେ ଦୁଃଖର କାରଣ ଶାରୀରିକ ହୋଇପାରେ ବା ମାନସିକ ହୋଇପାରେ । ଶାରୀରିକ କାରଣ ହେଉ ବା ମାନସିକ କାରଣ ହେଉ ସକଳ ଦୁଃଖ ଯନ୍ତ୍ରଣା ବ୍ୟକ୍ତିର ମାନସିକ ଅବସ୍ଥାର ଅଭିବ୍ୟକ୍ତି ହୋଇଥିବାରୁ ଦୁଃଖ ଯେ ଏକ ମାନସିକ ଅବସ୍ଥାକୁ ସୂଚନା ଦିଏ ତାହା ସମ୍ଭବତଃ କୁହାଯାଇପାରେ । ସୁତରାଂ ଦୁଃଖର ଅନୁଭବ ବ୍ୟକ୍ତି ମାନସିକ ସ୍ତରରେ ପାଏ ଯଦିବା ଏହି ଅପ୍ରୀତିକର ଅନୁଭବ ଶାରୀରିକ, ମାନସିକ ବା ଉଭୟ ଶାରୀରିକ ଓ ମାନସିକ କାରଣ ଯୋଗୁଁ ଆସିଥାଏ ।

ଦୁଃଖ ଯେପରି ବ୍ୟକ୍ତିର ହୋଇପାରେ, ସେହିପରି ଏକ ଜନଗୋଷ୍ଠୀର ବା ଏକ ପରିବାରର ହୋଇପାରେ । କେଉଁ ପରିସ୍ଥିତିରେ ଏକ ପରିବାର ଦୁଃଖପୂର୍ଣ୍ଣ ସ୍ଥିତିକୁ ଯାଏ ତାହା ଆମର ନିତି ଦିନିଆ ଅନୁଭୂତିରୁ ଆମେ ଜାଣିପାରନ୍ତି । ତେବେ ଏକ ଗୋଷ୍ଠୀ କେତେକ ପରିସ୍ଥିତିରେ ବି ଯନ୍ତ୍ରଣା ଜର୍ଜରିତ ହୋଇପାରେ । ସାମ୍ପ୍ରଦାୟିକ ବିଦ୍ୱେଷ ବା ଉତ୍ତେଜନା ଥିବା ଏକ ସାମାଜିକ ପରିବେଶରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ଅନ୍ୟମାନଙ୍କ ଦ୍ୱାରା ଶୋଷିତ, ଅତ୍ୟାଚାରିତ ହୋଇ ଦୁଃଖର ପରିବେଶ ଭିତରେ ଜୀବନ ଅତିବାହିତ କରିଥାଏ । ଏକ ଜାତିଭିତ୍ତିକ ସାମାଜିକ ପରିବେଷ୍ଟନୀରେ ତଥାକଥିତ ନିମ୍ନଜାତିର ଲୋକମାନେ ଅନେକ ସମୟରେ ଅସମ୍ମାନର ଶିକାର ହୋଇଥାନ୍ତି । ନିଜର ଜନ୍ମଗତ ସାମାଜିକ ପରିଚୟ ସେମାନଙ୍କ ପାଇଁ ଆଦୌ ସମ୍ମାନଜନକ ହୋଇ ନଥାଏ । ଜାତିଆଣ ମାନସିକତାର ପ୍ରାବଲ୍ୟ ଥିବା ଏକ ସାମାଜିକ ପରିବେଶରେ ଏକ ତଥାକଥିତ ଅସ୍ପୃଶ୍ୟ ଗୋଷ୍ଠୀ ନୈରାଶ୍ୟ,

ଦୁଃଖ ଓ ଅସମ୍ମାନଜନକ ସ୍ଥିତିରେ ଜୀବନ ବଞ୍ଚିବାକୁ ବାଧ ହୋଇଥାଏ । ଏକ ସାମାଜିକ ବ୍ୟବସ୍ଥାର ପରିଣାମ ସ୍ୱରୂପ କେତେକ ଦୁଃଖ କଷ୍ଟର ଶିକାର ହୋଇଥାନ୍ତି ।

ଅନ୍ୟ ଏକ ମାନଦଣ୍ଡରୁ ଦୁଃଖ, ଯନ୍ତଣା ବ୍ୟକ୍ତିଗତ ହୋଇପାରେ ଅଥବା ନୈର୍ବ୍ୟକ୍ତିକ ବା ଅବ୍ୟକ୍ତିକ ହୋଇପାରେ । ଦୁଃଖ ବ୍ୟକ୍ତିଗତ ହୋଇପାରେ କହିବାର ଅର୍ଥ, ଯେତେବେଳେ କୌଣସି ବ୍ୟକ୍ତି ଏକ ଜଟିଳ ପରିସ୍ଥିତି ବା ପ୍ରତିକୂଳ ପରିସ୍ଥିତି ଯୋଗୁଁ କଷ୍ଟକର ସ୍ଥିତିରେ ଜୀବନ ନିର୍ବାହ କରେ । ଅପରପକ୍ଷରେ ଏକ ଅବ୍ୟକ୍ତିକ ଦୁଃଖରେ ବ୍ୟକ୍ତି ନିଜର ପରିସ୍ଥିତିରେ ଦୁଃଖ ପାଏ ନାହିଁ, ବରଂ ଏକ ପରିସ୍ଥିତି ବା ସାମାଜିକ ବ୍ୟବସ୍ଥା ତାକୁ ଦୁଃଖକର ଆବେଗ ଦେଇଥାଏ । ନିଜର କର୍ମସଂସ୍ଥାନ ହରାଇବାରୁ ଅସୁରକ୍ଷିତ ଆର୍ଥିକ ସ୍ଥିତି ଯୋଗୁଁ ଜଣଙ୍କର ଦୁଃଖ ବ୍ୟକ୍ତିଗତ ହୋଇଥାଏ । ବ୍ୟକ୍ତିଗତ ଦୁଃଖରେ ବ୍ୟକ୍ତି ହିଁ କ୍ଷତିଗ୍ରସ୍ତ ହୋଇଥାଏ । ତେବେ ଜଣେ ସହକର୍ମୀ କର୍ମସଂସ୍ଥାନ ହରାଇଥିବାରୁ ତାଙ୍କ ପାଇଁ ଦୁଃଖ ଅବ୍ୟକ୍ତିକ ହୋଇଥାଏ । ନିଜେ ଦୁଃଖକର ସ୍ଥିତିରେ ନଥାଇ ଅନ୍ୟର ଦୁଃଖକର ସ୍ଥିତି ପାଇଁ କଷ୍ଟ ଅନୁଭବ କରିବାକୁ ଅବ୍ୟକ୍ତିକ ଦୁଃଖ କହିବା ସମୀଚୀନ ମନେହୁଏ ।

ସେହିପରି ସମାଜରେ ହିଂସାତ୍ମକ ପରିବେଶ ବୃଦ୍ଧି ପାଉଥିବାରୁ, ରାଜନୈତିକ ଜୀବନ ପ୍ରବାହରୁ ନୈତିକତା ହ୍ରାସ ହେଉଥିବାରୁ, ପ୍ରଶାସନିକ ସ୍ତରରେ ଦୁର୍ନୀତି ବ୍ୟାପକ ହେଉଥିବା କାରଣରୁ କେହି ଦୁଃଖରେ ମ୍ରିୟମାଣ ହେବା ଏକ ଅବ୍ୟକ୍ତିକ ଦୁଃଖ କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟକ୍ତିଗତ ସ୍ତରରେ ଜଣେ କ୍ଷତିଗ୍ରସ୍ତ ନ ହେଲେ ମଧ୍ୟ ସାମାଜିକ ପରିସ୍ଥିତି ଜନିତ କାରଣରୁ ବା ନିଜେ ବିଶ୍ୱାସ କରୁଥିବା ମୂଲ୍ୟବୋଧର ଅବକ୍ଷୟ ଯୋଗୁ କିମ୍ବା ଅନ୍ୟର ପ୍ରତିକୂଳ ସ୍ଥିତିକୁ ଅନୁଭବ କରି ଭାରାକ୍ରାନ୍ତ ମନରେ ଦୁଃଖର ଅନୁଭୂତି ପାଇବାର ମାନସିକତାକୁ ନୈର୍ବ୍ୟକ୍ତିକ ଦୁଃଖ କୁହାଯିବା ସମୀଚୀନ ମନେହୁଏ ।

ଯେତେବେଳେ ନିଜର ହେଉ ବା ଅନ୍ୟର ହେଉ ଜଣଙ୍କର ଅନ୍ୟାୟଜନିତ ଦୁଃଖ ଦୁର୍ଦ୍ଦଶାକୁ ଜଣେ ଅନୁଭବ କରି ମ୍ରିୟମାଣ ହୁଏ ତାହାକୁ ନୈତିକ ଦୃଷ୍ଟିଭାବେ ନିଆଯାଇପାରେ । ଜଣେ ନିରୀହ ବ୍ୟକ୍ତି ଦଣ୍ଡିତ ହେବା ବା ଜଣେ ମହିଳା ଅତ୍ୟାଚାରିତ ହେବା ଘଟଣାରେ ସେମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇ ସେମାନଙ୍କ ପ୍ରତି ହୋଇଥିବା ଅନ୍ୟାୟରେ ମ୍ରିୟମାଣ ହେବା ଦୁଃଖକୁ ନୈତିକ ନିଆଯାଇପାରେ । ନିଜର ଦୁଃଖରେ ମ୍ରିୟମାଣ ହେବା ତ ଏକ ସ୍ୱାଭାବିକ ପ୍ରତିକ୍ରିୟା, କିନ୍ତୁ ଅନ୍ୟର ଦୁଃଖରେ ବିଗଳିତ ହେବାର ମାନସିକତାକୁ ଏକ ସଭ୍ୟ ବା ନୈତିକ ଦୃଷ୍ଟି ଭାବରେ ନିଆଯାଇପାରେ । ମଣିଷ ଭିତରେ ବିଚାରଶୀଳ ଦୃଷ୍ଟିର ବିକାଶ ପରଠୁ ବ୍ୟକ୍ତି ସ୍ୱଭାବରେ ସ୍ୱାର୍ଥପରତା ଯେପରି ସୃଷ୍ଟି ହୋଇଛି ସେହିପରି ସମ୍ବେଦନଶୀଳତା ମଧ୍ୟ ସୃଷ୍ଟି ହୋଇଛି । କେତେକ ବିଚାର ଓ ଆଦର୍ଶ ମାନବିକ

ସତ୍ତାକୁ କ୍ଷୁଦ୍ରତମ ବେଷ୍ଟନୀ ମଧ୍ୟରେ ଆବଦ୍ଧ କରିଥାଏ, ଅପରପକ୍ଷରେ ଅନ୍ୟ କେତେକ ବିଚାର ଓ ଆଦର୍ଶ ବ୍ୟକ୍ତି ଭିତରେ ଏକ ପ୍ରସାରିତ ଓ ସମ୍ବେଦନଶୀଳ ଦୃଷ୍ଟି ଦେଇଥାଏ । ଏକ ରୁଦ୍ଧ ମାନସିକତା ଦ୍ୱାରା ଆବଦ୍ଧ ବ୍ୟକ୍ତିର ଚେତନା ବହୁ ସମୟରେ ସମ୍ବେଦନହୀନ ହେବା ଦେଖାଯାଏ । ତେବେ ଅପରପକ୍ଷରେ ଯେଉଁଠି ମଣିଷ ବିବେକୀ ଓ ଚେତନାରେ ଅଧିକ ପ୍ରସାରିତ ହୁଏ ସିଏ ଦରଦୀ, ସମ୍ବେଦନଶୀଳ ହୋଇଥାଏ । ବିଚାରଶୀଳ ଦୃଷ୍ଟି ଓ ମାନବିକତାବାଦୀ ବିଚାର ବ୍ୟକ୍ତି ଭିତରେ ସମ୍ବେଦନଶୀଳତା ଆଣିଥାଏ । ଏହି ଦୃଷ୍ଟି ଥିବା ବ୍ୟକ୍ତି ଅନ୍ୟର ଦୁଃଖରେ ବିଗଳିତ ହୁଏ ଓ ନିଜ ସାମର୍ଥ୍ୟ ଭିତରେ ଅନ୍ୟର ଦୁଃଖପାଇଁ ସମବେଦନାର ହାତ ବଢ଼ାଇଥାଏ । ଅନ୍ୟର ଯନ୍ତ୍ରଣାକୁ ଅନୁଭବ କରିବାର ମାନସିକତା ଓ ଅନ୍ୟର ଦୁଃଖ ପ୍ରତି ସହାନୁଭୂତିପୂର୍ଣ୍ଣ ହୃଦୟବତ୍ତା ଉତ୍ତମ ଜୀବନର ସ୍ୱାକ୍ଷର ବହନ କରେ । ଅନ୍ୟର ଦୁଃଖକୁ ନିଜର ଦୁଃଖ ବୋଲି ଭାବିବା ଓ ନିଜର ହୃଦୟକୁ ପ୍ରସାରିତ କରି ପାରିବାର ମନୋଭାବ ଉତ୍ତମ ଜୀବନର ଏକ ଲକ୍ଷଣ କହିଲେ ଅତ୍ୟୁକ୍ତ ହେବ ନାହିଁ ।

ଯେଉଁ ସାମାଜିକ ପରିବେଶରେ ଅନ୍ୟର ଦୁଃଖ ଦୁର୍ଦ୍ଦଶା ପ୍ରତି ସାମାଜିକ ସଚେତନତା ଅଧିକ ତାହା ଏକ ପ୍ରଗତିଶୀଳ ସାମାଜର ଚିତ୍ର ବହନ କରେ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ଅନ୍ୟମାନଙ୍କର ଦୁଃଖ, ଯନ୍ତ୍ରଣା ପ୍ରତି ସାଧାରଣତଃ ଲୋକମାନେ ସ୍ପର୍ଶକାତରଶୂନ୍ୟ ତାହା କ୍ଷୟଶୀଳ ମନେହୁଏ । ଏକ ପ୍ରଗତିଶୀଳ ସମାଜରେ ନାଗରିକ ଶୃଙ୍ଖଳାବୋଧ, ସାମାଜିକ ଉତ୍ତରଦାୟିତ୍ୱବୋଧ ଓ ଜନଗଣଙ୍କର କର୍ମ ସଂସ୍କୃତି ଉଚ୍ଚସ୍ତରର ହୋଇଥିବା ବେଳେ ଏକ କ୍ଷୟଶୀଳ ସମାଜରେ ଏହାର ବିପରୀତ ପରିବେଶ ଅଧିକ ରହିଥାଏ । ଏକ ପ୍ରଗତିଶୀଳ ଓ ଉତ୍ତରଦାୟୀ ପରିବେଶ ବ୍ୟକ୍ତି ଭିତରେ ଉତ୍ତମ ଜୀବନ ପାଇଁ ପ୍ରେରଣା ସୃଷ୍ଟି କରୁଥିବା ବେଳେ ଏକ କ୍ଷୟଶୀଳ ପରିବେଶ ବ୍ୟକ୍ତିକୁ ସମାଜ ଓ ଅନ୍ୟର ଦୁଃଖ ଯନ୍ତ୍ରଣା ପ୍ରତି ସ୍ପର୍ଶକାତରଶୂନ୍ୟ କରିଥାଏ । (୧୬.୩.୧୧)



# ଜୀବନ ଓ ଯନ୍ତ୍ରଣା

ଜୀବନରେ କିଛି ଦୁଃଖ, ଯାତନା ଓ ଯନ୍ତ୍ରଣା ରହିବ ହିଁ ରହିବ ଏବଂ ସମ୍ଭବତଃ ଏକ ଦୁଃଖରହିତ ଜୀବନ ସମ୍ପୂର୍ଣ୍ଣ ସମ୍ଭବ ହେବନାହିଁ । ଜୀବନ ସୁଖ-ଦୁଃଖର ଚକ ଭିତରେ ଘୂରିବା ଏକ ସାଧାରଣ ଅନୁଭବ । ଚକଟିଏ ଯେପରି ତଳ-ଉପର ହୋଇ ଘୂରୁଥାଏ ଓ ଏକ ବେଗମାନ ଗାଡ଼ିକୁ ଆଗକୁ ନେଉଥାଏ, ସେହିପରି ଜୀବନ ସୁଖ-ଦୁଃଖର କେତେ କେତେ ପରିସ୍ଥିତି ଓ ଅନୁଭୂତି ଭିତରେ ଆଗକୁ ଚାଲିଥାଏ । କାହା ପାଇଁ ଜୀନବରେ ସୁଖର ମୁହୂର୍ତ୍ତ ବେଶୀ ହୋଇପାରେ କାହା ପାଇଁ ଜୀବନରେ ଦୁଃଖର ମୁହୂର୍ତ୍ତ ଅଧିକ ହୋଇଥାଏ । ସେଥିପାଇଁ ଦୁଃଖକୁ ନେଇ କେତେ କେତେ ତାତ୍ତ୍ୱିକ ଆଲୋଚନା ଧର୍ମ, ଦର୍ଶନ, ସାହିତ୍ୟ ପରିସରରେ ଦେଖିବାକୁ ମିଳେ । ଦୁଃଖର ସ୍ଥିତି, କାରଣ, ପ୍ରକାର ଭେଦ ଆଲୋଚନା ଦର୍ଶନରେ ଦେଖିବାକୁ ମିଳେ । 'ଜୀବନ ଦୁଃଖପୂର୍ଣ୍ଣ' ଏହି ସାଧାରଣ ଅନୁଭବ ଉପରେ ଗମ୍ଭୀର ସମୀକ୍ଷା ଓ ମନୋନିବେଶରୁ ଗୌତମ ବୁଦ୍ଧରେ ରୂପାନ୍ତରୀତ ହେଲେ । ପ୍ରାଣୀଙ୍କ ଆରତ ପ୍ରତି ଗମ୍ଭୀର ସମବେଦନା ଜଣାଇ ଭୀମଭୋଇ ଏକ ଦରଦୀ କବିର ସ୍ୱୀକୃତି ପାଇଲେ । ଆଲବର୍ଟ ସ୍ୱାଏତଜର ବା ମଦରଟେରେସା ଦୁଃଖୀ ମଣିଷର ସେବାରେ ଜୀବନକୁ ଉତ୍ସର୍ଗ କରି ଆଜି ବିଶ୍ୱବିଖ୍ୟାତ ହୋଇଛନ୍ତି । କୁଷ୍ଠରୋଗୀଙ୍କର ଯନ୍ତ୍ରଣା ଜର୍ଜରିତ ଦୁଃଖ ଦୂର କରିବାକୁ ବ୍ରତ ଭାବରେ ନେଇ ଡାକ୍ତର ଜେରହାର୍ଡ଼ ହାନସନ୍ କୁଷ୍ଠରୋଗର କାରଣ ଓ ନିଦାନ ବାହାର କରି ଆଧୁନିକ ଚିକିତ୍ସା ବିଜ୍ଞାନରେ ଆମର ହୋଇଛନ୍ତି । ଏହିପରି ଉଦାହରଣ ଖୋଜିଲେ ଇତିହାସରେ ଅନେକ ବ୍ୟକ୍ତିଙ୍କର ନାମ ଆସିବ ଯେଉଁମାନେ ସମାଜର ଦୁଃଖ ଦୂର କରିବାକୁ ନିଜର ସମ୍ପୃକ୍ତି ପ୍ରକାଶ କରିଛନ୍ତି । ସେମାନେ ଯେଉଁ ସଭ୍ୟତା, ସଂସ୍କୃତି ଓ ଜାତୀୟତାର ବ୍ୟକ୍ତି ହୁଅନ୍ତୁ ନା କାହିଁକି ସେମାନେ ମଣିଷ ଜାତିର ଆଦର୍ଶ, ନମସ୍ୟ ହୋଇଛନ୍ତି । ବିଶ୍ୱ ମାନବିକତାର ପ୍ରତିଭୂ ଭାବେ ସେମାନେ ଇତିହାସର ପୃଷ୍ଠାରେ ଅମର ହୋଇ ରହିଛନ୍ତି ।

ଆମ ସଂସାରରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହାର ଉତ୍ସକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ଦୁଃଖର ଉତ୍ସ ଅଣମାନବୀୟ ବା

ପ୍ରାକୃତିକ ହେବା ସ୍ୱାଭାବିକ । ଦୁଃଖର ଅନ୍ୟ ଏକ ଉତ୍ସ ହେଉଛି ମାନବକୃତ ଆର୍ଥାତ୍ ମାନବ ଦ୍ୱାରା ସୃଷ୍ଟ । ପ୍ରକୃତି ଜୀବଜଗତର ଜନନୀ, କାରଣ ସମସ୍ତ ପ୍ରାଣୀ ଜୀବନର ସକଳ ଆବଶ୍ୟକତା ପ୍ରାକୃତିକ ପରିବେଶରୁ ପାଇଥାଏ । ତେବେ ସେହି ପ୍ରକୃତି ବେଳକେ ମଣିଷକୁ ନାନା କଷ୍ଟକର ପରିବେଶ ଦେଇଥାଏ । ବାତ୍ୟା, ଭୂକମ୍ପ, ସୁନାମୀ, ବନ୍ୟା, ରୋଗ, ମହାମାରୀ ଇତ୍ୟାଦି ପ୍ରାକୃତିକ ପରିବେଶ ଯୋଗୁ ଅନେକ ଦୁଃଖ, ଯନ୍ତ୍ରଣା ସୃଷ୍ଟି ହୋଇଥାଏ । ପ୍ରତିକୂଳ ପ୍ରାକୃତିକ ପରିବେଶରେ ଅନେକ ମଣିଷଙ୍କ ସଂସାର ଉଜୁଡ଼ିଯାଏ, ଜୀବନ ଯନ୍ତ୍ରଣା ଜର୍ଜରିତ ହୋଇଯାଏ ।

ପ୍ରାକୃତିକ ଦୁର୍ବିପାକ କେତେବେଳେ କିପରି ସୃଷ୍ଟିହେବ ତାହା ଅନେକାଂଶରେ ମଣିଷର ନିୟନ୍ତ୍ରଣ ବାହାରେ । ତେବେ ସଭ୍ୟତାର କ୍ରମବିକାଶ ସହ ମଣିଷର ଜ୍ଞାନ, ବିଜ୍ଞାନର ଅଭିବୃଦ୍ଧି ଯୋଗୁ ମଣିଷ କେତେକାଂଶରେ ପ୍ରାକୃତିକ ପ୍ରତିକୂଳ ପରିବେଶକୁ ନିୟନ୍ତ୍ରଣ କରିବାରେ ସଫଳ ହେଲାଣି । ଖାଦ୍ୟାଭାବ, ଅନାହାର, ଦୁର୍ଭିକ୍ଷଜନିତ ପରିବେଶକୁ ଦୂର କରିବାକୁ ସାରା ବିଶ୍ୱରେ ଓ ସମସ୍ତ ରାଷ୍ଟ୍ରରେ ବହୁ ସଚେତନତା ଆସିଲାଣି । କୌଣସି ପ୍ରାକୃତିକ ଦୁର୍ବିପାକ ପୃଥିବୀର ଯେକୌଣସି ଅଞ୍ଚଳରେ ସୃଷ୍ଟିହେଲେ ବି ସେହି ପରିସ୍ଥିତିରେ ଆକ୍ରାନ୍ତ ଜନଗଣଙ୍କୁ ଉଦ୍ଧାର କରିବାକୁ ସାରା ବିଶ୍ୱରେ ନାନା ଆନ୍ତର୍ଜାତିକ ସଂଗଠନ ରହିଛି । ଆଧୁନିକ ଜ୍ଞାନ, ପ୍ରଯୁକ୍ତି ଯୋଗୁ ଏହା ସମ୍ଭବ ହୋଇପାରୁଛି । ସଭ୍ୟତାର କ୍ରମବିକାଶର ଧାରାରେ ଏସବୁ ନିଶ୍ଚିତ ଉଲ୍ଲେଖନୀୟ ଉତ୍ତରଣ ।

ତେବେ ଆମ ସଂସାରରେ ଓ ପ୍ରତ୍ୟେକ ସମାଜରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହାର ମୁଖ୍ୟ କାରଣ ମନୁଷ୍ୟକୃତ । ଆମ ସଂସାରରେ ବହୁ ଦୁର୍ଭାଗ୍ୟଜନକ ଘଟଣା ଓ ସଂକଟ ମଣିଷ ଦ୍ୱାରା ସବୁ ସମୟରେ ସୃଷ୍ଟି ହୋଇଆସିଛି । ବ୍ୟକ୍ତିଗତ ସ୍ତରରେ ହେଉ ବା ଗୋଷ୍ଠୀଗତ ସ୍ତରରେ ହେଉ ଅନେକ ମଣିଷଙ୍କର ଦୁଃଖ ଅନ୍ୟ ଯୋଗୁ ହିଁ ଉଦ୍ଭବ ହୋଇଛି । ଯୁଦ୍ଧ, ସନ୍ତ୍ରାସବାଦ, ଗୋଷ୍ଠୀଗତ ବିଦ୍ୱେଷ, ସାମ୍ପ୍ରଦାୟିକ ତିକ୍ତତା, ରାଜନୈତିକ ହିଂସା, ପ୍ରତିହିଂସାଜନିତ ମାନସିକତା ସଂସାରରେ ବହୁ ଦୁଃଖର କାରଣ ହୋଇଆସିଛି । ନାନା ଭେଦଭାବଜନିତ ଦୃଷ୍ଟିଭଙ୍ଗୀ ସମାଜରେ ନାନା ବିଦ୍ୱେଷ ଭାବନାର ପରିବେଶ ଆଣିଛି । ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ଇତ୍ୟାଦି କାରଣରୁ ସମାଜରେ ଭୟଙ୍କର ଭେଦଭାବ, ଶୋଷଣ ଓ ଅନ୍ୟାୟ ସୃଷ୍ଟି ହୋଇଛି । ସେହିପରି ଶୋଷଣ, ବୈଷମ୍ୟ, ସବଳର ଦୁର୍ବଳ ଉପରେ ଅତ୍ୟାଚାର ଇତ୍ୟାଦି ପରିବେଶ ରହିଆସିଛି । ମଣିଷର ଅଜ୍ଞତା ଓ ଅସମ୍ବେଦନଶୀଳତା ଜନିତ କାରଣରୁ ସମାଜରେ

ବହୁ ଦୁଃଖ ଓ ମନୁଷ୍ୟକୃତ ଦୁର୍ବିପାକ ରହିଆସିଛି । ଅବଶ୍ୟ ଏ ପ୍ରତ୍ୟେକଟି କ୍ଷେତ୍ରରେ, ନାନା ସାମାଜିକ, ମନସ୍ତାତ୍ତ୍ୱିକ ବା ଅର୍ଥନୈତିକ କାରଣ ରହିଛି । ଅତୀତରେ ଅଜ୍ଞତା ଯୋଗୁ କେତେ ମହିଳାଙ୍କୁ ଡାହାଣୀ ଭାବି ହତ୍ୟା କରାଯାଇଛି । କେତେକ କୁତ୍ସିତ ପରମ୍ପରାରେ ମଣିଷକୁ ନାନା କଷ୍ଟ ଦିଆଯାଇଛି । ଧାର୍ମିକ ବିଶ୍ୱାସ ଆଳରେ ବହୁ ଚିନ୍ତାଶୀଳ ଓ ପ୍ରଗତିଶୀଳ ଲୋକମାନଙ୍କୁ ନାନା ନିର୍ଯାତନା ଦିଆଯାଇଛି । ଅନ୍ଧସଂସ୍କାର ଜନିତ ଆସକ୍ତି ଓ ରୁଦ୍ଧ ମାନସିକତାରୁ ଅଗଣିତ ମଣିଷ ଉପରେ ଦୁଃଖର ଝଡ଼ ବହିଯାଇଛି । ଅର୍ଥନୈତିକ ଶୋଷଣ ଯୋଗୁ ଅସଂଖ୍ୟ ମଣିଷ ସମ୍ବଳହୀନ ହୋଇ ପେଟର ଜ୍ୱାଳା ସହ୍ୟ କରିଛନ୍ତି । ନାନା ସାମାଜିକ ଓ ଆର୍ଥିକ କାରଣରୁ ବହୁ ନାରୀ ବାରନାରୀ ହୋଇ ଜୀବନସାରା ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ବହୁ ଶିଶୁ ପରିସ୍ଥିତିର ତାଡ଼ନାରେ ପେଟ ପାଇଁ କଅଁଳ ବୟସରୁ ଶ୍ରମିକ ପାଲଟି ଜୀବନର ସବୁ ସ୍ୱପ୍ନ ହରାଇଛନ୍ତି । ଏହିପରି ନାନା ଦୁଃଖ, ଯନ୍ତ୍ରଣା ସମାଜରେ ରହିଛି ।

ପ୍ରାକୃତିକ ବା ଅତିମାନବୀୟ କାରଣରୁ ସୃଷ୍ଟ ନାନା ପରିବେଶକୁ ମଣିଷ ନିଜର ଜ୍ଞାନ ଦ୍ୱାରା ଓ ବିଶ୍ୱ ସଂଗଠନ ମାଧ୍ୟମରେ ଦୂର କରିବାକୁ ବହୁ ଭାବରେ ସମର୍ଥ । ମଣିଷର ସୃଜନଶୀଳତା ଓ ବୌଦ୍ଧିକ ସାମର୍ଥ୍ୟ ଯୋଗୁ ତ ସଭ୍ୟତାର କ୍ରମବିକାଶ ହୋଇଚାଲିଛି । ପ୍ରକୃତି ଓ ପରିବେଶକୁ ଅବବୋଧ ଓ ନିୟନ୍ତ୍ରଣ କରିବାର ଜ୍ଞାନ ଅବିରତ ଭାବେ ବୃଦ୍ଧି ପାଇଚାଲିଛି । ଆଧୁନିକ ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଓ ସୁଦୃଢ଼ ସାମାଜିକ ସଂଗଠନ ମଣିଷର ଜୀବନଯାତ୍ରାକୁ ସହଜ ଓ ନିରାପଦ କରିପାରିଛି, ଯାହା ଶହେ ଦୁଇଶହ ବର୍ଷ ତଳେ ସମ୍ଭବ ନ ଥିଲା । ଏସବୁ ସତ୍ତ୍ୱେ ତଥାପି ସାମାଜିକ ଜୀବନରେ ଅନେକ ଦୁଃଖକର ସ୍ଥିତି ରହିଛି । ସେହି ଦୁଃଖ ମଣିଷର ଦୁର୍ବୁଦ୍ଧି, ଶୋଷଣ ଓ ଅନ୍ୟାୟ ଯୋଗୁ ତିଷ୍ଠି ରହିଛି । ମଣିଷ ସ୍ୱଭାବରେ ରହିଥିବା କ୍ରୂରତା ଓ ଅମାନବିକତା ଯୋଗୁ ମଣିଷ ଅନ୍ୟ ମଣିଷର ଯନ୍ତ୍ରଣାର କାରଣ ହୋଇଛି । ଏକଥା ସତ୍ୟ ଯେ, ମଣିଷ ସ୍ୱଭାବରେ ଦେବତ୍ୱ ଯେପରି ରହିଛି ସେହିପରି ବି ରହିଛି ପଶୁତ୍ୱ । ତ୍ୟାଗର ମନୋଭାବ ଯେପରି ରହିଛି, ସେହିପରି ସ୍ୱାର୍ଥପରତା ମଧ୍ୟ ରହିଛି । ଯେଉଁଠି ସାମାଜିକ ଚେତନାର ସ୍ତର ଉନ୍ନତ ହୋଇଛି, ଅର୍ଥନୈତିକ ବ୍ୟବସ୍ଥା ଅଧିକ ନ୍ୟାୟଯୁକ୍ତ ହୋଇପାରିଛି ଓ ରାଜନୈତିକ ବ୍ୟବସ୍ଥା ସୁସଂଗଠିତ ଓ ଅଧିକ ଆଦର୍ଶ ସ୍ଥାନୀୟ ହୋଇଛି, ସେଠାରେ ଜନଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଛି । ଅଥଚ ଯେଉଁଠି ନାଗରିକ ସଚେତନତାର ସ୍ତର ଉନ୍ନତ ହୋଇନାହିଁ, ରାଜନୈତିକ ପରିବେଶରେ ଅସ୍ଥିରତା ରହିଛି ଓ ଅର୍ଥନୈତିକ ବ୍ୟବସ୍ଥା ଶୋଷଣମୁକ୍ତ ବା ନ୍ୟାୟଯୁକ୍ତ ହୋଇନାହିଁ ସେଠାରେ

ଜନଜୀବନରେ ଦୁଃଖର ପରିବେଶ ଅଧିକ ହେବା ସ୍ୱାଭାବିକ ହୋଇଛି । ନାଗରିକ ବିଶୃଙ୍ଖଳା, ଅର୍ଥନୈତିକ ଶୋଷଣ, ସାମାଜିକ ଓ ସାଂସ୍କୃତିକ ପରିବେଶର କ୍ଷୟଶୀଳତା ଇତ୍ୟାଦି ସମାଜରେ ବ୍ୟାପକ ରହିଲେ ଜନଜୀବନରେ ଦୁଃଖ, ହତାଶା ଓ ନୈରାଶ୍ୟର ପରିବେଶ ଅଧିକ ରହିବା ଅନୁଭୂତିରୁ ସ୍ପଷ୍ଟ ହୋଇଥାଏ ।

ଏକଥା ସତ୍ୟ ଯେ, ମଣିଷର ସ୍ୱଭାବରେ ସେପରି କିଛି ଉଲ୍ଲେଖନୀୟ ପରିବର୍ତ୍ତନ ହୋଇଯିବ ନାହିଁ । ବରଂ ସାମାଜିକ ପରିବେଶ ଉନ୍ନତ ହେଲେ ଓ ନାଗରିକ ଚେତନାର ସ୍ତର ଅଧିକ ମାନବିକ ହେଲେ ଜନଜୀବନ ଅଧିକ ସୁନ୍ଦର, ପ୍ରୀତିପଦ ଓ ଉତ୍ତରଦାୟୀ ହୋଇପାରିବ । ବ୍ୟକ୍ତିର ସୁଖକର ସ୍ଥିତି ଅନେକାଂଶରେ ସାମାଜିକ ପରିବେଶ ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା, କର୍ମସଂସ୍ଥାନ, ସାମାଜିକ ନିରାପତ୍ତା, ଚିକିତ୍ସା ଓ ସମ୍ମାନଜନକ ସ୍ଥିତି ପାଇଁ ବୃହତ୍ତର ସମାଜ ଉପରେ ନିର୍ଭର କରିଥାଏ । ଏହି ପରିବେଶ ସମାଜରେ ଉପଲବ୍ଧ ହେଉଥିଲେ ବ୍ୟକ୍ତି ଜୀବନରେ ସୁଖକର ପରିବେଶରେ ରହିବାର ଅବକାଶ ରହିଥାଏ । ପରନ୍ତୁ ଯେଉଁଠି ଏହି ପରିବେଶର ଅଭାବ ରହିଛି, ସେଠାରେ ଜନଜୀବନରେ ଅଶାନ୍ତି, ଦୁଃଖ ଓ ନୈରାଶ୍ୟବୋଧ ଅଧିକ ରହିବା ସ୍ୱାଭାବିକ ମନେହୁଏ ।

ବ୍ୟକ୍ତି ଭିତରେ ଉତ୍ତମ ଜୀବନର ପ୍ରେରଣା ସୃଷ୍ଟି କରିବାକୁ ସାମାଜିକ ପରିବେଶର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହା ସହିତ ସାମାଜିକ ଜୀବନର ସ୍ତର ଉନ୍ନତ ହେଲେ ଜନଜୀବନରୁ ଅନେକ ଦୁଃଖ ଯାତନାର ପରିବେଶ ହ୍ରାସ ହୋଇପାରିବ । ତେବେ ମଣିଷର ପ୍ରଚେଷ୍ଟାରେ ସମାଜ ଓ ପାରିବାରିକ ଜୀବନ ଉନ୍ନତ ଓ ପ୍ରୀତିପଦ ହେବା ସମ୍ଭବ । ଏହିପରି ଏକ ପରିବେଶରେ ସକଳ ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାପାଇଁ ମଣିଷ ପ୍ରୟାସୀ ହେବ । ସାମାଜିକ ପରିବେଶ ଉନ୍ନତ ନ ହେଲେ ବ୍ୟକ୍ତିଗତ ଜୀବନରେ ନିରାଶା, ହତାଶା, ଅବିଶ୍ୱାସ ରହିବ ହିଁ ରହିବ । ସୁତରାଂ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ମଣିଷର ସାମୂହିକ ପ୍ରୟାସ ହିଁ ନିର୍ଣ୍ଣାୟକ ମନେହୁଏ । ଜୀବନ-ଯନ୍ତ୍ରଣାକୁ ହ୍ରାସ କରିବା କ୍ଷେତ୍ରରେ ସାମାଜିକ ପରିବେଶର ଭୂମିକା ଯେ ବହୁ ଗୁରୁତ୍ୱପୂର୍ଣ୍ଣ ଏହା ନିଃସନ୍ଦେହ ।

ଉପସଂହାରରେ, ପ୍ରାକୃତିକ ଦୁର୍ବିପାକଜନିତ ଦୁଃଖକୁ ନିୟନ୍ତ୍ରଣ କରିବାର ଅନେକ ସାମର୍ଥ୍ୟ ମଣିଷ ହାସଲ କରିପାରିଛି, ହେଲେ ଅସମତାଭିତ୍ତିକ ସାମାଜିକ ପରିବେଶ ଓ ତହିଁରୁ ଉଦ୍ଭବ ମାନବକୃତ କ୍ରୂରତା ଜୀବନଯନ୍ତ୍ରଣା ପାଇଁ ଅଧିକ ଦାୟୀ ହୋଇ ରହିଛି । ଏହି ସ୍ଥିତିରେ ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଓ ଭ୍ରାତୃତ୍ୱ ଭାବନାର ବିକାଶ

ଦ୍ୱାରା ଜୀବନ ସମସ୍ତଙ୍କ ପାଇଁ ଅଧିକ ସୁଖକର ହୋଇପାରିବ । ବ୍ୟକ୍ତି ତ ମରଣଶୀଳ ଓ ମୃତ୍ୟୁ ଜୀବନର ଅବଶ୍ୟମ୍ଭାବୀ ପରିଣତି । ତେବେ ସମାଜ ଚରିସ୍ଥାୟୀ । ସମାଜ ଯେତେ ଅଧିକ ପ୍ରଗତିଶୀଳ, ମାନବିକ ଓ ଶୃଙ୍ଖଳିତ ହେବ ତାହାର ପ୍ରଭାବରେ ଜନଜୀବନ ସେତେ ଉନ୍ନତ ହୋଇପାରିବ । ଏକ ଉନ୍ନତ ସାମାଜିକ ପରିବେଶ ଉତ୍ତମ ଜୀବନ ପାଇଁ ପ୍ରେରଣାଦାୟକ ହେବା ସହ ଜୀବନ-ଯନ୍ତ୍ରଣାକୁ ଅନେକାଂଶରେ ହ୍ରାସ କରିପାରିବ ।( ୨୩.୩. ୧ ୧ )



# ଯୁଗ ଯନ୍ତ୍ରଣା

ଇତିହାସର କ୍ରମବିକାଶ ଧାରାରେ ପ୍ରତ୍ୟେକ ଯୁଗରେ କେତେକ ଯନ୍ତ୍ରଣା ଥାଏ, ଯାହାକୁ ସେ ଯୁଗର 'ଯୁଗ-ଯନ୍ତ୍ରଣା' କୁହାଯାଏ । ସଭ୍ୟତାର ଆଦିମ ପର୍ବରେ ଲୋକମାନେ ଏକ ଏକ କ୍ଷୁଦ୍ର ଗୋଷ୍ଠୀରେ ରହୁଥିଲେ । ସେମାନେ ଏକାଠି ଶିକାର କରୁଥିଲେ, ଏକାଠି ଖାଦ୍ୟ ପ୍ରସ୍ତୁତ କରି ଖାଉଥିଲେ, ନାଚ କରୁଥିଲେ ଓ ଏକାଠି ରହୁଥିଲେ । ଗୋଟିଏ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ବା ଟ୍ରାଇବ୍ ସାମାଜିକ ଜୀବନ ପ୍ରବାହକୁ ପୁଷ୍ଟ କରି ଚାଲିଲେ । କାଳକ୍ରମେ ଜନସଂଖ୍ୟାର ଅଭିବୃଦ୍ଧି ସହ ପରିବାର ହିଁ ସାମାଜିକ ଜୀବନର ମୂଳକେନ୍ଦ୍ର ହେଲା ଓ ବିଭିନ୍ନ ବୃତ୍ତିଗତ ବିଭାଜନ ସମାଜରେ ସୃଷ୍ଟି ହେଲା । କୃଷିର ବିକାଶ ସହ ଗ୍ରାମୀଣ ସମାଜ ସୃଷ୍ଟି ହେଲା । କେତୋଟି ପରିବାର ରହୁଥିବା ପରିବେଶ ଗୋଟିଏ ଗୋଟିଏ ଗ୍ରାମରେ ପରିଣତ ହେଲା । ଗ୍ରାମର ଲୋକମାନଙ୍କ ମଧ୍ୟରେ ପାରସ୍ପରିକ ଆଦାନ-ପ୍ରଦାନ ବୃଦ୍ଧି ପାଇ ଚାଲିଲା । ଟ୍ରାଇବଲ ଗୋଷ୍ଠୀର ଦଳପତି ବା ଗ୍ରାମର ମୁଖିଆ ସେହି କ୍ଷୁଦ୍ର ସାମାଜିକ ପରବେଶରେ କିଛିଟା କର୍ତ୍ତୃତ୍ୱ ସ୍ଥାପନ କରି ପାରିଥିଲେ ।

ଧୀରେ ଧୀରେ ଲୋକସଂଖ୍ୟାର ବୃଦ୍ଧି ସହ 'ରାଜ୍ୟ'ମାନ ସୃଷ୍ଟିହେଲା ଓ ରାଜତନ୍ତ୍ର ଆସିଲା । ଗୋଟିଏ ଭୂଖଣ୍ଡରେ ଗୁଡ଼ିଏ ଗ୍ରାମ ଓ ସେମାନଙ୍କର ଜଣେ ରାଜା ରହିଲେ । ରାଜତନ୍ତ୍ର ପୁରୁଷାନୁକ୍ରମିକ ହେଲା । ରାଜ୍ୟ ରାଜ୍ୟ ମଧ୍ୟରେ ଯୁଦ୍ଧ, ବିବାଦ ସାଧାରଣ ଘଟଣା ଥିଲା । କୌଣସି ପ୍ରତାପଶାଳୀ ରାଜା ଅନ୍ୟ ରାଜ୍ୟକୁ ଆକ୍ରମଣ କରି ନିଜ ରାଜ୍ୟର ସୀମା ବୃଦ୍ଧି କରୁଥିଲେ ଓ ନିଜ ପ୍ରଭୁତ୍ୱ ବିସ୍ତାର କରୁଥିଲେ । ରାଜତନ୍ତ୍ର ଯୁଗରେ ଏ ପ୍ରକାର ଭାବନା ସୃଷ୍ଟି ହୋଇଥିଲା ଯେ ରାଜାମାନେ ହେଉଛନ୍ତି ଈଶ୍ୱରଙ୍କ ପ୍ରତିନିଧି । ଲୋକମାନଙ୍କ ଉପରେ ରାଜତନ୍ତ୍ରକୁ ଜାହିର କରିବା ପାଇଁ ଜନମାନସରେ ଧାର୍ମିକ ବିଶ୍ୱାସ ଆଳରେ ଏହି ପ୍ରକାର ଭାବନାକୁ ପ୍ରସାର କରାଯାଇଥିଲା । ସମାଜର ନୀତି, ଆଦର୍ଶ ଇତ୍ୟାଦିକୁ ପୂଜକ ଗୋଷ୍ଠୀ ଓ ରାଜନ୍ୟ ଗୋଷ୍ଠୀ ନିୟନ୍ତ୍ରଣ ଆଉ ପ୍ରଭାବିତ କରୁଥିଲେ ।

କାଳକ୍ରମେ ସାମାଜିକ ଜୀବନ ପ୍ରବାହରେ 'ଧର୍ମ'ର ଭାବନା ଆସିଲା ଓ ଧାର୍ମିକ ବିଶ୍ୱାସ ଜରିଆରେ ସାମାଜିକ ସଂହତି ଅଧିକ ବ୍ୟାପକ ଓ ପ୍ରସାର ଲାଭ କଲା । ଧାର୍ମିକ ବିଶ୍ୱାସ ସ୍ତରରେ ଈଶ୍ୱର, ପୂଜା-ଆରାଧନା, ବିଭିନ୍ନ କର୍ମକାଣ୍ଡ ମୁକ୍ତି, ନିର୍ବାଣ, ଆତ୍ମା ଇତ୍ୟାଦି ଭାବନା ସୃଷ୍ଟି ହେଲା । ଏହା ସହିତ ନୀତି-ଅନୀତି, ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ ବିଷୟକ ନୈତିକ ଭେଦଭାବର ବିକାଶ ହେଲା । ଜୀବନର ଅନ୍ତିମ ଲକ୍ଷ୍ୟ, ଈଶ୍ୱରୀୟ କରୁଣା, ଆତ୍ମାର ଅମରତ୍ୱ, ଆଧ୍ୟାତ୍ମିକ ଶକ୍ତି ଇତ୍ୟାଦି ଭାବନାର ମଧ୍ୟ ବିକାଶ ହେଲା । ବିଶେଷକରି ପୂଜକ ଗୋଷ୍ଠୀ ଓ କେତେକ ସଚେତନ ବ୍ୟକ୍ତି ସାହିତ୍ୟ, କାହାଣୀ, କାବ୍ୟ ରଚନା କରି ପାରଲୌକିକ ଜୀବନର ଚିତ୍ର ନିଜ ନିଜ ଧାରାରେ ବ୍ୟକ୍ତ କରିବାକୁ ଲାଗିଲେ । ଆସ୍ତେ ଆସ୍ତେ ଧାର୍ମିକ ଭାବନା ଓ ରାଜତନ୍ତ୍ରର ଭିତ୍ତି ଉପରେ ସାମାଜିକ ବ୍ୟବସ୍ଥା ଦୃଢ଼ ହେବାକୁ ଲାଗିଲା । ପୂଜକ ଗୋଷ୍ଠୀ ଓ ଶାସକ ଗୋଷ୍ଠୀ କାଳକ୍ରମେ ସମାଜରେ ପ୍ରଭାବଶାଳୀ ହେଲେ । ସମାଜର କୃଷକ ଓ କାରିଗର-ଶ୍ରେଣୀ ନ୍ୟୂନ ହୋଇ ରହିଲେ । କୃଷି ଭିତ୍ତିକ ଅର୍ଥନୀତିରେ ଚାଷଜମିର ମାଲିକାନା ଶାସକବର୍ଗ ନିୟନ୍ତ୍ରଣରେ ରଖିଲେ ଓ ପୂଜକ ଗୋଷ୍ଠୀର ସାମାଜିକ ପ୍ରଭାବ ଯୋଗୁ ସେମାନେ ବି ତାହାର ସୁଯୋଗ ନେଲେ ।

ବଂଶାନୁକ୍ରମିକ ରାଜତନ୍ତ୍ର ଓ ପ୍ରାଚୀନ ସାମ୍ରାଜ୍ୟବାଦ ଭିତରେ ସାମାଜିକ ବିକାଶ ପ୍ରକ୍ରିୟା ଦୃଢ ହେବାକୁ ଲାଗିଲା । ରାଜତନ୍ତ୍ର ଯୁଗରେ ସାମରିକ ଶକ୍ତିର ଭିତ୍ତି ପଡ଼ିଲା । ତେବେ ସେହି ସମୟରେ ସାମରିକ ଶକ୍ତି ରହିଥିଲା ଅନୁନ୍ନତ ଅବସ୍ଥାରେ । ବଂଶାନୁକ୍ରମିକ ରାଜତନ୍ତ୍ର ନିଜ ସ୍ଥିତିକୁ ଦୃଢ ରଖିବାକୁ ସାମରିକ ଶକ୍ତିର ବିକାଶ ପାଇଁ ଉଦ୍ୟମ କରିଥିଲେ । ସମାଜରେ କାଳକ୍ରମେ ଯେଉଁ ଆର୍ଥିକ ବୈଷମ୍ୟ ଆସିଲା, ସେହି ବୈଷମ୍ୟ ଓ ରାଜତନ୍ତ୍ରକୁ ଗ୍ରହଣ କରି ନେବାକୁ ନାନା ଧାର୍ମିକ ବିଶ୍ୱାସ ଓ କାହାଣୀ ମାଧ୍ୟମରେ ପ୍ରୟାସ ହେଲା । ସମାଜ ବିଜ୍ଞାନ ଓ ନୃତାତ୍ତ୍ୱିକ ଅଧ୍ୟୟନରୁ ଏହା ସ୍ପଷ୍ଟ ହୋଇଛି ଯେ ଶାସକ ଶ୍ରେଣୀର ସ୍ୱାର୍ଥକୁ ସୁରକ୍ଷା ଦେବାକୁ ଓ ଜନଗଣଙ୍କୁ ଅଧସ୍ତନ କରି ରଖିବାକୁ ଧାର୍ମିକ ବିଶ୍ୱାସ ବହୁ ସମୟରେ ସାହାଯ୍ୟ କରିଛି । ପରିଣାମତଃ ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତାରେ ଧର୍ମମାନଙ୍କର ଶ୍ରୀବୃଦ୍ଧି ହେଲା । ରାଷ୍ଟ୍ର ଶକ୍ତି ଧର୍ମମାନଙ୍କର ପ୍ରସାର କ୍ଷେତ୍ରରେ ମୁଖ୍ୟ ଭୂମିକା ନେଲା । ପୂଜକ ଗୋଷ୍ଠୀ ଓ ଶାସକ ଗୋଷ୍ଠୀ ଉଭୟ ପରସ୍ପରର ସ୍ୱାର୍ଥସୁରକ୍ଷା କରିଚାଲିଲେ । ଯେତେବେଳେ କୌଣସି ଧର୍ମ ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତାରୁ ବଞ୍ଚିତ ହେଲା, ସେତେବେଳେ ସେହି ଧର୍ମର ଅଧୋପତନ ଆରମ୍ଭ ହେଲା । ତେବେ ସାରା ପୃଥିବୀରେ ଶିଳ୍ପ ବିପ୍ଳବର ଆୟମାରମ୍ଭ ପର୍ଯ୍ୟନ୍ତ ଗ୍ରାମୀଣ ଜୀବନ, ରାଜତନ୍ତ୍ର, ଧର୍ମ ଆଧାରିତ ନୀତି-ନୈତିକତା,

ପୁରୁଷ ପ୍ରଧାନ ସମାଜ ବ୍ୟବସ୍ଥା, ରୁଦ୍ଧ ମାନସିକତା, ସାମନ୍ତବାଦୀ ଆଦର୍ଶମାନ ସମାଜକୁ ପ୍ରଭାବିତ ଓ କବଳିତ କରି ରଖିଥିଲା । ଏହି ପରିବେଶରେ ଗ୍ରାମୀଣ ଯୌଥ ପାରିବାରିକ ଜୀବନ ସବୁ ସମାଜରେ ପ୍ରାଧାନ୍ୟ ନେଇଥିଲା । ଯୌଥ ପରିବାରରେ ବ୍ୟକ୍ତିର ଜୀବନ ଅଧିକ ନିରାପଦ ଥିଲା । ବିଶେଷକରି ଗ୍ରାମୀଣ ପରିବେଶ ଓ ଯୌଥ ପାରିବାରିକ ଜୀବନରେ ବୟସ୍କ ଲୋକମାନଙ୍କର ଯତ୍ନ ଓ ପିଲାମାନଙ୍କର ଲାଳନ ପାଳନ ସୁବିଧା ଜନକ ଥିଲା ।

ତେବେ ଆଦିମ ସମାଜ ହେଉ ବା କୃଷିଭିତ୍ତିକ ଗ୍ରାମୀଣ ଜୀବନ ହେଉ, ଜୀବନର ସାଧାରଣ ନିରାପତ୍ତା ବିପଦ ସଂକୁଳ ଥିଲା । ଯୁଦ୍ଧ, ବିଭୀଷିକା, ବାହାର ଆକ୍ରମଣ ଜନିତ ଭୟ ଯେପରିଥିଲା, ସେହିପରି ପ୍ରାକୃତିକ ବିପର୍ଯ୍ୟୟ ବା ରୋଗ ବାଧକ ବା ମହାମାରୀର ଭୟ ସବୁବେଳେ ଜନଜୀବନକୁ ଆତଙ୍କିତ କରି ରଖିଥିଲା । ଏହା ସହିତ ରାଜତନ୍ତ୍ର ଓ ସାମନ୍ତବାଦୀ ଶୋଷଣ ଓ ଅତ୍ୟାଚାର ସବୁ ସମାଜରେ ଢେର ଅଧିକ ରହିଲା । କେତେକ ସମାଜରେ ଦାସତ୍ୱ ପ୍ରଥା, ଅସ୍ପୃଶ୍ୟତା, ଭେଦ ଭାବ ମୂଳକ ମନୋଭାବ ଭିନ୍ନ ଭିନ୍ନ ଭାବରେ ରହିଥିଲା । ଅଳ୍ପ ସଂଖ୍ୟକ ଲୋକ ଥିଲେ ବି ଗମନାଗମନର କୌଣସି ସୁଯୋଗ ନ ଥିବାରୁ ରୋଗ ବାଧକ ଆସିଲେ ଲୋକମାନେ ମୃତ୍ୟୁରେ ପଡିବା ଛଡା ଅନ୍ୟ ଉପାୟ ନଥିଲା । ହଇଜା, ବସନ୍ତ, ପ୍ଲେଗ ପରି ରୋଗମାନ ଥରେ ଆରମ୍ଭ ହେଲେ ଏହା ଗାଁକୁ ଗାଁ ବ୍ୟାପି ଯାଉଥିଲା ଓ ଲୋକମାନେ ପୋକ-ମାଛି ପରି ମରି ଯାଉଥିଲେ । ଏହି ପରିବେଶରେ ଭାଗ୍ୟ, କର୍ମଫଳ, ଦୈବୀକୃପା ଜନିତ ବିଶ୍ୱାସ ଓ କେତେ ଦିଅଁ ଦେବତାର ପ୍ରାର୍ଥନା ଅତ୍ୟନ୍ତ ସ୍ୱାଭାବିକ ଥିଲା । ଜୀବନରେ ଭୟ, ଅଜ୍ଞତା ଓ ଅସହାୟବୋଧରୁ ଏସବୁରେ ବିଶ୍ୱାସ କରିବା ଅତ୍ୟନ୍ତ ସାଧାରଣ ଥିଲା । ମନ୍ତ୍ର, ତନ୍ତ୍ର, କେତେ ଚମତ୍କାରିତାର ଭାବନା, ଗୁଢ଼ ବିଦ୍ୟା, ଭୂତ, ପ୍ରେତ, ଡାହାଣୀର ପ୍ରକୋପ ଜନିତ ବିଶ୍ୱାସ ସମାଜରେ ବ୍ୟାପକ ରହିଥିଲା । ଶିକ୍ଷା କେବଳ ଥିଲା ମୁଷ୍ଟିମେୟ ଶାସକ ଓ ପୂଜକ ଶ୍ରେଣୀର ଅଧିକାର ଓ କୌଣସି ରାଷ୍ଟ୍ରୀୟ ଜନମଙ୍ଗଳକାରୀ ଭାବନା ଆସି ନଥିଲା । ସବୁ ମଣିଷ ଯେ ପାଠ ପଢ଼ିବେ ଓ ସମାନ ଅଧିକାର ନେଇ ବଞ୍ଚିବେ ଏହି ଚିନ୍ତା ରାଜତନ୍ତ୍ର ଓ ସାମନ୍ତବାଦୀ ସମାଜ ବ୍ୟବସ୍ଥାରେ ଥିଲା ଅଚିନ୍ତନୀୟ । ମହିଳାମାନେ ଅନେକ ଅଧିକାରରୁ ବଞ୍ଚିତ ଥିଲେ ଓ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ତାଙ୍କ ପାଇଁ ସମ୍ଭବ ନ ଥିଲା । ଆମ ଦେଶପରି ଜାତିଭିତ୍ତିକ ସମାଜରେ ଉଚ୍ଚ-ନୀଚ ଭେଦଭାବ ବ୍ୟାପକ ଭାବେ ରହିଥିଲା ଓ ସମାଜର ସକଳ ସମ୍ବନ୍ଧ ଓ ନୈତିକତା ଜାତିଭିତ୍ତିକ ଥିଲା । ତଥାକଥିତ ଦଳିତ ଓ ଶୂଦ୍ରମାନେ ନାନା ଅଧିକାରରୁ ବଞ୍ଚିତ ହୋଇ ରହିଥିଲେ । ଜ୍ଞାନ ଆହରଣ, ଅସ୍ତ୍ରଧାରଣ

ଓ ରାଜନୈତିକ କ୍ଷମତାରୁ ଦଳିତ ଓ ଶୂଦ୍ରମାନଙ୍କୁ ବଞ୍ଚିତ କରି ରଖାଯାଇଥିଲା । କେବଳ ରାଜା, ଜମିଦାର ଓ ମୁଷ୍ଟିମେୟ ପୂଜକ ଗୋଷ୍ଠୀକୁ ଛାଡ଼ିଦେଲେ ସମସ୍ତେ ଦାରିଦ୍ର୍ୟ ଭିତରେ ରହୁଥିଲେ ।

ଏସବୁ ହେଉଛି ଅତୀତ ସମାଜର ଯୁଗ-ଯନ୍ତ୍ରଣା । ସେହି ପରିବେଶରେ ନାନା ପ୍ରତିକୂଳ ସ୍ଥିତି ଦେଇ ଅଗଣିତ ମଣିଷ, ଜୀବନର ସାଧାରଣ ଆବଶ୍ୟକତା ଭିତରୁ ବଞ୍ଚିତ ହୋଇ ରହିଥିଲେ । ସାମାଜିକ ସଚେତନତା ଓ ବୌଦ୍ଧିକ ବିକାଶ ଅତି ସୀମିତ ରହିଥିଲା । ତେବେ ସୀମିତ ଆବଶ୍ୟକତା ଭିତରେ ଓ ଏକ କ୍ଷୁଦ୍ର ପରିବେଶରେ ବଞ୍ଚୁଥିବା ଲୋକମାନଙ୍କ ଜୀବନଧାରାରେ ଏତେ ଜଟିଳତା ପ୍ରବେଶ କରି ନଥିଲା । ପ୍ରତିଯୋଗିତାର ପରିବେଶ ନ ଥିଲା । ଲୋକମାନେ ଅପେକ୍ଷାକୃତ ଅନେକ ଅସହାୟ ଥିଲେ ବି ପ୍ରାୟତଃ ସରଳ ରହିଥିଲେ । ଜ୍ଞାନବିଜ୍ଞାନର ବିକାଶ ହୋଇ ନ ଥିବାରୁ ଲୋକମାନଙ୍କର ରାଜନୈତିକ ସଚେତନତା, ମାନବିକ ଅଧିକାର ବା ସ୍ୱାଧୀନତାର ଭାବନା ଆସି ନଥିଲା । ସେହି ପରିସ୍ଥିତିରେ ସାମାଜିକ ଆଦର୍ଶ ସକଳ ଧାର୍ମିକ ବିଶ୍ୱାସ ଓ ପରମ୍ପରା ଦ୍ୱାରା ପରିଚାଳିତ ହେଉଥିଲା । ସବୁକିଛି ଘଟଣା ପ୍ରବାହକୁ ଦୈବୀ ବିଧାନ ଭାବେ ମାନି ନିଆଯାଉଥିଲା । ଦୁଃଖ, ଯନ୍ତ୍ରଣା ଓ ଜୀବନର ସଂକଟମୟ ପରିସ୍ଥିତିକୁ ଭାଗ୍ୟ ବୋଲି ବିଚାର କରାଯାଉଥିଲା । ଏହି ଜୀବନ ଅପେକ୍ଷା ପାରଲୌକିକ ଜୀବନର ସ୍ୱପ୍ନ ଥିଲା ଅଧିକ ବଳିଷ୍ଠ । ସାମାଜିକ ଜୀବନ ପ୍ରତି ସମ୍ପୃକ୍ତି ପରିବର୍ତ୍ତେ ଈଶ୍ୱର ଆରାଧନା, ପୂଜା, ଧାର୍ମିକ ଆବେଗ ଜୀବନ ପ୍ରବାହର ମୂଳମନ୍ତ୍ର ଥିଲା ।

ତେବେ ଆମର ପ୍ରତିକୂଳ ସାମାଜିକ ସ୍ଥିତି ଓ ଜୀବନ ଯନ୍ତ୍ରଣାକୁ ଦୂର କରିବା ପାଇଁ ସ୍ୱାଧୀନଚେତା ବ୍ୟକ୍ତିମାନେ ଚିନ୍ତାସ୍ତରରେ କିଛି ନୂତନ ଆଲୋଡନ ଆଣିବାକୁ ପ୍ରୟାସ କଲେ । ଜୀବନର ସଙ୍କଟମୟ ସ୍ଥିତିକୁ କିପରି ଦୂର କରାଯାଇ ପାରିବ ବୋଲି ପ୍ରଶ୍ନ ଉଠିଲା । ଯେତେବେଳେ ମଣିଷ ବିଭିନ୍ନ ସମାଜରେ ଏହି ପ୍ରଶ୍ନ ପଚାରିଛି ଓ ନିଜର ସଙ୍କଟମୟ ପରିସ୍ଥିତିକୁ ଦୂର କରିବାକୁ ପ୍ରୟାସ କରିଛି, ସେତେବେଳେ ସେ ବାଟ ଖୋଜିଛି ଏବଂ ନିଜକୁ ଉନ୍ନତ କରିବାକୁ ପ୍ରୟାସ କରିଛି । ଯେଉଁଠି ମଣିଷମାନେ ସବୁ କିଛିକୁ ଭାଗ୍ୟ, ବିଧାତାର କୋପ ଇତ୍ୟାଦି ଭାବି ଦିଅଁ ଦେବତାର ପୂଜା ଆରାଧନାକୁ ମୁଖ୍ୟ ସ୍ଥାନ ଦେଇଛନ୍ତି ଓ ସାମାଜିକ ଦୁଃଖ ଯନ୍ତ୍ରଣା ପ୍ରତି କୌଣସି ସଂପୃକ୍ତି ବ୍ୟକ୍ତ କରିନାହାନ୍ତି ସେମାନେ ପଛରେ ପଡି ରହିଛନ୍ତି । ପ୍ରକୃତି ଯେତେ ଅନୁକୂଳ ହେଲେ ବି ଯେଉଁଠି ଜୀବନ ଓ ସମାଜ ପ୍ରତି ଦୃଷ୍ଟିଭଙ୍ଗୀ ଅଧିକ ପାରଲୌକିକ ତଥା ବିଶ୍ୱାସ ଆଧାରିତ ହୋଇ ରହିଛି ତାହା ସାମାଜିକ

ବିକାଶଧାରାରେ ଏତେ ଉନ୍ନତ ହୋଇନାହିଁ । ଅପର ପକ୍ଷରେ ଯେଉଁଠି ମଣିଷମାନେ ଅନୁସନ୍ଧିତ୍ସୁ ହୋଇଛନ୍ତି, ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରିବାକୁ ବାଟ ଖୋଜିଛନ୍ତି ଓ ସାମାଜିକ ସଂଗଠନକୁ ଅଧିକ ମାନବିକ ଆଉ ନ୍ୟାୟଯୁକ୍ତ କରିବାକୁ ପ୍ରୟାସୀ ହୋଇଛନ୍ତି, ସେମାନେ ପ୍ରଗତିଶୀଳ ହୋଇଛନ୍ତି ଓ ସଭ୍ୟତାକୁ ଆଗକୁ ନେଇଛନ୍ତି । ଜୀବନ ଯନ୍ତ୍ରଣାକୁ ଦୂର କରିବାକୁ ମାନବିକ ପ୍ରୟାସ ଦ୍ୱାରା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନର ସୂତ୍ରପାତ ହୋଇଛି । (୩୦.୩.୧୧)



# ସାଂପ୍ରତିକ ଜୀବନ ଓ ଜୀବନ ଯନ୍ତ୍ରଣା

ଶିଳ୍ପ ବିପ୍ଳବ ପରଠାରୁ ବୈଜ୍ଞାନିକ ଜ୍ଞାନର କ୍ରମ ବିକାଶ ଓ ନୂଆ ନୂଆ ପ୍ରଯୁକ୍ତିର ପ୍ରଭାବରୁ ସାମାଜିକ ପରିବେଶ ଓ ଢାଞ୍ଚାରେ ଚୂଳମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । କାଳକ୍ରମେ ସହରୀ ସଭ୍ୟତାର ବିକାଶ ହେଲା । ବୃତ୍ତିଗତ ପରିବର୍ତ୍ତନ ହେଲା । ସାର୍ବଜନୀନ ଶିକ୍ଷାର ପରିବେଶ ଆସିଲା । ରାଜନୈତିକ ସ୍ତରରେ ଗଣତାନ୍ତ୍ରିକ ବ୍ୟବସ୍ଥା ସଭ୍ୟ ଜୀବନର ମାନଦଣ୍ଡ ହେଲା । ବିଂଶ ଶତାବ୍ଦୀ ମଧ୍ୟଭାଗରୁ ଯୌଥ ପରିବାରର ଭାବନା ଲୋପ ପାଇବାକୁ ଲାଗିଲା । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଚାପ ଓ ଜୀବନର ଆବଶ୍ୟକତା ଭୟଙ୍କର ଭାବେ ବୃଦ୍ଧି ପାଇବାରୁ କ୍ଷୁଦ୍ର ପରିବାରର ଭାବନା ବ୍ୟାପକ ହେବାକୁ ଲାଗିଲା । ନାରୀ ସ୍ୱାଧୀନତାର ନାରା ଉଠିଲା ଓ ପ୍ରତ୍ୟକ ମଣିଷ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତା'ର ଅଧିକାର ବୋଲି ସ୍ୱୀକୃତ ହେବାକୁ ଲାଗିଲା । ସାମାଜିକ ଗତିଶୀଳତା ଦ୍ରୁତ ଭାବରେ ବୃଦ୍ଧି ପାଇବାରୁ ସମାଜରେ ରହିଥିବା ନାନା ଭେଦଭାବ ମୂଳକ ମାନସିକତାରେ ପରିବର୍ତ୍ତନ ଆସିଲା । ଆର୍ଥିକ ସ୍ୱଚ୍ଛଳତା ଆଣି ପାରୁଥିବା ବୃତ୍ତି ପ୍ରତି ସମାଜରେ ତୀବ୍ର ପ୍ରତିଯୋଗିତାର ପରିବେଶ ଆସିଲା । ଗମନା ଗମନର ପ୍ରଭୂତ ବିକାଶ ଯୋଗୁ ଦୂରତାର ଭାବନା କମି ଆସିଲା ଓ ଯେକୌଣସି ସ୍ଥାନରେ କର୍ମ ସଂସ୍ଥାନ ପାଇବା ପାଇଁ ସାମାଜିକ ଗତିଶୀଳତା ବୃଦ୍ଧି ପାଇଲା । ପରିଣାମତଃ ନୂଆ ସହର ଗଢ଼ି ଉଠିଲା ଓ ପୁରୁଣା ସହରମାନଙ୍କର କଳେବର ଆଶାତୀତ ଭାବେ ପ୍ରସାରିତ ହେଲା । ଆଧୁନିକ ଚିକିତ୍ସା ଓ ସ୍ୱାସ୍ଥ୍ୟ ସେବାରେ ଉନ୍ନତି ଯୋଗୁଁ ସାଧାରଣ ଆୟୁ ବୃଦ୍ଧି ପାଇବାରେ ଲାଗିଲା । ରୋଗ ବାଧକ ସତ୍ତ୍ୱେ ଚିକିତ୍ସାର ସୁଯୋଗ ଯୋଗୁ ପରିଣତ ବୟସ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହିବା ସମ୍ଭବ ହେଲା । ଜନମଙ୍ଗଳକାରୀ ରାଷ୍ଟ୍ର ଚେତନାର ବିକାଶ ଯୋଗୁ ପ୍ରତ୍ୟେକ ନାଗରିକର ଶିକ୍ଷା, ସ୍ୱାସ୍ଥ୍ୟ ସେବା, କର୍ମ ସଂସ୍ଥାନ, ନିରାପଦ ଜୀବନକୁ ରାଷ୍ଟ୍ରୀୟ ଯୋଜନା କ୍ଷେତ୍ରରେ ପ୍ରାଧାନ୍ୟ ଦିଆଗଲା ।

ତେବେ ଏ ସବୁର ପ୍ରଭାବରୁ ଆମର ସାମ୍ପ୍ରତିକ ଜୀବନ ପ୍ରବାହରେ ଯେଉଁ ପରିବର୍ତ୍ତନର ସୂତ୍ରପାତ ହେଲା ତା'ର ଭଲ ଓ ମନ୍ଦ ଦିଗ ରହିଲା । ଜୀବନର ଆବଶ୍ୟକତା ଆଜି ଏତେ ବଢ଼ିଗଲାଣି ଯେ, ଏକ ସାଧାରଣ ଜୀବନ ପାଇଁ ଅନେକ କଥା ଆବଶ୍ୟକ । ଆଗେ ଖାଦ୍ୟ, ପାନୀୟ, ବସ୍ତ୍ର, ବାସଗୃହ ଜୀବନର ମୌଳିକ ଆବଶ୍ୟକତା ଥିଲା । କିନ୍ତୁ ସାମ୍ପ୍ରତିକ ଯୁଗରେ ଜୀବନର ଆବଶ୍ୟକତା ଏତିକିରେ ସୀମିତ ନାହିଁ । ମଣିଷର

ଆଜି କେତେ କ'ଣ ଦରକାର । ସବୁ ପିଲାଙ୍କ ପାଇଁ ଶିକ୍ଷା, ପ୍ରତ୍ୟେକ ବ୍ୟକ୍ତି ପାଇଁ ଆବଶ୍ୟକ ବେଳେ ସ୍ୱାସ୍ଥ୍ୟସେବା, ମନୋରଞ୍ଜନ ପାଇଁ ଟିଭି, ମୋବାଇଲ, ଗାଡ଼ି ଓ ଆଉ କେତେ କ'ଣ ଜଣେ ସାଧାରଣ ମଣିଷର ଆବଶ୍ୟକତା ଭିତରକୁ ଆସିଲା । ଜୀବନର ଏହି ଆବଶ୍ୟକତା ପୂରଣ ଅନେକ ସମୟରେ ସାଧାରଣ ମଣିଷ ପାଖରେ ଜଟିଳ ହେଉଛି । ସବୁ କ୍ଷେତ୍ରରେ ଭୟଙ୍କର ପ୍ରତିଯୋଗିତାର ପରିବେଶ ସୃଷ୍ଟି ହେଉଥିବାରୁ ସମାଜରେ ନାନା ଲୋଭ, ଦୁର୍ନୀତି ଓ ଭ୍ରଷ୍ଟାଚାର ମଧ୍ୟ ବଢ଼ିବାରେ ଲାଗିଛି । ଜୀବନର ଆବଶ୍ୟକତା ଯେତିକି ବଢ଼ିଚାଲିଛି ଓ ସମାଜରେ ଯେଉଁ ପ୍ରକାରର ପ୍ରତିଯୋଗିତା ସୃଷ୍ଟି ହେଉଛି ତାହାର କିଛି କୁପରିଣାମ ସାମାଜିକ ଜୀବନ ପ୍ରବାହକୁ କଳୁଷିତ କରିବାରେ ଲାଗିଛି ।

ଏହି ପରିବେଶରେ ବର୍ତ୍ତମାନର କର୍ମ ସଂସ୍କୃତିରେ ମଧ୍ୟ ଭୟଙ୍କର ପରିବର୍ତ୍ତନ ହେବାରେ ଲାଗିଛି । ସହରୀ ଜୀବନରେ ତଣ୍ଟିକଟା ପ୍ରତିଯୋଗିତା ଭିତରେ ଜୀବନର ଅନେକ ମହତ୍ତର ଆବେଗଗୁଡ଼ିକ ଲୋପ ପାଇଯାଉଛି । ଏହା ସହିତ ସହରର କର୍ମବହୁଳ ଜୀବନ ଧାରାରେ କାହାର ଅନ୍ୟ ବିଷୟରେ ବୁଝିବାକୁ ସମୟ ନାହିଁ । ମାନବିକ ସମ୍ପର୍କ ଓ ସମ୍ବନ୍ଧ ଅତି ଶିଥିଳ ହେବାରେ ଲାଗିଛି । ନିଜର ଘର ପାଖରେ ରହୁଥିବା ଅନ୍ୟ ପ୍ରତିବେଶୀଙ୍କ ସହ ସମ୍ପର୍କ ବି ରହିବା ସମ୍ଭବ ହେଉନାହିଁ । ଆଧୁନିକ ଜୀବନଧାରା ଓ କର୍ମସଂସ୍କୃତି ଭିତରେ ବ୍ୟକ୍ତି ଅନେକାଂଶରେ ଆତ୍ମ କୈନ୍ଦ୍ରିକ ହୋଇଯାଉଛି । କାମର ଚାପ ଓ ବୃତ୍ତିଗତ ଜଟିଳତା ଭିତରେ ଅନ୍ୟ ବିଷୟରେ ବୁଝିବାକୁ ସମୟ ନାହିଁ ଓ ଏହି ଚାପ ସମସ୍ତ ସମ୍ବନ୍ଧକୁ ଶିଥିଳ କରିବାରେ ଲାଗିଛି । କେତେକ ପରିବାରରେ ଯେଉଁଠି ସ୍ୱାମୀ, ସ୍ତ୍ରୀ ଉଭୟ କର୍ମ ସଂସ୍ଥାନ ଭିତରେ ରହିଛନ୍ତି ସେଠାରେ ଆର୍ଥିକ ସ୍ୱଚ୍ଛଳତା ସତ୍ତ୍ୱେ ଭୟଙ୍କର ପାରିବାରିକ ଚାପ ବି ରହିଛି । ଗୋଟିଏ ଦୁଇଟି ପିଲାରେ ପରିବାର ସୀମିତ ରହିଥିଲେ ବି ପିଲାମାନେ ବାପା ମା'ଙ୍କର ସ୍ୱାଭାବିକ ସ୍ନେହ, ଯତ୍ନରୁ ବଞ୍ଚିତ ହେଉଛନ୍ତି । ଦୂରରେ ରହୁଥିବା ବୃଦ୍ଧ ବାପା ମା'ଙ୍କ ବିଷୟ ବୁଝିବାକୁ ସୁଯୋଗ ନାହିଁ, ସମୟ ବି ନାହିଁ । ଏପଟେ ପିଲାମାନଙ୍କୁ ଉଚ୍ଚଶିକ୍ଷା ଦେଇ ଯୋଗ୍ୟ କରିଥିବା ବାପା, ମା ଅନ୍ୟ ଉପରେ ନିର୍ଭର କରି ଅସହାୟ ଭାବେ ଜୀବନ ବଞ୍ଚିବାର ଦୃଷ୍ଟାନ୍ତ ସମାଜରେ ଆଶାତୀତ ଭାବେ ବଢ଼ିବାରେ ଲାଗିଛି । ପୁନଶ୍ଚ ସହରର କର୍ମରତ ଦମ୍ପତି ମଧ୍ୟ ନାନା କାରଣରୁ ମାନସିକ ଚାପରୁ ମୁକ୍ତ ହୋଇପାରୁ ନାହାନ୍ତି । ପୁଅ ଭଲ ପଢୁନାହିଁ, ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ହୋଇପାରୁ ନାହିଁ, ଝିଅଟି ଦେଖିବାକୁ ଏତେ ସୁନ୍ଦର ହେଲା ନାହିଁ, ପତ୍ନୀ ଶିକ୍ଷିତା ହୋଇ ବି ରୁକ୍ଷ ସ୍ୱଭାବର ହେଉଛନ୍ତି ଓ ବାପା, ମା'ଙ୍କ ପ୍ରତି ସମ୍ବେଦନଶୀଳ ନୁହନ୍ତି, ସ୍ୱାମୀ ଘରକଥା ପ୍ରତି ଆଦୌ ଲକ୍ଷ୍ୟ ଦେଉନାହାନ୍ତି ଓ ପତ୍ନୀଙ୍କ ସୁଖ, ସ୍ୱାଚ୍ଛନ୍ଦ୍ୟ ପ୍ରତି ଉଦାସୀନ ରହୁଛନ୍ତି ଏହି ପ୍ରକାରର ମାନସିକତା ଜନଜୀବନରେ ଅତି ବ୍ୟାପକ ହେବାରେ ଲାଗିଛି । ପରସ୍ପର ପ୍ରତି ଆକ୍ଷେପ, ଅଭିଯୋଗ, ଅବିଶ୍ୱାସ ବଢିବା ଯୋଗୁ

ବିବାହ ବିଚ୍ଛେଦ ଘଟୁଛି । ବାପା, ମା'ଙ୍କର ଅଶାନ୍ତି ଓ ଝଗଡ଼ାର ନାନା ମନସ୍ତାତ୍ତ୍ୱିକ କୁପ୍ରଭାବ ପିଲାଙ୍କୁ ଆକ୍ରାନ୍ତ କରୁଛି । ସହରୀ ଜୀବନରେ ଯେ କେବଳ ଅସନ୍ତୋଷ ରହିଛି ତାହା ନୁହେଁ, ଗ୍ରାମୀଣ ଜୀବନରେ ମଧ୍ୟ ପରିବେଶ ଦ୍ରୁତଗତିରେ ବଦଳିବାରେ ଲାଗିଛି । ଆମେ ଗାଆଁରେ ଚଷ ବାସ କରି ମାଟି ହେଲୁ, ଆମ ପିଲାମାନେ କୌଣସି ସୁଖ, ସୁବିଧା ଜୀବନରେ ପାଇଲେ ନାହିଁ, ସେମାନେ ଉତ୍ତମ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ପାଇବାରୁ ବଞ୍ଚିତ, ଜୀବନରେ ଏତେ ପରିଶ୍ରମ କରି ମଧ୍ୟ ଆମ ଜୀବନରେ କୌଣସି ଆର୍ଥିକ ସ୍ୱଚ୍ଛଳତା ନାହିଁ, ଏହି ପ୍ରକାରର ମନୋଭାବ ଗାଆଁ ଗହଳରେ ବୃଦ୍ଧି ପାଇବାରେ ଲାଗିଛି । ତେଣୁ ଗାଁ ଗହଳରୁ ଅନେକ ମଣିଷ ବର୍ତ୍ତମାନ ସହରକୁ ଯାଇ ବଞ୍ଚିବାର ସ୍ୱପ୍ନ ଦେଖୁଛନ୍ତି ।

ସହରର ପରିବେଶରେ କାମ ପାଇବାର କିଛି ସୁଯୋଗ ଥିଲେ ବି ରହିବାର ସୁଯୋଗ ନାହିଁ । ଝୁମ୍ପୁଡ଼ି ଘରେ ରହି ଜୀବନ ସଂଗ୍ରାମ ଭିତରେ ପିଲାଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରି ହେଉନାହିଁ । ସହର ପରିବେଶରେ ନାନା ଝୁମ୍ପୁଡ଼ି ବା ସ୍ଲମମାନ ବଢ଼ିଚାଲିଛି । ପିଲାମାନେ ସାଙ୍ଗସାଥୀମାନଙ୍କ ପାଖରେ ଦୟନୀୟ ହୋଇ ନାନା ମାନସିକ ଚାପର ବଶବର୍ତ୍ତୀ ହେଉଛନ୍ତି । ପିଲାମାନେ ଟିକିଏ ବଡ଼ ହୋଇଗଲା ପରେ ଝୁମ୍ପୁଡ଼ି ପରିବେଶରେ ରହିବା ସେମାନଙ୍କ ପ୍ରତି ଅତ୍ୟନ୍ତ ଯନ୍ତ୍ରଣାଦାୟକ ହେଉଛି । ଅନ୍ୟମାନେ ଗାଡ଼ି ମଟରରେ ଯାଉଛନ୍ତି, ବଡ଼ବଡ଼ କୋଠାରେ ରହୁଛନ୍ତି, କିନ୍ତୁ ଝୁମ୍ପୁଡ଼ିର ପିଲାମାନେ ଅତି ପୂତିଗନ୍ଧମୟ ପରିବେଶରେ ରହି ଜୀବନର ସ୍ୱପ୍ନ ହରାଉଛନ୍ତି ଓ ପାଠପଢ଼ାରେ ଡୋରି ବାନ୍ଧୁଛନ୍ତି । କେତେ ପିଲା ଟାଇ, ବୁଟ୍ ପିନ୍ଧି ଗାଡ଼ିରେ ଯାଇ ପ୍ରସିଦ୍ଧ ସ୍କୁଲମାନଙ୍କରେ ହଜାର ହଜାର ଟଙ୍କା ଦେଇ ପାଠ ପଢୁଥିବାବେଳେ ଗାଆଁ ଗହଳିର ବା ଝୁମ୍ପୁଡ଼ିର ଅନେକ ପିଲା ମାଗଣାରେ ମଧ୍ୟାହ୍ନ ଭୋଜନ ଖାଇ ପଢ଼ିବାର ଯାହା କିଛି ସୁଯୋଗ ପାଉଛନ୍ତି ସେଠାରେ ଗୁଣାତ୍ମକ ଶିକ୍ଷାର କୌଣସି ପରିବେଶ ନାହିଁ । ପିଲାଟି ବେଳୁ ଶିକ୍ଷାରେ ଯେଉଁ ଭେଦଭାବମୂଳକ ପରିବେଶ ରହିଛି ଓ ଅନେକ ପିଲା ଯେଉଁ ହୀନମନ୍ୟତାର ଶିକାର ହେଉଛନ୍ତି ତାହା ସାମାଜିକ ଜୀବନ ପାଇଁ ସୁସ୍ଥକର ନୁହେଁ ।

ସମାଜର ଆର୍ଥିକ ବୈଷମ୍ୟ ସବୁ ସ୍ତରରେ ପ୍ରତିଫଳିତ ହେଉଛି ଓ ବିଶେଷକରି ପିଲାମାନେ ସାମାଜିକ ବାସ୍ତବତାକୁ ବୁଝିବା ପୂର୍ବରୁ ସେମାନେ ନାନା ହୀନମନ୍ୟତା ଭିତରେ ସମାଜ ପ୍ରତି ଏକ ବିଦ୍ୱେଷମୂଳକ ମନୋଭାବ ପୋଷଣ କରୁଛନ୍ତି । ବ୍ୟକ୍ତିଗତ ଅସନ୍ତୋଷର ସମଷ୍ଟିରେ ସାମାଜିକ ଜୀବନରେ ଭୟଙ୍କର ଅସନ୍ତୋଷ ସୃଷ୍ଟି ହେବାରେ ଲାଗିଛି । ତାହାର ପରିଣାମ ନାନା ସମୟରେ ସାମାଜିକ ଜୀବନରେ ପ୍ରତିଫଳିତ ହେଉଛି । କେଉଁଠି ରାସ୍ତା ରୋକ, କେଉଁଠି ସାଧାରଣ ଦୁର୍ଘଟଣାକୁ ଆଧାର କରି ଗାଡ଼ି ମଟର ପୋଡ଼ି, କେଉଁଠି ସାମାନ୍ୟ କଥାକୁ ନେଇ ଲଙ୍କାକାଣ୍ଡ ପରି ପରିବେଶ ଆମର ନୀତି ଦିନିଆ ଅନୁଭୂତିରେ ବ୍ୟାପକ ହେବାରେ ଲାଗିଛି । ଏହା ସହିତ ରାଜନୈତିକ ଜୀବନ

ପ୍ରବାହରୁ ସମସ୍ତ ଶିଷ୍ଟାଚାର ବା ସାଧୁତା ମଉଳି ଯାଉଛି । ଗଣମାଧ୍ୟମରେ କେତେକ ସମୟରେ ଏପରି ଅରୁଚିକର ବିଜ୍ଞାପନମାନ ପ୍ରସାର କରାଯାଉଛି ଯାହାର ନାନା କୁପ୍ରଭାବ ସମାଜ ଉପରେ ପଡୁଛି । ଏହା ସହିତ ସନ୍ତ୍ରାସବାଦ, ହିଂସାତ୍ମକ ହତ୍ୟା, ଧର୍ଷଣ ଇତ୍ୟାଦି ବିଷୟ ପ୍ରତିଦିନ ସମ୍ବାଦପତ୍ରରେ ପ୍ରକାଶ ପାଉଛି । ସୁସମ୍ବାଦ ଅପେକ୍ଷା ଏକ ମନ୍ଦ ସମ୍ବାଦକୁ ଅଧିକ ଗୁରୁତ୍ୱ ଦେଇ ପ୍ରଚାର କରାଯାଉଛି । ଆଧୁନିକ ପ୍ରଯୁକ୍ତି ଯେତିକି ନୂଆ ନୂଆ କୌଶଳ ଓ ସାଧନ ବାହାର କରୁଛି ସମାଜରେ ଆର୍ଥିକ ବୈଷମ୍ୟ ସେତିକି ବଢ଼ିବାରେ ଲାଗିଛି । ଜ୍ଞାନ, ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ ରାଶି ରାଶି କୁସଂସ୍କାର, ଅପସଂସ୍କୃତି ସମାଜରେ ବ୍ୟାପକ ହେଉଛି । ଅନେକ ପିଲା କିଶୋର ବୟସରୁ ଡ୍ରଗ୍, ନିଶା ସେବନ କରିବାର ସୁଯୋଗ ପାଉଛନ୍ତି ଓ ସେସବୁ ଅତି ସୁବିଧାରେ ଉପଲବ୍ଧ ହୋଇପାରୁଛି । ଅନେକ ବ୍ୟକ୍ତି ଜନବହୁଳ ସହରରେ ରହି ମଧ୍ୟ ନିଜକୁ ନିଃସଙ୍ଗ ମନେ କରୁଛନ୍ତି । କାହା ସହିତ ମିଶିବାର ସୁଯୋଗ ନାହିଁ । ସମସ୍ତଙ୍କର ବ୍ୟସ୍ତ ବହୁଳ ଜୀବନ, ରୋଜଗାର ପାଇଁ ଦୌଡ଼, ଅସାଧୁ ଉପାୟରେ ଉପାର୍ଜନର ମାନସିକତା ଭିତରେ ବନ୍ଧୁତା, ପରସ୍ପର ପ୍ରତି ସ୍ନେହ, ଆନ୍ତରିକତା ପାଇଁ ସମୟ ନାହିଁ ।

କର୍ମ ବହୁଳ ଜୀବନ ଭିତରେ ଯଦି ପାରିବାରିକ ଶାନ୍ତି ଓ ଶ୍ରଦ୍ଧା ନାହିଁ ତେବେ ତ ଜୀବନ ଦୁର୍ବିସହ । ଅନେକ ଲୋକ ଏହିସବୁ ପରିସ୍ଥିତିରେ ମାନସିକ ସ୍ତରରେ ବହୁ ଚାପର ବଶବର୍ତ୍ତୀ ହୋଇ ନିଶା ଖାଇବା, ରୋଗାକ୍ରାନ୍ତ ହେବା, ଅସହାୟବୋଧର ଶିକାର ହେବା, ନିଃସଙ୍ଗ ଅନୁଭବ କରିବା, ଭୟଙ୍କର ମାନସିକ ଉତ୍ତେଜନା ଭିତରେ ସମୟ କଟାଇବା ଦେଖାଯାଉଛି । କର୍ମ ପରିସରରେ ଅଶାନ୍ତି ସହିତ ଯେଉଁଠି ପାରିବାରିକ ଅଶାନ୍ତି ମିଶିଯାଉଛି ସେଠାରେ ଜୀବନ ଦୁର୍ବିସହ ହୋଇ ଉଠୁଛି । ପାରିବାରିକ ଜୀବନରେ ଯେଉଁ ସହଭାଗିତା ଥିଲା ତାହା ଧ୍ୱଂସ ହେବାରେ ଲାଗିଛି । ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ସାର୍ବଜନୀନ ଶିକ୍ଷା ପରି ସଭ୍ୟ ମୂଲ୍ୟବୋଧ ଗୁଡ଼ିକର ବିକାଶ ସତ୍ତ୍ୱେ, ସମାଜର କେତେ ପ୍ରାଚୀନ ମୂଲ୍ୟବୋଧ, ପାରିବାରିକ କର୍ତ୍ତବ୍ୟ ନଷ୍ଟ ହେବାରେ ଲାଗିଛି । ଗଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ ସହ ସମାଜରେ ଅପରାଧମୂଳକ ଘଟଣାମାନ ବୃଦ୍ଧି ପାଇବାରେ ଲାଗିଛି । ଏହା ହିଁ ବଡ ପ୍ରହେଳିକା । ଏହି ସବୁ ଯେ ଆମ ସମୟର କେତେକ ଜୀବନ ଯନ୍ତ୍ରଣା ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । (୬.୪.୧୧)



# ସାମାଜିକ ଉତ୍କର୍ଷ

ସଭ୍ୟତାର କ୍ରମବିକାଶର ଏକ ସୁଦୀର୍ଘ କାହାଣୀ ରହିଛି । ସମ୍ପ୍ରତି ସାମାଜିକ ଜୀବନ ଯେଉଁ ସ୍ତରକୁ ଆସିଛି ତାହା ପଶ୍ଚାତରେ ରହିଛି ହଜାର ହଜାର ବର୍ଷର ଇତିହାସ । ନାନା ଘାତ୍ ପ୍ରତିଘାତ ଦେଇ ସାମାଜିକ ବ୍ୟବସ୍ଥା ଦୃଢ଼ ହୋଇଛି, ଜ୍ଞାନର କ୍ରମବିକାଶ ହୋଇଛି, ମାନବିକ ମୂଲ୍ୟବୋଧର ବିକାଶ ହୋଇଛି, ନାଗରିକ ସଚେତନତାର ସ୍ତର ଉନ୍ନତ ହୋଇଛି ଓ ବ୍ୟକ୍ତିର କର୍ତ୍ତବ୍ୟବୋଧର ପରିସର ପ୍ରସାରିତ ହୋଇଛି । କୌଣସି ମାନବେତର ପ୍ରାଣୀ ପକ୍ଷରେ ଏହା ସମ୍ଭବ ହୋଇ ନାହିଁ । ଏକଥା ସତ୍ୟ ଯେ, ଦିନେ ମଣିଷ ବଣ ଜଙ୍ଗଲରେ ବୁଲୁଥିଲା, ଆଦିମ ସ୍ତରରେ ଜୀବନ ବଞ୍ଚୁଥିଲା, ସଭ୍ୟ ମୂଲ୍ୟବୋଧ ନେଇ ସଚେତନ ନଥିଲା । ତେବେ ମଣିଷ ଭିତରେ ଯେଉଁ ସାମାଜିକ ପ୍ରବୃତ୍ତି ସହଜାତ ଭାବେ ରହିଛି, ତାହା ଜୀବନର କ୍ରମବିକାଶରେ ସହାୟକ ହୋଇଛି । ବ୍ୟକ୍ତିର ସାମାଜିକ ପ୍ରବୃତ୍ତି ଯୋଗୁ ମଣିଷର ଗୋଷ୍ଠୀ ଜୀବନ ପରିବାରଠାରୁ କାଳକ୍ରମେ ସମ୍ପ୍ରସାରିତ ହୋଇ ରାଷ୍ଟ୍ର ସ୍ତରକୁ ଆସିପାରିଛି । ଏପରିକି ସମ୍ପ୍ରତି ଆନ୍ତଃରାଷ୍ଟ୍ରୀୟ ଦୃଷ୍ଟିଭଙ୍ଗୀର ପ୍ରସାର ହୋଇଛି ଓ ଆନ୍ତର୍ଜାତିକ ମନୋଭାବ ଧୀରେ ଧୀରେ ବିକଶିତ ହୋଇଚାଲିଛି । ବ୍ୟକ୍ତିର ସାମାଜିକ ପ୍ରବୃତ୍ତି ସହ ଭାଷା ବ୍ୟବହାର କରିବାର ସାମର୍ଥ୍ୟ ସଭ୍ୟତାର ଅଗ୍ରଗତିରେ ବହୁ ସହାୟକ ହୋଇଛି । ଭାଷା କହିବାର ସାମର୍ଥ୍ୟ ଯୋଗୁ ହିଁ ଜ୍ଞାନ, ବିଜ୍ଞାନର ବିକାଶ ହୋଇଛି ଓ ଚିନ୍ତା ଚେତନାର କ୍ରମୋନ୍ନତି ଘଟିଛି । ଶିକ୍ଷା, ସଂସ୍କୃତି, ସାହିତ୍ୟ, ଦର୍ଶନର ବିକାଶ କ୍ଷେତ୍ରରେ ଭାଷାର ଅବଦାନ ଅପରିହାର୍ଯ୍ୟ ହୋଇଛି । ମଣିଷର ଭାଷା କହିବାର ସାମର୍ଥ୍ୟ ନଥିଲେ ସେ କେଉଁ ସ୍ତରରେ ଜୀବନ ବଞ୍ଚୁଥାନ୍ତା, ତାହା ସହଜରେ ଅନୁମେୟ । ମଣିଷର ସାମାଜିକ ପ୍ରବୃତ୍ତି ଓ ଭାଷା କହିବାର ସାମର୍ଥ୍ୟ ମଧ୍ୟ ଦେଇ ବିଚାରଶୀଳ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ହୋଇଛି । ଚିନ୍ତା କରିବାର ସାମର୍ଥ୍ୟ ଦ୍ୱାରା ମଣିଷ ନିଜ ଜୀବନକୁ ଅଧିକ ନିରାପଦ କରିବାକୁ ପ୍ରୟାସ କରିଛି । ପ୍ରକୃତିର ଘନଘଟା ଓ ଜୀବନର ରହସ୍ୟକୁ ବୁଝିବାକୁ ପ୍ରୟାସୀ ହୋଇଛି । ଯେକୌଣସି ପ୍ରତିକୂଳ ପରିବେଶକୁ ମୁକାବିଲା କରିବାକୁ ବାଟ ଖୋଜିଛି ଓ ଏହି ପ୍ରୟାସ ଦେଇ ଜ୍ଞାନ, ବିଜ୍ଞାନର ବିକାଶ ଘଟାଇଛି । ବିଚାରଶୀଳ ଦୃଷ୍ଟିଭଙ୍ଗୀର ପ୍ରସାର ଯେତେ ବ୍ୟାପକ ହୋଇଛି ସଭ୍ୟତା ସେତେ ଆଗକୁ ଯାଇଛି ଓ ଜୀବନର ଗୁଣାତ୍ମକ ମାନରେ ଅଭିବୃଦ୍ଧି ହୋଇଛି । ବୌଦ୍ଧିକ ଅନୁସନ୍ଧିତ୍ସା, କୌତୂହଳ

ପ୍ରବଣତା, ଅନୁଶୀଳନ ଓ ଜିଜ୍ଞାସାବୋଧ ବିଚାରଶୀଳତାରୁ ଉଦ୍ଭବ ହୋଇଛି । ଏହାଦ୍ୱାରା ଚିନ୍ତା ଚେତନାର ଅଗ୍ରଗତି ଘଟିଛି ଓ ନୂଆ ନୂଆ ଜ୍ଞାନ, ପ୍ରଯୁକ୍ତି ଜୀବନକୁ ସୁଖମୟ କରିବାରେ ସହାୟକ ହୋଇଛି । ପୁନଶ୍ଚ ମଣିଷ ଭିତରେ ଥିବା ସୃଜନଶୀଳତା ଦେଇ ଜୀବନର କଳାତ୍ମକ ଅଭିବୃଦ୍ଧି ଘଟିଛି । ନୃତ୍ୟ, ସଂଗୀତ, କଳାତ୍ମକ ଅଭିବ୍ୟକ୍ତି ମଧ୍ୟ ଦେଇ ଯେଉଁ ସୃଜନଶୀଳ ଆବେଗର ସାମର୍ଥ୍ୟ ଆସିଛି, ତାହା ଜୀବନକୁ ସରସ, ସୁନ୍ଦର କରିବାରେ ସାହାଯ୍ୟ କରିଛି । ଏହିପରି ନାନା ସୃଜନଶୀଳ ପରିପ୍ରକାଶ ଭିତରେ ସଭ୍ୟତାର କ୍ରମୋନ୍ନତି ଘଟିଛି ଓ ଜୀବନ ଅଧିକ ନିରାପଦ, ସୁଖପ୍ରଦ ଓ ପ୍ରୀତିପଦ ହେବାର ପରିବେଶ ଆସିଛି ।

ସଭ୍ୟତାର ଯେତେ କ୍ରମୋନ୍ନତି ହେଲେ ମଧ୍ୟ ସାମାଜିକ ପରିବେଶ ସବୁ ସ୍ଥାନରେ ଉନ୍ନତ ହୋଇନାହିଁ । ସବୁ ସମାଜ ବା ରାଷ୍ଟ୍ର ସମାନ ଭାବରେ ବିକଶିତ ହୋଇନାହାନ୍ତି । କେତେକ ରାଷ୍ଟ୍ର ଅତ୍ୟନ୍ତ ବିକଶିତ ହୋଇଥିବା ବେଳେ ଅନ୍ୟ କେତେକ ରାଷ୍ଟ୍ରରେ ପ୍ରଭୂତ ଦାରିଦ୍ର୍ୟ ରହିଛି । ପୁନଶ୍ଚ ଗରିବ ଦେଶମାନଙ୍କରେ ମୁଷ୍ଟିମେୟ ବ୍ୟକ୍ତି ଅତ୍ୟନ୍ତ ପ୍ରାଚୁର୍ଯ୍ୟ ଭିତରେ ରହିଥିବା ବେଳେ ଅଗଣିତ ବ୍ୟକ୍ତି ଜୀବନର ସର୍ବନିମ୍ନ ଆବଶ୍ୟକତା ବି ପୂରଣ କରିପାରୁ ନାହାନ୍ତି । ସେହିପରି କେତେକ ରାଷ୍ଟ୍ରରେ ଏବେ ବି ନିରକ୍ଷରତା ରହିଛି, ଭିକ୍ଷାବୃତ୍ତି ରହିଛି, ଶିଶୁ ଶ୍ରମିକ ରହିଛନ୍ତି । ଆଧୁନିକ ଚିକିତ୍ସା ବିଜ୍ଞାନର ସଫଳତାର ସୁଯୋଗ ସବୁ ମଣିଷଙ୍କ ପାଖକୁ ଯାଇପାରୁନାହିଁ । ବିକାଶଶୀଳ ତୃତୀୟ ବିଶ୍ୱ ରାଷ୍ଟ୍ରମାନଙ୍କରେ ଏବେ ବି ଅନେକ ବ୍ୟକ୍ତି ସାମାନ୍ୟ ସ୍ୱାସ୍ଥ୍ୟସେବାରୁ ବଞ୍ଚିତ ହୋଇ ରହିଛନ୍ତି । ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ ଏତେମାତ୍ରାରେ ରହିଛି, ଯାହାର ନାନା କୁପ୍ରଭାବ ସାମାଜିକ ଜୀବନରେ ପ୍ରତିଫଳିତ ହେଉଛି । ଆମ ଦେଶ ପରି ଜନବହୁଳ ଦେଶର ଦାରିଦ୍ର୍ୟ ପ୍ରକୃତରେ ଉଦ୍‌ବେଗଜନକ । ଏବେ ବି ଆମଦେଶର ଜନସଂଖ୍ୟାର ଏକ ପ୍ରମୁଖ ଅଂଶ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି । ଅନେକ ପିଲା କଅଁଳ ବୟସରୁ ପାଠ ଛାଡୁଛନ୍ତି, ପେଟର ଜ୍ୱାଳାରେ ଅନେକ ବାଳଶ୍ରମିକ ହେଉଛନ୍ତି, ଅନେକ ମଣିଷ ଅତି ଅସ୍ୱାସ୍ଥ୍ୟକର ପରିବେଶରେ ସ୍ଲମରେ ରହୁଛନ୍ତି । ଫସଲ କ୍ଷତିଜନିତ ପରିସ୍ଥିତିରେ ଆର୍ଥିକ ନିରାପତ୍ତା ଅଭାବରେ ଚାଷୀମାନେ ଆତ୍ମହତ୍ୟା କରୁଛନ୍ତି ।

ଆର୍ଥିକ ଦାରିଦ୍ର୍ୟ ସହିତ ମାନସିକ ଦାରିଦ୍ର୍ୟ ବି ସମାଜରେ କିଛି କମ୍ ନାହିଁ । ଏବେ ବି ଆମ ସମାଜରେ ଜାତିଆଣ ମାନସିକତା ଭରପୂର ହୋଇ ରହିଛି । ସାମ୍ପ୍ରଦାୟିକ ତିକ୍ତତାର ପରିବେଶ ସୃଷ୍ଟି କରାଯାଇ ଧର୍ମ ନାମରେ ସମାଜକୁ ଭାଗ କରାଯାଉଛି । ମନ୍ତ୍ର, ତନ୍ତ୍ର, ଗୁଣିଗାରେଡ଼ିରେ ଅନେକ ଲୋକ ବିଶ୍ୱାସ କରୁଛନ୍ତି । ବୃହତ୍ତର ସାମାଜିକ ପରିବେଶ ବା ରାଷ୍ଟ୍ର ଉପରେ ବିଶ୍ୱାସ ଅଭାବରୁ ଏସବୁ ମାନସିକତା ବୃଦ୍ଧି ପାଉଛି ।

ଅସହାୟବୋଧଜନିତ ମାନସିକତା ଯେତେ ବ୍ୟାପକ ଭାବେ ସାମାଜିକ ମନସ୍ତତ୍ତ୍ୱକୁ ଆକ୍ରାନ୍ତ କରେ, ତା'ର ପରିଣାମରୁ ଲୋକମାନେ କଳ୍ପିତ ଦିଅଁ, ଦେବତା ଓ ପୂଜା ଆରାଧନାରେ ଅଧିକ ଆସ୍ଥା ପ୍ରକଟ କରିନ୍ତି ।

ଏସବୁ ସହିତ ଦୁର୍ନୀତି ଓ ଭ୍ରଷ୍ଟାଚାର ସମାଜର ପ୍ରତ୍ୟେକ ସ୍ତରରେ ବ୍ୟାପକ ଭାବେ ରହିଛି । ଦୁର୍ନୀତିରେ ଲିପ୍ତ ବ୍ୟକ୍ତିଗଣ ମାନସିକ ସ୍ତରରେ ଅସହାୟ ହେବା ଯୋଗୁ ନାନା ଦିଅଁ ଦେବତାଙ୍କୁ କେତେ ମାନସିକ କରିବାରେ ଲାଗିଥାନ୍ତି । ଏବେ ଦେଖାଯାଉଛି ଯେ ବିଭିନ୍ନ ସରକାରୀ ଦପ୍ତର ଭିତରେ ନାନା ଦେବଦେବୀ ମୂର୍ତ୍ତି ରଖାଯାଉଛି । ଅଫିସମାନଙ୍କରେ ଲାଞ୍ଚ; ମିଛର ପ୍ରାବଲ୍ୟ ବଢ଼ିବାରେ ଲାଗିଛି । ଠିକ୍ ସେହିପରି ଦିଅଁ ଦେବତାଙ୍କ ମୂର୍ତ୍ତି ସ୍ଥାପନ କରାଯାଉଛି । ଲାଞ୍ଚ ମିଛରେ ଲିପ୍ତ ରହିଥିବା ବ୍ୟକ୍ତିଗଣ ଅନ୍ୟାୟ ପନ୍ଥାରେ ଉପାର୍ଜନ କରୁଥିବାରୁ ଦିଅଁ ଦେବତାଙ୍କୁ ଡ଼ାକିଥାନ୍ତି । ସେହିପରି ସାମାଜିକ ଜୀବନ ପ୍ରବାହରେ ଅସତ୍ ଉପାୟରେ ଉପାର୍ଜନ କରୁଥିବା ଲୋକମାନେ ନିଜ କଳାଟଙ୍କାର କିଛି ଅଂଶ ମନ୍ଦିର ବା ପୂଜାସ୍ଥଳ କରିବାରେ ବ୍ୟୟ କରୁଛନ୍ତି । ପରିଣାମତଃ ଅନ୍ୟାୟ, ଅନୀତି ସମାଜରେ ଯେଉଁମାତ୍ରାରେ ବଢ଼ୁଛି ସେହି ମାତ୍ରାରେ ପୂଜାପାଠ ମଧ୍ୟ ବଢ଼ିବାରେ ଲାଗିଛି । ବିଭିନ୍ନ ସମୟରେ ନାନା ପ୍ରକାର ଗୁଜବ ସୃଷ୍ଟି କରାଯାଉଛି ଓ ଆଧୁନିକ ଗଣମାଧ୍ୟମରେ ଏହି ପ୍ରକାର ବିଶ୍ୱାସକୁ ପ୍ରଚାର କରାଯାଉଛି । ଫଳତଃ ଅସହାୟବୋଧର ମାନସିକତାରେ ଆକ୍ରାନ୍ତ ବ୍ୟକ୍ତିଗଣ ହଜାର ହଜାର ସଂଖ୍ୟାରେ ପୂଜାସ୍ଥଳକୁ ଯାଇ ଆସନ୍ନ ବିପତ୍ତିରୁ ରକ୍ଷା ପାଇବା ପାଇଁ ପ୍ରାର୍ଥନା କରୁଛନ୍ତି । କେଉଁଠି ଦୀପ ଜାଳିବା, କେଉଁଠି ପାଣି ଢ଼ାଳିବା, କେଉଁଠି ନଡ଼ିଆ ବାଡ଼େଇବା ଦ୍ୱାରା ନିଜର ମନସ୍କାମନା ପୂରଣ ହେବାର ଏକ ଭ୍ରମାତ୍ମକ ଆଶ୍ୱାସନା ଲାଭ କରୁଛନ୍ତି । ପରିଣାମତଃ ଅନ୍ୟାୟ, ଅନୀତି ସମାଜରେ ଯେଉଁମାତ୍ରାରେ ବଢ଼ୁଛି ସେହି ମାତ୍ରାରେ ପୂଜାପାଠ ମଧ୍ୟ ବଢ଼ିବାରେ ଲାଗିଛି । ବିଭିନ୍ନ ସମୟରେ ନାନା ପ୍ରକାର ଗୁଜବ ସୃଷ୍ଟି କରାଯାଉଛି ଓ ଆଧୁନିକ ଗଣମାଧ୍ୟମରେ ଏହି ପ୍ରକାର ବିଶ୍ୱାସକୁ ପ୍ରଚାର କରାଯାଉଛି । ଫଳତଃ ଅସହାୟବୋଧର ମାନସିକତାରେ ଆକ୍ରାନ୍ତ ବ୍ୟକ୍ତିଗଣ ହଜାର ହଜାର ସଂଖ୍ୟାରେ ପୂଜାସ୍ଥଳକୁ ଯାଉଛନ୍ତି । ଏହାଦ୍ୱାରା କେତେକ ଲୋକ ବେଶ୍ ଦୁଇ ପଇସା ପାଉଥିବାରୁ ଏହାକୁ ସୁପରିକଳ୍ପିତ ଭାବେ ପ୍ରଚାର କରୁଛନ୍ତି । ପୁନଶ୍ଚ ଏସବୁ ବିଶ୍ୱାସକୁ ଧର୍ମ, ପରମ୍ପରା, ଐତିହ୍ୟ, ଆଧ୍ୟାତ୍ମିକତା ଇତ୍ୟାଦି କହି ସେସବୁ ସହ ଏକ ଭାବପ୍ରବଣତା ସୃଷ୍ଟି କରୁଛନ୍ତି । ଗୋଟିଏ ପଟେ ଲୋକଚରିତ୍ର ନିମ୍ନଗାମୀ ହେବା ଓ ଅନ୍ୟପଟେ ପୂଜା ଆରାଧନା ବୃଦ୍ଧି ପାଇବା ବେଶ୍ ବିଡ଼ମ୍ବନା ମନେହୁଏ । ତେବେ ଧାର୍ମିକ ଭାବାବେଗ ଯେଉଁ ସମାଜରେ

ଯେତେ ଅଧିକ, ସେହି ସାମାଜିକ ପରିବେଶରେ ନୈତିକ-ମାନ ଓ ସଭ୍ୟ-ମୂଲ୍ୟବୋଧ ଯେ ସେତେ କମ୍ ଏହା ଏକ ସାଧାରଣ ଅନୁଭୂତିର ଘଟଣା ଅଟେ ।

ସାମାଜିକ ବିକାଶଧାରାରେ ଯେଉଁ ବିଚାରଗୁଡ଼ିକ ଗୋଷ୍ଠୀଗତ ଜୀବନର ଗୁଣାତ୍ମକ ମାନରେ ବୃଦ୍ଧି ଘଟାଇବାରେ ଗୁରୁତ୍ୱପୂର୍ଣ ମନେହୋଇଛି ତାହାର ମୁଖ୍ୟ ଆଧାର ହେଉଛି ବିଚାରଶୀଳ ଦୃଷ୍ଟି । ଯେଉଁ ସାମାଜିକ ପରିବେଶରେ ବିଚାରଶୀଳତାର ପ୍ରାଧାନ୍ୟ ଯେତେ ଅଧିକ ସେମାନେ ସେତେ ପ୍ରଗତିଶୀଳ ଓ ସଭ୍ୟ । ଅଥଚ ଯେଉଁ ସାମାଜିକ ପରିବେଶରେ ବିଶ୍ୱାସର ପ୍ରାବଲ୍ୟ ଅଧିକ ତାହା ସେତିକି ରକ୍ଷଣଶୀଳ ଓ ପଛୁଆ । ଯେଉଁ ସାମାଜିକ ମନସ୍ତତ୍ତ୍ୱରେ ମଣିଷର ପ୍ରାଧାନ୍ୟ ଓ ପ୍ରୟାସ ଗୁରୁତ୍ୱପୂର୍ଣ୍ଣ, ତାହା ପ୍ରାୟତଃ ବିକଶିତ । ଏହା ସ୍ୱତଃସିଦ୍ଧ ଯେ ମଣିଷର ପ୍ରୟାସ ଓ ସାମୂହିକ ପ୍ରଚେଷ୍ଟା ଯୋଗୁ ବିକାଶ ସମ୍ଭବ ହୋଇଛି । ସକଳ ବିକାଶ, ସମୃଦ୍ଧି ଓ ବଞ୍ଚିବାର ମାନରେ ଉନ୍ନତି ମଣିଷର ଉଦ୍ୟମ ଯୋଗୁ ସମ୍ଭବ ହୋଇଛି । କେଉଁ ଦିଅଁ ଦେବତାଙ୍କ ପାଖରେ ଶରଣ ପଶିଲେ, ପୂଜା-ପାର୍ବଣରେ ମତୁଆଲା ହେଲେ ବା କୌଣସି କଳ୍ପିତ ଠାକୁରଙ୍କୁ ନିଜର ସାଂସ୍କୃତିକ ପରିଚୟର ଆଧାର କଲେ ଜାତିର ବିକାଶ ହେବନାହିଁ । ଜାତିର ବିକାଶ ଲୋକ-ଚରିତ୍ର, କର୍ମସଂସ୍କୃତି ଓ ବିଜ୍ଞାନ-ସମ୍ମତ ମାନସିକତା ଦ୍ୱାରା ସମ୍ଭବ ହେବ । ଅତ୍ୟନ୍ତ ପ୍ରତିକୂଳ ପ୍ରାକୃତିକ ପରିବେଶ ଭିତରେ ରହିଥିବା ଜନଗଣ ନିଜର ପ୍ରୟାସ ଓ ସଂକଳ୍ପ ଦ୍ୱାରା ଉନ୍ନତ ଜୀବନର ଅଧିକାରୀ ହୋଇପାରନ୍ତି, ଅଥଚ ପ୍ରାକୃତିକ ସମ୍ପଦ ଥିବା ଏକ ଅନୁକୂଳ ପରିବେଶରେ ଲୋକମାନେ ନିଜର ଭ୍ରମାତ୍ମକ ଦୃଷ୍ଟିଭଙ୍ଗୀ ଯୋଗୁ ଅସହାୟ ଭାବେ ଜୀବନ ବଞ୍ଚିଥାନ୍ତି । ସେହିପରି ଧାର୍ମିକ ଆବେଗ, ପୂଜା ପାର୍ବଣ ବ୍ୟକ୍ତି ବା ଗୋଷ୍ଠୀ ଚରିତ୍ରକୁ ଉନ୍ନତ କରେନାହିଁ । ବରଂ ମଣିଷ ପ୍ରତି ପ୍ରତିବଦ୍ଧତା ଓ ଜୀବନକୁ ମୂଲ୍ୟ ଦେଉଥିବା ମନୋଭାବରୁ ବ୍ୟକ୍ତିର ନୈତିକ ଚରିତ୍ର ଉନ୍ନତ ହୋଇଥାଏ । ଯେଉଁ ସାମାଜିକ ଓ ସାଂସ୍କୃତିକ ପରମ୍ପରାରେ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାକୁ ଗୁରୁତ୍ୱ ଦିଆଯାଏ ଓ ମଣିଷ ମଣିଷ ଭିତରେ କୃତ୍ରିମ ଭେଦଭାବ ନଥାଏ ତାହା ସଭ୍ୟତାର ମାପକାଠିରେ ଉନ୍ନତ ଜଣାପଡ଼େ । ଅଥଚ ଯେଉଁ ବ୍ୟବସ୍ଥାରେ ବ୍ୟକ୍ତିର ସାମାଜିକ ପରିଚୟ ଜନ୍ମଗତ ମାନଦଣ୍ଡରେ ସାନ-ବଡ଼ ଭାବେ ନିରୂପିତ ହେଉଥାଏ, ସେଠାରେ ଏକ କ୍ଷୟଶୀଳ ପରିବେଶ ରହିଥାଏ । ଏକ କ୍ଷୟଶୀଳ ପରିବେଶରେ ଧର୍ମ, ଈଶ୍ୱର, ପୂଜା-ଆରାଧନାର ପ୍ରାଧାନ୍ୟ ଥାଏ ଓ ତାହାକୁ ସଂସ୍କୃତି ବା ଆଧାତ୍ମିକତାର ପୁଟ ଦିଆଯାଇ ବାହାବା ନିଆଯାଏ । କିନ୍ତୁ ସାମାଜିକ ବାସ୍ତବତା ଭିତରେ ଦାରିଦ୍ର୍ୟ, ଅଶିକ୍ଷା, ନିରକ୍ଷରତା, ଅନ୍ୟାୟ, ଭ୍ରଷ୍ଟାଚାର ଓ କୁସଂସ୍କାର ବେଶ ବ୍ୟାପକ ଭାବେ ରହିଥାଏ । ମୁକ୍ତି, ମୋକ୍ଷ, ନିର୍ବାଣର କେତେ କେତେ କାଳ୍ପନିକ ତତ୍ତ୍ୱକୁ କେତେ ରଙ୍ଗରସ ଦେଇ ପ୍ରଚାର କରାଯାଏ, ଅଥଚ ସାମାଜିକ ଜୀବନ ପ୍ରବାହରେ ମାନବବାଦୀ

ବିଚାର ନାଗରିକ କର୍ତ୍ତବ୍ୟବୋଧ ଓ ସାଧୁତାକୁ ମୂଲ୍ୟ ଦିଆଯାଏ ନାହିଁ । କେତେ ବାବା, ମାତା ହାତସଫେଇ କଳା ଓ ଚମତ୍କାରିତା ଆଳରେ ନିଜର ସାମ୍ରାଜ୍ୟ ସୃଷ୍ଟି କରିପାରନ୍ତି । ଅସହାୟବୋଧ ବା ଦୁର୍ବଳ ମାନସିକତାରେ ଜର୍ଜରିତ ଲୋକମାନଙ୍କୁ ଅକ୍ଳେଶରେ ପ୍ରଭାବିତ କରି ନିଜର ଗୋଟିଏ ଗୋଟିଏ ସାମ୍ରାଜ୍ୟ ବିସ୍ତାର କରିପାରନ୍ତି । ନିଜେ ଏକ ଅବତାର ବୋଲି ଭାବନାକୁ କୌଶଳତାର ସହ ପ୍ରଚାର କରି ଆତ୍ମା, ଅମରତ୍ୱ, ଈଶ୍ୱରପ୍ରାପ୍ତିର ବାଣୀ ଶୁଣାଇ ଜନମାନସକୁ ବିଭ୍ରାନ୍ତ କରନ୍ତି । ସତ୍ୟ, ନ୍ୟାୟର ପ୍ରବକ୍ତା ବୋଲି କହୁଥିବା ଏହି ଗୁରୁମାନେ ଅସତ୍ୟ ଓ ଛଳନାର ଦୁର୍ଗ ଭିତରେ ସାଧାରଣ ମଣିଷକୁ ସ୍ୱପ୍ନ ବାଣ୍ଟନ୍ତି । ସାମାଜିକ ଭ୍ରଷ୍ଟାଚାରର ବିକାଶ କ୍ଷେତ୍ରରେ ସେମାନେ ଦାୟୀ ହେଲେ ମଧ୍ୟ ନିଜକୁ ଆଧ୍ୟାତ୍ମିକ ପୁରୁଷ କହି ଜନମାନସକୁ ବିଭ୍ରାନ୍ତ କରିପାରନ୍ତି ।

ଉପସଂହାରରେ କହିଲେ ଅତୀନ୍ଦ୍ରିୟବାଦ, ଈଶ୍ୱର ଆରାଧନା, ଧାର୍ମିକ କର୍ମକାଣ୍ଡ ଓ ଚମତ୍କାରିତାରେ ବିଶ୍ୱାସ ଗୁଡ଼ିଏ ମନସ୍ତାତ୍ତ୍ୱିକ ଆବେଗ ମାତ୍ର । ଏହା ସାମାଜିକ ପରିବେଶରୁ ବ୍ୟକ୍ତି ଲାଭ କରିଥାଏ । ଏହାଦ୍ୱାରା ସମାଜ ବା ସାମାଜିକ ଅସ୍ମିତା ଥିବା ଏକ ଜାତି ଆଗକୁ ଯାଏନାହିଁ । ବରଂ ଗୁଣାତ୍ମକ ଜୀବନ ଓ ବିକାଶ କ୍ଷେତ୍ରରେ ଏସବୁ ବେଳକେ ପ୍ରତିବନ୍ଧକ ହୋଇଥାଏ । ଅପରପକ୍ଷରେ ବିଚାରଶୀଳ ଦୃଷ୍ଟି, ନୈତିକ ଶୃଙ୍ଖଳାବୋଧ, ମଣିଷ ପ୍ରତି ସମ୍ବେଦନଶୀଳ ମନୋଭାବ ଓ ବୈଜ୍ଞାନିକ ବିଚାରବୋଧ ସଭ୍ୟତାକୁ ଆଗକୁ ନିଏ, ସାମାଜିକ ଉତ୍କର୍ଷ ସାଧନରେ ସହାୟକ ହୁଏ ଓ ଜୀବନର ଗୁଣାତ୍ମକ ମାନରେ ସକାରାତ୍ମକ ପରିବର୍ତ୍ତନ ଆଣିଥାଏ । (୨୭.୪.୧୧)



# ସଭ୍ୟତାର ମାପକାଠି

ଏକ ଉନ୍ନତ ସଭ୍ୟତାର ମାନଦଣ୍ଡ କ'ଣ ? ସେହିପରି ବ୍ୟକ୍ତିଗତ ସ୍ତରରେ ସଭ୍ୟ ମଣିଷ କାହାକୁ କହିବା ? ସଭ୍ୟତାର ବହୁ ମାପକାଠି ରହିପାରେ । ଯଦି ଏକ ଉନ୍ନତ ସଭ୍ୟତାର ସବନିମ୍ନ ମାପକାଠି ନିର୍ଣ୍ଣୟ କରିବାକୁ ହୁଏ, ତେବେ ଦୁଇଟି ଲକ୍ଷଣ ସମ୍ମୁଖକୁ ଆସିଥାଏ । ତାହା ହେଲା-ଜ୍ଞାନ, ବିଜ୍ଞାନର ପ୍ରସାର ଓ ମାନବିକତାର ବିକାଶ । ଯେଉଁ ସାମାଜିକ ଜୀବନ ପ୍ରବାହରେ ଜ୍ଞାନ, ବିଜ୍ଞାନ ଓ ବିଦ୍ୟା ବୁଦ୍ଧିର ବିକାଶ ପାଇଁ ପରିବେଶ ଅନୁକୂଳ ରହିଛି ତାହା ନିଶ୍ଚୟ ଉନ୍ନତ । ଜ୍ଞାନ, ବିଜ୍ଞାନର ବିକାଶ ପାଇଁ ଆବଶ୍ୟକ ମୁକ୍ତ ଚିନ୍ତନର ପରିବେଶ । ଜ୍ଞାନ ଅସୀମ କିନ୍ତୁ ଜାଣିବାର ଉତ୍ସୁକତା ଓ ମୁକ୍ତ ମନ ଜନିତ ଅନୁଶୀଳନ ଦ୍ୱାରା ମଣିଷ ଅନେକ କିଛି ଜାଣିବାକୁ ସମର୍ଥ ହୋଇଛି । ଯେହେତୁ ମଣିଷ ଭିତରେ ଜାଣିବାର ଉତ୍ସୁକତା ରହିଛି ତେଣୁ ସେ କୌତୂହଳୀ ହୋଇଆସିଛି । ଏହି କୌତୂହଳ ପ୍ରବଣତା ଯୋଗୁ ତ ଏକ ଆଦିମ ସ୍ତରରୁ ବିକାଶ ଲାଭ କରି ଆଜିର ଉନ୍ନତ ସ୍ତରକୁ ସେ ଆସିପାରିଛି । ପ୍ରକୃତିର ବିଶାଳତା ଓ ଜଟିଳତା ସତ୍ତ୍ୱେ ମଣିଷ ପ୍ରକୃତିର ବହୁ ରହସ୍ୟକୁ ଜାଣିବାରେ ସମର୍ଥ ହୋଇଛି ।

ଆଧୁନିକ ବିଜ୍ଞାନର ଅଭ୍ୟୁଦୟ ପୂର୍ବରୁ ସବୁ କିଛି ଏକ ଦୈବୀକୃତ ବ୍ୟାପାର ବୋଲି ମଣିଷ ସହଜରେ ବିଶ୍ୱାସ କରିନେଉଥିଲା । ଦିନରାତିଠାରୁ ଆରମ୍ଭ କରି ପ୍ରକୃତିର ସକଳ ଘଟଣାକୁ, ଦୃଷ୍ଟିର ଅନ୍ତରାଳରେ ରହି କୌଣସି ଦୈବୀଶକ୍ତି ପରିଚାଳିତ କରୁଛି ବୋଲି ମଣିଷ ସାଧାରଣତଃ ବିଶ୍ୱାସ କରୁଥିଲା । ସେହିପରି ଜନ୍ମ, ମୃତ୍ୟୁ, ରୋଗ, ବାଧକ ଇତ୍ୟାଦିକୁ ଭାଗ୍ୟର ଲିଖନ ବୋଲି ମଣିଷ ଅକ୍ଳେଶରେ ଗ୍ରହଣ କରି ନେଇଥିଲା । ବିପଦ ଆପଦରେ ସେ ଅତ୍ୟନ୍ତ ଅସହାୟ ହେଉଥିଲା ଓ ଅସହାୟବୋଧରୁ କେତେ ଦିଅଁ ଦେବତାର କଳ୍ପନା କରି ସେମାନଙ୍କୁ ଆରାଧନା କରୁଥିଲା । ଜୀବନର ପ୍ରତ୍ୟେକ କ୍ଷେତ୍ର ଓ ପ୍ରକୃତିର ବିଭିନ୍ନ ସ୍ତର ପାଇଁ ବହୁ ଦେବଦେବୀଙ୍କର ପୂଜା କରିବାର ମାନସିକତା ସୃଷ୍ଟି ହୋଇଥିଲା । କିନ୍ତୁ କାଳକ୍ରମେ ମଣିଷ ଅନୁସନ୍ଧିତ୍ସୁ ହେଲା, ନୂଆ ନୂଆ କୌଶଳ ହାସଲ କଲା, ପ୍ରକୃତିର ରହସ୍ୟକୁ ବୁଝିବାକୁ ପ୍ରୟାସ କଲା ଓ ପ୍ରତ୍ୟେକ ଘଟଣାର କାରଣ ଖୋଜିଲା । ଜ୍ଞାନର ବିକାଶଧାରାରେ ଏହା କାଳକ୍ରମେ ସ୍ୱତଃସିଦ୍ଧ ହେବାକୁ ଲାଗିଲା ଯେ, ଆମ ଚାରିପାର୍ଶ୍ୱରେ ଯାହା କିଛି ଘଟୁଛି ତାହା କୌଣସି ଦୈବୀ ନିର୍ଦ୍ଦେଶରେ ଘଟୁନାହିଁ, ଏକ ପ୍ରାକୃତିକ ପ୍ରକ୍ରିୟାରେ ଘଟୁଛି ।

ପ୍ରତ୍ୟେକ ଘଟଣାର କାରଣ ରହିଛି ଓ ସେହି କାରଣକୁ ଜାଣିବା ଦ୍ୱାରା ପ୍ରକୃତି ଉପରେ ଆମର କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ଆସିପାରିବ । ଜମିରେ ଭଲ ଫସଲ କେଉଁ ଠାକୁରାଣୀଙ୍କ କୃପାରୁ ହେଉ ନାହିଁ, ବରଂ ଉନ୍ନତ ବିହନ ଓ ଖତସାର ପ୍ରୟୋଗରୁ ହେଉଛି । ଯେତେବେଳେ ସେ ଭାବୁଥିଲା ଠାକୁରାଣୀଙ୍କ କୃପାରୁ ଭଲ ଫସଲ ହୁଏ, ସେହି ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିବାକୁ ସେ ପୂଜା କରୁଥିଲା ଓ ବଳି ପକାଉଥିଲା । ସେହିପରି ରୋଗବାଧକରେ ପଡ଼ିଲେ ଯେତେବେଳେ ସେ ଭାବୁଥିଲା ଯେ କେଉଁ ଦେବତାର କୋପରୁ ଏହା ହେଉଛି, ସେହି ମାନସିକତାରୁ ସେ କେତେ ପ୍ରକାର ପୂଜାରେ ସମ୍ପୃକ୍ତ ହେଉଥିଲା ଓ ମାନସିକ କରୁଥିଲା । ନିଜ ଗାଆଁର ଲୋକମାନଙ୍କ ଉପରେ ବିପଦ ନ ପଡ଼ିବା ପାଇଁ ସେ ଗାଆଁରେ ପୂଜାସ୍ଥଳ କରି ପ୍ରାର୍ଥନା କରୁଥିଲା ଓ ଏହି ବିଶ୍ୱାସ ରଖୁଥିଲା ଯେ ନିଜ ଦିଅଁ ଦେବତାଙ୍କୁ ସନ୍ତୁଷ୍ଟ କଲେ ଦିଅଁ ଦେବତାର ଆଶୀର୍ବାଦରୁ ଗ୍ରାମ ଉପରେ ବିପଦ ପଡ଼ିବ ନାହିଁ । କିନ୍ତୁ ଅନ୍ୟପକ୍ଷରେ ଚିନ୍ତାଧାରାରେ ପରିବର୍ତ୍ତନ ଯୋଗୁ କାଳକ୍ରମେ ଏହା ଜଣାପଡ଼ିଲା ଯେ, ପ୍ରତ୍ୟେକ ପ୍ରାକୃତିକ ଦୁର୍ବିପାକ ବା ରୋଗର କିଛି କାରଣ ରହିଛି ଓ ପ୍ରାକୃତିକ ବିପଦରୁ ବା ରୋଗରୁ ମୁକ୍ତି ପାଇଁ ବ୍ୟବସ୍ଥା କରିବାକୁ ହେବ । ଅଜ୍ଞତା ଓ ଅସହାୟବୋଧରୁ ମଣିଷ ଦିଅଁ ଦେବତାଙ୍କୁ କଳ୍ପନା କରିଥାଏ ଓ ଶହ ଶହ ବର୍ଷ ଧରି ସେହି ମାନସିକତା ଭିତରେ ପୂଜା, ପ୍ରାର୍ଥନା ତା'ର ସାଂସ୍କୃତିକ ଜୀବନ ପ୍ରବାହର ଅଙ୍ଗ ହୋଇଯାଏ । ଅପରପକ୍ଷରେ ଯେଉଁମାନେ ମୁକ୍ତ ମନ ନେଇ ସବୁକିଛିକୁ ଅନୁଶୀଳନ କରନ୍ତି, ପ୍ରକୃତିର ରହସ୍ୟ ବା ଜୀବନର ଘନଘଟାକୁ ଜାଣିବାକୁ ପ୍ରୟାସ କରନ୍ତି, ସେମାନେ ଯଥାର୍ଥରେ ଜ୍ଞାନ-ବିଜ୍ଞାନର ବିକାଶ ଘଟାଇପାରନ୍ତି ।

ବିଜ୍ଞାନର ପ୍ରତ୍ୟେକଟି ଉଦ୍ଭାବନ ବା ଆବିଷ୍କାର ପଶ୍ଚାତରେ ରହିଛି କେତେକ ଧୀଶକ୍ତି ସମ୍ପନ୍ନ ପ୍ରତିଭାବାନ ବ୍ୟକ୍ତିଙ୍କର ଜୀବନବ୍ୟାପୀ ପ୍ରୟାସ ଓ ସାଧନା । ପ୍ରିଣ୍ଟିଂ ପ୍ରେସ ବାହାର କରି ଜ୍ଞାନର ପ୍ରସାର କରିବା, ବିଦ୍ୟୁତ ଶକ୍ତି ଉଦ୍‌ଭାବନ ଓ ବ୍ୟବହାର କରି ରାତିକୁ ଦିନରେ ପରିବର୍ତ୍ତନ କରିବା, ଷ୍ଟିମ ଇଞ୍ଜିନ ବାହାର କରି ରେଳଯାତ୍ରାର ସମ୍ଭାବନା ବାହାରକରିବା, କୃଷିରେ ନୂଆ ନୂଆ ପ୍ରୟୋଗ କରି ଉତ୍ପାଦନକୁ ବୃଦ୍ଧି କରିବା, ମାଛ ଚାଷ ବା ବ୍ରଏଲର କୁକୁଡ଼ା ଉତ୍ପାଦନକୁ ବହୁଗୁଣିତ କରି ପ୍ରୋଟିନ ଖାଦ୍ୟକୁ ସାଧାରଣ ମଣିଷ ପାଖକୁ ନେବା, ବିଭିନ୍ନ ରୋଗର ଉପଶମ ବାହାର କରି ଯନ୍ତ୍ରଣା ଜର୍ଜରିତ ମଣିଷକୁ ଆରୋଗ୍ୟ କରିବା ଇତ୍ୟାଦି ଅସଂଖ୍ୟ ଉଦ୍‌ଭାବନ ଆଉ ଆବିଷ୍କାର ଆଜି ଜୀବନକୁ ସୁଖପ୍ରଦ କରିବାରେ ବହୁ ସାହାଯ୍ୟ କରୁଛି । ଗୋଟିଏ ଗୋଟିଏ ଉଦଭାବନ ସଭ୍ୟତାର ଅଗ୍ରଗତି ପାଇଁ କେତେ କେତେ ନୂତନ ସମ୍ଭାବନା

ସୃଷ୍ଟି କରିଛି । ତେବେ ଜ୍ଞାନବିଜ୍ଞାନର ଏହି ଅଗ୍ରଗତିର ଇତିହାସ ମଣିଷ ଜାତିର କ୍ରମବିକାଶ ଇତିହାସ ତୁଳନାରେ ଅତି ଅଳ୍ପ । ସଭ୍ୟତାର କ୍ରମବିକାଶ ହଜାର ହଜାର ବର୍ଷ ଧରି ଚାଲିଆସିଥିଲେ ମଧ୍ୟ ଆଧୁନିକ ବିଜ୍ଞାନର ବିକାଶ ତିନିଶହ ବର୍ଷ ଭିତରେ ସମ୍ଭବ ହୋଇଛି । ଆଜି ତ ବିଜ୍ଞାନ ଓ୍ ପ୍ରଯୁକ୍ତିର ବିକାଶ ଏକ ଉତ୍ତୁଙ୍ଗ ଶିଖରକୁ ଯିବାରେ ଲାଗିଛି । ମୋବାଇଲ ଫୋନ୍, ଇଣ୍ଟରନେଟ, ସାଟେଲାଇଟ କମ୍ୟୁନିକେସନ, କୃତ୍ରିମ ଅଙ୍ଗ ରୋପଣ, କ୍ଲୋନିଂ ଇତ୍ୟାଦି ଆଧୁନିକ ବିଜ୍ଞାନର ବିସ୍ମୟ କହିଲେ ଅତ୍ୟୁକ୍ତି ହେବନାହିଁ । ସଭ୍ୟତାର କ୍ରମବିକାଶରେ ଓ ପୃଥିବୀକୁ ଏକ କ୍ଷୁଦ୍ର ଗ୍ରାମରେ ପରିଣତ କରିବାରେ ଏସବୁର ଭୂମିକା ଉଲ୍ଲେଖନୀୟ ମନେହୁଏ ।

ସେହିପରି ସଭ୍ୟତାର ଅନ୍ୟ ଏକ ମାପକାଠି ହେଲା ମାନବିକତାର ବିକାଶ । ଅତୀତର ଦୃଷ୍ଟିଭଙ୍ଗୀରେ ବା ଧାର୍ମିକ ମାନସିକତାରେ ଏହି ଜୀବନକୁ କ୍ଷଣଭଙ୍ଗୁର ବୋଲି ବିଚାର କରାଯାଉଥିଲା । ସ୍ୱର୍ଗପ୍ରାପ୍ତି, ମୋକ୍ଷ, ନିର୍ବାଣର କେତେ କେତେ ଚମତ୍କାର କଳ୍ପନା ଦ୍ୱାରା ମଣିଷ ପରିଚାଳିତ ହେଉଥିଲା । ମାନବକୈନ୍ଦ୍ରିକ ଦୃଷ୍ଟିଭଙ୍ଗୀ ପରିବର୍ତ୍ତେ ଏକ ଈଶ୍ୱର-କୈନ୍ଦ୍ରିକ ପାରଲୌକିକ ଜୀବନଦୃଷ୍ଟି ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଆଦର୍ଶ ହୋଇ ରହିଥିଲା । ସକଳ ନୀତି, ଆଦର୍ଶକୁ ଧର୍ମୀୟ ସ୍ୱୀକୃତି ଦିଆଯାଇ ତାହାକୁ ଈଶ୍ୱରୀୟ ଅନୁଜ୍ଞା ବୋଲି ଗ୍ରହଣ କରାଯାଉଥିଲା । ଗୋଟିଏ କ୍ଷୁଦ୍ର ପରିସରରେ ବଞ୍ଚୁଥିବା ମଣିଷ ପାଇଁ ନିଜ ଧର୍ମ ଓ ସଂସ୍କୃତିର ଭାବନା ଚିରନ୍ତନ ବୋଲି ମନେହେଉଥିଲା । କିନ୍ତୁ କାଳକ୍ରମେ ସଂସ୍କୃତି-ସଂସ୍କୃତି ଓ ଧର୍ମ-ଧର୍ମ ଭିତରେ ଆଦାନ ପ୍ରଦାନ ଯୋଗୁ ବିଚାର ସ୍ତରରେ ପରିବର୍ତ୍ତନର ସୂତ୍ରପାତ ହେଲା ପ୍ରତ୍ୟେକ ସଂସ୍କୃତିର ମହତର ଆବେଗଗୁଡ଼ିକ ଓ ପ୍ରତ୍ୟେକ ଧର୍ମର ସାର୍ବଜନୀନ ମୂଲ୍ୟବୋଧଗୁଡ଼ିକ ବିଶ୍ୱ ମାନବିକତାର ଅଙ୍ଗ ହେବା ସହ ପ୍ରତ୍ୟେକ ଧର୍ମ ଓ ସଂସ୍କୃତିକୁ ଏକ ବିଶ୍ୱାୟନ ମାନଦଣ୍ଡରୁ ମୂଲ୍ୟାୟନ କରିବାର ପରିବେଶ ସୃଷ୍ଟି ହେଲା । ଯେଉଁ ବିଚାର ଓ ଭାବନା ମାନବିକ ମର୍ଯ୍ୟାଦାର ପରିପନ୍ଥୀ, ସାମାଜିକ ନ୍ୟାୟର ପ୍ରତିକୂଳ, ଗଣତାନ୍ତ୍ରିକ ଜୀବନଦୃଷ୍ଟି ଓ ମାନବିକତା ବିରୋଧୀ ତାହା ପ୍ରତି ବିରୋଧାଭାସ ସୃଷ୍ଟି ହେଲା । ପରିଣାମତଃ କାଳକ୍ରମେ ମହିଳାମାନଙ୍କ ପ୍ରତି ସବୁ ସଭ୍ୟତାରେ ରହିଥିବା ହୀନ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ଇତ୍ୟାଦି ସକଳ ଭେଦଭାବମୂଳକ ଭାବନାକୁ ଅମାନବୀୟ ବୋଲି ଚିନ୍ତା ସ୍ତରରେ ଭାବନା ଆସିଲା । ପ୍ରତ୍ୟେକ ବ୍ୟକ୍ତିର ଅଧିକାର ଓ ମର୍ଯ୍ୟାଦାକୁ ଆନ୍ତର୍ଜାତିକ ସ୍ୱୀକୃତି ଦିଆଗଲା । ସାମାଜିକ ସୁଯୋଗ ଓ ଅବକାଶ ପାଇଲେ ପ୍ରତ୍ୟେକ ବ୍ୟକ୍ତି ସ୍ୱଗୁଣରେ ମହନୀୟ ହୋଇପାରିବ ଓ ନିଜର ଆଚରଣରେ ଉଚ୍ଚ ମୂଲ୍ୟବୋଧ ପ୍ରକଟ କରିପାରିବ, ଏହି ବିଚାର ମାନବବାଦୀ ଜୀବନଦର୍ଶନର ମୂଳମନ୍ତ୍ର ହେଲା ।

ଯେଉଁଠି ସାମାଜିକ ପରିବେଶ ଉନ୍ନତ ହୋଇପାରିଛି ଓ ବ୍ୟକ୍ତିର ମର୍ଯ୍ୟାଦାକୁ ମହତ୍ତ୍ୱପୂର୍ଣ୍ଣ ମନେକରାଯାଉଛି ତାହା ଏକ ଉନ୍ନତ ସଭ୍ୟତାର ସୂଚନା ଦେଇଥାଏ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ବହୁ ଭେଦଭାବ ରହିଛି, ମାନବିକ ମର୍ଯ୍ୟାଦା ଓ ଅଧିକାରନେଇ ସାମାଜିକ ଚେତନାରସ୍ତର ଉନ୍ନତ ହୋଇନାହିଁ, ସେହି ସଭ୍ୟତା ଯେ ଅନୁନ୍ନତ ହୋଇ ରହିଛି ଏହା କୁହାଯାଇପାରେ । ଗୋଟିଏ ସଭ୍ୟତାର ପ୍ରାଚୀନତା, ମହନୀୟତାର ମାନଦଣ୍ଡ ହୋଇନପାରେ, ବରଂ ତାହା କେଉଁ ସ୍ତରରେ ରହିଛି ତାହା ହିଁ ମୂଲ୍ୟାୟନ ସ୍ତରରେ ନିର୍ଣ୍ଣାୟକ ମନେହୁଏ । ସାମାଜିକ ଜୀବନ ପ୍ରବାହରେ ନୈତିକ ଉତ୍କର୍ଷ, ପଣ୍ଡାର ପବିତ୍ରତା, ବ୍ୟକ୍ତି ମର୍ଯ୍ୟାଦାର ସ୍ୱୀକୃତି, ଗଣତାନ୍ତ୍ରିକ ଜୀବନଶୈଳୀ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଯେତେ ଅଧିକ ବ୍ୟକ୍ତ ହେଉଥାଏ, ତାହା ଗୋଟିଏ ସଭ୍ୟତା ଓ ସଂସ୍କୃତିର ଗୁଣାତ୍ମକ ମାନର ସ୍ୱାକ୍ଷର ବହନ କରେ । ଅଥଚ ଯେଉଁ ସାମାଜିକ ପରିବେଶରେ ଏସବୁର ଉଲ୍ଲଙ୍ଘନ ସାଧାରଣ ଘଟଣା ଅଟେ ଓ ଭେଦଭାବମୂଳକ ମାନସିକତାର ପ୍ରାବଲ୍ୟ ରହିଥାଏ, ତାହା ସଭ୍ୟତାର ମାପକାଠିରେ ଅନୁନ୍ନତ ବୋଧହୁଏ ।

ସେହିପରି ବ୍ୟକ୍ତିଗତ ସ୍ତରରେ ଏକ ସଭ୍ୟ ଜୀବନର ମାନଦଣ୍ଡ କ'ଣ- ପ୍ରଶ୍ନର ଉତ୍ତରରେ ନାଗରିକ ଶୃଙ୍ଖଳାବୋଧ ଓ ମାନବବାଦୀ ଦୃଷ୍ଟିଭଙ୍ଗୀକୁ ସର୍ବନିମ୍ନ ଆଧାର ଭାବେ ନିଆଯାଇପାରେ । ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଓ ଭେଦଭାବହୀନ ମାନସିକତାକୁ ଉତ୍ତମ ଜୀବନର ମାନଦଣ୍ଡ ନେଇ ସମ୍ଭବତଃ ମତପାର୍ଥକ୍ୟ ରହିନପାରେ । ପୂଜା, ପ୍ରାର୍ଥନା, ଧାର୍ମିକ ବିଶ୍ୱାସ, ଧର୍ମ-ପରମ୍ପରା ପ୍ରତି ଅହେତୁକ ଶ୍ରଦ୍ଧା ବ୍ୟକ୍ତିଗତ ରୁଚିର ପ୍ରଶ୍ନ । ଏହା କୌଣସି ମହତ୍ତର ଜୀବନର ସୂଚନା ଦିଏନାହିଁ । ବରଂ ଆଚରଣରେ ନୈତିକ ଶୃଙ୍ଖଳାକୁ ଗୁରୁତ୍ୱ ଦେବା ଓ ଏକ ଦରଦୀ, ମାନବବାଦୀ ଜୀବନଦୃଷ୍ଟିକୁ ନେଇ ଜୀବନ ନିର୍ବାହ କରିବା ଏକ ସଂସ୍କୃତିସମ୍ପନ୍ନ ଜୀବନର ସ୍ୱାକ୍ଷର ବହନ କରେ । (୪.୫.୧୧)



# ଉତ୍ତମ ସମାଜ ଓ ଦୁର୍ନୀତି ( ୧ )

ଉତ୍ତମ ସମାଜ (ଗୁଡ୍ ସୋସାଇଟି) କାହାକୁ କୁହାଯିବ ? ଏହାର କିଛି ସାର୍ବଜନୀନ ମାନଦଣ୍ଡ ରହିଛି କି ? ବିଭିନ୍ନ ସଭ୍ୟତାରେ ଓ ବିଭିନ୍ନ କାଳଖଣ୍ଡରେ ରାଷ୍ଟ୍ରନୀତିଜ୍ଞମାନେ, ସମାଜଶାସ୍ତ୍ରୀମାନେ ଓ ଦାର୍ଶନିକମାନେ ଉତ୍ତମ ସମାଜର ବିଭିନ୍ନ ଚିତ୍ର ଆଙ୍କିଛନ୍ତି । ରାଷ୍ଟ୍ରୀୟ ଭାବନାର ଅଭ୍ୟୁଦୟ ପରେ ରାଷ୍ଟ୍ର ହିଁ ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ନେଇଛି । ଫଳତଃ ଏକ ଉତ୍ତମ ରାଷ୍ଟ୍ର ନେଇ ବିଭିନ୍ନ ବୈଚାରିକ ଆଦର୍ଶ ସୃଷ୍ଟି ହୋଇଛି । ଏହି ପ୍ରକ୍ରିୟାରେ ରାଜନୈତିକ ସ୍ତରରେ ଗଣତାନ୍ତ୍ରିକ ଶାସନ ପଦ୍ଧତିକୁ ଏକ ଉତ୍ତମ ବ୍ୟବସ୍ଥା ଭାବେ ବିଚାର କରାଯାଉଛି । ଅର୍ଥନୈତିକ ସ୍ତରରେ ଶୋଷଣମୁକ୍ତ, ସମତାଭିତ୍ତିକ ରାଷ୍ଟ୍ରର ପରିକଳ୍ପନା ଆସିଛି । ସାଂସ୍କୃତିକ ବିଚାର ସ୍ତରରେ ବ୍ୟକ୍ତି ମର୍ଯ୍ୟାଦାବୋଧ, ନାଗରିକ ଅଧିକାର, ଧର୍ମନିରପେକ୍ଷ ଜୀବନଶୈଳୀ ପରି ମୂଲ୍ୟଚୟକୁ ପ୍ରାଧାନ୍ୟ ଦିଆଯାଇଛି । ଏହି ସବୁ ଭାବନାର ସମ୍ମିଳିତ ପ୍ରଭାବରେ ଉତ୍ତମ ସମାଜର ସ୍ୱପ୍ନ ସୃଷ୍ଟି ହୋଇଛି । ପରିଣାମତଃ ଅତୀତର ଏକଛତ୍ରବାଦ, ରାଜତନ୍ତ୍ର, ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥା, ସାମ୍ରାଜ୍ୟବାଦ କାଳକ୍ରମେ ବିଭିନ୍ନ ରାଷ୍ଟ୍ରରୁ ଲୋପ ପାଇଛି ଓ ନୂତନ ରାଜନୈତିକ ସଂସ୍କୃତିର ପରିବେଶ ସୃଷ୍ଟି ହୋଇଛି । ଅର୍ଥନୈତିକ ସ୍ତରରେ ଜନମଙ୍ଗଳକାରୀ ରାଷ୍ଟ୍ରର ଭାବନା ସହ ଶୋଷଣ, ବୈଷମ୍ୟ ଏକ ଉତ୍ତମ ସମାଜ ପାଇଁ ଅହିତକର ବୋଲି ଭାବନା ପ୍ରକାଶ ପାଇଛି । ପ୍ରତ୍ୟେକ ବ୍ୟକ୍ତି ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ସହ ଶିକ୍ଷା, ସ୍ୱାସ୍ଥ୍ୟସେବା, ନିରାପଦ ପରିବେଶ ପାଇବାକୁ ଆନ୍ତର୍ଜାତିକ ସ୍ୱୀକୃତି ଦିଆଯାଇଛି । ସେହିପରି ସାଂସ୍କୃତିକ ପରିବେଶ କ୍ଷେତ୍ରରେ ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ସାମାଜିକ ନ୍ୟାୟ ଇତ୍ୟାଦି ମୂଲ୍ୟବୋଧ ସକଳକୁ ସଭ୍ୟ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ଭାବେ ଗ୍ରହଣ କରାଯାଉଛି । ସଭ୍ୟତାର କ୍ରମବିକାଶ ଧାରାରେ, ଏହି ମୂଲ୍ୟଚୟ ସକଳ ସଭ୍ୟ ଜୀବନର ଅପରିହାର୍ଯ୍ୟ ଅଙ୍ଗ ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇଛି । ଯେଉଁ ରାଷ୍ଟ୍ରୀୟ ଜୀବନଧାରାରେ ଏହି ମୂଲ୍ୟଚୟର ପ୍ରତିଫଳନ ଯେତେ ଅଧିକ ତାହା ସେତିକି ସଭ୍ୟ ବା ଉନ୍ନତ ବୋଲି ସାମ୍ପ୍ରତିକ ଜୀବନରେ ଗ୍ରହଣ କରାଯାଉଛି । ଏସବୁ ସହିତ ଏକ ଉତ୍ତମ ସମାଜ ନେଇ ରାଷ୍ଟ୍ରୀୟ ଭାବନାର ପୂର୍ବରୁ ବିଭିନ୍ନ ଚିନ୍ତାବ୍ୟକ୍ତ ହୋଇଛି ।

ସମାଜ କିପରି ଉନ୍ନତ ହେବ, ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ସାଧୁତା, କର୍ମସଂସ୍କୃତି, ନୈତିକ ଉତ୍ତରଦାୟିତ୍ୱବୋଧ, ନାଗରିକ ଶୃଙ୍ଖଳା କିପରି ଅଧିକରୁ ଅଧିକ ପ୍ରତିଫଳିତ ହେବ ତାହା ନେଇ ବିଭିନ୍ନ ଚିନ୍ତା ପ୍ରକାଶ ପାଇଛି । ବସ୍ତୁତଃ ଏସବୁ ମଧ୍ୟ ଦେଇ ସାମାଜିକ ଜୀବନଧାରାରେ ନାଗରିକ ସଚେତନତାର ସ୍ତର ବୃଦ୍ଧି ହୋଇଛି । ଯେଉଁ ସାମାଜିକ ଜୀବନଧାରାରେ ଏହିସବୁ ମୂଲ୍ୟଚୟର ଅଭିବ୍ୟକ୍ତି ଅଧିକରୁ ଅଧିକ ହୁଏ ତାହା ହିଁ ସାମ୍ପ୍ରତିକ ମାନଦଣ୍ଡରେ ଉନ୍ନତ ବୋଲି ଗ୍ରହଣ କରାଯାଏ । ପରନ୍ତୁ ଯେଉଁ ସାମାଜିକ ଜୀବନ ପ୍ରବାହରେ ସାଧୁତା, କର୍ମସଂସ୍କୃତି, ନୈତିକ ଉତ୍ତରଦାୟିତ୍ୱବୋଧ ଓ ନାଗରିକ ଶୃଙ୍ଖଳାର ମାନ ଉନ୍ନତ ନୁହେଁ ତାହା ଅନୁନ୍ନତ ବା କ୍ଷୟଶୀଳ ବୋଲି ବିବେଚିତ ହୁଏ । ବସ୍ତୁତଃ ରାଷ୍ଟ୍ର ଓ ସମାଜର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ମୂଲ୍ୟାୟନ କ୍ଷେତ୍ରରେ ଲୋକଚରିତ୍ର ଓ ନାଗରିକ ଶୃଙ୍ଖଳାବୋଧକୁ ମାନଦଣ୍ଡ ଭାବେ ନିଆଯାଇପାରେ । ଏକ ସଂସ୍କୃତି ବା ସମାଜ ବହୁ ପ୍ରାଚୀନ ହୋଇପାରେ । ସେଠାରେ ବହୁ ଉଚ୍ଚାଙ୍ଗ ଦର୍ଶନ, ସାହିତ୍ୟ, କଳାକୃତିର ବିକାଶ ହୋଇଥାଇପାରେ । କିନ୍ତୁ ସମାଜର ବାସ୍ତବ ପରିସ୍ଥିତିରେ ଲୋକଚରିତ୍ର, ସାଧୁତା, ନାଗରିକ ସଚେତନତା, ଜୀବନଧାରଣର ମାନ, ସାମାଜିକ ବିଧିବ୍ୟବସ୍ଥା ଇତ୍ୟାଦି ମୂଲ୍ୟଚୟର ଗୁଣାତ୍ମକ ମାନ ଉପରେ ଏକ ସମାଜ ଓ ସଂସ୍କୃତିକୁ ଉନ୍ନତ ବା ଅନୁନ୍ନତ କୁହାଯାଇପାରେ ।

ଏହି ପୃଷ୍ଠଭୂମିରେ ଦୁର୍ନୀତି ଏକ ଉତ୍ତମ ସମାଜ ବା ଉତ୍ତମ ରାଷ୍ଟ୍ରର ସବୁଠାରୁ ବଡ଼ ପ୍ରତିବନ୍ଧକ ମନେହୁଏ । ଯେଉଁ ସମାଜ ଯେତେ ଅଧିକ ଦୁର୍ନୀତିଗ୍ରସ୍ତ ତାହା ସେତିକି କ୍ଷୟଶୀଳ । ଦୁର୍ନୀତିର ବ୍ୟାପକତା ଓ ଉତ୍ତମ ସମାଜ ଭିତରେ ପରସ୍ପର ବିରୋଧୀ ବା ବିପରୀତମୁଖୀ ସଂପର୍କ ରହିବା ମନେହୁଏ । ଅର୍ଥାତ୍ ସମାଜରେ ଦୁର୍ନୀତି ଯେତେ ବ୍ୟାପକ ହୁଏ, ସମାଜ ସେତେ ମନ୍ଦ ହୁଏ, ଅପରପକ୍ଷରେ ଦୁର୍ନୀତି ଯେତେ ସୀମିତ ହୁଏ ସମାଜ ସେତେ ଅଧିକ ଉତ୍ତମ ହୁଏ । ଏକ ଉତ୍ତମ ସମାଜର ଅର୍ଥ ହୁଏ ଯେଉଁଠି ଦୁର୍ନୀତିର ପରିସର ଅତି ସୀମିତ, ଅଥଚ ଏକ ମନ୍ଦ ସମାଜର ଅର୍ଥ ହୁଏ ଯେଉଁଠି ଦୁର୍ନୀତିର ପରିସର ଅତି ବ୍ୟାପକ । ଦୁର୍ନୀତି ବୃଦ୍ଧି ପାଇଲେ ସାମାଜିକ ଜୀବନ ପ୍ରବାହରୁ ଉତ୍କୃଷ୍ଟତା କମେ, ଦୁର୍ନୀତିର ହ୍ରାସ ହେଲେ ଉତ୍କୃଷ୍ଟତା ବୃଦ୍ଧି ପାଏ ।

ତେବେ ପ୍ରଶ୍ନ ହୁଏ, ଦୁର୍ନୀତିର ପ୍ରକୃତ ଅର୍ଥ କ'ଣ ଓ କେଉଁ କାର୍ଯ୍ୟକୁ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ କୁହାଯିବ ? ଦୁର୍ନୀତିର ପ୍ରଚଳିତ ଅର୍ଥଟି ହେଲା ଅସାଧୁ ଉପାୟରେ ଉପାର୍ଜନ କିମ୍ବା ଅନ୍ୟକୁ ଠକିବାର ମନୋଭାବ । ଅସାଧୁ ଉପାୟରେ ଉପାର୍ଜନ ହେଉ କିମ୍ବା ଅନ୍ୟକୁ ଠକିବାର ମନୋଭାବ ହେଉ ଏ ପ୍ରତ୍ୟେକଟି ନୀତିବିହୀନ କାର୍ଯ୍ୟ । ଏକ ନୀତିବିହୀନ ବା ନୀତିବିରୋଧୀ କାର୍ଯ୍ୟ ହିଁ ଦୁର୍ନୀତି । ତେବେ ବ୍ୟାବହାରିକ ଦୃଷ୍ଟିକୋଣରୁ ପ୍ରଥମ ଅର୍ଥଟି

ସୀମିତ ଓ ଦ୍ୱିତୀୟ ଅର୍ଥଟି ବ୍ୟାପକ । ସୀମିତ ଅର୍ଥରେ ହୁଏତ କୁହାଯିବ ଯେ ଉତ୍କୋଚ ନେବା ଏକ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ । ଅର୍ଥାତ୍ ଯେଉଁମାନେ ନିଜ ପଦପଦବୀର ସୁଯୋଗ ନେଇ ନିଜର କର୍ତ୍ତବ୍ୟ ସଂପାଦନରେ ଉତ୍କୋଚ ଗ୍ରହଣ କରନ୍ତି, ତାହାକୁ ଏକ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ କୁହାଯାଏ । ତେବେ ଦୁର୍ନୀତିକୁ ଏହି ସୀମିତ ଅର୍ଥରେ ନେଲେ ଏହା କେବଳ ରାଜନୈତିକ କ୍ଷମତା ଥିବା ବ୍ୟକ୍ତି ଓ କର୍ମଚାରୀବୃନ୍ଦଙ୍କ ପାଖରେ ସୀମିତ ରହିବ । କାରଣ ଉତ୍କୋଚ ନେବାର ପରିବେଶ ଏମାନଙ୍କ ପାଖରେ ଥାଏ । ତେବେ ଏହି ପ୍ରକାର ଦୁର୍ନୀତି ସ୍ଥଳବିଶେଷରେ ଦୁର୍ନୀତିରେ ସଂପୃକ୍ତ ଉଭୟ ପକ୍ଷକୁ ସୁବିଧା କରିଥାଏ । ନିଜର ଆବଶ୍ୟକୀୟ କାର୍ଯ୍ୟଟି ହାସଲ କରିବା ପାଇଁ ଉତ୍କୋଚ ନେଉଥିବା ଓ ଉତ୍କୋଚ ନେଇ ତାଙ୍କର କାର୍ଯ୍ୟଟି କରି ଦେଉଥିବା ଉଭୟପକ୍ଷ ଏଥିରେ ଉପକୃତ ହୋଇଥାନ୍ତି । ତେବେ ଏହା ପ୍ରଶାସନିକ ଓ ରାଜନୈତିକ ସ୍ତରରେ ଯେତେ ବ୍ୟାପକ ହୁଏ, ଏହା ବ୍ୟବସ୍ଥାଟିକୁ କଳୁଷିତ କରିଚାଲେ, ଯାହାର ପରିଣାମ ପ୍ରକାରାନ୍ତରେ ସମାଜ ପାଇଁ କ୍ଷତିକାରକ ହୁଏ । ଦୁର୍ନୀତିକୁ ଏହାର ବୃହତ୍ତର ଅର୍ଥରେ ନେଲେ ସମାଜର ବ୍ୟାପକ ସ୍ତରକୁ ଏହାଦ୍ୱାରା ମୂଲ୍ୟାୟନ କରିବାର ଅବକାଶ ଆସେ । ବିଶେଷତଃ ପନ୍ଥାର ଔଚିତ୍ୟ ବା ପବିତ୍ରତାକୁ ଗ୍ରହଣ ନ କରିବା ଯଦି ଦୁର୍ନୀତିର ପରିସରକୁ ଆସେ ତେବେ ତାହାଦ୍ୱାରା ଗୋଟିଏ ସମାଜର ଜୀବନ ପ୍ରବାହର ଚିତ୍ର ମିଳିଥାଏ । ସମାଜରେ କର୍ମସଂସ୍କୃତିର ମାନ କେଉଁ ସ୍ତରରେ ରହିଛି, ପନ୍ଥାର ପବିତ୍ରତା ନେଇ ଲୋକମାନଙ୍କର ମାନସିକତା କ'ଣ ଓ ନାଗରିକ ଶୃଙ୍ଖଳାବୋଧ ନେଇ ଜନସଚେତନତାର ସ୍ତର କେଉଁଠି ଏସବୁକୁ ମାନଦଣ୍ଡ ଭାବେ ନେଲେ ସମାଜର ବୃହତ୍ତର ଜନମାନସ ଭିତରେ ଦୁର୍ନୀତିର ଚିତ୍ର ମିଳିଥାଏ ।

ଏକ ଉତ୍ତମ ସମାଜର ପରିକଳ୍ପନା ଭିତରେ ଆସେ ଯେ ଲୋକଙ୍କର କର୍ମ ସଂସ୍କୃତିର ମାନ କେଉଁ ସ୍ତରରେ ରହିଛି । ଯଦି ସାଧାରଣ ମନସ୍ତତ୍ତ୍ୱ ଭିତରେ ଏହି ଭାବନା ବ୍ୟାପକ ଭାବେ ଆସେ ଯେ ମୋ ଜୀବନର ସମସ୍ତ ଆବଶ୍ୟକତା ମୋତେ ମୋର ସାମାଜିକ ପରିବେଶ ଦେଇଛି । ମୋର ଶିକ୍ଷା, ସ୍ୱାସ୍ଥ୍ୟ ସେବା, ସ୍ୱାବଲମ୍ବନ, ମନୋରଞ୍ଜନ, ନିରାପତ୍ତା ମୁଁ ଏକ ବୃହତ୍ତର ସମାଜିକ ପରିବେଶରୁ ପାଉଛି, ସୁତରାଂ ପ୍ରତିଦାନରେ ମୁଁ ମୋର ସାମର୍ଥ୍ୟ ଭିତରେ ସାମାଜିକ ଜୀବନ ପ୍ରବାହକୁ ପରିପୁଷ୍ଟ କରିବି । ଏକ ବୃହତ୍ତର ସମାଜ ଉପରେ ଆସ୍ଥା ବା ବିଶ୍ୱାସ ଯୋଗୁ ଓ ନିଜର କର୍ମ ସଂସ୍କୃତିରେ ଉତ୍ତରଦାୟୀ ମନୋଭାବରୁ ସାମାଜିକ ଜୀବନ ପ୍ରବାହ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତରୁ ଉନ୍ନତତର ହୋଇଥାଏ । ଅପରପକ୍ଷରେ ଯେଉଁଠି ଏକ ବୃହତ୍ତର ସମାଜ ପ୍ରତି ଅବିଶ୍ୱାସ ଓ ବିଦ୍ୱେଷର ମନୋଭାବ ଆସେ ଓ ତାହା ଯଦି ସମାଜରେ ବ୍ୟାପକ ଭାବେ ରହେ ତେବେ ଜନମାନସରେ କର୍ମସଂସ୍କୃତିର ପ୍ରେରଣା ନ୍ୟୂନ ହୋଇଚାଲେ ।

ସମାଜରେ କର୍ମସଂସ୍କୃତିର ପ୍ରେରଣା ନ୍ୟୁନ ବା ନକାରାତ୍ମକ ହୋଇ ଚାଲିଲେ ତା'ର କୁପରିଣାମ ଜନଜୀବନକୁ ଧୀରେ ଧୀରେ କଳୁଷିତ କରିଥାଲେ । ପରିଣାମତଃ ସାମାଜିକ ଜୀବନ ପ୍ରବାହ କ୍ରମବର୍ଦ୍ଧିଷ୍ଣୁ ଧାରାରେ କ୍ଷୟଶୀଳ ହୋଇ ସମାଜରେ ନାନା ଦୁଃଖ, ଯନ୍ତ୍ରଣାର ପରିବେଶ ଆଣେ ।

କର୍ମ ସଂସ୍କୃତିର ପରିବେଶ ସହ ପନ୍ଥାର ପବିତ୍ରତା ଗୋଟିଏ ଉନ୍ନତ ଓ ଉତ୍ତମ ସମାଜର ଚିତ୍ର ଦେଇଥାଏ । ଗୋଟିଏ ଲକ୍ଷ୍ୟ ସାଧନ ପାଇଁ ପନ୍ଥା କ'ଣ ହେବା ଆବଶ୍ୟକ ? ସମାଜର ବିଭିନ୍ନ ସ୍ତରରେ ନାଗରିକମାନେ ଯଦି ସର୍ବଦା ପନ୍ଥାର ଔଚିତ୍ୟବୋଧ ବା ପବିତ୍ରତା ନେଇ ସଚେତନତା ପ୍ରକାଶ କରନ୍ତି ତେବେ ତାହା ଉତ୍ତମ ଜୀବନ ଓ ଉତ୍ତମ ସମାଜର ଚିତ୍ର ଦେଇଥାଏ । ଯେକୌଣସି ପନ୍ଥା ପ୍ରୟୋଗକରି-ତାହା ଯେତେ ଅନୈତିକ ହେଉ ପଛେ- ଜୀବନର ଲକ୍ଷ୍ୟ ହାସଲ କରିବା ଉଚିତ କି ? ପ୍ରତ୍ୟେକ ନାଗରିକର ଜୀନବ ଧାରାରେ ବିଭିନ୍ନ ଲକ୍ଷ୍ୟ ହାସଲର ପରିସ୍ଥିତି ସୃଷ୍ଟି ହେଉଥାଏ ଓ ସେହି ଲକ୍ଷ୍ୟ ସାଧନ ପାଇଁ ପ୍ରତ୍ୟେକ ବିଭିନ୍ନ ଉପାୟ ଅବଲମ୍ବନ କରିଥାନ୍ତି । ନିତିଦିନିଆ ଜୀବନର ଘଟଣା ପ୍ରବାହରେ ବହୁ କଥା ଆବଶ୍ୟକ ହୁଏ ଓ ପ୍ରତ୍ୟେକଟି ଲକ୍ଷ୍ୟ ପୂରଣ ପାଇଁ ବହୁବିଧ କର୍ମ କରିବାକୁ ହୁଏ ଏବଂ ପନ୍ଥାର ଆଶ୍ରୟ ନେବାକୁ ହୁଏ । ତେବେ ନିତିଦିନିଆ ଘଟଣାରେ ଉଚିତ ପନ୍ଥାର ଆଶ୍ରୟ ନେଇ ବଞ୍ଚିବାର ମାନସିକତା ଯଦି ଜନ ସମୂହ ଭିତରେ ବ୍ୟାପକ ହୁଏ ଓ ତାହା ହିଁ ଏକ ଜନଗୋଷ୍ଠୀର କର୍ମସଂସ୍କୃତି ପାଲଟେ, ତେବେ ସମାଜ ଉତ୍ତମ ହୁଏ । ପରନ୍ତୁ ଉପାର୍ଜନ କରିବା, ଲକ୍ଷ୍ୟ ହାସଲ କରିବା, ଜୀବନରେ କିଛି ପ୍ରାପ୍ତିର ଅଧିକାରୀ ହେବା, ଯଶ ଅର୍ଜନ କରିବା କ୍ଷମତା ଲାଭ କରିବା ଇତ୍ୟାଦି ପ୍ରତ୍ୟେକଟି କ୍ଷେତ୍ରରେ ଯଦି ଜଣେ ଯେକୌଣସି ପନ୍ଥାର ଆଶ୍ରୟ ନିଏ ଓ ପନ୍ଥାର ପବିତ୍ରତା ପ୍ରତି ଉଦାସୀନ ବା ସର୍ଶକାତରଶୂନ୍ୟ ହୁଏ ଓ ଏହି ଧାରା ଅତି ବ୍ୟାପକ ଭାବେ ସମାଜରେ ପ୍ରସାର ଲାଭ କରେ, ତେବେ ତାହା ଏକ ଉତ୍ତମ ସମାଜର ଚିତ୍ର ଦିଏନାହିଁ । ଯେଉଁଠି ଜନଗଣ ପନ୍ଥାର ପବିତ୍ରତା ନେଇ ଗମ୍ଭୀର ସମ୍ପୃକ୍ତି ପ୍ରକାଶ କରନ୍ତି ଅଥଚ ଯେଉଁଠି ଜନଗଣ ପନ୍ଥାର ଯଥାର୍ଥତା ନେଇ ସମ୍ପୂର୍ଣ୍ଣ ଉଦାସୀନ ରହନ୍ତି ତାହା ଦୁଇଟି ଭିନ୍ନ ସାମାଜିକ ସ୍ଥିତିର ସୂଚନା ଦିଏ । ପନ୍ଥାର ପବିତ୍ରତା ନେଇ ନାଗରିକ ସମାଜର ସଚେତନତା ଯେତେ ଅଧିକ, ସେହି ସାମାଜିକ ପରିବେଶ ସେତେ ଉତ୍ତମ, ଅଥଚ ଏ କ୍ଷେତ୍ରରେ ନାଗରିକ ସମାଜ ଯେତେ ଉଦାସୀନ ତାହା ସେତେ ମନ୍ଦ । ବସ୍ତୁତଃ ଉତ୍ତମ ସମାଜ ଓ ଗୁଣାତ୍ମକ ଜୀବନର ମୂଲ୍ୟାୟନ କ୍ଷେତ୍ରରେ ପନ୍ଥାର ପବିତ୍ରତା ନେଇ ସାମାଜିକ ସଚେତନତାକୁ ଏକ ମାନଦଣ୍ଡ ଭାବରେ ନିଆଯାଇପାରେ ।

କୌଣସି ଅନ୍ୟାୟ ପନ୍ଥାରେ ଯାଇ ଲକ୍ଷ୍ୟ ହାସଲ କରୁଥିବା ବ୍ୟକ୍ତି ସାଧାରଣତଃ ମାନସିକ ସ୍ତରରେ ଆଘାତ ପାଇବା ଏକ ସଭ୍ୟ ଦୃଷ୍ଟିଭଙ୍ଗୀ । ଯେତେବେଳେ କୌଣସି ପରିସ୍ଥିତିରେ ନିଜର ଅଭିଳଷିତ ଲକ୍ଷ୍ୟ ହାସଲ ପାଇଁ ଜଣେ ଅନ୍ୟାୟ ଭାବେ କାର୍ଯ୍ୟ କରୁଛି ସେଥିରେ ସେ ମର୍ମାହତ ହୁଏ, ମନସ୍ତାପ କରେ ଓ ବିବେକର ଦଂଶନ ପାଏ । କିନ୍ତୁ ଯଦି ଅନ୍ୟାୟ କାର୍ଯ୍ୟ କରି ସେଥିରେ ଜଣେ ମାନସିକ ତୃପ୍ତିପାଏ, ନିଜକୁ କରିତକର୍ମା ଭାବେ, ଏହାକୁ ଯୁଗର ଆବଶ୍ୟକତା କହି ସେଥିପାଇଁ ଗର୍ବିତ ହୁଏ ଓ ଏହି ମାନସିକତା ସମାଜରେ ବ୍ୟାପକ ଭାବେ ରହେ ତେବେ ତାହା କୌଣସି ଉତ୍ତମ ସମାଜର ଚିତ୍ର ଦିଏନାହିଁ । ନ୍ୟାୟ, ନୈତିକତା ଓ ପନ୍ଥାର ପବିତ୍ରତା ପ୍ରତି ସମ୍ମାନବୋଧ ଗୁଣାତ୍ମକ ଜୀବନର ସ୍ୱାକ୍ଷର ବହନ କରେ । ଅଥଚ ଏ ପ୍ରତି ସ୍ପର୍ଶକାତରଶୂନ୍ୟ ଦୃଷ୍ଟିଭଙ୍ଗୀ ଏକ ଅନୁନ୍ନତ ପରିବେଶର ସୂଚନା ଦିଏ । ଏକ ଅନୁନ୍ନତ ପରିବେଶରେ ଦୁର୍ନୀତି ବ୍ୟାପକ ହେବା ସହ ସାମାଜିକ ମୂଲ୍ୟବୋଧ ନିମ୍ନଗାମୀ ହୋଇରହେ । (ପ୍ରଥମ ଭାଗ) (୧୮.୫.୧୧)



# ଉତ୍ତମ ସମାଜ ଓ ଦୁର୍ନୀତି (୨)

ଉତ୍ତମ ଜୀବନର ନାନା ଦିଗନ୍ତ ରହିପାରେ । ତେବେ ଏକ ବ୍ୟାବହାରିକ ମାନଦଣ୍ଡରୁ ଯେଉଁ ସାମାଜିକ ପରିବେଶରେ ନାଗରିକ ଶୃଙ୍ଖଳା ଓ କର୍ତ୍ତବ୍ୟବୋଧଜନିତ ସଚେତନତା ଅଧିକ ତାହା ଅନେକାଂଶରେ ଉତ୍ତମ ସମାଜର ଚିତ୍ର ଦେଇଥାଏ । ଅପରପକ୍ଷରେ ଯେଉଁଠି ନାଗରିକ ଶୃଙ୍ଖଳା ବା ସିଭିକ୍ ଭାଲ୍ୟୁଜର ଉଲଂଘନ ଏକ ସାଧାରଣ ବ୍ୟାପାର ଅଟେ, ତାହା ଏକ କ୍ଷୟଶୀଳ ସାମାଜିକ ପରିବେଶର ଚିତ୍ର ଦେଇଥାଏ । ନାଗରିକ ଶୃଙ୍ଖଳାର ନାନା ଦିଗନ୍ତ ମଧ୍ୟ ରହିବା ସମ୍ଭବ । ଏହି ପୃଷ୍ଠଭୂମିରେ ଜନଗଣଙ୍କର କର୍ମସଂସ୍କୃତି, ଲକ୍ଷ୍ୟ ହାସଲ କ୍ଷେତ୍ରରେ ପନ୍ଥାର ପବିତ୍ରତା, ସାମାଜିକ ଶ୍ରେୟ ପ୍ରତି ପ୍ରତିବଦ୍ଧତା, ଗୁଣାତ୍ମକ ଜୀବନର କେତେକ ଗୁରୁତ୍ୱପୂର୍ଣ୍ଣ ଲକ୍ଷଣ ମନେହୁଏ । ସାଧାରଣ ଚରିତ୍ର ବା ପବ୍ଲିକ କଣ୍ଡକ୍ଟ ଉନ୍ନତ ହେବା ଏକ ସଭ୍ୟ ଦୃଷ୍ଟିଭଙ୍ଗୀର ପରିମାପକ, ଅଥଚ ଯେଉଁ ସାମାଜିକ ପରିବେଶରେ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ, ଅନ୍ୟକୁ ଠକିବାର ମନୋଭାବ ଅତି ସାଧାରଣ ଘଟଣା ହୋଇଥାଏ, ତାହା ଉତ୍ତମ ସମାଜର ସ୍ୱାକ୍ଷର ବହନ କରେନାହିଁ ।

ଲୋକ ଚରିତ୍ର ଉନ୍ନତ ହେବା ବା ଅନୁନ୍ନତ ରହିବା ପଛରେ ନାନା କାରଣ ରହିପାରେ । ନାନା ସାମାଜିକ, ସାଂସ୍କୃତିକ, ଆର୍ଥିକ କାରଣଜନିତ ପରିବେଶ ବ୍ୟକ୍ତି ସ୍ୱଭାବକୁ ପ୍ରଭାବିତ କରିଥାଏ । ପୁନଶ୍ଚ ଏସବୁ ରାଜନୈତିକ ଘଟଣା ପ୍ରବାହ ଦ୍ୱାରା କେତେକାଂଶରେ ନିୟନ୍ତ୍ରିତ ହେଉଥିବାରୁ ରାଜନୈତିକ ପରିସ୍ଥିତି ବି ଲୋକ ଚରିତ୍ରକୁ ପ୍ରଭାବିତ କରିବାର ସମ୍ଭାବନା ଥାଏ । ଲୋକ ଚରିତ୍ର ଉନ୍ନତ ହେବା ବା ଅନୁନ୍ନତ ରହିବା କ୍ଷେତ୍ରରେ ନାନା କାରଣର ସମ୍ମିଳିତ ପ୍ରଭାବ ଥାଏ । ଲୋକଚରିତ୍ର ଉନ୍ନତ ହେଲେ ସାମାଜିକ ଶାନ୍ତି, ସଂହତି ଓ ସ୍ଥିରତା ରହିବା ସମ୍ଭବ ହୁଏ । ସମାଜରେ ଶାନ୍ତି, ସଂହତି ଓ ସ୍ଥିରତାର ପରିବେଶ ଯୋଗୁ ଜନଗଣ ସୁଖ ଶାନ୍ତିରେ ରହିବା ସମ୍ଭବ ହୁଏ ଓ ଏସବୁର ଅଭାବରେ ସମାଜରେ ଅଶାନ୍ତି ଓ ଅସ୍ଥିରତାର ବାତାବରଣ ଆସିଥାଏ । ମୋଟ ଉପରେ ଲୋକ ଚରିତ୍ର, ଜନଗଣଙ୍କ ସୁଖ ଶାନ୍ତି ତଥା ସାମାଜିକ ସଂହତି ଓ ସ୍ଥିରତା ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ । ତେବେ ଦୁର୍ନୀତି ଏସବୁର ପ୍ରତିକୂଳ ଓ ପରିପନ୍ଥୀ । ଯଦି ଜନଜୀବନର ବିଭିନ୍ନ କ୍ଷେତ୍ରରେ ଦୁର୍ନୀତି ବ୍ୟାପକଭାବେ ରହେ,

ତା'ର ପରିଣାମ ସ୍ୱରୂପ ସମାଜରେ ହିଂସା, ସନ୍ତ୍ରାସବାଦ, ଉଗ୍ରବାଦ ପରି ପରିବେଶ ସୃଷ୍ଟିହୁଏ । ପୁନଶ୍ଚ ଦୁର୍ନୀତି ଦ୍ୱାରା ଆର୍ଥିକ ଶୋଷଣ, ବୈଷମ୍ୟ ଆସିଥାଏ । ଜନମଙ୍ଗଳକାରୀ ଲକ୍ଷ୍ୟଗୁଡ଼ିକ ପଥଭ୍ରଷ୍ଟ ହୁଏ, ରାଜନୈତିକ ଭ୍ରଷ୍ଟାଚାର ବୃଦ୍ଧି ପାଏ ଓ ସାମାଜିକ ଶାନ୍ତି, ସଂହତି 'ଏବଂ ସ୍ଥିରତା ବାଧାପ୍ରାପ୍ତ ହୁଏ । ଏସବୁ ବିଷଚକ୍ର ପରି ପରସ୍ପରକୁ କଳୁଷିତ କରେ ଓ ଜନଜୀବନର ପ୍ରତ୍ୟେକ କ୍ଷେତ୍ର ଏହାଦ୍ୱାରା ବିପନ୍ନ ହୁଏ । ସାଧାରଣ ଜୀବନଠାରୁ ସମାଜର ବୃହତ୍ତର କ୍ଷେତ୍ର ପର୍ଯ୍ୟନ୍ତ କଳୁଷିତ ହୋଇଯାଏ । ଫଳରେ ବହୁ ସ୍ତରରେ ହତାଶା, ନୈରାଶ୍ୟର ପରିବେଶ ଆସେ । ବ୍ୟକ୍ତିଗତ ହତାଶା ଓ ନୈରାଶ୍ୟର ସମଷ୍ଟିରେ ଜନଅସନ୍ତୋଷ ବ୍ୟାପକ ହୁଏ ଓ ଜନଜୀବନରେ ଶୃଙ୍ଖଳା, ନାଗରିକ ଦାୟିତ୍ୱବୋଧ ଓ ମାନବିକ ମୂଲ୍ୟବୋଧ ଭୟଙ୍କର ଭାବେ ବାଧାପ୍ରାପ୍ତ ହୁଏ । ଆମ ସାମାଜିକ ପରିବେଶରୁ କେତେକ ପରିସ୍ଥିତିକୁ ଲକ୍ଷ୍ୟ କରାଯାଇପାରେ ।

ରାଜନୈତିକ ପରିବେଶକୁ ଲକ୍ଷ୍ୟ କଲେ ଆମ କ୍ଷୟଶୀଳତାର ଚିତ୍ରଟି ଅଧିକ ସ୍ପଷ୍ଟ ମନେହୁଏ । ସ୍ୱାଧୀନତାର ପ୍ରାକ୍ କାଳରେ ରାଜନୀତି ସହ ସମ୍ପୃକ୍ତ ବହୁ ବ୍ୟକ୍ତିଙ୍କର ଉଚ୍ଚ ନୈତିକ ଆଦର୍ଶବୋଧ ରହିଥିଲା । ଏପରିକି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଅନେକ କଷ୍ଟ ସହିଥିବା ବହୁ ତ୍ୟାଗୀ ବ୍ୟକ୍ତି ସ୍ୱାଧୀନତା ପରେ ସକ୍ରିୟ ରାଜନୀତିରେ ରହିଥିଲେ ଓ ପ୍ରାୟତଃ ଉଚ୍ଚ ନୈତିକ ଶୃଙ୍ଖଳାକୁ ସମ୍ମାନ ଦେଉଥିଲେ । କିନ୍ତୁ କାଳକ୍ରମେ ରାଜନୈତିକ ଜୀବନ ପ୍ରବାହରେ ନୈତିକ ମୂଲ୍ୟଚୟ ଧୀରେ ଧୀରେ ଅବକ୍ଷୟ ହୋଇଚାଲିଲା । ନିଷ୍ପାପର, ଆଦର୍ଶବାଦୀ ଓ ମୂଲ୍ୟବୋଧରେ ଗଭୀର ଆସ୍ଥା ରଖିଥିବା ବ୍ୟକ୍ତିମାନେ ରାଜନୈତିକ ଦୃଶ୍ୟପଟରୁ ଅପସରିଗଲେ । ପରିବର୍ତ୍ତିତ ପରିସ୍ଥିତିରେ ଦଳୀୟ କାର୍ଯ୍ୟସୂଚୀ କିମ୍ବା କୌଣସି ଆଦର୍ଶ ଦ୍ୱାରା ପ୍ରଭାବିତ ନହୋଇ କେଉଁ ଦଳରେ ସମ୍ପୃକ୍ତ ହେଲେ ନିର୍ବାଚିତ ହୋଇପାରିବେ ବା କ୍ଷମତାବଳୟ ମଧ୍ୟରେ ରହିପାରିବେ ତାହା ହିଁ ଅନେକଙ୍କ ପାଖରେ ମୁଖ୍ୟ ପ୍ରସଙ୍ଗ ହେଲା । ତେବେ ବିଡ଼ମ୍ବନାର ବିଷୟ ରାଜନୈତିକ ଦଳମାନେ କେତେକ ବ୍ୟକ୍ତିଙ୍କର ଅପରାଧମୂଳକ ସମ୍ପୃକ୍ତି ସତ୍ତ୍ୱେ ସେମାନଙ୍କୁ ଦଳରେ ନେଲେ ଓ ନିର୍ବାଚନରେ ଛିଡ଼ା କରାଇଲେ । ଦୁର୍ଭାଗ୍ୟର କଥା, ଅପରାଧମୂଳକ କାର୍ଯ୍ୟରେ ଲିପ୍ତ ଥିବା ଓ ଏପରିକି ସାମ୍ପ୍ରଦାୟିକ ଦଙ୍ଗାରେ ସମ୍ପୃକ୍ତ ଥିବା ବ୍ୟକ୍ତିମାନେ ବି ନିର୍ବାଚିତ ହୋଇ ଆସିବା ଆମ ଗଣତାନ୍ତ୍ରିକ ବ୍ୟବସ୍ଥାର ବଡ଼ ଦୁର୍ବଳତାର ପରିଚୟ ଦିଏ । ଅପରାଧୀମାନଙ୍କୁ ନା ଇଲେକ୍ସନ କମିଶନ ବା ବିଚାର ବ୍ୟବସ୍ଥା ପରି ଗଣତାନ୍ତ୍ରିକ ଅନୁଷ୍ଠାନ ପ୍ରତିଯୋଗିତା କରିବାରେ ଅଙ୍କୁଶ ଲଗାଇ ପାରୁଛି ନା ଜନସାଧାରଣ ସେମାନଙ୍କୁ ପ୍ରତ୍ୟାଖ୍ୟାନ କରୁଛନ୍ତି । ରାଜନୈତିକ ଆଦର୍ଶ, ଆଭିମୁଖ୍ୟ, ଭବିଷ୍ୟତ ଯୋଜନା ଇତ୍ୟାଦି ନିର୍ବାଚନରେ ଜିତିବାପାଇଁ ସାଧନ ନହୋଇ

ବରଂ ବାହୁବଳ, ଧନବଳ ଓ କୌଣସି କାରଣଜନିତ ଭାବପ୍ରବଣତା ନିର୍ବାଚନ ଜିତିବାରେ ନିର୍ଣ୍ଣାୟକ ହୋଇଯାଉଛି । ପରିଣାମତଃ କ୍ଷମତା ସ୍ତରକୁ କେତେକ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଆସୁଛନ୍ତି ଓ କଳାଟଙ୍କାର ଅଧିକାରୀ ହେଉଛନ୍ତି । ଆମର ଗଣତାନ୍ତ୍ରିକ ବ୍ୟବସ୍ଥାର କେତେକ ସକାରାତ୍ମକ ଆଭିମୁଖ୍ୟ ସତ୍ତ୍ୱେ ଏସବୁ ପରିସ୍ଥିତି ଆମ ରାଜନୈତିକ ଦୃଶ୍ୟପଟର ନକାରାତ୍ମକ ଚିତ୍ର ପ୍ରଦାନ କରୁଛି । ରାଜନୈତିକ ବ୍ୟବସ୍ଥାରେ ଭଲ ଲୋକଙ୍କ ଅପେକ୍ଷା ମନ୍ଦ ଲୋକଙ୍କର ଅଧିକ ପ୍ରଭାବ ରହିବା ଆମ ଗଣତାନ୍ତ୍ରିକ ବ୍ୟବସ୍ଥାର ଦୁର୍ବଳତା କହିଲେ ଅତ୍ୟୁକ୍ତି ହେବନାହିଁ ।

ସେହିପରି ଆମର ପ୍ରଶାସନିକ ବ୍ୟବସ୍ଥାରେ ଅନେକ ସଚ୍ଚୋଟ ବ୍ୟକ୍ତି ରହିଥିଲେ ମଧ୍ୟ ବ୍ୟବସ୍ଥାଟି ଏପରି ହୋଇଯାଇଛି ଯେ ଅଧିକାଂଶ କ୍ଷେତ୍ରରେ ଦୁର୍ନୀତି ବ୍ୟାପକ ହୋଇରହିଛି । ଜଣେ ସାଧାରଣ ବ୍ୟକ୍ତିର ନ୍ୟାୟୋଚିତ କାର୍ଯ୍ୟଟି ପ୍ରଶାସନିକ ବ୍ୟବସ୍ଥାରେ ଅକ୍ଳେଶରେ ହୋଇଯିବା ଆବଶ୍ୟକ । କିନ୍ତୁ ବହୁ ସମୟରେ ତାହା ହୋଇପାରେ ନାହିଁ । ଆଇନର ଜଟିଳତା ଓ କର୍ମ ସଂସ୍କୃତିର ଅଭାବରେ ଜଣେ ସାଧାରଣ ବ୍ୟକ୍ତି ପ୍ରତ୍ୟେକ ସ୍ତରରେ ପ୍ରତିବନ୍ଧକର ସମ୍ମୁଖୀନ ହୁଏ । ଡ୍ରାଇଭିଂ ଲାଇସେନ୍ସଟିଏ ପାଇବାରେ ହେଉ, ଜମି ଖରିଦ ବିକ୍ରି କ୍ଷେତ୍ରରେ ହେଉ, ଗ୍ୟାସ ସଂଯୋଗ କ୍ଷେତ୍ରରେ ହେଉ କିମ୍ବା କୃଷିଋଣ ପାଇବା କ୍ଷେତ୍ରରେ ହେଉ ଜଣେ ସାଧାରଣ ଲୋକ ଏହିପରି ପ୍ରତ୍ୟେକ କ୍ଷେତ୍ରରେ ଆମ ବ୍ୟବସ୍ଥାରେ ପ୍ରତିବନ୍ଧକର ସାମ୍ନା କରେ । ତା'ର କାର୍ଯ୍ୟଟି ଯେତେ ନ୍ୟାୟୋଚିତ ହେଲେ ମଧ୍ୟ ବ୍ୟକ୍ତିଗତ ସମ୍ପର୍କ ନ ଥିଲେ ବା ହାତଗୁଞ୍ଜା ନ ଦେଲେ କାର୍ଯ୍ୟଟି ଅକ୍ଳେଶରେ ହୋଇପାରେ ନାହିଁ । ବିକାଶମୂଳକ କାର୍ଯ୍ୟରେ ପ୍ରଶାସନିକ ଅଧିକାରୀମାନେ ପରସେଣ୍ଟ ଖୋଲାଖୋଲି ଭାବେ ନିଅନ୍ତି । କଣ୍ଟ୍ରାକ୍ଟର ବହୁ କ୍ଷେତ୍ରରେ ଲାଞ୍ଚ, ଘୋଷ ଦେଉଥିବାରୁ କାର୍ଯ୍ୟରେ ଗୁଣାତ୍ମକମାନ ରକ୍ଷା କରିପାରେ ନାହିଁ । ବ୍ୟବସାୟୀ ବିଭିନ୍ନ ସ୍ତରରେ ଚାନ୍ଦା ଦିଏ, ସଂପୃକ୍ତ ବିଭାଗୀୟ କର୍ମଚାରୀଙ୍କୁ ଉତ୍କୋଚ ଦିଏ ଓ ସେ ତା'ର କ୍ଷତି ଭରଣା କରିବାକୁ ଯାଇ ଲୋକଙ୍କୁ ଠକେ । ନିମ୍ନ ମାନର ଜିନିଷ ବିକ୍ରିକରେ ବା ଏପରିକି ଅପମିଶ୍ରଣ କରେ । ଯିଏ ଯେଉଁ କ୍ଷେତ୍ରରେ ଅଛି ସେ ନିଜ ପଦ, ପଦବୀର ଅପବ୍ୟବହାର କରି ନିଜର ଆତ୍ମସମ୍ମାନ ନ ହରାଇ ଉତ୍କୋଚ ନେବାରେ କୌଣସି ବିବେକର ଦଂଶନ ପାଏ ନାହିଁ । ପରିଣାମତଃ ନିଜର କର୍ମ କ୍ଷେତ୍ରରେ ଜଣେ ନିଜର ପ୍ରଭୁତ୍ୱ ବିସ୍ତାର କରେ ଓ ଅନ୍ୟ କ୍ଷେତ୍ରରେ ନିଜକୁ ଅସହାୟ ମନେକରେ । ଆମର ପ୍ରଶାସନିକ ସ୍ତରରେ ଏକ ଦୁର୍ନୀତିମୁକ୍ତ ଉତ୍ତରଦାୟୀ କର୍ମସଂସ୍କୃତି ସୁଦୃଢ଼ ଭିତ୍ତି ନେଇପାରି ନାହିଁ । ସବୁ କ୍ଷେତ୍ରରେ ସରକାରୀ ଧରପଗଡ଼ କରି ଭୟଜନିତ କାରଣରୁ ଦୁର୍ନୀତିକୁ ରୋକିବା ପ୍ରାୟତଃ ସମ୍ଭବ ନୁହେଁ ।

ଲୋକଙ୍କର ଦୃଷ୍ଟିଭଙ୍ଗୀ, ନୈତିକ ବିଚାରବୋଧ, କର୍ମସଂସ୍କୃତି ଓ ସାମାଜିକ ଉତ୍ତରଦାୟିତ୍ୱବୋଧ ଉନ୍ନତ ନ ହେଲେ ଭୟ ଜନିତ କାରଣରୁ ଦୁର୍ନୀତିକୁ ସମ୍ପୂର୍ଣ୍ଣ ବିଲୋପ କରିବା ସମ୍ଭବ ନୁହେଁ ।

ସାଂସ୍କୃତିକ ପରମ୍ପରା କ୍ଷେତ୍ରରେ ଆମ ଦୁର୍ନୀତିର ଚିତ୍ରଟି ମଧ୍ୟ ଅଧିକ ସ୍ପଷ୍ଟ । ଧାର୍ମିକ ବିଶ୍ୱାସ ଆଳରେ ଅନେକ ପୂଜା ପାର୍ବଣ, ହୋମ ଯଜ୍ଞ ବର୍ଷସାରା ପାଳିତ ହୁଏ ଓ ପୂଜାସ୍ଥଳରେ ଭିଡ ଜମେ । ପୂଜା, ପାର୍ବଣଜନିତ କାରଣରୁ ପରିବେଶ କେତେ ମାତ୍ରାରେ ପ୍ରଦୂଷିତ ହୁଏ ସେ ପ୍ରତି ଆମେ ସମ୍ପୂର୍ଣ୍ଣ ଉଦାସୀନ । ନଦୀ, ପୁଷ୍କରିଣୀ ପରି ଜଳାଶୟରେ ପୂଜା ସାମଗ୍ରୀକୁ ଫିଙ୍ଗିବା, ମୂର୍ତ୍ତିମାନଙ୍କର ବିସର୍ଜନ କରିବା ଦ୍ୱାରା ଜଳର ପ୍ରଦୂଷଣ ହୁଏ । ପୂଜାପୀଠରେ ମାଇକ୍‌ରେ ଯେଉଁ ଗୀତ ବାଜେ ତାଦ୍ୱାରା ଶବ୍ଦ ପ୍ରଦୂଷିତ ହୁଏ । ଏସବୁ ପ୍ରତି ଆମେ ନଜର ଦିଅନ୍ତିନାହିଁ । ଏହା ସହିତ ପୂଜା ନାମରେ ଜୋର ଜବରଦସ୍ତ ଚାନ୍ଦା ସଂଗ୍ରହ ଜନଜୀବନର ସାଧାରଣ ଘଟଣା । ପୂଜାପୀଠମାନଙ୍କରେ ଶୋଷଣ ଓ ଠକାମୀ ଆମ ରୁଗ୍‌ଣ ମାନସିକତାର ପରିଚୟ ଦିଏ । ବୃହତ୍ତର ସମାଜ ଉପରେ ମଣିଷର ଆସ୍ଥା ନ ରହିଲେ ଓ ସାଧାରଣ ଜୀବନ ପ୍ରବାହରେ ବହୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେଲେ ତା'ର ସମସ୍ୟାର ସମାଧାନ ପାଇଁ ମଣିଷ ଭୟାତୁର ଭାବେ ଦିଅଁ ଦେବତାକୁ ଡାକେ । ସାଧାରଣ ମଣିଷଟିର ଅସହାୟତାର ସୁଯୋଗ ନେଇ ପୂଜାପୀଠମାନଙ୍କରେ ଶୋଷଣ ଅବ୍ୟାହତ ରହେ । ପୂଜା ପୀଠରେ କୌଣସି ମହତ୍ତର ଜୀବନ ପାଇଁ ପ୍ରେରଣା ମିଳେ ନାହିଁ, ବରଂ ଧର୍ମ ନାମରେ ବ୍ୟବସାୟ ଚାଲେ । ଏହା ସହିତ ଆମ ଦେଶରେ କେତେ ବାବା, ଭଗବାନ ଅବତାର ପୁରୁଷଙ୍କର ଆବିର୍ଭାବ ହୁଏ । ଚମତ୍କାରିତା ଆଳରେ ସେମାନେ ନିଜ ନିଜର ସାମ୍ରାଜ୍ୟ ସୃଷ୍ଟି କରନ୍ତି ଓ ଜନଗଣଙ୍କୁ ସ୍ୱପ୍ନ ବାଣ୍ଟନ୍ତି । ସାଧାରଣ ଜୀବନ ପ୍ରବାହକୁ ସୁନ୍ଦର, ଦୁର୍ନୀତିମୁକ୍ତ ଓ ନ୍ୟାୟଯୁକ୍ତ କରିବା ପରିବର୍ତ୍ତେ ସେମାନେ ସ୍ୱର୍ଗ, ଈଶ୍ୱରପ୍ରାପ୍ତି, ମୁକ୍ତି କଥା କହି ଭିନ୍ନ ଜଗତର ସ୍ୱପ୍ନ ଦିଅନ୍ତି । ସାଧାରଣ ମଣିଷକୁ ଧାର୍ମିକ ବିଶ୍ୱାସ ଆଳରେ ପ୍ରଭାବିତ କରିବାର କଳା ବାବାମାନଙ୍କୁ ସୁନ୍ଦର ଭାବେ ଜଣା ।

ଆଉ ଆମର ନିତିଦିନିଆ ଜୀବନ । ବିଶୁଦ୍ଧ କ୍ଷୀର ଟିକିଏ ବା ଅପମିଶ୍ରିତ ହୋଇ ନଥିବା ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ପାଇବା ସମ୍ଭବ ନୁହେଁ । ଆମ ଦେଶରେ ଔଷଧ, ଖାଦ୍ୟ ପଦାର୍ଥ ଓ ଏପରିକି ଶିଶୁ ଖାଦ୍ୟରେ ବି ଅପମିଶ୍ରଣ ହୁଏ । ପରିବାରେ ରଙ୍ଗ ଦିଆଯାଏ, ଅଟାରେ ଚୋକଡ ମିଶାଯାଏ, ପେଟ୍ରୋଲରେ କିରାସିନ ମିଶିଯାଏ ଇତ୍ୟାଦି ଇତ୍ୟାଦି । ଆମ ବ୍ୟବସ୍ଥାରେ କେଉଁଟି ଅସଲି ବା ନକଲି ଜାଣିବା ସମ୍ଭବ ନୁହେଁ । ବୃହତ୍ତର ସମାଜକୁ ଠକିବାର ମାନସିକତା ଯଦି ବ୍ୟତିକ୍ରମ ନ ହୋଇ ସାମାଜିକ

ଜୀବନର ଧାରା ହୋଇଯାଏ, ତେବେ ଆମ ସାମାଜିକ ପରିବେଶ କେତେ କ୍ଷୟଶୀଳ ତାହା ସହଜରେ ଅନୁମେୟ । ବିଡ଼ମ୍ବନାର ବିଷୟ, ଧାର୍ମିକ ଆବେଗରେ ମତୁଆଲା ହେଉଥିବା ଲୋକମାନେ ସାମାଜିକ ସ୍ତରରେ ନୈତିକ ଓ ମାନବିକ ମୂଲ୍ୟବୋଧ ପ୍ରତି ପ୍ରାଧାନ୍ୟ ଦିଅନ୍ତି ନାହିଁ ।

ସମାଜର ଅନେକ କ୍ଷେତ୍ରରେ ଅନ୍ୟକୁ ଠକିବାର ମାନସିକତା ଯଦି ବ୍ୟାପକ ହୋଇ ରହେ, ଜୀବନର ଗୁଣାତ୍ମକ ମାନ କିପରି ବଦଳିବ ! ଆନ୍ଦୋଳନ, ବନ୍ଦଡାକରା, ଆଇନକୁ ହାତକୁ ନେବା, ସାଧାରଣ କଥାକୁ ନେଇ ତୁମୁଳକାଣ୍ଡ ସୃଷ୍ଟି କରିବା, ସରକାରୀ ସଂପତ୍ତି ନଷ୍ଟ କରିବା ଆମ ଜନଜୀବନର ଅତି ମାମୁଲିକଥା । ଏସବୁ ଦୁର୍ନୀତିର ପରିସରଭୁକ୍ତ ନା ନୁହଁ !

ପରିସ୍ଥିତି କିପରି ବଦଳିବ ? ଆମ ମାନସିକତାରେ କିପରି ପରିବର୍ତ୍ତନ ହେବ ? ଏହି ସବୁ ଚିନ୍ତାର ବିଷୟ । ସୁଖର କଥା ସମାଜର ଏହି ପରିସ୍ଥିତିରେ ଅସ୍ୱସ୍ତିକର ଅନୁଭବ କରୁଥିବା କିଛି ସଚେତନ ନାଗରିକ ଦୁର୍ନୀତି ମୁକ୍ତ ରାଷ୍ଟ୍ର ପାଇଁ ପାଦ କାଢ଼ିଛନ୍ତି । ସମସ୍ୟା ତ ନିଶ୍ଚୟ ଜଟିଳ । ତଥାପି କ୍ଷୁଦ୍ର ଉଦ୍ୟମରୁ ହିଁ ବଡ଼ କାର୍ଯ୍ୟସାଧିତ ହୋଇପାରେ । ଏହା ହିଁ ଉତ୍ତମ ସମାଜ ପାଇଁ ସ୍ୱପ୍ନ ଦେଖୁଥିବା ଆଶାବାଦୀଙ୍କ ପାଇଁ ବଡ଼ ଆଶ୍ୱାସନା । (ଦ୍ୱିତୀୟ ଭାଗ) (୨୫.୫.୧୧)



# ଦୁର୍ନୀତି ଓ ସଂସ୍କୃତି

ଦୁର୍ନୀତିର ପାରିଭାଷିକ ଅର୍ଥଟି ହେଲା ଯାହା ନୀତି ବିହୀନ ବା ନୀତିବିରୋଧୀ କାର୍ଯ୍ୟ । ତେବେ ଆମର ପ୍ରଚଳିତ ଅର୍ଥରେ ଦୁର୍ନୀତିର ତାତ୍ପର୍ଯ୍ୟ ହେଲା-'ଅସାଧୁ ଉପାୟରେ ଉପାର୍ଜନ' । ବିଶେଷକରି ରାଜନୈତିକ କ୍ଷମତାଧାରୀ ବ୍ୟକ୍ତି ବା ସରକାରୀ ପଦ ପଦବୀରେ ରହିଥିବା ବ୍ୟକ୍ତି ଯଦି ଅସାଧୁ ଉପାୟରେ ଅର୍ଥ ଉପାର୍ଜନ କରନ୍ତି ସେ ଜଣେ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ବୋଲି ପରିଗଣିତ ହୁଅନ୍ତି । ପୁନଶ୍ଚ ଦୁର୍ନୀତିର ବ୍ୟାପକତର ଅର୍ଥଟି ହେଲା ଅନ୍ୟକୁ ଠକିବାର ମନୋଭାବ । ଅସାଧୁ ଉପାୟରେ ଉପାର୍ଜନ ହେଉ ବା ଅନ୍ୟକୁ ଠକିବାର ମନୋଭାବ ହେଉ ଏ ପ୍ରତ୍ୟେକ ନୀତିବିରୋଧୀ, ସୁତରାଂ ଏହା ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ।

ଦୁର୍ନୀତିର ପରିସର ସାଂପ୍ରତିକ ଜୀବନଧାରାରେ ବହୁ ବ୍ୟାପକ ହେଉଥିବା ମନେହୁଏ । ଅନ୍ୟକୁ ଠକିବାର ମନୋଭାବକୁ ଏବେ ତ ଯୁଗର ଆଦର୍ଶ କରାଯାଉଛି । ସାଧାରଣ ଭାବେ କେହି କାହାକୁ ଠକିବା ଜନଜୀବନରେ ଏକ ବ୍ୟତିକ୍ରମ ନ ହୋଇ ହୋଇଯାଉଛି ଏକ ସାଧାରଣ ଘଟଣା । ତେବେ ସାଂପ୍ରତିକ ଯୁଗରେ ସୁସଂଗଠିତ ଭାବେ ଅନ୍ୟକୁ ଶୋଷଣ କରିବାର ପରିବେଶ ସୃଷ୍ଟି କରାଯାଉଛି । ବିଶେଷକରି ଉପଭୋକ୍ତାବାଦୀ ସଂସ୍କୃତିର ଯେପରି ବିକାଶ ହୋଇଛି ତାହାକୁ କ'ଣ କୁହାଯିବ ? ରେଡ଼ିଓ, ଦୂରଦର୍ଶନ ଇତ୍ୟାଦି ଗଣମାଧ୍ୟମରେ ଯେଉଁସବୁ ବ୍ୟାବସାୟିକ ବିଜ୍ଞାପନ ଦିଆଯାଇ ଲୋକମାନଙ୍କୁ କେତେକ ଜିନିଷ କିଣିବାକୁ ଅହେତୁକ ଭାବେ ପ୍ରଭାବିତ ଓ ଆକର୍ଷିତ କରାଯାଉଛି ତାହାକୁ ଠକାମି କୁହାଯିବ କି ନାହିଁ ? ଅମୁକ ସାମ୍ପୋ ଲଗାଇଲେ କେଶ ଏତେ ଲମ୍ୱା ହୋଇଯିବ ଓ ଏପରି ଚିକ୍କଣ ଦିଶିବ ଯେ ଏହା ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ଆକର୍ଷଣ ସୃଷ୍ଟି କରିବ । ଅମୁକ ପେଷ୍ଟରେ ଦାନ୍ତ ଘଷିଲେ ଦାନ୍ତ ସବୁଦିନ ପାଇଁ ଅକ୍ଷୟ ରହିବ ଓ ଚିକ୍ ଚିକ୍ କରିବ, ଅମୁକ ତେଲ ମୁଣ୍ଡରେ ଲଗାଇଲେ ମେଧାଶକ୍ତି ଏତେ ବଢ଼ିଯିବ ଯେ ଯେତେ ଦୁର୍ବଳ ଛାତ୍ରହେଲେ ବି ସେ ପ୍ରତିଭାବାନ ହୋଇ ଉଠିବ, ଅମୁକ ସାବୁନ ଦେହରେ ଲଗାଇଲେ ମଣିଷ କୌଣସି ଜୀବାଣୁ ଜନିତ ରୋଗରେ ଆକ୍ରାନ୍ତ ହେବନାହିଁ, ଅମୁକ ଥଣ୍ଡା ପାନୀୟ ପିଇଲେ ଦେହରେ ସିଂହର ବଳ ଆସିଯିବ- ଏହିପରି ଅସଂଖ୍ୟ ପ୍ରକାର ବିଜ୍ଞାପନ ବିଭିନ୍ନ କମ୍ପାନୀମାନେ

ଗଣମାଧ୍ୟମରେ ପ୍ରଚାର କରୁଛନ୍ତି । ଗୋଟିଏ ପ୍ରସାଧାନ ସାମଗ୍ରୀ ବା ଆବଶ୍ୟକ ନ ଥିବା କୌଣସି ଜିନିଷକୁ ଏପରି ଅତିଶୟ ବିଶେଷଣ ଲଗାଇ ପ୍ରଚାର କରିବାର ମନୋଭାବକୁ ଦୁର୍ନୀତି କୁହାଯିବ କି ନାହିଁ ? ଜଣେ ବ୍ୟକ୍ତି ଅନ୍ୟକୁ ଠକି କିଛି ରୋଜଗାର କରିବା ଓ ଗଣମାଧ୍ୟମ ଜରିଆରେ ଜନଗଣଙ୍କୁ ବିଭ୍ରାନ୍ତ କରି କୋଟି କୋଟି ଟଙ୍କା ରୋଜଗାର କରିବା ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଜଣେ ସାଧାରଣ ମଣିଷର ଠକାମିଠାରୁ ଏହି ପରି ବ୍ୟାବସାୟିକ ଠକାମି ଯେ ସହସ୍ର ଗୁଣ ଅଧିକ ତାହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେହିପରି ସାଂପ୍ରତିକ ଜନଜୀବନରେ ବିଜ୍ଞାନର ପ୍ରଭୂତ ବିକାଶ ସତ୍ତ୍ୱେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବରେ କୁସଂସ୍କାରକୁ କିପରି ବ୍ୟାପକ ଭାବେ ପ୍ରଚାର କରାଯାଇ ଜଣଗଣଙ୍କୁ ବିଭ୍ରାନ୍ତ କରାଯାଉଛି ତାହା ବି ଚିନ୍ତାର ବିଷୟ । ସାଂପ୍ରତିକ ଜୀବନଶୈଳୀରେ ଭୟଙ୍କର ପ୍ରତିଯୋଗିତା ଓ ନାନା ପ୍ରକାର ମାନସିକ ଉତ୍ତେଜନା ଏବଂ ଉଦ୍‌ବେଳନ ବୃଦ୍ଧି ପାଇଚାଲିଛି । ପରିଣାମ ସ୍ୱରୂପ ବ୍ୟକ୍ତିଗତ ଜୀବନରେ ନୈରାଶ୍ୟ, ମାନସିକ ଚାପ ବୃଦ୍ଧି ପାଉଛି । ଲୋକଙ୍କର ଏହି ମାନସିକ ଅସ୍ଥିରତାକୁ ଲକ୍ଷ୍ୟ କରି କେତେକ ବ୍ୟକ୍ତି ତାଙ୍କର ପସରା ମେଲି ଲୋକମାନଙ୍କୁ ଠକିବାର ଉଦ୍ୟମ କରୁଛନ୍ତି । ଅମୁକ ମାଳା ପିନ୍ଧିଲେ, ସମୁକ ମୁଦି ଲଗାଇଲେ ମନରୁ ସମସ୍ତ ଚାପ ଦୂର ହୋଇଯିବ । କେଉଁ ଦେବୀଙ୍କ ପାଖରେ ପୂଜା ହୋଇ ଆସିଥିବା ରତ୍ନ ପଥର ଜଡ଼ିତ ମୁଦି ପିନ୍ଧିଲେ ଜୀବନରୁ ସମସ୍ତ ହତାଶା, ନୈରାଶ୍ୟ ଚାଲିଯିବ, ଦେବୀଙ୍କ କୃପାରୁ ମନରେ ଶାନ୍ତି ବିରାଜମାନ କରିବାପରି ଅସଂଖ୍ୟ ପ୍ରଚାର କରାଯାଉଛି । ଅନ୍ୟର କୁସଂସ୍କାର ବା ସରଳ ବିଶ୍ୱାସର ସୁଯୋଗ ନେଇ ତାକୁ ଶୋଷଣ କରିବାର ଯେଉଁ ମାନସିକତା ସମାଜରେ ଶୃଙ୍ଖଳିତ ଭାବରେ ବୃଦ୍ଧି ପାଉଛି ତାହାକୁ ଦୁର୍ନୀତି କୁହାଯିବ ନା ଆଉ କ'ଣ !

ଆଜି ଇଞ୍ଜିନିୟରିଂ ଜ୍ଞାନକୌଶଳ ଆଶାତୀତ ଭାବେ ବୃଦ୍ଧି ପାଇଚାଲିଛି । ବହୁତଳ ବିଶିଷ୍ଟ ପ୍ରାସାଦମାନ ତିଆରି ହେଉଛି । ଭୂମି ତଳେ ରାସ୍ତା ଖୋଳି ଟ୍ରେନ ଚାଲିପାରୁଛି, ସମୁଦ୍ରରେ ରାସ୍ତା କରାଯାଇ ଟ୍ରାଫିକ ଭିଡ଼ କମାଇବାକୁ ସମୁଦ୍ର ତଟରେ ଅବସ୍ଥିତ ଥିବା ସହରମାନଙ୍କରେ ଉଦ୍ୟମ ହେଉଛି, ଫ୍ଲାଏଓଭର ଜରିଆରେ ଦୁଇ ମହଲା ବିଶିଷ୍ଟ ରାସ୍ତା କରାଯାଉଛି ଇତ୍ୟାଦି ଇତ୍ୟାଦି । ଏସବୁ ଆଧୁନିକ ପ୍ରଯୁକ୍ତିଜ୍ଞାନର ବିସ୍ମୟ । ଏ ସତ୍ତ୍ୱେ ବାସ୍ତୁଶାସ୍ତ୍ର ପରି କେତେକ ବିଶ୍ୱାସକୁ ସାଂପ୍ରତିକ ଯୁଗରେ ପ୍ରଚାର କରାଯାଇ ଲୋକମାନଙ୍କୁ ବିଭ୍ରାନ୍ତ କରାଯାଉଛି । ଗୃହନିର୍ମାଣ କ୍ଷେତ୍ରରେ ଇଞ୍ଜିନିୟରିଂ କଳା କୌଶଳ ଅଭାବରେ ଲୋକମାନେ ପ୍ରାଚୀନ କାଳରେ ସେ ଯୁଗର

ବିଶ୍ୱାସାନୁଯାୟୀ କେତେକ ବିଦ୍ୟାରେ ବିଶ୍ୱାସ କରୁଥିଲେ ଓ ତାହା ସେ ସମୟରେ ହୁଏତ ଅର୍ଥପୂର୍ଣ୍ଣ ଥିଲା । ତେବେ ସାଂପ୍ରତିକ ଜ୍ଞାନ, ପ୍ରଯୁକ୍ତି ଓ ଅତ୍ୟାଧୁନିକ ବିଦ୍ୟା, କୌଶଳ ପାଖରେ ପ୍ରାଚୀନ ଯୁଗର ବାସ୍ତୁ ବିଶ୍ୱାସ ଆପାଂକ୍ତେୟ ମନେହୁଏ । ତଥାପି ପ୍ରାଚୀନ ଯୁଗର ଆଧାରହୀନ ବିଶ୍ୱାସକୁ ନେଇ କିଛି ଲୋକ ବେପାର କରୁଛନ୍ତି ଓ ଲୋକମାନଙ୍କୁ ବିଭ୍ରାନ୍ତ କରି ବେଶ୍ ରୋଜଗାର କରୁଛନ୍ତି । ଏହା ଦୁର୍ନୀତି କି ନୁହେଁ।

ପ୍ରତ୍ୟେକ ସଂସ୍କୃତିର ମହତ୍ତର ଦିଗ ରହିଛି ଓ ଅହେତୁକ ଦିଗ ରହିଛି । ତେବେ ସାମାଜିକ ଜୀବନଧାରାରେ ମଣିଷର ମୂଲ୍ୟକୁ ପ୍ରାଧାନ୍ୟ ଦେଉଥିବା ବିଚାରବୋଧ ଏକ ଉନ୍ନତ ସଂସ୍କୃତିର ପ୍ରତୀକ ଅଟେ । ଅପରପକ୍ଷରେ ଯେଉଁଠି ବ୍ୟକ୍ତିର ବା ଗୋଷ୍ଠୀର ମୂଲ୍ୟ ଜନ୍ମଗତ ମାନଦଣ୍ଡରୁ ନ୍ୟୂନ ହୋଇରହିଛି ତାହା ସେହି ସଂସ୍କୃତିର ଏକ ନକାରାତ୍ମକ ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଚିନ୍ତାରାଜ୍ୟରେ ମାନବକୈନ୍ଦ୍ରିକ ଜଗଦ୍‌ଦୃଷ୍ଟିର ବିକାଶ ଦ୍ୱାରା ମଣିଷ ହିଁ ମୁଖ୍ୟ ସ୍ଥାନ ନେଇଛି । ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାରସହ ଜୀବନ ବଞ୍ଚିବା ତା'ର ଜନ୍ମଗତ ଅଧିକାର । ବିଂଶ ଶତାବ୍ଦୀରେ 'ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା'ରେ ପ୍ରତ୍ୟେକ ବ୍ୟକ୍ତିର ଅଧିକାର, ସମ୍ମାନ ଓ ମହତ୍ତ୍ୱକୁ ସ୍ୱୀକାର କରାଯାଇଛି ଏବଂ ଏହା ଏକ ସାର୍ବଜନୀନ ମୂଲ୍ୟବୋଧ ଭାବେ ଆଜି ସଭ୍ୟ ଜୀବନର ଆଦର୍ଶ ପାଲଟିଛି । ମଣିଷ ସମାଜରେ ଯେ କୌଣସି ଭେଦଭାବକୁ ସାଂପ୍ରତିକ ଅନ୍ୱେଷାରେ ନୀତିହୀନ ବୋଲି ବିଚାର କରାଯାଉଛି ।

କିନ୍ତୁ ଯେଉଁ ସଂସ୍କୃତିରେ ବ୍ୟକ୍ତିର ମୂଲ୍ୟ ତା'ର ଜନ୍ମଗତ ଜାତିଦ୍ୱାରା ନିୟନ୍ତ୍ରିତ ଓ ତାହା ହିଁ ତା'ର ସାମାଜିକ ପରିଚୟ, ତାହା ମାନବିକ ଆଦର୍ଶର ପରିପନ୍ଥୀ ମନେହୁଏ । ଜାତିଭେଦ, ରଙ୍ଗଭେଦ ଓ ଲିଙ୍ଗଭେଦ ଇତ୍ୟାଦିକୁ ଆଧାର କରି ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟି କରିବାର ମାନସିକତା ଏକ ଅପସଂସ୍କୃତି ନିଶ୍ଚୟ । ଭାରତୀୟ ସମାଜରେ ଜାତିଆଣ ମାନସିକତା ଜନିତ ଉଚ୍ଚ ନୀଚ ଭେଦଭାବର ଯେଉଁ ସୁଦୀର୍ଘ କାହାଣୀ ରହିଛି ତାହା ସମ୍ଭବତଃ ଏକ ସାଂସ୍କୃତିକ ଦୁର୍ନୀତି କହିଲେ ଅତ୍ୟୁକ୍ତି ହେବନାହିଁ । କେତେକ ଅନୈତିକ ଓ ଅହେତୁକ ବ୍ୟବସ୍ଥା ସମାଜରେ ପରମ୍ପରା ହୋଇ ଗଢ଼ି ଆସିବା ଫଳରେ ତାହା ଜନଜୀବନକୁ କଳୁଷିତ କରିଦେଇଛି । ଏହା ଭାରତୀୟ ସମାଜରେ ଯେତେବେଳେ ଦୃଢ଼ ହୋଇଛି ତାହା ସାମୂହିକ ଭାବନାକୁ ଧ୍ୱଂସ କରିବା ସହ ସକଳ ନୀତି ଆଦର୍ଶକୁ ଜାତିଭିତ୍ତିକ କରିଦେଇଛି । ବ୍ରାହ୍ମଣ ଶରୀର ଶ୍ରମ କରିବ ନାହିଁ, ଶୂଦ୍ର ବିଦ୍ୟା ଅଧ୍ୟୟନ କରିପାରିବ ନାହିଁ, ଦଳିତ ସ୍ପୃଶ୍ୟ ହେବନାହିଁ ପରି ବିଚାର ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତୀୟ ଜନଜୀବନରେ ସୁଦୃଢ଼ ହୋଇ ରହିଥିଲା । ଅବଶ୍ୟ ଜାତିଆଣ ଭାବନା ବିରୁଦ୍ଧରେ ଯାହା କିଛି ସ୍ୱର

ଉଠିଛି ତାହା ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ଏକ ସଂସ୍କାରବାଦୀ ଆନ୍ଦୋଳନ ଭାବେ କିଛି ସମୟ ପାଇଁ ଆଲୋଡ଼ନ ସୃଷ୍ଟି କରିଛି । ତେବେ ଆମ୍ବେଦକର ବା ଗାନ୍ଧୀଙ୍କ ଜାତୀୟ କାର୍ଯ୍ୟସୂଚୀ ଦ୍ୱାରା ଏହା ରାଷ୍ଟ୍ରୀୟ ରୂପରେଖ ନେଇଛି । ଭାରତବର୍ଷର ବିଭିନ୍ନ ପ୍ରଦେଶରେ ସଂସ୍କାର ପ୍ରୟାସୀ ମାନବବାଦୀମାନେ ଜାତିଆଣ ଭେଦଭାବକୁ ଲୋପ କରିବା ପାଇଁ ପ୍ରୟାସ କରିଥିଲେ ମଧ୍ୟ ଏହାର ସଂପୂର୍ଣ୍ଣ ବିଲୋପ ହୋଇନାହିଁ । ଆମ ସାମାଜିକ ମନସ୍ତତ୍ତ୍ୱରେ କର୍ମସଂସ୍କୃତି ଓ ନୈତିକ ଉତ୍ତରଦାୟିତ୍ୱବୋଧ ଯଦି ଆଜି ବି ସୁଦୃଢ଼ ଭିତ୍ତି ନେଇନାହିଁ ତାହା ପଶ୍ଚାତରେ ଆମ ପାରମ୍ପରିକ ଚଳଣି ଓ ବିଶ୍ୱାସର ପ୍ରଭାବ ମଧ୍ୟ ରହିଛି । ଗୋଟିଏ ସାଂସ୍କୃତିକ ଦୁର୍ନୀତିର ଭିତ୍ତି ଏପରି ସୁଦୃଢ଼ ହୋଇ ଜନମାନସକୁ କବଳିତ କରି ରଖିଛି ଯେ ନାନା ପ୍ରୟାସ ଓ ସଂସ୍କାରବାଦୀ ଆନ୍ଦୋଳନ ସତ୍ତ୍ୱେ ଏହାର ବିଲୋପ ସମ୍ଭବ ହେଉନାହିଁ ।

ଏକ ସୁବିଧାଜନକ ସ୍ଥିତିରେ ଥିବା ବ୍ୟକ୍ତି ବା ଗୋଷ୍ଠୀ ଯଦି ଅନ୍ୟାୟ ରୂପେ ନିଜ ସାମର୍ଥ୍ୟର ଦୁରୂପଯୋଗ କରି ଅନ୍ୟକୁ ଶୋଷଣ କରେ ତାହା ହିଁ ଦୁର୍ନୀତିର ଏକ ପରିବ୍ୟାପ୍ତ ଅର୍ଥ ହେବ । ସେହି ମାନଦଣ୍ଡରେ ଯୁଗ ଯୁଗ ଧରି ଆମ ସାମାଜିକ ଜୀବନ ପ୍ରବାହରେ ଶୂଦ୍ର ଓ ଦଳିତମାନେ ଶୋଷିତ ହୋଇ ଆସିଛନ୍ତି ।

ଏକ ଦୁର୍ନୀତିମୁକ୍ତ ସମାଜର ପରିକଳ୍ପନା ସ୍ୱାଗତଯୋଗ୍ୟ । ଅସାଧୁ ପନ୍ଥାରେ ଉପାର୍ଜନ କରୁଥିବା, ସାଧାରଣ ସମ୍ପତ୍ତିକୁ ଆତ୍ମସାତ କରୁଥିବା, ଜନକଲ୍ୟାଣକାରୀ ଯୋଜନାର ଅର୍ଥକୁ ବାଟମାରଣା କରି ନେଇଯାଉଥିବା ରାଜନୈତିକ ବା ପ୍ରଶାସନିକ ଅଧିକାରୀଙ୍କ ପ୍ରତି ଅଙ୍କୁଶ ଲାଗିବା ଆବଶ୍ୟକ । ତେବେ ଏହା ଦୁର୍ନୀତିର ଏକ ଆଂଶିକ କ୍ଷେତ୍ର ମାତ୍ର । ବୃହତ୍ତର ଜନଜୀବନରେ ରହିଥିବା ସାଂସ୍କୃତିକ ଦୁର୍ନୀତି, ଭୟଙ୍କର ବୈଷମ୍ୟ ବି ଦୁର୍ନୀତିପୂର୍ଣ୍ଣ ବ୍ୟବସ୍ଥାର ପରିପ୍ରକାଶ । କାରଣ ଏସବୁ ବି ଏକ ସାମୂହିକ ଚେତନାର ପରିପନ୍ଥୀ ।

ପୁନଶ୍ଚ ଆମ ଦେଶର ରାଜନୈତିକ ସ୍ୱାଧୀନତା ଓ ସାମାଜିକ ସମତା ଭିତରେ ବହୁ ପାର୍ଥକ୍ୟ ରହିଆସିଛି । ଯେତେବେଳ ପର୍ଯ୍ୟନ୍ତ ରାଜନୈତିକ ସ୍ୱାଧୀନତା ଅର୍ଥନୈତିକ ସ୍ୱାଧୀନତା ଓ ସାମାଜିକ ସମତାର ଆଧାର ଉପରେ ଗଢ଼ି ଉଠିନାହିଁ ସେ ପର୍ଯ୍ୟନ୍ତ ଏକ ଦୁର୍ନୀତିଗ୍ରସ୍ତ ସମାଜର କଳ୍ପନା ବାସ୍ତବ ହୋଇପାରିବ ନାହିଁ । ଏତଦବ୍ୟତୀତ ସାଂପ୍ରତିକ ଯୁଗରେ ଯେଉଁ କର୍ପୋରେଟ ସଂସ୍କୃତି ଓ ତାହାର ଉପଭୋକ୍ତାବାଦୀ ବ୍ୟବସ୍ଥାକୁ ଜନଗଣଙ୍କ ଉପରେ ଲଦି ଦିଆଯାଉଛି ତାହା ପ୍ରତି ଜନଗଣଙ୍କୁ ଅବଗତ କରାଇବାର ଆବଶ୍ୟକତା ମଧ୍ୟ ରହିଛି । ସେହିପରି କାଳକ୍ରମେ ସାଂପ୍ରତିକ ରାଜନୈତିକ ବ୍ୟବସ୍ଥାରେ ନିର୍ବାଚନ ଲଢ଼ିବା ଏପରି ବ୍ୟୟବହୁଳ

ହୋଇପଡ଼ିଛି, ଯାହାର ଏକ ଅବଶ୍ୟମ୍ଭାବୀ ପରିଣାମ ଭାବେ ଦୁର୍ନୀତି ମଧ୍ୟ ବ୍ୟାପିବାରେ ଲାଗିଛି । ପୁନଶ୍ଚ ମୌଳବାଦୀ ବିଚାର ଓ ସାଂପ୍ରଦାୟିକତା ଦ୍ୱାରା ଜନଗଣଙ୍କୁ ବିଭାଜିତ କରାଯିବା ବି ଏକ ବଡ଼ ସାଂସ୍କୃତିକ ଅବକ୍ଷୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ସକଳ ଅବକ୍ଷୟ, ଅପସଂସ୍କୃତି ଓ ଅନୈତିକ ବିଚାରବୋଧ ସାମାଜିକ ଜୀବନକୁ କଳୁଷିତ କରିବା ସହ ସମାଜରେ ନାନା ଅସଂହତି, ବୈଷମ୍ୟ ଓ ଅଶାନ୍ତିର ବାତାବରଣ ସୃଷ୍ଟି କରିଚାଲିଛି । ସୁତରାଂ ଦୁର୍ନୀତି ବିରୋଧୀ ସଂଗ୍ରାମର ପରିସରକୁ ବ୍ୟାପକ କରିବା ପାଇଁ ଜନଚେତନାକୁ ଜାଗ୍ରତ କରିବା ଆବଶ୍ୟକ । ସାମାଜିକ ପରିବର୍ତ୍ତନ ଏକ ଜଟିଳ ପ୍ରକ୍ରିୟା ହେଲେ ମଧ୍ୟ ଏଥିପାଇଁ ରାଷ୍ଟ୍ରୀୟ ସ୍ତରରେ ପ୍ରୟାସ ହେଲେ ଏକ ମାନବିକ- ସଂସ୍କୃତିର ପରିବେଶ ଆସିପାରିବ । ଏହା ସୃଷ୍ଟିକରିବ ଏକ ସାଂସ୍କୃତିକ ନବଜାଗରଣ । (୮.୬.୧୧)



# ଅବକ୍ଷୟର ସଂସ୍କୃତି

ସଂସ୍କୃତି ପ୍ରସଙ୍ଗଟି ଉଠିବା ବେଳେ ଏକ ଜନଗୋଷ୍ଠୀର କଥା ଆସିଥାଏ । ଏକ ଜନଗୋଷ୍ଠୀ ବ୍ୟତୀତ ସଂସ୍କୃତିର ଅବଧାରଣା କରିହୁଏ ନାହିଁ । ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ଜନସମୂହକୁ ନେଇ ସେମାନଙ୍କର ସଂସ୍କୃତିର ଚିତ୍ରଟିକୁ କଳ୍ପନା କରାଯାଏ । ପୁନଶ୍ଚ ସଂସ୍କୃତିର ଅବଧାରଣାଟି ମଧ୍ୟ ବେଶ୍ ଜଟିଳ ମନେହୁଏ । ଏକ ସାମାଜିକ ଜନଗୋଷ୍ଠୀର ଚିନ୍ତନ, ବିଶ୍ୱାସ, ନୀତିବୋଧ, ପରମ୍ପରା, ଜୀବନଶୈଳୀ, କଳାତ୍ମକ ଅଭିବ୍ୟକ୍ତି, ସଂଗୀତ ଇତ୍ୟାଦିର ଏକ ସମନ୍ୱିତ ଅଭିବ୍ୟକ୍ତିକୁ ସେହି ଗୋଷ୍ଠୀର ସଂସ୍କୃତି ବୋଲି ଧରିନିଆଯାଏ । ଅବଶ୍ୟ ଏକ ଜନଗୋଷ୍ଠୀର ସାମୂହିକ ଜୀବନଧାରାରେ ଥିବା ବିଶ୍ୱାସ, ଜୀବନଶୈଳୀ, ପରମ୍ପରା, କଳାତ୍ମକ ପରିପ୍ରକାଶ ଇତ୍ୟାଦି କ୍ଷେତ୍ରରେ ନାନା ପାର୍ଥକ୍ୟ ବି ରହିପାରେ । ପାର୍ଥକ୍ୟ ବା ଭିନ୍ନତା ସତ୍ତ୍ୱେ ଜନଗୋଷ୍ଠୀର ବୌଦ୍ଧିକ ଓ ନୈତିକ ଉତ୍କର୍ଷ ଯାହା ଥାଏ, ତାହା ସେହି ଗୋଷ୍ଠୀର ସାଂସ୍କୃତିକ ମହନୀୟତାର ପରିଚୟ ବହନ କରେ । ଜନଗୋଷ୍ଠୀର ସାଂସ୍କୃତିକ ଭିନ୍ନତା ଭିତରେ ତାହାର ଯେଉଁ ବୌଦ୍ଧିକ ଓ ନୈତିକ ଆବେଦନ ଥାଏ ଓ ଯାହା ନାନା ପୀଢ଼ି ଦେଇ ଋଦ୍ଧିମନ୍ତ ହୋଇଥାଏ ତାହା ସେହି ଗୋଷ୍ଠୀର ସାଂସ୍କୃତିକ ମହତ୍ତ୍ୱର ସ୍ୱାକ୍ଷର ବହନ କରେ ।

ପ୍ରତ୍ୟେକ ସଂସ୍କୃତିର କେତେକ ମହତ୍ତର ଦିଗ ଥାଏ, ପୁନଶ୍ଚ ତାହାର କେତେକ ନକାରାତ୍ମକ ଦିଗ ଥାଇପାରେ । ଯେଉଁ ଆଦର୍ଶ ବା ବିଶ୍ୱାସ ଜନଗୋଷ୍ଠୀକୁ ପ୍ରଗତିଶୀଳ କରିଥାଏ, ଜ୍ଞାନ ବିଜ୍ଞାନ ପାଇଁ ନୂଆ ନୂଆ ପ୍ରେରଣା ସୃଷ୍ଟି କରୁଥାଏ ଓ ମାନବିକ ଆଦର୍ଶ ଓ ସଭ୍ୟ ମୂଲ୍ୟବୋଧ ପ୍ରତି ଅଭିନିବେଶ ଯୋଗାଉଥାଏ ତାହା ଉନ୍ନତ ସଂସ୍କୃତିର ପରିଚାୟକ ମନେହୁଏ । ଅପରପକ୍ଷରେ ଯେଉଁ ବିଚାର ବା ବିଶ୍ୱାସ ଜନଗୋଷ୍ଠୀକୁ ଭାଗ ଭାଗ କରୁଥାଏ ସେମାନଙ୍କ ମଧ୍ୟରେ ଭେଦଭାବ ବା ତିକ୍ତଭାବ ସୃଷ୍ଟି କରୁଥାଏ ଓ କର୍ମସଂସ୍କୃତି ପ୍ରତି ବିମୁଖତା ଆଣୁଥାଏ ତାହା ଉନ୍ନତ ସଂସ୍କୃତିର ସ୍ୱାକ୍ଷର ବହନ କରେ ନାହିଁ । କେତେକ ସାଂସ୍କୃତିକ ବିଚାରବୋଧ ସମାଜରେ ପ୍ରଗତି ଓ ଭ୍ରାତୃତ୍ୱର ମନୋଭାବ ଆଣୁଥିବା ବେଳେ ଅନ୍ୟ କେତେକ ଦୃଷ୍ଟିଭଙ୍ଗୀ ସମତା ଓ ମାନବିକ ମୂଲ୍ୟବୋଧ ପ୍ରତି ଉଦାସୀନତା ପ୍ରକାଶ କରି ଜନଜୀବନକୁ ପୀଡ଼ିତ କରିବାରେ ସହାୟକ ହୋଇଥାଏ । କେତେକ ସାଂସ୍କୃତିକ ବିଚାରବୋଧ ସାମାଜିକ ବିକାଶର ଧାରାକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରଗତିଶୀଳ, ମାନବିକ

ଓ ନ୍ୟାୟଯୁକ୍ତ କରୁଥାଏ ଅଥଚ ଅନ୍ୟ କେତେକ ବିଚାରବୋଧ ସମାଜକୁ କ୍ଷୟଶୀଳ, ଅମାନବିକ ଓ ଅନ୍ୟାୟଭିତ୍ତିକ କରିବାରେ ସହାୟକ ହେଉଥାଏ ।

ଏହି ପୃଷ୍ଠଭୂମିରେ ଆମ ସାମାଜିକ ଜୀବନ ପ୍ରବାହକୁ ଦୁଇଟି ମୌଳିକ ବିଶ୍ୱାସବୋଧ କିପରି ନାନା ଅବକ୍ଷୟ ଦିଗରେ ସହାୟକ ହୋଇଛି ତାହାର ସୂଚନା ଦିଆଯାଇପାରେ । ସେହି ଦୁଇଟି ବିଚାରବୋଧ ହେଲା ପାରଲୌକିକ ମାନସିକତା ଓ ଜାତିଆଣ ମନୋଭାବ । କହିବା ନିଷ୍ପ୍ରୟୋଜନ ଯେ ପାରଲୌକିକତା ଓ ଜାତିବାଦୀ ମାନସିକତା ଆମ ଜନଜୀବନରେ ଏତେ ବ୍ୟାପକ ଭାବେ ପୀଢ଼ି ପରେ ପୀଢ଼ି ଏପରି ସୁଦୃଢ଼ ଭିତ୍ତି ନେଇଛି ଯେ ତାହା ନାନା ଭାବରେ ଆମର ଅବକ୍ଷୟ ପାଇଁ ସହାୟକ ହୋଇଛି । ପୁନଶ୍ଚ ଏହି ଭାବନା ଓ ଏଥିରୁ ଉତ୍ପନ୍ନ ନାନା ଆନୁଷଙ୍ଗିକ ବ୍ୟବସ୍ଥା ସମାଜକୁ ନାନା ଭାବରେ ପୀଡ଼ିତ କରି ରଖି ଆସିଛି । ଏ ସତ୍ତ୍ୱେ ଏହାକୁ ଯଥାର୍ଥ ବୋଲି ଦର୍ଶାଇବାକୁ ନାନା ପ୍ରୟାସ ହୋଇଛି । ଏହାକୁ ଶାସ୍ତ୍ରୀୟ ସ୍ୱୀକୃତି ଦିଆଯାଇଛି, ଧାର୍ମିକ ପରମ୍ପରା ଓ ବିଶ୍ୱାସର ଅଙ୍ଗ କରାଯାଇଛି । ଫଳରେ ଏହା ଜନଜୀବନର ମର୍ମକୁ ଏପରି ଭେଦି ରହିଛି ଯେ ଏହାର ଦୂରୀକରଣ ସମ୍ଭବ ହେଉନାହିଁ । ଏକ ଜନଗୋଷ୍ଠୀର ଅବକ୍ଷୟ ଓ ସାମାଜିକ ଜୀବନ ପ୍ରବାହର ବୈଷମ୍ୟ ଯୁଗ ଯୁଗ ଧରି ଏହା ଦ୍ୱାରା ତିଷ୍ଠି ରହିଛି ।

ପାରଲୌକିକ ବିଶ୍ୱାସର ନିର୍ଯ୍ୟାସ ହେଉଛି ଜୀବନର ଘଟଣା ପ୍ରବାହ ଓ ସାମାଜିକ ବ୍ୟବସ୍ଥା ବିଧି ନିୟନ୍ତ୍ରିତ ଆଉ ପୂର୍ବନିର୍ଦ୍ଦିଷ୍ଟ । ଆମର ଜୀବନ ଦୁଇଦିନର ଖେଳ ମାତ୍ର । ଜୀବନର ସକଳ ପ୍ରାପ୍ତି, ଉତ୍ତରଣ ଅର୍ଥହୀନ । ସବୁ ସଂପର୍କ, ସମ୍ବନ୍ଧ କେବଳ ମାୟା । ଜୀବନର ସକଳ ସୁଖ ଆନନ୍ଦ ତୁଚ୍ଛ । ଏହି ଦୃଷ୍ଟିଭଙ୍ଗୀ ଗୋଟିଏ ଜାତିର ବିକାଶ, ସମୃଦ୍ଧି ଓ ମହତ୍ତ୍ୱର ସ୍ଥିତି ପାଇଁ ସମ୍ପୂର୍ଣ୍ଣ ପ୍ରତିକୂଳ । ଏହା ମଣିଷର ଦୁଃଖ, ଦୁର୍ଦ୍ଦଶା ପ୍ରତି ସ୍ପର୍ଶକାତରହୀନ । ସମାଜରେ ଯାହା କିଛି ଦୁଃଖ ଯନ୍ତ୍ରଣା ରହିଛି ତାହାକୁ ଦୂର କରିବାର ମାନବିକ ପ୍ରୟାସ ହିଁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ମଣିଷର ଚେଷ୍ଟାରେ ସମାଜ ଉନ୍ନତ, ପ୍ରଗତିଶୀଳ ହୋଇପାରେ - ଏହି ଆଦର୍ଶବୋଧ ପାରଲୌକିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । କାରଣ ପାରଲୌକିକତା ମାନବିକ ପ୍ରୟାସ ଓ ଇହଜୀବନକୁ ଗୁରୁତ୍ୱ ଦିଏ ନାହିଁ ସବୁ କିଛିକୁ ପୂର୍ବନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରିଥାଏ । ରୋଗ, ବ୍ୟାଧି ଜନିତ ଦୁଃଖ, ଯନ୍ତ୍ରଣା ହେଉ ବା ଦାରିଦ୍ର୍ୟ ଶୋଷଣ ଓ ବୈଷମ୍ୟ ହେଉ ଏହାକୁ ଦୂର କରି ମାନବିକ ମହତ୍ତ୍ୱ ଓ ମୂଲ୍ୟବୋଧର ବିକାଶ କରିବା ପାଇଁ ଏହା ଉଦାସୀନ । ଏହା ସାମାଜିକ ପ୍ରୟାସ ବା ଉତ୍କର୍ଷ ଦିଗରେ ପ୍ରେରଣା ଦିଏ ନାହିଁ ବରଂ ପାରଲୌକିକ କଳ୍ପନାର ଇନ୍ଦ୍ରଜାଲ ଭିତରେ ଚିନ୍ତାମାନସକୁ କବଳିତ କରିଥାଏ । ଏହା କର୍ମସଂସ୍କୃତି ବା ସାମାଜିକ ଅଙ୍ଗୀକାରବଦ୍ଧତା ପ୍ରତି ପ୍ରେରଣା ସୃଷ୍ଟି କରେନାହିଁ, ବରଂ ପୂଜା, ପାର୍ବଣ ଓ ଧାର୍ମିକ କର୍ମକାଣ୍ଡ ପାଳନ

ପାଇଁ ଜନଗଣଙ୍କୁ ଗଭୀର ପ୍ରଭାବିତ କରିଥାଏ । ବିଶ୍ୱାସ କରାଯାଏ ଯେ ଏହାହିଁ ଧର୍ମ ଓ ଏହାହିଁ ପାଳନ କଲେ ପାରଲୌକିକ ପ୍ରାପ୍ତି ହୋଇ ପାରିବ । ପାରଲୌକିକ ଜୀବନଦୃଷ୍ଟି ବ୍ୟକ୍ତିର ସାମୂହିକ ଚେତନାକୁ ନଷ୍ଟ କରିବା ସହିତ ବ୍ୟକ୍ତିକୁ ଅନ୍ୟ ଜଗତର ସ୍ୱପ୍ନ ଭିତରେ ବିଭୋର କରି ରଖିଥାଏ ।

ଏକଥା ସତ୍ୟ ଯେ ବ୍ୟକ୍ତି ମରଣଶୀଳ, କିନ୍ତୁ ସମାଜ, ଗୋଷ୍ଠୀ ଜୀବନ ଚିର ପ୍ରବାହମାନ । ବ୍ୟକ୍ତିମାନଙ୍କର ସାମାଜିକ ଅଙ୍ଗୀକାରବଦ୍ଧତା ଓ କର୍ମସଂସ୍କୃତି ଦ୍ୱାରା ହିଁ ସମାଜ ଉନ୍ନତ ହେବା ସମ୍ଭବ । ଏହା କିପରି ସମ୍ଭବ ତାହାର ଗୋଟିଏ ଉଦାହରଣ ନିଆଯାଉ । କୁଷ୍ଠରୋଗ ଏକ ପ୍ରାକୃତିକ ସ୍ଥିତିର ସୂଚନା ଦିଏ । ଯେଉଁ ସାମାଜିକ ଚେତନାରେ ବିଶ୍ୱାସ କରାଯାଏ ଯେ କୁଷ୍ଠରୋଗ ପାପର ପରିଣାମ ଓ ଏହା ଦୈବୀଦଣ୍ଡ, ସେଠାରେ ଜନଗଣ କୁଷ୍ଠରୋଗୀଙ୍କୁ ହୀନଦୃଷ୍ଟିରେ ଦେଖିବା ସମ୍ଭବ । ସେଠାରେ କୁଷ୍ଠରୋଗର କାରଣ ଖୋଜିବାର ଆବଶ୍ୟକତା ଅନୁଭବ ହେବ ନାହିଁ । ଅପରପକ୍ଷରେ ଯଦି ଏହି ଭାବନା ଆସିଥାଏ ଯେ ଯେକୌଣସି ରୋଗ ଏକ ପ୍ରାକୃତିକ ଅବସ୍ଥା, ଏହାର କାରଣ ରହିଛି ଓ ସେହି କାରଣକୁ ଜାଣିଲେ ତାହାର ନିରାକରଣ ସମ୍ଭବ । ସେହି ଭାବନାରୁ ଏହାର କାରଣ ଖୋଜି ଏହାର ଚିକିତ୍ସା ବାହାର କରିବା ଦ୍ୱାରା ଅଗଣିତ ରୋଗୀ ରୋଗରୁ ନିଷ୍କୃତି ପାଇବା ସହ ସେମାନଙ୍କ ମୁହଁରେ ହସ ଫୁଟିପାରିଛି । ସେହିପରି ହଇଜା, ବସନ୍ତ ବା ଯେକୌଣସି ରୋଗ ସମ୍ପର୍କରେ ପାରଲୌକିକ ଦୃଷ୍ଟି ଓ ମାନବିକ ଦୃଷ୍ଟି ଭିତରେ ମୌଳିକ ପାର୍ଥକ୍ୟ ରହିଛି । ପାରଲୌକିକ ଦୃଷ୍ଟି ଆତ୍ମା, ସ୍ୱର୍ଗ, ମୁକ୍ତି, ଜନ୍ମାନ୍ତର, ପାପ, ପ୍ରାୟଶ୍ଚିତ ଆଦି କଳ୍ପନାକୁ ଗୁରୁତ୍ୱ ଦେଇ ତାହାରି ଆଧାରରେ ନାନା ପରମ୍ପରା ଚଳଣି ସୃଷ୍ଟି କରିଛି । ଅପରପକ୍ଷରେ ବ୍ୟକ୍ତିଗତ ଆଉ ସାମୂହିକ ପ୍ରୟାସଦ୍ୱାରା ସାମାଜିକ ଜୀବନ ପ୍ରବାହରେ ସହୃଦୟତା ରହିବା ସହ ପ୍ରାକୃତିକ ଦୁଃଖ, ଦୁର୍ବିପାକକୁ ଦୂର କରିବା ସମ୍ଭବ ବୋଲି ମାନବିକ ଦୃଷ୍ଟି ଗୁରୁତ୍ୱ ଦେଇ ଆସିଛି ।

ଦ୍ୱିତୀୟ ବିଚ୍ଛେଦବୋଧ ଯାହା ଶହ ଶହ ବର୍ଷ ଧରି ଆମର ଜନଜୀବନକୁ ବିଭାଜିତ ଓ କଳୁଷିତ କରି ଆସିଛି ତାହା ହେଲା ଜାତିଆଣ ମନୋଭାବ । ଏହି ବ୍ୟବସ୍ଥା ସମାଜର ସାମୂହିକ ଚେତନାକୁ ବିଲୋପ କରିଛି । ସମାଜକୁ ନାନା ଭାବରେ ଭାଗ ଭାଗ କରିବା ସହିତ ବୈଷମ୍ୟ, ବିଭେଦକୁ ଧର୍ମୀୟ ସ୍ୱୀକୃତି ଦେଇଛି । ଏକ ବର୍ଗୀକୃତ ବୈଷମ୍ୟକୁ ସାମାଜିକ ଆଦର୍ଶ କରାଯାଇଛି । ଅଗଣିତ ମଣିଷଙ୍କୁ ଅସ୍ପୃଶ୍ୟ ଓ ଏପରିକି ଅଦୃଶ୍ୟ କହି ସେମାନଙ୍କୁ ଉପମାନବୀୟ ସ୍ତରରେ ରହିବାକୁ ବାଧ କରିଛି । ଏପରିକି ଜାତିପ୍ରଥା ଅଗଣିତ ମଣିଷଙ୍କୁ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ କରି ଆସିଛି । ଏହି ପ୍ରଥା ଯେତେ ନୀତିବିରୋଧୀ, ମାନବିକତା ବିରୋଧୀ ଓ ସଂସ୍କୃତି ବିରୋଧୀ ହେଲେ ମଧ୍ୟ ସମାଜର ମୁଷ୍ଟିମେୟ ଓ ପ୍ରଭାବଶାଳୀ ଉଚ୍ଚ ଶ୍ରେଣୀର ଲୋକ ଏହାକୁ ପବିତ୍ର ମନେ କରି

ଆସିଛନ୍ତି । ଏହା ବିରୁଦ୍ଧରେ ଯେତେବେଳେ କୌଣସି ସଂସ୍କାରମୂଳକ ଆଲୋଡ଼ନ ଆସିଛି ତାହା ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଛି ।ଏହା କେତେକ ରାଷ୍ଟ୍ରୀୟ ସଂହତି ଓ ମାନବବାଦୀ ଜୀବନଦର୍ଶନର ପ୍ରତିକୂଳ ହେଲେ ମଧ୍ୟ ଏହା ସାମାଜିକ ମନସ୍ତତ୍ତ୍ୱକୁ ଯୁଗ ଯୁଗ ଧରି କବଳିତ କରି ରଖିଛି ।

ସାମ୍ପ୍ରତିକ ଜୀବନ ପ୍ରବାହରେ ନାନା ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ତଥା ଗଣଶିକ୍ଷାର ପ୍ରସାର ଯୋଗୁ ସାମାଜିକ ଗତିଶୀଳତା ଯଥେଷ୍ଟ ବୃଦ୍ଧି ପାଇଛି । ପରିଣାମତଃ ଜାତିଆଣ ବ୍ୟବସ୍ଥାର କଠୋରତା ଅନେକ ହ୍ରାସ ପାଇଛି, ତଥାପି ବ୍ୟବସ୍ଥାଟି ସାମାଜିକ ଜୀବନ ପ୍ରବାହରୁ ଲୋପ ପାଇନାହିଁ । ଏବେ ବି ସମାଜରେ ଉଚ୍ଚ-ନୀଚ ଭେଦଭାବର ପରିସ୍ଥିତି ରହିଛି ଓ ତାହା ନୂଆ ନୂଆ ଅଭିବ୍ୟକ୍ତିରେ ପ୍ରକାଶିତ ହେଉଛି । ରାଜନୈତିକ ଗଣତନ୍ତ୍ର ସାମାଜିକ ଗଣତନ୍ତ୍ରର ଭିତ୍ତି ଉପରେ ହିଁ ସୁଦୃଢ଼ ହୋଇଥାଏ । ଯେଉଁଠି ସାମାଜିକ ବୈଷମ୍ୟ ଯୁଗ ଯୁଗ ଧରି ସାଂସ୍କୃତିକ ଚେତନାର ଅଙ୍ଗ ହୋଇଥାଏ, ସେଠାରେ ରାଜନୈତିକ ଗଣତନ୍ତ୍ର ନାନା ପ୍ରତିବନ୍ଧକର ସମ୍ମୁଖୀନ ହୁଏ ।ରାଜନୈତିକ ଗଣତନ୍ତ୍ରର ସଫଳତା ଅନେକାଂଶରେ ସାମାଜିକ ଜୀବନ ପ୍ରବାହରୁ ଉଦ୍ଭବ ହୋଇଥାଏ, ନଚେତ ଏହା କେବଳ ଔପଚାରିକତାରେ ସୀମିତ ରହେ, ଜନଜୀବନର ମର୍ମକୁ ଭେଦି ପାରେ ନାହିଁ ।

ଉପସଂହାରରେ, ପାରଲୌକିକ ଜୀବନ ଦୃଷ୍ଟି ଓ ଜାତିବାଦୀ ମାନସିକତା ସାମାଜିକ ବିକାଶ ଓ ସଂସ୍କୃତିସମ୍ପନ୍ନ ଜୀବନଧାରାର ପରିପନ୍ଥୀ । ଯେଉଁ ସାମାଜିକ ଜୀବନଧାରାରେ ଏହାର ପ୍ରଭାବ ଯେତେ ଅଧିକ ତାହା ସେତେ କ୍ଷୟଶୀଳ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶ ସାମୂହିକ ଜୀବନ ପ୍ରବାହକୁ ସୁଖମୟ, ପ୍ରୀତିମୟ, ନ୍ୟାୟଯୁକ୍ତ ଓ ମାନବିକ କରିବାକୁ ପ୍ରେରଣା ଦିଏ ତାହା ଉନ୍ନତ ମନେ ହୁଏ । ଗୋଟିଏ ସାଂସ୍କୃତିକ ପରିବେଶ ଗୋଷ୍ଠୀ ଜୀବନର ବୌଦ୍ଧିକ ଓ ନୈତିକ ଉତ୍ତରଣ ପାଇଁ ଅଭିନିବେଶ ଯୋଗାଇବା ବେଳେ ଅନ୍ୟ ସାଂସ୍କୃତିକ ପରିବେଶଟି ସାମାଜିକ ବୈଷମ୍ୟ ଓ କ୍ଷୟଶୀଳତା ପାଇଁ ଅନୁକୂଳ ମନେହୁଏ । ଗୋଟିଏ ଉତ୍କର୍ଷ ପାଇଁ ଅଭିପ୍ରେତ ହେବା ବେଳେ ଅନ୍ୟଟି ଅବକ୍ଷୟର ଆଧାର ହୋଇଥାଏ । (୧୫.୬.୧୧)



# ମଣିଷର ସ୍ୱରୂପ

ମଣିଷର ସ୍ୱରୂପ ବା ପ୍ରବୃତ୍ତି କହିଲେ କ'ଣ ବୁଝାଏ ? ମଣିଷର ପ୍ରକୃତି ସମ୍ପର୍କରେ କିଛି ସାର୍ବଜନୀନ ସିଦ୍ଧାନ୍ତ ରହିଛି କି ? ସେହିପରି ମଣିଷର ସଂଜ୍ଞା କ'ଣ ହୋଇପାରେ ? ଏହି ପ୍ରଶ୍ନଗୁଡ଼ିକ ଯେତେ ସରଳ ମନେ ହେଲେ ବି ତାର ଉତ୍ତର ଆଦୌ ଅବିବାଦୀୟ ବା ସରଳ ମନେ ହୁଏନାହିଁ । ତେବେ ମଣିଷର ସ୍ୱରୂପ ବା ପ୍ରକୃତି ସମ୍ପର୍କରେ ବିଭିନ୍ନ ବିଶ୍ୱାସ, ବ୍ୟାଖ୍ୟା, ଅନୁଶୀଳନ ଧର୍ମରେ, ବିଜ୍ଞାନରେ, ସାହିତ୍ୟରେ ଓ ଦର୍ଶନରେ କରାଯାଇଥିବା ମନେହୁଏ । ପୁନଶ୍ଚ ଧାର୍ମିକ ବିଶ୍ୱାସ ପୃଷ୍ଠଭୂମିରେ ମଣିଷର ସ୍ୱରୂପ, ଜୀବନର ଲକ୍ଷ୍ୟ, ଜୀବନର ଅନ୍ତିମ ପରିଣତି ଇତ୍ୟାଦି ପ୍ରସଙ୍ଗ ଉପରେ ସହମତି ଦେଖାଯାଏ ନାହିଁ । ପ୍ରତ୍ୟେକ ଧର୍ମ ନିଜର ବିଶ୍ୱାସ, ଜଗଦ୍‌ଦୃଷ୍ଟି ପୃଷ୍ଠଭୂମିରେ ଜୀବନର ନିର୍ଦ୍ଦିଷ୍ଟ ଅବବୋଧ କରିବା ଦେଖାଯାଏ । ଧର୍ମମାନଙ୍କର ତୁଳନାତ୍ମକ ବିଶ୍ଳେଷଣରୁ ମଣିଷର ସ୍ୱରୂପ, ଜୀବନର ଲକ୍ଷ୍ୟ ଇତ୍ୟାଦି ପ୍ରଶ୍ନ ଉପରେ ନାନା ବିରୋଧାତ୍ମକ ମତ ଦେଖିବାକୁ ମିଳେ । ଗୋଟିଏ ଧର୍ମର ମତ ଅନୁଯାୟୀ ମଣିଷମାନେ ହିଁ ପାପୀ । ଆଦି ମାନବର ପାପରୁ ମଣିଷର ସୃଷ୍ଟି । ପୁନଶ୍ଚ ଧାର୍ମିକ ବିଶ୍ୱାସ ଅନୁଯାୟୀ ଆଦିମଣିଷକୁ ଈଶ୍ୱର ନିଜ ସ୍ୱରୂପରେ ସୃଷ୍ଟି କରିଛନ୍ତି । ମଣିଷ ଜୀବନର ଅନ୍ତିମ ଲକ୍ଷ୍ୟକୁ ଈଶ୍ୱର ହିଁ ନିରୂପିତ କରିଛନ୍ତି । ଅନ୍ୟ ଏକ ଧାର୍ମିକ ପରମ୍ପରାରେ ବିଶ୍ୱାସ କରାଯାଇଛି ଯେ, ମଣିଷ ହେଉଛି ଅମୃତର ସନ୍ତାନ । ମଣିଷ ସ୍ୱରୂପରେ ବ୍ରହ୍ମ । କେତେକ ଧର୍ମରେ ଜନ୍ମାନ୍ତର ବାଦକୁ ଗ୍ରହଣ କରାଯାଏ, ଅନ୍ୟ କେତେକ ଧର୍ମରେ ଏହାକୁ ସ୍ୱୀକାର କରାଯାଏ ନାହିଁ । କେତେକ ଧର୍ମରେ ସ୍ୱର୍ଗ, ନରକର ଭାବନା ରହିଛି ଓ ମୃତ୍ୟୁ ପରେ ବ୍ୟକ୍ତି ସ୍ୱର୍ଗପ୍ରାପ୍ତି ହେବ ବା ନରକ ପ୍ରାପ୍ତ ହେବ ବୋଲି କଳ୍ପନା ରହିଛି । ଅନ୍ୟ ଧର୍ମରେ ସ୍ୱର୍ଗ, ନରକର କଥା କୁହାନଯାଇ ବ୍ୟକ୍ତି ଜନ୍ମ ମୃତ୍ୟୁଚକ୍ରରେ ଘୂରି ଘୂରି ମୁକ୍ତିଦ୍ୱାରା ଈଶ୍ୱର ପ୍ରାପ୍ତି ହେବ ବୋଲି କଳ୍ପନା କରାଯାଇଛି । ଏସବୁ ଗୁଡ଼ିକ ପ୍ରାଚୀନ ଯୁଗର ବିଶ୍ୱାସ ମାତ୍ର । ପ୍ରତ୍ୟେକ ଧର୍ମ, ସଂସ୍କୃତି ଭିତରେ ଜୀବନର ସ୍ୱରୂପ ଓ ଲକ୍ଷ୍ୟ ନେଇ ପ୍ରାଚୀନ କାଳରୁ ନାନା ବିଶ୍ୱାସ, କଳ୍ପନାମାନ ରହିଆସିଛି ଓ ସେସବୁ ଏକ ସମାଜର ବୌଦ୍ଧିକ, ସାଂସ୍କୃତିକ ଜୀବନ ଧାରାକୁ ପ୍ରଭାବିତ କରିଆସିଛି ।

ଶରୀର ବିଜ୍ଞାନ, ପ୍ରାଣୀବିଜ୍ଞାନ, ମନୋବିଜ୍ଞାନ ଓ କେତେକ ସମାଜ ବିଜ୍ଞାନ, ବୈଜ୍ଞାନିକ ମାନଦଣ୍ଡରୁ ମଣିଷ ଜୀବନର ବ୍ୟାଖ୍ୟା କରିବା ବି ଦେଖାଯାଏ । ଏ ପ୍ରତ୍ୟେକ କ୍ଷେତ୍ରରେ ମଣିଷ ସ୍ୱଭାବରେ ଜଟିଳତା, ପାରିବେଶିକ ପରିସ୍ଥିତିର ପ୍ରଭାବ, ଶିକ୍ଷା, ସାଂସ୍କୃତିକ ବିବିଧତା ଦେଇ ବ୍ୟକ୍ତି ଚରିତ୍ରର ବିକାଶ ଉପରେ ଆଲୋଚନା କରିବା ଦେଖାଯାଏ । ପୁନଶ୍ଚ ଶାରୀରିକ ବିବର୍ତ୍ତନ ଓ ମାନସିକ ପ୍ରକ୍ରିୟା ମଧ୍ୟ ଦେଇ ବ୍ୟକ୍ତି ସ୍ୱଭାବ ମଧ୍ୟ ପରିବର୍ତ୍ତିତ ହୋଇଆସିଛି । ତେବେ ଶାରୀରିକ ବିବର୍ତ୍ତନ ଏତେ ମନ୍ଥର ଯେ, ଗୋଟିଏ ପିଢି ବା କେତୋଟି ପିଢ଼ିରେ ଏହି ପରିବର୍ତ୍ତନ ଧରାପଡେ ନାହିଁ । ବରଂ ହଜାର ହଜାର ବର୍ଷ ଧରି ପରିବର୍ତ୍ତନ ପ୍ରକ୍ରିୟାରେ ଶାରୀରିକ ଓ ମାନସିକ ପରିବର୍ତ୍ତନ ମଧ୍ୟ ହେବା ଜଣାଯାଏ । ସାମାଜିକ ପରିବେଶର ବଳିଷ୍ଠ ପ୍ରଭାବ ବ୍ୟକ୍ତି ସ୍ୱଭାବକୁ ପ୍ରଭାବିତ କରିଥାଏ । ଜୀବନ, ସମାଜ ଓ ବୃହତ୍ତର ମାନବଜାତି ଏପରିକି ବିଶ୍ୱ ପ୍ରତି ବ୍ୟକ୍ତିର ଦୃଷ୍ଟିଭଙ୍ଗୀକୁ ସାମାଜିକ ପରିବେଶ ଗଭୀର ଭାବେ ପ୍ରଭାବିତ କରିଥାଏ । ନୃ-ତତ୍ତ୍ୱ ବା ମାନବ ବିଜ୍ଞାନ ସାମାଜିକ ବିକାଶର ଧାରାକୁ ଅନୁଶୀଳନ କରି ତାହା କିପରି ବ୍ୟକ୍ତିର ଜୀବନଧାରାକୁ ବିଭିନ୍ନ ସମାଜରେ ନିୟନ୍ତ୍ରିତ ଓ ପ୍ରଭାବିତ କରିଥାଏ ତାହା ଦର୍ଶାଇଥାଏ । ସେହିପରି ମନୋବିଜ୍ଞାନ ବ୍ୟକ୍ତିର ବ୍ୟବହାର, ମାନସିକ ଅବସ୍ଥା, ସୁସ୍ଥମନ-ଅସୁସ୍ଥମନର କାରଣ ଓ ପାର୍ଥକ୍ୟ ଇତ୍ୟାଦିକୁ ମଧ୍ୟ ନାନା ଭାବରେ ବିଶ୍ଳେଷଣ କରିଥାଏ ।

ସମାଜ ବିଜ୍ଞାନ ସାମାଜିକ ଜୀବନ ପ୍ରବାହରେ ଥିବା ବିଭିନ୍ନ ବ୍ୟବସ୍ଥା, ଅନୁଷ୍ଠାନ, ସଭ୍ୟତା, ସଂସ୍କୃତି, ଆଦର୍ଶଗୁଡ଼ିକ କିପରି ବିକାଶ ଲାଭ କରିଛି ସେସବୁ ବିଶ୍ଳେଷଣ କରିଥାଏ । ଶରୀର ବିଜ୍ଞାନ, ଜୀବବିଜ୍ଞାନ, ଶରୀରବିଧାନ ବିଜ୍ଞାନ, ମନୋବିଜ୍ଞାନ ପ୍ରଭୃତି ମଣିଷର ଶାରୀରିକ ମାନସିକ କ୍ରିୟା, ପ୍ରକ୍ରିୟା ବ୍ୟବହାରକୁ ଅନୁଶୀଳନ କରିଥାନ୍ତି । ସେହିପରି ନୃତତ୍ତ୍ୱ, ସମାଜ ବିଜ୍ଞାନ ଇତ୍ୟାଦି ସମାଜର ପ୍ରଗତି, ମୂଲ୍ୟବୋଧ, ଧର୍ମ, ସଂସ୍କୃତି, ରାଜନୀତି, ଅର୍ଥନୀତି ଇତ୍ୟାଦି କିପରି ବିକାଶଲାଭ କରି ଗୋଷ୍ଠୀ ଜୀବନକୁ ସୁଦୃଢ଼ ଭିତ୍ତି ଦେଇଛି ସେସବୁକୁ ବୈଜ୍ଞାନିକ ପ୍ରଣାଳୀରେ ଅଧ୍ୟୟନ କରିଥାନ୍ତି । ଦାର୍ଶନିକମାନେ ଜୀବନର ଲକ୍ଷ୍ୟ, ପୁରୁଷାର୍ଥ ଗୁଣାତ୍ମକ ଜୀବନର ଭିତ୍ତି ଇତ୍ୟାଦି ପ୍ରସଙ୍ଗକୁ ଗମ୍ଭୀରତାର ସହ ବିଶ୍ଳେଷଣ କରିଥାନ୍ତି । ଏସବୁ ମଧ୍ୟ ଦେଇ ମଣିଷର ସ୍ୱରୂପ ଓ ଜୀବନର ମୂଲ୍ୟ ନେଇ ନାନା ତତ୍ତ୍ୱ, ସିଦ୍ଧାନ୍ତର ବିକାଶ ହୋଇଛି ।

ଦାର୍ଶନିକମାନେ ସାଧାରଣତଃ କୌଣସି ପ୍ରସଙ୍ଗ ଉପରେ ମୌଳିକ ଓ ଗମ୍ଭୀର ପ୍ରଶ୍ନ ଉଠାଇଥାନ୍ତି । ଏଠାରେ ବୈଜ୍ଞାନିକ ବ୍ୟାଖ୍ୟା ଓ ଦାର୍ଶନିକ ଅନୁଶୀଳନ ମଧ୍ୟରେ ପାର୍ଥକ୍ୟ କରାଯାଇପାରେ । ବିଜ୍ଞାନ ଓ ଦର୍ଶନର ପରିସର ଭିତରେ ପାର୍ଥକ୍ୟ ରହିଛି ।

ବୈଜ୍ଞାନିକ ଜ୍ଞାନ ବସ୍ତୁନିଷ୍ଠ । ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଦ୍ୱାରା ଘଟଣାମାନଙ୍କୁ ତଥ୍ୟ ଆଧାରରେ ବ୍ୟାଖ୍ୟା କରିବା ବିଜ୍ଞାନର ଉଦ୍ଦେଶ୍ୟ । ବିଜ୍ଞାନରେ ତଥ୍ୟମାନଙ୍କୁ କେତେକ ଶ୍ରେଣୀରେ ବିଭାଜନ କରି ସିଦ୍ଧାନ୍ତ ଓ ନିୟମର ଅବତାରଣା ଦ୍ୱାରା ଘଟଣାମାନଙ୍କୁ ବ୍ୟାଖ୍ୟା କରାଯାଏ । କାର୍ଯ୍ୟକାରଣ ନିୟମ, ବ୍ୟତିକ୍ରମ ବିହୀନ ଶୃଙ୍ଖଳା, ପ୍ରାକୃତିକ ଏକରୂପତା ଇତ୍ୟାଦି ଆଧାରରେ ବୈଜ୍ଞାନିକ ଜ୍ଞାନର ବିକାଶ ହୋଇଥାଏ । ବିଜ୍ଞାନ ପ୍ରଗତିଶୀଳ ଜ୍ଞାନ ଦେଇଥାଏ । ଅପରପକ୍ଷରେ ଦାର୍ଶନିକମାନେ ଘଟଣା ବା ତଥ୍ୟମାନଙ୍କର ବ୍ୟାଖ୍ୟା କରନ୍ତି ନାହିଁ । ସେମାନେ ଜ୍ଞାନର ଆଧାର, ପଦ୍ଧତି, ମୌଳିକ ପ୍ରତ୍ୟୟମାନଙ୍କର ବିଶ୍ଳେଷଣ ଓ ତର୍କର ନିୟମ ଉପରେ ମୁଖ୍ୟତଃ ଆଲୋଚନା କରିଥାନ୍ତି । ଅବଶ୍ୟ ଦର୍ଶନର ବିଷୟବସ୍ତୁ ଓ ଅଭିମୁଖ୍ୟ ଯୁଗକୁ ଯୁଗ ବଦଳି ଚାଲିଛି । ତେବେ ଦର୍ଶନ ମୁଖ୍ୟତଃ ବୌଦ୍ଧିକ ସ୍ପଷ୍ଟତା ଓ ପ୍ରତ୍ୟୟଗତ ଅନୁଶୀଳନ ଉପରେ ଅଧିକ ପ୍ରାଧାନ୍ୟ ଦେଇଆସିଛି । ସତ୍ୟ, ନ୍ୟାୟ, ଜ୍ଞାନ, ବୈଧତା, ସଂଜ୍ଞା, ସତ୍ତା, ମୂଲ୍ୟବୋଧ ଇତ୍ୟାଦି କହିଲେ ପ୍ରକୃତରେ କ'ଣ ବୁଝାଏ ସେସବୁ ପ୍ରତ୍ୟୟର ବିଶ୍ଳେଷଣ ଦାର୍ଶନିକମାନେ କରି ଆସିଛନ୍ତି । ସୁତରାଂ ଦର୍ଶନର ପରିସର ବିଜ୍ଞାନର ପରିସରଠାରୁ ପୃଥକ୍ । ଦେହରେ ରକ୍ତ ସଞ୍ଚାଳନ କିପରି ହୁଏ ଏକ ବୈଜ୍ଞାନିକ ପ୍ରଶ୍ନ । କିନ୍ତୁ ଜୀବନର ଘଟଣା ପ୍ରବାହ ପୂର୍ବନିର୍ଦ୍ଦିଷ୍ଟ କି ଏକ ଦାର୍ଶନିକ ପ୍ରଶ୍ନ । ମାଟିର ଉତ୍ପତ୍ତି କିପରି ହୁଏ ଏକ ବୈଜ୍ଞାନିକ ପ୍ରଶ୍ନ, କିନ୍ତୁ ଜଗତର ଉତ୍ପତ୍ତି କିଛି ଉଦ୍ଦେଶ୍ୟ ପୂରଣ କରେ କି ଏକ ଦାର୍ଶନିକ ପ୍ରଶ୍ନ । ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପ୍ରଗତିଶୀଳ, କାର୍ଯ୍ୟକାରଣ ନିୟମ ଆଧାରିତ, ସାର୍ବଜନୀନ ଓ ପରିବର୍ତ୍ତନ ସାପେକ୍ଷ । ଦାର୍ଶନିକ ଜ୍ଞାନ ପ୍ରତ୍ୟୟଗତ, ଅନୁଶୀଳନାତ୍ମକ ବା ବିଶ୍ଳେଷଣାତ୍ମକ ।

ତେବେ ମଣିଷର ସ୍ୱରୂପ ନେଇ ବିଭିନ୍ନ ସ୍ତରରେ ହୋଇଥିବା ଆଲୋଚନାମାନଙ୍କୁ ନାନା ଭାବରେ ବିଭକ୍ତ କରାଯାଇପାରେ । ଧର୍ମ କ୍ଷେତ୍ରରେ ମଣିଷର ସ୍ୱରୂପ ଓ ଜୀବନର ଲକ୍ଷ୍ୟ ନେଇ ଯେଉଁ ଆଲୋଚନାମାନ ହୋଇଛି ତାହା ତାତ୍ତ୍ୱିକ ଓ କଳ୍ପନା ଆଧାରିତ । ଜୀବବିଜ୍ଞାନ, ଶରୀର ବିଜ୍ଞାନ, ମନୋବିଜ୍ଞାନ, ଇତ୍ୟାଦି ସ୍ତରରେ ଜୀବନର ସ୍ୱରୂପ ସମ୍ବନ୍ଧୀୟ ଆଲୋଚନା ବିଜ୍ଞାନ-ଭିତ୍ତିକ । ପୁନଶ୍ଚ ସମାଜ ବିଜ୍ଞାନ ନୃତତ୍ତ୍ୱ, ରାଜନୀତି ବିଜ୍ଞାନ, ଅର୍ଥନୀତି ଇତ୍ୟାଦି ସ୍ତରରେ ସାମାଜିକ, ସାଂସ୍କୃତିକ ବିକାଶଧାରାରେ ମଣିଷର ସ୍ୱରୂପ ଓ ଜୀବନର ଲକ୍ଷ୍ୟ ଇତ୍ୟାଦିକୁ ବ୍ୟାଖ୍ୟା କରାଯାଏ । ଜୀବନର ଗତି, ପରିଣତି କିପରି ସମାଜକୈନ୍ଦ୍ରିକ ଶିକ୍ଷା, ପରମ୍ପରା, ସାଂସ୍କୃତିକ ପରିବେଶ, ଅର୍ଥନୀତି ଇତ୍ୟାଦି ଦ୍ୱାରା ପ୍ରଭାବିତ ତାହାର ବିଶ୍ଳେଷଣ କରାଯାଏ । ଦାର୍ଶନିକମାନେ ଜୀବନର ମୂଲ୍ୟ, ଗୁଣାତ୍ମକ ଜୀବନର ଭିତ୍ତି, ଉତ୍ତମ

ଜୀବନର ମାନଦଣ୍ଡ ଇତ୍ୟାଦି ବିଷୟ ଉପରେ ବୌଦ୍ଧିକ ବିଚାର ସୃଷ୍ଟି କରିଥାନ୍ତି । ମଣିଷର ସ୍ୱରୂପ ଓ ଜୀବନର ମୂଲ୍ୟାୟନ ନେଇ ଏହିପରି ନାନା ବୌଦ୍ଧିକ, କାଳ୍ପନିକ, ତାତ୍ତ୍ୱିକ ବ୍ୟାଖ୍ୟାମାନ ହେବା ଦେଖାଯାଏ । ସେହିପରି ସାହିତ୍ୟରେ ମଣିଷ ଜୀବନର ସୁଖ, ଦୁଃଖ ଦ୍ୱନ୍ଦ୍ୱ, ସ୍ୱପ୍ନ, ସ୍ୱାର୍ଥପରତା ମହାନୁଭବତା ଇତ୍ୟାଦିକୁ କାଳ୍ପନିକ ଚରିତ୍ର ମାଧ୍ୟମରେ ଲେଖକ ପ୍ରକାଶ କରିଥାଏ । ଜଣେ ସାହିତ୍ୟିକର ସୃଷ୍ଟି ଭିତରେ ଜୀବନର ଲକ୍ଷ୍ୟ, ମଣିଷର ସ୍ୱରୂପ ନେଇ ନାନା ସୃଜନାତ୍ମକ ଓ ଆବେଗାତ୍ମକ ଅଭିବ୍ୟକ୍ତି ଦେଖିବାକୁ ମିଳେ ।

ତେବେ ମଣିଷର ସ୍ୱରୂପ ଓ ଜୀବନର ଉଦ୍ଦେଶ୍ୟ ସଂପର୍କରେ ନାନା ବିଚାର ଓ ପର୍ଯ୍ୟାଲୋଚନା ଭିତରେ କେତେକ ମୌଳିକ ପ୍ରଶ୍ନ ମଣିଷ ପାଇଁ ସବୁ ସମୟରେ ବେଶ୍ କୌତୂହଳତା ସୃଷ୍ଟି କରିଛି । ଆମେ କିପରି ଅର୍ଥପୂର୍ଣ୍ଣ ଜୀବନଟିଏ ବଞ୍ଚିବା ? ଆମର ଗୋଷ୍ଠୀ ଜୀବନ ବା ସମାଜ କିପରି ହେଲେ ଭଲ ହୁଅନ୍ତା ? ମଣିଷ ସମାଜ କିପରି ହେବା ଆମେ ଚାହୁଁ ?

ଏହି ପ୍ରଶ୍ନଗୁଡ଼ିକ ଉପରେ ଯେତେ ଚିନ୍ତା ଓ ଭାବନା ବ୍ୟକ୍ତ କଲେ ବି ତାହା ସବୁବେଳେ ଅସମାପ୍ତ ମନେ ହେବ । ମଣିଷ ସମାଜର ଇତିହାସରେ ଜଣେ ସକ୍ରେଟିସ୍, ଗୌତମ ବୁଦ୍ଧ, କନଫ୍ୟୁସିଅସ୍, ମାର୍କସ, ଗାନ୍ଧୀ ବା ଏହିପରି କେତେ ମନୀଷୀ ଜୀବନ, ସମାଜ ଓ ବିଶ୍ୱ ପାଇଁ କେତେ ମହତ୍ ସ୍ୱପ୍ନ ପ୍ରକାଶ କରିଆସିଛନ୍ତି । ସକ୍ରେଟିସ୍ ଗୁଣାତ୍ମକ ଓ ନ୍ୟାୟଭିତ୍ତିକ ସମାଜ ପାଇଁ, ଗୌତମ ବୁଦ୍ଧ ବିଋରଶୀଳ ଓ ନୈତିକ ଜୀବନ ପାଇଁ, କନଫ୍ୟୁସିଅସ୍ ପ୍ରତ୍ୟେକ ମଣିଷ ସ୍ୱାର୍ଥପରତାର ଊର୍ଦ୍ଧ୍ୱରେ ଏକ ମହନୀୟ ଜୀବନ ବଞ୍ଚିବାର ସମ୍ଭାବନା ନେଇ, କାର୍ଲମାର୍କସ୍ ଏକ ଶ୍ରେଣୀମୁକ୍ତ ଶୋଷଣହୀନ ସମାଜଦ୍ୱାରା ବ୍ୟକ୍ତିର ସର୍ବାଙ୍ଗୀନ ଉନ୍ନତି ନେଇ ଓ ଗାନ୍ଧୀ ଏକ ଅହିଂସାଭିତ୍ତିକ ସତ୍ୟାଧାରିତ ଜୀବନ ପାଇଁ କେତେ କେତେ ପ୍ରେରଣା ଯୋଗାଇଛନ୍ତି । ସେହିପରି ପ୍ରତ୍ୟେକ ସଂସ୍କୃତିରେ ଅନେକ ବିଚାରଶୀଳ ଓ ପ୍ରଜ୍ଞାବାନ୍ ବ୍ୟକ୍ତି ମହତ୍ତର ଜୀବନ, ଉନ୍ନତ ସମାଜ ଓ ପ୍ରୀତିଭରା ବିଶ୍ୱର କଳ୍ପନା କରିଛନ୍ତି ।

ତେବେ ଜୀବନର ଗୁଣାତ୍ମକ ମାନ ଓ ଏକ ଉନ୍ନତ ସାମାଜିକ ବ୍ୟବସ୍ଥା ମଣିଷର ପ୍ରୟାସଦ୍ୱାରା ବିକଶିତ ହୋଇପାରିବ । କେଉଁ କାଳ୍ପନିକ ଦିଅଁ ଦେବତା, ଈଶ୍ୱର ଏହା ଦେବେ ନାହିଁ । ସମାଜର ସାମଗ୍ରିକ ବିକାଶଧାରାରେ ମଣିଷର ଜୀବନ ଓ ମୂଲ୍ୟ ଅଧିକ ଅର୍ଥପୂର୍ଣ୍ଣ ହୋଇପାରିବ । ମଣିଷ ଭିତରେ ପଶୁତ୍ୱ ରହିଛି ଓ ମହତ୍ତର ସମ୍ଭାବନା ରହିଛି । ବ୍ୟକ୍ତିର ମହତ୍ତର ସମ୍ଭାବନାକୁ ଋଦ୍ଧିମନ୍ତ କରିବାରେ ସାମାଜିକ

ବ୍ୟବସ୍ଥା ଓ ପରିବେଶର ପ୍ରାଧାନ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଉଚ୍ଚ ନାଗରିକ ଶୃଙ୍ଖଳା ଓ ସଭ୍ୟ ମୂଲ୍ୟବୋଧର ବ୍ୟାପକତା ଥିବା ଏକ ସାମାଜିକ ପରିବେଶରେ ବ୍ୟକ୍ତିର ଅର୍ଥପୂର୍ଣ୍ଣ ଜୀବନଧାରଣ ଓ ଜୀବନର ଗୁଣାତ୍ମକ ବିକାଶ ସମ୍ଭବ ହୋଇଥାଏ । ପରନ୍ତୁ ଯେଉଁ ସାମାଜିକ ପରିବେଶରେ ଭେଦଭାବ, ଅବକ୍ଷୟ ଓ ଅପସଂସ୍କୃତିର ପ୍ରାଧାନ୍ୟ ରହିଥାଏ ସେଠାରେ ଜୀବନର ମାନ ନ୍ୟୂନ ହୋଇରହେ । ମୋଟ ଉପରେ କହିଲେ ବ୍ୟକ୍ତି ଚରିତ୍ର ଓ ମାନସିକତାକୁ ସାମାଜିକ ପରିବେଶ ଅନେକାଂଶରେ ପ୍ରଭାବିତ କରିଥାଏ । (୫.୭.୧୧)



# ମଣିଷର ସଂଜ୍ଞା

ମଣିଷର ସଂଜ୍ଞା ଦେଇହେବ କି ? ମଣିଷର ସଂଜ୍ଞା କ'ଣ ହୋଇପାରେ ? ଏହି ପ୍ରସଙ୍ଗ ଉପରେ ଦାର୍ଶନିକମାନେ ଗମ୍ଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ତେବେ ଏହି ପ୍ରସଙ୍ଗଟି ପ୍ରାଚୀନ ଗ୍ରୀକ୍ ଦର୍ଶନ ପରମ୍ପରାରେ ପ୍ରଥମେ ଉଠିଥିବା ମନେହୁଏ । ଏକଥା ସତ୍ୟ ଯେ, ପାଶ୍ଚାତ୍ୟ ଦର୍ଶନ ଇତିହାସକୁ ଗ୍ରୀକ୍ ଦାର୍ଶନିକମାନଙ୍କର ମୌଳିକ ଅବଦାନ ରହିଛି । କେବଳ ଦର୍ଶନ ନୁହେଁ, ମଣିଷର ଚିନ୍ତା ରାଜ୍ୟକୁ ତଥା ସଭ୍ୟତାକୁ ପ୍ରାଚୀନ ଗ୍ରୀକ୍ ସଭ୍ୟତାର ଅବଦାନ ଅତୁଳନୀୟ । ଚିନ୍ତା ରାଜ୍ୟକୁ ହେଉ କିମ୍ବା ସଭ୍ୟ ମୂଲ୍ୟବୋଧର ବିକାଶ କ୍ଷେତ୍ରରେ ହେଉ ଆଧୁନିକ ମଣିଷକୁ ପ୍ରେରଣା ଦେଲାଭଳି ବହୁ ଉପାଦାନ ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ ରହିଛି ।

ସତ୍ୟ, ନ୍ୟାୟ, ଜ୍ଞାନ, ବୈଧତା, ସୌନ୍ଦର୍ଯ୍ୟ, ପ୍ରେମ ଇତ୍ୟାଦି ମୌଳିକ ପ୍ରତ୍ୟୟମାନଙ୍କର ସଂଜ୍ଞା ବା ବିଶ୍ଳେଷଣ କିପରି କରାଯିବ ସେ ନେଇ ଗ୍ରୀକ୍ ଦାର୍ଶନିକମାନେ ବିଚାରବିମର୍ଶ କରିଥିବା ମନେହୁଏ । ଏହି ପରିପ୍ରେକ୍ଷୀରେ ମଣିଷର ସଂଜ୍ଞା କ'ଣ ହୋଇପାରେ ସେ ନେଇ ପ୍ଲେଟୋ ବିଚାର ବ୍ୟକ୍ତ କରିଥିଲେ । ଦାର୍ଶନିକ ପ୍ଲେଟୋ ପ୍ରଥମେ ଏକ ଏକାଡେମୀ (ଶିକ୍ଷାନୁଷ୍ଠାନ) ସ୍ଥାପନ କରି ସେଠାରେ ବିଭିନ୍ନ ବୌଦ୍ଧିକ ପ୍ରସଙ୍ଗ ଉପରେ ଚର୍ଚ୍ଚା କରିବାକୁ ପ୍ରୟାସ କରିଥିଲେ । ଗ୍ରୀସର ବିଭିନ୍ନ ଭାଗରୁ ଜ୍ଞାନପିପାସୁ ବିଦ୍ୟାର୍ଥୀମାନେ ପ୍ଲେଟୋଙ୍କ ଏକାଡେମୀର ଛାତ୍ର ଥିଲେ । ଏକଦା ପ୍ରଶ୍ନ ଉଠିଲା, ମଣିଷର ସଂଜ୍ଞା କ'ଣ ? ପ୍ଲେଟୋ ତାଙ୍କର ଶ୍ରେଣୀରେ କହିଲେ ଯେ 'ମଣିଷ ଏକ ପକ୍ଷବିହୀନ ଦୁଇପାଦ ବିଶିଷ୍ଟ ପ୍ରାଣୀ' । ଏହାପରେ ତାଙ୍କର ଛାତ୍ରମାନେ ଏହା ଉପରେ ଗମ୍ଭୀର ଚିନ୍ତା ପ୍ରକଟ କଲେ । ସମ୍ଭବତଃ ପ୍ଲେଟୋଙ୍କ ଏକାଡେମୀରେ ଛାତ୍ରଥିବା ଡାଓଜେନିସ ଏକ କୁକୁଡ଼ାର ପକ୍ଷ ଛେଦନ କରି ତାକୁ ଆଣି ଦେଖାଇ କହିଲେ-ଏହା ତେବେ ଏକ ମଣିଷ । କୁହାଯାଏ ଡାଓଜେନିସଙ୍କର ଏହି ଘଟଣାରେ ସମସ୍ତ ଛାତ୍ର ହସି ଉଠିଲେ ଓ ପ୍ରତ୍ୟୁତ୍ପନ୍ନମତି ପ୍ଲେଟୋ କହିଲେ -ମଣିଷ ହସିପାରୁଥିବା ଏକ ଦୁଇପାଦ ବିଶିଷ୍ଟ ପ୍ରାଣୀ । ତେବେ ଏହି ଘଟଣା ପ୍ଲେଟୋଙ୍କ ଏକାଡେମୀରେ ଛାତ୍ରଥିବା ଆରିଷ୍ଟଟଲଙ୍କୁ ଏ ବିଷୟରେ ଚିନ୍ତା କରିବାକୁ ପ୍ରେରଣା ଯୋଗାଇଥିଲା । ଆରିଷ୍ଟଟଲ ଭାବିଲେ ଯେ ମଣିଷର ସଂଜ୍ଞା ଦେବା ପୂର୍ବରୁ ପ୍ରଥମେ ସଂଜ୍ଞା କ'ଣ ଓ ସଂଜ୍ଞାର

ନିୟମ କ'ଣ ତାହା ସ୍ଥିର କରାଯାଉ । ଏହି ଭାବନାକୁ ନେଇ ସେ ସଂଜ୍ଞାର ଅର୍ଥ ଓ ନିୟମକୁ ନେଇ ବ୍ୟାଖ୍ୟା କଲେ । ସେ ସଂଜ୍ଞାର ସ୍ୱରୂପ ଓ ନିୟମ ବିଷୟରେ ଯେଉଁ ସିଦ୍ଧାନ୍ତ ଦେଲେ ସେ ଅନୁଯାୟୀ କେବଳ ଶ୍ରେଣୀବାଚକ ଶବ୍ଦ ବା ସାମାନ୍ୟ ପଦମାନଙ୍କର ସଂଜ୍ଞା ଦିଆଯିବା ସମ୍ଭବ । ଅବଶ୍ୟ ପରବର୍ତ୍ତୀ ସମୟରେ ଦାର୍ଶନିକମାନେ ବିଭିନ୍ନ ପ୍ରକାରର ସଂଜ୍ଞା ବିଷୟରେ ବିଶ୍ଳେଷଣ କରି ସେସବୁର ଲକ୍ଷଣ ଓ ସ୍ୱରୂପ ଦର୍ଶାଇଲେ ।

ତେବେ ଆରିଷ୍ଟଟଲ ଯେଉଁ ସଂଜ୍ଞା ବିଷୟରେ ବିଚାର ବ୍ୟକ୍ତ କରିଥିଲେ, ତାହାକୁ ତାର୍କିକ ପରିଭାଷାରେ ଲକ୍ଷଣାର୍ଥକ ସଂଜ୍ଞା (ବା କନୋଟେଟିଭି ଡ଼େଫିନେସନ) କୁହାଯାଏ । ଏହି ସଂଜ୍ଞା ନିୟମାନୁଯାୟୀ କେବଳ ଶ୍ରେଣୀବାଚକ ପଦମାନଙ୍କର ସଂଜ୍ଞା ଦିଆଯାଇପାରିବ । କୌଣସି ଶ୍ରେଣୀବାଚକ ପଦମାନଙ୍କର ସଂଜ୍ଞା ଦେବାବେଳେ ପ୍ରଥମେ ତାହାର ଉଚ୍ଚତର ଶ୍ରେଣୀକୁ ସୂଚାଇବା ସହ ଉଭୟ ଭିତରେ ଥିବା ଲକ୍ଷଣାର୍ଥକ ପାର୍ଥକ୍ୟକୁ ଦର୍ଶାଇବା ଆବଶ୍ୟକ । ମନୁଷ୍ୟର ନିକଟତର ଶ୍ରେଣୀ ହେଲା ପ୍ରାଣୀ, ଅର୍ଥାତ୍ ପ୍ରତ୍ୟେକ ମନୁଷ୍ୟ ଏକ ପ୍ରାଣୀ । ତେବେ ପ୍ରତ୍ୟେକ ପ୍ରାଣୀ ତ ମନୁଷ୍ୟ ନୁହେଁ, ସୁତରାଂ ପ୍ରାଣୀ ଓ ମନୁଷ୍ୟ ଭିତରେ ଥିବା ମୌଳିକ ପାର୍ଥକ୍ୟକୁ ସୂଚାଇବା ଆବଶ୍ୟକ । ପ୍ରତ୍ୟେକ ମନୁଷ୍ୟ ଏକ ପ୍ରାଣୀ, କିନ୍ତୁ ପ୍ରତ୍ୟେକ ପ୍ରାଣୀ ମନୁଷ୍ୟ ନୁହେଁ, କେବଳ ବିଚାରଶୀଳତା ଥିବା ପ୍ରାଣୀ ହିଁ ମନୁଷ୍ୟ । ସୁତରାଂ ଆରିଷ୍ଟଟଲଙ୍କ ବିଚାରରେ 'ମନୁଷ୍ୟ ହେଉଛି ଏକ ବିଚାରଶୀଳ ପ୍ରାଣୀ ।' ଅବଶ୍ୟ ଆରିଷ୍ଟଟଲଙ୍କ ବିଚାରରେ ବିଚାରଶୀଳତା(ବା ରେସନାଲିଟି) ର ଯାହା ଅର୍ଥ ଥିଲା, ତାହାର ପାରିଭାଷିକ ଅର୍ଥରେ ପରିବର୍ତ୍ତନ ପରବର୍ତ୍ତୀ ସମୟରେ ହେବା ଦେଖାଯାଏ ।

ଆରିଷ୍ଟଟଲ ମଣିଷର ବୌଦ୍ଧିକ ଜଗତକୁ ବିଭିନ୍ନ ପ୍ରସଙ୍ଗ ଉପରେ ଏତେ ମୌଳିକ ସିଦ୍ଧାନ୍ତମାନ ଦେଇଛନ୍ତି ଯେ ତାଙ୍କର ଅନେକ ମତକୁ ବହୁଦିନ ଧରି ଅଲଂଘନୀୟ ବୋଲି ବିଚାର କରାଯାଉଥିଲା । ସୁତରାଂ ମଣିଷର ସଂଜ୍ଞା 'ମଣିଷ ଏକ ବିଚାରଶୀଳ ପ୍ରାଣୀ' ବୋଲି ଯାହା ଆରିଷ୍ଟଟଲ କହିଥିଲେ ତାହାକୁ ସମସ୍ତେ ସ୍ୱୀକାର କରି ନେଉଥିଲେ । ତେବେ ବିଂଶ ଶତାବ୍ଦୀର ମହାନ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ 'ସବୁ ମଣିଷ ଯେ ବିଚାରଶୀଳ' ଏ ନେଇ ଗମ୍ଭୀର ପ୍ରଶ୍ନ ଉଠାଇଲେ । ଆମ ସଂସାରରେ ଏତେ ଯୁଦ୍ଧ, ବିଭୀଷିକା, ମାନବକୃତ ଅନ୍ୟାୟ, ଅତ୍ୟାଚାର, କୁସଂସ୍କାର ଭରପୂର ରହିଥିବାବେଳେ ମଣିଷକୁ କିପରି ବିଚାରଶୀଳ କୁହାଯିବ ? ରସେଲ ଏହି ପରିପ୍ରେକ୍ଷୀରେ 'ବିଚାରଶୀଳତା'ର ତାତ୍ପର୍ଯ୍ୟ ବ୍ୟାଖ୍ୟା କଲେ । ସେ ବିଚାରଶୀଳତାର ଦୁଇଟି ଦିଗ ବିଷୟରେ ସୂଚନା ଦେଲେ ଯଥା: ସୈଦ୍ଧାନ୍ତିକ ଦିଗ ଓ ପ୍ରୟୋଗାତ୍ମକ ବା

ବ୍ୟାବହାରିକ ଦିଗ । ସୈଦ୍ଧାନ୍ତିକ ସ୍ତରରେ ଗୋଟିଏ ମତ, ବିଚାର ଓ ଭାବନା ଯଥାର୍ଥ କି ନୁହେଁ ତାର ମୂଲ୍ୟାୟନ ବିଚାରଶୀଳ ଭାବେ କରିବାକୁ ହେଲେ ତାହା କେତେଦୂର ବସ୍ତୁନିଷ୍ଠ ଭାବେ ସତ୍ୟ ତାହାକୁ ପରୀକ୍ଷା କରିବାକୁ ହେବ । ଯେଉଁ ମତ ପରୀକ୍ଷା ଦ୍ୱାରା ବା ପର୍ଯ୍ୟବେକ୍ଷଣ ଦ୍ୱାରା ଗୃହୀତ ଓ ଯାହା ପଶ୍ଚାତରେ ତଥ୍ୟଗତ ସମର୍ଥନ ରହିଛି ସେହି ମତ ଏକ ବିଚାରଶୀଳ ମତ । ସମାଜରେ ଅନେକ ବିଶ୍ୱାସ ରହିଛି, ଏପରିକି ସେହି ବିଶ୍ୱାସ ଜନଜୀବନକୁ ବହୁଳ ଭାବେ ପ୍ରଭାବିତ କରି ରଖିଛି । କିନ୍ତୁ ସେସବୁ ବିଶ୍ୱାସର କୌଣସି ଆଧାର ନାହିଁ । ଅନେକ ଧାର୍ମିକ ଭାବନା, ପରମ୍ପରାଗତ ବିଶ୍ୱାସର କୌଣସି ଆଧାରନାହିଁ । ଅନେକ ଧାର୍ମିକ ଭାବନା, ପରମ୍ପରାଗତ ବିଶ୍ୱାସର କୌଣସି ସତ୍ୟତା ନାହିଁ ଯଦିବା ଜନମାନସକୁ ତାହା ନାନା ଭାବରେ କବଳିତ କରି ରଖିଛି । ଭୂତ, ପ୍ରେତ, ଦିଅଁ, ଦେବତା, ଆତ୍ମା, ସ୍ୱର୍ଗ, ନରକ, ପୁନର୍ଜନ୍ମ, ବିଚାର ଦିବସ ଇତ୍ୟାଦି ଅନେକ ଭାବନାର କୌଣସି ସତ୍ୟନିଷ୍ଠ ଆଧାର ନାହିଁ । ଏହିଗୁଡ଼ିକ ଧାର୍ମିକ ବିଶ୍ୱାସ ସ୍ତରରେ ଏକଦା ସତ୍ୟ ବୋଲି ସ୍ୱୀକୃତ ହେଉଥିଲା । କିନ୍ତୁ ଜ୍ଞାନ, ବିଜ୍ଞାନର ବିକାଶ ଦ୍ୱାରା ଏହା ସବୁ ଆଧାରହୀନ ବୋଲି ଜଣାପଡ଼ିଲା । ବିଚାରଶୀଳ ଭାବେ ଜ୍ଞାନର ଯେଉଁ ସାର୍ବଜନୀନ ପଦ୍ଧତି ସ୍ୱୀକୃତ ହେଲା ତାହାରି ଆଧାରରେ ବିଜ୍ଞାନର ବିକାଶ ତ୍ୱରାନ୍ୱିତ ହେଲା । ପରିଣାମତଃ ଯୁଗ ଯୁଗର ବିଶ୍ୱାସ, କଳ୍ପନାଗୁଡ଼ିକ ଅସତ୍ୟ ବୋଲି ବିଚାର ସ୍ତରରେ ସ୍ୱୀକୃତ ହେଲା, ଯଦିବା ବାସ୍ତବ ଜୀବନରେ ବହୁ ଆଧାରହୀନ ବିଶ୍ୱାସ ଜନଜୀବନକୁ ନାନା ଭାବରେ ପ୍ରଭାବିତ କରି ରଖିବା ଦେଖାଯାଏ ।

ସେହିପରି ବ୍ୟାବହାରିକ ସ୍ତରରେ ବିଚାରଶୀଳ ଆଚରଣ (ରେସନାଲ କଣ୍ଡକ୍ଟ) କାହାକୁ କୁହାଯିବ ? ସଭ୍ୟତାର କ୍ରମବିକାଶଧାରାରେ ନିଜର ବିଚାର, ବିବେକ ଓ ଅନୁଭୂତିର ଆଧାରରେ କେତେକ ଆଚରଣ ସାମାଜିକ ଜୀବନକୁ ଉନ୍ନତ, ସଂସ୍କୃତି ସମ୍ପନ୍ନ କରିବା ମଣିଷ ଅନୁଭବ କରିଛି । ସଭ୍ୟ-ଆଚରଣ, ଶୃଙ୍ଖଳିତ ବ୍ୟବହାର, ସମାଜହିତୈଷୀ ମୂଲ୍ୟବୋଧ ଇତ୍ୟାଦି ଆମର ବିଚାରଶୀଳ ଦୃଷ୍ଟି ମଧ୍ୟ ଦେଇ ସମାଜରେ ବିକଶିତ ହୋଇଛି । ସମାଜର ପ୍ରାଜ୍ଞ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ସାମାଜିକ ଜୀବନ ପ୍ରବାହକୁ ଗଭୀର ଅନୁଶୀଳନ କରି ନୀତି ନୈତିକତା, ଆଦର୍ଶ ମୂଲ୍ୟବୋଧର ଭାବନା ସୃଷ୍ଟି କରିଛନ୍ତି । ଏହିଗୁଡ଼ିକ ହଜାର ହଜାର ବର୍ଷର ସାମାଜିକ ଜୀବନ ପ୍ରବାହରେ ଉଦ୍ଭବ ହୋଇଛି । ତେବେ ପରିତାପର ବିଷୟ ଯେ ମଣିଷ ସମାଜରେ ନାନା ଅମାନବିକ ପରିବେଶ, ଅନ୍ୟାୟ ଓ ଶୋଷଣ ରହିଛି । ନିଜର ସାମାଜିକ ଜୀବନ ପ୍ରବାହରେ ଯେତେବେଳେ ସମାଜର ବହୁ ବ୍ୟକ୍ତି ବିଚାରଶୀଳ ଦୃଷ୍ଟି ଦ୍ୱାରା ପରିଚାଳିତ ହୁଅନ୍ତି ସମାଜର ଗୁଣାତ୍ମକ ବିକାଶ ଉନ୍ନତ ହୋଇଥାଏ, ପରନ୍ତୁ ଯଦି ସମାଜରେ

ତାହାର ବିପରୀତ ପରିବେଶର ପ୍ରାଧାନ୍ୟ ରହେ ତେବେ ସମାଜ କ୍ଷୟଶୀଳ ହୋଇଯାଏ ।

ସମ୍ଭବତଃ ସମାଜର ପ୍ରତ୍ୟେକ ସ୍ତରରେ ବିଚାରଶୀଳତାର ସାର୍ବଜନୀନ ଅଭିବ୍ୟକ୍ତି ସମ୍ଭବ ନୁହେଁ । ବିଚାରଶୀଳତା ଏକ ଆଦର୍ଶ, ଏକ ଲକ୍ଷ୍ୟ । ସମାଜରେ କେତେକ ବ୍ୟକ୍ତି ବେଶ୍ ବିଚାରଶୀଳ, ସେମାନେ ମୁକ୍ତ ମନ ପୋଷଣ କରନ୍ତି ଓ ସତ୍ୟ ପ୍ରତି ସର୍ବଦା ଉନ୍ମୁକ୍ତ ରହନ୍ତି । ଅପରପକ୍ଷରେ ସମାଜରେ କେତେକ ବ୍ୟକ୍ତି ନିଜର ବିଶ୍ୱାସର ଖୋଳପା ଭିତରୁ ବାହାରିବାକୁ ଆଗ୍ରହ କରନ୍ତି ନାହିଁ । ସେମାନେ ନିଜର ବିଶ୍ୱାସକୁ, ତାହା ଯେତେ ଅସତ୍ୟ ଓ ଆଧାରହୀନ ହେଲେ ମଧ, ଜାବୁଡ଼ି ଧରନ୍ତି । ସେହିପରି ବ୍ୟାବହାରିକ ସ୍ତରରେ କେତେକ ବ୍ୟକ୍ତି ମାର୍ଜିତ, ରୁଚିସମ୍ପନ୍ନ, ନାଗରିକ ଶୃଙ୍ଖଳା ପ୍ରତି ପ୍ରତିବଦ୍ଧ, କର୍ତ୍ତବ୍ୟ ପରାୟଣ ଓ ବୃହତ୍ତର ସମାଜର ହିତ ପାଇଁ ନିଜର ସମ୍ପୃକ୍ତି ବ୍ୟକ୍ତ କରିଥାନ୍ତି । ଅପରପକ୍ଷରେ ସମାଜରେ ଏପରି ବ୍ୟକ୍ତି ମଧ ଅଛନ୍ତି ଯେଉଁମାନେ ଅତ୍ୟନ୍ତ ସ୍ୱାର୍ଥପର, କାମୁକ, ପରଶ୍ରୀକାତର ଓ ଅନ୍ୟାୟୀ । କେହି ଭଲ ହେବାରେ ବା ମନ୍ଦ ହେବାରେ ନାନା ସାମାଜିକ, ମନସ୍ତାତ୍ତ୍ୱିକ ଓ ପାରିବେଶିକ କାରଣ ଥାଇପାରେ, କିନ୍ତୁ ସମାଜରେ ସବୁ ସ୍ତରର ମଣିଷ ଆମେ ଦେଖିବାକୁ ପାଉ ।

ତେବେ ଦାର୍ଶନିକମାନେ ମଣିଷର ବ୍ୟକ୍ତିଗତ ଜୀବନକୁ, ଗୋଷ୍ଠୀଗତ ସମ୍ବନ୍ଧକୁ ଓ ବିଶ୍ୱକୁ ଉନ୍ନତ, ମହତ୍ତର, ମାନବିକ, ପ୍ରୀତିପୂର୍ଣ୍ଣ କରିବାକୁ ସର୍ବଦା ଗମ୍ଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ସେହି ପୃଷ୍ଠଭୂମିରେ ସେମାନେ ବିଚାରଶୀଳତାକୁ ଏକ ମହତ୍ତର ସାଧନ ଭାବେ ନେଇଛନ୍ତି । ବିଚାରଶୀଳ ଦୃଷ୍ଟିର ପ୍ରସାର ଦ୍ୱାରା ଜୀବନର ଗୁଣାତ୍ମକ ମାନ ଓ ସାମାଜିକ ପରିବେଶ ଉନ୍ନତ ହୋଇପାରିବ । ମଣିଷ ଭିତରେ ଥିବା ଏହି ସମ୍ଭାବନାକୁ ପଲ୍ଲବିତ ଓ ବିକଶିତ କରାଯାଇପାରିଲେ ଜୀବନ ଅଧିକ ପ୍ରୀତିମୟ ହୋଇପାରିବ ବୋଲି ସବୁ ସଭ୍ୟତାର ବିଚାରଶୀଳ ବ୍ୟକ୍ତିମାନେ ସ୍ୱପ୍ନ ଦେଖିଛନ୍ତି । (୧୨.୭.୧୧)



# ବିଚାରଶୀଳ ଦୃଷ୍ଟି ବନାମ ବିଶ୍ୱାସ

ମଣିଷ ସ୍ୱଭାବ ବେଶ୍ ବିଚିତ୍ର ମନେହୁଏ । ଆମର ନିତିଦିନିଆ ଅନୁଭୂତିରେ ଆମେ ଦେଖେ ଯେ କେତେକ ବ୍ୟକ୍ତି ଦରଦୀ, ପରୋପକାରୀ ଓ ନିଷ୍କପଟ । ପୁନଶ୍ଚ ଏପରି ବ୍ୟକ୍ତିଙ୍କୁ ମଧ୍ୟ ଦେଖେ ଯେଉଁମାନେ ଅତ୍ୟନ୍ତ ସ୍ୱାର୍ଥପର, କପଟୀ ଓ ପରଶ୍ରୀକାତର । ପୁନଶ୍ଚ ବ୍ୟକ୍ତି ସ୍ୱଭାବରେ ମଧ୍ୟ ପରସ୍ପର ବିରୋଧୀ ମାନସିକତା ଭିନ୍ନ ଭିନ୍ନ ପରିବେଶରେ ପରିଲକ୍ଷିତ ହୁଏ । ଜଣେ ବ୍ୟକ୍ତି ଗୋଟିଏ ପରିସ୍ଥିତିରେ ବେଶ୍ ବିବେକବାନ୍, ସମ୍ବେଦନଶୀଳ ଓ ନ୍ୟାୟପରାୟଣ । ଅଥଚ ସେହି ବ୍ୟକ୍ତି ଅନ୍ୟ ଏକ ପରିସ୍ଥିତିରେ ଅବିବେକୀ, ରୁକ୍ଷ ଓ ଅନ୍ୟାୟ କାର୍ଯ୍ୟରେ ସମ୍ପୃକ୍ତ । ବ୍ୟକ୍ତି ସ୍ୱଭାବରେ ଭିନ୍ନ ଭିନ୍ନ ପରିବେଶରେ ଯେପରି ଭିନ୍ନତା ଦେଖିବାକୁ ମିଳେ, ଠିକ୍ ସେହିପରି ମଣିଷମାନଙ୍କ ସ୍ୱଭାବରେ ମଧ୍ୟ ନାନା ଭିନ୍ନତା ଓ ପରିସ୍ପର ବିରୋଧୀ ମାନସିକତା ଦେଖିବାକୁ ମିଳେ । ପୁନଶ୍ଚ ସାମାଜିକ ପରିବେଶ ଓ ଗୋଷ୍ଠୀ ଜୀବନ କ୍ଷେତ୍ରରେ ମଧ୍ୟ ଏହି ଭିନ୍ନତା ପରିଲକ୍ଷିତ ହୁଏ । କେତେକ ସାମାଜିକ ପରିବେଶରେ ଜନଗଣ କର୍ମତତ୍ପର, ଉଚ୍ଚ ଶୃଙ୍ଖଳାବୋଧ ଦ୍ୱାରା ପରିଚାଳିତ ଓ ସମାଜ ପ୍ରତି ବେଶ୍ ଉତ୍ତରଦାୟୀ । ଅପରପକ୍ଷରେ ଅନ୍ୟ କେତେକ ସାମାଜିକ ପରିବେଶରେ ଲୋକମାନଙ୍କର ନାଗରିକ ଶୃଙ୍ଖଳାଜ୍ଞାନ ନିମ୍ନମାନର, କର୍ମସଂସ୍କୃତିର ମନୋଭାବ ଅତ୍ୟନ୍ତ ରୁଗ୍ଣ ତଥା ସାଧୁତା, କର୍ତ୍ତବ୍ୟବୋଧ ନେଇ ଅଧିକାଂଶ ଲୋକ ସଂପୂର୍ଣ୍ଣ ସ୍ପର୍ଶକାତରଶୂନ୍ୟ । ଯେଉଁ ସାମାଜିକ ପରିବେଶରେ ନାଗରିକ ସଚେତନତାର ସ୍ତର ଉନ୍ନତ ଓ ଲୋକମାନଙ୍କର କର୍ମସଂସ୍କୃତି ଉଚ୍ଚ ତାହା ଅଧିକ ସଂସ୍କୃତି ସଂପନ୍ନ । ଏହିପରି ସାମାଜିକ ପରିବେଶରେ ଜୀବନର ଗୁଣାତ୍ମକମାନ ଉନ୍ନତ ହେବାର ସମ୍ଭାବନା ଅଧିକ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ନାଗରିକ ସଚେତନତାର ସ୍ତର ନିମ୍ନମାନର, ଯେଉଁଠାରେ ସାମାଜିକ ଭେଦଭାବ ସଂସ୍କୃତି-ମଜ୍ଜାଗତ ଓ ଯେଉଁଠାରେ ଦୁର୍ନୀତି ବା ଅନ୍ୟକୁ ଠକିବାର ମନୋଭାବ ବ୍ୟାପକ ତାହା ଏକ ଅନୁନ୍ନତ ସମାଜର ଚିତ୍ର ବହନ କରେ । ସେହିପରି ଜନଜୀବନରେ ନୈତିକ ମୂଲ୍ୟବୋଧ ଯେତେ ଅଧିକ ପ୍ରତିଫଳିତ, ସମାଜ ସେତିକି ପ୍ରଗତିଶୀଳ ଅଥଚ ଜନଜୀବନରେ ନୈତିକ ମୂଲ୍ୟବୋଧର ଉଲ୍ଲଂଘନ ଯେତେ ବ୍ୟାପକ, ସମାଜ ସେତିକି କ୍ଷୟଶୀଳ । ତେବେ ନିରଙ୍କୁଶ ଭାବେ ଏକ ସମାଜ ପ୍ରଗତିଶୀଳ ବା କ୍ଷୟଶୀଳ ହୋଇ ନ ପାରେ । ପ୍ରଗତିଶୀଳ ଓ କ୍ଷୟଶୀଳ ବାତାବରଣ ପ୍ରାୟତଃ ଆପେକ୍ଷିକ ।

ବ୍ୟକ୍ତି ଚରିତ୍ରରେ ଓ ସାମାଜିକ ପରିବେଶରେ ଏହି ଭିନ୍ନତା ପୃଷ୍ଠଭୂମିରେ ମଣିଷମାନଙ୍କ ଭିତରେ ଦୁଇଟି ବିପରୀତ ଜୀବନଦୃଷ୍ଟି ବି ଦୃଷ୍ଟିଗୋଚର ହୁଏ । ସମାଜରେ ଅଧିକାଂଶ ବ୍ୟକ୍ତି ଅତିପ୍ରାକୃତିକ ସତ୍ତା ବା ଶକ୍ତି ଓ ଏପରିକି ଚମତ୍କାରିତାରେ ବିଶ୍ୱାସ ସ୍ଥାପନ କରନ୍ତି । ଏକ ଅନୁନ୍ନତ ପରିବେଶରେ ଏହି ଧାରଣା ଅତି ବ୍ୟାପକ ଭାବେ ରହିଥିବା ମନେହୁଏ । ଜୀବନର ଘଟଣା ପ୍ରବାହ ବା ପ୍ରକୃତିର ବିଭିନ୍ନ କ୍ଷେତ୍ର ଯେ ଅତିପ୍ରାକୃତିକ ସତ୍ତା ଦ୍ୱାରା ନିୟନ୍ତ୍ରିତ ଏହା ହିଁ ସମାଜର ବହୁ ଲୋକ ବିଶ୍ୱାସ କରନ୍ତି । ଯେଉଁମାନେ ଏଥିରେ ବିଶ୍ୱାସ କରନ୍ତି ସେମାନେ ଭାବନ୍ତି ଯେ ଆମ ଦୃଷ୍ଟିର ଅନ୍ତରାଳରେ କିଛି ଅତି ପ୍ରାକୃତିକ ସତ୍ତା ରହିଛି ଯାହା ନିର୍ଦ୍ଦେଶରେ ସବୁକିଛି ପରିଚାଳିତ ହେଉଛି । ଏହି ମାନସିକତାରେ 'ବିଶ୍ୱାସ'କୁ ପ୍ରାଧାନ୍ୟ ଦିଆଯାଏ । ସାମାଜିକ ପରିବେଶର ପ୍ରଭାବ ତଥା ଭୟ ଜନିତ ଆବେଗରୁ ଏହି ମନୋଭାବ ସମାଜରେ ବ୍ୟାପକ ଭାବେ ରହିବା ଦେଖାଯାଏ । ସାମାଜିକ ଜୀବନ ପ୍ରବାହରେ ରହିଥିବା ବୈଷମ୍ୟ ଓ ଭେଦଭାବକୁ ପରିଣାମ ସ୍ୱରୂପ ବିଧି ନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରାଯାଏ ।

ସେହିପରି ପ୍ରାକୃତିକ ଦୁର୍ବିପାକ ଯଥା ବନ୍ୟା, ବାତ୍ୟା, ଭୂକମ୍ପ ଇତ୍ୟାଦିକୁ ମଣିଷର ପାପ କ୍ଷାଳନ ପାଇଁ ଦୈବୀଦଣ୍ଡ ବୋଲି ଅନେକ ବିଶ୍ୱାସ କରନ୍ତି । ରୋଗ, ଯନ୍ତ୍ରଣାକୁ କେଉଁ ଜନ୍ମର କର୍ମଫଳ ବୋଲି ଧାରଣା ସାଧାରଣ ସ୍ତରରେ ରହିବା ଦେଖାଯାଏ । କୌଣସି ପ୍ରତିକୂଳ ପରିସ୍ଥିତିର ମୁକାବିଲା ପାଇଁ ଭୟଜନିତ କାରଣରୁ କେତେ କଳ୍ପିତ ଦିଅଁ ଦେବତାର ଆଶ୍ରା କରିବା ସମାଜରେ ବ୍ୟାପକ ଭାବେ ରହିବା ଦେଖାଯାଏ । ସେହିପରି କୌଣସି ଇପ୍ସିତ ଲକ୍ଷ୍ୟ ହାସଲ ପାଇଁ ଯଥା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ, କର୍ମସଂସ୍ଥାନ ପାଇବା ପାଇଁ, ରୋଗରୁ ଆରୋଗ୍ୟ ପାଇଁ, ଯାତ୍ରା ସମୟରେ ବିପଦ ନ ପଡ଼ିବା ପାଇଁ ବା ଏହିପରି ଜୀବନର ଅସଂଖ୍ୟ ଘଟଣାରେ ସଫଳତା ପାଇଁ ଦିଅଁ ଦେବତାଙ୍କୁ ଡାକିବା, କଳ୍ପିତ ଦିଅଁ ଦେବତାଙ୍କୁ ଦାନ ପାଇଁ ମାନସିକ କରିବା, ଅଧିଆ ପଡ଼ିବା, କେଉଁଠି ଦୀପ ଜାଳିବା, ନଡ଼ିଆ ବାଡ଼େଇବା ପରି ଅସଂଖ୍ୟ ଘଟଣା ଜୀବନ ପ୍ରବାହରେ ବ୍ୟାପକ ଭାବେ ରହିବା ଦେଖାଯାଏ । ଅସ୍ତିତ୍ୱ ନ ଥିବା କେଉଁ କଳ୍ପିତ ଦିଅଁ ଦେବତା ସାମାଜିକ ବିକାଶ ପ୍ରକ୍ରିୟାରେ ସହାୟକ ହୁଅନ୍ତି ନାହିଁ । ସମାଜରେ ଯାହା କିଛି ପ୍ରଗତି ଓ ବିକାଶ ହୋଇଛି ତାହା ହଜାର ହଜାର ବର୍ଷର ମାନବିକ ପ୍ରୟାସ ଦ୍ୱାରା ସମ୍ଭବ ହୋଇଛି । ଆଜି ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ତାହା ପଶ୍ଚାତ୍‌ରେ ରହିଛି ମୁଷ୍ଟିମେୟ ଲୋକମାନଙ୍କର ଜୀବନ ବ୍ୟାପୀ ପ୍ରୟାସ, ଅନୁସନ୍ଧିତ୍ସା, ଉଦ୍ୟମ ଓ ଗବେଷଣା ।

ଆଧୁନିକ ବିକାଶ, ଶିକ୍ଷା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଗଣତାନ୍ତ୍ରିକ ସଚେତନତା ଇତ୍ୟାଦି ସଭ୍ୟ ଜୀବନଧାରାର ଅଙ୍ଗ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ମାନଦଣ୍ଡରେ ଦେଖିଲେ ବହୁ ଆଦିମ ଓ ଆଦିବାସୀ ସମାଜ ବିକାଶର ମାନଦଣ୍ଡରେ ବହୁ ପଛରେ ପଡ଼ିରହିଛନ୍ତି । ଶିକ୍ଷା, ସଚେତନତା ଠାରୁ ପଛରେ ଥିବା ବହୁ ବ୍ୟକ୍ତି ନାନା ଦିଅଁ ଦେବତା, ଗୁଣିଗାରେଡ଼ିରେ କେତେ ଆସ୍ଥା ସ୍ଥାପନ କରିଆସିଛନ୍ତି । ଏବେ ବି ମନ୍ତ୍ର, ତନ୍ତ୍ରର ପ୍ରଭାବ, ଭୂତ ପ୍ରେତରେ ବିଶ୍ୱାସ ଜନଜୀବନରେ ବ୍ୟାପକ ହୋଇରହିଛି । କେତେ ଦିଅଁ ଦେବତା ପାଖରେ କେତେ ମାନସିକ, ଯାନିଯାତ୍ରା କରାଯାଇ ସଂସ୍କୃତି, ଐତିହ୍ୟ, ପରମ୍ପରା ନାମରେ ବ୍ୟାପକ ଶକ୍ତି, ସମୟ, ଅର୍ଥ ବ୍ୟୟ କରାଯାଉଛି । କିନ୍ତୁ କେଉଁଠି ହେଉଛି ଜାତିର ବିକାଶ ? ଏକ ଜାତିର ସ୍ୱପ୍ନ କଣ ହେବା ଆବଶ୍ୟକ ? କେଉଁ କଳ୍ପିତ ଦିଅଁ ଦେବତାଙ୍କୁ ଡାକିଲେ, ମାନସିକ କଲେ, ମୁଣ୍ଡ ପିଟିଲେ ଜାତିର ବିକାଶ ହେବ କି ? ଧାର୍ମିକ ଭାବାବେଗର ମନସ୍ତାତ୍ତ୍ୱିକ ପ୍ରଭାବ ହୁଏତ କିଛି ସମୟ ପାଇଁ ବ୍ୟକ୍ତି ଚେତନାକୁ ପ୍ରଭାବିତ କରିପାରେ, କିନ୍ତୁ ତାହାଦ୍ୱାରା ଜାତିର ବିକାଶ ହେବ ନାହିଁ ବା ସମାଜରେ ମାନବୀୟ ମୂଲ୍ୟବୋଧର ଭିତ୍ତି ସୁଦୃଢ଼ ହେବନାହିଁ ।

ସାମାଜିକ ବିକାଶ ପ୍ରକ୍ରିୟା, ଜ୍ଞାନ ବିଜ୍ଞାନର ଅଭ୍ୟୁଦୟ, ସଭ୍ୟ ଜୀବନଦୃଷ୍ଟିର ବ୍ୟାପକତା, ମାନବବାଦୀ ମୂଲ୍ୟବୋଧର ସାର୍ବଜନୀନ ଗ୍ରହଣଶୀଳତା ଇତ୍ୟାଦି ମଣିଷର ସଚେତନ ପ୍ରୟାସ ଓ ବିଚାରଶୀଳତା ନେଇ ସମ୍ଭବ ହୋଇଛି । ସମାଜର ମୁଷ୍ଟିମେୟ ଲୋକ ଜୀବନର ଗୁଣାତ୍ମକମାନ ବୃଦ୍ଧି ପାଇଁ, ପ୍ରକୃତିର ରହସ୍ୟକୁ ଜାଣିବା ପାଇଁ ପ୍ରାକୃତିକ ପ୍ରତିକୂଳତାକୁ ଅତିକ୍ରମ କରି ସୁଖ ଶାନ୍ତିର ପରିବେଶ ପାଇଁ ଜୀବନବ୍ୟାପୀ କୌତୂହଳୀ ହୋଇଛନ୍ତି, ପ୍ରଶ୍ନ କରିଛନ୍ତି ଓ ଏକ ଅନୁସନ୍ଧିତ୍ସୁ ଦୃଷ୍ଟି ନେଇ ଜ୍ଞାନ ରାଜ୍ୟରେ ବିଚରଣ କରିବାକୁ ଜୀବନକୁ ଉତ୍ସର୍ଗ କରିଛନ୍ତି । ଏହି ଦୃଷ୍ଟିଭଙ୍ଗୀରେ ବିଚାରଶୀଳତାକୁ ମୁକ୍ତମନଜନିତ ଅନୁସନ୍ଧିତ୍ସାକୁ ଓ ମାନବିକ ମହତ୍ତ୍ୱକୁ ଗୁରୁତ୍ୱ ଦିଆଯାଇଛି । ଏହି ମାନସିକତା ପୋଷଣ କରୁଥିବା ଲୋକମାନେ ପ୍ରାୟତଃ ହେତୁବାଦୀ ବୋଲି ସ୍ୱୀକୃତ । ହେତୁବାଦୀମାନେ କୌଣସି କିଛିକୁ ବିନା ପରୀକ୍ଷାରେ ମାନି ନିଅନ୍ତି ନାହିଁ, ସବୁଥିରେ ଅନୁସନ୍ଧିତ୍ସୁ ହୁଅନ୍ତି ଓ ସତ୍ୟର ସନ୍ଧାନ ପାଇଁ ମୁକ୍ତମନ ପୋଷଣ କରନ୍ତି । ବିଶ୍ୱାସ ଉପରେ ଆଧାରିତ କଥାଗୁଡ଼ିକର ସତ୍ୟାସତ୍ୟ ପରୀକ୍ଷା ପାଇଁ ଆହ୍ୱାନ କରନ୍ତି । ଅନୁସନ୍ଧିତ୍ସୁ ହେବା, ଯେକୌଣସି ଘଟଣାର କାରଣ ଖୋଜିବା, ବୈଜ୍ଞାନିକ ପଦ୍ଧତିରେ ଆସ୍ଥା ସ୍ଥାପନ କରିବା, କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ହେଲେ ବୈଧ ପ୍ରଣାଳୀ ଅବଲମ୍ବନ କରିବା ଏହି ଜୀବନଦୃଷ୍ଟିର ଅଙ୍ଗବିଶେଷ । ପୁନଶ୍ଚ ମଣିଷର ପ୍ରୟାସ ଓ ସଭ୍ୟ ମୂଲ୍ୟବୋଧର ବିକାଶ ଦ୍ୱାରା ହିଁ ଜୀବନର ମାନ ଉନ୍ନତ ହୋଇପାରିବ । ଯେଉଁ

ସାମାଜିକ ପରିବେଶ ବ୍ୟକ୍ତି ଭିତରେ ଏହି ଦୃଷ୍ଟିଭଙ୍ଗୀ ପ୍ରସାର କରିବାରେ ଅନୁକୂଳ ହୋଇପାରିଛି ସେଠାରେ ଜୀବନର ଗୁଣାତ୍ମକ ମାନ ଓ ନାଗରିକ ସଚେତନତାର ସ୍ତର ଉନ୍ନତ ହୋଇଛି, ଅଥଚ ଯେଉଁଠି ଧାର୍ମିକ ଆବେଗ, ରକ୍ଷଣଶୀଳ ମାନସିକତା, ଅତୀନ୍ଦ୍ରିୟ ବିଶ୍ୱାସର ପ୍ରାବଲ୍ୟ ରହିଛି ସେଠାରେ ସାମାଜିକ ପରିବେଶ ଉନ୍ନତ ହୋଇନାହିଁ । ବରଂ ସେହି ପରିବେଶରେ ଆଧୁନିକ ପ୍ରଯୁକ୍ତି, ଗଣମାଧ୍ୟମ ଅହେତୁକ ଭାବେ କୁସଂସ୍କାରର ପ୍ରସାର ଦିଗରେ କେବଳ ସହାୟକ ହେଉଛି ।

ନାନା ମନସ୍ତାତ୍ତ୍ୱିକ ଭୟ ଓ ସାମାଜିକ ପ୍ରଭାବଜନିତ କାରଣରୁ ଅନେକ ଲୋକ ନାନା ଅହେତୁକ ଭାବନାରେ ବିଶ୍ୱାସ କରନ୍ତି ଓ ସେମାନେ କୌଣସି ବୌଦ୍ଧିକ କୌତୂହଳତା ପୋଷଣ କରନ୍ତି ନାହିଁ । ସେମାନେ ସାଧାରଣ ଜୀବନ ବଞ୍ଚନ୍ତି, ପ୍ରଚଳିତ ଗୁଳାରେ ଚଳନ୍ତି ଓ ସମାଜର ଚିରାଚରିତ ରକ୍ଷଣଶୀଳ ଭାବନାର ଅଙ୍ଗ ହୋଇଯାଆନ୍ତି । କିନ୍ତୁ ମୁଷ୍ଟିମେୟ ବ୍ୟକ୍ତି ପ୍ରଶ୍ନ କରନ୍ତି, ଅନୁସନ୍ଧିତ୍ସୁ ହୁଅନ୍ତି, ଉତ୍ତମ ଜୀବନର ସ୍ୱପ୍ନ ଦେଖନ୍ତି । ଏହି ମାନଙ୍କ ସଂଖ୍ୟା ମୁଷ୍ଟିମେୟ ହେଲେ ବି ଏମାନେ ସଭ୍ୟତାକୁ ଆଗକୁ ନିଅନ୍ତି, ଉନ୍ନତ ଜୀବନର ବାଟ ଦେଖାନ୍ତି । ସେମାନଙ୍କ ଅବଦାନ ଯୋଗୁଁ ସଭ୍ୟତା ଆଗକୁ ଯାଏ ଓ ମାନବିକ ଶ୍ରେୟ ନେଇ ବିଚାର ସୃଷ୍ଟିହୁଏ । କିନ୍ତୁ ବିଡ଼ମ୍ବନାର ବିଷୟ, ଏହି ବ୍ୟକ୍ତିମାନେ ସେମାନଙ୍କ ସମସାମୟିକ ସମାଜରେ କିଛି ବିରୋଧର ସମ୍ମୁଖୀନ ହୋଇଥାନ୍ତି । (୨୩.୭.୧୧)



# ଜ୍ଞାନ, ବିଶ୍ୱାସ ଓ ହେତୁବାଦ

ଜ୍ଞାନ ଓ ବିଶ୍ୱାସ ଭିତରେ କେତେକ ମୌଳିକ ପାର୍ଥକ୍ୟ ରହିଛି । ସକଳ ବୈଜ୍ଞାନିକ ସିଦ୍ଧାନ୍ତ ଜଗତ ସମ୍ପର୍କରେ ଆମକୁ ବସ୍ତୁନିଷ୍ଠ ଜ୍ଞାନ ଦେଇଥାଏ । ଏହି ଜ୍ଞାନ ନିର୍ଭରଯୋଗ୍ୟ କାରଣ ଏହା ଏକ ସାର୍ବଜନୀନ ପଦ୍ଧତିରେ ଉଦ୍ଭବ ହୁଏ । ଯାହା ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଭିତ୍ତିରେ ସମ୍ଭବ ହୁଏ ତାହା ନିର୍ଭରଶୀଳ । ଅବଶ୍ୟ ବୈଜ୍ଞାନିକ ସିଦ୍ଧାନ୍ତ ପରିବର୍ତ୍ତନ ସାପେକ୍ଷ । କାରଣ ପର୍ଯ୍ୟବେକ୍ଷଣର ପରିସର ବ୍ୟାପକ ହେବାଦ୍ୱାରା ନୂତନ ତଥ୍ୟ ଆବିଷ୍କୃତ ହେଲେ ତାହାରି ଆଧାରରେ କୌଣସି ସିଦ୍ଧାନ୍ତ ପରିବର୍ତ୍ତିତ ହୋଇପାରେ । ମୋଟ ଉପରେ ଯେଉଁ ଜ୍ଞାନ ପ୍ରଣାଳୀଗତ, କାର୍ଯ୍ୟ-କାରଣଭିତ୍ତିକ, ନିର୍ଭରଯୋଗ୍ୟ, ସାର୍ବଜନୀନ ଓ ବସ୍ତୁନିଷ୍ଠ ତାହା ହିଁ ବୈଜ୍ଞାନିକ ଜ୍ଞାନ । ଅପରପକ୍ଷରେ ବିଶ୍ୱାସର ପରିସରଟି ବହୁ ବ୍ୟାପକ । ଯାହା ଆମେ କଳ୍ପନା କରୁ, ଭାବନା ଭିତରେ ଅନୁମାନ କରୁ ସେସବୁ ଆମର ବିଶ୍ୱାସ । ତେବେ କୌଣସି ବିଶ୍ୱାସ ପରୀକ୍ଷା ଦ୍ୱାରା ପ୍ରତିଷ୍ଠିତ ହେଲେ ତାହା ସତ୍ୟ ହୁଏ । କୌଣସି କଳ୍ପନା ପରୀକ୍ଷା ଦ୍ୱାରା ପ୍ରତିଷ୍ଠିତ ନହେଲେ ତାହା ବିଶ୍ୱାସ । ଅବଶ୍ୟ ସ୍ଥଳବିଶେଷରେ ଜ୍ଞାନକୁ ସତ୍ୟ ବିଶ୍ୱାସ କୁହାଯାଏ । ତେବେ ବିଜ୍ଞାନ ସ୍ତରରେ ଯେଉଁ ବିଶ୍ୱାସକୁ ପ୍ରତିଷ୍ଠା କରାଯାଇ ପାରିନାହିଁ ତାହା କେବଳ ପ୍ରକଳ୍ପ ବା ସମ୍ଭାବନା ମାତ୍ର । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ଅନେକ ଘଟଣାର ପ୍ରକୃତ ବ୍ୟାଖ୍ୟା ବା କାରଣ ଜାଣିବା ସମ୍ଭବ ହୋଇନାହିଁ, ସେ କ୍ଷେତ୍ରରେ କେତେକ କଥାକୁ ବିଶ୍ୱାସ କରାଯାଏ । ତେବେ ବିଜ୍ଞାନ କ୍ଷେତ୍ରରେ କେବଳ ପ୍ରାକୃତିକ କାରଣକୁ ବିଶ୍ୱାସ କରାଯାଏ । କୌଣସି ଘଟଣାର କାରଣ କ୍ଷେତ୍ରରେ ଅତି-ପ୍ରାକୃତିକ, ରହସ୍ୟମୟ, ଦୈବୀବିଧାନଜନିତ କାରଣକୁ ବିଶ୍ୱାସ କରାଯାଏନାହିଁ । ବୈଜ୍ଞାନିକ ଜ୍ଞାନ ବା ପ୍ରକଳ୍ପ ପରୀକ୍ଷାସାପେକ୍ଷ ଓ ଅନ୍ୟ ପ୍ରାକୃତିକ ନିୟମ ସହ ସଂଯୋଜିତ ଏବଂ ସୁସଂହତ । କିନ୍ତୁ ଏପରି ଅନେକ ବିଶ୍ୱାସ ଆମ ଜନଜୀବନରେ ଆମେ ପାଉ ଯାହାର ସତ୍ୟତା କୌଣସି ଭାବେ ପରୀକ୍ଷା ହେବା ସମ୍ଭବ ନୁହେଁ । ଏହି ଧରଣର ବିଶ୍ୱାସ ସାଧାରଣତଃ କଳ୍ପନା ଆଧାରରେ ଭିତ୍ତି ନିଏ ।

ଜ୍ଞାନର ଯେତେ ଯେତେ ବିଭାଗ ରହିଛି ପ୍ରତ୍ୟେକ କ୍ଷେତ୍ରରେ ବୈଜ୍ଞାନିକ ପ୍ରମାଣ ଆଧାରରେ ତଥ୍ୟମାନଙ୍କୁ ସଂଯୋଜିତ କରାଯାଇ ବ୍ୟାଖ୍ୟା କରାଯାଏ । ମାନବ ବିଜ୍ଞନ(ହ୍ୟୁମାନିଟିଜ), ମୌଳିକ ବିଜ୍ଞାନ, ବାଣିଜ୍ୟ ଓ ମ୍ୟାନେଜମେଣ୍ଟ, ଚିକିତ୍ସା ବିଜ୍ଞାନ, ଯାନ୍ତ୍ରିକ ବିଜ୍ଞାନ, କୃଷିବିଜ୍ଞାନ, ଆଇନଶାସ୍ତ୍ର ଇତ୍ୟାଦି ପ୍ରତ୍ୟେକଟି ବୌଦ୍ଧିକ ସୋପାନରେ ବୈଜ୍ଞାନିକ ପ୍ରାଣାଳୀ ହିଁ ପ୍ରୟୋଗ ହୁଏ । ଏସବୁ ଅଧ୍ୟୟନ ବ୍ୟତୀତ ତର୍କ ଶାସ୍ତ୍ର, ଗଣିତ ଶାସ୍ତ୍ର, ଦର୍ଶନ ଶାସ୍ତ୍ର ମଧ୍ୟ ଗୋଟିଏ ଗୋଟିଏ ବୌଦ୍ଧିକ ସୋପାନ । ପ୍ରତ୍ୟେକଟି ବୌଦ୍ଧିକ ସୋପାନରେ କେତେକ ମୌଳିକ ଓ ବିଶ୍ଳେଷଣାତ୍ମକ ସିଦ୍ଧାନ୍ତର ଅବତାରଣା କରାଯାଏ । ଏସବୁ ହିଁ ଜ୍ଞାନର ଗୋଟିଏ ଗୋଟିଏ ବିଭାଗକୁ ବ୍ୟାଖ୍ୟା ଓ ବିଶ୍ଳେଷଣ କରିଥିବା ମନେହୁଏ । ସେହିପରି ନୀତିଶାସ୍ତ୍ର ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ ଉପରେ ନାନା ବିଶ୍ଳେଷଣ କରି ନୀତି, ନୈତିକତାର ବ୍ୟାଖ୍ୟା କରିଥାଏ । ଏ ପ୍ରତ୍ୟେକଟି ଅଧ୍ୟୟନ ପରିସରରେ ବୈଜ୍ଞାନିକ ପ୍ରଣାଳୀ, ତାର୍କିକ ପଦ୍ଧତି, ବିଶ୍ଳେଷଣାତ୍ମକ ଅନୁଶୀଳନକୁ ଗୁରୁତ୍ୱ ଦିଆଯାଏ । ଯାହା ସବୁ ଜ୍ଞାନର ପରିସରରେ ଅନ୍ତର୍ଭୁକ୍ତ, ସେ ପ୍ରତ୍ୟେକଟି ସୋପାନରେ ବିଶ୍ଳେଷଣାତ୍ମକ ଅନୁଶୀଳନ, ଯୁକ୍ତିଶୀଳ ଆଧାର ବୈଜ୍ଞାନିକ ପଦ୍ଧତିକୁ ଗୁରୁତ୍ୱ ଦିଆଯାଏ । ଏସବୁ କ୍ଷେତ୍ରରେ ବିଶ୍ୱାସର ସ୍ଥାନ ନଥାଏ ।

ତେବେ ଧର୍ମର ପରିସରରେ ବିଶ୍ୱାସର ପ୍ରାବଲ୍ୟ ମୁଖ୍ୟ ସ୍ଥାନ ନିଏ । ଯେଉଁ ସମୟରେ ଜ୍ଞାନବିଜ୍ଞାନର ବା ତାର୍କିକ ଅନୁଶୀଳନର ପ୍ରଭାବ ବ୍ୟାପକ ହୋଇନଥିଲା ସେହି ଯୁଗରେ ନାନା ବିଶ୍ୱାସ ସମାଜରେ ଉଦ୍ଭବ ହୋଇଥିଲା । ପ୍ରକୃତିର ରହସ୍ୟ ଓ ଜୀବନର ଘନଘଟାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ନାନା କାଳ୍ପନିକ ବିଶ୍ୱାସ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା । ପରେ ପ୍ରତ୍ୟେକଟି ଧର୍ମ ଏକ ସାଂସ୍କୃତିକ ଆଲୋଡ଼ନ ଭାବେ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ଉଦ୍ଭବ ହୋଇଥିଲା । କାଳକ୍ରମେ ପ୍ରତ୍ୟେକ ଧର୍ମ ଏକ ଏକ ଅନୁଷ୍ଠାନରେ ରୂପାନ୍ତରିତ ହୋଇଗଲା । ପ୍ରତ୍ୟେକ ଧର୍ମର ଐତିହାସିକ ଭିତ୍ତି, ତାତ୍ତ୍ୱିକ ଭାବନା, ଉପାସନାଜନିତ କର୍ମକାଣ୍ଡ ଆଦି କେତେକ ନୀତିବୋଧ ରହିଲା । ନାନା କାହାଣୀ ଓ କିମ୍ବଦନ୍ତୀ ଧାର୍ମିକ ବିଶ୍ୱାସର ଅଙ୍ଗ ହୋଇଗଲା । କଳ୍ପନା ଓ ବିଶ୍ୱାସର ଆଧାର ଉପରେ ଧର୍ମର ବୌଦ୍ଧିକ ପରିସରଟି ପୁଷ୍ଟ ହୋଇଉଠିଲା । ପ୍ରତ୍ୟେକ ଧର୍ମ ନିଜ ନିଜ ଧାରାରେ ଈଶ୍ୱରଙ୍କ ସ୍ୱରୂପ, ଜଗତର ଉତ୍ପତ୍ତି, ମଣିଷର ଆବିର୍ଭାବ ନେଇ ନାନା କଳ୍ପନା ବ୍ୟକ୍ତ କରିଛନ୍ତି । ସେହିପରି ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗ, ନରକ, ପୁନର୍ଜନ୍ମ, ଆତ୍ମା, ଆତ୍ମାର ଅମରତ୍ୱ, ପ୍ରଳୟ ଇତ୍ୟାଦି ଭାବନାକୁ ନେଇ ଧର୍ମସବୁ କେତେ କେତେ କଳ୍ପନାମାନ ସୃଷ୍ଟି କରିଛନ୍ତି । ଧର୍ମବିଶ୍ୱାସୀମାନେ ନିଜ ଧର୍ମଗ୍ରନ୍ଥର ବାଣୀକୁ ଅଲଂଘ୍ୟ ଓ ଦିବ୍ୟଜ୍ଞାନ ବୋଲି ବିଶ୍ୱାସ କରି ଆସିଛନ୍ତି ।

ତେବେ କୌତୂହଳର ବିଷୟ, ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ସେମାନଙ୍କର ତାତ୍ତ୍ୱିକ ବିଶ୍ୱାସଗୁଡ଼ିକ କିପରି ପରସ୍ପର ବିରୋଧୀ ତାହା ବେଶ୍ ଜଣାପଡ଼େ । ତା ସହିତ ଅନେକ ଧାର୍ମିକ ବିଶ୍ୱାସ ବୈଜ୍ଞାନିକ ସିଦ୍ଧାନ୍ତର ସମ୍ପୂର୍ଣ୍ଣ ପରିପନ୍ଥୀ ହେବା ଦେଖାଯାଏ । ସେହିପରି ଫଳିତ ଜ୍ୟୋତିଷ, ବାସ୍ତୁ, ସାମୁଦ୍ରିକ ସ୍ତରରେ ନାନା ବିଶ୍ୱାସ ଜନଜୀବନରେ ବ୍ୟାପକ ଭାବେ ରହିଛି । ଏଗୁଡ଼ିକର ଯାହା କିଛି ସିଦ୍ଧାନ୍ତ ରହିଛି ସେସବୁ କୌଣସି ବୈଜ୍ଞାନିକ ପଦ୍ଧତିରେ ଉଦ୍ଭବ ହୋଇନାହିଁ । ବରଂ ନାନା କାଳ୍ପନିକ ବିଶ୍ୱାସ ଆଧାରରେ ସେଗୁଡ଼ିକ ବହୁ ଅତୀତରେ ସୃଷ୍ଟି ହୋଇଛି ଓ ନାନା ମନସ୍ତାତ୍ତ୍ୱିକ କାରଣ ଯୋଗୁ ଏସବୁ ବିଶ୍ୱାସ ଜନଜୀବନକୁ ପ୍ରଭାବିତ କରିଆସିଛି । ମନ୍ତ୍ର, ତନ୍ତ୍ର, ଗୁଣିଗାରେଡ଼ି ଯେପରି ଗୁଡ଼ିଏ ବିଶ୍ୱାସ, ସେହିପରି ଫଳିତ ଜ୍ୟୋତିଷ, ବାସ୍ତୁ, ସାମୁଦ୍ରିକ ମଧ ଗୁଡ଼ିଏ ବିଶ୍ୱାସ । ତେବେ ମନ୍ତ୍ର, ତନ୍ତ୍ର, ଗୁଣି ଗାରେଡ଼ି, ବଳିପ୍ରଥା ସମାଜର ସାଧାରଣ ବର୍ଗ ଓ ବିଶେଷକରି ଶିକ୍ଷା ସଚେତନତାଠାରୁ ଦୂରରେ ଥିବା ଲୋକମାନଙ୍କ ବିଶ୍ୱାସ ଭିତରେ ସାମାଜିକ ପ୍ରଭାବରୁ ତିଷ୍ଠି ରହିଛି । ବହୁ ଅତୀତରେ ସୃଷ୍ଟି ହୋଇଥିବା ଏହି ବିଶ୍ୱାସଗୁଡ଼ିକ ସହିତ ଧାର୍ମିକ ଆବେଗ, ପରମ୍ପରା ଏପରି ସଂଶ୍ଳିଷ୍ଟ ହୋଇଯାଇଛି ଯାହାର ପ୍ରଭାବରୁ ସମାଜର ସାଧାରଣ ମଣିଷମାନେ ମୁକ୍ତ ହୋଇପାରୁ ନାହାନ୍ତି । ଅପରପକ୍ଷରେ ଫଳିତ ଜ୍ୟୋତିଷ, ଭାଗ୍ୟଫଳ, ବାସ୍ତୁ, ସାମୁଦ୍ରିକ ଇତ୍ୟାଦିକୁ ବହୁ ଶିକ୍ଷିତ ଓ ସଚେତନ ବ୍ୟକ୍ତି ମଧ ବିଶ୍ୱାସ କରିଆସୁଛନ୍ତି । ଏପରିକି ବିଜ୍ଞାନର ଅଭୂତପୂର୍ବ ଉଦ୍ଭାବନ ଟେଲିଭିଜନ, ମୋବାଇଲ, ଇଣ୍ଟରନେଟ ଜରିଆରେ ଅବୈଜ୍ଞାନିକ ଭାବନାର ପ୍ରସାର, ପ୍ରଚାର କରାଯାଉଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବରେ ଏସବୁକୁ ସାଧାରଣ ଲୋକମାନଙ୍କ ପାଖରେ ବ୍ୟାବସାୟିକ ଉଦ୍ଦେଶ୍ୟରେ ବ୍ୟାପକ କରାଯାଉଛି । ଆଧୁନିକ ଜୀବନଶୈଳୀରେ ଉତ୍ତେଜନାମୂଳକ ପରିବେଶ ଭିତରେ ବଞ୍ଚୁଥିବା ମଣିଷମାନେ ବହୁ ସମୟରେ ମାନସିକ ଶାନ୍ତି ପାଇଁ କେତେକ ଚମତ୍କାରିତାରେ ବି ବିଶ୍ୱାସ କରିଥାନ୍ତି । ଜନଗଣଙ୍କର ଦୁର୍ବଳ ମାନସିକ ଅବସ୍ଥାକୁ ଅନୁମାନ କରି ଭବିଷ୍ୟବକ୍ତାମାନେ ମନସ୍ତାତ୍ତ୍ୱିକ ସ୍ତରରେ ଲୋକମାନଙ୍କୁ ଦୁର୍ବଳ କରି ତାହାର ସୁଯୋଗ ନିଅନ୍ତି ।

ସେହିପରି ନାନା ମିଥ୍ ଓ ଲୋକ ବିଶ୍ୱାସକୁ କୌଶଳର ସହ ପ୍ରସାର କରି ଧାମିକ ଆବେଗ ସୃଷ୍ଟି କରିବାର ଦୃଷ୍ଟାନ୍ତ ମଧ ସମାଜରେ ବେଶ୍ ଦେଖିବାକୁ ମିଳେ । ରାଜନୈତିକ ଲକ୍ଷ୍ୟ ହାସଲ ପାଇଁ ହେଉ ବା ବ୍ୟକ୍ତଗତ ସ୍ୱାର୍ଥସାଧନ ପାଇଁ ହେଉ, ଜନଗଣଙ୍କୁ ଧର୍ମ ନାମରେ ମତୁଆଲା କରିବାର ପରିବେଶ ବି ଆଧୁନିକ ଜୀବନର ବଡ଼ ପ୍ରହେଳିକା କହିଲେ ଅତ୍ୟୁକ୍ତି ହେବନାହିଁ । କେତେକ ଯୁବକ ବି ଧର୍ମଠାରୁ

ପ୍ରେରଣା ପାଇ ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ସମ୍ପୃକ୍ତ ହେବା ଏକ ବିଡ଼ମ୍ବନା ନିଶ୍ଚୟ । ଧାର୍ମିକ ବିଶ୍ୱାସ ସେମାନଙ୍କର ପ୍ରଜ୍ଞା, ନ୍ୟାୟବୋଧ ଓ ବୌଦ୍ଧିକ ସ୍ୱଷ୍ଟତାକୁ ନଷ୍ଟ କରିଥିବା ମନେହୁଏ । ଅନ୍ୟ ଧର୍ମବିଶ୍ୱାସୀ ଲୋକଙ୍କୁ ହତ୍ୟା କରିବା ଏକ ଧାର୍ମିକ କାର୍ଯ୍ୟ, ଅନ୍ୟଧର୍ମର ପୂଜାସ୍ଥଳୀକୁ ଧ୍ୱଂସ କରିବା ଆମ ସାଂସ୍କୃତିକ ବୈଭବର ପରିଚୟ । ଧାର୍ମିକ ଅସ୍ମିତାକୁ ନେଇ ଧର୍ମଗତ ବିଦ୍ୱେଷଦ୍ୱାରା ରାଜନୈତିକ କ୍ଷମତା ହାସଲ କରିବାର ମନୋଭାବକୁ କ'ଣ କୁହାଯିବ ? ଏହାକୁ କୂଟବୁଦ୍ଧି କୁହାଯିବ ନା ଧାର୍ମିକ ଦୃଷ୍ଟି କୁହାଯିବ ? ଧାର୍ମିକ ଦୃଷ୍ଟି ଯଦି ମଣିଷ ସମାଜରେ ମାନବିକତା, ଭ୍ରାତୃଭାବ, ପ୍ରେମର ବାର୍ତ୍ତା ପ୍ରସାର କରେ ସେ ଧର୍ମକୁ ସମସ୍ତେ ସ୍ୱାଗତ କରିବେ । କିନ୍ତୁ ବିଡ଼ମ୍ବନାର ବିଷୟ ଧର୍ମ ଏହା ପରିବର୍ତ୍ତେ ଉଗ୍ରବାଦ, ଘୃଣାଭାବ ଓ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରିବାର ବହୁ ଦୃଷ୍ଟାନ୍ତ ବିଶ୍ୱ ପୃଷ୍ଠଭୂମିରେ ଦେଖିବାକୁ ମିଳେ ।

ଆନ୍ତର୍ଜାତିକ ଦୃଶ୍ୟପଟରେ ଇସ୍ରାଏଲରେ ଜିଉ ଓ ମୁସଲମାନମାନେ ପରସ୍ପର ଚିର ଶତ୍ରୁ ଭଳି ବ୍ୟବହାର କରି ଆସିଛନ୍ତି । ଲେବାନନରେ ଧାର୍ମିକ ଗୋଷ୍ଠୀମାନଙ୍କ ଭିତରେ ବିବାଦ ଏତେ ମଜ୍ଜାଗତ ହୋଇ ରହିଛି ଯେ ସେଠାରେ ସର୍ବଦା ସାମ୍ପ୍ରଦାୟିକ ବାତାବରଣ ରହିଛି । ଇରାକ ଓ ଇରାନରେ ସିହା ଓ ସୁନିମାନଙ୍କ ଭିତରେ ସର୍ବଦା ବିବାଦ ଲାଗି ରହିଛି । ଉତ୍ତର ଆୟରଲ୍ୟାଣ୍ଡରେ କ୍ୟାଥୋଲିକ ଓ ପ୍ରୋଟେଷ୍ଟାଣ୍ଟମାନଙ୍କ ମଧ୍ୟରେ ସର୍ବଦା ସଂଘର୍ଷ ସୃଷ୍ଟି ହେଉଛି । ଭାରତ ଓ ପାକିସ୍ତାନ ଧର୍ମଗତ ବିଭେଦକୁ ନେଇ ପରସ୍ପରର ଶତ୍ରୁ ହୋଇ ରହିଛନ୍ତି । ଧାର୍ମିକ ବିଶ୍ୱାସରୁ ଭାରତୀୟ ସମାଜରେ ଦଳିତ ଓ ଶୂଦ୍ରମାନଙ୍କୁ ଯୁଗ ଯୁଗ ଧରି ମାନବିକ ଅଧିକାରରୁ ବଞ୍ଚିତ କରାଯାଇଛି । ଏହିପରି ଅସଂଖ୍ୟ ଉଦାହରଣ ଇତିହାସରେ ରହିଛି ।

ଏକଦା ଜଣେ ବନ୍ଧୁ ପ୍ରଶ୍ନକଲେ- ହେତୁବାଦୀମାନେ ଧର୍ମ ବିରୋଧୀ କି ? ଏହାର ଏକ ସରଳ ଉତ୍ତର ହୁଏତ ହେବ-ହେତୁବାଦୀମାନେ ଧର୍ମ ବିରୋଧୀ ନୁହନ୍ତି, କିନ୍ତୁ ଧର୍ମ ଯେତେବେଳେ ମାନବିକତା ବିରୋଧୀ ହୁଏ, ସେତେବେଳେ ସେହି ଧର୍ମକୁ ବିରୋଧ କରିବାର ବାର୍ତ୍ତା ହେତୁବାଦୀମାନେ ଦେଇ ଆସିଛନ୍ତି । (୨୭.୭.୧୧)



# ପ୍ରତିଭାଧରଙ୍କ ସ୍ୱପ୍ନ

ସଭ୍ୟତା ପ୍ରତି କେଉଁମାନଙ୍କର ମୌଳିକ ଅବଦାନ ରହିଛି ? ଜ୍ଞାନ ବିଜ୍ଞାନ ବିକାଶ କ୍ଷେତ୍ରରେ ହେଉ କିମ୍ବା ସଭ୍ୟ ମୂଲ୍ୟବୋଧର ପ୍ରସାର ଦିଗରେ ହେଉ କେଉଁମାନେ ସଭ୍ୟତାକୁ ଆଲୋକ ଦେଇଛନ୍ତି ? ଏକଥା ସତ୍ୟ ଯେ ଆଜି ଆମେ ସଭ୍ୟତାର ଯେଉଁ ପାହାଚଟିରେ ଛିଡ଼ା ହୋଇଛେ ସେଥିପାଇଁ ବହୁ ପାହାଚ ଅତିକ୍ରମ କରିବାକୁ ପଡ଼ିଛି । ସଭ୍ୟତା ଧୀର ମନ୍ଥର ଗତିରେ ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ମଧ୍ୟ ଦେଇ ଆଜିର ସ୍ତରକୁ ଆସିଛି । ଆଜିର ସ୍ତରକୁ ଆସିବା ପଶ୍ଚାତରେ ରହିଛି ବହୁ ପ୍ରୟାସ ଓ ହଜାର ହଜାର ବର୍ଷର ପ୍ରଚେଷ୍ଟା । ଆଦିମ ମଣିଷର ଗୋଷ୍ଠୀ ଜୀବନରୁ ଆଜିର ରାଷ୍ଟ୍ର ବ୍ୟବସ୍ଥା, ବଣ ଜଙ୍ଗଲରେ ବୁଲି ଯାଯାବର ଜୀବନ ବିତାଉଥିବା ମଣିଷଠାରୁ ଆଜିର ସଭ୍ୟ, ସଂସ୍କୃତ ମଣିଷର ସ୍ଥିତି, ଶାରୀରିକ ଅଙ୍ଗ ପ୍ରତ୍ୟଙ୍ଗ ଦ୍ୱାରା ମନର ଭାବନା ବ୍ୟକ୍ତ କରୁଥିବା ପରିସ୍ଥିତିଠାରୁ ଆଜିର ପରିବେଶ ଭିତରେ ବହୁ ଗୁଣାତ୍ମକ ପାର୍ଥକ୍ୟ ରହି ଆସିଛି । ଏପରିକି ଶହେବର୍ଷ ତଳେ ଜୀବନର ମାନ ଓ ବଞ୍ଚିବାର ସାଧନ ଯାହା ଥିଲା ତାହା ତୁଳନାରେ ଆଜିର ପରିବେଶ ଭିତରେ ରହିଛି ଆକାଶ ପାତାଳ ପ୍ରଭେଦ । ଶହେବର୍ଷ ତଳେ ଦୁର୍ଭିକ୍ଷ ଓ ମହାମାରୀର ଯେଉଁ ଆତଙ୍କ ରହିଥିଲା ସେ ପରିବେଶଠାରୁ ଆଜିର ସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ । ଶହେ ବର୍ଷ ତଳେ ଦୁଇ ଶହ/ତିନି ଶହ କୋଟି ଲୋକଙ୍କ ପାଇଁ ଖାଦ୍ୟ ସାମଗ୍ରୀର ଘୋର ଅଭାବ ରହିଥିବା ବେଳେ ଆଜି ବିଶ୍ୱର ସାତ ଶହ କୋଟି ଲୋକଙ୍କ ପାଇଁ ସେ ସମସ୍ୟା ପ୍ରାୟତଃ ନାହିଁ କହିଲେ ଚଳେ । ଶହେ ବର୍ଷ ପୂର୍ବର ପୃଥିବୀର ବିଭିନ୍ନ ଭୂଖଣ୍ଡରେ ରାଜତନ୍ତ୍ର, ସାମନ୍ତବାଦ ଓ ନିରକ୍ଷରତାର ଯେଉଁ ପରିବେଶ ରହିଥିଲା ସେହି ସ୍ଥିତିରେ ସମ୍ପ୍ରତି ବହୁ ପରିବର୍ତ୍ତନ ହୋଇଛି । ଗଣତନ୍ତ୍ର, ଗଣଶିକ୍ଷା, ମାନବିକ ଅଧିକାରର ଭାବନା ଆଜି ଯେପରି ସୁଦୃଢ଼ ଭିତ୍ତି ନେଇଛି ତାହା ଦୁଇ ଶହ, ତିନି ଶହ ବର୍ଷ ତଳେ ଅଚିନ୍ତନୀୟ ରହିଥିଲା । ସମ୍ପ୍ରତି ପୃଥିବୀର କେଉଁ କୋଣରେ କିଛି ପ୍ରାକୃତିକ ଦୁର୍ବିପାକ ଘଟିଲେ ସାରା ବିଶ୍ୱରୁ ସହାନୁଭୂତିର ହାତ ପ୍ରସାରିତ ହୋଇ ଯାଉଛି । ଆଜି ଗମନାଗମନର ପ୍ରଭୂତ ବିକାଶ ଓ ସୂଚନା ପ୍ରଯୁକ୍ତି କ୍ଷେତ୍ରରେ ଯେଉଁ ବିପ୍ଲବ ସମ୍ଭବ ହୋଇଛି ତାହା ସମଗ୍ର ପୃଥିବୀକୁ କ୍ଷୁଦ୍ରରୁ କ୍ଷୁଦ୍ରତର କରିବାରେ ଲାଗିଛି । ବର୍ଣ୍ଣଗତ, ଧର୍ମଗତ, ଭାଷାଗତ

ଭେଦଭାବ ଇତ୍ୟାଦି ଧୀରେ ଧୀରେ ଦୂର ହେବାରେ ଲାଗିଛି । ଅବଶ୍ୟ ସାମ୍ପ୍ରତିକ ବିଶ୍ୱରେ କେତେକ ସମସ୍ୟା, ସନ୍ତ୍ରାସବାଦ, ବିଭେଦ ରହିଥିଲେ ବି ସାମଗ୍ରିକ ଭାବରେ ବିଶ୍ୱରେ ଗତ କେତୋଟି ଶତାବ୍ଦୀ ଭିତରେ ଯେଉଁ ଉଲ୍ଲେଖନୀୟ ପରିବର୍ତ୍ତନମାନ ସଂଘଟିତ ହୋଇଛି ତାହାକୁ ଅସ୍ୱୀକାର କରିହେବ ନାହିଁ ।

ଅତୀତରେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିବା ସଭ୍ୟତାମାନ ପ୍ରାୟତଃ ଏକାଧାରରେ ପରିଚାଳିତ ହେଉଥିଲା । କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତା, ଯୌଥପରିବାର, ରାଜତନ୍ତ୍ର, ସାମନ୍ତବାଦ ସବୁ ସମାଜରେ ନାନା ଭାବରେ ରହିଥିଲା । ଏହା ସହ ସବୁ ସମାଜରେ ଧର୍ମର ଗଭୀର ପ୍ରଭାବ ରହିଥିଲା । ଧର୍ମ ହିଁ ଥିଲା ସକଳ ସାମାଜିକ ନିୟନ୍ତ୍ରଣର ଆଧାର । ଧାର୍ମିକ ବିଶ୍ୱାସ ଜନଜୀବନକୁ, ସାମାଜିକ ମୂଲ୍ୟଚୟକୁ, ଜୀବନର ଲକ୍ଷ୍ୟ ଇତ୍ୟାଦିକୁ ପ୍ରଭାବିତ କରି ଆସିଥିଲା । ତେବେ ୟୁରୋପରେ ଯେଉଁ ନବଜାଗରଣର ପରିବେଶ ଆସିଲା, ତା' ପ୍ରଭାବରେ ବିଜ୍ଞାନର ଯୁଗ ଆରମ୍ଭ ହେଲା । ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉଠିଲା, ସାମନ୍ତବାଦକୁ ଓ ଧାର୍ମିକ ରକ୍ଷଣଶୀଳତାକୁ ଦୂର କରି ମୁକ୍ତ ଚିନ୍ତାର ପରିପ୍ରକାଶ ପାଇଁ ନାନା ବିଚାର ପ୍ରକାଶ ପାଇଲା । ପ୍ରତ୍ୟେକ ସଭ୍ୟତାର ବିଚାରଶୀଳ ବ୍ୟକ୍ତିମାନେ ଚିନ୍ତାରାଜ୍ୟରେ ନୂଆ ନୂଆ ଭାବନାର ସୂତ୍ରପାଦ କଲେ । ଯେଉଁ ମାନେ ନୂତନ ଭାବନା, ବିଚାର, ସିଦ୍ଧାନ୍ତର ଅବତାରଣା କରି ଜ୍ଞାନରାଜ୍ୟରେ ଆଲୋଡ଼ନ ଆଣିଲେ ସେମାନଙ୍କୁ କିନ୍ତୁ ବହୁ ମୂଲ୍ୟ ଦେବାକୁ ହେଲା । ଇତିହାସର ଏହା ବିଡ଼ମ୍ବନା ଯେ ସଭ୍ୟତାକୁ ନୂତନ ଆଲୋକରେ ଉଦ୍ଭାସିତ କରିଥିବା ବହୁ କ୍ରାନ୍ତିକାରୀ ବିଚାରକ, ପ୍ରଜ୍ଞାଦୀପ୍ତ ହେତୁବାଦୀ, ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ ସେମାନଙ୍କ ସମସାମୟିକ ସମାଜରେ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଛି । ସତ୍ୟର ସର୍ବଦା ଜୟ ହୁଏ ବୋଲି ଆଜି ଚିନ୍ତାସ୍ତରରେ ଅନ୍ତତଃ ଗୃହୀତ ହେଉଛି । ଅତୀତରେ କିନ୍ତୁ ସତ୍ୟ-ସନ୍ଧାନୀ ହୋଇ ଅନେକ ବିଚାରଶୀଳ ବ୍ୟକ୍ତି ନାନା ଭାବରେ ଧାର୍ମିକ ଅତ୍ୟାଚାରର ଶିକାର ବା ଶହୀଦ ହୋଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ବା ନିର୍ଯାତନାରେ ଜର୍ଜରିତ ହୋଇଛନ୍ତି । ତଥାପି ସେହିମାନଙ୍କର ଅମୂଲ୍ୟ ଅବଦାନ ବିଶ୍ୱ ଚିନ୍ତାରାଜ୍ୟକୁ ସମୃଦ୍ଧ କରିଛି, ସଭ୍ୟତାକୁ ଆଗକୁ ନେଇଛି ଓ ବିଶ୍ୱରେ ମାନବିକତାର ଜୟଗାନ କରିଛି ସେହି ବୁଦ୍ଧିଦୀପ୍ତ, ହେତୁବାଦୀ, ବୈଜ୍ଞାନିକ, ମାନବବାଦୀ ବିଚାରକଗଣଙ୍କର ଅବଦାନ ଯୋଗୁ ଜୀବନର ଗୁଣାତ୍ମକ ପରିବର୍ତ୍ତନ ଆସିଛି ଓ ସଭ୍ୟତା ଆଗକୁ ଯାଇଛି । ତେବେ ସେମାନେ କିପରି 'ବିଶ୍ୱାସୀ'ମାନଙ୍କ ଦ୍ୱାରା ନିନ୍ଦିତ ହୋଇଛନ୍ତି ତାହାର କେତୋଟି ଦୃଷ୍ଟାନ୍ତମୂଳକ ଉଦାହରଣ ଦେଉଛି ।

ମଣିଷର ବୌଦ୍ଧିକ ଜଗତକୁ ପ୍ରାଚୀନ ଗ୍ରୀକମାନଙ୍କର ଅବଦାନ ଅତୁଳନୀୟ । ଖ୍ରୀ:ପୂ: ୫୦୦ ବେଳକୁ ଗ୍ରୀସରେ ବିଶ୍ୱାସ ରହିଥିଲା ଯେ ସୂର୍ଯ୍ୟ, ଚନ୍ଦ୍ର ହେଉଛନ୍ତି ଦେବତା । ଆନାକ୍ସଗୋରାସ ସେହି ସମୟରେ ଧାରଣା ଦେଲେ ଯେ ସୂର୍ଯ୍ୟ, ଚନ୍ଦ୍ର ପ୍ରାକୃତିକ ବସ୍ତୁ, କୌଣସି ଦୈବୀ ଶକ୍ତି ନୁହନ୍ତି । ସେ ଏହି ଧାରଣା ବ୍ୟକ୍ତ କରିବାରୁ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା । ତେବେ ସେ ଏଥେନ୍ସରୁ ଗୁପ୍ତରେ ଚାଲି ଆସି ଆତ୍ମଗୋପନ କରି ରହିଲେ । ପ୍ରେଟାଗୋରାସ (ଖ୍ରୀ:ପୂ: ୪୮୫-୪୧୦) ମଣିଷ ହିଁ ସବୁର ମାନଦଣ୍ଡ କହି ଈଶ୍ୱରୀୟ ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ କରିବାରୁ ତାଙ୍କର ଲେଖାସବୁକୁ ପୋଡ଼ି ଦିଆଗଲା ଓ ସେ ବି ପ୍ରାଣ ଭୟରେ ଏଥେନସ୍ ଛାଡ଼ି ଚାଲିଆସିଲେ । ମୁକ୍ତଚିନ୍ତକ ତଥା ସତ୍ୟ, ନ୍ୟାୟର ପ୍ରବକ୍ତା ସକ୍ରେଟିସଙ୍କ(ଖ୍ରୀ:ପୂ:୪୭୦-୩୯୯)ବିରୁଦ୍ଧରେ ବଡ଼ ଅଭିଯୋଗ ଥିଲା ଯେ ସେ ରାଷ୍ଟ୍ରଦ୍ୱାରା ପୂଜିତ ଦେବତାମାନଙ୍କୁ ବିଶ୍ୱାସ କରୁନାହାନ୍ତି । ଶେଷରେ ତାଙ୍କୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଗଲା । ଫଳରେ କାରାଗାରରେ ସେ ବିଷପାନ କରି ମୃତ୍ୟୁ ବରଣ କଲେ । ଭରତବର୍ଷରେ ଚାର୍ବାକ ଯିଏ ପ୍ରତ୍ୟକ୍ଷକୁ ଜ୍ଞାନର ମୌଳିକ ଆଧାର ଭାବରେ ନେଇ ସମସ୍ତ ଅତିପ୍ରାକୃତିକ ସତ୍ତାକୁ କଳ୍ପନା କହି ଅସ୍ୱୀକାର କରୁଥିଲେ ତାଙ୍କର ସମସ୍ତ କୃତିକୁ ଧ୍ୱଂସ କରାଯାଇ ତାଙ୍କ ନାମରେ ନାନା ଅବାନ୍ତର କଥା ଯୋଡ଼ି ଦିଆଗଲା । ଶରୀର ବିଜ୍ଞାନର ଜନକ ଓ ଆଧୁନିକ ଚିକିତ୍ସା ବିଜ୍ଞାନର ପଥପ୍ରଦର୍ଶକ ଆଣ୍ଡ୍ରିଆସ ଭେସାଲିୟସ (୧୫୧୪-୧୫୬୪) ମଣିଷ ଶରୀର ବିଷୟରେ ଦେଇଥିବା ଜ୍ଞାନ ଧାର୍ମିକ ବିଶ୍ୱାସର ପ୍ରତିକୂଳ ହୋଇଥିବାରୁ ତାଙ୍କୁ ଭୟଙ୍କର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେ ଶେଷରେ ପ୍ରାୟଶ୍ଚିତ କରିବାକୁ ଯିବାବେଳେ ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲେ । ପ୍ରକୃତିବାଦୀ ଜିଆର୍ଡ଼ନୋ ବ୍ରୁନୋ (୧୫୪୮-୧୬୦୦) କୌଣସି ଜ୍ଞାନ ଚିରନ୍ତନ ନୁହେଁ, ବାଇବେଲର ଜ୍ଞାନ ମିଥ୍ୟା ହୋଇପାରେ କହିବାରୁ ତାଙ୍କୁ ସର୍ବସାଧାରଣରେ ନିଆଁରେ ପୋଡ଼ି ହତ୍ୟା କରାଯାଇଥିଲା । ବାଇବେଲ ସୃଷ୍ଟିତତ୍ତ୍ୱ ବିରୁଦ୍ଧରେ ଜର୍ଜ ବୁଫୁନ (୧୭୦୭-୧୭୮୮) ବିଶ୍ୱର ଉତ୍ପତ୍ତି ଓ ପ୍ରାକୃତିକ ପରିବର୍ତ୍ତନ କୋଟି କୋଟି ବର୍ଷ ଧରି ଚାଲି ଆସିଥିବା କହିବାରୁ ଧର୍ମଗୋଷ୍ଠୀ ତରଫରୁ ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଥିଲେ । ସୂର୍ଯ୍ୟକୈନ୍ଦ୍ରିକ ସୌରମଣ୍ଡଳରେ ସୂର୍ଯ୍ୟ ସ୍ଥିର ଓ ପୃଥିବୀ ଚଳମାନ ଭାବନା ଯୋଗୁ ଗାଲିଲିଓଙ୍କୁ (୧୫୬୪-୧୬୪୨) କାରାଗାରରେ ବନ୍ଦୀ ଜୀବନ ବିତାଇବାକୁ ହୋଇଥିଲା । ଚାର୍ଲସ ଡାରଉଇନ୍ (୧୮୦୯-୧୮୮୨)ମଣିଷ ବା ପ୍ରାଣୀମାନଙ୍କୁ କୌଣସି ଈଶ୍ୱର ସୃଷ୍ଟି କରିନାହାନ୍ତି, ବରଂ ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଦେଇ ପ୍ରାଣୀ ଜଗତର ଉତ୍ପତ୍ତି ହୋଇଛି କହିବାରୁ ବହୁ କଟାକ୍ଷ ଓ

ସମାଲୋଚନାର ଶରବ୍ୟ ହୋଇଥିଲେ । ମୁସଲିମ୍ ସମାଜର ଧାର୍ମିକ କୁସଂସ୍କାର ଓ ମୌଳବାଦୀ ମାନସିକତା ବିରୁଦ୍ଧରେ ନିଜର ଲେଖାରେ ସ୍ୱର ଉତ୍ତୋଳନ କରିଥିବାରୁ ସଲମନ ରୁସ୍‌ଦି ଓ ତସଲିମା ନସରିନ୍‌ଙ୍କ ବିରୁଦ୍ଧରେ ଫତଓ୍ୱା ଜାରି ହୋଇଛି, ଫଳତଃ ସେମାନେ ଭୟରେ ଆତ୍ମଗୋପନ କରି ଜୀବନ ବଞ୍ଚାଇଛନ୍ତି । ଜ୍ୟୋତିରାଓ ଫୁଲେ(୧୮୨୭-୧୮୯୦) ଓ ଆମ୍ବେଦକରଙ୍କ (୧୮୯୧-୧୯୫୬) ପରି ସଂସ୍କାରକଗଣ ହିନ୍ଦୁ ସମାଜର ଅସ୍ପୃଶ୍ୟତା ଓ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉଠାଇ ଉଚ୍ଚଜାତିର ରକ୍ଷଣଶୀଳ ଲୋକଙ୍କ ଦ୍ୱାରା ନିନ୍ଦିତ ହୋଇଥିଲେ । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ଓ ମାନବିକ ଅଧିକାରର ବିଶିଷ୍ଟ ପ୍ରବକ୍ତା ଆବ୍ରାହମ୍ ଲିଙ୍କନ (୧୮୦୯-୬୫) ଓ ମାର୍ଟିନ ଲୁଥର କିଙ୍ଗ ଜୁନିୟରଙ୍କୁ (୧୯୨୯-୧୯୬୫) ଆମେରିକା ଭଳି ସଭ୍ୟ ସମାଜରେ ବି ହତ୍ୟା କରାଯାଇଥିଲା । ଜ୍ଞାନ, ବିଜ୍ଞାନ, ସାମାଜିକ ନ୍ୟାୟ, ମାନବିକ ଅଧିକାର କ୍ଷେତ୍ରରେ ମୌଳିକ ଅବଦାନ ଦେଇଥିବା ବହୁ ମହାନ୍ ଚିନ୍ତାନାୟକମାନଙ୍କୁ ପୃଥିବୀର ବିଭିନ୍ନ ଦେଶରେ ସେମାନଙ୍କ ସମସାମୟିକ ସମାଜରେ ବହୁ ଦୁଃଖ ଓ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଛି । ମାନବ ସଭ୍ୟତାର ଇତିହାସରେ ପ୍ରତିଭାବାନ ବିଚାରଶୀଳ ହେତୁବାଦୀଙ୍କର ଏହି କାହାଣୀ ଯେତିକି ଦୀର୍ଘ ସେତିକି ମର୍ମାନ୍ତିକ । ତେବେ ସେହି ପ୍ରତିଭାଧର ଚିନ୍ତାନାୟକମାନଙ୍କର ଅବଦାନର ଫଳ ସ୍ୱରୂପ ସଭ୍ୟତା ଆଗକୁ ଯାଇଛି, ଜ୍ଞାନ, ବିଜ୍ଞାନର ବିକାଶ ହୋଇଛି, ସଭ୍ୟଜୀବନ ଦୃଷ୍ଟିର ଧାରା ସୃଷ୍ଟି ହୋଇଛି ।

ସଭ୍ୟତାର ଇତିହାସରେ ଅଗଣିତ 'ବିଶ୍ୱାସୀ' ସମାଜର ପାରମ୍ପରିକ ବିଶ୍ୱାସକୁ ମାନି ନିଅନ୍ତି ଓ ଅଲୌକିକ ଶକ୍ତିରେ ବିଶ୍ୱାସ କରନ୍ତି । କିନ୍ତୁ କେତେକ ବ୍ୟକ୍ତି ମୁକ୍ତ ମନ ନେଇ ଅନୁସନ୍ଧିତ୍ସୁ ହୋଇ ସବୁଥିର କାରଣ ଖୋଜନ୍ତି । ସେମାନେ ଏହି ସିଦ୍ଧାନ୍ତରେ ବିଶ୍ୱାସ କରନ୍ତି ଯେ ପ୍ରତ୍ୟେକ ଘଟଣାର କେବଳ ପ୍ରକୃତିକ କାରଣ ରହିଛି, କୌଣସି ଦୈବୀ କାରଣ ନାହିଁ । ଭଲ ଫସଲ ଉତ୍ପାଦନ ପାଇଁ ଉତ୍ପାଦନର କାରଣ ଖୋଜିବାକୁ ହେବ, ରୋଗର ଚିକିତ୍ସା ବାହାର କରିବାକୁ ରୋଗର କାରଣ ଅନୁସନ୍ଧାନ କରିବାକୁ ପଡ଼ିବ ଇତ୍ୟାଦି ଇତ୍ୟାଦି । କେଉଁ ଦିଅଁ ଦେବତା ସମାଜକୁ ଉନ୍ନତ କରିବେ ନାହିଁ କିମ୍ବା ଜୀବନର ଦୁଃଖ ଯନ୍ତ୍ରଣା ଦୂର କରିପାରିବେ ନାହିଁ । ମଣିଷର ପ୍ରୟାସରେ ଜ୍ଞାନର ବିକାଶ ହୋଇପାରିବ ଓ ଜୀବନ ପ୍ରୀତିମୟ ହୋଇପାରିବ । ସେହିପରି ଏହି ବିଶ୍ୱକୁ ସୁନ୍ଦର, ପ୍ରୀତିମୟ କରିବାକୁ ହେଲେ ମାନବବାଦୀ ମୂଲ୍ୟଚୟକୁ ବିସ୍ତାର କରିବାକୁ ପଡ଼ିବ ।

ମଣିଷର ପ୍ରୟାସରେ ରାତିର ଅନ୍ଧକାର ଦୂର ହୋଇପାରିଛି । ବହୁ ରୋଗର ଚିକିତ୍ସା ଉଦ୍ଭାବିତ ହୋଇଛି । କୃଷିରେ ପ୍ରଭୂତ ଉନ୍ନତି ଘଟିଛି, ବିଶ୍ୱର ଜ୍ଞାନ ଭଣ୍ଡାର ଘର ଭିତରେ ଉପଲବ୍‌ଧ ହୋଇପାରୁଛି । କୌଣସି ସଙ୍କଟ ବିଶ୍ୱ ଦରବାରରେ ଆଲୋଚିତ ହୋଇପାରୁଛି । ଏହି ଧାରା ଅବ୍ୟାହତ ରହି ମାନବିକ ମୂଲ୍ୟବୋଧର ବିକାଶ ତ୍ୱରାନ୍ୱିତ ହେଲେ ଆମ ସଂସାର ଅଧିକ ପ୍ରୀତିମୟ ହୋଇଉଠିବ । ଏହା ହିଁ ହେତୁବାଦୀମାନଙ୍କର ସ୍ୱପ୍ନ ହୋଇରହିଛି । (୩.୮.୧୧)



# ଧର୍ମ, ଈଶ୍ୱର ଓ ମୁକ୍ତ ମନର ପ୍ରଶ୍ନ

ମଣିଷର ବହୁବିଧ ପରିଚୟ ପରି ଏକ ଧର୍ମ-ପରିଚୟ ରହିପାରେ । ବୃତ୍ତି ଦୃଷ୍ଟିରୁ ଜଣେ ଶିକ୍ଷକ, କୃଷକ, ଡ଼ାକ୍ତର, ଅଭିନେତା, ମିସ୍ତ୍ରୀ ବା ଅନ୍ୟ ଯାହା କିଛି ହୋଇପାରନ୍ତି । ଜାତୀୟତା ଦୃଷ୍ଟିରୁ ଜଣେ ଭାରତୀୟ, ଜାପାନୀ, ଇଟାଲୀୟ, ଆମେରିକୀୟ ବା ଅନ୍ୟ ଯାହା କିଛି ହେବା ସମ୍ଭବ । ସେହିପରି ମାତୃଭାଷା ଦୃଷ୍ଟିରୁ ଜଣେ ଓଡ଼ିଆ, ବଙ୍ଗାଳୀ, ତେଲୁଗୁ, ପଞ୍ଜାବୀ ବା ଅନ୍ୟ କିଛି ହୋଇପାରନ୍ତି । ସେହିପରି ଧାର୍ମିକ ଅସ୍ମିତା ଦୃଷ୍ଟିରୁ ଜଣେ ହିନ୍ଦୁ, ଖ୍ରୀଷ୍ଟିଆନ, ବୌଦ୍ଧ, ମୁସଲମାନ ବା ଅନ୍ୟ କିଛି ହୋଇପାରନ୍ତି । ତେବେ ଜଣେ ନିଜର ଧର୍ମକୁ ନିଜେ ସ୍ଥିର କରେ ନାହିଁ । ଏହା ଉତ୍ତରାଧିକାର ସୂତ୍ରରେ ସେ ନିଜର ପିତା-ମାତାଙ୍କଠାରୁ ପାଇଥାଏ । ଜଣେ ଯେଉଁ ଧାର୍ମିକ ପରିଚୟ ବହନ କରେ ସେ ସେହି ଧର୍ମର ମୌଳିକ ବିଶ୍ୱାସକୁ ଗ୍ରହଣ କରୁ କି ନକରୁ ଜଣେ ଯଦି ଇଚ୍ଛାକୃତ ଭାବରେ ନିଜର ଧର୍ମକୁ ପରିବର୍ତ୍ତନ ନକରେ ତେବେ ତାହାର ପିତା-ମାତାଙ୍କର ଧର୍ମର ପରିଚୟଟି ତା' ପାଖରେ ରହିଥାଏ ।

ପ୍ରତ୍ୟେକ ଧର୍ମର ଏକ ଐତିହାସିକ ଓ ସାଂସ୍କୃତିକ ଭିତ୍ତି ରହିବା ଦେଖାଯାଏ । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ଆଲୋଡ଼ନ ଭାବେ ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସୃଷ୍ଟି ହେବାପରେ ଏହା କାଳକ୍ରମେ ଅନ୍ୟ ଭୂଖଣ୍ଡକୁ ବିସ୍ତାର ଲାଭ କରିଛି । ଧର୍ମ ଯେହେତୁ ସାମାଜିକ ବିବର୍ତ୍ତନ ପ୍ରକ୍ରିୟାରେ ଉଦ୍ଭବ ହୋଇଛି ତେଣୁ ପ୍ରତ୍ୟେକ ଧର୍ମର ଐତିହାସିକ ଭିତ୍ତି ରହିଛି । ପ୍ରତ୍ୟେକ ଧର୍ମ ସହ କୌଣସି ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ ବା ଉଭୟକୁ ସଂଶ୍ଳିଷ୍ଟ କରାଯାଇଛି । ପ୍ରତ୍ୟେକ ଧର୍ମର କେତେକ ତାତ୍ତ୍ୱିକ ବିଶ୍ୱାସ ରହିଛି । ଆତ୍ମାର ସ୍ୱରୂପ, ଈଶ୍ୱରଙ୍କ ସ୍ଥିତି, ଜୀବନର ଅନ୍ତିମ ଲକ୍ଷ୍ୟ, ମୁକ୍ତି, ମୋକ୍ଷ, ଜୀବନରେ ଦୁଃଖର କାରଣ ଇତ୍ୟାଦି ନାନା ତାତ୍ତ୍ୱିକ ପ୍ରସଙ୍ଗ ଉପରେ ପ୍ରତ୍ୟେକ ଧର୍ମର ନିଜସ୍ୱ ଭାବନା ଓ ସିଦ୍ଧାନ୍ତ ରହିଛି । ପ୍ରତ୍ୟେକ ଧର୍ମ ଏକ ଭୂଖଣ୍ଡର ସାଂସ୍କୃତିକ ଜୀବନ ପ୍ରବାହ ସହ ସଂଶ୍ଳିଷ୍ଟ ହୋଇଥିବାରୁ ପ୍ରତ୍ୟେକ ଧର୍ମ ସହ କେତେକ ଉପଚାର ଓ କର୍ମକାଣ୍ଡ ସଂଶ୍ଳିଷ୍ଟ ହୋଇ ରହିଛି । ଭଲ, ମନ୍ଦ, ଉତ୍ତମ ଜୀବନ, ନୀତି, ନୈତିକତା, ଜୀବନର ଶ୍ରେୟ ନେଇ ପ୍ରତ୍ୟେକ ଧର୍ମ କେତେକ ବିଚାର ବ୍ୟକ୍ତ କରିଛି । ପ୍ରତ୍ୟେକ ଧର୍ମ ଭିତରେ ବିଭିନ୍ନ ସମ୍ପ୍ରଦାୟ ବା ଶ୍ରେଣୀ କାଳକ୍ରମେ ସୃଷ୍ଟି ହୋଇଛି । ପ୍ରତ୍ୟେକ ଧର୍ମ ସହ ନାନା କାହାଣୀ, କିମ୍ବଦନ୍ତୀ, ଦନ୍ତକଥା, ଉପାଖ୍ୟାନ ଧୀରେ ଧୀରେ ସଂଯୁକ୍ତ ହୋଇଯାଇଛି । ମୋଟ ଉପରେ

କହିଲେ ପ୍ରତ୍ୟେକ ଧର୍ମ ସହ ଏକ ଐତିହାସିକ ଭିତ୍ତି, ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ, ତାତ୍ତ୍ୱିକ ବିଚାର, କର୍ମକାଣ୍ଡ, ନୈତିକ ଆବେଦନ, ସମ୍ପ୍ରଦାୟ, କାହାଣୀ, କିମ୍ବଦନ୍ତୀ ରହିବା ସମ୍ଭବ ଓ ଏ ସବୁର ସମନ୍ୱିତ ଅଭିବ୍ୟକ୍ତି ଏକ ଧର୍ମର ଆଧାରକୁ ନିର୍ଣ୍ଣିତ କରିଥାଏ ।

ଯେଉଁ ଯୁଗରେ ଓ କାଳଖଣ୍ଡରେ ଧର୍ମମାନଙ୍କର ସୃଷ୍ଟି ହୋଇଥିଲା ସେ ସମୟରେ ମଣିଷର ବୌଦ୍ଧିକ ସ୍ତର ଏତେ ଉନ୍ନତ ହୋଇ ନଥିଲା । ସୁତରାଂ ସେହି କାଳଖଣ୍ଡରେ ଜୀବନର ଘଟଣା ପ୍ରବାହ ବା ପ୍ରାକୃତିକ ପରିବେଶକୁ ଅବବୋଧ କରିବା ନେଇ ଅଧିକାଂଶ ଧର୍ମରେ କୌଣସି ଈଶ୍ୱର, ଅତି-ପ୍ରାକୃତିକ ସତ୍ତା, ଦୈବୀଶକ୍ତିରେ ଆସ୍ଥା ସ୍ଥାପନ କରିବା ସହଜ ଘଟଣା ଥିଲା । ଯେଉଁ ଘଟଣା ସମୂହକୁ ଏକ ବୌଦ୍ଧିକ ଓ ବୈଜ୍ଞାନିକ ପ୍ରକ୍ରିୟାରେ ନିରପେକ୍ଷ ଭାବେ ବ୍ୟାଖ୍ୟା କରିବା ସମ୍ଭବ, ସେ ଯୁଗରେ ତାହା ସମ୍ଭବ ନ ଥିବାରୁ ତାହା ସହିତ ନାନା ଅଲୌକିକ ଘଟଣା, ଚମତ୍କାରିତାକୁ ସଂଶ୍ଳିଷ୍ଟ କରାଗଲା । ଧର୍ମ ସହ କାଳକ୍ରମେ ନାନା ଅଲୌକିକ ଓ ଚମତ୍କାରିତା ଗଳ୍ପ, କାହାଣୀ ଓ କିମ୍ବଦନ୍ତୀ ଜରିଆରେ ସଂଶ୍ଳିଷ୍ଟ ହୋଇଗଲା । ଏସବୁର ଏକ ବଳିଷ୍ଠ ପ୍ରଭାବ ରହିଥିବାରୁ ଧାର୍ମିକ ବିଶ୍ୱାସ ସହ କେତେ ଉପକଥା ଓ କାହାଣୀ ଯୋଡ଼ାଗଲା । ଚିନ୍ତା ଚେତନାର ବିକାଶ, ବୈଜ୍ଞାନିକ ଉଦ୍ଭାବନ, ଆବିଷ୍କାର ତଥା ଦାର୍ଶନିକ ଅନୁଶୀଳନ ଯୋଗୁଁ କାଳକ୍ରମେ ଧାର୍ମିକ ବିଶ୍ୱାସ ଗୁଡ଼ିକ ପ୍ରତି ସନ୍ଦେହର ଅବକାଶ ସୃଷ୍ଟିହେଲା । ସମାଜର ଅଗଣିତ ମଣିଷ ଧାର୍ମିକ ବିଶ୍ୱାସକୁ ଗ୍ରହଣ କରି ନେଉଥିବାବେଳେ କେତେକ ପ୍ରାଜ୍ଞ ଓ ବୁଦ୍ଧିଦୀପ୍ତ(ଇଲିଟ) ବ୍ୟକ୍ତି ଏଥିରେ ସନ୍ଦେହ ପ୍ରକାଶ କଲେ । ଧର୍ମ ସହ ଅତି-ପ୍ରାକୃତିକ ସତ୍ତାରେ ବିଶ୍ୱାସ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇଥିବାରୁ ସେସବୁର ଯୁକ୍ତିଶୀଳ ଆଧାର ନେଇ ଅନୁସନ୍ଧିତ୍ସାରୁ ନାନା ସନ୍ଦେହ ସୃଷ୍ଟିହେଲା । କାଳକ୍ରମେ ସ୍ୱର୍ଗ, ନର୍କ ଇତ୍ୟାଦି ନେଇ ଯେଉଁ ଭାବନା ରହିଥିଲା ତାହା ବିଜ୍ଞାନର ମାନଦଣ୍ଡରେ ଅସତ୍ୟ ଜଣାପଡ଼ିବାରୁ ଧର୍ମର ବିଶ୍ୱାସ ଗୁଡ଼ିକ ପ୍ରତି ସନ୍ଦେହ ଗୁଞ୍ଜରି ଉଠିଲା । ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା କେତେକ ପ୍ରଜ୍ଞାବାନ ବ୍ୟକ୍ତି ଧର୍ମ ଓ ଅତି-ପ୍ରାକୃତିକ ସତ୍ତାରେ ସନ୍ଦେହ ପୋଷଣ କଲେ, ଫଳରେ ସେମାନଙ୍କୁ ରିଲିଜିୟସ୍ ନନ୍‌କନ୍‌ଫର୍ମିଷ୍ଟ କୁହାଗଲା ।

ଧାର୍ମିକ ବିଶ୍ୱାସ ପରିସରରେ ଈଶ୍ୱରଙ୍କୁ ଏକ ଅତିପ୍ରାକୃତିକ ସତ୍ତା ଭାବରେ ବିଶ୍ୱାସ କରାଯାଏ । ଏହା ମଧ୍ୟ ବିଶ୍ୱାସ କରାଯାଏ ଯେ, ଈଶ୍ୱର ଏହି ଜଗତର ସ୍ରଷ୍ଟା, ପାଳନ କର୍ତ୍ତା ଓ ସଂହାରକର୍ତ୍ତା । ତେବେ ଈଶ୍ୱର ଭାବନାକୁ ନେଇ ନାନା ବିଶ୍ଳେଷଣାତ୍ମକ ଆଲୋଚନାରୁ ନାନା ପ୍ରସଙ୍ଗ ଆସିଲା । ଏକ ସମୟରେ ବହୁ ଈଶ୍ୱରବାଦର ଭାବନା ରହିଥିଲା । ହିନ୍ଦୁ ଧର୍ମରେ ତେତିଶ କୋଟି ଈଶ୍ୱରଙ୍କର ପରିକଳ୍ପନା ବି କରାଯାଇଥିଲା । ତେବେ ବହୁ ଈଶ୍ୱରବାଦରୁ ଏକେଶ୍ୱରବାଦ ଭାବନା ଆସିଲା । ପୁନଶ୍ଚ ଈଶ୍ୱର ଭାବନା ସହିତ ନାନା ସୁପରିକଳ୍ପିତ ଓ ବିରୋଧାତ୍ମକ ଭାବନା ସଂଶ୍ଳିଷ୍ଟ ହେବା ଦେଖାଯାଏ ।

କେତେକଙ୍କ ମତରେ ବିଶ୍ୱରେ ଥିବା ଶକ୍ତି ହିଁ ଈଶ୍ୱର ଅନ୍ୟ କାହାପାଇଁ ମଣିଷ ଭିତର ମହନୀୟ ଭାବ ହିଁ ଈଶ୍ୱର, କାହାପାଇଁ ସତ୍ୟ ହିଁ ଈଶ୍ୱର । କାହାପାଇଁ ଈଶ୍ୱର ଏକ ବ୍ୟକ୍ତି ସତ୍ତା, ଅନ୍ୟ ବିଶ୍ୱାସରେ ଈଶ୍ୱର ଅବ୍ୟକ୍ତିକ । କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ମୃତ୍ୟୁ ପରେ ଈଶ୍ୱରଙ୍କର ସାନ୍ନିଧ ମିଳିବ, ଅନ୍ୟ ବିଶ୍ୱାସରେ ମୁକ୍ତି ମିଳିଲେ ଆତ୍ମା ଈଶ୍ୱରଙ୍କ ଠାରେ ଲୀନ ହୋଇଯିବ । କେତେକ ବିଶ୍ୱାସ କରନ୍ତି ଯେ ସଂସାରରେ ପାପ ବୃଦ୍ଧି ହେଲେ ଈଶ୍ୱର ମଣିଷ ଭାବେ ଅବତାର ନେଇ ପାପୀମାନଙ୍କୁ ସଂହାର କରି ସତ୍ୟ, ନ୍ୟାୟ ସଂସ୍ଥାପନ କରନ୍ତି । ଅନ୍ୟ ବିଶ୍ୱାସ ଅନୁଯାୟୀ ଈଶ୍ୱର କେବେବି ଜନ୍ମ ନିଅନ୍ତି ନାହିଁ । ଯେ ସର୍ବଶକ୍ତିମାନ ସେ ଯେଉଁଠାରେ ରହିଲେ ବି ସବୁକିଛିକୁ ସୁବ୍ୟବସ୍ଥିତ କରିପାରିବେ ।

ଗୋଟିଏ ସମୟରେ ବିଶ୍ୱାସ ଥିଲା ଯେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଯୁକ୍ତିଦ୍ୱାରା ପ୍ରମାଣ କରିହେବ ଓ ଦାର୍ଶନିକମାନେ ଏଥିପାଇଁ ବିଭିନ୍ନ ଯୁକ୍ତିର ଅବତାରଣା କରିଥିଲେ । ସେହି ଯୁକ୍ତିମାନଙ୍କର ବିଶ୍ଳେଷଣାତ୍ମକ ବ୍ୟାଖ୍ୟାରୁ ସେସବୁ ଯୁକ୍ତି କିପରି ଅବୈଧ ଓ ଅସଙ୍ଗତ ତାହା ଜଣାପଡ଼ିଲା । ସୁତରାଂ ପ୍ରତ୍ୟକ୍ଷ ବା ଯୁକ୍ତିଶୀଳ ଆଧାର ଅଭାବରେ ଦାର୍ଶନିକମାନେ, ହେତୁବାଦୀମାନେ, ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ପ୍ରଶ୍ନ ଉଠାଇଲେ । ତେବେ ସେହି ସନ୍ଦେହରେ କେତେକ କାରଣ ବି ରହିଛି । ଯଦି ଈଶ୍ୱର ସର୍ବଶକ୍ତିମାନ, କରୁଣାମୟ ଓ ସର୍ବନିୟନ୍ତା ତେବେ ତାଙ୍କ ସୃଷ୍ଟିରେ ଏତେ ଦୁଃଖ, ଅନ୍ୟାୟ, ଯୁଦ୍ଧ, ବିଭୀଷିକା, ପ୍ରାକୃତିକ ଦୁର୍ବିପାକ କାହିଁକି ରହିଛି ? ଈଶ୍ୱର ଯଦି ସର୍ବଶକ୍ତିମାନ ସେ କ'ଣ ଏସବୁ ଦୂରକରି ପାରନ୍ତେ ନାହିଁ ? ତେବେ ସେ ସର୍ବଶକ୍ତିମାନ କିପରି ? ଈଶ୍ୱର ଏତେ ଅନ୍ୟାୟ, ଦୁର୍ବିପାକରେ ମଣିଷ ପ୍ରତି ତ ସହାୟ ନୁହନ୍ତି, ତାଙ୍କୁ କିପରି କରୁଣାମୟ କୁହାଯିବ ? ଯଦି ଯାହାକିଛି ଘଟୁଛି ସବୁ ଈଶ୍ୱର ନିୟନ୍ତିତ, ତେବେ କ'ଣ କର୍କଟ, ଏଡ଼ସ୍, କୁଷ୍ଠ ଇତ୍ୟାଦି ରୋଗ ବି ଈଶ୍ୱର ସୃଷ୍ଟି କରିଛନ୍ତି ? ଜଣେ ଜଣେ ବ୍ୟକ୍ତି ମଣିଷ ଦୁଃଖରେ ଗଭୀର ମର୍ମାହତ ହୋଇ ଜୀବନବ୍ୟାପୀ ସେହି ଦୁଃଖ ଦୂର ପାଇଁ ଚେଷ୍ଟା କରିଛନ୍ତି । ଦରଦୀ ଓ ହେତୁବାଦୀ ଜେରହାର୍ଡ଼ ହାନସନ କୁଷ୍ଠରୋଗର ଚିକିତ୍ସା ପାଇଁ ଜୀବନ ବ୍ୟାପୀ ଗବେଷଣା କରି କୁଷ୍ଠରୋଗର ଚିକିତ୍ସା ବାହାର କରି କୋଟି କୋଟି ମଣିଷଙ୍କୁ ଆରୋଗ୍ୟ କରିବାରେ ସଫଳ ହୋଇଛନ୍ତି । କେତେକ ଦରଦୀ ପ୍ରାଣର ବ୍ୟକ୍ତି ମଣିଷର ଦୁଃଖ ନିରାକରଣ ପାଇଁ ଜୀବନ ଉତ୍ସର୍ଗ କରିଥିବା ବେଳେ ଈଶ୍ୱର କିପରି ସର୍ବଶକ୍ତିମାନ ବା କରୁଣାମୟ ? ବିଶ୍ୱାସର ପରିସରରେ ଏହାର କ'ଣ ସନ୍ତୋଷଜନକ ଉତ୍ତର ଦିଆଯିବ ?

ଈଶ୍ୱର ଭାବନା ଅତି-ପ୍ରାକୃତିକ ଚିନ୍ତାର ଏକ ଅପରିହାର୍ଯ୍ୟ ଅଙ୍ଗ । ପ୍ରକୃତିରେ ଅନେକ ରହସ୍ୟ ନିଶ୍ଚୟ ରହିଛି, ଜୀବନର କେତେକ ଘଟଣା ଏବେ ବି ମଣିଷ ପ୍ରଜ୍ଞାର ବହିର୍ଭୂତ ମନେହୁଏ । ଏହି ଅଜ୍ଞତା ପୃଷ୍ଠଭୂମିରେ ଈଶ୍ୱର ହିଁ ବିଶ୍ୱାସ ପରିସରକୁ

ଆସନ୍ତି । ତେବେ ଜ୍ଞାନର ଆଲୋକ ଯେତିକି ବ୍ୟାପ୍ତ ହେଉଛି, ଈଶ୍ୱରଙ୍କ ପରିଧିଟି ସେତିକି ସଙ୍କୁଚିତ ହୋଇଯାଉଛି । ଈଶ୍ୱର ସର୍ବଦା ଅଜ୍ଞତାର ଇଲାକାରେ ରହି ଆସିଛନ୍ତି । କୌତୂହଳର ବିଷୟ ଅତି-ପ୍ରାକୃତିକ ସତ୍ତାରେ ଅବିଶ୍ୱାସୀ ରିଲିଜିୟସ୍ ନନ୍‌କନଫର୍ମିଷ୍ଟମାନେ ହିଁ ଜ୍ଞାନର ଆଲୋକକୁ ବିସ୍ତାର କରି ଆସିଛନ୍ତି ଓ ସଭ୍ୟତାକୁ ଆଗକୁ ନେଇଛନ୍ତି ।

ନାନା ମାନସିକ ଭୟ ଓ ସାମାଜିକ ପରିବେଶର ପ୍ରଭାବରୁ ଅଗଣିତ ମଣିଷ ଅତି-ପ୍ରାକୃତିକ ଶକ୍ତିରେ ଆସ୍ଥା ସ୍ଥାପନ କରି ଆସିଛନ୍ତି ଯାହାର ଏକ ଅଙ୍ଗ ହେଉଛି ଈଶ୍ୱର । କାଳ୍ପନିକ ଶକ୍ତିରେ ବିଶ୍ୱାସର ମନସ୍ତାତ୍ତ୍ୱିକ ବ୍ୟାଖ୍ୟା ମନୋବିଜ୍ଞାନରେ କରାଯାଇଛି । ଛୋଟ ଶିଶୁମାନେ ନିଜ ବାପାଙ୍କ ବ୍ୟବହାରରେ ଭୟଭୀତ ହୋଇ ବାପାଙ୍କୁ ଶକ୍ତିଶାଳୀ ଓ ଦଣ୍ଡଦାତା ବୋଲି ଭାବିଥାନ୍ତି । ସେମାନଙ୍କର ବୟସ ବୃଦ୍ଧି ସହ ଚିନ୍ତା ଚେତନାର ବିକାଶ ହେଲେ ସେମାନେ ବାପାଙ୍କୁ ଆଉ ଭୟ କରନ୍ତିନାହିଁ । ତାଙ୍କ ମନରେ ସୃଷ୍ଟି ହୋଇଥିବା ଭୟ ପରବର୍ତ୍ତୀ ସମୟରେ ସାମାଜିକ ପ୍ରଭାବ ଯୋଗୁଁ ଈଶ୍ୱରଙ୍କ ପ୍ରତି ଭକ୍ତି ମିଶା ଭୟରେ ପରିବର୍ତ୍ତିତ ହୋଇଥାଏ । ଈଶ୍ୱର ହୋଇଯାନ୍ତି ଏକ ସର୍ବଶକ୍ତିମାନ ଅତିପ୍ରାକୃତିକ ଅଦୃଶ୍ୟ ଶକ୍ତି । ଧର୍ମ ବିଶ୍ୱାସୀମାନେ ଈଶ୍ୱରଙ୍କୁ ଭକ୍ତିରେ ଓ ଭୟରେ ପ୍ରାର୍ଥନା କରନ୍ତି ଓ ଈଶ୍ୱର ବିପଦ ବେଳେ ସହାୟକ ହେବେ ବୋଲି ଧରିନିଅନ୍ତି । ଏହା କିନ୍ତୁ କେବଳ ଏକ ବିଶ୍ୱାସ ମାତ୍ର ଯାହା ନାନା ମନସ୍ତାତ୍ତ୍ୱିକ ଆବେଗ, ଭୟ, ସାମାଜିକ ପ୍ରଭାବର ସମ୍ମିଳିତ ପ୍ରଭାବରୁ ବ୍ୟକ୍ତି ଚେତନାରେ ରହିଆସିଛି ।

ଯେଉଁମାନେ ଅତି ପ୍ରାକୃତିକ ସତ୍ତାରେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କୁ ନାସ୍ତିକ, ନିରୀଶ୍ୱରବାଦୀ, ହେତୁବାଦୀ, ବୁଦ୍ଧିବାଦୀ, ଯୁକ୍ତିବାଦୀ, ଆଗ୍ନୋଷ୍ଟିକ ଯାହା କୁହାଗଲେ ବି ସେମାନେ ପ୍ରକୃତରେ ମାନବବାଦୀ । କାରଣ ସେମାନେ ମଣିଷକୁ ହିଁ ପ୍ରକୃତରେ ଅଧିକ ମୂଲ୍ୟ ଦିଅନ୍ତି ଓ ମଣିଷର ପ୍ରୟାସରେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହେବା ସହ ଆମ ସଂସାର ପ୍ରୀତିମୟ ହୋଇପାରିବ ବୋଲି କଳ୍ପନା କରି ଆସିଛନ୍ତି । ସେମାନେ ଈଶ୍ୱର ପରିବର୍ତ୍ତେ ମାନବିକତାର ଜୟଗାନ କରିଥାନ୍ତି । (୧୦.୮.୧୧)



# ସତ୍ୟାଗ୍ରହ: ସଂଜ୍ଞା ଓ ସ୍ୱରୂପ

ଯେକୌଣସି ଆନ୍ଦୋଳନ, ଧାରଣା ବା ଅନଶନକୁ ସତ୍ୟାଗ୍ରହ କୁହାଯିବ କି ? କାହାକୁ ସତ୍ୟାଗ୍ରହୀ କୁହାଯାଇ ପାରିବ ? ଏହି ପୃଷ୍ଠଭୂମିରେ ସତ୍ୟାଗ୍ରହର ଐତିହାସିକ ଭିତ୍ତି ଓ ଏହାର ସୈଦ୍ଧାନ୍ତିକ ସ୍ୱରୂପ ବିଷୟରେ ସୂଚନା ଦେବା ଏହି ଲେଖାର ଉଦ୍ଦେଶ୍ୟ ।

ମହାତ୍ମା ଗାନ୍ଧୀ ହିଁ ସତ୍ୟାଗ୍ରହ ଭାବନାର ସ୍ରଷ୍ଟା । ଅନ୍ୟାୟ ବା ମନ୍ଦ(ଇଭିଲ) ବ୍ୟବସ୍ଥା ବିରୁଦ୍ଧରେ କିପରି ପ୍ରତିବାଦ କରାଯିବ ? ସମାଜରେ ଯାହା ସବୁ ଅନ୍ୟାୟ. ଅନୀତି, ମନ୍ଦ ଇତ୍ୟାଦି ରହି ସାମାଜିକ ଜୀବନକୁ କଳୁଷିତ କରୁଛି ତାହାର ପରିବର୍ତ୍ତନ ପାଇଁ କେଉଁ ପନ୍ଥାର ଆଶ୍ରୟ ନିଆଯିବ ? ଏକଥା ସତ୍ୟ ଯେ ସମାଜରେ ସବୁ ସମୟରେ କିଛି ନା କିଛି ଅନ୍ୟାୟ ଓ ମନ୍ଦ ରହିଛି । ସେହି ଅନ୍ୟାୟ, ଅନୀତି ଓ ମନ୍ଦକୁ ଦୂର କରିବା ପାଇଁ ନାନା ପ୍ରୟାସ ଭିତରୁ ଗାନ୍ଧୀ ଏକ ଅଭିନବ ପ୍ରୟାସର ଅବତାରଣା କରିଥିଲେ । ଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ଥିବା ସମୟରେ ସେଠିକାର ବର୍ଣ୍ଣଗତ ବୈଷମ୍ୟର ଶିକାର ହୋଇଥିଲେ । ସେଠାରେ ଗୋରା ୟୁରୋପୀୟମାନେ ଏସିଆ, ଆଫ୍ରିକାର କଳା ଲୋକମାନଙ୍କୁ ହୀନ ଦୃଷ୍ଟିରେ ଦେଖୁଥିଲେ । ପ୍ରଚଳିତ ପ୍ରଥା ଅନୁଯାୟୀ ଗୋରା ଲୋକଙ୍କ ସହିତ ଏକାଠି ଟ୍ରେନରେ ଯାତ୍ରା କରିବା , ହୋଟେଲରେ ଖାଇବା, ସର୍ବସାଧାରଣ ସ୍ଥାନରେ ଏକାଠି ହେବାର ଅଧିକାର କଳା ଲୋକଙ୍କର ନଥିଲା । ଏହି ଜାତିଗତ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ୧୯୦୬ରେ ଗାନ୍ଧୀ ଭାରତୀୟ ଲୋକଙ୍କୁ ସଂଗଠିତ କରି ଏହି ଅନ୍ୟାୟର ଅହିଂସ ବିରୋଧ କରିଥିଲେ ଯାହାକୁ ସେତେବେଳେ ପାସିଭ୍ ରେଜିଷ୍ଟାନ୍ସ କୁହାଯାଉଥିଲା । ତାଙ୍କର ଏହି ଅହିଂସ ବିରୋଧ ପାଇଁ ଏକ ଯଥାର୍ଥ ଭାରତୀୟ ଶବ୍ଦ ବିଷୟରେ ମତାମତ ଆହ୍ୱାନ କରି ସେ ସେଠାରେ ପ୍ରକାଶ କରୁଥିବା ଏକ ସାପ୍ତାହିକ ପତ୍ରିକା 'ଇଣ୍ଡିଆନ ଓପିନିୟନ୍'ରେ ଏକ ବିଜ୍ଞାପନ ଦେଲେ । ବିଭିନ୍ନ ବ୍ୟକ୍ତିଙ୍କ ପାଖରୁ ଆସିଥିବା ମତାମତ ମଧ୍ୟରୁ ମଗନଲାଲ ଗାନ୍ଧୀ "ସଦାଗ୍ରହ"ବୋଲି ଶବ୍ଦଟିଏ ଲେଖିଥିଲେ ଯାହାର ଅର୍ଥ ଥିଲା ଏକ ଉତ୍ତମ କାର୍ଯ୍ୟରେ ସଂପୃକ୍ତି ବା ନିଷ୍ଠା । ମାହାତ୍ମା ଗାନ୍ଧୀଙ୍କୁ ଏହି ଶବ୍ଦଟି ଭଲ ଲାଗିଲା ଓ ସେଥିରେ ସାମାନ୍ୟ ପରିବର୍ତ୍ତନ ଆଣି ଏହାକୁ ସତ୍ୟାଗ୍ରହ ନାମ ଦେଲେ । ଏହାପରେ ସେ ଯେତେ ସବୁ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ହେଲେ ବା ତାଙ୍କର ପରାମର୍ଶରେ ଯାହା ସବୁ ଜନ ଆନ୍ଦୋଳନ

ହେଲା ସେ ସବୁକୁ ସତ୍ୟାଗ୍ରହ କୁହାଗଲା । ଧୀରେ ଧୀରେ ଯେକୌଣସି ଅନ୍ୟାୟ ବିରୁଦ୍ଧରେ ଅହିଂସ ଆନ୍ଦୋଳନକୁ ସତ୍ୟାଗ୍ରହ କୁହାଯାଇ ଏହାର ବିଭିନ୍ନ ଦିଗନ୍ତ ଉପରେ ଗାନ୍ଧୀ ଓ ଅନ୍ୟମାନେ ବିଭିନ୍ନ ପ୍ରୟୋଗ କଲେ ।

ଗାନ୍ଧୀଙ୍କ ମାନଦଣ୍ଡରୁ ବିଚାର କଲେ ସେ ସତ୍ୟକୁ ଏକ ନିରଙ୍କୁଶ ମୂଲ୍ୟବୋଧ ଭାବେ ନେଉଥିଲେ ଓ ସତ୍ୟକୁ ସାମାଜିକ ନ୍ୟାୟ ସହିତ ସଂଶ୍ଳିଷ୍ଟ କରିଥିଲେ । ବସ୍ତୁତଃ ସତ୍ୟକୁ ସାମାଜିକ ନ୍ୟାୟ ପରିପ୍ରେକ୍ଷୀରେ ଗ୍ରହଣ କଲେ ଯେକୌଣସି ସାମାଜିକ ଅନ୍ୟାୟକୁ ଦୂର କରିବା ଏକ ନୈତିକ କର୍ତ୍ତବ୍ୟ ବୋଲି ସେ ବିଚାର କରୁଥିଲେ । ସାମାଜିକ ଲକ୍ଷ୍ୟ ସାଧନ ପାଇଁ ବା ସାମାଜିକ ସମ୍ବନ୍ଧକୁ ନୀତିପୂର୍ଣ୍ଣ କରିବା ପାଇଁ ଏକ ପ୍ରଚଳିତ ବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ସେ ସତ୍ୟାଗ୍ରହକୁ ଏକ ଅହିଂସ ସାଧନ ଭାବରେ ପ୍ରୟୋଗ କରିବାରେ ଅଗ୍ରଣୀ ଭୂମିକା ନେଲେ । ଯେକୌଣସି ଅନ୍ୟାୟ, ଅନୀତି, ସାମାଜିକ ଦ୍ୱନ୍ଦ୍ୱର ସମାଧାନ ପାଇଁ ବିଭିନ୍ନ ପନ୍ଥା ମଧ୍ୟରୁ ସତ୍ୟାଗ୍ରହକୁ ସେ ଅଧିକ ନୀତିପୂର୍ଣ୍ଣ ମନେକଲେ ।

ତେବେ ସତ୍ୟାଗ୍ରହୀ ପାଇଁ ଗାନ୍ଧୀ ଯେଉଁ ଜୀବନ ଦୃଷ୍ଟି ଓ ଆଚରଣ ସଂହିତାର ସୂତ୍ର ବାହାର କଲେ ତାହା ବେଶ୍ ଉଲ୍ଲେଖନୀୟ ଥିଲା । ଜଣେ ସତ୍ୟାଗ୍ରହୀ ସତ୍ୟ ଓ ଅହିଂସାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେବେ ଓ କୌଣସି ପରିସ୍ଥିତିରେ ଅସତ୍ୟ ବା ହିଂସାର ଆଶ୍ରୟ ନେବେ ନାହିଁ । ସତ୍ୟାଗ୍ରହୀ ପ୍ରତିପକ୍ଷ ପ୍ରତି କୌଣସି ବିଦ୍ୱେଷ ବା ଅସୂୟା ପୋଷଣ କରିବେ ନାହିଁ । ସତ୍ୟାଗ୍ରହୀଙ୍କର ଉଦ୍ଦେଶ୍ୟ ହେବ ଅନ୍ୟର ହୃଦୟରେ ପରିବର୍ତ୍ତନ ଓ ଅନ୍ୟାୟ ପ୍ରତି ଅନ୍ୟର ଦୃଷ୍ଟି ଆକର୍ଷଣ । ସତ୍ୟାଗ୍ରହୀ ସମସ୍ତ ଭୟରୁ ମୁକ୍ତ ରହିବେ ଓ ଯେକୌଣସି ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ରହିବେ । ସତ୍ୟାଗ୍ରହ ପନ୍ଥାରେ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ଚାହୁଁଥିବା ବ୍ୟକ୍ତି ନିଜେ କଷ୍ଟ ପାଇଲେ ବି ଅନ୍ୟକୁ କଷ୍ଟ ଦେବେନାହିଁ ବା ଅନ୍ୟ ପ୍ରତି କୌଣସି ଘୃଣା କିମ୍ବା ବିଦ୍ୱେଷ ମନୋଭାବ ଆଣିବେ ନାହିଁ । ବରଂ ନିଜର କଷ୍ଟଦ୍ୱାରା ଅନ୍ୟର ହୃଦୟକୁ ପରିବର୍ତ୍ତନ କରିପାରିବାକୁ ସଂକଳ୍ପ ନେବେ । ଗାନ୍ଧୀ ବ୍ୟକ୍ତିଗତ ଭାବେ ଅନେକ ସତ୍ୟାଗ୍ରହ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଓ ତାହାରି ମାଧ୍ୟମରେ କେତେକ ଜନ ଆନ୍ଦୋଳନ ସଂଗଠିତ କରିଥିଲେ । ତେବେ ସବୁ କ୍ଷେତ୍ରରେ ନିଜର ନୈତିକ ପରାକାଷ୍ଠା ଉପରେ ସେ ଗୁରୁତ୍ୱ ଦେଉଥିଲେ । ଅବଶ୍ୟ ଏକ ଜନଆନ୍ଦୋଳନ ପୃଷ୍ଠଭୂମିରେ ଏଥିରେ ସଂପୃକ୍ତ ହେଉଥିବା ସମସ୍ତ ବ୍ୟକ୍ତିବିଶେଷ ଯେ ଉଚ୍ଚ ନୈତିକ ଆଦର୍ଶର ପୃଷ୍ଠପୋଷକ ହେବେ ତାହା ଆଶା କରାଯାଇନପାରେ । ଏହି ପରିପ୍ରେକ୍ଷୀରେ ଗାନ୍ଧୀ ଏହାର ଏକ ବ୍ୟାବହାରିକ ସମାଧାନ ମଧ୍ୟ ବାହାର କରିଥିଲେ । ଅନ୍ତତଃ ସତ୍ୟାଗ୍ରହ ପରିଚାଳନା କରୁଥିବା ନେତୃବୃନ୍ଦ ନୈତିକ

ଆଦର୍ଶ ଓ ଆଚରଣବିଧିକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିବେ । ସେ ସର୍ବଦା ଅହିଂସ ରହିବେ ଓ ସତ୍ୟରୁ ବିଚ୍ୟୁତ ହେବେ ନାହିଁ । ପ୍ରତିପକ୍ଷ ପ୍ରତି କୌଣସି ଅସୂୟା ଭାବ ରଖିବେ ନାହିଁ, ଯେକୌଣସି ତ୍ୟାଗ ପାଇଁ ପ୍ରସ୍ତୁତ ହେବେ ଓ ନିଜେ କଷ୍ଟ ପାଇଲେ ମଧ୍ୟ କେବେବି ଅନ୍ୟର ଦୁଃଖ କଷ୍ଟର କାରଣ ହେବେ ନାହିଁ ।

ସତ୍ୟାଗ୍ରହ କରୁଥିବା ବ୍ୟକ୍ତି ବା ଗୋଷ୍ଠୀ ବିଶେଷ ପ୍ରଥମେ ପ୍ରଚଳିତ ବ୍ୟବସ୍ଥାର ଅନ୍ୟାୟ ବା ମନ୍ଦ ବିଷୟରେ ଏହାର ପୃଷ୍ଠପୋଷକଙ୍କର ଦୃଷ୍ଟି ଆକର୍ଷଣ କରିବେ । ବ୍ୟବସ୍ଥାରେ ପରିବର୍ତ୍ତନ ପାଇଁ ସେ ଆଲୋଚନା, ଲେଖା ମାଧ୍ୟମରେ ଚେଷ୍ଟା କରିବେ । ଆବଶ୍ୟକ ହେଲେ ସେ ଅହିଂସ ଆନ୍ଦୋଳନାତ୍ମକ ପନ୍ଥାର ଆଶ୍ରୟ ନେବେ । ଯଦି ସମସ୍ତ ଅହିଂସ ପଦ୍ଧତିରେ ଯାଇ ସେ ଅନ୍ୟାୟର ପୃଷ୍ଠପୋଷକଙ୍କୁ ପରିବର୍ତ୍ତନ କରିପାରିଲେ ନାହିଁ ତେବେ ସେ ଅନଶନକୁ ଅସ୍ତ୍ର ଭାବେ ପ୍ରୟୋଗ କରିବେ । ଅନଶନଦ୍ୱାରା ପ୍ରତିପକ୍ଷଙ୍କ ଉପରେ ନୈତିକ ଚାପ ସୃଷ୍ଟି କରି ଅନ୍ୟାୟର ପରିବର୍ତ୍ତନ କରିବେ । ଏହା ସହିତ ଗଣ ଆନ୍ଦୋଳନ ବା ଜାତୀୟ ସ୍ତରରେ ଆନ୍ଦୋଳନ ପାଇଁ ଅସହଯୋଗ, ଆଇନ ଅମାନ୍ୟର ଆଶ୍ରୟ ମଧ୍ୟ ନିଆଯାଇ ପାରିବ । ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱାଧୀନତା ଆନ୍ଦୋଳନ ସମୟରେ ଗାନ୍ଧୀ ଅସହଯୋଗ, ଆଇନଅମାନ୍ୟ, ସରକାରୀ ନିୟମର ଉଲଂଘନ ପରି ପଦକ୍ଷେପମାନ ମଧ୍ୟ ନେଇଥିଲେ । ବସ୍ତୁତଃ ସତ୍ୟାଗ୍ରହର ପରିସର ମଧ୍ୟରେ ଅହିଂସ ନିବେଦନ, ଆଲୋଚନା, ନୈତିକ ପ୍ରଭାବ ସୃଷ୍ଟି, ଅନଶନ, ଆଇନ ଅମାନ୍ୟ, ଅସହଯୋଗ ଆନ୍ଦୋଳନ ଇତ୍ୟାଦି ପଦକ୍ଷେପ ମାନ ସଂପୃକ୍ତ । ଏକ ସତ୍ୟାଗ୍ରହ ସମୟରେ ଏଥିରୁ ଏକ ବା ଏକାଧିକ ପନ୍ଥାର ଆଶ୍ରୟ ନିଆଯାଇପାରେ ।

ସାମାଜିକ ଜୀବନରୁ କୌଣସି ଅନ୍ୟାୟ ବା ମନ୍ଦ ସ୍ଥିତି ଦୂର କରିବା ପାଇଁ ସତ୍ୟାଗ୍ରହ ପ୍ରୟୋଗ ହେଉଥିବା ଯୋଗୁଁ ଏହାକୁ ବ୍ୟକ୍ତି, ଗୋଷ୍ଠୀ, ଗଣ ସମସ୍ତେ ପ୍ରୟୋଗ କରିପାରିବେ । ସୁତରାଂ ସତ୍ୟାଗ୍ରହ ଆନ୍ଦୋଳନରେ ସଂପୃକ୍ତ ହେଉଥିବା ବ୍ୟକ୍ତିମାନଙ୍କର ପରିମାଣ ଦୃଷ୍ଟିରୁ ଏହାକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇପାରେ; ଯଥା, ବ୍ୟକ୍ତି ସତ୍ୟାଗ୍ରହ, ଗୋଷ୍ଠୀ ବା ଗ୍ରୁପ ସତ୍ୟାଗ୍ରହ, ଗଣ ବା ମାସ୍ ସତ୍ୟାଗ୍ରହ । ଏପରିକି ଗାନ୍ଧୀଙ୍କର ବିଶ୍ୱାସ ଥିଲା ଯେ କୌଣସି ରାଷ୍ଟ୍ର ଉପରେ ବର୍ହିଆକ୍ରମଣ ହେଲେ 'ସତ୍ୟାଗ୍ରହୀ ସୈନିକ ଗୋଷ୍ଠୀ' ସୃଷ୍ଟି କରାଯାଇ ତାହାକୁ ବିରୋଧ କରାଯାଇ ପାରିବ ଯାହାକୁ ସେ ଜାତୀୟ ସତ୍ୟାଗ୍ରହ କହୁଥିଲେ । ଅର୍ଥାତ୍ ଜାତୀୟ ପ୍ରତିରକ୍ଷା କ୍ଷେତ୍ରରେ ମଧ୍ୟ ସତ୍ୟାଗ୍ରହକୁ ଆୟୁଧ କରାଯାଇ ପାରିବ ବୋଲି ସତ୍ୟାଗ୍ରହର ଏକ ବିସ୍ତାରିତ ସିଦ୍ଧାନ୍ତ ଗାନ୍ଧୀ କଳ୍ପନା କରିଥିଲେ, ଯଦିବା ତାହାର ଏପର୍ଯ୍ୟନ୍ତ ଗୋଟିଏ ହେଲେ ଦୃଷ୍ଟାନ୍ତ ପୃଥିବୀରେ ସମ୍ଭବ ହୋଇ ନାହିଁ ।

କୌଣସି ଅନ୍ୟାୟ, ଅନୀତି ବା ମନ୍ଦର ବିରୋଧ ପାଇଁ ସାମାଜିକ ଜୀବନରେ ଯେଉଁ ସବୁ ପନ୍ଥା ରହିଛି ତାହାକୁ ଏହି ପୃଷ୍ଠଭୂମିରେ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଆଇନର ପରିସର ଭିତରେ ଅନ୍ୟାୟକୁ ଦୂର କରିବା ପାଇଁ ପଦକ୍ଷେପ ନିଆଯାଇପାରେ । ବ୍ୟକ୍ତିଠାରୁ ଆରମ୍ଭ କରି ଗଣ ପର୍ଯ୍ୟନ୍ତ ସମସ୍ତେ ସାଧାରଣତଃ ଏହି ପନ୍ଥାର ଆଶ୍ରୟ ନେଇଥାନ୍ତି । ଏଠାରେ ସାମ୍ବିଧାନିକ ବିଧି ବ୍ୟବସ୍ଥା ଭିତରେ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରାଯାଇପାରେ ଯାହା ସାଧାରଣତଃ ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରରେ ହେବା ଦେଖାଯାଏ । ଦ୍ୱିତୀୟରେ ଏକ ଆନ୍ଦୋଳନ ହିଂସାତ୍ମକ ପନ୍ଥାରେ ପରିଚାଳିତ ହୋଇପାରେ । ସମାଜରେ କେତେକ ବ୍ୟକ୍ତି ବିଶ୍ୱାସ କରନ୍ତି ଯେ ପ୍ରଚଳିତ ବ୍ୟବସ୍ଥାକୁ ନ୍ୟାୟଯୁକ୍ତ କରିବା ପାଇଁ ବା ଶୋଷଣମୁକ୍ତ ସମାଜରେ ପରିବର୍ତ୍ତନ କରିବା ପାଇଁ ହିଂସାତ୍ମକ ଆନ୍ଦୋଳନ ହିଁ ଅବଶ୍ୟମ୍ଭାବୀ । ହିଂସାତ୍ମକ ଆନ୍ଦୋଳନ ଦ୍ୱାରା ହିଁ ଈପ୍ସିତ ସାମାଜିକ ଲକ୍ଷ୍ୟ ହାସଲ ହୋଇପାରିବ, ଅନ୍ୟ କୌଣସି ପନ୍ଥାରେ ନୁହେଁ । ତେବେ ଗାନ୍ଧୀଙ୍କ ଆନ୍ଦୋଳନ ପୃଷ୍ଠଭୂମିରେ ସତ୍ୟାଗ୍ରହକୁ ସର୍ବଶ୍ରେଷ୍ଠ ସ୍ଥାନ ଦିଆଯାଏ, ଯଦି ପ୍ରକୃତରେ ସତ୍ୟାଗ୍ରହର ନୀତି ଓ ଆଦର୍ଶ ଦ୍ୱାରା ଏହା ପରିଚାଳିତ ହୁଏ । ଯେକୌଣସି ଈପ୍ସିତ ଲକ୍ଷ୍ୟ ହାସଲ ପାଇଁ ବା ସାମାଜିକ ବ୍ୟବସ୍ଥାକୁ ନ୍ୟାୟଭିତ୍ତିକ କରିବା ପାଇଁ ଗାନ୍ଧୀ ସତ୍ୟାଗ୍ରହକୁ ଉତ୍କୃଷ୍ଟ ପନ୍ଥା ଭାବେ ଗ୍ରହଣ କରିଥିଲେ । କାରଣ ଅନ୍ୟ ଯେକୌଣସି ପନ୍ଥା ଅପେକ୍ଷା ସତ୍ୟାଗ୍ରହର ନୈତିକ ମହତ୍ତ୍ୱ ଅଧିକ ବୋଲି ତାଙ୍କର ବିଶ୍ୱାସ ଥିଲା । ଗାନ୍ଧୀଙ୍କ ଚିନ୍ତନ ଭିତରେ ସାଧନ ବା ପନ୍ଥା ଓ ଲକ୍ଷ୍ୟକୁ ସର୍ବଦା ସମାନ ସ୍ଥାନ ଦିଆଯାଇଛି । ତାଙ୍କର ବିଶ୍ୱାସ ଥିଲା ଯେ ସାଧନ ବା ପନ୍ଥା ନୈତିକ ହେଲେ ଲକ୍ଷ୍ୟ ଉତ୍କୃଷ୍ଟ ହୋଇପାରିବ । ଲକ୍ଷ୍ୟର ଗୁରୁତ୍ୱ ଅପେକ୍ଷା ସେ ସର୍ବଦା ପନ୍ଥାର ପବିତ୍ରତା ଉପରେ ଗୁରୁତ୍ୱ ଦେଉଥିଲେ । ପନ୍ଥା ଯଦି ନୀତିଯୁକ୍ତ ଓ ପବିତ୍ର ହୁଏ ତେବେ ପରିଣାମ ନିଶ୍ଚୟ ମହତ୍ତ୍ୱପୂର୍ଣ୍ଣ ହେବ । ଏକ ଭଲ ପରଣାମ ଏକ ମନ୍ଦ ପନ୍ଥାରେ ଆଶା କରାଯାଇନପାରେ । ଏହି ବିଶ୍ୱାସ ବ୍ୟତୀତ ମଣିଷର ସ୍ୱରୂପ ନେଇ ଗାନ୍ଧୀଙ୍କର କେତେକ ଗଭୀର ବିଶ୍ୱାସ ରହିଥିଲା । ତାଙ୍କ ମତରେ ପ୍ରତ୍ୟେକ ବ୍ୟକ୍ତି ସ୍ୱରୂପରେ ଭଲ ଓ ପ୍ରତ୍ୟେକଙ୍କ ଭିତରେ ବିବେକର ବିଚାର ରହିଛି । ସମାଜରେ ଯାହା ଅନ୍ୟାୟ, ଅନୀତି ରହିଛି ତାହାର ପୃଷ୍ଠପୋଷକମାନଙ୍କର ହୃଦୟର ପରିବର୍ତ୍ତନ ଦ୍ୱାରା ବ୍ୟବସ୍ଥାରେ ପରିବର୍ତ୍ତନ ସହଜରେ ହୋଇପାରିବ । ଏପରି କୌଣସି ବ୍ୟକ୍ତି ନାହିଁ ଯିଏ ଏକ ନୈତିକ ନିବେଦନ ଦ୍ୱାରା ପରିବର୍ତ୍ତିତ ହୋଇପାରିବ ନାହିଁ । ସତ୍ୟାଗ୍ରହୀ ନିଜର ଦୁଃଖ କଷ୍ଟ ଭିତରେ ଯଦି ସର୍ବଦା ପ୍ରତିପକ୍ଷ ପ୍ରତି ଗଭୀର ଶ୍ରଦ୍ଧା ପ୍ରକାଶ କରି ତାଙ୍କର ବିବେକକୁ ସ୍ପର୍ଶ କରିପାରିବେ, ତେବେ ଯେକୌଣସି ପରିବର୍ତ୍ତନ ସହଜସାଧ୍ୟ ହୋଇପାରିବ ।

ମୋଟ ଉପରେ କହିଲେ ପନ୍ଥାର ପବିତ୍ରତା ଓ ମଣିଷର ଅନ୍ତର୍ନିହିତ ଓ ସହଜାତ ମହନୀୟତା ଉପରେ ଗଭୀର ଆସ୍ଥା ସ୍ଥାପନ କରିଥିବାରୁ ଗାନ୍ଧୀ ସତ୍ୟାଗ୍ରହକୁ ସାମାଜିକ ନିୟନ୍ତ୍ରଣର ସର୍ବଶ୍ରେଷ୍ଠ ସାଧନ ଭାବେ ଗ୍ରହଣ କରିଥିଲେ । ସେ ସତ୍ୟାଗ୍ରହକୁ ଆତ୍ମଶକ୍ତି ବା ପ୍ରେମଶକ୍ତି ବୋଲି କହିଛନ୍ତି । ଏହି ଶକ୍ତିଦ୍ୱାରା ଯେ ଏକ ନ୍ୟାୟଯୁକ୍ତ ଲକ୍ଷ୍ୟ ହାସଲ ସମ୍ଭବ, ଏହା ତାଙ୍କର ଗଭୀର ବିଶ୍ୱାସ ଥିଲା ଓ ତାଙ୍କ ରାଜନୈତିକ କାର୍ଯ୍ୟସୂଚୀର ଅପରିହାର୍ଯ୍ୟ ଅଙ୍ଗ ହୋଇଯାଇଥିଲା । (୧୭.୮.୧୧)



# ସତ୍ୟାଗ୍ରହ : ସ୍ୱରୂପ ଓ ପ୍ରୟୋଗ

ପନ୍ଥାର ପବିତ୍ରତା ଓ ମଣିଷର ସହଜାତ ମହନୀୟତା ଉପରେ ଗଭୀର ବିଶ୍ୱାସରୁ ମହାତ୍ମାଗାନ୍ଧୀ ସତ୍ୟାଗ୍ରହକୁ ସର୍ବଶ୍ରେଷ୍ଠ ସାଧନ ଭାବରେ ଗ୍ରହଣ କରିଥିଲେ । ଯେକୌଣସି ଅନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ତଥା ଦ୍ୱନ୍ଦ୍ୱର ସମାଧାନ କରି ସମସ୍ତ ସାମାଜିକ ସମ୍ବନ୍ଧକୁ ନୈତିକ ଓ ମାନବିକ ମୂଲ୍ୟଚୟରେ ରୂପାନ୍ତରିତ କରିବା ତାଙ୍କ ସମାଜ ଦର୍ଶନର ମୂଳଭିତ୍ତି ଥିଲା । ଏହି ପୃଷ୍ଠଭୂମିରେ ସତ୍ୟାଗ୍ରହକୁ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ସେ ସର୍ବଶ୍ରେଷ୍ଠ ଆୟୁଧ ଭାବରେ ଗ୍ରହଣ କରିଥିଲେ । ପନ୍ଥାର ପବିତ୍ରତା ଉପରେ ତାଙ୍କର ବିଚାରଥିଲା ଯେ ପନ୍ଥା ବା ସାଧନ ହିଁ ପରିଣାମ ବା ଲକ୍ଷ୍ୟକୁ ରୂପ ଦେଇଥାଏ । ଗୋଟିଏ ମହତ୍ତର ଉଦ୍ଦେଶ୍ୟ ବା ଏକ ଉତ୍କୃଷ୍ଟ ସାମାଜିକ ବ୍ୟବସ୍ଥା କେବଳ ଉତ୍ତମ ପନ୍ଥା ମଧ୍ୟ ଦେଇ ସମ୍ଭବ ହୋଇଥାଏ । ଏକ ହିଂସାତ୍ମକ ପନ୍ଥା ଅଧିକ ହିଂସା ବା ଅମାନବିକତା ସୃଷ୍ଟି ଦିଗରେ ସହାୟକ ହୁଏ । ସେହିପରି ଗାନ୍ଧୀ ବ୍ୟକ୍ତିର ସହଜାତ ମହନୀୟତା ଉପରେ ଗଭୀର ଆସ୍ଥା ରଖିଥିଲେ । ଭଲ ପାଇବା, ସମ୍ବେଦନଶୀଳ ହେବା, ଅନ୍ୟକୁ ଆପଣାର କରିବା ମଣିଷର ସହଜାତ ସ୍ୱଭାବ । ତେବେ ଏକ ଅନ୍ୟାୟପୂର୍ଣ୍ଣ ପରିବେଶ ବା ସାମାଜିକ ବିଷମତା ଯୋଗୁ ବ୍ୟକ୍ତି ପ୍ରତିକ୍ରିୟାଶୀଳ ହୋଇଥାଏ । ଯଦି ଆମର ପରିବେଶ ଓ ସାମାଜିକ ସ୍ଥିତି ସମତାପୂର୍ଣ୍ଣ ଓ ନ୍ୟାୟଯୁକ୍ତ ହୋଇପାରିବ, ତେବେ ମଣିଷ ଭିତରୁ ସମସ୍ତ ହିଂସା, ବିଦ୍ୱେଷ ବିଲୋପ ହୋଇପାରିବ । କେହି ଜନ୍ମରୁ ଖରାପ ନୁହେଁ, ସାମାଜିକ ପରିବେଶର ପ୍ରଭାବ ବ୍ୟକ୍ତି-ଚରିତ୍ରକୁ ଭଲ ବା ମନ୍ଦ କରିବାରେ ସହାୟକ ହୋଇଥାଏ । ତେବେ ପ୍ରତ୍ୟେକ ବ୍ୟକ୍ତି ଭିତରେ ବିବେକବୋଧ ଓ ବିଚାରଶୀଳତା ରହିଛି । କୌଣସି ବ୍ୟକ୍ତି ଯେତେ ମନ୍ଦ ହେଲେ ବି ତାହାକୁ ପରିବର୍ତ୍ତନ କରାଯାଇ ପାରିବ ବୋଲି ଗାନ୍ଧୀଙ୍କର ଗଭୀର ବିଶ୍ୱାସ ରହିଥିଲା ।

ଏହି ଆତ୍ମବିଶ୍ୱାସରୁ ଗାନ୍ଧୀ ସାମାଜିକ ପରିବର୍ତ୍ତନ ବା ଅନ୍ୟାୟର ବିରୋଧ ପାଇଁ ସତ୍ୟାଗ୍ରହକୁ ସର୍ବଶ୍ରେଷ୍ଠ ନୈତିକ ଆୟୁଧ ଭାବରେ ପ୍ରୟୋଗ କରୁଥିଲେ । ସତ୍ୟାଗ୍ରହ ମାଧ୍ୟମରେ ଯେକୌଣସି ପରିସ୍ଥିତିକୁ ପରିବର୍ତ୍ତନ କରିବା ସମ୍ଭବ ବୋଲି ବିଶ୍ୱାସ ଦ୍ୱାରା ସେ ପରିଚାଳିତ ହୋଇଥିଲେ । ସତ୍ୟାଗ୍ରହ ସାମାଜିକ ପରିବର୍ତ୍ତନ ବା ନିୟନ୍ତ୍ରଣ କ୍ଷେତ୍ରରେ ଆୟୁଧ ବୋଲି ସେ ବିଚାର କରୁଥିଲେ । ଏହା ସହିତ ଗାନ୍ଧୀ

ତାଙ୍କ ବିଶ୍ୱାସ ଆଧାରରେ ଏକ ଆଦର୍ଶ ସମାଜର ବି ପରିକଳ୍ପନା କରିଥିଲେ । ଅହିଂସା, ସମତା ଓ ବ୍ୟକ୍ତି ସ୍ୱାଧୀନତା ଆଧାରରେ ସେ ଏକ ସର୍ବୋଦୟ ସମାଜର ଚିତ୍ର ଆଙ୍କିଥିଲେ । ରାଷ୍ଟ୍ରବିହୀନ ସ୍ୱାବଲମ୍ବୀ ଗ୍ରାମସ୍ୱରାଜ ହିଁ ତାଙ୍କ ଆଦର୍ଶ ଜନରାଜ୍ୟର ମୂଳ ଭିତ୍ତି ହୋଇ ରହିଥିଲା । ଏହି ଲକ୍ଷ୍ୟ ହାସଲ ପାଇଁ ସେ ରଚନାତ୍ମକ କାର୍ଯ୍ୟକ୍ରମ ଓ ସତ୍ୟାଗ୍ରହକୁ ଆୟୁଧ ଭାବେ ନେଇଥିଲେ । ତେବେ ଏଠାରେ ତାଙ୍କର ପରିକଳ୍ପିତ ଆଦର୍ଶ ଜନରାଜ୍ୟ ଓ ଏହାର ସମ୍ଭାବନା ଆମର ଆଲୋଚ୍ୟ ପ୍ରସଙ୍ଗ ନୁହେଁ ବରଂ ସତ୍ୟାଗ୍ରହ ହିଁ ଆମର ଆଲୋଚ୍ୟ ବିଷୟ ଅଟେ ।

ଯେକୌଣସି ଲକ୍ଷ୍ୟପୂରଣ କ୍ଷେତ୍ରରେ ବା ସାମାଜିକ ଦ୍ୱନ୍ଦ୍ୱ ସମାଧାନ ପରିପ୍ରେକ୍ଷୀରେ ସତ୍ୟାଗ୍ରହର କେତେକ ଆପେକ୍ଷିକ ମହତ୍ତ୍ୱ ନିଶ୍ଚୟ ରହିଛି । କୌଣସି ହିଂସାତ୍ମକ ସଂଘର୍ଷ ବା ଆନ୍ଦୋଳନ ତୁଳନାରେ ସତ୍ୟାଗ୍ରହର ପ୍ରୟୋଗ ଅଧିକ ଉପଯୋଗୀ ମନେହୁଏ, କାରଣ ଏହା ଅଧିକ ନୈତିକ ଓ ସଭ୍ୟ ଆଚରଣର ପ୍ରତୀକ । ଏକ ହିଂସାତ୍ମକ ଆନ୍ଦୋଳନ କ୍ଷେତ୍ରରେ ଶକ୍ତିଶାଳୀ ପକ୍ଷର ହିଁ ବିଜୟ ହୋଇଥାଏ । ଏଠାରେ ନୀତି, ଆଦର୍ଶର ବିଜୟ ହୁଏ ନାହିଁ । କିନ୍ତୁ ଏକ ସତ୍ୟାଗ୍ରହ ଆନ୍ଦୋଳନ କ୍ଷେତ୍ରରେ ନୀତି ଓ ଆଦର୍ଶର ବିଜୟ ହୁଏ । ବଳଶାଳୀ ନହୋଇ ବି ନିଜ ପକ୍ଷର ନୈତିକ ପରାକାଷ୍ଠା ଦ୍ୱାରା ଅନ୍ୟାୟ ବିରୁଦ୍ଧରେ ବ୍ୟକ୍ତି ବା ଗୋଷ୍ଠୀ ସଂଗ୍ରାମ କରିପାରେ । ସତ୍ୟାଗ୍ରହକୁ ସାଧନ ଭାବରେ ନେଇ ଶକ୍ତିହୀନ ବ୍ୟକ୍ତି ବା ଗୋଷ୍ଠୀ ନିଜର ମାନବିକ ଅଧିକାର ଓ ନ୍ୟାୟପୂର୍ଣ୍ଣ ଦାବି ପାଇଁ ସ୍ୱର ଉତ୍ତୋଳନ କରିପାରେ । ସତ୍ୟାଗ୍ରହ ଦ୍ୱାରା ଦୁଇ ପକ୍ଷ ଭିତରେ ଏକ ସମ୍ମାନଜନକ ସମାଧାନ ସମ୍ଭବ ହୁଏ ଓ ଉଭୟ ପକ୍ଷ ଆଲୋଚନା ମାଧ୍ୟମରେ ଏକ ନିଷ୍ପତ୍ତିକୁ ଆସୁଥିବାରୁ ସମାଜର ନୈତିକ ମାନ ଅକ୍ଷୁର୍ଣ୍ଣ ରୁହେ । ଏକ ସଂଘର୍ଷମୟ ପରିସ୍ଥିତି ଓ ହିଂସାତ୍ମକ ଆନ୍ଦୋଳନ କ୍ଷେତ୍ରରେ ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷର ମନୋଭାବ ଆସେ । ପ୍ରତ୍ୟେକ ପକ୍ଷ କେବଳ ନିଜ ପକ୍ଷର ବିଜୟକୁ ହିଁ ସର୍ବଶ୍ରେଷ୍ଠ ସ୍ଥାନ ଦିଏ ଓ ସମାଜର ନୈତିକ ବାତାବରଣ ଏହାଦ୍ୱାରା କଳୁଷିତ ହୋଇଥାଏ । କିନ୍ତୁ ଏକ ସତ୍ୟାଗ୍ରହ ଆନ୍ଦୋଳନର ସାମାଜିକ ସମ୍ବନ୍ଧକୁ ନୈତିକ ଆଦର୍ଶରେ ପରିବର୍ତ୍ତନ କରିବାକୁ ଲକ୍ଷ୍ୟ ଭାବରେ ନିଆଯାଏ । ସତ୍ୟାଗ୍ରହରେ ଏକ ଈପ୍ସିତ ଲକ୍ଷ୍ୟହାସଲ ପର୍ଯ୍ୟନ୍ତ ଆନ୍ଦୋଳନ ବା ବିରୋଧ କରିବାର ଅବକାଶ ରହିଥାଏ । ହିଂସାତ୍ମକ ଆନ୍ଦୋଳନରେ ପରାଜିତ ପକ୍ଷ ପ୍ରତି ଅନ୍ୟାୟ ହୋଇଥିଲେ ମଧ୍ୟ ନିଜର ପ୍ରତିବାଦ ପ୍ରକାଶ କରିବା ପାଇଁ ଏହାର ନୈତିକ ସାହସ ନଥାଏ । ସତ୍ୟାଗ୍ରହର ମୌଳିକ ଆଭିମୁଖ୍ୟ ଓ ଆଦର୍ଶକୁ ଗ୍ରହଣ କରିନେବା ପରେ ଜଣେ ସତ୍ୟାଗ୍ରହୀ ଏଥିପାଇଁ ସକଳ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ରୁହେ । ଏକ ହିଂସାତ୍ମକ ଆନ୍ଦୋଳନର

ଆଭିମୁଖ୍ୟ ଅନ୍ୟକୁ ହରାଇବା ବା ଆଘାତ କରିବା କିନ୍ତୁ ସତ୍ୟାଗ୍ରହୀ ସତ୍ୟ ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ରହେ, ସେ କାହାକୁ ଘୃଣାକରେ ନାହିଁ, ସେ ଧୈର୍ଯ୍ୟର ସହ ସମସ୍ତ ପରିସ୍ଥିତିକୁ ସାମ୍ନା କରେ, ସେ ନିଜର ବିବେକ ବ୍ୟତୀତ କାହାକୁ ଭୟ କରେ ନାହିଁ, ମୃତ୍ୟୁକୁ ମଧ୍ୟ ନୁହେଁ, ସକଳ କଷ୍ଟକୁ ସହ୍ୟ କରେ କିନ୍ତୁ କାହାକୁ କଷ୍ଟ ଦିଏ ନାହିଁ । ପ୍ରେମ, ଆତ୍ମଶୁଦ୍ଧି, ସରଳତା, ନିଷ୍କପଟ ମନୋଭାବକୁ ଜୀବନଧାରାରେ ମିଶାଇବା ସହ ସତ୍ୟ ଓ ଅହିଂସା ପ୍ରତି ପ୍ରତିବଦ୍ଧତା ହିଁ ସତ୍ୟାଗ୍ରହର ଆଦର୍ଶ ଅଟେ । ଫଳତଃ ଏକ ସତ୍ୟାଗ୍ରହ ସାମାଜିକ ସମ୍ପର୍କକୁ ଅଧିକ ମାନବିକ ଓ ନୀତିନିଷ୍ଠ କରିଥାଏ ।

ପରିବାରଠାରୁ ଗ୍ରାମ ପର୍ଯ୍ୟନ୍ତ, ଗ୍ରାମଠାରୁ ଦେଶ ପର୍ଯ୍ୟନ୍ତ ଓ ଦେଶଠାରୁ ବିଶ୍ୱ ପର୍ଯ୍ୟନ୍ତ ମଣିଷ ମଣିଷ ଭିତରେ ମତପାର୍ଥକ୍ୟ ସ୍ଥଳ ବିଶେଷରେ ରହିଛି । ବ୍ୟକ୍ତି, ଗୋଷ୍ଠୀ, ରାଷ୍ଟ୍ର, ସବୁରି ସ୍ତରରେ ଦୁଇ ପକ୍ଷ ଭିତରେ ମତପାର୍ଥକ୍ୟ ରହିପାରେ । ତେବେ ଦୁଇ ପକ୍ଷ ଭିତରେ ଥିବା ଦ୍ୱନ୍ଦ୍ୱ ବା ବିରୋଧକୁ ଶାନ୍ତିପୂର୍ଣ୍ଣ ଅହିଂସ ପଦ୍ଧତିରେ ସମାଧାନ କରାଯିବା ଅଧିକ ନୀତିଯୁକ୍ତ ନା ହିଂସାର ଆଶ୍ରୟ ନେବା ଯୁକ୍ତିଯୁକ୍ତ ? ଗାନ୍ଧୀ ସବୁ ସମୟରେ ବିଶ୍ୱାସ କରି ଆସିଥିଲେ ଯେ କୌଣସି ହିଂସାତ୍ମକ ପନ୍ଥା ମାନବୀୟ ସମସ୍ୟାର ସମାଧାନ କରିପାରେ ନାହିଁ । ଯେଉଁ ବିବାଦ ବା ଦ୍ୱନ୍ଦ୍ୱର ଶାନ୍ତିପୂର୍ଣ୍ଣ ସମାଧାନ ସମ୍ଭବ ନୁହେଁ ତାହାର ଅନ୍ୟ କୌଣସି ସମାଧାନ ସମ୍ଭବ ନୁହେଁ; ହିଂସାତ୍ମକ ପନ୍ଥାରେ ଯଦି କୌଣସି ସମସ୍ୟାର ସମାଧାନ କରାଯାଏ, ତାହା ସମାଜରେ ଅଧିକ ହିଂସା ଓ ପ୍ରତିହିଂସାର ମନୋଭାବ ସୃଷ୍ଟି କରେ । ଯେଉଁଠି ହିଂସା, ପ୍ରତିହିଂସାର ମନୋଭାବ ରହେ ତାହା ସଭ୍ୟତାର ଓ ମାନବିକତାର ପରିପନ୍ଥୀ ହୁଏ । ସୁତରାଂ ଗାନ୍ଧୀଙ୍କ ସମାଜ ଦର୍ଶନରେ ସତ୍ୟାଗ୍ରହ ହିଁ ସର୍ବଶ୍ରେଷ୍ଠ ଆୟୁଧ ଅଟେ ।

ତେବେ ପ୍ରଶ୍ନ ହେବ- ଯେ କୌଣସି ସାମାଜିକ ଦ୍ୱନ୍ଦ୍ୱର ସମାଧାନ କ୍ଷେତ୍ରରେ ସତ୍ୟାଗ୍ରହ କ'ଣ ଏକ ନିର୍ଭରଯୋଗ୍ୟ ସାଧନ ହୋଇପାରିବ ? ଗାନ୍ଧୀ ଯଦିବା ସତ୍ୟାଗ୍ରହର କାର୍ଯ୍ୟକାରିତା ଓ ସଫଳତା ଉପରେ ପୂର୍ଣ୍ଣ ଆସ୍ଥା ରଖିଥିଲେ, ତେବେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସତ୍ୟାଗ୍ରହର ଏକ ବିସ୍ତାରିତ ଅର୍ଥ ହୁଏତ କରାଯାଇପାରେ । ଏକ ମୁକ୍ତ ଓ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଜନମତ ପ୍ରତିଫଳିତ ହେବାର ନାନା ମାଧ୍ୟମ ଥାଏ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଜନଗଣ ନିର୍ବାଚନ ଦ୍ୱାରା ସରକାର ପରିବର୍ତ୍ତନ କରିପାରନ୍ତି । ସ୍ୱାଧୀନ ଗଣମାଧ୍ୟମ ବାସ୍ତବ ସମସ୍ୟା ନେଇ ଜନସଚେତନତାକୁ ଉଜ୍ଜୀବିତ କରିବାରେ ଏକ ପ୍ରମୁଖ ଭୂମିକା ନେଇପାରେ, ଆଇନ ବ୍ୟବସ୍ଥା ଦେଇ କୌଣସି ଅନ୍ୟାୟ ଦୂର ହୋଇପାରେ । ଏସବୁ ପନ୍ଥା ସହିତ ସତ୍ୟାଗ୍ରହକୁ

ଏକ ଅନୁପୂରକ ବ୍ୟବସ୍ଥା ଭାବେ ନିଆଯାଇପାରେ । ଅବଶ୍ୟ ବାସ୍ତବରେ ଗଣତାନ୍ତ୍ରିକ ବା ସାମ୍ବିଧାନିକ ପଦ୍ଧତିରେ ସାମାଜିକ ପରିସ୍ଥିତିକୁ ପରିବର୍ତ୍ତନ କରିବା ସବୁ କ୍ଷେତ୍ରରେ ସହଜସାଧ ମନେହୁଏ ନାହିଁ । ବିଶେଷକରି ଯେଉଁ କ୍ଷେତ୍ରରେ ଦଳୀୟ ସ୍ୱାର୍ଥକୁ ଗୁରୁତ୍ୱ ଦିଆଯାଇ ବାସ୍ତବ ସମସ୍ୟା ପ୍ରତି ଉଦାସୀନତା ପ୍ରକାଶ ପାଏ ବା କୌଣସି ସମସ୍ୟାର ଆଶୁ ସମାଧାନ ସାମ୍ବିଧାନିକ ପନ୍ଥାରେ ସହଜସାଧ ମନେ ହୁଏ ନାହିଁ, ସେ କ୍ଷେତ୍ରରେ ସତ୍ୟାଗ୍ରହକୁ ଆୟୁଧ କରାଯାଇପାରେ । ତେବେ ସତ୍ୟାଗ୍ରହ ଯେ ସବୁ ସମସ୍ୟାର ସମାଧାନ ପାଇଁ ସର୍ବଶ୍ରେଷ୍ଠ ପଦ୍ଧତି ଏହା ଅତିଶୟୋକ୍ତି ମନେହୁଏ । କାରଣ ସାମାଜିକ ସମସ୍ୟା ଓ ଦ୍ୱନ୍ଦ୍ୱ ଏତେ ଜଟିଳ ଯେ ଏକ ନିର୍ଦ୍ଦିଷ୍ଟ ସାଧନକୁ ସବୁ ସ୍ତରରେ ଏକ କ୍ରିୟାଶୀଳ ପଦ୍ଧତି ଭାବେ ପ୍ରୟୋଗ କରିବା ସମ୍ଭବ ନୁହେଁ । ସମାଜର କୌଣସି ସମସ୍ୟା ଏକ ଏକକ ସମସ୍ୟା ନୁହେଁ । ଏକ ସମସ୍ୟା ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ନାନା ସମସ୍ୟା ସହିତ ଏପରି ସଂଶ୍ଳିଷ୍ଟ ଯେ ଏହାର ଆଶୁ ସମାଧାନ ସହଜସାଧ ନୁହେଁ । ପୁନଶ୍ଚ କୌଣସି ସତ୍ୟାଗ୍ରହର ସଫଳତା ନାନା ପାରିପାର୍ଶ୍ୱିକ ପରିସ୍ଥିତି ଓ ବିଶେଷକରି ଏକ ଉଦାରବାଦୀ ଗଣତାନ୍ତ୍ରିକ ବ୍ୟବସ୍ଥା ଉପରେ ନିର୍ଭର କରେ । ଏହା ସହିତ କୌଣସି ସତ୍ୟାଗ୍ରହ ଆନ୍ଦୋଳନରେ ଜାତୀୟ ସ୍ତରରେ ପ୍ରଭାବ ଥିବା ବ୍ୟକ୍ତି ବିଶେଷ ସଂଶ୍ଳିଷ୍ଟ ନ ହେଲେ ଓ ସମାଜର ବହୁ ସ୍ତରରୁ ସମର୍ଥନ ନ ମିଳିଲେ ସତ୍ୟାଗ୍ରହର ସଫଳତା ନେଇ ସନ୍ଦେହ ରହିବା ସ୍ୱାଭାବିକ ମନେହୁଏ । ଏତଦ୍‌ବ୍ୟତୀତ ଏକ ସତ୍ୟାଗ୍ରହ ଆନ୍ଦୋଳନର ସଫଳତା ସାଂପ୍ରତିକ ଯୁଗରେ ଅନେକାଂଶରେ ଗଣମାଧ୍ୟମର ପ୍ରଚ୍ଛର ଉପରେ ନିର୍ଭର କରେ । ଏସବୁର ସମ୍ମିଳିତ ପ୍ରଭାବ ହୁଏତ ସତ୍ୟାଗ୍ରହର ସଫଳତା କ୍ଷେତ୍ରରେ ନିର୍ଣ୍ଣାୟକ ମନେହୁଏ । ଏସବୁର ଅଭାବରେ ସତ୍ୟାଗ୍ରହ ଯେ ବାସ୍ତବପକ୍ଷେ ଏକକ ସାମାଜିକ ନିୟନ୍ତ୍ରଣ ଭାବେ ସବୁ ସମସ୍ୟାର ସମାଧାନ କରିପାରିବ ଏହା ଭାବିବା ଯୁକ୍ତିଯୁକ୍ତ ମନେହୁଏ ନାହିଁ । ପୁନଶ୍ଚ ଯେଉଁଠି ବି ସତ୍ୟାଗ୍ରହ ସଫଳତା ହାସଲକରେ ବା କରିଛି ତାହାଦ୍ୱାରା ଯେ ପ୍ରକୃତରେ ହୃଦୟର ପରିବର୍ତ୍ତନ ହୋଇଛି ଓ ସମାଜର ନୈତିକ ଉତ୍ତରଣ ଘଟିଛି ତାହା ମଧ୍ୟ ବିବାଦୀୟ । ଏହା ସହ ଅନ୍ୟାନ୍ୟ ପ୍ରତିବନ୍ଧକ ଏ କ୍ଷେତ୍ରରେ ମଧ୍ୟ ଥିବା ମନେହୁଏ ।

ତେବେ ସତ୍ୟାଗ୍ରହର ଏସବୁ ଦୁର୍ବଳତା ସତ୍ତ୍ୱେ ଏହାର ଯେ ସମାଜ ଉପରେ ଏକ ନୈତିକ ପ୍ରଭାବ ରହିଛି ଏହା ପ୍ରତୀୟମାନ ହୁଏ । ଅନ୍ତତଃ ଏହା ସମାଜର କୌଣସି ଗମ୍ଭୀର ସମସ୍ୟା ପ୍ରତି ଜନସଚେତନତା ସୃଷ୍ଟି କରିବାରେ ଏକ ମୁଖ୍ୟ ଭୂମିକା ନେଇଥାଏ । ଯେଉଁ କ୍ଷେତ୍ରରେ ସାମାଜିକ ସଚେତନତାର ସ୍ତର ଉନ୍ନତ ହୁଏ, ସେ କ୍ଷେତ୍ରରେ ସାମାଜିକ ସମସ୍ୟାର ସମାଧାନ ପ୍ରତି ଜନ ସଂପୃକ୍ତି ଅଧିକ ହୋଇଥାଏ ।

ତେବେ ସ୍ଥଳ ବିଶେଷରେ ସତ୍ୟାଗ୍ରହର ଅପପ୍ରୟୋଗ ହେବା ମଧ୍ୟ ଦେଖାଯାଏ । ସ୍ୱାଧୀନତାର ପ୍ରାକ୍‌କାଳରେ ସତ୍ୟାଗ୍ରହରେ ସଂପୃକ୍ତ ନେତୃବୃନ୍ଦଙ୍କ ପାଇଁ ଗାନ୍ଧୀ ଯେଉଁ ଆଚରଣବିଧି ବାହାର କରିଥିଲେ ତାହା ଏକ ପରାଧୀନ ଜାତିର ନୈତିକ ଉତ୍ତରଣ ଘଟାଇଥିଲା । କିନ୍ତୁ ସଂପ୍ରତି ସେହି ସ୍ଥିତିରେ ଯଥେଷ୍ଟ ଅବକ୍ଷୟ ଓ ସତ୍ୟାଗ୍ରହର ଅପପ୍ରୟୋଗ ଭିତରେ ଏକ ଜାତିର ସ୍ୱପ୍ନ ବିଡ଼ମ୍ବିତ ହେଉଥିବା ମନେହୁଏ । ଗାନ୍ଧୀ ଯୁଗର ସ୍ୱପ୍ନଠାରୁ ବାସ୍ତବ ସମାଜ ଯେ ବହୁ ଦୂରରେ ଏହା ନିଃସନ୍ଦେହ ଭାବେ କୁହାଯାଇପାରେ । (୨୪.୮.୧୧)



# ଶିକ୍ଷା ଓ ଭବିଷ୍ୟତର ସ୍ୱପ୍ନ

କିଛିଦିନ ତଳେ ଓଡ଼ିଶାର ଏକ ଖ୍ୟାତି ସମ୍ପନ୍ନ ହାଇସ୍କୁଲର ଏକ କାର୍ଯ୍ୟକ୍ରମରେ ଯୋଗ ଦେବାକୁ ଯାଇଥିଲି । ଶିକ୍ଷକମାନଙ୍କ ସହ ଆଲୋଚନା ସମୟରେ ସେହି ବିଦ୍ୟାଳୟର ଐତିହ୍ୟ ସମ୍ପର୍କରେ କହୁଥିଲି । ସେହି ବିଦ୍ୟାଳୟର ବହୁ ପୁରାତନ ଛାତ୍ର ଓଡ଼ିଶାରେ ଓ ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଛନ୍ତି । ପ୍ରତିବର୍ଷ ମାଟ୍ରିକ୍ ପରୀକ୍ଷା ଦେଉଥିବା ଛାତ୍ରମାନଙ୍କ ମଧ୍ୟରୁ ଅଧାରୁ ଅଧିକ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି, ଅଧିକାଂଶ ବର୍ଷ ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍କୁଲର ନାମ ଥାଏ । ମୋଠାରୁ ସ୍କୁଲର ଏହି ଗୌରବ ବିଷୟ ପୁଣି ପ୍ରଧାନ ଶିକ୍ଷକ ଆନନ୍ଦିତ ହେବା ପରିବର୍ତ୍ତେ ବରଂ କିପରି ଦୁଃଖମନା ହେବା ଅନୁଭବ କଲି । ସେ କ୍ଷୋଭର ସହିତ କହିଲେ ଯେ ଏବେ ସାମାଜିକ ସ୍ଥିତି ବଦଳି ଗଲାଣି । ଆଉ ଭଲ ପିଲା ଓଡ଼ିଆ ସ୍କୁଲକୁ ଆସୁନାହାନ୍ତି । ସମାଜରେ ପ୍ରତିଷ୍ଠା ଥିବା ଲୋକମାନେ ସେମାନଙ୍କର ପିଲାମାନଙ୍କୁ ଓଡ଼ିଆ ବିଦ୍ୟାଳୟରେ ପଢାଇବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ମନ୍ତ୍ରୀ, ବିଧାୟକ, ଅଧ୍ୟାପକ, ଡାକ୍ତର, ଇଞ୍ଜିନିୟର, ପ୍ରଶାସନିକ ଅଧିକାରୀ, ବ୍ୟାଙ୍କ ଅଫିସର, ଓକିଲ ପ୍ରଭୃତି ସମାଜର ପ୍ରତିଷ୍ଠିତ ଶ୍ରେଣୀର ଲୋକମାନଙ୍କର ପିଲାମାନେ ଏବେ ଓଡ଼ିଆ ବିଦ୍ୟାଳୟରେ ନାମ ଲେଖାଉ ନାହାନ୍ତି । ସହରର ଯେଉଁ ପିଲାମାନେ ବି ଓଡ଼ିଆ ମାଧ୍ୟମ ସ୍କୁଲକୁ ଆସୁଛନ୍ତି, ସେମାନେ ପ୍ରଥମେ କେତେକ ବେସରକାରୀ ବିଦ୍ୟାଳୟରେ ଦରମା ଦେଇ ପାଠ ପଢ଼ିବାକୁ ଯାଉଛନ୍ତି । ଅଭିଭାବକମାନେ ଟଙ୍କା ଦେଇ ବେସରକାରୀ ବିଦ୍ୟାଳୟମାନଙ୍କରେ ପିଲାମାନଙ୍କୁ ପାଠ ପଢ଼ାଉଛନ୍ତି । ସମାଜର ସବୁଠାରୁ ଅବହେଳିତ ଓ ଆର୍ଥିକ ପରିସ୍ଥିତି ଦୃଷ୍ଟିରୁ ଦରିଦ୍ର ଲୋକମାନଙ୍କର ପିଲାମାନେ ଯାହା ଓଡ଼ିଆ ବିଦ୍ୟାଳୟକୁ ଆସୁଛନ୍ତି । ସମାଜର ସମ୍ପନ୍ନ ଶ୍ରେଣୀର ଲୋକମାନେ ଓଡ଼ିଆ ବିଦ୍ୟାଳୟରେ ମାଗଣାରେ ପିଲାମାନଙ୍କୁ ପାଠ ପଢ଼ାଇବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ସେମାନଙ୍କର ଏହି ପ୍ରକାରର ଏକ ମାନସିକତା ସୃଷ୍ଟି ହୋଇଛି ଯେ, ଓଡ଼ିଆ ବିଦ୍ୟାଳୟମାନଙ୍କର ଶିକ୍ଷାର ମାନ ଆଦୌ ଭଲ ନୁହେଁ ଓ ସେଠାରେ ପଢିଲେ ପିଲାମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହେବ ନାହିଁ ।

ସେହିଦିନ ଏହି ଆଲୋଚନା ଭିତରେ ପ୍ରଧାନ ଶିକ୍ଷକ ସାମାଜିକ ପରିସ୍ଥିତିର ଯେଉଁ ବାସ୍ତବ ଚିତ୍ରଟି କହିଲେ ତାହା ପ୍ରକୃତରେ ପ୍ରଣିଧାନଯୋଗ୍ୟ । ଯେଉଁ ସ୍ଥାନରେ ଇଂରାଜୀ ମାଧ୍ୟମ ବିଦ୍ୟାଳୟ ବା କେତେକ ଧାର୍ମିକ ଆଦର୍ଶ ଦ୍ୱାରା ପ୍ରଭାବିତ

ବେସରକାରୀ ବିଦ୍ୟାଳୟ ନାହିଁ, ସେଠାରେ ଯାହା ପିଲାମାନେ ସରକାରୀ ପରିଚାଳିତ ବା ସରକାରଙ୍କଠାରୁ ସ୍ୱଳ୍ପ କିଛି ଗ୍ରାଣ୍ଟ ପାଇ ବେସରକାରୀ ବିଦ୍ୟାଳୟରେ ପଢୁଛନ୍ତି । ଅନେକ ସରକାରୀ ବିଦ୍ୟାଳୟରେ ଆବଶ୍ୟକୀୟ ଶିକ୍ଷକ ନାହାନ୍ତି, ସେଠାରେ ନୂତନ ନିଯୁକ୍ତି ବର୍ଷ ବର୍ଷ ଧରି ହେଉନାହିଁ ଓ ପିଲା ସଂଖ୍ୟା ଆସ୍ତେ ଆସ୍ତେ କମୁଛନ୍ତି । ଯେଉଁ ପିଲାଙ୍କର କିଛି ଆର୍ଥିକ ସାମର୍ଥ୍ୟ ଅଛି, ସେମାନେ ଟିଉସନ ହେଉଛନ୍ତି । ସେ ସୁବିଧାରୁ ବଞ୍ଚିତ ହେଉଥିବା ପିଲାମାନେ ନିଜ ସାମର୍ଥ୍ୟର ବିକାଶ ପାଇଁ ଅବକାଶ ନ ପାଇ ଫେଲ୍ ହେଉଛନ୍ତି ଓ ଶେଷରେ ପାଠ ଛାଡୁଛନ୍ତି । ପୁନଶ୍ଚ ଗାଆଁ ଗହଳରେ ରହିଥିବା ବହୁ ବେସରକାରୀ ବିଦ୍ୟାଳୟମାନଙ୍କରେ ଶିକ୍ଷାଦାନ କରୁଥିବା ଶିକ୍ଷକମାନେ ଏତେ ସ୍ୱଳ୍ପ ଦରମା ପାଆନ୍ତି ଯେ, ସେଥିରେ କେବଳ ନିଜ ଜୀବନର ଆବଶ୍ୟକତା ପୂରଣ କରିବା ସମ୍ଭବ ନୁହେଁ । ବର୍ଷ ବର୍ଷ ଧରି ସରକାରୀ ସାହାଯ୍ୟ ପାଇବା ଆଶାରେ ସେମାନେ ଶିକ୍ଷାଦାନ କରି ଏକ ପ୍ରକାର ନୈରାଶ୍ୟ ଭିତରେ ଜୀବନ ଅତିବାହିତ କରନ୍ତି । ନାନା ସମୟରେ ଆନ୍ଦୋଳନ, ଧର୍ମଘଟର ଆଶ୍ରୟ ନିଅନ୍ତି ଓ ନୈରାଶ୍ୟ ଭିତରେ ଏକ ଅନ୍ଧକାର ଭବିଷ୍ୟତ ହିଁ ଦେଖନ୍ତି ।

ପୁନଶ୍ଚ ଚାରି, ପାଞ୍ଚ ଦଶନ୍ଧି ତଳେ ମୋ ପୀଢ଼ିର ଲୋକମାନେ ଛାତ୍ର ଥିବାବେଳେ ବହୁ ମେଧାବୀ ଓ ଗୁଣବାନ ଶିକ୍ଷକମାନେ ରହିଥିଲେ । ସେହି ପୀଢ଼ିରେ ଶିକ୍ଷକତା ଏକ ସମ୍ମାନଜନକ ବୃତ୍ତିହୋଇ ରହିଥିଲା । ସେତେବେଳେ ଏତେ ପ୍ରକାରର ବିଦ୍ୟାଳୟ ନ ଥିଲା ଓ ଇଂରାଜୀ ମାଧ୍ୟମ ବିଦ୍ୟାଳୟ ଜିଲାମାନଙ୍କରେ ବି ଆରମ୍ଭ ହୋଇ ନ ଥିଲା । ସରକାରୀ ସ୍କୁଲ ସହିତ ବେସରକାରୀ ସ୍କୁଲମାନ ହେଉଥିଲା, ତେବେ ଶିକ୍ଷକମାନେ ଅତ୍ୟନ୍ତ ସମ୍ମାନଜନକ ବ୍ୟକ୍ତି ଭାବେ ମର୍ଯ୍ୟାଦାର ଅଧିକାରୀ ଥିଲେ । ଶିକ୍ଷକତାକୁ ରୁଚି ଓ ବ୍ରତ ଭାବେ ନେଇ ଶିକ୍ଷାଦାନକୁ ଏକ ପବିତ୍ର କର୍ତ୍ତବ୍ୟ ବୋଲି ଗ୍ରହଣ କରିବାର ଦୃଷ୍ଟିଭଙ୍ଗୀ ବହୁ ଶିକ୍ଷକଙ୍କ ପାଖରେ ରହିଥିଲା । କେତେକ ବିଦ୍ୟାଳୟର ପ୍ରଧାନ ଶିକ୍ଷକମାନେ ଏତେ ସମ୍ମାନଜନକ ଓ ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷ ଥିଲେ ଯେ, ସେମାନଙ୍କ ପ୍ରଭାବରେ ବିଦ୍ୟାଳୟର ଅନ୍ୟ ଶିକ୍ଷକମାନେ ଗଭୀର ଭାବେ ପ୍ରଭାବିତ ହେଉଥିଲେ । ଗାଁରୁ ମାଟ୍ରିକ୍ ପାସ୍ କରି କଲେଜରେ ଆସି ଉଚ୍ଚଶିକ୍ଷା ଲାଭ କରିବାକୁ ତଥା ଜଣେ ଦାୟିତ୍ୱ ସମ୍ପନ୍ନ ନାଗରିକ ହେବାକୁ ବହୁ ପ୍ରେରଣା ଅନେକ ବ୍ୟକ୍ତି ଶିକ୍ଷକମାନଙ୍କଠାରୁ ହିଁ ପାଉଥିଲେ । ଏବେ ବି ବିଦ୍ୟାଳୟ ଜୀବନର ଶିକ୍ଷକମାନଙ୍କୁ ଦେଖିଲେ ଭକ୍ତି ଓ ସମ୍ମାନରେ ମୁଣ୍ଡ ନଇଁଯାଏ ଓ ଶିକ୍ଷକମାନେ କୌଣସି ଛାତ୍ରଙ୍କ ସୁନାମ ବା ପ୍ରତିଷ୍ଠାରେ ବହୁ ଗର୍ବ ଅନୁଭବ କରନ୍ତି । ଅନେକ ବ୍ୟକ୍ତିଙ୍କର ପ୍ରତିଷ୍ଠା ପଛରେ ବିଦ୍ୟାଳୟ ଶିକ୍ଷକମାନଙ୍କର ପ୍ରେରଣା ଓ ଉତ୍ସାହ ରହିଥିବା ଅନେକ ବ୍ୟକ୍ତିଙ୍କର

ଜୀବନୀରୁ ପଢ଼ିବାକୁ ମିଳେ ଓ ଏହା ମଧ୍ୟ ମୋ ପରି ଅନେକ ବ୍ୟକ୍ତିଙ୍କ ବାସ୍ତବ ଅନୁଭୂତିର ବିଷୟ ଅଟେ ।

ଇଂରାଜୀରେ ଗୋଟିଏ ବକ୍ତବ୍ୟ ରହିଛି ଯାହାର ତାତ୍ପର୍ଯ୍ୟ ହେଲା "ଗୋଟିଏ ଦେଶର ଭବିଷ୍ୟତ ତା'ର ଶ୍ରେଣୀ ଗୃହରୁ ରୂପ ନେଇଥାଏ ।" କଅଁଳ ବୟସରୁ ଜଣେ ଛାତ୍ର ବା ଛାତ୍ରୀ ଯେଉଁ ନୀତିବୋଧ ଓ ମାନବିକ ସ୍ପର୍ଶ ପାଇଥାଏ, ତାହା ତାର ଜୀବନଧାରାକୁ ଗଭୀର ଭାବେ ପ୍ରଭାବିତ କରିଥାଏ । ବୃହତ୍ତର ସମାଜ ପ୍ରତି ସଂପ୍ରୀତିଭାବ ଓ ସମ୍ବେଦନଶୀଳ ଜୀବନ ଦୃଷ୍ଟି, କୋମଳମତି ଛାତ୍ରଛାତ୍ରୀଙ୍କ ଭିତରେ ଶିକ୍ଷକମାନେ ହିଁ ସୃଷ୍ଟି କରିପାରନ୍ତି । ଜୀବନ ପ୍ରତି ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ଓ ଉଚ୍ଚ ନାଗରିକ ଶୃଙ୍ଖଳାବୋଧ ପିଲାଟି ଭିତରେ ଉଦ୍ଭବ କରାଇବାରେ ବିଦ୍ୟାଳୟର ଗୁରୁଦାୟିତ୍ୱ ଥିବା ମନେହୁଏ । ପାରିବାରିକ ଜୀବନର ସଂସ୍କାର ଓ ବିଦ୍ୟାଳୟ ଜୀବନର ପ୍ରେରଣାଦାୟକ ପରିବେଶର ଭୂମି ଉପରେ ଜଣଙ୍କର ବ୍ୟକ୍ତିତ୍ୱଟି ଗଢି ଉଠିଥାଏ । ଜଣଙ୍କର ବ୍ୟକ୍ତିତ୍ୱ ଗଠନ କ୍ଷେତ୍ରରେ ନାନା ପାରିପାର୍ଶ୍ୱିକ ପ୍ରଭାବ ରହିଥିଲେ ମଧ୍ୟ ସେ କ୍ଷେତ୍ରରେ ବିଦ୍ୟାଳୟର ଯେଉଁ ଭୂମିକା ରହିଥାଏ ତାହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ଶିକ୍ଷା ବ୍ୟବସ୍ଥା ଯେତିକି ଉନ୍ନତ ହେବ ଓ ସୃଜନଶୀଳ ଦୃଷ୍ଟିଭଙ୍ଗୀର ବ୍ୟକ୍ତିମାନେ ଯେତେ ଅଧିକ ଶିକ୍ଷା ସ୍ତରକୁ ଆସିବେ, ସମାଜର ଗୁଣାତ୍ମକ ମାନ ସେତେ ଅଧିକ ହେବା ମନେହୁଏ । ଯଦି ଶିକ୍ଷା ବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରାଯାଏ ଓ ଏ କ୍ଷେତ୍ରରେ କୌଣସି ସରକାରୀ ନିଷ୍ଠା ନ ରହେ, ତେବେ ସାମାଜିକ ଜୀବନରେ ନାନା ଅବକ୍ଷୟ ସୃଷ୍ଟି ହେବାର ସମ୍ଭାବନା ଆସେ । ପୁନଶ୍ଚ ଯଦି ସମାଜର ପ୍ରତିଭା ସମ୍ପନ୍ନ ଛାତ୍ରଛାତ୍ରୀମାନେ ଶିକ୍ଷକତାକୁ ବୃତ୍ତି ଭାବରେ ଗ୍ରହଣ କରିବାରେ କୌଣସି ଆନ୍ତରିକତା ପୋଷଣ କରନ୍ତି ନାହିଁ ଓ ସମାଜର ଦୃଷ୍ଟିଭଙ୍ଗୀ ଶିକ୍ଷକମାନଙ୍କ ପ୍ରତି ପ୍ରେରଣା ଦାୟକ ନ ହୁଏ, ତେବେ ସମାଜର ସ୍ଥିତିରେ ଅବକ୍ଷୟ ଆସିଥାଏ । ଯେଉଁମାନେ ଶିକ୍ଷକତାକୁ ବୃତ୍ତି ଭାବରେ ନେଇଥାନ୍ତି ସେମାନେ ଯଦି ଆର୍ଥିକ ପ୍ରତିକୂଳତା ଭିତରେ ସର୍ବଦା ହତାଶା, ନୈରାଶ୍ୟ ଓ ସମାଜ ପ୍ରତି ଏକ ଅବିଶ୍ୱାସର ମନୋଭାବ ପୋଷଣ କରନ୍ତି ଓ ରାଜରାସ୍ତାକୁ ଆସି ଆନ୍ଦୋଳନ କରନ୍ତି ତେବେ ଭବିଷ୍ୟତର ଚିତ୍ର କଣ ହେବ ? ଏକ ବିପର୍ଯ୍ୟସ୍ତ ଶିକ୍ଷା ବ୍ୟବସ୍ଥାରୁ ଦୁର୍ନୀତି, ଭ୍ରଷ୍ଟାଚାର ଓ ବିଶୃଙ୍ଖଳାର ଭବିଷ୍ୟତ ଯେ ଆସିବ ଏହା ଅନୁମାନ କରାଯାଏ ।

ଏହି ପୃଷ୍ଠଭୂମିରେ ଶିକ୍ଷାଦାନ ଓ ପ୍ରଶିକ୍ଷଣ (ଟ୍ରେନିଂ) ଭିତରେ ଏକ ମୌଳିକ ପାର୍ଥକ୍ୟ ଥିବା ମନେହୁଏ । ଶିକ୍ଷା ଅଧିକ ଜୀବନ-କୈନ୍ଦ୍ରିକ ଅଥଚ ପ୍ରଶିକ୍ଷଣ କୌଶଳ

ବା ବୃତ୍ତି-କେନ୍ଦ୍ରିକ । ଶିକ୍ଷା ଦ୍ୱାରା ବ୍ୟକ୍ତି ଭିତରେ ବିଚାରଶୀଳ ଦୃଷ୍ଟି, ସୂକ୍ଷ୍ମ ଆବେଗ, ସମ୍ବେଦନଶୀଳ ମନୋଭାବ ଓ ସୃଜନଶୀଳ ମାନସିକତା ସୃଷ୍ଟି କରାଯାଏ । କିନ୍ତୁ ପ୍ରଶିକ୍ଷଣ ଭିତରେ ଏକ ବୃତ୍ତି ପାଇଁ କୌଶଳ ଆୟତ୍ତ କରିବାକୁ ଲକ୍ଷ୍ୟ ରଖାଯାଏ । ଗୋଟିଏ କୁକୁର ବା ପାରାକୁ ପ୍ରଶିକ୍ଷଣ ଦିଆଯାଏ । ସେ କୁକୁରଟି କିପରି ଶୁଙ୍ଘିକରି ଗୋଟିଏ ଜିନିଷକୁ ଧରିପାରିବ ବା ଗୋଟିଏ ପାରା ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଚିଠିଟିଏ ନେଇ ପାରିବ ସେ ପାଇଁ ସେମାନଙ୍କୁ ପ୍ରଶିକ୍ଷଣ ଦିଆଯାଏ । ଏବେ ଶିକ୍ଷା ସେହି ସ୍ତରକୁ ଆସୁଥିବା ମନେହୁଏ । କେଉଁ ପାଠ ପଢ଼ି କେଉଁ କୌଶଳ ହାସଲ କଲେ ଅଧିକ ଉପାର୍ଜନ ହୋଇପାରିବ-ଏହା ଶିକ୍ଷାର ଆଭିମୁଖ୍ୟ ହେଉଥିବା ସାମାଜିକ ଘଟଣା ପ୍ରବାହରୁ ଜଣାପଡ଼େ । ଛାତ୍ରଛାତ୍ରୀମାନେ ଯଦି କେବଳ ଉପାର୍ଜନକୁ ମାନଦଣ୍ଡ ଭାବରେ ନେଇ ଗୋଟିଏ ବୃତ୍ତିଗତ ଶିକ୍ଷାକୁ ଜୀବନର ବ୍ରତ ଭାବରେ ଗ୍ରହଣ କରିବେ, ତେବେ ଶିକ୍ଷାର ସମସ୍ତ ଆଦର୍ଶ ଗୁଡ଼ିକ ସମାଜ ଜୀବନରୁ ଅପସରି ଯିବ । ଯେଉଁ ବୃତ୍ତିରେ ସବୁଠାରୁ ଅଧିକ ଆୟ ବା ଉପାର୍ଜନର ସମ୍ଭାବନା ରହିଛି, ତାହାକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିବା ଓ ସେହି ପ୍ରକାରର ଏକ ଜୀବନଦୃଷ୍ଟି ପିଲାଙ୍କର ମନ ଭିତରେ ପୂରାଇବା ଯେ ଏକ ସୁସ୍ଥ ବିଚାରର ପରିପ୍ରକାଶ ନୁହେଁ, ଏହା ନିଃସନ୍ଦେହ ମନେହୁଏ ।

ଯେଉଁ ଛାତ୍ରଛାତ୍ରୀମାନେ କୌଣସି ପରୀକ୍ଷାରେ କିଛି କୃତିତ୍ୱ ଦେଖାଉଛନ୍ତି, ଗଣମାଧ୍ୟମରେ ସେମାନଙ୍କର ଭବିଷ୍ୟତ ଲକ୍ଷ୍ୟ କ'ଣ ବୋଲି ସମ୍ବାଦ ପ୍ରକାଶ ପାଏ । ଅଧିକାଂଶ ଛାତ୍ରଛାତ୍ରୀ ଡାକ୍ତର, ପ୍ରଶାସନିକ ଅଧିକାରୀ, ଇଞ୍ଜିନିୟର ବା ମ୍ୟାନେଜର ହେବାକୁ ପ୍ରାୟତଃ ଆଶା ପୋଷଣ କରିବା ଦେଖାଯାଏ । ମୁଁ ଜଣେ ସମାଜସେବୀ ହେବି, ଶିକ୍ଷକତା କରିବି, ଦାର୍ଶନିକ ହେବି, ବୈଜ୍ଞାନିକ ହୋଇ ଜୀବନରେ ଗବେଷଣା କରିବି ଇତ୍ୟାଦି ମନୋଭାବ କୌଣସି ଛାତ୍ରଛାତ୍ରୀ ବ୍ୟକ୍ତ କରିବା ପ୍ରାୟତଃ ଦୃଷ୍ଟିକୁ ଆସେନାହିଁ । ବିଡ଼ମ୍ବନାର ବିଷୟ, ସମାଜର ସବୁଠାରୁ ବୁଦ୍ଧିମାନ ଛାତ୍ରମାନେ ଅଧିକ ଉପାର୍ଜନକୁ ଆଖି ଆଗରେ ରଖି ନିଜର କ୍ୟାରିୟର ଗଠନ କରିବା ମନୋଭାବ କେବଳ ପ୍ରକାଶ କରନ୍ତି । କିଶୋର ବୟସରୁ ଅଭିଭାବକମାନେ ପିଲାମନଙ୍କ ଭିତରେ ଏକ ସ୍ୱାର୍ଥସର୍ବସ୍ୱ ମନୋଭାବ ସୃଷ୍ଟି କରିଥାନ୍ତି । ଏପରିକି କେତେକ କ୍ଷେତ୍ରରେ ଛାତ୍ର ଛାତ୍ରୀମାନଙ୍କର ବ୍ୟକ୍ତିଗତ ରୁଚି ନ ଥିଲେ ମଧ୍ୟ ସେମାନେ ବାପା, ମା'ଙ୍କ ଚାପରେ ପଡି ରୁଚି ବିରୋଧୀ ଗୋଟିଏ ବିଷୟରେ ଉଚ୍ଚଶିକ୍ଷାକୁ ଆସନ୍ତି ଓ ପାଠରେ ଆଗ୍ରହ ପ୍ରକାଶ କରନ୍ତି ନାହିଁ ।

ଏହା ସହିତ ଆମ ଦେଶ ପରି ଏକ ଜନମଙ୍ଗଳକାରୀ ଗଣତାନ୍ତ୍ରିକ ରାଷ୍ଟ୍ରରେ ଶିକ୍ଷା କ୍ଷେତ୍ରରେ ଏତେ ଭେଦଭାବମୂଳକ ପରିବେଶ ରହିବା ଦୁର୍ଭାଗ୍ୟଜନକ

ମନେହୁଏ । ଆମ ସମାଜ ଯେଉଁପରି ଜାତିଆଣ ଭେଦଭାବକୁ ନେଇ ଯୁଗ ଯୁଗ ଧରି ମଣିଷ ମଣିଷ ଭିତରେ ପ୍ରାଚୀର ଛିଡା କରାଇଛି, ଆମର ଶିକ୍ଷା ବ୍ୟବସ୍ଥା ସେହିପରି ଏକ ଭେଦଭାବ ମୂଳକ ପରିବେଶ ପାଇଁ ପଥ ପ୍ରସ୍ତୁତ କରୁନାହିଁ ତ ? ଏକ ଜନମଙ୍ଗଳକାରୀ ରାଷ୍ଟ୍ର ଏକ ସମତାଭିତ୍ତିକ ଓ ଗୁଣାତ୍ମକ ଶିକ୍ଷା ବ୍ୟବସ୍ଥାର ପ୍ରସାର କରାଇବା ଆବଶ୍ୟକ । ଏହା ବି ଥିଲା ଆମ ସମ୍ବିଧାନର ଏକ ପବିତ୍ର ପ୍ରତିଶ୍ରୁତି । ସ୍ୱାଧୀନତା ଯୁଗର ଅନେକ ସ୍ୱପ୍ନ ଆଜିବି ବିଡ଼ମ୍ବିତ ହୋଇରହିଛି । ସେହିପରି, ଶିକ୍ଷା କ୍ଷେତ୍ରରେ ଯେଉଁ ଭେଦଭାବମୂଳକ ଓ ଦୂରଦୃଷ୍ଟିବିହୀନ ପରିବେଶ ସୃଷ୍ଟି ହେଉଛି ତାହା ଯେ ରାଷ୍ଟ୍ରର ଭବିଷ୍ୟତ ପାଇଁ ମଙ୍ଗଳକର ନୁହେଁ ଏହା ମନେହୁଏ । (୩୧.୮.୧୧)



# ଓଡ଼ିଆ ଭାଷା ଓ ଭବିଷ୍ୟତର ସଂକଟ

ବିଭିନ୍ନ ସମୟରେ ଓଡ଼ିଆ ଭାଷାକୁ ନେଇ ବିଭିନ୍ନ ସୋପାନ ବା ଆଲୋଚନା ଚକ୍ରମାନ ଅନୁଷ୍ଠିତ ହେଉଛି । ଓଡ଼ିଆ ଭାଷା ଭବିଷ୍ୟତରେ କିଛି ସଂକଟର ସମ୍ମୁଖୀନ ହେବାକୁ ଯାଉଛି କି, ଏ ପ୍ରକାରର ଆଶଙ୍କା ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଓ ଭାଷାପ୍ରେମୀଙ୍କ ଭିତରେ ସମ୍ଭବତଃ ସୃଷ୍ଟି ହେଉଛି । ବର୍ତ୍ତମାନ ସହରରୁ ଗାଁମାନଙ୍କରେ ବି ପ୍ରାଥମିକ ସ୍ତରରୁ ଇଂରାଜୀ ମାଧ୍ୟମ ବିଦ୍ୟାଳୟମାନ ଖୋଲିଯାଉଛି । ସମାଜର ଆର୍ଥିକ ସମ୍ପନ୍ନତା ଥିବା ଲୋକମାନେ ଓଡ଼ିଆ ମାଧ୍ୟମ ବିଦ୍ୟାଳୟରେ ପିଲାମାନଙ୍କୁ ପଢ଼ାଇବା ପରିବର୍ତ୍ତେ ଇଂରାଜୀ ମାଧ୍ୟମରେ ଟଙ୍କା ଦେଇ ପଢ଼ାଇବାକୁ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି । ଏହା ପଛରେ ନାନା କାରଣ ମଧ୍ୟ ରହିଛି । ତେବେ ଆଜିର ଜଗତୀକରଣ ଯୁଗରେ ଇଂରାଜୀ ଭାଷାରେ ପାଠ ପଢ଼ିଥିଲେ ଭବିଷ୍ୟତରେ କର୍ମସଂସ୍ଥାନଟିଏ ମିଳିପାରିବାର ସମ୍ଭାବନା ରହୁଛି ବୋଲି ବିଶ୍ୱାସରୁ ସମାଜର ସାଧାରଣ ବର୍ଗର ଲୋକମାନେ ଇଂରାଜୀ ମାଧ୍ୟମ ସ୍କୁଲ ପ୍ରତି ଆଗ୍ରହୀ ହେବା ମନେହୁଏ । ଏହା ସହିତ ବର୍ତ୍ତମାନର ପିଲାମାନେ କର୍ମସଂସ୍ଥାନ ପାଇଁ ଖ୍ୟାତିସମ୍ପନ୍ନ ଶିକ୍ଷାନୁଷ୍ଠାନରେ ଅଧ୍ୟୟନ ପାଇଁ ଜାତୀୟ ସ୍ତରରେ ପ୍ରତିଯୋଗିତା କରିବେ । ଯଦି ସେମାନେ ଇଂରାଜୀ ଭାଷାରେ ଦକ୍ଷତା ନ ରଖିବେ ତେବେ ସେମାନେ ସେଥିରେ ପଛରେ ପଡ଼ିଯିବେ, ଏପ୍ରକାର ଭାବନା ବି କେତେକ ପୋଷଣ କରୁଛନ୍ତି । ସୁତରାଂ ଇଂରାଜୀ ଭାଷାରେ ପଢ଼ିବା ଏ ଯୁଗର ଏକ ଆବଶ୍ୟକତା ବୋଲି ଓଡ଼ିଶାରେ ସାଧାରଣ ଲୋକମାନଙ୍କ ପାଖରେ ଏକ ଭାବନା ସୃଷ୍ଟି ହୋଇଛି ।

ଓଡ଼ିଶାରେ ବିଭିନ୍ନ ଭାଷା ରହିଥିଲେ ମଧ୍ୟ ଓଡ଼ିଆ ମୁଖ୍ୟ ଭାଷା ହୋଇ ରହିଛି । ଓଡ଼ିଶାର ପଶ୍ଚିମାଞ୍ଚଳ ଜିଲ୍ଲାମାନଙ୍କରେ ସମ୍ବଲପୁରୀ ଭାଷା ମୁଖ୍ୟତଃ ଏକ କଥିତ ଭାଷା ଓ ଏଥିରେ ବି ସାହିତ୍ୟ ସୃଷ୍ଟି ହେଲାଣି । ଫୁଲବାଣୀ ଜିଲ୍ଲା ଓ ସଂଲଗ୍ନ ଅଞ୍ଚଳରେ କୁଇ ଭାଷା, ମୟୁରଭଞ୍ଜ ଓ ସଂଲଗ୍ନ ଅଞ୍ଚଳରେ ସାନ୍ତାଳୀ ଭାଷା ଓ ଆଉ କେତେକ ଆଦିବାସୀ ଗୋଷ୍ଠୀରେ ଆଦିବାସୀ ଭାଷା ଲୋକମାନଙ୍କର କଥିତ ଭାଷା ହୋଇ ରହିଛି । ତେବେ ଓଡ଼ିଶାରେ "ଓଡ଼ିଆ" ହେଉଛି ଏକ ପ୍ରମୁଖ ଭାଷା ଓ ଏକ ସମ୍ବିଧାନ ସ୍ୱୀକୃତ ଭାଷା । ଏକଦା ଭାଷାକୁ ଆଧାର କରି ପ୍ରଦେଶ ଗଠନ କ୍ଷେତ୍ରରେ ଓଡ଼ିଶା ବି ଜାତୀୟ ସ୍ତରରେ ପଥ ପ୍ରଦର୍ଶକ ଥିବା ଏକ ଐତିହାସିକ ସତ୍ୟ ।

ଗୋଟିଏ ଯୁଗରେ ମାତୃଭାଷାକୁ ନେଇ ଯେଉଁ ସାମାଜିକ ଭାବାବେଗ ରହିଥିଲା, ତାହା ପରିବର୍ତ୍ତିତ ପରିସ୍ଥିତିରେ ଓ ଯୁଗର ଆହ୍ୱାନରେ କ୍ରମେ ବଦଳି ଯିବାକୁ ଲାଗିଛି । କୌଣସି ଭାଷା ନିଜର ଶବ୍ଦ ସମ୍ଭାର ଭିତରେ ଏବେ ସୀମିତ ରହୁନାହିଁ, ବରଂ ନାନା ଭାଷାର ଶବ୍ଦକୁ ନିଜ ଭିତରେ ଗ୍ରହଣ କରିନେଉଛି । ଇଂରାଜୀ ଭାଷା ପୃଥିବୀର ବହୁ ଦେଶରୁ ଶବ୍ଦ ନେଇ ଆଜି ଏତେ ସମୃଦ୍ଧ ହୋଇଛି । ତେବେ କୌତୂହଳର ବିଷୟ ଯେ ଚତୁର୍ଦ୍ଦଶ ପଞ୍ଚଦଶ ଶତାବ୍ଦୀ ବେଳକୁ ଇଂରାଜୀ ଭାଷା ଅତ୍ୟନ୍ତ ଅବିକଶିତ ହୋଇ ରହିଥିଲା ଓ ଇଂଲଣ୍ଡର ଲୋକମାନେ ନିଜର ପିଲାମାନଙ୍କୁ ଲାଟିନ ବା ଗ୍ରୀକ୍ ଭାଷାରେ ପଢ଼ାଇବାକୁ ଆଗ୍ରହ କରୁଥିଲେ ବୋଲି କୁହାଯାଏ । ତେବେ କାଳକ୍ରମେ ବୈଜ୍ଞାନିକ ଗବେଷଣା ସେଠାରେ ତ୍ୱରାନ୍ୱିତ ହେଲା, ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା ହୋଇ ଉଚ୍ଚଶିକ୍ଷାର ପରିବେଶ ଆସିଲା ଓ ଶିଳ୍ପ ବିପ୍ଳବର ଯୁଗ ଆରମ୍ଭ ହେଲା । ଇଂରେଜମାନେ ଶିଳ୍ପ କ୍ଷେତ୍ରରେ ଓ ପ୍ରତିରକ୍ଷା କ୍ଷେତ୍ରରେ ଆଗୁଆ ରହି ବିଭିନ୍ନ ଭୂଖଣ୍ଡରେ ସାମ୍ରାଜ୍ୟବାଦ ବିସ୍ତାର କଲେ । କାଳକ୍ରମେ ବହୁ ଭାଷାର ଶବ୍ଦ ଇଂରାଜୀ ଭାଷାରେ ଅନ୍ତର୍ଭୁକ୍ତ ହେଲା ଓ ଇଂରାଜୀ ଏକ ପ୍ରମୁଖ ଭାଷା ଭାବେ ଜ୍ଞାନବିଜ୍ଞାନର ପ୍ରତ୍ୟେକ କ୍ଷେତ୍ରରେ ଏକ ସଂଯୋଗକାରୀ ଭାଷା ହେଲା । ଯେଉଁ ଭାଷା ଯେତେ ନମନୀୟ ହୋଇ ମୁକ୍ତ ଭାବେ ବିଭିନ୍ନ ଭାଷାର ଶବ୍ଦମାନଙ୍କୁ ନିଜ ଭିତରେ ଗ୍ରହଣ କରିନେଲା, ତାହା ସମୃଦ୍ଧ ହୋଇ ଚାଲିଲା । ଯେଉଁ ଭାଷା ଏହି ପ୍ରକ୍ରିୟା ପ୍ରତି ବିମୁଖ ହେଲା ଓ ନିଜର ପବିତ୍ରତା ରକ୍ଷା କରିବାପାଇଁ ରୁଦ୍ଧ ହେଲା ତାହା ସଂକୁଚିତ ହୋଇଚାଲିଲା । ଆଜି ସାଧାରଣ କଥାବାର୍ତ୍ତାରେ, ସମ୍ବାଦପତ୍ରରେ, ଗଣମାଧ୍ୟମରେ ବହୁ ଇଂରାଜୀ ଶବ୍ଦ ଆମର ନିତିଦିନିଆ ବ୍ୟବହାରରେ ସର୍ବଦା ପ୍ରୟୋଗ ହେଉଛି । ସେଥିରେ ଆମ ଭାଷାର ମୌଳିକତା ନଷ୍ଟ ହେଉଛି କି ? ଏସବୁ ଇଂରାଜୀ ଶବ୍ଦକୁ ଆମେ ବାଦ୍ ଦେଇପାରିବା କି ? ଜଣେ ସାଇକେଲ ଚଢୁଥିବା ପିଲାଟିଏ ବ୍ରେକ୍, ଚେନ୍, ହ୍ୟାଣ୍ଡେଲ, ବେଲ୍, ପମ୍ପ, ଲିକ୍, ପରି ଅନେକ ଇଂରାଜୀ ଶବ୍ଦ ବ୍ୟବହାର କରୁଛି । ନିରକ୍ଷର ମହିଳାଟିଏ ବସ୍‌ରେ ଯାତ୍ରାକଲାବେଳେ ଡ୍ରାଇଭର, ଟିକେଟ, କଣ୍ଡକ୍ଟର, ଲେଡିଜ୍ ସିଟ୍ ଇତ୍ୟାଦି ଶବ୍ଦ ଅନାୟାସରେ କହୁଛି । ଡାକ୍ତରଖାନାରେ ସାଲାଇନ, ଇଞ୍ଜେକ୍ସନ, ବ୍ଲଡ଼ପ୍ରେସର, ଏକ୍ସ-ରେ, ସ୍କାନିଂ, ଥର୍ମୋମିଟର ପରି ଶବ୍ଦ, ଡାକଘରେ ମନିଅର୍ଡ଼ର, ପୋଷ୍ଟକାର୍ଡ଼, ପାର୍ସଲ, ଟେଲିଗ୍ରାମ ପରି ଶବ୍ଦ ଓ ଆମ ରୋଷେଇଶାଳରେ ପ୍ରେସର କୁକର, ସିଲିଣ୍ଡର, ଗ୍ୟାସ, ଫ୍ରାଇଂ ପ୍ୟାନ୍ ଇତ୍ୟାଦି ଶବ୍ଦ ଆମ ସାଧାରଣ ବ୍ୟବହାରରେ ଏତେ ବ୍ୟବହୃତ ହେଉଛି ଯେ ସେସବୁକୁ ଆମେ ଛାଡ଼ିବା ବା ତା'ର ଓଡ଼ିଆ ବିକଳ୍ପ ବାହାର କରିବା ସମ୍ଭବ ନୁହେଁ । ଯଦିବା ଓଡ଼ିଆ ପ୍ରତିଶବ୍ଦ ବାହାର କରାଯାଏ ତେବେ ତାହା ସମ୍ଭବତଃ ସହଜରେ ଆଦୃତ ହେବ ବୋଲି ମନେହୁଏ ନାହିଁ । ମୋଟ ଉପରେ କହିଲେ ଶବ୍ଦମାନଙ୍କର ଯେ

ଜାତୀୟତା ନାହିଁ ଓ ସେସବୁ ଆନ୍ତର୍ଜାତୀୟ ଏହା ସମ୍ପ୍ରତି ଅଧିକ ଗୃହୀତ ହେବାରେ ଲାଗିଛି ।

ଭାଷାର ସମୃଦ୍ଧି ଓ ସ୍ଥାୟିତ୍ୱ ଯେଉଁସବୁ କାରଣ ଉପରେ ନିର୍ଭର କରେ, ସେ କ୍ଷେତ୍ରରେ ତିନୋଟି ମୁଖ୍ୟ ଲକ୍ଷଣକୁ ବିଚାରକୁ ନିଆଯାଇପାରେ । ଏହା ସଞ୍ଚାରର ଭାଷା ହୋଇପାରୁଛି କି ନାହିଁ, ଏହା ପ୍ରଶାସନର ଭାଷା କି ନୁହେଁ ଓ ଏହା ଜ୍ଞାନବିଜ୍ଞାନର ବିକାଶ ଦିଗରେ ସହାୟକ କି ନୁହେଁ । ଏ କ୍ଷେତ୍ରରେ ଓଡ଼ିଆ ଭାଷା ସଞ୍ଚାରର ଭାଷା ହୋଇଛି । ଏବେ ତ ଦୂରଦର୍ଶନରେ କେତେ ଓଡ଼ିଆ ଚ୍ୟାନେଲ ଖୋଲିଲାଣି, ଯାହାଦ୍ୱାରା ଓଡ଼ିଆ ଭାଷାରେ ନାନା କାର୍ଯ୍ୟକ୍ରମ ପ୍ରସାରିତ ହୋଇପାରୁଛି । ସେହିପରି ଓଡ଼ିଆ ସମ୍ବାଦପତ୍ରର ସଂଖ୍ୟା ଆଶାତୀତ ଭାବେ ବଢ଼ିଚାଲିଛି । ଓଡ଼ିଆ ଭାଷାରେ ନାନା ଚଳଚ୍ଚିତ୍ର, ଯାତ୍ରା ବେଶ୍ ପ୍ରସାର ଲାଭ କରୁଛି । ଭାଷାର ସ୍ଥାୟିତ୍ୱ ଦିଗରେ ଏସବୁ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପ୍ରଶାସନର ଭାଷା କ୍ଷେତ୍ରରେ ଓଡ଼ିଆ ସମ୍ଭବତଃ ସମ୍ପୂର୍ଣ୍ଣ ଭାବେ ଗ୍ରହଣଯୋଗ୍ୟ ହୋଇନାହିଁ । ଏଥିରେ କେତେକ ଜଟିଳତା ଓ ପ୍ରତିବନ୍ଧକ ରହିଛି । ତେବେ ଓଡ଼ିଆ ଭାଷା ଯେ ପ୍ରଶାସନର ଭାଷା ହୋଇପାରିବ ଏଥିରେ ସନ୍ଦେହ ନାହିଁ । ଶେଷରେ ଆସୁଛି ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ଏହା କେତେ ସହାୟକ ହୋଇପାରିଛି । ଜ୍ଞାନବିଜ୍ଞାନର ଭାଷା କହିଲେ ବୈଷୟିକ ଶିକ୍ଷା କ୍ଷେତ୍ର ହେଉ ବା ସାଧାରଣ ଶିକ୍ଷା କ୍ଷେତ୍ର ହେଉ, ଉଚ୍ଚଶିକ୍ଷା ସ୍ତରରେ ଏହାର ବିସ୍ତାର ଓ ପ୍ରୟୋଗ କେତେ ହେଉଛି । ଅନ୍ୟ ଭାବରେ କହିଲେ ଜ୍ଞାନ-ସର୍ଜନା କ୍ଷେତ୍ରରେ ଏହି ଭାଷାର କେତେ ସାମର୍ଥ୍ୟ ରହିଛି ? ବିଶ୍ୱବିଦ୍ୟାଳୟ ସ୍ତରରେ ପଢ଼ାଯାଉଥିବା ବିଷୟ ଯଥା : ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ ଇତ୍ୟାଦି ହେଉ ବା ଦର୍ଶନ, ଅର୍ଥନୀତି, ନୃତତ୍ତ୍ୱ ବିଷୟ ହେଉ କିମ୍ବା ବୈଷୟିକ ଶିକ୍ଷା ପରି ଇଞ୍ଜିନିୟରିଂ, ମେଡ଼ିକାଲ, କୃଷିବିଜ୍ଞାନ ଇତ୍ୟାଦି କ୍ଷେତ୍ର ହେଉ, ଏସବୁ କ୍ଷେତ୍ରରେ ଭାଷାର ବ୍ୟବହାର କେତେ ହୋଇପାରୁଛି ? ଓଡ଼ିଆ ଭାଷାରେ ବହୁ ପାରିଭାଷିକ ଶବ୍ଦ ସମ୍ଭାର ଏହି କେତେ ଦଶନ୍ଧି ଭିତରେ ସୃଷ୍ଟି ହେଲାଣି ଓ ବିଭିନ୍ନ ଜଟିଳ ବୈଷୟିକ ବିଷୟକୁ ନେଇ କିଛି କିଛି ପୁସ୍ତକ ବି ଓଡ଼ିଆ ଭାଷାରେ ଉପଲବ୍ଧ ହୋଇପାରୁଛି । ଜଟିଳ ବୈଷୟିକ ବିଷୟ ସକଳକୁ ଓଡ଼ିଆରେ ବ୍ୟକ୍ତ କଲାବେଳେ ସ୍ଥଳବିଶେଷରେ କେତେକ କ୍ଷେତ୍ରରେ ଜଟିଳତା ବା ଦୁର୍ବୋଧ୍ୟତା ରହିପାରେ । ତେବେ ଗୋଟିଏ ବିଷୟର ଅବଧାରଣା ନେଇ ସ୍ପଷ୍ଟତା ଥିଲେ ଭାଷା ବିଶେଷ ପ୍ରତିବନ୍ଧକ ହେବା ସମ୍ଭବ ନୁହେଁ । ପୁନଶ୍ଚ ଭାଷା ସମୃଦ୍ଧିର ଅନ୍ୟ ଏକ ବିଶେଷ କ୍ଷେତ୍ର ହେଉଛି ଜ୍ଞାନକୋଷ ବା ଏନସାଇକ୍ଲୋପେଡ଼ିଆ । ଇଂରାଜୀ ଭାଷା ବା ଯେକୌଣସି ସମୃଦ୍ଧ ଭାଷା କ୍ଷେତ୍ରରେ ପ୍ରତ୍ୟେକ ବୌଦ୍ଧିକ ସୋପାନର ଜ୍ଞାନକୋଷ

ମିଳିପାରୁଛି । ଅର୍ଥନୀତି, ଦର୍ଶନ, ଇତିହାସ, ପଦାର୍ଥ ବିଜ୍ଞାନ, ଚିକିତ୍ସା ବିଜ୍ଞାନ ଇତ୍ୟାଦି ପ୍ରତ୍ୟେକ ଉଚ୍ଚତର ଶିକ୍ଷା କ୍ଷେତ୍ରରେ ଜ୍ଞାନକୋଷ ଇଂରାଜୀ ଭାଷାରେ ଉପଲବ୍ଧ । କିନ୍ତୁ ଏ କ୍ଷେତ୍ରରେ ଓଡ଼ିଆ ଭାଷା ଓ ଅଧିକାଂଶ ଭାରତୀୟ ଭାଷା ପଛରେ ଥିବା ମନେହୁଏ । ମୋଟ ଉପରେ ଭାଷାର ସମୃଦ୍ଧି କେବଳ ସୃଜନଶୀଳ ସାହିତ୍ୟ ଯଥା: ଗଳ୍ପ, ଉପନ୍ୟାସ, ନାଟକ, କବିତା ଇତ୍ୟାଦି ଉପରେ ନିର୍ଭର କରେନାହିଁ, ବରଂ ବେଶୀ ନିର୍ଭର କରେ ଜ୍ଞାନ-ବିଜ୍ଞାନର ପ୍ରସାର ଉପରେ ।

ଏହା ସହିତ ବିଶ୍ୱ ଚିନ୍ତା ରାଜ୍ୟର ଯେଉଁସବୁ କୃତିମାନଙ୍କର ସର୍ବକାଳୀନ ମହତ୍ତ୍ୱ ରହିଛି ସେହି କୃତିମାନଙ୍କୁ ଯଦି ଗୋଟିଏ ଭାଷାରେ ସାବଲୀଳ ଭାବେ ଅନୁବାଦ କରାଯାଏ, ତେବେ ତାହା ବି ଭାଷାକୁ ସମୃଦ୍ଧ କରିବା କ୍ଷେତ୍ରରେ ସହାୟକ ହୋଇଥାଏ । ପ୍ରାଚୀନ ଭାରତୀୟ ଗ୍ରନ୍ଥ ବେଦ, ଉପନିଷଦ, ପଞ୍ଚତନ୍ତ୍ର, ରାମାୟଣ, ମହାଭାରତ ସମ୍ଭବତଃ ବହୁ ଭାଷାରେ ଅନୁବାଦିତ ହୋଇପାରିଛି । ସେହିପରି ଯେଉଁ ଦେଶରେ ଯେଉଁ ମହାନ୍ କୃତି ସକଳ ରହିଛି ଓ ଯାହା ମଣିଷ ସଭ୍ୟତାକୁ ବହୁ ପ୍ରେରଣାଦାୟକ ଦିଗ୍‌ଦର୍ଶନ ଦେଇଛି ସେ ସବୁକୁ ଅନୁବାଦ କରି ସାଧାରଣ ପାଠକ ସ୍ତରକୁ ଆଣିପାରିଲେ ତାହା ବି ଭାଷାର ସମୃଦ୍ଧି ଦିଗରେ ସହାୟକ ହେବ ।

ଆଜିର ପରିବର୍ତ୍ତିତ ପରିସ୍ଥିତିରେ ଆଧୁନିକ ପ୍ରଯୁକ୍ତିର ବିକାଶ, ଗଣମାଧ୍ୟମର ବ୍ୟାପକ ପ୍ରସାର ଓ ଗତିଶୀଳତା ଯୋଗୁ ପ୍ରତ୍ୟେକ ବ୍ୟକ୍ତି ନିଜ ମାତୃଭାଷା ଭିତରେ ସୀମିତ ରହୁନାହିଁ । ଜଣେ ମାଟ୍ରିକ୍ ପଢିଥିବା ଛାତ୍ରୀ ବା ଛାତ୍ର ବି ଦୁଇ ତିନୋଟି ଭାଷାରେ ଭାବ ପ୍ରକାଶ କରିବାକୁ ସମର୍ଥ ହୋଇପାରୁଛି । ମାତୃଭାଷା ନେଇ ଯେଉଁ ଭାବପ୍ରବଣତା ରହିଥିଲା, ତାହା ପରିବର୍ତ୍ତିତ ପରିସ୍ଥିତିରେ ବଦଳି ଯିବାରେ ଲାଗିଛି । ଆନ୍ତର୍ଜାତିକ ମନୋଭାବଜନିତ ଏକ ନୂତନ ବୌଦ୍ଧିକ- ସଂସ୍କୃତି ଆସ୍ତେ ଆସ୍ତେ ଚିନ୍ତା ରାଜ୍ୟକୁ ପ୍ରବେଶ କରୁଛି । ଭାଷାଜନିତ କଟ୍ଟର ଜାତୀୟତା ବା ଦେଶାତ୍ମବୋଧ ଆସ୍ତେ ଆସ୍ତେ ଦୂର ହେବାରେ ଲାଗିଛି ।

ଭାଷାଗତ ସୃଜନଶୀଳତା ବ୍ୟକ୍ତିର ଏକ ସହଜାତ ସାମର୍ଥ୍ୟ । ଜଣେ ବ୍ୟକ୍ତି ଉଦ୍ୟମ କଲେ ଯେକୌଣସି ଭାଷାକୁ ଆୟତ୍ତ କରିପାରେ । ଜଣେ ସାଧାରଣ ବ୍ୟକ୍ତି କର୍ମସଂସ୍ଥାନ ଖୋଜିବାକୁ ଯାଇ ଯେଉଁ ଅଞ୍ଚଳରେ ଜୀବିକା ନିର୍ବାହ କରୁଛି, ସେ ଅଞ୍ଚଳର ଭାଷା ବି କିଛିଦିନ ପରେ କହିପାରୁଛି ବା ବୁଝିପାରୁଛି । ସାମାଜିକ ଗତିଶୀଳତା ଯେତିକି ବୃଦ୍ଧି ପାଉଛି, ଭାଷାଜନିତ ଜାତୀୟତା ଭାବ ସେତିକି କମିଆସୁଛି । ଭାଷା ସହିତ ପରମ୍ପରା, ସଂସ୍କୃତିର ଯେଉଁ ସମ୍ପର୍କ ଥିବା କୁହାଯାଏ, ତାହା ବି ପରିବର୍ତ୍ତିତ

ପରିସ୍ଥିତିରେ ବଦଳିବାରେ ଲାଗିଛି । ଯେଉଁ ପରମ୍ପରା ଦିନେ ଆଞ୍ଚଳିକ ହୋଇ ରହିଥିଲା, ତାହାର ପ୍ରଭାବ ବିସ୍ତାରିତ ହୋଇଚାଲିଛି । ଉପସଂହାରରେ, ଗୋଟିଏ ଭାଷା ପାଇଁ ଅନ୍ୟ ଭାଷା ସଙ୍କଟ ସୃଷ୍ଟି କରେନାହିଁ ବରଂ ବିଭିନ୍ନ ସ୍ତରରୁ ଶବ୍ଦ ସଂଗ୍ରହ କଲେ ଗୋଟିଏ ଭାଷା ସମୃଦ୍ଧ ହୁଏ । ଭାଷା ଅନ୍ତର୍ନିହିତ ଦୁର୍ବଳତା ଯୋଗୁ ସଙ୍କଟର ସମ୍ମୁଖୀନ ହୋଇଥାଏ । ମୋଟ ଉପରେ ଗୋଟିଏ ଭାଷା ନିଜେ ସମୃଦ୍ଧ ନ ହେଲେ, ଜ୍ଞାନବିଜ୍ଞାନ ଆହରଣରେ ସହାୟକ ନ ହେଲେ ଓ ଜନଗଣଙ୍କୁ ସ୍ୱାବଲମ୍ବୀ ହୋଇ ବଞ୍ଚିବାରେ ସହାୟକ ନହେଲେ ଭାଷା ପ୍ରତି ସଙ୍କଟ ଅବଶ୍ୟମ୍ଭାବୀ ମନେହୁଏ । (୭.୯.୧୧)



# ସହସ୍ର କୋଶର ଯାତ୍ରା

ସାମାଜିକ ଜୀବନ ସମୃଦ୍ଧ ଓ ଗୁଣାତ୍ମକ ହେବା ପଛାତରେ ନାନାବିଧ ପରିସ୍ଥିତିର ସମ୍ମିଳିତ ପ୍ରଭାବ ରହିଥିଲେ ମଧ କେତେକ ଶୃଙ୍ଖଳା ଓ ନୈତିକ ବିଚାରବୋଧ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଅନୁଭୂତିରୁ ଏହା ସ୍ପଷ୍ଟ ଯେ ଗୁଣାତ୍ମକ ଜୀବନର ପରିସ୍ଥିତି ଅନେକାଂଶରେ ଜନଜୀବନର ଶୃଙ୍ଖଳା ଓ ନୀତିବୋଧ ଉପରେ ନିର୍ଭର କରେ । ଯେଉଁଠି ସାମାଜିକ ଜୀବନ ପ୍ରବାହରେ ନାଗରିକ ଶୃଙ୍ଖଳା, ଉନ୍ନତ କର୍ମସଂସ୍କୃତି, ଶିଷ୍ଟାଚାର ଓ ସଦାଚାର ପ୍ରଭୃତି ନୈତିକ ମୂଲ୍ୟବୋଧର ଦୃଢ଼ ଭିତ୍ତି ଥାଏ, ସେଠି ଜନଜୀବନର ଗୁଣାତ୍ମକମାନ ନିଶ୍ଚୟ ଉନ୍ନତ ମନେହୁଏ । ଅବଶ୍ୟ ପ୍ରତ୍ୟେକ ସମାଜ ବା ରାଷ୍ଟ୍ରରେ କେତେକ ସ୍ତରରେ କିଛି ବିଶୃଙ୍ଖଳା, ଅନ୍ୟାୟ ରହିପାରେ । ତେବେ ତାହା ବ୍ୟତିକ୍ରମ ଓ ତାହା ପ୍ରତି ସାମାଜିକ କଟାକ୍ଷ ପ୍ରକାଶ ପାଇଥାଏ । ଅପରପକ୍ଷରେ ଯେତେବେଳେ ସାମାଜିକ ଜୀବନ ପ୍ରବାହରେ ଦୁର୍ନୀତି ବ୍ୟାପକ ହୁଏ, କୌଣସି ସ୍ତରରେ ନୀତି, ଶୃଙ୍ଖଳା, କର୍ତ୍ତବ୍ୟ ଜ୍ଞାନ ପ୍ରତି ସମ୍ମାନ ରହେନାହିଁ ସେତେବେଳେ ଜନଜୀବନରେ ଅବକ୍ଷୟର ପରିବେଶ ଆସିଥାଏ । ଯଦି ବିଶୃଙ୍ଖଳା ଓ କର୍ତ୍ତବ୍ୟବୋଧ ନେଇ ସାମାଜିକ ଚେତନାର ସ୍ତର ଦ୍ରୁତଭାବରେ ହ୍ରାସ ହୁଏ ଓ ଅନ୍ୟାୟ, ଅନୀତି ବ୍ୟତିକ୍ରମ ନ ହୋଇ ସମାଜର ଧାରାରେ ପରିଣତ ହୋଇଯାଏ, ତେବେ ତାହା ସମାଜରେ ବିଶୃଙ୍ଖଳାର ପରିବେଶ ଆଣିଥାଏ । ଏହା ସମାଜରେ ଯେଉଁ ଅବକ୍ଷୟ ଆଣେ, ତାହା ନାନା ଭାବରେ ଜନଜୀବନରେ ପ୍ରତିଫଳିତ ହୋଇଥାଏ । ଏକ ଅବକ୍ଷୟପୂର୍ଣ୍ଣ ସାମାଜିକ ପରିବେଶରେ ଦାରିଦ୍ର୍ୟ ଓ ଭେଦଭାବ ବଢ଼ିଚାଲେ । ସମାଜରେ ନାନା କୁସଂସ୍କାର ବୃଦ୍ଧିପାଏ । ନାଗରିକ ଶୃଙ୍ଖଳାବୋଧ ଦ୍ରୁତ ଭାବରେ ହ୍ରାସପାଏ । ମାନବିକ ଅଧିକାରର ଉଲ୍ଲଘଂନ ସାଧାରଣ ଘଟଣା ହୋଇପଡ଼େ । ସନ୍ତ୍ରାସବାଦ, ହିଂସା, ପ୍ରତିହିଂସାର ମନୋଭାବ ବ୍ୟାପକ ହୁଏ । ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାରେ ସାଧୁତା ଓ କର୍ମସଂସ୍କୃତି ହ୍ରାସପାଏ । ଯେକୌଣସି ପନ୍ଥା ପ୍ରୟୋଗ କରି ନିଜର ଈପସିତ ଲକ୍ଷ୍ୟ ହାସଲ କରିବାର ମନୋଭାବ ସମାଜରେ ବ୍ୟାପକ ହୁଏ । ପନ୍ଥାର ପବିତ୍ରତା ନେଇ ଲୋକମାନେ ସ୍ପର୍ଶକାତରହୀନ ହୋଇ ପଡ଼ନ୍ତି । ଏହି ସବୁ ପ୍ରତିଫଳନ ସାମାଜିକ ଅବକ୍ଷୟ ଓ କ୍ଷୟଶୀଳ ପରିବେଶରୁ ଆସିଥାଏ । ପରିଣାମ ସ୍ୱରୂପ ଅନ୍ୟାୟ, ଅନୈତିକତା ଓ ଦୁର୍ନୀତି ଜୀବନଧାରାର ଅଙ୍ଗ ହୋଇଯାଏ ।

ସାମାଜିକ ଜୀବନ-ପ୍ରବାହ ଯେଉଁ ସବୁ କାରଣ ନେଇ ଅବକ୍ଷୟର ସ୍ଥିତି ଆଡ଼କୁ ଯାଏ, ତାହା ବି ବେଶ୍ ଜଟିଳ ମନେହୁଏ । ନାନା କାରଣନେଇ ସାମାଜିକ ଅସ୍ଥିରତା ଆସିଥାଏ । ଏହି ଅସ୍ଥିରତା ବା ଅବକ୍ଷୟ ହଠାତ୍ ସୃଷ୍ଟି ହୋଇଯାଏ ନାହିଁ । ଅନ୍ତତଃ ସାମ୍ପ୍ରତିକ ସ୍ଥିତିରେ ଏକ ସୁଦୃଢ଼ ରାଜନୈତିକ ବ୍ୟବସ୍ଥାରେ ଏହା ଏକ ପ୍ରକ୍ରିୟା ଦେଇ ଆସିଥାଏ । ଅତୀତରେ ରାଜତନ୍ତ୍ର ଯୁଗରେ ଯୁଦ୍ଧ, ପରାଜୟ, ପ୍ରାକୃତିକ ଦୁର୍ବିପାକ ଜନିତ କାରଣ ଯୋଗୁ ସମାଜରେ ଭୟଙ୍କର ପରିବେଶ ହଠାତ୍ ଆସିବାର ବହୁ ଦୃଷ୍ଟାନ୍ତ ରହିଛି । ତେବେ କାଳକ୍ରମେ ରାଜନୈତିକ ବ୍ୟବସ୍ଥା ସୁଦୃଢ଼ ହେବା, ଗମନାଗମନର ଦ୍ରୁତ ଅଭିବୃଦ୍ଧି ଘଟିବା, ଗଣମାଧ୍ୟମରେ ବୈପ୍ଳବିକ ପରିବର୍ତ୍ତନ ଆସିବା ପରି ପରିବେଶ ଯୋଗୁ ସାମାଜିକ ଅବକ୍ଷୟ ଏକ ଆକସ୍ମିକ ଘଟଣାରୁ ସୃଷ୍ଟି ହୋଇଯାଏ ନାହିଁ । ବରଂ ବିଭିନ୍ନ ଘଟଣାର ଓ ପରିସ୍ଥିତିର ସମ୍ମିଳିତ ପ୍ରଭାବରୁ ଏହା ଏକ ପ୍ରକ୍ରିୟା ଦେଇ ଆସିଥାଏ । ଏଠାରେ ସାମାଜିକ କ୍ଷୟଶୀଳତା ପଶ୍ଚାତର ନାନା କାରଣ ଭିତରୁ କେତେକ ପରିବେଶକୁ ସୂଚନା ଦିଆଯାଇପାରେ । ସାମାଜିକ ଅବକ୍ଷୟ ଶିକ୍ଷା ବ୍ୟବସ୍ଥାର ଅବକ୍ଷୟ ଭିତରୁ ଆସିଥାଏ । ଶିକ୍ଷାର ଗୁଣାତ୍ମକ ମାନ ଯେତେ ନ୍ୟୁନ ହୋଇଚାଲେ, ତାହାର ଏକ ସୁଦୂରପ୍ରସାରୀ ପ୍ରଭାବ ଜନଜୀବନରେ ପଡ଼ିଥାଏ । ଯଦିଓ ଶିକ୍ଷାରୁ ସମସ୍ତ ମହତ୍ତର ପ୍ରେରଣା କମିଯାଏ, ଜୀବନର ଗୁଣାତ୍ମକ ମୂଲ୍ୟ ବଦଳରେ ଏକ ଭୋଗବାଦୀ ଜୀବନ ପାଇଁ ପ୍ରେରଣା ଆସେ, ଅର୍ଥ ଉପାର୍ଜନ ହିଁ ଶିକ୍ଷାର ଏକମାତ୍ର ଅଭିମୁଖ୍ୟ ହୋଇପଡ଼େ ଓ ସମାଜର ବୁଦ୍ଧିମାନ ଛାତ୍ରଛାତ୍ରୀମାନେ ଶିକ୍ଷକତାକୁ ଏକ ସମ୍ମାନଜନକ ବୃତ୍ତି ବୋଲି ଭାବିପାରନ୍ତି ନାହିଁ ତେବେ ଶିକ୍ଷାସ୍ତରରେ ଅବକ୍ଷୟ ଆସିଥାଏ । ଶିକ୍ଷା ବ୍ୟବସ୍ଥା ଯେତିକି କ୍ଷୟଶୀଳ ହୋଇଚାଲେ ତାହାର ସୁଦୂରପ୍ରସାରୀ ପ୍ରଭାବ ଜନଜୀବନକୁ ଅବକ୍ଷୟ ଭିତରକୁ ନେଇଚାଲେ । ସାମାଜିକ ପରିବେଶରେ ଯଦିଓ ସାଧୁତା, ଆଦର୍ଶବୋଧ ପ୍ରତି ସ୍ୱୀକୃତି ନରହେ ଓ ନିଷ୍ଠାପର ବ୍ୟକ୍ତିମାନେ ପ୍ରତ୍ୟେକ ସ୍ତରରେ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୁଅନ୍ତି, ତେବେ ଜନମାନସରେ ନୈତିକତା ପ୍ରତି ଉଦାସୀନତା ପ୍ରକାଶ ପାଏ । ଯଦି ଅସାଧୁ ଉପାୟରେ ଯାଇ ପ୍ରତିଷ୍ଠା ଲାଭ କରିବା ସହଜ ହୁଏ ଓ ସାଧୁତା ପାଇଁ ମୂଲ୍ୟ ଦେବାକୁ ହୁଏ ଓ ଏହା ଜନଜୀବନର ଧାରାପାଲଟି ଯାଏ, ତେବେ ସମାଜର ପରିବେଶ ଅବକ୍ଷୟ ହୋଇଚାଲେ । ଚଳଚ୍ଚିତ୍ର, ଗଣମାଧ୍ୟମ, ସମ୍ବାଦପତ୍ର ଇତ୍ୟାଦିର ଜନଜୀବନ ଉପରେ ଏବେ ଗଭୀର ପ୍ରଭାବ ରହିବା ପରିଲକ୍ଷିତ ହୁଏ । ଯଦି ଏସବୁରେ ସକାରାତ୍ମକ ଓ ସୃଜନଶୀଳ ବିଚାରକୁ ପ୍ରାଧାନ୍ୟ ଦେବା ପରିବର୍ତ୍ତେ ଏକ ବ୍ୟାବସାୟିକ ଦୃଷ୍ଟିରେ ସବୁ କଥାକୁ ବିଚାର କରାଯାଏ, ତେବେ ତାହାର କୁପ୍ରଭାବ ଜନଜୀବନକୁ ଆକ୍ରାନ୍ତ କରିଚାଲେ । ଯୁଗର ଚାହିଦା ବା ନିଜର ସ୍ୱାର୍ଥକୁ ପ୍ରାଧାନ୍ୟ

ଦେଇ କୁସଂସ୍କାର, ଅଶ୍ଳୀଳତା ଓ ନକାରାତ୍ମକ ବିଷୟକୁ ପ୍ରସାର କରିବାଦ୍ୱାରା ତାହା ହୁଏତ ସାମୟିକ ଭାବରେ ସେମାନଙ୍କ ପାଇଁ କିଛି ସଫଳତା ଆଣିପାରେ, କିନ୍ତୁ ଜନଜୀବନ ଉପରେ ତାହାର ଯେଉଁ କୁପ୍ରଭାବ ରହେ ତାହା ସମାଜକୁ କ୍ଷୟଶୀଳ କରିବାରେ ସହାୟକ ହୋଇଥାଏ । ସେହିପରି ଦେଶର ରାଜନୈତିକ ଚରିତ୍ର କଳୁଷିତ ହୋଇ ଯେକୌଣସି ପନ୍ଥାରେ କ୍ଷମତାଲାଭକୁ ଯଦି ଏକମାତ୍ର ଲକ୍ଷ୍ୟଭାବେ ନିଆଯାଏ, ତେବେ ତାହାର କୁପରିଣାମ ଜନଜୀବନକୁ ଆକ୍ରାନ୍ତ କରିଥାଏ । ଯଦି କ୍ଷମତା ଲାଭ ପାଇଁ ଜାତି, ଧର୍ମ ଇତ୍ୟାଦି ଆବେଗପୂର୍ଣ୍ଣ ବିଷୟକୁ ଆଧାର କରି ସମାଜକୁ ଭାଗ କରାଯାଏ, ଗୋଷ୍ଠୀ ଗୋଷ୍ଠୀ ଭିତରେ ଭ୍ରାତୃତ୍ୱଭାବକୁ ନଷ୍ଟ କରି ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷର ମନୋଭାବ ସୃଷ୍ଟି କରାଯାଏ, ତେବେ ସାମାଜିକ କ୍ଷୟଶୀଳତା ଦ୍ରୁତତର ହୋଇଚାଲେ । ଧର୍ମରୁ ସମସ୍ତ ମାନବିକ ସୌହାର୍ଦ୍ଦ୍ୟ, ପ୍ରେମଭାବ, ଉଦାରତା ଓ ସଂପ୍ରୀତିର ପ୍ରେରଣା ନ ଆସି ଯଦି ମୌଳବାଦ, ସାମ୍ପ୍ରଦାୟିକତା ଓ ବିଦ୍ୱେଷର ପ୍ରେରଣା ଆସେ ତେବେ ଜନଜୀବନକୁ ବହୁ ମୂଲ୍ୟ ଦେବାକୁ ହୁଏ । ପୁନଶ୍ଚ ଦେଶର ଅର୍ଥନୈତିକ ବ୍ୟବସ୍ଥା ଯଦି ସମାଜରେ ବୈଷମ୍ୟକୁ ଅଧିକ ଦୃଢ଼ କରିବା ସହ କେତେକଙ୍କୁ ନିର୍ଦ୍ଧନ କରିଚାଲେ ତାହା ବି ସାମାଜିକ ଅବକ୍ଷୟ ଦିଗରେ ସହାୟକ ହୋଇଥାଏ । ଜନମଙ୍ଗଳକାରୀ ଆଭିମୁଖ୍ୟ ଠାରୁ ରାଷ୍ଟ୍ର ଯଦି ଦୂରେଇଯାଏ, ତେବେ ତା'ର କୁପରିଣାମ ସମାଜକୁ ଭୋଗିବାକୁ ହୁଏ । ଏହିପରି ନାନା କାରଣ ଜନିତ ପରିବେଶରୁ ସାମାଜିକ ଅବକ୍ଷୟ ଆସେ, ସାମାଜିକ ଜୀବନରେ ଅବକ୍ଷୟ ଲାଗିରହିଲେ ତାହା ବି ବିଭିନ୍ନ ବିଶୃଙ୍ଖଳା ମଧ୍ୟ ଦେଇ ରୂପାୟିତ ହୋଇଚାଲେ । ସମାଜରେ ନୈତିକ ଅବକ୍ଷୟ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ, ଶୈକ୍ଷିକ ସ୍ତର ଦେଇ ବୃଦ୍ଧି ପାଇଥାଏ ଓ ଏସବୁ କ୍ଷେତ୍ରରେ ଅବକ୍ଷୟ ଅନୈତିକ ଜୀବନ ଦୃଷ୍ଟିକୁ ଋଦ୍ଧିମନ୍ତ କରିଥାଏ ।

ସାମାଜିକ ଅବକ୍ଷୟର ପରିବେଶ ଜନଜୀବନକୁ ନାନା ଭାବରେ ଆକ୍ରାନ୍ତ କରେ । ସମାଜରେ ଦୁଃଖ, ଦୁର୍ଦ୍ଦଶାର ପରିବେଶ ବୃଦ୍ଧିପାଏ । ଏହା ସହିତ ସବୁଠାରୁ ବଡ ଆହ୍ୱାନ ଆସେ ଯେତେବେଳେ ସମାଜର ବ୍ୟକ୍ତି ସକଳ ନିଜର ବୃହତ୍ତର ସମାଜ ଉପରେ ଏକ ଅବିଶ୍ୱାସର ମନୋଭାବ ପୋଷଣ କରନ୍ତି । ଯେତେବେଳେ ସମାଜ ଉପରେ ଅବିଶ୍ୱାସର ମନୋଭାବ ବହୁଲୋକ ପୋଷଣ କରନ୍ତି ସେମାନେ ନୀତି ଓ ନୈତିକତାକୁ କୌଣସି ମହତ୍ତ୍ୱ ଦିଅନ୍ତି ନାହିଁ । ଜନମାନସରେ ଏକ ନୈରାଶ୍ୟର ମନୋଭାବ ଆସେ । ବିଶେଷକରି ସମାଜର ସଚେତନ ବର୍ଗର ଲୋକମାନେ ଯେଉଁମାନେ ତଥାପି କିଛି ଆଦର୍ଶବୋଧରେ ବିଶ୍ୱାସ କରନ୍ତି ଓ ନାଗରିକ ଶୃଙ୍ଖଳାବୋଧକୁ ସମ୍ମାନ କରନ୍ତି ସେମାନେ ସାମାଜିକ ପରିସ୍ଥିତିରେ ଏକ ଅସ୍ୱସ୍ତିକର

ଅନୁଭବ ଭିତରେ ବ୍ୟଥିତ ହୁଅନ୍ତି । ତେବେ ସେମାନେ ଯାହା କିଛି ପ୍ରତିକ୍ରିୟା ପ୍ରକାଶ କଲେ ମଧ୍ୟ ତାହା ଯେହେତୁ ସାମାଜିକ ସ୍ଥିତିରେ କିଛି ପରିବର୍ତ୍ତନ ସୃଷ୍ଟି କରିପାରେ ନାହିଁ, ସେମାନେ ଅସ୍ୱସ୍ତିକର ସ୍ଥିତି ଭିତରେ ନୈରାଶ୍ୟବାଦକୁ ଧରିନିଅନ୍ତି । ନିଜର ସମସ୍ତ ମହତ୍ତର ଆଭିମୁଖ୍ୟ ସତ୍ତ୍ୱେ ଯେହେତୁ ସାମାଜିକ ସ୍ଥିତି ଅପରିବର୍ତ୍ତିତ ହୋଇ ରହୁଛି ତେଣୁ ସେମାନେ ସବୁଥିରୁ ନିଜକୁ ଅପସାରିତ କରି ନିଜ ଭିତରେ ରହନ୍ତି ଓ ନିଜର ସ୍ୱାର୍ଥ ଭିତରେ ଆବଦ୍ଧ ରହିଯାନ୍ତି । ସେମାନଙ୍କର ସଚେତନ ଦୃଷ୍ଟି ଓ ସମାଜ ସମ୍ପୃକ୍ତି ମାନସିକତା ନୈରାଶ୍ୟ ଭିତରେ ଓ ପରିସ୍ଥିତି ଭିତରେ ପରିବର୍ତ୍ତିତ ହୋଇଯାଏ । ଅନ୍ୟ କେତେକ ବ୍ୟକ୍ତି ବୃହତ୍ତର ସମାଜ ଉପରେ ଆସ୍ଥା ହରାଇଲେ ବା ସାମାଜିକ ବ୍ୟବସ୍ଥାରେ ଅସହାୟବୋଧ ଅନୁଭବ କଲେ ସେମାନେ ହିଂସାତ୍ମକ ହୋଇ ଉଠନ୍ତି । ଯଦି ସେପରି କୌଣସି ସଂଗଠନ ଜନିତ ପରିବେଶ ପାଆନ୍ତି ତେବେ ସେମାନେ ପ୍ରତିହିଂସା ନେବାକୁ ହିଂସାତ୍ମକ ସଂଗଠନକୁ ଆଦରି ନିଅନ୍ତି । ନିଜ ଭିତରୁ ସମସ୍ତ ସୂକ୍ଷ୍ମ ଆବେଗ ଗୁଡ଼ିକ ଜୀବନର ବାସ୍ତବତା ଭିତରେ ନଷ୍ଟ ହୋଇଯାଏ । ହିଂସା, ପ୍ରତିହିଂସା, ହତ୍ୟାକୁ ସେମାନେ ଜୀବନର ଅଙ୍ଗ କରିଦିଅନ୍ତି ଓ ଏଥିପାଇଁ ଯେତେ ତ୍ୟାଗ ଆବଶ୍ୟକ ହେଲେ ବି ସେମାନେ ସହ୍ୟ କରନ୍ତି । ମଣିଷ ଭିତରେ ଦେବତ୍ୱ ଯେପରି ରହିଛି, ସେହିପରି ପଶୁତ୍ୱ ମଧ୍ୟ ରହିଛି । ଯେଉଁଠି ପ୍ରତିହିଂସାର ମନୋଭାବ ଉତ୍କଟ ହୋଇଉଠେ ସେଠାରେ ଦେବତ୍ୱ ଭାବନା ଅବଦମିତ ହୋଇଯାଏ । ସୁଯୋଗ ପାଇଲେ ମଣିଷ ନିଜ କ୍ରୋଧ ଓ ପ୍ରତିଶୋଧ ଆବେଗରେ ହିଂସାରେ ବ୍ରତୀ ହୁଏ । ସେହିପରି ସମାଜ ଉପରେ ଅବିଶ୍ୱାସର ମାନସିକତାରୁ ସମାଜର ସାଧାରଣ ଲୋକମାନେ ଧାର୍ମିକ କୁସଂସ୍କାରରେ ବ୍ରତୀ ହୁଅନ୍ତି । କିଏ ବି.ଏ., ଏମ.ଏ. ପାଠ ପଢ଼ି କର୍ମସଂସ୍ଥାନ ପାଇଲା ନାହିଁ, କାହାର ବାପା ଆର୍ଥିକ ପ୍ରତିକୂଳ ପରିସ୍ଥିତି ଯୋଗୁଁ ଚିକିତ୍ସାର ସୁବିଧା ପାଉନାହିଁ, କାହାର ଭଉଣୀଟି ଯଉତୁକ ଦେଇ ନ ପାରିବା ଯୋଗୁଁ ବିବାହ କରି ପାରୁନାହିଁ ବା ବିବାହ ପରେ ଅତ୍ୟାଚରିତ ହେଉଛି, ନିଷ୍ଠାପର ଭାବରେ ଚାଷରେ ଲାଗି ବି ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ କରି ହେଉନାହିଁ- ଏହି ସବୁ ସାମାଜିକ ବାସ୍ତବତା ଭିତରେ ସାଧାରଣ ମଣିଷଟି କଳ୍ପିତ ଦିଅଁ, ଦେବତାର ଶରଣନିଏ । କେଉଁଠି ପାଣି ଢାଳିଲେ, କାହାର ପାଦ ଦର୍ଶନ କଲେ, କେଉଁଠିକି ନଡ଼ିଆ ପଠାଇଲେ, କାହାର ଦଉଡ଼ିଟି ଛୁଇଁ ଦେଲେ, କେଉଁଠି ଦିଅଙ୍କର ବିବାହ ଦେଖିଲେ କାଳେ ମୋର ଦୁଃଖର କଥା 'ଠାକୁର' କାନରେ ପଡ଼ିବ, ସେଥିପାଇଁ ସିଏ ଏସବୁରେ ବିଶ୍ୱାସ କରି ନେଉଛି । ଆଉ କିଛି ଲୋକ ତ ସମାଜରେ ରହିଛନ୍ତି ଯେଉଁମାନେ ନିଜର ସ୍ୱାର୍ଥପାଇଁ ବେଶ୍ ଚତୁରତାର ସହ ଏହିସବୁ ଭାବନାକୁ ପ୍ରସାର କରୁଛନ୍ତି । ଏହା ସହିତ ଏହା ହିଁ ଆମର ପରମ୍ପରା, ସଂସ୍କୃତି, ଐତିହ୍ୟ କହି ସେମାନେ ବେଶ୍ ଗର୍ବ ଅନୁଭବ କରନ୍ତି ।

ସାମାଜିକ ପରିବେଶରେ ଅତିଷ୍ଠ ମଣିଷମାନେ ନିଜକୁ ସବୁଥିରୁ ଦୂରେଇ ନେଇ ନିଜର ସଂସାର ଭିତରେ ଆବଦ୍ଧ ରହିଲେ, ହିଂସାତ୍ମକ ପନ୍ଥା ବାଛିଲେ ବା ଦିଅଁ ଦେବତା ପାଖରେ ଶରଣ ପଶିଲେ ସମାଜରେ ପରିବର୍ତ୍ତନ ଆସିବ ନାହିଁ । ଏସବୁ ଯେ ସମାଜ ପ୍ରତି ଅବିଶ୍ୱାସ ଜନିତ ମାନସିକତାରୁ ଉଦ୍ଭବ ଏହା ହିଁ ମନେହୁଏ । ଏହି ସ୍ଥିତିରେ ପରିବର୍ତ୍ତନ ଆଣିବା ପାଇଁ ନିଷ୍ଠାପର ଉଦ୍ୟମର ଆବଶ୍ୟକତା ରହିଛି । ପ୍ରଥମେ ଭାବିବା ଆବଶ୍ୟକ ଯେ କେଉଁ କଳ୍ପିତ ଦିଅଁ ଦେବତା ସମାଜକୁ ଆଗକୁ କେବେ ନେବେ ନାହିଁ ବା ଆମ ପାଇଁ ସମୃଦ୍ଧି ଆଣିଦେବେ ନାହିଁ । ଯେଉଁ ଜାତି ବା ରାଷ୍ଟ୍ର ସମୃଦ୍ଧ ହୋଇଛି ସେମାନେ ଦିଅଁ ଦେବତାର ଆଶୀର୍ବାଦରୁ ହୋଇନାହାନ୍ତି । ସାମାଜିକ ଜୀବନରେ ହିଂସା, ପ୍ରତିହିଂସାର ପରିବେଶ ସାମାଜିକ ଅସ୍ଥିରତାକୁ ବୃଦ୍ଧି କରିବ ଓ ଅଧିକ ଦୁଃଖର ପରିବେଶ ସୃଷ୍ଟି କରିବ । ହତାଶା ଓ ନିରାଶାବୋଧ ଭିତରେ ନିଜକୁ ସବୁଥିରୁ ଦୂରେଇ ନେଲେ ସମାଜର କୌଣସି ମଙ୍ଗଳ ସାଧନ ହେବ ନାହିଁ । ନିଜର ପରିବେଶ ଭିତରେ ପ୍ରତ୍ୟେକ ବ୍ୟକ୍ତି, ଯିଏ କିଛିଟା ସଚେତନ ଭାବେ ପରିସ୍ଥିତିକୁ ବୁଝି ପାରୁଛି ସେ କଣ କରିପାରିବ, ତାହା ଚିନ୍ତା କରିବା ଦରକାର । ଯୁଗର ପ୍ରବାହକୁ ହୁଏତ ରୋକି ପାରିବାର ସାମର୍ଥ୍ୟ ମୋର ନାହିଁ, ତଥାପି ମୁଁ ମୋର ପରିବେଶକୁ କିଛି ବଦଳାଇବାକୁ ହାତ ବଢ଼ାଇବି, ମୋପରି ଅସୁସ୍ଥ ଅନୁଭବ କରୁଥିବା ମଣିଷ ସମାଜରେ ଅନେକ ରହିଛନ୍ତି, ସେମାନେ ଯଦି ସମସ୍ତେ ପରିବର୍ତ୍ତନ ପାଇଁ ହାତ ଟିକିଏ ବଢ଼ାଇବେ ହୁଏତ ପରିସ୍ଥିତିରେ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ ହେବ– ଏହାହିଁ ଏକ ସକାରାତ୍ମକ ମାନସିକତା । ପଥ ବହୁ ଦୁର୍ଗମ ଓ ଜଟିଳ ହେଲେ ବି ସହସ୍ର କୋଶର ଯାତ୍ରା ତ ପ୍ରଥମ ପାହୁଣ୍ଡରୁ ଆରମ୍ଭ ହୋଇଥାଏ । (୨୧.୯.୧୧)



# ବିଶ୍ୱଦୃଷ୍ଟି

ଆଧୁନିକ ମଣିଷକୁ ପ୍ରେରଣା ଦେବା ପରି କିଛି ଉପାଦାନ ପ୍ରାଚୀନ ସଂସ୍କୃତି ଓ ସାହିତ୍ୟରେ ରହିଛି । ପ୍ରତ୍ୟେକ ସଭ୍ୟତାର କ୍ରମ ବିକାଶର ଏକ ସୁଦୀର୍ଘ ଧାରା ରହିଛି । ପ୍ରତ୍ୟେକ ଆଧୁନିକ ଜୀବନ ପ୍ରବାହ ବହୁ ପଥ ଅତିକ୍ରମ କରି ସାଂପ୍ରତିକ ସ୍ଥିତିରେ ପହଞ୍ଚିଛି । ବିକାଶ ବା ସମୃଦ୍ଧି କେତୋଟି ବର୍ଷ ଭିତରେ ବା ଗୋଟିଏ ଶତାବ୍ଦୀରେ ସଂଘଟିତ ହୋଇନାହିଁ । ଏହା ପଛରେ ହଜାର ହଜାର ବର୍ଷର ଅବିରତ ପ୍ରୟାସ ରହିଛି । ସଭ୍ୟତା ସତେ ଯେପରି ଶିଡି ପରେ ଶିଡି ଦେଇ ଆଗକୁ ଯାଉଛି । ସଂସ୍କୃତି ମଧ୍ୟ ଏକ ପ୍ରବାହମାନ ଧାରା ଭାବେ ସମୃଦ୍ଧ ହୋଇ ଚାଲିଛି । ସଂସ୍କୃତିର କେତେକ ଆଦର୍ଶ, ନୀତିବୋଧ ଜନଜୀବନକୁ ପ୍ରଭାବିତ କରିଚାଲିଛି ଓ ସମାଜ ପାଇଁ ନୂଆ ନୂଆ ପରିସ୍ଥିତି ଆଣିଛି । ସଭ୍ୟତା ଓ ସଂସ୍କୃତି ଯେତେ ଆଗକୁ ଯାଉଛି ନୂଆ ନୂଆ ସମସ୍ୟା ବି ମୁଣ୍ଡ ଟେକୁଛି । ମଣିଷ ସମାଜ ସହ ସବୁ ସମୟରେ ସଂଶ୍ଳିଷ୍ଟ ହୋଇ ରହିଛି କେତେକ ସଙ୍କଟ । ଅତୀତରେ ଜନସଂଖ୍ୟା ସୀମିତ ରହିଥିଲା । କୁହାଯାଏ ଯେ ଖ୍ରୀଷ୍ଟାବ୍ଦ ଆରମ୍ଭ ସମୟକୁ ଅର୍ଥାତ୍ ଆଜକୁ ଦୁଇ ହଜାର ବର୍ଷ ତଳେ ପୃଥିବୀରେ ମାତ୍ର ୨୦କୋଟି ଲୋକ ରହିଥିଲେ ଓ ହଜାରବର୍ଷ ତଳେ ପୃଥିବୀରେ ମାତ୍ର ୨୭ କୋଟି ଲୋକ ରହିଥିଲେ । ୧୯୦୦ ମସିହା ବେଳକୁ ପୃଥିବୀର ଲୋକ ସଂଖ୍ୟା ୧୬୦କୋଟି ଥିବାବେଳେ ୨୦୦୦ ମସିହା ବେଳକୁ ୬୦୦ କୋଟି ହେବା ଓ ଏବେ ୨୦୧୧ ଜନଗଣନା ଅନୁଯାୟୀ ପୃଥିବୀର ଲୋକସଂଖ୍ୟା ୭୦୦ କୋଟି ହେବା କୁହାଯାଉଛି । ମୋଟ ଉପରେ ବିଂଶ ଶତାବ୍ଦୀ ଆରମ୍ଭ ପୂର୍ବରୁ ଆଧୁନିକ ଚିକିତ୍ସାର ଜ୍ଞାନ ଆସି ନଥିଲା, ଗମନାଗମନ ଅତି ସୀମିତ ଥିଲା । କେଉଁଠି କିଛି ପ୍ରାକୃତିକ ଦୁର୍ବିପାକ ହେଲେ ଲୋକମାନେ ଅସହାୟ ହୋଇ ମରୁଥିଲେ । ମଝିରେ ମଝିରେ ହଇଜା, ବସନ୍ତ ପରି ମହାମାରୀ ଯୋଗୁଁ ଲୋକେ ବହୁ ସଂଖ୍ୟାରେ ମୃତ୍ୟୁ ମୁଖରେ ପଡୁଥିଲେ । ବନ୍ୟା, ମରୁଡ଼ି ହେଲେ ଦୁର୍ଭିକ୍ଷ ପଡୁଥିଲା । କାଳକ୍ରମେ ଚିକିତ୍ସା ବିଜ୍ଞାନର ଅଗ୍ରଗତି ହେଲା, ରୋଗ ନିୟନ୍ତ୍ରଣ କରାଯାଇ ପାରିଲା । ରାସ୍ତା ଘାଟ ନିର୍ମାଣ ଯୋଗୁ ପରିବହନର ପରିବେଶ ଆସିଲା । ରାଜତନ୍ତ୍ର ଓ ସାମନ୍ତବାଦ ବିରୁଦ୍ଧରେ ସାରା ପୃଥିବୀରେ ଜନ ଆନ୍ଦୋଳନ ମୁଣ୍ଡ ଟେକିଲା । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା, ଜନ ମଙ୍ଗଳକାରୀ ରାଷ୍ଟ୍ର

ଭାବନା, ସମାଜବାଦ, ମାନବିକ ଅଧିକାର ମୂଲ୍ୟବୋଧ ଗୁଡ଼ିକ ଧୀରେ ଧୀରେ ବିଶ୍ୱ ଚିନ୍ତାମାନସରେ ଆଲୋଡ଼ନ ଆଣିଲା । ଧାର୍ମିକ ବିଶ୍ୱାସ ଗୁଡ଼ିକ ରକ୍ଷଣଶୀଳ ମାନସିକତାର ପରିଚାୟକ ହେଲା ଓ ଧର୍ମନିରପେକ୍ଷ ଜୀବନଶୈଳୀ ଏକ ସଭ୍ୟ ଦୃଷ୍ଟିଭଙ୍ଗୀ ଭାବେ ଗୃହୀତ ହେବାକୁ ଲାଗିଲା । ଗଣଶିକ୍ଷାର ପରିବେଶ ଗଣତାନ୍ତ୍ରିକ ବ୍ୟବସ୍ଥାଦ୍ୱାରା ଭିତ୍ତି ନେଲା । ଏସବୁ ସଭ୍ୟତାର ବିକାଶ ଦିଗରେ ପଥପ୍ରଦର୍ଶକ ହେଲା । ସମାଜରେ ଲିଙ୍ଗଭେଦ, ଧର୍ମଭେଦ, ଜାତିଭେଦ ନେଇ ଯେଉଁ ଭେଦଭାବମୂଳକ ପରିବେଶ ରହିଥିଲା ତାହା ବିରୁଦ୍ଧରେ ସଚେତନତା ପ୍ରକାଶ ପାଇଲା । ସମାଜବାଦ ସମତାର ବାର୍ତ୍ତା ପ୍ରଚାର କଲା । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା ଓ ଆତ୍ମ ସମ୍ମାନର ପ୍ରଶ୍ନ ଆସିଲା । ଆଇନ ଦୃଷ୍ଟିରେ ସବୁ ମଣିଷ ସମାନ ବୋଲି ରାଷ୍ଟ୍ରୀୟ ବ୍ୟବସ୍ଥାରେ ବିଧାନମାନ ହେଲା । ଗଣତନ୍ତ୍ର, ସମାଜବାଦ, ଧର୍ମନିରପେକ୍ଷତା, ମାନବିକ ମର୍ଯ୍ୟାଦା, ଗଣଶିକ୍ଷା, ସାମାଜିକ ନ୍ୟାୟ ଓ ଆଇନ ଦୃଷ୍ଟିରେ ସମସ୍ତେ ସମାନ ଏହି ମୂଲ୍ୟବୋଧ ଗୁଡ଼ିକ ମାତ୍ର ଗୋଟିଏ ଦୁଇଟି ଶତାବ୍ଦୀ ଭିତରେ ବିଶ୍ୱ ଚିନ୍ତାରାଜ୍ୟରେ ଆଲୋଡ଼ନ ଆଣିଥିବା ମନେହୁଏ ।

ତେବେ ଏହି ପରିବେଶରେ ଚିନ୍ତାରାଜ୍ୟରେ ଆଉ ଏକ ବିପ୍ଳବ ସଂଘଟିତ ହେଲା । ଅନୁଭୂତିରୁ ଓ ଅନୁଶୀଳନରୁ ଏହା ଜଣାଗଲା ଯେ ମଣିଷର ପ୍ରୟାସରେ ହିଁ ସମୃଦ୍ଧି, ବିକାଶ ଓ ଗୁଣାତ୍ମକ ଜୀବନ ସମ୍ଭବ । ଯେଉଁଠି ସମୃଦ୍ଧି ଓ ଜୀବନର ମାନ ଉନ୍ନତ ହୋଇଛି ତାହା ନାନା ପାରିପାର୍ଶ୍ୱିକ ପରିସ୍ଥିତି, ଜ୍ଞାନବିଜ୍ଞାନ, ରାଷ୍ଟ୍ରୀୟ ସଂଗଠନ ଦ୍ୱାରା ଆସିଛି । ମଣିଷର ଉଦ୍ୟମ ଦ୍ୱାରା ପ୍ରକୃତି ଉପରେ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ସମ୍ଭବ ହୋଇଛି । ଯେତେବେଳେ ମଣିଷର ଜ୍ଞାନ, ବିଜ୍ଞାନର ବିଶେଷ କିଛି ପ୍ରଗତି ହୋଇନଥିଲା ଓ ଏକ ଭୟ ଏବଂ ଅସହାୟ ବୋଧର ପରିବେଶ ରହିଥିଲା, ସେତେବେଳେ ମଣିଷ ସବୁକିଛିକୁ ଅଦୃଷ୍ଟର ଖେଳ ବୋଲି ବିଶ୍ୱାସ କରୁଥିଲା । ମଣିଷ ପରିସ୍ଥିତିର କ୍ରୀଡ଼ନକ ବୋଲି ବିଚାର ରହିଥିଲା । ସେ ଅସହାୟ ହୋଇ ପ୍ରାକୃତିକ ଶକ୍ତି ହେଉ ବା କଳ୍ପନାର ଅଦୃଷ୍ଟ ଶକ୍ତି ହେଉ ତାହା ପାଖରେ ନିଜକୁ ସମର୍ପଣ କରି ଦେଉଥିଲା । ବିପଦ ଆପଦ ପାଇଁ ଅସହାୟ ହୋଇ କେତେ ଦିଅଁ ଦେବତାର ଶରଣ ପଶୁଥିଲା । ସାମାଜିକ ଭେଦଭାବକୁ ବିଧିନିର୍ଦ୍ଦିଷ୍ଟ ବୋଲି ମାନି ନେଉଥିଲା । ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରିବାର ଶକ୍ତି ଓ ବୁଦ୍ଧି ବି ନଥିଲା । ସମାଜର ଶାସକ ଓ ପୂଜକ ଗୋଷ୍ଠୀ ସବୁ କ୍ଷେତ୍ରରେ ନିଜର ପ୍ରଭୁତ୍ୱ ବିସ୍ତାର କରି ରଖିଥିଲେ ଓ ସାଧାରଣ ମଣିଷଟି ଅସହାୟ ଭାବେ ଶୋଷିତ ହେଉଥିଲା । ସେ ବେଠି ଖଟୁଥିଲା ଓ ତା'ର ମାନବିକ ଅଧିକାର କିଛି ନଥିଲା । ସଂଭ୍ରାନ୍ତ ଶ୍ରେଣୀ ଓ ଶ୍ରମଜୀବୀ ଶ୍ରେଣୀରେ ସମାଜ ଭାଗ ଭାଗ

ହୋଇ ରହିଥିଲା । ପୁଣି ଆମ ଦେଶରେ ଜାତିବାଦ ଉଗ୍ର ଭାବରେ ରହିଥିଲା, ଜାତି ଜାତି ଭିତରେ ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ସଂପର୍କ ବା ଆଦାନ ପ୍ରଦାନ ଅତି ସୀମିତ ହୋଇ ରହିଥିଲା । ଶୂଦ୍ର, ଅତିଶୂଦ୍ର ବା ଦଳିତବର୍ଗ ଓ ଆଦିବାସୀମାନେ ପାଠ ପଢ଼ିବାର ବା ସମ୍ପତ୍ତିର ଅଧିକାରୀ ହେବାର ଅଧିକାର ନଥିଲା । ସାମାଜିକ ଜୀବନର ମୁଷ୍ଟିମେୟ ଲୋକ କ୍ଷମତାର, ସଂପତ୍ତିର ଓ ଜ୍ଞାନଲାଭର ଅଧିକାରୀ ହୋଇଥିଲେ ।

ଶିଳ୍ପ ବିପ୍ଳବର ଯୁଗ ଆସିବା ପର୍ଯ୍ୟନ୍ତ ସାରା ପୃଥିବୀରେ ଊଣା ଅଧିକ ଏକ ପ୍ରକାର ବ୍ୟବସ୍ଥା ଲାଗି ରହିଥିଲା । ରାଜତନ୍ତ, ଧର୍ମଭିତ୍ତିକ ଶାସନତନ୍ତ୍ର ବା ଥିଓକ୍ରାସି ଓ ସାମନ୍ତବାଦ ସବୁଠାରେ ରହିଥିଲା । ଏ ସବୁ ସଭ୍ୟତାରେ ଥିଲା ଓ ଭାରତବର୍ଷରେ ଏହା ସହ ଜାତିଗତ ଭେଦଭାବ ରହିଥିଲା । ଶିଳ୍ପ ବିପ୍ଳବ ଓ ଆଧୁନିକ ବିଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ବିକାଶ ଯୋଗୁ ସାମ୍ରାଜ୍ୟବାଦ ଯୋଗୁଁ ସଭ୍ୟତା-ସଭ୍ୟତା, ଧର୍ମ-ଧର୍ମ ଓ ବିଭିନ୍ନ ଜନଗୋଷ୍ଠୀ ଭିତରେ ଆଦାନ ପ୍ରଦାନର ପରିବେଶ ଆସିଲା । ପ୍ରତ୍ୟେକ ସଭ୍ୟତାର ଭଲ-ମନ୍ଦର ପ୍ରଭାବ ଅନ୍ୟ ଗୋଷ୍ଠୀ ଉପରେ ପଡ଼ିଲା ଓ ପରସ୍ପର ଭିତରେ ଆଦାନ ପ୍ରଦାନର ଅବକାଶ ସୃଷ୍ଟି ହେଲା । ଏହା ଫଳରେ ଗୋଟିଏ ଦେଶର ସଂସ୍କୃତିର ମହାନ ଆଦର୍ଶ ଗୁଡ଼ିକ ପ୍ରତି ବିଶ୍ୱର ଦୃଷ୍ଟି ଆକର୍ଷିତ ହେଲା । ପ୍ରତ୍ୟେକ ଧର୍ମ, ସଂସ୍କୃତି ଓ ସଭ୍ୟତାମାନଙ୍କର ବୌଦ୍ଧିକ ଆଲୋଚନା ଓ ତୁଳନାତ୍ମକ ବିଶ୍ଳେଷଣ ବିଶ୍ୱବିଦ୍ୟାଳୟ ସ୍ତରରେ ହେଲା । ଏହା ମାତ୍ର ଊନବିଂଶ ଶତାବ୍ଦୀର ଘଟଣା । ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ସହ ବିଶ୍ୱବିଦ୍ୟାଳୟ ସ୍ତରରେ ଏନେଇ ନାନା ଗବେଷଣା ହେଲା । ବିଭିନ୍ନ ଭାଷା କାଳକ୍ରମେ ସମୃଦ୍ଧ ହେଲା ଓ ବିଭିନ୍ନ ଭାଷା ଜାଣିବାର ଅବକାଶ ସୃଷ୍ଟି ହେଲା । ଅତୀତରେ କୌଣସି ଜ୍ଞାନ, ବିଜ୍ଞାନର କିଛି ଅମୂଲ୍ୟ ରତ୍ନ ଥିଲେ ବି ଭାଷାଗତ ଦୂରତା ଯୋଗୁଁ ତାହା ଜାଣିବାର ଅବକାଶ ନଥିଲା । ଏବେ ଆମ ସଂସାରରେ ଚିନ୍ତାରାଜ୍ୟର ଅମୂଲ୍ୟ ଗ୍ରନ୍ଥମାନ ବିଭିନ୍ନ ଭାଷାମାନଙ୍କରେ ଅନୁବାଦିତ ହୋଇ ବିଶ୍ୱବିଖ୍ୟାତ ହେବା ସମ୍ଭବ ହେଲାଣି । ଏକ ଉଦାରବାଦୀ ମାନବିକ ଦୃଷ୍ଟି ଯେ ସାରା ବିଶ୍ୱରେ ବୃଦ୍ଧି ପାଇବାରେ ଲାଗିଛି ତାହା ବେଶ୍ ଅନୁଭୂତ ହେଉଛି ।

ସାରା ବିଶ୍ୱରେ ସମସ୍ୟା ତ ରହିଛି, କେତେକ ସଂକଟ ବି ଘନୀଭୂତ ହେବାରେ ଲାଗିଛି । ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି ଯୋଗୁଁ ନାନା ସମସ୍ୟା, ପରିବେଶ ପ୍ରଦୂଷଣ ଜନିତ ଭୟ, ପୃଥିବୀର ସୀମିତ ପ୍ରାକୃତିକ ସମ୍ବଳର କ୍ଷୟଜନିତ ଭବିଷ୍ୟତ ନେଇ ଆଶଙ୍କା ଇତ୍ୟାଦି ଆଧୁନିକ ଜୀବନ ପ୍ରବାହ କ୍ଷେତ୍ରରେ ନିଶ୍ଚୟ ସଂକଟ ସୃଷ୍ଟି କରି ଚାଲିଛି । ଏହା ସହିତ ରାଷ୍ଟ୍ର ରାଷ୍ଟ୍ର ଭିତରେ ଅବିଶ୍ୱାସର ବାତାବରଣ ଯୋଗୁ ପ୍ରତ୍ୟେକ ରାଷ୍ଟ୍ର ନିଜର ସାମରିକ ଶକ୍ତିକୁ ବୃଦ୍ଧି କରିବାକୁ ପ୍ରୟାସୀ ହେବା ଓ କେତେକ

ଗୋଷ୍ଠୀ ଭିତରେ ଭୟଙ୍କର ବିବାଦର ପରିବେଶ ଯୋଗୁଁ ଉତ୍ତେଜନା ଏବେ ବିଶ୍ୱ ଦୃଶ୍ୟପଟରେ ଦୃଷ୍ଟିଗୋଚର ହୋଇଥାଏ । ଅର୍ଥନୈତିକ ବ୍ୟବସ୍ଥା ସ୍ତରରେ ପୁଞ୍ଜିବାଦ ଓ ସମାଜବାଦ ଭିତରେ ରହିଥିବା ବିଭେଦ ବି ରାଷ୍ଟ୍ରମାନଙ୍କୁ ବିଭାଜିତ କରିଆସିଛି । ଆଦର୍ଶଗତ ପାର୍ଥକ୍ୟକୁ ନେଇ ରାଷ୍ଟ୍ର ରାଷ୍ଟ୍ରମାନଙ୍କ ଭିତରେ ବିଦ୍ୱେଷର ବାତାବରଣ ରହି ଆସିଛି । ଏହା ସହିତ ଜ୍ଞାନ ବିଜ୍ଞାନର ବିକାଶ ହେତୁ ସନ୍ତ୍ରାସବାଦ ନୂଆ ନୂଆ ଢଙ୍ଗରେ ଆତ୍ମ ପ୍ରକାଶ କରୁଛି । ଏପରିକି ରାଷ୍ଟ୍ର ଶକ୍ତିର ସମର୍ଥନରେ ସୀମାପାର ଆତଙ୍କବାଦ ବି ମୁଣ୍ଡ ଟେକିଛି । ଧର୍ମଗତ, ସାଂସ୍କୃତିକ ଓ ରାଜନୈତିକ ଆଦର୍ଶ ଜନିତ ଭିନ୍ନତା ଯୋଗୁ ବିଶ୍ୱ ଦୃଶ୍ୟପଟରେ କେତେକ ଉତ୍ତେଜନାମୂଳକ ପରିବେଶ ରହିଛି । ଏସବୁ ସହିତ ଆର୍ଥିକ ବୈଷମ୍ୟ ଓ ଶୋଷଣ ଆନ୍ତର୍ଜାତିକ ସ୍ତରରେ ଆଧୁନିକ ପ୍ରଯୁକ୍ତି ଆଧାରରେ କରାଯିବା ସମ୍ଭବ ଓ ସହଜ ହୋଇପାରୁଛି । ଶିଳ୍ପୋନ୍ନତ ରାଷ୍ଟ୍ରମାନେ ସେମାନଙ୍କର ଅତ୍ୟାଧୁନିକ ପ୍ରଯୁକ୍ତି ଆଧାରରେ ପୃଥିବୀର ଯେଉଁଠି ଯାହା ପ୍ରାକୃତିକ ସଂପଦ ରହିଛି ତାହାକୁ ଅକ୍ତିଆର କରିବା ପାଇଁ ପ୍ରୟାସ କରୁଛନ୍ତି । ଏସବୁ ସଭ୍ୟତାର ସଂକଟ ବା ଆଧୁନିକ ଜୀବନଧାରାର ନକାରାତ୍ମକ ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅବଶ୍ୟ ବିଭିନ୍ନ ସଭ୍ୟତାରେ କିଛି ମାନବ ଦରଦୀ ମଣିଷ ବିଶ୍ୱ ମାନବିକତାର ଜୟଗାନ କରିଛନ୍ତି । ସମଗ୍ର ବିଶ୍ୱ ଏକ କୁଟୁମ୍ବ-ବସୁଧୈବ କୁଟୁମ୍ବକଂ, ସମସ୍ତେ ସୁଖରେ ରୁହନ୍ତୁ - ସର୍ବେ ଭବନ୍ତୁ ସୁଖୀନ, ଏହି ଜୀବନଦୃଷ୍ଟି ଯେଉଁ ବିଚାରଶୀଳ ଦାର୍ଶନିକଙ୍କ ଚିନ୍ତାରୁ ଦିନେ ପ୍ରକଟ ହୋଇଥିଲା, ତାହା ଆଧୁନିକ ସଭ୍ୟତାକୁ ଆଜି ବି ପ୍ରେରଣା ଯୋଗାଇ ପାରୁଛି । ମୁଁ ପଛେ ନର୍କକୁ ଯାଏ, ଜଗତର ମଙ୍ଗଳ ହେଉ ଏହି ଦୃଷ୍ଟିଭଙ୍ଗୀର ଏକ କାବ୍ୟିକ ଅଭିବ୍ୟକ୍ତି । ଯେଉଁ ବୈଜ୍ଞାନିକ ଇଲେକ୍‌ଟ୍ରିସିଟି ଉଦ୍‌ଭାବନ କରି ରାତିର ଅନ୍ଧକାରକୁ ଦୂର କରିଛନ୍ତି, ଯେଉଁମାନଙ୍କର ଜୀବନ ବ୍ୟାପୀ ସାଧନା ଓ ଗବେଷଣା ଯୋଗୁ ହଇଜା, ବସନ୍ତ, କୁଷ୍ଠ ରୋଗକୁ ନିୟନ୍ତ୍ରଣ କରିବା ସମ୍ଭବ ହୋଇଛି, ଯେଉଁମାନେ ସାରା ବିଶ୍ୱରୁ ସକଳ ଭେଦଭାବକୁ ଦୂର କରି ମାନବିକ ଏକତ୍ୱ ଓ ଶାନ୍ତିର ବାର୍ତ୍ତା ଦେଇଛନ୍ତି ସେମାନେ ହେଉଛନ୍ତି ସଭ୍ୟତାର ପଥପ୍ରଦର୍ଶକ । ସେମାନେ ଜାତି, ଧର୍ମ, ଜାତୀୟତାର ଊର୍ଦ୍ଧ୍ୱରେ ବିଶ୍ୱମାନବ କହିଲେ ଅତ୍ୟୁକ୍ତି ହେବ ନାହିଁ ।
(୨୮.୯.୧୧)



# ଭାରତର ସକ୍ରେଟିସ

ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ ଇତିହାସର ଏକ ଅମ୍ଳାନ ପ୍ରତିଭା । ସତ୍ୟ, ନ୍ୟାୟ ଓ ବିଚାରଶୀଳତା ପ୍ରତି ପ୍ରତିବଦ୍ଧ ବ୍ୟକ୍ତି ଭାବରେ ସେ ବିଶ୍ୱ ଚିନ୍ତାମାନସରେ ସୁପରିଚିତ । ଗ୍ରୀକ୍ ସମାଜର ସାଧାରଣ ମଣିଷ ଭିତରେ ଅନୁସନ୍ଧିତ୍ସୁ ମାନସିକତା ଓ ବିଚାରଶୀଳ ଦୃଷ୍ଟି ସୃଷ୍ଟି କରିବାରେ ସକ୍ରେଟିସ୍ ଜୀବନବ୍ୟାପୀ ପ୍ରୟାସ କରିଛନ୍ତି ଓ ଶେଷରେ ଶହୀଦ ହୋଇଛନ୍ତି । ତେବେ ଭାରତର ସକ୍ରେଟିସ୍ କିଏ ? କେବଳ ଭାରତ ନୁହେଁ, ଦକ୍ଷିଣ ଏସିଆର ସକ୍ରେଟିସ୍ ଭାବେ ଯିଏ ଆନ୍ତର୍ଜାତିକ ସ୍ତରରେ ଖ୍ୟାତ ସେ ହେଉଛନ୍ତି ପେରିୟାର । ପେରିୟାରଙ୍କର ଜନ୍ମ ତାମିଲନାଡୁରେ ଅବସ୍ଥିତ ଏରୋଡ଼୍ ସହରରେ ସେପ୍ଟେମ୍ବର ୧୭, ୧୮୭୯ ମସିହାରେ । ତାଙ୍କର ନାମ ଥିଲା ଏରୋଡ଼୍ ଭେଙ୍କଟ ନାଇକର ରାମସ୍ୱାମୀ, ଯେ ପରେ ପେରିୟାର ନାମରେ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ ହେଲେ । ପେରିୟାର ଏକ ଉପାଧି । ତାମିଲନାଡୁରେ ତାଙ୍କୁ ଅନେକ 'ଥାନ୍ଥାଇ ପେରିୟାର' ବୋଲି ସମ୍ବୋଧିତ କରିଥାନ୍ତି । ତାମିଲ ଭାଷାରେ ଥାନ୍ଥାଇ ଅର୍ଥ ଜନକ ଓ ପେରିୟାର ଅର୍ଥ ମହାନ ।

ପେରିୟାର ଥିଲେ ଜଣେ ସାଲିସବିହୀନ ସଂସ୍କାରକ ଓ ସାମାଜିକ କ୍ରାନ୍ତିର ବାର୍ତ୍ତାବହ । ଆଧୁନିକ ତାମିଲନାଡୁର ଜନକ ବୋଲି ତାଙ୍କୁ ଗ୍ରହଣ କରାଯାଏ । ପେରିୟାରଙ୍କର କୌଣସି ଔପଚାରିକ ଶିକ୍ଷା ନଥିଲା । ମାତ୍ର ୫ ବର୍ଷ ବିଦ୍ୟାଳୟରେ ପଢ଼ି ୧୨ ବର୍ଷ ବୟସରେ ସେ ପିତାଙ୍କ ବ୍ୟବସାୟରେ ସମ୍ପୃକ୍ତ ହେଲେ । ଏକ ରକ୍ଷଣଶୀଳ ପାରିବାରିକ ପରିବେଶରେ ବଢ଼ିଥିବାରୁ ସେ ବିଭିନ୍ନ ପୁରାଣ ଓ ଧର୍ମଶାସ୍ତ୍ର ଅଧ୍ୟୟନ କରିବାର ଅବକାଶ ପାଇଥିଲେ । ଆର୍ଥିକ ଦୃଷ୍ଟିରୁ କିଛିଟା ସମ୍ପନ୍ନ ଥିବାରୁ ସେ ବିଭିନ୍ନ ବିଷୟ ନିଜସ୍ୱ ଉଦ୍ୟମରେ ପଢ଼ିବାକୁ ଆଗ୍ରହୀ ହେଉଥିଲେ । ତେବେ ସାମାଜିକ ଜୀବନର ପରିସ୍ଥିତି ଓ ଘଟଣାପ୍ରବାହକୁ ସେ ଗଭୀର ଭାବେ ଅନୁଶୀଳନ କରୁଥିଲେ । ବୃହତ୍ତର ସମାଜ ହିଁ ତାଙ୍କ ଶିକ୍ଷା-କ୍ଷେତ୍ର ପାଲଟିଥିଲା । ଏକ ମୁକ୍ତ ମନ, ଅନୁସନ୍ଧିତ୍ସୁ ମନୋଭାବ, ବିଚାରଶୀଳ ମାନସିକତା, ନ୍ୟାୟବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ସହଜାତ ଗୁଣ ଥିଲା । ସାମାଜିକ ଜୀବନଧାରାର ଯେଉଁ ସବୁ ଅନ୍ୟାୟ, ଅନୀତି, ଅମାନବିକତା ଓ ଭେଦଭାବର ପରିବେଶ ସେ ଦେଖିଥିଲେ ତାହାକୁ ଦୂର କରିବାକୁ ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ତାଙ୍କର ଜୀବନ ଥିଲା ଏକ ସଂଗ୍ରାମୀର ଜୀବନ । ରାଜନୈତିକ ସ୍ତରରେ ସ୍ୱାଧୀନତା ପାଇଁ

ଓ ସାମାଜିକ ସ୍ତରରେ ମାନବିକ ଅଧିକାର, ସାମାଜିକ ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ମୂଲ୍ୟବୋଧ ପାଇଁ ସେ ଜୀବନସାରା ସଂଗ୍ରାମ କରିଥିଲେ ।

ଯୁବକ ଅବସ୍ଥାରୁ ସମାଜ ସେବା ଓ ସମାଜ ସଂସ୍କାର କ୍ଷେତ୍ରରେ ବ୍ରତୀ ହୋଇ ସେ ନିଜ ସହରରେ ପରିଚିତି ଓ ସୁଖ୍ୟାତି ଅର୍ଜନ କରିଥିଲେ । ୧୯୦୫ରେ ପ୍ଲେଗ ରୋଗରେ ଯେତେବେଳେ ଶହଶହ ଲୋକ ମୃତ୍ୟୁବରଣ କରୁଥିଲେ ଓ ଏରୋଡ୍ ଛାଡ଼ି ଧନୀ ଲୋକମାନେ ଚାଲିଯାଉଥିଲେ, ପେରିୟାର ମୃତ ଲୋକମାନଙ୍କୁ ଶ୍ମଶାନକୁ ନେଇ ଦାହ କରିବା ଓ ଜନଗଣଙ୍କୁ ସ୍ୱାସ୍ଥ୍ୟରକ୍ଷା ପାଇଁ ସଚେତନ କରିବାକୁ ଆଗେଇ ଆସିଥିଲେ । ସହରର ନାନା ଉନ୍ନୟନମୂଳକ କାର୍ଯ୍ୟରେ ସମ୍ପୃକ୍ତ ହୋଇ ସେ ଏରୋଡ୍ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହୋଇଥିଲେ । ତେବେ କଂଗ୍ରେସର ତୁଙ୍ଗ ନେତାମାନଙ୍କର ପ୍ରରୋଚନାରେ ସେ ସବୁଥିରୁ ଇସ୍ତଫା ଦେଇ ଜାତୀୟ କଂଗ୍ରେସରେ ଯୋଗଦେଲେ । ମହାତ୍ମା ଗାନ୍ଧୀଙ୍କ ପ୍ରଭାବରେ ଅସହଯୋଗ ଆନ୍ଦୋଳନରେ ଯୋଗଦେବା ଓ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ଯଥା ନିଶା ନିବାରଣ, ନିରକ୍ଷରତା ଦୂରୀକାରଣ, ନାରୀ ଜାଗରଣ ଇତ୍ୟାଦି କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ ହାତକୁ ନେଇଥିଲେ । ପରେ ତାମିଲନାଡୁରେ ଜାତୀୟ କଂଗ୍ରେସର ସଭାପତି ମଧ୍ୟ ହୋଇଥିଲେ ।

ସମାଜ ସଂସ୍କାର ଓ ସାମାଜିକ ନ୍ୟାୟ ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ । ସେତେବେଳର ସାମାଜିକ ବ୍ୟବସ୍ଥାରେ ରକ୍ଷଣଶୀଳ ମାନସିକତା ଓ କୁସଂସ୍କାର ଭରପୂର ହୋଇ ରହିଥିଲା । ଝିଅମାନଙ୍କୁ ପିଲାବେଳୁ ବିବାହ ଦିଆଯାଉଥିଲା ଓ କେତେକ ବାଲ୍ୟାବସ୍ଥାରୁ ବିଧବା ହୋଇ ଜୀବନସାରା ନାନା କଟକଣା ଭିତରେ ଦୟନୀୟ ଭାବେ ଜୀବନ ବଞ୍ଚୁଥିଲେ । ବାଲ୍ୟ ବିବାହ ବନ୍ଦ କରିବା ଓ ବିଧବା ବିବାହ ସପକ୍ଷରେ ସାମାଜିକ ଚେତନା ସୃଷ୍ଟି ପାଇଁ ସେ ନାନା ବିରୋଧ ସତ୍ତ୍ୱେ ଅଣ୍ଟା ଭିଡ଼ିଥିଲେ ।

ଛାତ୍ର ଅବସ୍ଥାରୁ ସେ ଜାତିଆଣ ଭେଦଭାବ ଓ ଅସ୍ପୃଶ୍ୟତାର ଘୋର ବିରେଧୀ ଥିଲେ । କଂଗ୍ରେସର ପ୍ରାଦେଶିକ ସମ୍ମିଳନୀ ଯେତେବେଳେ ୧୯୨୨ରେ ତିରପୁର ଠାରେ ଅନୁଷ୍ଠିତ ହୋଇଥିଲା ସେଠାରେ ପେରିୟାର ସବୁ ଜାତିର ଲୋକମାନେ ମନ୍ଦିର ଭିତରେ ପ୍ରବେଶ କରିବା ପାଇଁ ଏକ ପ୍ରସ୍ତାବ ଆଣିଥିଲେ । ଦଳିତମାନଙ୍କର ମନ୍ଦିର ଭିତରେ ପବେଶ କରିବାର ଅଧିକାର ନ ଥିବା ବିରୋଧରେ ସେ ସ୍ୱର ଉଠାଇ ଏହାକୁ କଂଗ୍ରେସ ଦଳରେ ପ୍ରାଥମିକତା ଦେବାକୁ ଉଦ୍ୟମ କରିଥିଲେ । ଏହା ସହିତ ଅସ୍ପୃଶ୍ୟତାକୁ ଏକ ସାମାଜିକ ଅପରାଧ ଭାବେ ନେବାକୁ ସେ ବିଚାର ବ୍ୟକ୍ତ କରିଥିଲେ । କିନ୍ତୁ କଂଗ୍ରେସର ବ୍ରାହ୍ମଣ ଗୋଷ୍ଠୀ ଏହାକୁ ବିରୋଧ କରିଥିଲେ ଓ ଏହା ଗୃହୀତ ହେବାରେ ପ୍ରତିବନ୍ଧକ ହୋଇଥିଲେ । ଏହି ପୃଷ୍ଠଭୂମିରେ

କେରଳର ଭାଇକମ୍‌ଠାରେ ଅସ୍ପୃଶ୍ୟତା ବିରୋଧରେ ଯେଉଁ ଆନ୍ଦୋଳନ ୧୯୨୪ରେ ଅନୁଷ୍ଠିତ ହୋଇଥିଲା, ପେରିୟାର ତାର ଅଗ୍ରଭାଗରେ ରହିଥିଲେ । ମନ୍ଦିର ସହର ଭାଇକମ୍‌ଠାରେ ଅସ୍ପୃଶ୍ୟ ଲୋକମାନଙ୍କର ମନ୍ଦିର ରାସ୍ତାରେ ବି ଚାଲିବାର ଅଧିକାର ନ ଥିଲା । ସେଠାକାର ଆନ୍ଦୋଳନକାରୀଙ୍କର ଆହ୍ୱାନରେ ପେରିୟାର ଭାଇକମ୍ ସତ୍ୟାଗ୍ରହ ପରିଚାଳନା କରିଥିଲେ ଓ ଗିରଫ ହୋଇ ଜେଲରେ ରହିଥିଲେ । କିନ୍ତୁ ତାଙ୍କର ନେତୃତ୍ୱରେ ଆନ୍ଦୋଳନ ଅବ୍ୟାହତ ରହିଥିଲା । ଆନ୍ଦୋଳନକାରୀମାନେ ନାନା ଦୁଃଖ ଯନ୍ତ୍ରଣାକୁ ସାମ୍ନାକରି ମାସ ମାସ ଧରି ଏହା ଚଳାଇ ରଖିଲେ ଓ ଶେଷରେ ସଫଳ ହେଲେ । ସାଧାରଣ ମଣିଷର ସର୍ବନିମ୍ନ ଅଧିକାର ଓ ଅସ୍ପୃଶ୍ୟତା ଦୂରୀକରଣ କ୍ଷେତ୍ରରେ ପେରିୟାରଙ୍କର ଆନ୍ଦୋଳନ ଜାତୀୟ ସ୍ତରରେ ଯୁଗାନ୍ତକାରୀ ଥିଲା । ସେତେବେଳର ସାମାଜିକ ପରିବେଶରେ ସରକାରୀ ଶିକ୍ଷାନୁଷ୍ଠାନ ମାନଙ୍କରେ ଉଚ୍ଚ-ନୀଚ ଭେଦଭାବ ଉତ୍କଟ ହୋଇରହିଥିଲା । ଦଳିତ ଓ ଶୂଦ୍ର ଛାତ୍ରମାନେ ଉଚ୍ଚ ଜାତିର ଛାତ୍ରମାନଙ୍କ ସହ ଏକାଠି ବସିପାରୁନଥିଲେ ଓ ନାନା ଅସମ୍ମାନଜନକ ସ୍ଥିତିର ସମ୍ମୁଖୀନ ହେଉଥିଲେ । ସରକାରୀ ଶିକ୍ଷାନୁଷ୍ଠାନ ମାନଙ୍କରୁ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ପେରିୟାର ବହୁ ସୁଚିନ୍ତିତ ପଦକ୍ଷେପ ନେଇଥିଲେ । ସମାଜିକ ସଚେତନତା ସୃଷ୍ଟି ପାଇଁ ସେ ଗାଁ ଗାଁ ବୁଲି ଲୋକମାନଙ୍କ ଭିତରେ ସମତାର ବାର୍ତ୍ତା ପ୍ରଚାର କରିଥିଲେ । ଉଚ୍ଚ ଜାତି ଲୋକଙ୍କ ବିରୋଧ ସତ୍ତ୍ୱେ ଅସ୍ପୃଶ୍ୟତା ଦୂରୀକରଣ କାର୍ଯ୍ୟସୂଚୀକୁ ସେ ପ୍ରାଥମିକତା ଦେଇଆସିଥିଲେ ।

ସମସ୍ତ ସରକାରୀ କର୍ମସଂସ୍ଥାନ ଓ ଶିକ୍ଷାଲାଭ କ୍ଷେତ୍ରରେ ସେତେବେଳେ ଉଚ୍ଚଜାତିର ଲୋକମାନଙ୍କର ଆଧିପତ୍ୟ ରହିଥିଲା । ସମାଜର ଦଳିତ, ଶୂଦ୍ରମାନଙ୍କୁ ସେଥିରେ ପ୍ରତିନିଧିତ୍ୱ ଦେବାପାଇଁ ସଂରକ୍ଷଣ କରିବାକୁ ପେରିୟାର ବିଭିନ୍ନ ସମୟରେ କଂଗ୍ରେସରେ ପ୍ରସ୍ତାବ ଦେଇଆସିଛନ୍ତି ଓ ପ୍ରତ୍ୟେକଥର କଂଗ୍ରେସର ପ୍ରଭାବଶାଳୀ ଉଚ୍ଚଜାତିର ଲୋକମାନେ ଏହାକୁ ବିରୋଧ କରିଛନ୍ତି । ଦୀର୍ଘ ୫ବର୍ଷ ଧରି ଯେହେତୁ କଂଗ୍ରେସରେ ତାଙ୍କର ପ୍ରସ୍ତାବ କାଟ ଖାଇଛି ଓ କଂଗ୍ରେସର ଉଚ୍ଚଜାତିର ଲୋକମାନେ ଦଳିତ ଓ ଶୂଦ୍ର ଦ୍ରାବିଡ଼ମାନଙ୍କର ମାନବିକ ଅଧିକାରକୁ ସ୍ୱୀକୃତି ଦେଇନାହାନ୍ତି, ତାହାର ପ୍ରତିବାଦରେ ସେ୧୯୨୫ରେ କଂଗ୍ରେସ ପରିତ୍ୟାଗ କରିଛନ୍ତି ।

ଏହାପରେ ୧୯୨୫ରେ ମନୁବାଦୀ ସାଂସ୍କୃତିକ ଶୋଷଣ, ସାମାଜିକ ଭେଦଭାବ ଓ ବ୍ରାହ୍ମଣବାଦୀ ଆଧିପତ୍ୟକୁ ଦୂର କରିବା ପାଇଁ ସେ 'ଆତ୍ମମର୍ଯ୍ୟାଦା ଆନ୍ଦୋଳନ (ସେଲଫ୍ ରେସପେକ୍ଟ ମୁଭମେଣ୍ଟ)' ନାମରେ ଏକ କ୍ରାନ୍ତି ଆରମ୍ଭ କଲେ । ୧୯୨୭ରେ ମହାତ୍ମା ଗାନ୍ଧୀଙ୍କୁ ବାଙ୍ଗାଲୋରଠାରେ ସାକ୍ଷାତକରି ରାଜନୈତିକ ସ୍ୱାଧୀନତା ଅପେକ୍ଷା ସାମାଜିକ ସମତା ହାସଲ କରିବା ଯେ ଅଧିକ ଜଟିଳ ଓ ସମସ୍ୟା ବହୁଳ ଏହା ତାଙ୍କୁ ବୁଝାଇଥିଲେ ।

ସାମାଜିକ ଭେଦଭାବକୁ ଦୂର ନ କଲେ ରାଜନୈତିକ ସ୍ୱାଧୀନତାର ଯେ କିଛି ଅର୍ଥ ରହିବ ନାହିଁ ଏହା ପେରିୟର ବାରମ୍ବାର ବ୍ୟକ୍ତ କରିଆସିଥିଲେ । ଶାସ୍ତ୍ରରେ ବର୍ଣ୍ଣିତ ବର୍ଣ୍ଣ ବ୍ୟବସ୍ଥା ଓ ତାର ଅବଶ୍ୟମ୍ଭାବୀ ପରିଣାମ ସ୍ୱରୂପ ଜାତିପ୍ରଥା ଓ ଅସ୍ପୃଶ୍ୟତା ଯେ ଭାରତୀୟ ସମାଜର କଳଙ୍କ ଏହି ଅନୁଭବରୁ ସେ ସମାଜ ସଂସ୍କାରକୁ ଅଧିକ ପ୍ରାଧାନ୍ୟ ଦେଉଥିଲେ । ଜାତିପ୍ରଥାଜନିତ ଭେଦଭାବ ଓ ଅସ୍ପୃଶ୍ୟତା ଯେତେ ନୀତିବିରୋଧୀ, ଯୁକ୍ତି ବିରୋଧୀ ଓ ମାନବିକତା ବିରୋଧୀ ହେଲେ ମଧ୍ୟ ଏହା ହଜାର ହଜାର ବର୍ଷ ଧରି କିପରି ଭାରତୀୟ ସମାଜକୁ କଳୁଷିତ କରି ରଖିଛି ସେ ଗଭୀର ଭାବେ ଅନୁଭବ କରିଛନ୍ତି ଓ ତାହାର ମୂଳୋତ୍ପାଟନ ପାଇଁ ଜୀବନବ୍ୟାପୀ ପ୍ରୟାସ କରିଛନ୍ତି । ପେରିୟାରଙ୍କର ପ୍ରୟାସ ଯୋଗୁ ସେତେବେଳେ ତାମିଲନାଡୁରେ ପ୍ରଭାବ ବିସ୍ତାର କରିଥିବା ଜଷ୍ଟିସ ପାର୍ଟି ପ୍ରାକ୍- ସ୍ୱାଧୀନତା କାଳରେ ଦଳିତ ଓ ଶୂଦ୍ରମାନଙ୍କ ପାଇଁ ଶିକ୍ଷାନୁଷ୍ଠାନରେ ଓ ସରକାରୀ କର୍ମସଂସ୍ଥାନରେ ସଂରକ୍ଷଣ ବ୍ୟବସ୍ଥା ଗ୍ରହଣ କରିଛି । ସମାଜର ସବୁଠାରୁ ଅବହେଳିତ ଓ ଶୋଷିତ ବର୍ଗର ଜନଗଣଙ୍କୁ ଶିକ୍ଷାରେ ଓ ସରକାରରେ ପ୍ରତିନିଧିତ୍ୱ ଦେବାରେ ଏହି ପଦକ୍ଷେପ ପରାଧୀନ ଭାରତରେ ଥିଲା ଯୁଗାନ୍ତକାରୀ ।

ଜାତିପ୍ରଥାର ବିଲୋପ ପାଇଁ ସବୁଠାରୁ ବଡ ଆବଶ୍ୟକତା ହେଲା ଜାତି-ଜାତି ଭିତରେ ଆନ୍ତର୍ଜାତି ବିବାହ । ପେରିୟାର ଆତ୍ମମର୍ଯ୍ୟାଦା ଆନ୍ଦୋଳନ ପରିସରରେ ଆନ୍ତର୍ଜାତି ବିବାହକୁ ଗୁରୁତ୍ୱ ଦେଇଛନ୍ତି । ବିଂଶ ଶତାବ୍ଦୀ ଆରମ୍ଭ ସମୟରେ ଆନ୍ତର୍ଜାତି ବିବାହ ଭାରତୀୟ ସମାଜ ବ୍ୟବସ୍ଥାରେ ଅସମ୍ଭବ ଥିଲା । ଜାତି ଜାତି ଭିତରେ ସହ ଭୋଜନ ଓ ସାଧାରଣ ମିଳାମିଶା ବି ସୀମିତ ଥିଲା । ପ୍ରତ୍ୟେକ ଜାତି ଏକ ରୁଦ୍ଧ ସାମାଜିକ ଗୋଷ୍ଠୀ ଭାବେ ଅନ୍ୟ ଜାତି ସହ ସମ୍ପର୍କକୁ ସୁଦୃଷ୍ଟିରେ ନେଉନଥିଲା । ଏହି ସାମାଜିକ ପରିବେଶରେ ଆନ୍ତର୍ଜାତି ବିବାହ ପାଇଁ ପ୍ରଚାର କରିବା ଥିଲା ଏକ ବଡ ଆହ୍ୱାନ । ଆତ୍ମମର୍ଯ୍ୟାଦା ଆନ୍ଦୋଳନର ବହୁମୁଖୀ କାର୍ଯ୍ୟସୂଚୀ ସହ 'ଆତ୍ମ ମର୍ଯ୍ୟାଦା ବିବାହ (ସେଲ୍‌ଫ ରେସପେକ୍ଟ ମ୍ୟାରେଜ)'କୁ ସଂଶ୍ଳିଷ୍ଟ କରାଯାଇଥିଲା । ଧାର୍ମିକ କର୍ମକାଣ୍ଡକୁ ବାଦ୍ ଦେଇ ଏକ ନିରାଡମ୍ବର ପରିସରରେ ଦାମ୍ପତ୍ୟ ଜୀବନ ପାଇଁ ବିବାହ ଶପଥ ନେବା କାର୍ଯ୍ୟକ୍ରମକୁ ପେରିୟାର ଜନସମୂହ ଭିତରେ ବ୍ୟାପକ କରାଇଥିଲେ । ସାମାଜିକ ଭେଦଭାବ ଦୂର କରିବା କ୍ଷେତ୍ରରେ ତଥା ଏକ ଜାତିବିହୀନ ସମାଜ ଗଠନ କ୍ଷେତ୍ରରେ ପେରିୟାରଙ୍କର ଏହି କାର୍ଯ୍ୟସୂଚୀ ବେଶ୍ ବୈପ୍ଲବିକ ଥିଲା ।

ନାରୀ ସ୍ୱାଧୀନତା ଓ କ୍ଷୁଦ୍ର ପରିବାର ପାଇଁ ପରିବାର ନିୟୋଜନ ନେଇ ସଚେତନତା ଆଣିବାରେ ପେରିୟାର ଭାରତରେ ପ୍ରଥମ କ୍ରାନ୍ତିକାରୀ ବ୍ୟକ୍ତି । ୧୯୩୦ ମସିହାରେ ପରିବାର ନିୟୋଜନ ନେଇ ସେ ପୁସ୍ତକ ଲେଖି ସାଧାରଣରେ ପ୍ରସାର କରିଛନ୍ତି । ଦାରିଦ୍ର୍ୟ

ଦୂରୀକରଣ ପାଇଁ କ୍ଷୁଦ୍ର ପରିବାର କିପରି ଆବଶ୍ୟକ ତାହା ସେ ଜନଗଣଙ୍କୁ ବୁଝାଇବାରେ ପ୍ରୟାସ କରିଛନ୍ତି । ଜନ୍ମ ନିୟନ୍ତ୍ରଣକୁ ବିରୋଧ କରି ବ୍ରହ୍ମଚର୍ଯ୍ୟ ପାଳନକୁ କେତେକ ବିଶିଷ୍ଟ ବ୍ୟକ୍ତି ସମର୍ଥନ କରୁଥିବା ବେଳେ ଏହାର ଅବାସ୍ତବତାକୁ ଦେଖାଇ ଆଧୁନିକ ଚିକିତ୍ସା ବିଜ୍ଞାନ ଜରିଆରେ ଜନ୍ମ ନିୟନ୍ତ୍ରଣ ପାଇଁ ଆହ୍ୱାନ ଦେବା ପେରିୟାରଙ୍କ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସୂଚନା ଦିଏ ।

ସେତେବେଳର ସାମାଜିକ ପରିବେଶରେ ମନ୍ଦିରମାନଙ୍କରେ ଦେବଦାସୀ ପ୍ରଥା ରହିଥିଲା । ମନ୍ଦିରରେ ଅଧିଷ୍ଠିତ ଦିଅଁଙ୍କ ସମ୍ମୁଖରେ ଗୀତ, ନୃତ୍ୟ ପରିବେଷଣ ପାଇଁ ଅବିବାହିତ ଝିଅମାନଙ୍କୁ ଦେବଦାସୀ କରାଯାଉଥିଲା । ଦେବଦାସୀମାନେ ବିବାହ କରିପାରିବେ ନାହିଁ, ସେମାନେ ଦିଅଁଙ୍କର ପତ୍ନୀ ହୋଇ ରହିବେ । ତେବେ ଦେବଦାସୀମାନେ ବହୁ ସମୟରେ ପୂଜକ ଗୋଷ୍ଠୀ ଦ୍ୱାରା ଅତ୍ୟାଚରିତ ହେଉଥିଲେ । ବ୍ୟକ୍ତି ମର୍ଯ୍ୟାଦା ବିରୋଧୀ ଏହି ପ୍ରଥା ବିରୋଧରେ ପେରିୟାର ଆନ୍ଦୋଳନ କରି ଦେବଦାସୀ ପ୍ରଥାକୁ ବନ୍ଦ କରିଛନ୍ତି । କେତେକ ମନ୍ଦିରର ଝିଅମାନଙ୍କୁ ଆଣି ବିବାହ କରାଇ ସାମାଜିକ ଜୀବନ ସ୍ରୋତରେ ମିଶାଇଛନ୍ତି । ପେରିୟାରଙ୍କ ପ୍ରୟାସ ଯୋଗୁ ୧୯୩୦ ମସିହାରେ ମାଡ୍ରାସ ଲେଜିସ୍‌ଲେଟିଭ କାଉନସିଲ ଦେବଦାସୀ ପ୍ରଥାକୁ ଆଇନ ଦ୍ୱାରା ନିଷିଦ୍ଧ କରିଛି । ପୂଜକ ଗୋଷ୍ଠୀର ପ୍ରତିବାଦ ଓ ବିରୋଧ ସତ୍ତ୍ୱେ ଦେବଦାସୀ ପ୍ରଥାକୁ ବନ୍ଦ କରିବାରେ ପେରିୟାର ସଫଳ ହୋଇଛନ୍ତି ।

ରାଜନୈତିକ ସ୍ୱାଧୀନତା ପାଇଁ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ବିରୋଧରେ ଲଢ଼ିବା ବେଳେ ଦେଶର ଜନଗଣଙ୍କର ଅକୁଣ୍ଠ ସମର୍ଥନ ମିଳୁଥିଲା । କିନ୍ତୁ ସମାଜର ଅନୀତି, ଭ୍ରଷ୍ଟାଚାର (ସୋସିଆଲ ଇଭିଲ) ବିରୋଧରେ ସ୍ୱର ଉତ୍ତୋଳନ ବେଳେ ରକ୍ଷଣଶୀଳ ଓ ପ୍ରଭାବଶାଳୀ ଜନଗଣଙ୍କର ବିରୋଧର ସମ୍ମୁଖୀନ ହେବାକୁ ପଡୁଥିଲା । ଏହି ବାସ୍ତବ ଅନୁଭୂତିରୁ ପେରିୟାର ଏକ ଉତ୍ତମ ସମାଜ ପାଇଁ ସୋସିଆଲ ଇଭିଲକୁ ଦୂର କରିବାକୁ ନିଜକୁ ଉତ୍ସର୍ଗ କରିଥିଲେ । ଗାଁଠାରୁ ସହର ପର୍ଯ୍ୟନ୍ତ ବୁଲି ବୁଲି ସାମାଜିକ କ୍ରାନ୍ତି ପାଇଁ ଜନଚେତନା ଜାଗ୍ରତ କରିବାରେ ସେ ଥିଲେ ସାଲିସହୀନ ବିପ୍ଳବୀ । (୧୯.୧୦.୧୧)



# ଭାରତର ସକ୍ରେଟିସ୍ : ପେରିୟାର

ପେରିୟାର ତାମିଲନାଡୁର ଗାଁ ଗହଳଠାରୁ ସହର ପର୍ଯ୍ୟନ୍ତ ସବୁ ସ୍ଥାନକୁ ଯାଇ ଲୋକମାନଙ୍କ ଭିତରେ ବିଚାରଶୀଳ ଦୃଷ୍ଟି, ମାନବିକ ଅଧିକାର ଓ ସମତାର ବାର୍ତ୍ତା ପ୍ରଚାର କରିଛନ୍ତି । ସେ କୌଣସି ବିଶ୍ୱବିଦ୍ୟାଳୟରେ ପାଠ ପଢି ନଥିଲେ ମଧ୍ୟ ତାଙ୍କର ଗଭୀର ଅନୁଶୀଳନ ଓ ଶାଣିତ ପ୍ରଜ୍ଞାଦ୍ୱାରା ସେ ଜନଗଣଙ୍କର ଯେକୌଣସି ପ୍ରଶ୍ନ ଓ ଆହ୍ୱାନର ସମ୍ମୁଖୀନ ହେଉଥିଲେ । ନିଜର ପ୍ରତି-ପ୍ରଶ୍ନ ଓ ବ୍ୟଙ୍ଗ ଦ୍ୱାରା ସାଧାରଣ ମଣିଷ ମନରେ ନିଜର ପରିସ୍ଥିତି ବିଷୟ ଚିନ୍ତା କରିବାକୁ କୌତୂହଳତା ସୃଷ୍ଟି କରୁଥିଲେ । ସକ୍ରେଟିସ୍ ସେ ଯୁଗରେ ଯେପରି ପ୍ରଶ୍ନ ପଚାରି ସାଧାରଣ ମଣିଷର ଅଜ୍ଞତା ବିଷୟରେ ସଚେତନତା ସୃଷ୍ଟି କରୁଥିଲେ, ପେରିୟାର ସେହିପରି ଜନଗଣଙ୍କୁ ସେମାନଙ୍କର ଦୟନୀୟ ପରିସ୍ଥିତି, ଦାରିଦ୍ର୍ୟ ବିଷୟରେ ସଚେତନ ହେବାକୁ ଚେଷ୍ଟା କରୁଥିଲେ । କେଉଁ ଭାଗ୍ୟଫଳ ବା ଦେବତାର କୋପରୁ ଆମେ ଦରିଦ୍ର ହୋଇନାହେଁ, ଆମର ସାମାଜିକ ପରିସ୍ଥିତି ଓ ରାଜନୈତିକ ବ୍ୟବସ୍ଥା ଯୋଗୁଁ ଆମେ ଦୟନୀୟ ଓ ଉପମାନବୀୟ ସ୍ତରରେ ଜୀବନ ବଞ୍ଚୁଛେ । ସେହିପରି ଆମର ବିକାଶ, ପ୍ରଗତି ଓ ଗୁଣାତ୍ମକ ଜୀବନ ବିଅଁ ଦେବତାକୁ ପୂଜା କଲେ ସମ୍ଭବ ହେବ ନାହିଁ । ଆମର ନିଷ୍ଠାପର ଉଦ୍ୟମ ଦ୍ୱାରା ସାମାଜିକ ଜୀବନ ଉନ୍ନତ ହୋଇପାରିବ । ଯେଉଁଠି ସାମାଜିକ ବ୍ୟବସ୍ଥା, ରାଜନୈତିକ ଓ ଅର୍ଥନୈତିକ ପରିବେଶ ଉନ୍ନତ ହୋଇଛି ସେଠି ସମାଜ ବିକଶିତ ହୋଇପାରିଛି । ଅର୍ଥାତ୍ ମଣିଷର ପ୍ରୟାସ ଓ ଉନ୍ନତ ସାମାଜିକ ତଥା ସାଂସ୍କୃତିକ ବ୍ୟବସ୍ଥା ଦ୍ୱାରା ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ମାନ ଉନ୍ନତ ହେବା ସମ୍ଭବ ହୋଇଛି ।

ଏକ ଉନ୍ନତ ସମାଜ ଓ ଗୁଣାତ୍ମକ ଜୀବନ ପାଇଁ ଶିକ୍ଷାର ପ୍ରସାରକୁ ସେ ଗୁରୁତ୍ୱ ଦେଇଛନ୍ତି ଓ କେତେକ ସ୍ଥାନରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଛନ୍ତି । ଶିକ୍ଷା ଯେ ସାମାଜିକ ଦାସତ୍ୱରୁ ମୁକ୍ତି ଦେବ ଏହି ବିଶ୍ୱାସ ତାଙ୍କର ଦୃଢ ହୋଇଛି । ପରାଧୀନ ବ୍ରିଟିଶ ଭାରତରେ ତାମିଲଭାଷାରେ ଶିକ୍ଷା ଦେବା ପାଇଁ ସେ ତାମିଲନାଡୁରେ ଭାଷା ଆନ୍ଦୋଳନ କରିବାକୁ ପ୍ରୟାସ କରିଛନ୍ତି । ଏହା ସହିତ ତାମିଲ ଲିପିରେ ସଂସ୍କାର ଆଣିବାକୁ ଚେଷ୍ଟା କରିଛନ୍ତି । ତେବେ ଦକ୍ଷିଣ ଭାରତରେ ହିନ୍ଦୀ ବିରୋଧୀ ଆନ୍ଦୋଳନ ପାଇଁ ପେରିୟାର ବି ଉଦ୍ୟମ କରିଛନ୍ତି । ଜ୍ଞାନ, ବିଜ୍ଞାନର ଭାଷା ପାଇଁ ହିନ୍ଦୀ ଭାଷା

ପରିବର୍ତ୍ତେ ଇଂରାଜୀ ଭାଷା ଅଧିକ ଉପଯୋଗୀ ଭାବି ସେ ଇଂରାଜୀ ଭାଷାର ପ୍ରସାର ପାଇଁ ଗୁରୁତ୍ୱ ଦେଇଛନ୍ତି । ତାମିଲ ଭାଷା ଏକ ପ୍ରାଚୀନ ଦ୍ରାବିଡୀୟ ଭାଷା ଭାବରେ ସମୃଦ୍ଧ ଥିବାରୁ ତାମିଲ ଓ ଇଂରାଜୀ ଉଭୟ ଭାଷାକୁ ଶିକ୍ଷା କ୍ଷେତ୍ରରେ ଗୁରୁତ୍ୱ ଦେଇଛନ୍ତି । ତାମିଲ ଭାଷାରେ 'ଗୁଡି ଆରାସୁ' ସାପ୍ତାହିକ ପତ୍ରିକାକୁ ଇଂରେଜ ବିରୋଧୀ ଲେଖା ପାଇଁ ଯେତେବେଳେ ସରକାର ନିଷେଧ କରିଛନ୍ତି, ସେତେବେଳେ 'ପୁରତବି' (ବିପ୍ଳବ) ନାମରେ ଅନ୍ୟ ଏକ ପତ୍ରିକା ପ୍ରକାଶ କରିଛନ୍ତି । ତାଙ୍କର ସରକାର ବିରୋଧୀ ଲେଖା ପାଇଁ ବି ସେ ବନ୍ଦୀ ହୋଇ ଜେଲ ଯାଇଛନ୍ତି । ବିଦୂତଲାଇ ନାମରେ ଏକ ସାପ୍ତାହିକ ପତ୍ରିକା ଯାହା ଜଷ୍ଟିସ ପାର୍ଟି ଦ୍ୱାରା ପ୍ରକାଶିତ ହେଉଥିଲା, ତାହା ଏକ ଦୈନିକ ସମ୍ବାଦ ପତ୍ରରେ ପରିବର୍ତ୍ତିତ ହେବା ପରେ ପେରିୟାର କିଛି ଦିନ ଏହାର ଦାୟିତ୍ୱ ତୁଲାଇଛନ୍ତି । ତେବେ ତାମିଲ ଲିପି କ୍ଷେତ୍ରରେ ସେ ଯେଉଁ ସଂସ୍କାରର ସୂତ୍ରପାତ କରିଥିଲେ ତାହା କାଳକ୍ରମେ ଗୃହୀତ ହୋଇଯାଇଛି । ଭାଷା ଭିତ୍ତିକ ପ୍ରଦେଶ ଗଠନ ପୂର୍ବରୁ ତାମିଲ ଲୋକଙ୍କ ପାଇଁ ଏକ 'ତାମିଲନାଡୁ' ରାଜ୍ୟ ଗଠନ ପାଇଁ ସେ ତାଙ୍କର ଲେଖାରେ ମତ ପ୍ରକାଶ କରିଆସିଛନ୍ତି ।

ପରାଧୀନ ଭାରତରେ ସେ ଜଷ୍ଟିସ ପାର୍ଟିର ସଭାପତି ମନୋନୀତ ହୋଇଛନ୍ତି । ତେବେ ଦୁଇଥର ସରକାର ଗଠନ କରିବା ପାଇଁ ସେ ତତ୍କାଳୀନ ମାଡ୍ରାସ ଗଭର୍ଣ୍ଣରଙ୍କର ନିମନ୍ତ୍ରଣ ପାଇଥିଲେ ବି, ଏତେ ସମ୍ମାନଜନକ ପଦକୁ ଗ୍ରହଣ କରିନାହାନ୍ତି । ବରଂ ଏକ ଭେଦଭାବବିହୀନ ସମାଜ ଗଠନ ଓ ସାମାଜିକ କ୍ରାନ୍ତିକୁ ପ୍ରାଧାନ୍ୟ ଦେଇ ସେ ସେଥିରେ ବ୍ରତୀ ହୋଇଛନ୍ତି । ତେବେ ୧୯୪୪ ମସିହାରେ ଜଷ୍ଟିସ ପାର୍ଟିର ନାମ ପରିବର୍ତ୍ତନ ହୋଇ ଦ୍ରାବିଡ କାଜାଗମ (କାଜାଗମ ଅର୍ଥ ରାଜ୍ୟ) ସୃଷ୍ଟି ହୋଇଛି । ଦ୍ରବିଡ କାଜାଗମ ବା ଡିକେ ମୁଖ୍ୟତଃ ଏକ ସାମାଜିକ ଆନ୍ଦୋଳନ ଭାବରେ ସମସ୍ତ ସୋସିଏଲ ଇଭିଲକୁ ଦୂର କରିବାକୁ ପ୍ରୟାସ କରିଛି ଓ ଏହାର ପୁରୋଭାଗରେ ପେରିୟାର ରହିଛନ୍ତି । ପରେ ଦ୍ରାବିଡ କାଜାଗମ ସଂଗଠନରୁ ଡ଼ିଏମକେ ଏକ ରାଜନୈତିକ ଦଳ ସୃଷ୍ଟି ହୋଇଛି । ପେରିୟାର ରାଜନୈତିକ ଲକ୍ଷ୍ୟଠାରୁ ଦୂରରେ ରହି ସାମାଜିକ ପରିବର୍ତ୍ତନକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ତେବେ ୧୯୬୭ ନିର୍ବାଚନରେ ଡିଏମକେ ଦଳ ସଂଖ୍ୟାଗରିଷ୍ଠ ହୋଇ ସରକାର ଗଠନ କରିଛି ଓ ଆନା ଦୁରାଇ ମାନ୍ଦ୍ରାଜ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଆନା ଦୁରାଇ ମୁଖ୍ୟମନ୍ତ୍ରୀ ହେବା ପରେ ପେରିୟାରଙ୍କର ସାମାଜିକ ଆନ୍ଦୋଳନକୁ ସମର୍ଥନ ଦେଇଛନ୍ତି । ପେରିୟାରଙ୍କର ତିନୋଟି ମୌଳିକ ଦାବିକୁ ସେ ଆଇନରେ ପରିଣତ କରିଛନ୍ତି । ପେରିୟାରଙ୍କର ସେଲଫ-ରେସ୍ପେକ୍ଟ ବିବାହକୁ ଆଇନଗତ ସ୍ୱୀକୃତି ଦିଆଯାଇଛି । ଦୁଇ ଜଣ ପ୍ରାପ୍ତ

ବୟସ୍କ ବ୍ୟକ୍ତି (ପୁରୁଷ ଓ ନାରୀ) ଜାତି ଧର୍ମ ନିର୍ବିଶେଷରେ ଅଣପାରମ୍ପରିକ ଭାବରେ ବିବାହ କରିପାରିବେ ଓ ସେମାନଙ୍କର ବିବାହକୁ ପଞ୍ଜୀକରଣ ସରକାରଙ୍କ ପାଖରେ କରିପାରିବେ । ମାଧ୍ୟମିକ ଶିକ୍ଷା ସ୍ତରରେ ଛାତ୍ରଛାତ୍ରୀମାନେ ଦୁଇଟି ଭାଷା ତାମିଲ ଓ ଇଂରାଜୀ ପଢ଼ିବେ, ହିନ୍ଦୀ ବାଧ୍ୟତାମୂଳକ ହେବ ନାହିଁ । ମାନ୍ଦ୍ରାଜର ନାମ ତାମିଲନାଡୁ ହେବ ।

ଏହା ସହିତ ଆନା ଦୁରାଇ ବିଭିନ୍ନ ପ୍ରଗତିଶୀଳ ପଦକ୍ଷେପ ନେଇ ସାମାଜିକ ଭେଦଭାବକୁ ଦୂର କରିବାକୁ ପ୍ରୟାସ କରିଛନ୍ତି । କୌଣସି ସରକାରୀ କାର୍ଯ୍ୟାଳୟରେ କୌଣସି ଧର୍ମୀୟ ଦେବ-ଦେବୀଙ୍କର ଫଟୋ, ମୂର୍ତ୍ତି ରଖା ଯାଇପାରିବ ନାହିଁ । ଏହା ସହିତ ମନ୍ଦିର, ପୂଜାସ୍ଥଳରେ ଯେକୌଣସି ଜାତିର ବ୍ୟକ୍ତି ପୂଜାର୍ଚ୍ଚନା କରିପାରିବେ, ଏହା କେବଳ ଏକ ନିର୍ଦ୍ଦିଷ୍ଟ ଜାତିର ଏକଚାଟିଆ ଆଧିପତ୍ୟ ହୋଇ ରହିବ ନାହିଁ । ଏହିପରି ବିଭିନ୍ନ ପଦକ୍ଷେପ ପଶ୍ଚାତରେ ପେରିୟାରଙ୍କର ବିଚାର ଓ ପ୍ରେରଣାକୁ ଆଇନଗତ ସ୍ୱୀକୃତି ଦେବାକୁ ସରକାର ଉଦ୍ୟମ କରିଛନ୍ତି ।

ସବୁ ସଭ୍ୟତାରେ ଓ ସବୁ ଯୁଗରେ ମତାନ୍ଧ ଲୋକମାନେ ଧାର୍ମିକ ରକ୍ଷଣଶୀଳତା ଯୋଗୁ ପ୍ରଗତିଶୀଳ ଓ ସଭ୍ୟ ମୂଲ୍ୟବୋଧକୁ ବିରୋଧ କରି ଆସିଛନ୍ତି । ୟୁରୋପୀୟ ସମାଜରେ ବିଜ୍ଞାନର ଆଦିପର୍ବରେ ଧାର୍ମିକ ବିଶ୍ୱାସ ଯୋଗୁଁ ବୈଜ୍ଞାନିକ ଜ୍ଞାନକୁ ବିରୋଧ କରାଯାଇଛି । ବହୁ ପ୍ରତିଭାଧର ବୈଜ୍ଞାନିକ ସେମାନଙ୍କର ନୂତନ ଉଦ୍ଭାବନ ଓ ଆବିଷ୍କାର ପାଇଁ ନାନା ସାମାଜିକ କଟାକ୍ଷ ଓ ବିଦ୍ୱେଷର ସମ୍ମୁଖୀନ ହୋଇଛନ୍ତି । କେତେକ ବନ୍ଦୀ ଜୀବନ ବିତାଇଛନ୍ତି ଓ ଏପରିକି ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ଭାରତ ବର୍ଷରେ ସାମାଜିକ ସଂସ୍କାର ଓ ମାନବିକ ଅଧିକାରକୁ ଧାର୍ମିକ ରକ୍ଷଣଶୀଳତାରେ ନାନା ବିରୋଧ କରାଯାଇଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ମାନବିକ ଅଧିକାର ଏହି ମୂଲ୍ୟବୋଧ ସକଳ ପାଶ୍ଚାତ୍ୟ ଗଣତାନ୍ତ୍ରିକ ସଂସ୍କୃତିରୁ ଉଦ୍ଭବ ହୋଇଛି । ତେବେ ଭାରତବର୍ଷ ଭଳି ଏକ ଜାତିଭିତ୍ତିକ ସମାଜରେ ଧାର୍ମିକ ରକ୍ଷଣଶୀଳତା ସର୍ବଦା ଏହି ମୂଲ୍ୟବୋଧକୁ ବିରୋଧ କରିଛି । ପେରିୟାର ଯେତେବେଳେ ମାନବିକ ଅଧିକାର, ସମତା, ସାମାଜିକ ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାର ସ୍ୱର ଉଠାଇଛନ୍ତି ସେତେବେଳେ ତାଙ୍କୁ ବି ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଛି । ଧାର୍ମିକ କୁସଂସ୍କାର ଓ ଅସ୍ପୃଶ୍ୟତା ବିରୁଦ୍ଧରେ ଜନଗଣଙ୍କୁ ଆହ୍ୱାନ ଦେବାବେଳେ ଉଚ୍ଚ ଜାତିର ଲୋକମାନେ ତାଙ୍କୁ ଜୋତା ଫିଙ୍ଗିଛନ୍ତି । ୧୯୪୬ରେ ତାଙ୍କର ଏକ ସମ୍ମିଳନୀର ପେଣ୍ଡାଲକୁ ନିଆଁ ଲଗାଇ ପୋଡ଼ି ଦେଇଛନ୍ତି । ତେବେ ପେରିୟାର ନିଜ ବିଚାର ଓ ବିଶ୍ୱାସରେ ଅଟଳ ରହି ସବୁ ଘାତ ପ୍ରତିଘାତ ସତ୍ତ୍ୱେ ସାମାଜିକ କ୍ରାନ୍ତି ପାଇଁ

ତାମିଲନାଡୁରେ ପଥ ପ୍ରଦର୍ଶକ ହୋଇଛନ୍ତି । ଜଣେ ସଂଗ୍ରାମୀ ଭାବେ ବହୁ ଆନ୍ଦୋଳନ କରିଛନ୍ତି, ଅନ୍ୟାୟ ଓ ଭେଦଭାବ ଦୂର କରିବାକୁ ଜୀବନର ବ୍ରତ ଭାବେ ନେଇଛନ୍ତି । ତେବେ ସବୁ ପରିସ୍ଥିତିରେ ଅହିଂସ ରହିଛନ୍ତି ଓ ତାଙ୍କର ଅନୁଗାମୀମାନଙ୍କୁ ସର୍ବଦା ଅହିଂସ ରହିବାକୁ ଓ ଜାତୀୟ ସଂପତ୍ତିର ସୁରକ୍ଷା ପାଇଁ ନିର୍ଦ୍ଦେଶ ଦେଇ ଆସିଛନ୍ତି ।

ପେରିୟାର ବିଭିନ୍ନ ପାଶ୍ଚାତ୍ୟ-ଦେଶ ଭ୍ରମଣ କରିବାକୁ ଯାଇଛନ୍ତି । ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ସ୍ପେନ, ଋଷ ଆଦି ଦେଶ ଭ୍ରମଣକରି ସେ ସବୁ ଦେଶର ବିକାଶକୁ ଲକ୍ଷ୍ୟ  କରିଛନ୍ତି । ପାଶ୍ଚାତ୍ୟ ଦେଶମାନଙ୍କର ବିକାଶ, ଉନ୍ନତ ସ୍ୱାସ୍ଥ୍ୟ ସେବା, ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ଓ ସାମାଜିକ ସମତାକୁ ଲକ୍ଷ୍ୟ କରିଛନ୍ତି । ବିଭିନ୍ନ ଦେଶର ସମାଜବାଦୀ ସଂଗଠନ, ହେତୁବାଦୀ ଓ ମାନବବାଦୀ ଅନୁଷ୍ଠାନରେ ଭାଷଣ ଦେବାର ଅବକାଶ ପାଇଛନ୍ତି । ସେ ଦେଶମାନଙ୍କରେ ମାନବିକ ଅଧିକାର ଓ ବ୍ୟକ୍ତିମର୍ଯ୍ୟାଦାବୋଧର ପରିବେଶକୁ ଅନୁଧ୍ୟାନ କରିଛନ୍ତି । ନାନା ଅନୁଭୂତି ଓ ଅନୁଶୀଳନ ଦେଇ ସେ ଭାରତୀୟ ସମାଜର ପୁନର୍ଗଠନ ପାଇଁ ତାଙ୍କର ସଂପୃକ୍ତି ପ୍ରକାଶ କରିଛନ୍ତି । ଏକ ଜନବହୁଳ ଓ ଗ୍ରାମବହୁଳ ରାଷ୍ଟ୍ରରେ ବିକାଶର ସୂତ୍ର କିପରି ହେଲେ ଆମର ଅର୍ଥନୈତିକ ସମୃଦ୍ଧି ତ୍ୱରାନ୍ୱିତ ହୋଇପାରିବ ସେ ବିଷୟରେ ଗଭୀର ଚିନ୍ତା ବ୍ୟକ୍ତ କରିଛନ୍ତି । ଅର୍ଥନୈତିକ ସମୃଦ୍ଧି ଓ ସାମାଜିକ ବିକାଶଦ୍ୱାରା ଯେ ଭାରତୀୟ ସମାଜ ଉନ୍ନତ ହୋଇ ପାରିବ ଏହି ଆତ୍ମପ୍ରତ୍ୟୟରୁ ସେ ତାଙ୍କ ବିକାଶର ଚିତ୍ର ଅଙ୍କନ କରିଛନ୍ତି ।

ତାଙ୍କର ବୈଚାରିକ ଆଲୋଡ଼ନ ଓ ସାମାଜିକ କ୍ରାନ୍ତି ପୃଷ୍ଠଭୂମିରେ ଜାତିସଂଘ ୟୁନେସ୍କୋ ଦ୍ୱାରା ତାଙ୍କୁ ସମ୍ମାନିତ କରାଯାଇଛି । ପ୍ରଦତ୍ତ ମାନପତ୍ରରେ ତାଙ୍କୁ ଏକ ନୂତନ ଯୁଗର ଦ୍ରଷ୍ଟା, ଦକ୍ଷିଣ ଏସିଆର ସକ୍ରେଟିସ୍ ଓ ସାମାଜିକ କ୍ରାନ୍ତିର ଜନକ ବୋଲି ଅଭିହିତ କରାଯାଇଛି । ୟୁନେସ୍କୋ ତରଫରୁ ଭାରତର ତତ୍କାଳୀନ ଶିକ୍ଷାମନ୍ତ୍ରୀ ତ୍ରିଗୁଣା ସେନ ୨୭.୬.୧୯୭୦ ଦିନ ପେରିୟାରଙ୍କୁ ୟୁନେସ୍କୋ ପୁରସ୍କାର ପ୍ରଦାନ କରିଥିଲେ ।

ପେରିୟାର ଜୀବନସାରା ଅଜ୍ଞତା, କୁସଂସ୍କାର, ସାମାଜିକ ଭେଦଭାବ ଓ ଅହେତୁକ ପରମ୍ପରା ବିରୁଦ୍ଧରେ ସଂଗ୍ରାମ କରି  ଆସିଛନ୍ତି । କୌଣସି ଛଳନା ବା ହିପୋକ୍ରାସି ତାଙ୍କୁ ସ୍ପର୍ଶ କରିନଥିଲା । ଏକ ସତ୍ୟନିଷ୍ଠ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ଆଦର୍ଶ ହୋଇ ରହିଥିଲା । ପେରିୟାର ଏକ ସୁଦୀର୍ଘ ଜୀବନ ଅତିବାହିତ କରି ୯୪ ବର୍ଷ ବୟସରେ ଡିସେମ୍ବର ୨୪,୧୯୭୩ ଦିନ ଚିରନିଦ୍ରାରେ ଶୋଇ ଯାଇଥିଲେ ।

ଭାରତବର୍ଷର ସମାଜ ସଂସ୍କାର ଇତିହାସରେ ପେରିୟାର ଏକ ପ୍ରମୁଖ ସ୍ଥାନ ନେଇଛନ୍ତି । ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ପ୍ରବକ୍ତା ଭାବେ ସେ ଆନ୍ତର୍ଜାତିକ ସ୍ୱୀକୃତି ମଧ୍ୟ ପାଇଛନ୍ତି । ପେରିୟାର ଦାର୍ଶନିକ ନଥିଲେ, ତେବେ ଦର୍ଶନର ଏକ ସାମଗ୍ରିକ ଅର୍ଥକୁ ବିଚାରକୁ ନେଲେ ତାଙ୍କର ଏକ ଜୀବନ ଦର୍ଶନ ଯେ ଥିଲା ଏହା କୁହାଯାଇପାରେ । ତାଙ୍କ ଜୀବନ ଦର୍ଶନ ମାନବତ୍ୱବାଦ ଓ ହେତୁବାଦର ଆଧାର ଉପରେ ଗଢ଼ି ଉଠିଥିଲା । ପାରଲୌକିକ ବିଶ୍ୱାସ ସକଳରୁ ମୁକ୍ତ ହୋଇ ଐହିକ ଜୀବନ ଓ ସାମାଜିକ ବ୍ୟବସ୍ଥାକୁ ଉନ୍ନତ କରିବାକୁ ସେ ସର୍ବଦା ପ୍ରୟାସୀ ହୋଇଛନ୍ତି । ଏକ ସୁଖମୟ ଓ ସଂହତିପୂର୍ଣ୍ଣ ସାମାଜିକ ଜୀବନର ଆଦର୍ଶଭାବେ ସେ ସମତା, ସାମାଜିକ ନ୍ୟାୟ ଓ ଆତ୍ମମର୍ଯ୍ୟାଦାପୂର୍ଣ୍ଣ ଜୀବନଧାରାକୁ ପ୍ରାଧାନ୍ୟ ଦେଇଛନ୍ତି । ସେହିପରି ହେତୁବାଦୀ ଜୀବନଦର୍ଶନକୁ ସେ ନିଜ ଜୀବନଧାରାରେ ମିଶାଇ ଦେଇଛନ୍ତି । ମୁକ୍ତ ମନ, ଅନୁସନ୍ଧିତ୍ସୁ ଦୃଷ୍ଟି, ବୈଜ୍ଞାନିକ ମାନସିକତା ଓ ସତ୍ୟ ପ୍ରତି ପ୍ରତିବଦ୍ଧତାକୁ ସେ ତାଙ୍କର ଆଦର୍ଶ ଭାବେ ନେଇଛନ୍ତି । ଭାଗ୍ୟ, ନିୟତିବାଦ, ପୂର୍ବନିର୍ଦ୍ଦିଷ୍ଟବାଦ ପରି ଧାର୍ମିକ ବିଶ୍ୱାସ ସକଳକୁ ସେ ପ୍ରତ୍ୟାଖ୍ୟାନ କରି ଆସିଛନ୍ତି । ଲୋକମାନଙ୍କର ଭୀରୁତା ଓ ବୌଦ୍ଧିକ ନିଷ୍କ୍ରିୟତା ଦୂର କରିବା ପାଇଁ ସେ ଗାଆଁ ଗାଆଁ ବୁଲି ସାଧାରଣ ଭାଷାରେ ଜନମାନସକୁ ପ୍ରଭାବିତ କରିଆସିଛନ୍ତି । ତାମିଲନାଡୁରେ ସେ ଏକ ପ୍ରବାଦ ପୁରୁଷ ହେଲେ ବି ସେ ଜଣେ କ୍ରାନ୍ତିକାରୀ ସଂସ୍କାରକ ଭାବେ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି । (୨୬.୧୦.୧୧)



# ସାମାଜିକ କ୍ରାନ୍ତିର ସହଯୋଦ୍ଧା

ଆନ୍ଧ୍ରପ୍ରଦେଶର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀ ସରସ୍ୱତୀ ଦେବୀଙ୍କର ୨୦୧୧-୧୨ରେ ଜନ୍ମଶତବାର୍ଷିକୀ ପାଳିତ ହୋଉଛି । ଏହି ଉପଲକ୍ଷେ ଭାରତ ସରକାର ସରସ୍ୱତୀ ଦେବୀଙ୍କ ଉପରେ ଏକ ଡ଼ାକ ଟିକେଟ ବାହାର କରିଛନ୍ତି । କିଛିବର୍ଷ ତଳେ ସରସ୍ୱତୀ ଦେବୀଙ୍କର ସ୍ୱାମୀ ଗୋପରାଜୁ ରାମଚନ୍ଦ୍ର ରାଓ (ସେ ଗୋରା ନାମରେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପରିଚିତ)ଙ୍କ ନାମରେ ମଧ୍ୟ ଭାରତ ସରକାର ଏକ ଡ଼ାକ ଟିକେଟ ବାହାର କରିଥିଲେ । ସରସ୍ୱତୀ ଦେବୀ ଓ ଗୋରା ସେମାନଙ୍କର ଉଲ୍ଲେଖନୀୟ ସମାଜସେବା ଏବଂ ସଂସ୍କାରବାଦୀ କାର୍ଯ୍ୟସୂଚୀ ପାଇଁ ନାନା ଜାତୀୟ ତଥା ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି । ନିକଟରେ ସରସ୍ୱତୀ ଦେବୀଙ୍କର ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଏକ ଜାତୀୟ ଆଲୋଚନାଚକ୍ର ତାଙ୍କ କର୍ମଭୂମି ବିଜୟୱାଡ଼ାଠାରେ ୨୦୧୧ ସେପ୍ଟେମ୍ବର ୨୮,୨୯ ରେ ଅନୁଷ୍ଠିତ ହୋଇଯାଇଛି । ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ବହୁ ପ୍ରବୀଣ ବୁଦ୍ଧିଜୀବୀ ଓ ସମାଜସେବୀ ଏଥିରେ ଯୋଗଦେଇ ଗୋରା ଓ ସରସ୍ୱତୀ ଦେବୀଙ୍କର ସମାଜସେବା, ଜୀବନ ଦର୍ଶନ ଓ ମାନବବାଦୀ ଆଭିମୁଖ୍ୟର ବିଭିନ୍ନ ଦିଗନ୍ତ ଉପରେ ଆଲୋଚନା କରିଛନ୍ତି ।

ସରସ୍ୱତୀ ଦେବୀଙ୍କର ଜନ୍ମ ଆନ୍ଧ୍ରପ୍ରଦେଶସ୍ଥିତ ବିଜୟନଗରମର ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ୧୯୧୨ ମସିହାରେ ହୋଇଥିଲା । ସେତେବେଳର ସାମାଜିକ ପରିବେଶରେ ମାତ୍ର ଦଶବର୍ଷ ବୟସରେ ତାଙ୍କର ବିବାହ ଗୋରାଙ୍କ ସହ ସମ୍ପନ୍ନ ହୁଏ । ସେ ସମୟର ବ୍ରାହ୍ମଣ ପରିବାରରେ ବିବାହରେ ନାନା କର୍ମକାଣ୍ଡ ଥିଲା ଓ ଏହା ପାଞ୍ଚଦିନ ଧରି ବିଭିନ୍ନ ବିଧାନରେ ସମାହିତ ହେଉଥିଲା । ସରସ୍ୱତୀଦେବୀ ମାତ୍ର ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ଗୋରା କିନ୍ତୁ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ଲାଇଫ ସାଇନ୍ସର ଅଧ୍ୟାପକ ଭାବେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । ପ୍ରାୟ ୧୫ବର୍ଷର ଅଧ୍ୟାପନା ଜୀବନ ଭିତରେ ଗଭୀର ଅଧ୍ୟୟନ ଓ ଅନୁଶୀଳନ ମଧ୍ୟରେ ସେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଜନିତ ହେତୁବାଦକୁ ଏକ ଜୀବନଦର୍ଶନ ଭାବେ ଗ୍ରହଣ କରିଥିଲେ । ତାଙ୍କର ମୁକ୍ତ ଚିନ୍ତା ଜନିତ ମାନସିକତା ଓ ସଂସ୍କାରବାଦୀ କାର୍ଯ୍ୟକ୍ରମ

ଯୋଗୁଁ କଲେଜ କର୍ତ୍ତୃପକ୍ଷଙ୍କର ତାଙ୍କ ପ୍ରତି ବିଭିନ୍ନ ସମୟରେ କଟକଣା ଯୋଗୁ ସେ ଚାକିରିରୁ ଇସ୍ତଫା ଦେଇଥିଲେ ।

ସରସ୍ୱତୀ ଦେବୀ ମାତ୍ର ପ୍ରାଥମିକ ଶିକ୍ଷା ଲାଭକରି ପାରିବାରିକ ବନ୍ଧନ ଭିତରେ ଗୋରାଙ୍କ ସହ ସାମିଲ ହୋଇଥିଲେ । ତେବେ ଉଚ୍ଚଶିକ୍ଷିତ ସ୍ୱାମୀଙ୍କ ପ୍ରୟାସରେ କିଛି ବିଷୟ ପଢ଼ିଥିଲେ ଓ ସାମାଜିକ ଜୀବନ ପ୍ରବାହ ବିଷୟରେ ସଚେତନ ହୋଇଥିଲେ । ଗୋରା ଛାତ୍ରାବସ୍ଥାରୁ ଦେଶର ସ୍ୱାଧୀନତା ଆନ୍ଦୋଳନରେ ସମ୍ପୃକ୍ତି ପ୍ରକାଶ କରିଥିଲେ । ଚାକିରିରୁ ଇସ୍ତଫା ଦେବା ପରେ ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କଲେ । ଏଥିପାଇଁ ଉଭୟ ବହୁବାର କାରାବରଣ କରିଛନ୍ତି ।

ଜାତୀୟ ଆନ୍ଦୋଳନ ସହ ଗ୍ରାମମାନଙ୍କରେ ରଚନାତ୍ମକ କାର୍ଯ୍ୟକ୍ରମ ସେ ସମୟର ସାମାଜିକ ପରିବେଶରେ ସବୁଠାରୁ ବଡ଼ ଆହ୍ୱାନ ଥିଲା । ବ୍ୟାପକ ନିରକ୍ଷରତା, ଅସ୍ପୃଶ୍ୟତା, ସାମାଜିକ ଭେଦଭାବ, ଜାତିଆଣ ରୁଦ୍ଧ ବ୍ୟବସ୍ଥା, ନାରୀ ପରାଧୀନତା, ନାନା କୁସଂସ୍କାର ଇତ୍ୟାଦି ବହୁ ସାମାଜିକ କଳଙ୍କ ଭାରତୀୟ ଜନଜୀବନର ଅଙ୍ଗ ହୋଇ ରହିଥିଲା । ଗୋରା ଓ ସରସ୍ୱତୀ ଦେବୀ ଆନ୍ଧ୍ରର ଏକ ଗ୍ରମୀଣ ପରିବେଶ ମୁଡୁନୁରଠାରେ ସେମାନଙ୍କ ରଚନାତ୍ମକ କାର୍ଯ୍ୟକ୍ରମର କେନ୍ଦ୍ର ଆରମ୍ଭ କରିଥିଲେ । ନିଶା ନିବାରଣ, ନିରକ୍ଷରତା ଦୂରୀକରଣ, ମହିଳାମାନଙ୍କ ମଧ୍ୟରେ ସାମାଜିକ ସଚେତନତା ବୃଦ୍ଧି ଓ ସେମାନଙ୍କର ସ୍ୱାବଲମ୍ବନଶୀଳତା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରାମୀଣ ପରିବେଶରେ ଆରମ୍ଭ କରିଥିଲେ । ସେତେବେଳର ସାମାଜିକ ପରିବେଶରେ ଅସ୍ପୃଶ୍ୟତା ଥିଲା ସବୁଠାରୁ ବଡ଼ କଳଙ୍କ । ରୁଦ୍ଧ ଜାତି ବ୍ୟବସ୍ଥାକୁ ଦୂର କରିବାକୁ ସରସ୍ୱତୀ ଦେବୀ ଓ ଗୋରା ପାଖ ପାଖ ଗ୍ରାମମାନଙ୍କରେ ପ୍ରତ୍ୟେକ ପୂର୍ଣ୍ଣିମା ରାତିରେ ସହ-ପଙ୍‌କ୍ତି ଭୋଜନ କାର୍ଯ୍ୟକ୍ରମ ଆୟୋଜନ କରୁଥିଲେ । ସେତେବେଳର ସାମାଜିକ ସ୍ଥିତିରେ ସ୍ପୃଶ୍ୟ ଓ ଅସ୍ପୃଶ୍ୟ ଜାତି ନିର୍ବିଶେଷରେ ଏକତ୍ର ସହଭୋଜନ ଏକ ବୈପ୍ଲବିକ ପଦକ୍ଷେପ ଥିଲା ।

ସରସ୍ୱତୀ ଦେବୀ ଓ ଗୋରା ଗାଆଁ ଗାଆଁରେ ଯେଉଁ ସଂସ୍କାରବାଦୀ କାର୍ଯ୍ୟକ୍ରମ ଓ ସ୍ୱାଧୀନତା ଆନ୍ଦୋଳନ ପାଇଁ ସଚେତନତା ସୃଷ୍ଟି କରିଥିଲେ ତାହା ଥିଲା ଉଲ୍ଲେଖନୀୟ । ଏହା ସହିତ ସେତେବେଳର ପରିବେଶରେ ଝିଅମାନେ ଅତି ଅଳ୍ପ ବୟସରେ ବିବାହ କରି କେତେକ ସ୍ୱାମୀଙ୍କୁ ଜାଣିବା ପୂର୍ବରୁ ବିଧବା ହୋଇ ସାମାଜିକ କଟକଣା ଭିତରେ ଜୀବନ ସାରା ଦୟନୀୟ ଜୀବନ ଅତିବାହିତ କରୁଥିଲେ । ଏହି ସାମାଜିକ ପରିବେଶକୁ ବଦଳାଇବାକୁ ସରସ୍ୱତୀ ଦେବୀ ବିଧବା ବିବାହ ପ୍ରଚଳନ ଓ ବାଲ୍ୟବିବାହ ବନ୍ଦ କରିବାକୁ ଅନେକ ପଦକ୍ଷେପ ନେଇଥିଲେ । ସେହିପରି

ଗାଆଁମାନଙ୍କରେ କେତେକ ମହିଳାଙ୍କୁ ଡାହାଣୀ କହି ସେମାନଙ୍କ ଉପରେ ନାନା ଅତ୍ୟାଚାର ହେଉଥିଲା । ପୁନଶ୍ଚ କୁସଂସ୍କାର ଥିଲା ଯେ ମହିଳାମାନେ ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟପରାଗ ସମୟରେ ଘରକୋଣରେ ରହିବେ, କିଛି କାଟିବେ ନାହିଁ ଓ ଖାଦ୍ୟ ଖାଇବେ ନାହିଁ । ଏହିସବୁ କୁସଂସ୍କାର ଦୂର ପାଇଁ ସରସ୍ୱତୀ ଦେବୀ ନାନା ସଚେତନତା କାର୍ଯ୍ୟକ୍ରମ କରୁଥିଲେ । ଗାଆଁ ଗହଳର ଲୋକଙ୍କ ମାନସିକତାରୁ କୁସଂସ୍କାର ଦୂର କରିବାପାଇଁ ନିଆଁ ଉପରେ ଚାଲିବା କାର୍ଯ୍ୟକ୍ରମ ଗୋରା ଓ ସରସ୍ୱତୀ ଦେବୀ ଆୟୋଜନ କରୁଥିଲେ । ସାମାଜିକ ପରିବର୍ତ୍ତନ ଓ ମହିଳା ସଶକ୍ତିକରଣ କ୍ଷେତ୍ରରେ ସରସ୍ୱତୀ ଦେବୀଙ୍କର କାର୍ଯ୍ୟ ଉଲ୍ଲେଖନୀୟ ଥିଲା । ଏଠାରେ ଦୁଇଟି ଉଦାହରଣ ତାଙ୍କ ଆତ୍ମଜୀବନରୁ ଉଲ୍ଲେଖ କରୁଛି । ନାରୀମାନଙ୍କ ମଧ୍ୟରେ ସ୍ୱାବଲମ୍ବନଶୀଳତା ସୃଷ୍ଟି କରିବା ପାଇଁ ମହିଳାମାନଙ୍କୁ କେତେକ ପ୍ରଶିକ୍ଷଣ ଦେବାକୁ ସରସ୍ୱତୀ ଦେବୀ ପ୍ରୟାସ କରୁଥିଲେ । ମୁଦୁନୁର ଅଞ୍ଚଳରେ ଟେଲରିଂ ଶିକ୍ଷା ଦେବାକୁ ଓ ସେମାନଙ୍କର ନିରକ୍ଷରତା ଦୂର କରିବାକୁ ବହୁ ଉଦ୍ୟମ କରିଥିଲେ । ତାଙ୍କ ସିଲେଇ କେନ୍ଦ୍ରରେ ସଲେଇ ଶିଖୁଥିବା ଜଣେ ମହିଳାଙ୍କୁ ତାଙ୍କ ସ୍ୱାମୀ ବହୁ ମାଡ଼ ମାରିଥିବା ଖବର ପାଇ ସରସ୍ୱତୀ ଦେବୀ ତାଙ୍କ ନିକଟକୁ ଯାଇ ଘଟଣାର ଅନୁସନ୍ଧାନ କରି ଜାଣିଲେ ଯେ ମହିଳା ଜଣକ ସିଲେଇ ଶିକ୍ଷା କରିବାକୁ ସ୍ୱାମୀଙ୍କର ଅନୁମତି ନେଇଥିଲେ । ପରେ ତାଙ୍କ ସ୍ୱାମୀ ଯେତେବେଳେ ଜାଣିଲେ ଯେ ତାଙ୍କ ସ୍ତ୍ରୀ ସିଲେଇ ଶିକ୍ଷା ସହ ଲେଖାପଢ଼ା ବି ଶିଖୁଛନ୍ତି, ଏହା ନିରକ୍ଷର ସ୍ୱାମୀଙ୍କର ସ୍ୱାଭିମାନ ପ୍ରତି ଅସମ୍ମାନଜନକ ମନେହେଲା । ପତ୍ନୀ କାହିଁକି ଲେଖାପଢ଼ା ଶିକ୍ଷା କରୁଛନ୍ତି ଏଥିରେ ଉତ୍‌କ୍ଷିପ୍ତ ହୋଇ ସେ ସ୍ତ୍ରୀଙ୍କୁ ମାଡ଼ ମାରିଲେ । ଅନ୍ୟ ଏକ ଘଟଣାରେ ଅନ୍ୟ ଏକ ଗ୍ରାମରେ ନିଆଁରେ ଚାଲିବାପାଇଁ ସଂସ୍କାରବାଦୀ ସଚେତନତା କାର୍ଯ୍ୟକ୍ରମରେ ଜଣେ ଭଦ୍ରଲୋକ ନିଆଁରେ ଭୟକରି ଚାଲିଲେ ନାହିଁ । ଏହାପରେ ସରସ୍ୱତୀ ଦେବୀ ଓ କେତେକ ମହିଳା ନିଆଁରେ ଚାଲିବା ପରେ ଭଦ୍ରଲୋକଙ୍କର ପତ୍ନୀ ନିଆଁରେ ଚାଲିଲେ, ଯେଉଁଥିରେ ଭଦ୍ରଲୋକଙ୍କୁ କେତେକ ମଜାରେ ଥଟ୍ଟା କରିଥିଲେ । ଏଥିରେ ସେ ଉତ୍‌କ୍ଷିପ୍ତ ହୋଇ ଘରକୁ ଫେରି ପତ୍ନୀକୁ ମାଡ଼ ଦେଲେ ଓ ଏପରିକି ଘରୁ ତଡ଼ି ଦେବାକୁ ଉଦ୍ୟମ କରିଥିଲେ । ଏହିପରି ସାମାଜିକ ସ୍ଥିତି ଥିବା ପରିବେଶରେ ସରସ୍ୱତୀ ଦେବୀ ବିଭିନ୍ନ ପରିବାରକୁ ଯାଇ ଲୋକମାନଙ୍କୁ ବୁଝାଇବା, ସେମାନଙ୍କ ଭିତରୁ ପୁରୁଷ ପ୍ରାଧାନ୍ୟ ମାନସିକତା ଦୂର କରିବା, ନାରୀମାନଙ୍କର ସାମାଜିକ ସମ୍ମାନକୁ ବୃଦ୍ଧି କରିବାରେ ବହୁ ପଦକ୍ଷେପ ନେଇଥିଲେ । ଗୋରା ଓ ସରସ୍ୱତୀଦେବୀ ନିରକ୍ଷରତା ଦୂରୀକରଣ, ନିଶାନିବାରଣ, ମହିଳାମାନଙ୍କ ସାମାଜିକ ସ୍ତରକୁ ଉନ୍ନତ କରିବା ଇତ୍ୟାଦି କ୍ଷେତ୍ରରେ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରିଥିଲେ ।

ମୁଡୁନୁରର କେନ୍ଦ୍ରରେ ଗୋରା ଓ ସରସ୍ୱତୀ ଦେବୀ କାର୍ଯ୍ୟ କରୁଥିବା ବେଳେ ଲୋକମାନଙ୍କ ଭିତରେ ମାନବିକ ଅଧିକାର, ସଂସ୍କାରବାଦୀ ଚେତନା ଓ ଆତ୍ମସମ୍ମାନବୋଧ ପରି ସାମାଜିକ ସଚେତନତା ସୃଷ୍ଟି କରିବା ପାଇଁ ଆଥେଇଷ୍ଟ ସେଣ୍ଟର ବା ନାସ୍ତିକ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ୧୯୪୦ ମସିହାରେ ପ୍ରତିଷ୍ଠିତ ହୋଇଥିବା ନାସ୍ତିକ କେନ୍ଦ୍ର ସ୍ୱାଧୀନତା ପରେ ବିଜୟୱାଡ଼ା ସହରକୁ ସ୍ଥାନାନ୍ତରିତ ହେଲା ।୧୯୪୦ ଠାରୁ ଅଦ୍ୟାବଧି ନାସ୍ତିକ କେନ୍ଦ୍ର ସାମାଜିକ କ୍ରାନ୍ତି, ସମାଜ ସଂସ୍କାର ଓ ସମାଜସେବା କ୍ଷେତ୍ରରେ ଏକ ବିଶିଷ୍ଟ ଅନୁଷ୍ଠାନର ମର୍ଯ୍ୟାଦା ଲାଭ କରିଛି ।

ମହାତ୍ମା ଗାନ୍ଧୀ ଗୋରାଙ୍କ ସମାଜସେବା ଓ ନିରୀଶ୍ୱରବାଦୀ ଜୀବନ ଦର୍ଶନ ବିଷୟରେ ଜାଣିବାର ଅବକାଶ ପାଇ ଗୋରାଙ୍କୁ ସେବା ଗ୍ରାମକୁ ଡାକିଥିଲେ । ଗାନ୍ଧୀଙ୍କର ଆମନ୍ତ୍ରଣରେ ଗୋରା ସପରିବାର ସେବାଗ୍ରାମ ଆଶ୍ରମରେ ୧୯୪୪ରେ ଯାଇ ରହିଲେ । ସେଠାରେ ରହିବା ଭିତରେ ଗୋରାଙ୍କର ନିରୀଶ୍ୱରବାଦୀ ଦର୍ଶନ ଗାନ୍ଧୀଙ୍କର ଦୃଷ୍ଟିଆକର୍ଷଣ କଲା । ଗାନ୍ଧୀ ଓ ଗୋରାଙ୍କ ଭିତରେ ଏହି ପ୍ରସଙ୍ଗରେ ଯାହା କିଛି ଆଲୋଚନା ହୋଇଥିଲା ତାହା ଗୋରାଙ୍କ ଲିଖିତ 'ଗାନ୍ଧୀଙ୍କ ସହ ଜଣେ ନିରୀଶ୍ୱରବାଦୀ' ପୁସ୍ତକରେ ସ୍ଥାନିତ ହୋଇଛି । ଗାନ୍ଧୀଙ୍କର ଅହିଂସା ଓ ସାମାଜିକ ପରିବର୍ତ୍ତନ ପାଇଁ ସତ୍ୟାଗ୍ରହ ଆନ୍ଦୋଳନ ଗୋରାଙ୍କୁ ସ୍ପର୍ଶ କରିଥିଲା । ସେହିପରି ଗୋରାଙ୍କର ମୁକ୍ତ ବିଚାର, ମାନବବାଦୀ ଜୀବନ ଦୃଷ୍ଟି ଓ ସଂସ୍କାରିତ ଚେତନା ଗାନ୍ଧୀଙ୍କର ଦୃଷ୍ଟିଆକର୍ଷଣ କରିଥିଲା । ଗାନ୍ଧୀଙ୍କ ଆଶ୍ରମରେ ଗୋରା କୌଣସି ପ୍ରାର୍ଥନା ସଭାରେ ଅଂଶ ଗ୍ରହଣ କରୁନଥିଲେ । କୁହାଯାଏ ଗୋରାଙ୍କ ପ୍ରଭାବରେ ଈଶ୍ୱର ବିଶ୍ୱାସୀ ଗାନ୍ଧୀ ପରେ 'ସତ୍ୟ ହିଁ ଈଶ୍ୱର' କହିବା ଶ୍ରେୟ ମଣିଥିଲେ । ଗୋରାଙ୍କ ସହ ଏକ ଆଲୋଚନାରେ ଗାନ୍ଧୀଙ୍କର ଏକ ବକ୍ତବ୍ୟ ଥିଲା- ଆମେ ଉଭୟ ସତ୍ୟ ସନ୍ଧାନୀ । ମୋର ଆସ୍ତିକତାବାଦ ଠିକ ଓ ଆପଣଙ୍କର ନିରୀଶ୍ୱରବାଦ ଭୁଲ ତାହା ମୁଁ କହିପାରିବି ନାହିଁ । ତେବେ ଏକ ବିଚାର ଭ୍ରମାତ୍ମକ ଜାଣିବାପରେ ଆମେ ତାହା ପରିବର୍ତ୍ତନ କରିଥାଉ । ମୁଁ ଏହିପରି କେତେବାର ମୋର ମତ ପରିବର୍ତ୍ତନ କରିଛି । ଆପଣ ନିଜ ଆତ୍ମବିଶ୍ୱାସରେ ଅଗ୍ରସର ହୁଅନ୍ତୁ ।

ଗୋରା ଓ ସରସ୍ୱତୀ ଦେବୀ ଉଭୟ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରୁ ଆସିଥିଲେ ବି ସମାଜରୁ ଅସ୍ପୃଶ୍ୟତାର ବ୍ୟାଧିକୁ ଦୂର କରିବାକୁ ନିଜ ପରିବାରରେ ତାହା ପ୍ରୟୋଗ କରିବାକୁ ଚାହିଁଲେ । ନିଜର ବଡ଼ଝିଅ ମନୋରମାକୁ ଜଣେ ଦଳିତ ଯୁବକ ଅର୍ଜ୍ଜୁନଙ୍କ ସହ ବିବାହ ଦେବାକୁ ସ୍ଥିର କଲେ । ଏହା ଗାନ୍ଧୀଙ୍କୁ ଜଣାଇବା ପରେ ଗାନ୍ଧୀ ଚାହିଁଲେ ଯେ ଅର୍ଜ୍ଜୁନ ସେବା ଗ୍ରାମରେ ଦୁଇବର୍ଷ ରହି ତାଲିମ ନେବେ ଓ ସେମାନଙ୍କର ବିବାହ ୧୯୪୮ ମସିହାରେ ଅନୁଷ୍ଠିତ ହେବ । ଏ କ୍ଷେତ୍ରରେ ଗାନ୍ଧୀଙ୍କ ସହ ଗୋରାଙ୍କ

ଆଲୋଚନା ଉଲ୍ଲେଖଯୋଗ୍ୟ । ଆଲୋଚନା ଭିତରେ ଗାନ୍ଧୀ ଜାଣିବାକୁ ପାଇଲେ ଯେ ଅର୍ଜୁନ ବି ଜଣେ ନିରୀଶ୍ୱରବାଦୀ । ତେବେ ଆଶ୍ରମ ଶୃଙ୍ଖଳା ରକ୍ଷା ପାଇଁ ସେ ପ୍ରାର୍ଥନା ସଭାରେ ଯୋଗଦେବେ, କିନ୍ତୁ ପ୍ରାର୍ଥନା ଗାଇବା ନ ଗାଇବା ତାଙ୍କର ଇଚ୍ଛାଧୀନ । ଗାନ୍ଧୀ ଗୋରାଙ୍କୁ ପଚାରିଲେ- ଯଦି ଅର୍ଜୁନ ଆଶ୍ରମରେ ରହିବା ଭିତରେ ଈଶ୍ୱର ବିଶ୍ୱାସୀ ହୁଅନ୍ତି । ଗୋରାଙ୍କର ଉତ୍ତର ଥିଲା- ଜଣେ ଆତ୍ମବିଶ୍ୱାସରୁ ଆସ୍ତିକ ବା ନିରାଶ୍ୱରବାଦୀ ହେବା ଉଚିତ । ଅର୍ଜୁନଙ୍କର ଯଦି ମାନସିକ ପରିବର୍ତ୍ତନ ହୁଏ, ତେବେ ମୁଁ ଏହାକୁ ସ୍ୱାଗତ କରିବି । ଗାନ୍ଧୀଙ୍କର ଉତ୍ତର ଥିଲା-ଆପଣ ଯେ ମତୋନ୍ମତ୍ତ ବା ଫାନାଟିକ୍ ନୁହନ୍ତି ମୁଁ ତାହା ଜାଣେ । ତେବେ ମୁଁ ଅର୍ଜୁନଙ୍କୁ ଆସ୍ତିକ କରିବା ପରିବର୍ତ୍ତେ ଆପଣ ଓ ଅର୍ଜୁନ ମତେ ନିରାଶ୍ୱରବାଦୀ କରିଦେବେ । ଏହାପରେ ଗାନ୍ଧୀ ଖୋଲା ମନରେ ହସିଥିଲେ । ତେବେ ଗାନ୍ଧୀଙ୍କ ସ୍ୱୀକୃତି ଅନୁଯାୟୀ ମନୋରମା ଓ ଅର୍ଜୁନଙ୍କର ବିବାହ ୧୯୪୮ ମାର୍ଚ୍ଚରେ ସେବାଗ୍ରାମରେ ଅନୁଷ୍ଠିତ ହୋଇଥିଲା, ଯଦିବା ଗାନ୍ଧୀ ସେତେବେଳକୁ ସଂସାରରୁ ବିଦାୟ ନେଇସାରିଥିଲେ ।

ସରସ୍ୱତୀ ଦେବୀ ଓ ଗୋରା ଜୀବନସାରା ଗାନ୍ଧୀବାଦୀ ମୂଲ୍ୟବୋଧ ଓ ନିରୀଶ୍ୱରବାଦରେ ଆସ୍ଥା ରଖି ସାମାଜିକ ପରିବର୍ତ୍ତନ ପାଇଁ ଜୀବନକୁ ଉତ୍ସର୍ଗ କରିଥିଲେ । ବହୁ ଘାତ, ପ୍ରତିଘାତ, ସାମାଜିକ କଟକଣା, ପାରିବାରିକ ବିରୋଧ ସତ୍ତ୍ୱେ ଗୋରା ଓ ସରସ୍ୱତୀ ଦେବୀ ମାନବିକ ମୂଲ୍ୟବୋଧ, ସାମାଜିକ ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ଆଦର୍ଶକୁ ପ୍ରସାର କରିବାକୁ କାଯ୍ୟକରିଥିଲେ । ଗୋରାଙ୍କର ଦେହାନ୍ତ ୧୯୭୫ ମସିହାରେ ହେବାପରେ ସରସ୍ୱତୀ ଦେବୀ ସାମାଜିକ କ୍ରାନ୍ତିର ବାର୍ତ୍ତାକୁ ଆଗକୁ ନେଇଥିଲେ । ୯୪ ବର୍ଷରେ ୨୦୦୬ରେ ତାଙ୍କର ଦେହାନ୍ତ ହେଲା । ଜୀବନର ଶେଷ ପର୍ଯ୍ୟନ୍ତ କର୍ମରତ ରହି ଏକ ଭେଦଭାବ ରହିତ ସାମାଜିକ ପରିବେଶ, ମାନବିକ ମର୍ଯ୍ୟାଦା ଓ ସଂପ୍ରୀତିର ବାର୍ତ୍ତାବହ ହୋଇଥିଲେ । ଗୋରା ଓ ସରସ୍ୱତୀ ଦେବୀ ଗଠନ କରିଥିବା ଅନୁଷ୍ଠାନମାନ ଆନ୍ତର୍ଜାତିକ ସ୍ତରରେ ସମାଜ ସଂସ୍କାର କ୍ଷେତ୍ରରେ ଏବେ ମଧ୍ୟ ଆଲୋକବର୍ତ୍ତିକା ହୋଇ ରହିଛି । (ପ୍ରଥମଭାଗ) (୪.୧୧.୧୧)



# ସାମାଜିକ କ୍ରାନ୍ତିର ସହଯୋଦ୍ଧା: ସରସ୍ୱତୀ ଗୋରା

ସରସ୍ୱତୀ ଦେବୀ (୧୯୧୨-୨୦୦୬) ଓ ତାଙ୍କର ସ୍ୱାମୀ ଗୋରା (୧୯୦୨-୧୯୭୫) ଗୋଟିଏ ଜୀବନ ଦର୍ଶନରେ ଗଭୀର ଆସ୍ଥା ରଖି ସେମାନେ ସମାଜ ସଂସ୍କାରରେ ବ୍ରତୀ ହୋଇଥିଲେ । ସେମାନଙ୍କ ଦ୍ୱାରା ସ୍ଥାପିତ ଆଥେଇଷ୍ଟ ସେଣ୍ଟର ବା ନାସ୍ତିକ କେନ୍ଦ୍ର ସମାଜସେବା ଓ ସମାଜ ସଂସ୍କାର କ୍ଷେତ୍ରରେ ନୂଆ ଦିଗନ୍ତ ସୃଷ୍ଟି କରିଛି । ନାସ୍ତିକ କେନ୍ଦ୍ର ନିୟନ୍ତ୍ରଣରେ ବିଭିନ୍ନ ସଂଗଠନ କାର୍ଯ୍ୟ କରୁଛି । ତେବେ ସମସ୍ତ ସଂଗଠନର ଗୋଟିଏ ମୌଳିକ ଆଭିମୁଖ୍ୟ ଥିଲା ଜୀବନର ଗୁଣାତ୍ମକ ଉତ୍କର୍ଷ । ସରସ୍ୱତୀ ଦେବୀଙ୍କର ନାରା ଥିଲା- 'ଜୟ ଇନ୍‌ସାନ' ଯାହାର ଅର୍ଥ ହେଉଛି ମାନବିକତାର ଜୟ ।

ଗୋରା ନିରୀଶ୍ୱରବାଦର ଏକ ସୈଦ୍ଧାନ୍ତିକ ବ୍ୟାଖ୍ୟା ଦେଇଛନ୍ତି । ଏହାର ପ୍ରଚଳିତ ଅର୍ଥଠାରୁ ଦୂରେଇ ଯାଇ ସେ ଏହାର ଏକ ସକାରାତ୍ମକ ତାତ୍ପର୍ଯ୍ୟ ଦେଖାଇଛନ୍ତି । ଗୋରାଙ୍କ ରଚିତ ବିଭିନ୍ନ ପୁସ୍ତକ ମଧ୍ୟରୁ 'ସକାରାତ୍ମକ ନିରୀଶ୍ୱରବାଦ (ପଜିଟିଭି ଆଥେଇଜିମ)' ଏକ ଚିନ୍ତା- ଉଦ୍ରେକକାରୀ କୃତି । ଏହି ପୁସ୍ତକଟିରେ ସେ ନିରୀଶ୍ୱରବାଦୀ ଦର୍ଶନ, ନୀତିବୋଧ, ରାଜନୀତି, ଅର୍ଥନୀତି, ପ୍ରଯୁକ୍ତି, ସୌନ୍ଦର୍ଯ୍ୟବୋଧ ଓ ଜୀବନଧାରାର ବିଶ୍ଳେଷଣ କରି ପ୍ରତ୍ୟେକ କ୍ଷେତ୍ରରେ ମାନବବାଦୀ- ନିରୀଶ୍ୱରବାଦୀ ଦୃଷ୍ଟିକୋଣକୁ ବ୍ୟକ୍ତ କରିଛନ୍ତି । ତାଙ୍କ ମତରେ ଐତିହାସିକ ଦୃଷ୍ଟିକୋଣରୁ ସଭ୍ୟତାର ବିକାଶ ସହ ଜଗତ ଓ ଜୀବନ ନେଇ ସମାଜର ବୁଦ୍ଧିମାନ ବ୍ୟକ୍ତିଗଣ ନାନା ଅବବୋଧ ପ୍ରକାଶ କରିଛନ୍ତି । ସଭ୍ୟତାର ଆରମ୍ଭ ପର୍ବରେ ମଣିଷ ପ୍ରାକୃତିକ ଘଟଣାର ରହସ୍ୟକୁ ଦେଖି ଶଙ୍କିତ ଓ ବିମୋହିତ ହୋଇଛି । ମଣିଷର ପରିବେଶ ଜନିତ ଜ୍ଞାନ ଅତି ସୀମିତ ଥିବାରୁ ମନୁଷ୍ୟ ପ୍ରାକୃତିକ ଶକ୍ତି ପାଖରେ ନିଜକୁ ସମର୍ପଣ କରିଛି । ଭୟରେ ସେସବୁକୁ ପୂଜା ଓ ପ୍ରାର୍ଥନା କରିଛି । ମଣିଷର ସାମାଜିକ ପ୍ରବୃତ୍ତି ଯୋଗୁଁ କାଳକ୍ରମେ କ୍ଷୁଦ୍ର ଦଳରୁ ଆରମ୍ଭ କରି ପାରିବାରିକ, ଗୋଷ୍ଠୀଗତ ଓ ବୃହତ୍ତର ସାମାଜିକ ପରିବେଶର ଅଭ୍ୟୁଦୟ ହୋଇଛି । ନାନା ଗୋଷ୍ଠୀ ଭିତରେ ଭାଷାର ବିକାଶ ହୋଇଛି ଓ କାଳକ୍ରମେ ସାମାଜିକ ଜୀବନଧାରାରେ ବିଭିନ୍ନ ପରମ୍ପରା, ନୀତିବୋଧ, ସାମାଜିକ ସଂଗଠନ, ରାଜନୈତିକ ବ୍ୟବସ୍ଥା ଓ ଧର୍ମ ଇତ୍ୟାଦିର ଭାବନା ସୃଷ୍ଟି ହୋଇଛି । ସମାଜ ଯେତିକି ଦୃଢ ଭିତ୍ତି

ନେଇଛି ସାମାଜିକ ଜୀବନ ପ୍ରବାହରେ ସାଂସ୍କୃତିକ ଚେତନା, ଶିକ୍ଷା, ସାହିତ୍ୟ, ଦର୍ଶନର ଧାରା ସୃଷ୍ଟି ହୋଇଛି । ପ୍ରାକୃତିକ ତଥା ଆଞ୍ଚଳିକ ଭିନ୍ନତା ମଧ୍ୟ ଦେଇ ମଣିଷର ଖାଦ୍ୟ, ପୋଷାକ, ଜୀବନଶୈଳୀ, ସାମାଜିକ ଦୃଶ୍ୟପଟ, ଧାର୍ମିକ ଚେତନା ଭିନ୍ନ ହୋଇଛି ।

ଗୋରାଙ୍କ ମତରେ ପରିବେଶ ପ୍ରତି ପ୍ରତିକ୍ରିୟା ପ୍ରକାଶ କରିବା ମଣିଷର ଏକ ସହଜାତ ଗୁଣ । ତେବେ ଜଗତ ଓ ଜୀବନ ପ୍ରତି ମଣିଷର ପ୍ରତିକ୍ରିୟା ଦୁଇ ପ୍ରକାରର ହୋଇପାରେ । ଜାଗତିକ ପରିବେଶ ପାଖରେ ନିଜକୁ ଅସହାୟ ମନେକରି ତା' ପାଖରେ ସେ ନିଜକୁ ସମର୍ପଣ କରିପାରେ, କିମ୍ବା ନିଜର ପରିବେଶ ପାଖରେ ନିଜର ଅସ୍ତିତ୍ୱକୁ ଜାହିର କରି ସେ ତାହାକୁ ନିଜର ବିଚାର ଓ ଜ୍ଞାନ ଭିତରେ ନିୟନ୍ତ୍ରଣରେ ରଖିବାକୁ ପ୍ରୟାସ କରିପାରେ । ଯେତେବେଳେ ପରିବେଶ ପାଖରେ ମଣିଷ ନିଜକୁ ସମର୍ପଣ କରିବାକୁ ପ୍ରୟାସ କରିଛି, ସେତେବେଳେ ସେହି ମାନସିକତାରୁ ସେ କେତେ ଦେବ, ଦେବୀ, ଈଶ୍ୱର, ଅଲୌକିକ ବା ଅଦୃଶ୍ୟମାନ ଶକ୍ତିର ପରିକଳ୍ପନା କରିଛି । ନିଜକୁ ଏହି ଶକ୍ତି ପାଖରେ କ୍ରୀଡନକ ମନେକରି ନିଜର ମଙ୍ଗଳ ପାଇଁ ସେମାନଙ୍କୁ ପୂଜା, ଆରାଧନା, ପ୍ରାର୍ଥନା ଇତ୍ୟାଦି କରି ନିଜର ଭୟ ଦୂର କରିବାକୁ ପ୍ରୟାସ କରିଛି । ଅପରପକ୍ଷରେ ମଣିଷ ଯେତେବେଳେ କୌତୂହଳୀ ହୋଇଛି, ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିବାକୁ ପ୍ରୟାସ କରିଛି, ପରିବେଶର ବିଭିନ୍ନ ଘଟଣାବଳୀକୁ ଅବବୋଧ କରି ନିଜର ଜୀବନଧାରାରେ ସେ ସବୁକୁ ବିନିଯୋଗ କରିବାକୁ ଉଦ୍ୟମ କରିଛି ସେତେବେଳେ ତାର ଜ୍ଞାନର ବିକାଶ ହୋଇଛି । ଜ୍ଞାନର ବିକାଶ ସହ ନୂଆ ନୂଆ ବୌଦ୍ଧିକ ଆଲୋଡ଼ନ, ନୂଆ ନୂଆ ପ୍ରଯୁକ୍ତି ଓ ସଭ୍ୟ ମୂଲ୍ୟବୋଧର କ୍ରମବିକାଶ ଘଟିଛି । ଅର୍ଥାତ୍ ପ୍ରକୃତିକୁ ଅବବୋଧ କରି ତାହାକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ଭିତରୁ ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି କ୍ରମୋନ୍ନତ ଭାବେ ବିକାଶଲାଭ କରିଛି । ଏହାଦ୍ୱାରା ସଭ୍ୟତା ଆଗକୁ ଯାଇଛି ଓ ଏହି ଧାରା ଅବିରତ ଭାବେ ଆଦିମ ଅବସ୍ଥାରୁ ଏପର୍ଯ୍ୟନ୍ତ ଚାଲିଆସିଛି ।

ଜଗତ ପ୍ରତି ଏହି ଦୁଇ ଦୃଷ୍ଟିଭଙ୍ଗୀକୁ ଗୋରା ଯଥାକ୍ରମେ ଆସ୍ତିକତାବାଦ ଓ ନିରୀଶ୍ୱରବାଦ ଭାବରେ ନାମିତ କରିଛନ୍ତି । ବସ୍ତୁତଃ ଆସ୍ତିକତାବାଦକୁ ଏକ ସମର୍ପଣ ଜନିତ ଦୃଷ୍ଟିଭଙ୍ଗୀ ଭାବେ ଗୋରା ନେବାବେଳେ ନିରୀଶ୍ୱରବାଦକୁ ପରିବେଶ ଉପରେ ନିଜର କର୍ତ୍ତୃତ୍ୱବୋଧ ଭାବେ ଗ୍ରହଣ କରିଛନ୍ତି । ସମର୍ପଣ ଜନିତ ଦୃଷ୍ଟିକୋଣରେ ମଣିଷ ନିଜକୁ ଅସହାୟ ଓ ଅଧସ୍ତନ ମନେକରିଛି । ମଣିଷର ଅଜ୍ଞତା ଓ ନିରାପଦବିହୀନ ପରିବେଶରୁ ଏହି ଅଧସ୍ତନ ଜନିତ ମାନସିକତାର ଉଦ୍ଭବ ହୋଇଛି ଯାହା ସମ୍ପୂର୍ଣ୍ଣ ମନସ୍ତାତ୍ତ୍ୱିକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅପରପକ୍ଷରେ ପରିବେଶ ଉପରେ ନିଜର ନିୟନ୍ତ୍ରଣ ସହ ଏକ ଗୁଣାତ୍ମକ ଓ ପ୍ରୀତିପୂର୍ଣ୍ଣ ଜୀବନର ବିକାଶ କରିବାର ପ୍ରୟାସ ହେଉଛି

ନିରୀଶ୍ୱରବାଦ । ଏକ ଆଧାରହୀନ ବିଶ୍ୱାସ ଓ ତାହାର ଅନ୍ତର୍ନିହିତ ଦୁର୍ବଳତାକୁ ପ୍ରକାଶ କରି ଜୀବନ ପ୍ରତି ଏକ ସକାରାତ୍ମକ ଜୀବନଦୃଷ୍ଟି ପୋଷଣକୁ ଗୋରା ନିରୀଶ୍ୱରବାଦ ଭାବେ ନାମିତ କରିଛନ୍ତି । ଆସ୍ତିକତାବାଦ ଏକ ମାନସିକ ଦାସତ୍ୱ, ଅଥଚ ନିରୀଶ୍ୱରବାଦ ବ୍ୟକ୍ତି ସ୍ୱତନ୍ତ୍ରତା ଓ ମାନବିକ ମହତ୍ତ୍ୱର ପ୍ରତୀକ ।

ଗୋରା ନିରୀଶ୍ୱରବାଦ ଉପରେ ଗଭୀର ଆତ୍ମପ୍ରତ୍ୟୟରୁ ତାହାର ଯେଉଁ ବୌଦ୍ଧିକ ଅନୁଶୀଳନ କରିଛନ୍ତି ତାହା ଦର୍ଶନ ପରିସରର ବିଷୟ । ତେବେ ନିରୀଶ୍ୱରବାଦକୁ ଏକ ଜୀବନଦର୍ଶନ ଭାବେ ନେଇ ତାହାକୁ ବ୍ୟାବହାରିକ ଜୀବନର ଆଦର୍ଶ କରିବା ଓ ସେହି ଆଦର୍ଶରେ ସାମାଜିକ କ୍ରାନ୍ତିର ଭିତ୍ତି ପ୍ରସ୍ତୁତ କରିବାରେ ଗୋରା ଏକ ଅଦ୍ୱିତୀୟ ବ୍ୟକ୍ତିତ୍ୱ । ତେବେ ଗୋରା ଓ ସରସ୍ୱତୀ ଦେବୀ ଜୀବନବ୍ୟାପୀ ନିଜର ଆତ୍ମବିଶ୍ୱାସକୁ ନେଇ ସମତା, ସଂସ୍କାର, ଶିକ୍ଷାର ପ୍ରସାର, ମାନବିକ ମର୍ଯ୍ୟାଦା ଓ ଅଧିକାର ନେଇ ଯେଉଁ କ୍ରାନ୍ତି ଆଣିବାକୁ ପ୍ରୟାସ କରିଛନ୍ତି ତାହା ପ୍ରଣିଧାନଯୋଗ୍ୟ ।

ଗୋରାଙ୍କ ଦେହାନ୍ତ ପରେ ସରସ୍ୱତୀ ଦେବୀ ଗୋରାଙ୍କ ପ୍ରଦର୍ଶିତ ପନ୍ଥାରେ ସମାଜ ସଂସ୍କାର ଧାରାକୁ ଆଗକୁ ନେଇଥିଲେ । ତାଙ୍କର ସମସ୍ତ ପରିବାର, ପୁଅ, ବୋହୂ, ଝିଅ, ଜ୍ୱାଇଁ, ନାତି, ନାତୁଣୀ ତିନି ପୁରୁଷ ଧରି ନାସ୍ତିକ କେନ୍ଦ୍ର ସାହାଯ୍ୟରେ ସାମାଜିକ ସଂସ୍କାର କ୍ଷେତ୍ରରେ ବ୍ରତୀ ହୋଇଛନ୍ତି । ଯେଉଁ ବ୍ୟବସ୍ଥା ଭାବଧାରା ମାନବିକ ମର୍ଯ୍ୟାଦାର ପରିପନ୍ଥୀ, ସରସ୍ୱତୀ ଦେବୀ ତାହାକୁ ବିରୋଧ କରିଛନ୍ତି । ଏଠାରେ ନାସ୍ତିକ କେନ୍ଦ୍ରର କେତେକ ସମାଜସେବା କାର୍ଯ୍ୟର ସୂଚନା ଦିଆଯାଇପାରେ । ଆନ୍ଧ୍ର ପ୍ରଦେଶର ବିଭିନ୍ନ ମନ୍ଦିର ମାନଙ୍କରେ ଯୋଗିନୀ ପ୍ରଥା ଦୀର୍ଘ ଦିନ ଧରି ରହିଥିଲା । ଯୋଗିନୀମାନେ ଦେବଦାସୀ ଭଳି ମନ୍ଦିରର ଦେବତାଙ୍କୁ ବିବାହ କରୁଥିଲେ ଓ ଅସମ୍ମାନଜନକ ଭାବେ ଜୀବନ ବଞ୍ଚୁଥିଲେ । ପରମ୍ପରା ଅନୁଯାୟୀ ଯୋଗିନୀମାନେ ବିବାହ କରିପାରିବେ ନାହିଁ । ସେମାନେ ପ୍ରାୟତଃ ପୂଜକ ଗୋଷ୍ଠୀ ଦ୍ୱାରା ଶୋଷିତ ହେଉଥିଲେ । ବିବାହ କରିବା ଓ ଏକ ପାରିବାରିକ ଜୀବନ ନିର୍ବାହ କରିବା ବ୍ୟକ୍ତିର ଏକ ମୌଳିକ ଅଧିକାର । ସରସ୍ୱତୀ ଦେବୀଙ୍କ ନେତୃତ୍ୱରେ ନାସ୍ତିକ କେନ୍ଦ୍ର ଜନଚେତନା ସୃଷ୍ଟି କରି ବହୁ ଯୋଗିନୀମାନଙ୍କୁ ଉଦ୍ଧାର କରିଛି । ସେମାନଙ୍କୁ ବିବାହ ଦେଇ ସମାଜର ମୁଖ୍ୟ ସ୍ରୋତରେ ମିଶାଇ ଆତ୍ମ ମର୍ଯ୍ୟାଦାର ସହ ବଞ୍ଚିବାରେ ସାହାଯ୍ୟ କରିଛି । ଧାର୍ମିକ ରକ୍ଷଣଶୀଳତାକୁ ବିରୋଧକରି ମାନବବାଦୀ ଜୀବନଦୃଷ୍ଟି ଓ ବ୍ୟକ୍ତିମର୍ଯ୍ୟାଦା ଜନିତ ମୂଲ୍ୟବୋଧ ପ୍ରସାର କ୍ଷେତ୍ରରେ ନାସ୍ତିକ କେନ୍ଦ୍ର ଉଲ୍ଲେଖନୀୟ କାର୍ଯ୍ୟ କରିଆସୁଛି ।

ସମାଜର ଯେଉଁ ବ୍ୟକ୍ତିମାନେ କୌଣସି ପରିସ୍ଥିତିରେ ପଡି ବିଭିନ୍ନ ଅପରାଧରେ ସଂପୃକ୍ତ ହୋଇ ଜେଲରେ ବନ୍ଦୀ ଜୀବନ ବିତାଉଛନ୍ତି ସେମାନଙ୍କର ପରିସ୍ଥିତିକୁ ବୁଝି

ସେମାନଙ୍କୁ ସଂସ୍କାରିତ ବ୍ୟକ୍ତି କରିବାରେ ନାସ୍ତିକ କେନ୍ଦ୍ର ନାନା କାର୍ଯ୍ୟ ହାତକୁ ନେଇ ଆସିଛି । ବିଶେଷତଃ ମହିଳାମାନେ ଜେଲରୁ ଖଲାସ ହେବା ପରେ ଯେଉଁ ପରି ସାମାଜିକ କଟାକ୍ଷର ସମ୍ମୁଖୀନ ହୁଅନ୍ତି, ତାହାକୁ ଦୂର କରି ସେମାନଙ୍କୁ ସମ୍ମାନର ସହ ବଞ୍ଚିବାରେ ନାସ୍ତିକ କେନ୍ଦ୍ରର "ସଂସ୍କାର" କାର୍ଯ୍ୟକ୍ରମ ଉଲ୍ଲେଖନୀୟ । କେହି ଜନ୍ମରୁ ଅପରାଧୀ ନୁହେଁ । ବୈଷମ୍ୟପୂର୍ଣ୍ଣ ସାମାଜିକ ପରିବେଶ, ଶୋଷଣ, ଅନ୍ୟାୟର ଶିକାର ହେଉଥିବା ବ୍ୟକ୍ତି ପ୍ରତିକ୍ରିୟାଶୀଳ ହୋଇ ବେଳକେ ଅପରାଧମୂଳକ କାର୍ଯ୍ୟରେ ସଂପୃକ୍ତ ହେବା ଏକ ସାଧାରଣ ମନସ୍ତତ୍ତ୍ୱ । ସମାଜର ବହୁ ଅପରାଧୀମାନଙ୍କୁ ସ୍ୱାବଲମ୍ବୀ କରାଇ ସାମାଜିକ ଜୀବନ ସ୍ରୋତରେ ସୁସ୍ଥ ନାଗରିକ କରି ମିଶାଇବାରେ ନାସ୍ତିକ କେନ୍ଦ୍ରର କାର୍ଯ୍ୟ ଉଲ୍ଲେଖନୀୟ ।

ପରାଧୀନ ଭାରତରେ ଗ୍ରାମସ୍ୱରାଜର ଯେଉଁ ସ୍ୱପ୍ନ ଥିଲା ଅର୍ଥାତ୍ ପ୍ରତ୍ୟେକ ଗ୍ରାମର ଜନଗଣ ସ୍ୱାବଲମ୍ବୀ ହୋଇ ବଞ୍ଚିବେ, କୌଣସି ଭେଦଭାବ ରଖିବେ ନାହିଁ, ତାହାକୁ ସରସ୍ୱତୀ ଦେବୀଙ୍କ ନେତୃତ୍ୱରେ ନାସ୍ତିକ କେନ୍ଦ୍ର ଶତାଧିକ ଗ୍ରାମରେ ପ୍ରୟୋଗ କରିଛି । "ଆର୍ଥିକ ସମତାମଣ୍ଡଳ" ନାମକ ଏକ ସଂଗଠନ ଜରିଆରେ ଗ୍ରାମ ମାନଙ୍କରେ ପୁନର୍ଗଠନ କାର୍ଯ୍ୟକ୍ରମ ନାସ୍ତିକ କେନ୍ଦ୍ର କରିଆସିଛି । ସେହିପରି କୌଣସି ପ୍ରାକୃତିକ ଦୁର୍ବିପାକ ସମୟରେ ଜନଗଣଙ୍କୁ ସାହାଯ୍ୟ କରିବାରେ ନାସ୍ତିକ କେନ୍ଦ୍ର ନାନା ଜନମଙ୍ଗଳ କାର୍ଯ୍ୟ କରିଆସୁଛି । ଗ୍ରାମର ମହିଳାମାନଙ୍କୁ ସ୍ୱାବଲମ୍ବୀ କରିବା ପାଇଁ "ବାସବ୍ୟ ମହିଳା ମଣ୍ଡଳୀ" ଜରିଆରେ ଶତାଧିକ ମହିଳାଙ୍କୁ ବିଭିନ୍ନ ବୃତ୍ତିଗତ ପ୍ରଶିକ୍ଷଣ ଦେଇ ସ୍ୱାବଲମ୍ବୀ କରିବାରେ ସହାୟକ ହୋଇଛି । ବିଶେଷକରି ସମାଜରେ ଆର୍ଥିକ ସ୍ତରରେ ଦୁର୍ବଳ ଥିବା ମହିଳାମାନଙ୍କୁ ରୋଜଗାରକ୍ଷମ କରିବାରେ ସହାୟତା କରିଆସିଛି । ବିଜ୍ଞାନ ପ୍ରଦର୍ଶନୀ, ଆଥେଇଷ୍ଟ ଷ୍ଟଡି କ୍ୟାମ୍ପମାନ କରି ଯୁବକମାନଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବାକୁ ଏହା ପ୍ରଯତ୍ନ କରିଆସୁଛି । ଏକ ଜାତିବିହୀନ ସମାଜର ବିକାଶ ପାଇଁ ଆନ୍ତର୍ଜାତିକ ବିବାହକୁ ପ୍ରୋତ୍ସାହନ ଦେଇଆସିଛି । ଏସବୁ ସହ ନାସ୍ତିକ କେନ୍ଦ୍ର ସହ ସଂପୃକ୍ତ ଏକ ଚିକିତ୍ସାଳୟରେ ଜନଗଣଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଆସୁଛି । ଗୋରା ଓ ସରସ୍ୱତୀ ଦେବୀଙ୍କ ପୁଅ ବିଶିଷ୍ଟ ଡାକ୍ତର ସମରମ୍ ଡାକ୍ତରଖାନା ପରିଚାଳନା କରୁଛନ୍ତି । ଏହିପରି ନାନାବିଧ ସମାଜସେବା ମୂଳକ କାର୍ଯ୍ୟ ବିଭିନ୍ନ ନାମରେ ନାସ୍ତିକ କେନ୍ଦ୍ରଦ୍ୱାରା ପରିଚାଳିତ ହେଉଛି । ଗୋରା ଓ ସରସ୍ୱତୀ ଦେବୀଙ୍କ ଆଦର୍ଶ ବା ଲିଗାସିକୁ ନାସ୍ତିକ କେନ୍ଦ୍ରର ଛତ୍ରଛାୟା ତଳେ ବିଭିନ୍ନ ସଂଗଠନ ଜରିଆରେ କରାଯାଉଛି ।

ସରସ୍ୱତୀ ଦେବୀ ନିଜର ଉଲ୍ଲେଖନୀୟ ସମାଜସେବା ପାଇଁ ବହୁ ଜାତୀୟ ତଥା ଆନ୍ତର୍ଜାତିକ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ତାହା ମଧ୍ୟରେ ଜି.ଡି ବିରଳା ଆନ୍ତର୍ଜାତିକ ପୁରସ୍କାର, ଜାନକୀ ଦେବୀ ବଜାଜ ସମ୍ମାନ, ଜମୁନାଲାଲ ବଜାଜ ଆୱାର୍ଡ,

ଚଲାଗୁଲା ପୁରସ୍କାର, ବାସବ ଜାତୀୟ ପୁରସ୍କାର, ନାମସ୍ୱାମୀ ପୁରସ୍କାର ଇତ୍ୟାଦି ଅନ୍ତର୍ଭୁକ୍ତ । ନାସ୍ତିକ କେନ୍ଦ୍ରର ଉଲ୍ଲେଖନୀୟ ସମାଜ ସେବା, ମାନବବାଦୀ କାର୍ଯ୍ୟସୂଚୀ ଓ ବୈଜ୍ଞାନିକ ସଚେତନତା ପାଇଁ ଇଣ୍ଟରନ୍ୟାସନାଲ ହ୍ୟୁମାନିଷ୍ଟ ଆଣ୍ଡ ଏଥିକାଲ ୟୁନିୟନ ଆୱାର୍ଡ ପରି ଆନ୍ତର୍ଜାତିକ ସମ୍ମାନ ମଧ୍ୟ ଏହାକୁ ମିଳିଛି । ଗୋରା ଓ ସରସ୍ୱତୀ ଦେବୀଙ୍କର ବଡ ପୁଅ ଲବଣମ୍ ଜଣେ ବିଶିଷ୍ଟ ଗାନ୍ଧୀବାଦୀ ନିରୀଶ୍ୱରବାଦୀ ଭାବେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପରିଚିତ ହୋଇଛନ୍ତି । ଲବଣମ ବି ଜମୁନାଲାଲ ବଜାଜ ଆୱାର୍ଡ ପରି ବହୁ ସମ୍ମାନଜନକ ପୁରସ୍କାର ତାଙ୍କର ଉତ୍ସର୍ଗୀକୃତ ସମାଜସେବା ପାଇଁ ପାଇଛନ୍ତି ।

ନାସ୍ତିକ କେନ୍ଦ୍ର ଗୋରାଙ୍କ ସମୟରୁ ବହୁ ଜାତୀୟ ତଥା ଆନ୍ତର୍ଜାତିକ ସମ୍ମିଳନୀ ଆୟୋଜନ କରିଆସିଛି । ସାରା ବିଶ୍ୱର ନିରୀଶ୍ୱରବାଦୀ, ହେତୁବାଦୀ, ମାନବବାଦୀ, ସାମାଜିକ ନ୍ୟାୟ ଆନ୍ଦୋଳନ କର୍ମୀ ତଥା ମାନବିକ ଅଧିକାର ପ୍ରବକ୍ତାମାନଙ୍କୁ ନେଇ ବହୁ ସମ୍ମିଳନୀ ଓ କର୍ମଶାଳା ଆୟୋଜନ କରିଆସିଛି । ତିନି, ଚାରି ପୁରୁଷ ଧରି ଗୋରା ଓ ସରସ୍ୱତୀ ଦେବୀଙ୍କ ଆଦର୍ଶ ପରିବାର ସ୍ତରରୁ ବିସ୍ତାରିତ ହୋଇ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିପାରିଛି । ଗୋରାଙ୍କ ସମୟରୁ ନାସ୍ତିକ କେନ୍ଦ୍ରଦ୍ୱାରା ଇଂରାଜୀ ଭାଷାରେ 'ଦି ଆଥେଇଷ୍ଟ' ନାମରେ ଏକ ମାସିକ ପତ୍ରିକା ଗୋରା ଓ ସରସ୍ୱତୀ ଦେବୀଙ୍କ ପୁଅ ଡ. ବିଜୟମଙ୍କ ଦ୍ୱାରା ପ୍ରକାଶ ପାଇ ଆସୁଛି ।

ଗୋରା ଓ ସରସ୍ୱତୀ ଦେବୀଙ୍କ ନାମ ସହିତ ନିରୀଶ୍ୱରବାଦ ଅଭିନ୍ନ ହୋଇଯାଇଛି । ସାମାଜିକ ନ୍ୟାୟ, ସମତା, ମାନବିକ ମର୍ଯ୍ୟାଦା, ଅର୍ଥନୈତିକ ବିକାଶ ସହ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ପାଇଁ ଗୋରା ଓ ସରସ୍ୱତୀ ଦେବୀ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି । ସରଳ ଜୀବନ, ସାଧୁତା, ଭ୍ରାତୃଭାବ ଓ ମାନବିକ ସଂପ୍ରୀତିର ମହାନ ଆଦର୍ଶ ସେମାନେ ସୃଷ୍ଟି କରିଛନ୍ତି । ସରସ୍ୱତୀ ଦେବୀ ସମସ୍ତ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଯାଇ ମାନବିକତାର ସର୍ବଦା ଜୟଗାନ କରିଆସିଛନ୍ତି । ଗୋରାଙ୍କ ସକାରାତ୍ମକ ନିରୀଶ୍ୱରବାଦ ଓ ସରସ୍ୱତୀ ଦେବୀଙ୍କର ଜୟ ଇନ୍‌ସାନ ସାମାଜିକ କ୍ରାନ୍ତିର ନୂଆ ଦିଗନ୍ତ ସୃଷ୍ଟି କରିଛି । (୧୦.୧୧.୧୧)



# ଭାରତର ଚିତ୍ର ଓ ମ୍ୟାକଲେ

ସମାଜ, ସଂସ୍କୃତି, ସଭ୍ୟତା, ଇତିହାସ ପ୍ରତ୍ୟେକ କ୍ଷେତ୍ରରେ ଏକ ନିରପେକ୍ଷ ଅଧ୍ୟୟନ ପାଇଁ ଆବଶ୍ୟକ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ଯେଉଁଠି ଭାବ ପ୍ରବଣତା ଓ ଉଗ୍ର ଜାତୀୟତାର ପ୍ରାବଲ୍ୟ ରହେ ସେଠାରେ ରୁଦ୍ଧ ମାନସିକତା ଆସିଥାଏ । ରୁଦ୍ଧ ମାନସିକତାରେ ଆବଦ୍ଧ ହେଲେ ନାନା ଅପସିଦ୍ଧାନ୍ତ ସୃଷ୍ଟି ହୁଏ । ଅପସିଦ୍ଧାନ୍ତରୁ ନାନାଭ୍ରମର ଉତ୍ପତ୍ତି ହୋଇ ଜ୍ଞାନର ପ୍ରତିବନ୍ଧକ ହୋଇଥାଏ । ନିଜର ଭାଷା, ଧର୍ମ, ସଂସ୍କୃତି ଓ ଜାତୀୟତାକୁ ନେଇ ଆବେଗ ରହିପାରେ କିନ୍ତୁ ଆବେଗ ଯଦି ଅନ୍ଧସଂସ୍କାର ଓ ସଂକୀର୍ଣ୍ଣ ମାନସିକତା ସୃଷ୍ଟିକରେ ତାହା ବୌଦ୍ଧିକ ଜିଜ୍ଞାସା କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥାଏ । ଯେଉଁଠି ରୁଦ୍ଧମାନସିକତା ରହେ, ସେଠାରେ ବାସ୍ତବତାକୁ ସ୍ୱୀକାର କରାଯାଏ ନାହିଁ । ବାସ୍ତବତାକୁ ସ୍ୱୀକାର ନ କଲେ ନିଜ ସଭ୍ୟତା, ସଂସ୍କୃତି ପରମ୍ପରା ଓ ସାମାଜିକ ଚଳଣିରୁ ଆବର୍ଜନା ଗୁଡ଼ିକୁ ଦୂର କରିବାର ସତ୍‌ସଂକଳ୍ପ ଆସି ନଥାଏ ।

ଗୋଟିଏ ସଭ୍ୟତା ଯେତିକି ପୁରାତନ ତାହା ସେତିକି ମହାନ୍ ବୋଲି କେତେକ ବିଶ୍ୱାସ କରନ୍ତି । କୌଣସି ସଭ୍ୟତାର ପ୍ରାଚୀନତା ଓ ତାହାର ଜନଗଣଙ୍କର ଜୀବନର ଗୁଣାତ୍ମକମାନ ମଧ୍ୟରେ ପାର୍ଥକ୍ୟ ରହିଛି । ଅର୍ଥାତ୍ ଗୋଟିଏ ସଭ୍ୟତାର ପ୍ରାଚୀନତା ଓ ସେହି ସଭ୍ୟତାର ଜନସମୂହର ସମ୍ମାନଜନକ ସ୍ଥିତି ଦୁଇଟି ପୃଥକ୍ ପ୍ରଶ୍ନ । ଅନ୍ୟ ଭାବରେ କହିଲେ ପ୍ରାଚୀନତା ଉନ୍ନତ ସାମାଜିକ ଜୀବନର ମାନଦଣ୍ଡ ନୁହେଁ । ସାମ୍ପ୍ରତିକ ପୃଷ୍ଠଭୂମିରେ ଉନ୍ନତିର ଅବଧାରଣାଟି ଆଧୁନିକ ଜ୍ଞାନ ବିଜ୍ଞାନର ବିକାଶ, ସୁସଂହତ ରାଜନୈତିକ ବ୍ୟବସ୍ଥା, ସାମାଜିକ ସମତା, ସଭ୍ୟ ମୂଲ୍ୟବୋଧର ବ୍ୟାପକତା ଇତ୍ୟାଦି ଉପରେ ନିର୍ଭର କରେ । ଏକ ସଭ୍ୟତା ପ୍ରାଚୀନ ହେଲେ ମଧ୍ୟ ତାହାର ସମାଜ ବ୍ୟବସ୍ଥା, ଜ୍ଞାନ ବିଜ୍ଞାନ ପ୍ରତି ମନୋଭାବ, ରାଜନୈତିକ ଚରିତ୍ର ଭିତରୁ ଏକ ନକାରାତ୍ମକ ଚିତ୍ର ମିଳିପାରେ । ଏକ ଜନଗୋଷ୍ଠୀ ଭିତରେ ଯଦି ସାମାଜିକ ଭେଦଭାବ, ଦୁର୍ବଳ ଶ୍ରେଣୀ ଉପରେ ସାଂସ୍କୃତିକ ଅତ୍ୟାଚାର ଓ ଅନୈତିକତା ଓତପ୍ରୋତ ଭାବେ ଜଡ଼ିତ ରହେ, ତେବେ ତାହା ଏକ ଉନ୍ନତ ବା ପ୍ରଗତିଶୀଳ ସମାଜ ବୋଲି ପରିଗଣିତ ହୁଏ ନାହିଁ । ଅର୍ଥାତ୍ ପ୍ରାଚୀନତା ପ୍ରଗତିଶୀଳତା ବା ଉନ୍ନତିର ମାନଦଣ୍ଡ ନୁହେଁ ।

ଏହା ଏକ ଐତିହାସିକ ସତ୍ୟ ଯେ ୟୁରୋପରେ ଶିଳ୍ପବିପ୍ଳବ ଯୋଗୁ ବାଣିଜ୍ୟ ପାଇଁ ପଶ୍ଚିମ ମହାଦେଶର ବଣିକମାନେ ଜଳପଥରେ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଗଲେ । ସମୁଦ୍ର ଯାତ୍ରା ଜନିତ ଜ୍ଞାନ ଓ ପ୍ରଯୁକ୍ତି ଯୋଗୁଁ ବିଭିନ୍ନ ଭୂ-ଖଣ୍ଡ ସହ ଯୋଗାଯୋଗ ସମ୍ଭବ ହେଲା । ପାଶ୍ଚାତ୍ୟ ବଣିକମାନେ କାଳକ୍ରମେ ନିଜର ବଳ ଓ କୌଶଳ ଦ୍ୱାରା ପୃଥିବୀର ବିଭିନ୍ନ ଅଞ୍ଚଳରେ ନିଜର ଆଧିପତ୍ୟ ଦୃଢ଼କଲେ । ସାରା ପୃଥିବୀରେ ଏକ ସାମ୍ରାଜ୍ୟବାଦର ଯୁଗ ଆରମ୍ଭ ହେଲା । ସାମରିକ ଶକ୍ତିରେ ବଳଶାଳୀ ଓ ଶିଳ୍ପରେ ଆଗୁଆ ଥିବା ପାଶ୍ଚାତ୍ୟ ଦେଶର ଲୋକମାନେ ଏସିଆ ଓ ଆଫ୍ରିକା ମହାଦେଶର କେତେକ ଭୂ-ଖଣ୍ଡରେ ଉପନିବେଶ ସ୍ଥାପନ କଲେ । ପରିଣାମତଃ ବିଶାଳ ଭାରତ ଭୂ-ଖଣ୍ଡ ବ୍ରିଟିଶ୍ ସାମ୍ରାଜ୍ୟବାଦର ନିୟନ୍ତ୍ରଣକୁ ଆସିଲା । ବ୍ରିଟିଶ ସାମ୍ରାଜ୍ୟବାଦ ଭାରତରେ ମୋଗଲ ଶାସନର ଜବନିକା ଟାଣିଲା ଓ ଧୀରେ ଧୀରେ ଅସଂଖ୍ୟ ଛୋଟ ଛୋଟ ରାଜ୍ୟମାନଙ୍କୁ କରାୟତ୍ତ କଲା ।

ଇଂରେଜ ଉପନିବେଶବାଦ ଭାରତବର୍ଷକୁ କବଳିତ କରି ନଥିଲେ ଓ ଭାରତର ମୁଖ୍ୟ ଅଂଶରେ ମୋଗଲ ରାଜତ୍ୱ ଅବ୍ୟାହତ ରହିଥିଲେ ଭାରତ ଆଜି କେଉଁଠି ରହିଥାନ୍ତା ତାହା କହିବା ଜଟିଳ ମନେହୁଏ । ଭାରତରେ ଅସଂଖ୍ୟ ରାଜ୍ୟ ରହିଥିଲା ଓ ପ୍ରତ୍ୟେକ ରାଜ୍ୟ ସାର୍ବଭୌମ ରହି ରାଜତନ୍ତ୍ର ଦ୍ୱାରା ଶାସିତ ହେଉଥିଲା । ବହୁ ଭାଷା, ବହୁ ଧର୍ମଭିତରେ ସଂହତି ପ୍ରାୟତଃ ଅସମ୍ଭବ ଥିଲା । ରାଜନୈତିକ ସ୍ତରରେ ବା ସାମାଜିକ ସ୍ତରରେ ଭାରତୀୟମାନେ ଏକ ସମୁଦାୟ ଭାବେ ସ୍ୱତନ୍ତ୍ର ପରିଚୟର ଅଧିକାରୀ ହୋଇନାହାନ୍ତି । ଇଂରେଜ ସାମ୍ରାଜ୍ୟବାଦ ଆଜିର ଭାରତ, ପାକିସ୍ତାନ, ବଙ୍ଗଳାଦେଶ, ଶ୍ରୀଲଙ୍କା ଭୂଖଣ୍ଡକୁ ନେଇ ଏକ ଶାସନାଧୀନ କରିଥିଲା । ଅର୍ଥାତ୍ ଇଂରେଜମାନେ ଦକ୍ଷିଣ ଏସିଆର ବିଶାଳ ଭୂଖଣ୍ଡରେ ଏକ ରାଜନୈତିକ ସଂହତି ସ୍ଥାପନ କରିବା ଏକ ଐତିହାସିକ ସତ୍ୟ ।

ଇଂରେଜମାନେ ଭାରତକୁ ରାଜନୈତିକ ସ୍ତରରେ ଏକତ୍ର କଲାପରେ ଏଠାରେ ଗଣଶିକ୍ଷାର ପରିବେଶ ଆଣିଥିଲେ । ଏହି ପୃଷ୍ଠଭୂମିରେ ଥୋମାସ ବେବିଙ୍ଗଟନ୍ ମ୍ୟାକଲେ(୧୮୦୦-୧୮୫୯) ଭାରତରେ ଇଂରେଜ ଶିକ୍ଷା ପ୍ରଚଳନ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ । ମ୍ୟାକଲେ, ଯେ ଲର୍ଡ଼ ମ୍ୟାକଲେ ଭାବେ ପରିଚିତ, ବ୍ରିଟିଶ୍ ପାର୍ଲିଆମେଣ୍ଟର ବି ସଭ୍ୟ ଥିଲେ । କେତେକ ବ୍ୟକ୍ତି ଲର୍ଡ଼ ମ୍ୟାକଲେଙ୍କର ଏକ ବକ୍ତବ୍ୟ ବିଷୟରେ ପ୍ରଚାର କରୁଛନ୍ତି । ମ୍ୟାକଲେ କୁଆଡ଼େ ୧୮୩୫ମସିହା ଫେବୃଆରୀ ୨ତାରିଖରେ ବ୍ରିଟିଶ୍ ପାର୍ଲିଆମେଣ୍ଟରେ କହିଥିଲେ ଯେ, 'ସେ ସାରା ଭାରତ ବୁଲି ଦେଖିଛନ୍ତି । କେଉଁଠି ଗୋଟିଏ ଭିକାରି ପାଇ

ନାହାନ୍ତି, ଗୋଟିଏ ଚୋର ଦେଖି ନାହାନ୍ତି । ଲୋକଙ୍କର ନୈତିକତା ଅନେକ ଉଚ୍ଚରେ । ଏପରି ଦେଶକୁ ଶାସନ କରିବା ପାଇଁ ସେମାନଙ୍କର ସାଂସ୍କୃତିକ, ଆଧ୍ୟାତ୍ମିକ ପରମ୍ପରାକୁ ଭାଙ୍ଗିବାକୁ ହେବ ଯାହାକି ଇଂରାଜୀ ଶିକ୍ଷାଦ୍ୱାରା ସମ୍ଭବ ହେବ' । ମ୍ୟାକଲେଙ୍କର ଏହି ଉକ୍ତି ସତ୍ୟର କିପରି ଅପଲାପ ତାହା ବାସ୍ତବ ତଥ୍ୟ ଦୃଷ୍ଟିରୁ ଜଣାପଡ଼େ ।

ମ୍ୟାକଲେ ବ୍ରିଟିଶ ପାର୍ଲିଆମେଣ୍ଟର ହାଉସ ଅଫ୍ କମନ୍ସର ସଭ୍ୟ ଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ଯାହା ଭାରତରେ ଇଂରେଜ ଶାସନର ମୂଳଦୁଆ ପକାଇଥିଲା ସେଥିରେ ବ୍ରିଟିଶ ସରକାରଙ୍କ ପ୍ରତିନିଧିତ୍ୱ ପାଇଁ ସରକାର ଏକ ବୋର୍ଡ଼ ଅଫ କଣ୍ଟ୍ରୋଲ ଗଠନ କରିଥିଲେ । ଲର୍ଡ଼ ମ୍ୟାକଲେ ସଂସଦ ସଭ୍ୟ ଭାବେ ବୋର୍ଡ଼ ଅଫ୍ କଣ୍ଟ୍ରୋଲର ସଭ୍ୟ ହେଲେ ଓ ସରକାରଙ୍କ ତରଫରୁ ଇଷ୍ଟଇଣ୍ଡିଆ କମ୍ପାନୀରେ ପ୍ରତିନିଧିତ୍ୱ କଲେ । ଘଟଣାକ୍ରମେ ସେ ଭାରତ ବିଷୟରେ ବିଭିନ୍ନ କଥା ଜାଣିବାର ଅବକାଶ ପାଇଲେ । ସେ ଯେହେତୁ ଜଣେ ସୁଲେଖକ, ଆଇନଜ୍ଞ ଓ ଅଧ୍ୟୟନ ପିପାସୁ ଥିଲେ ସେ ଇଂଲଣ୍ଡର ଶାସନାଧୀନ ଥିବା ବିଶାଳ ଭାରତ ଭୂଖଣ୍ଡର ସମାଜ, ଧର୍ମ , ସଂସ୍କୃତି, ଇତିହାସ ଇତ୍ୟାଦି ବିଷୟରେ ଅନେକ ତଥ୍ୟ ସଂଗ୍ରହ କରିଥିଲେ । ପରେ ବ୍ରିଟିଶ ସରକାର ସୁପ୍ରିମ କାଉନସିଲ ଅଫ ଇଣ୍ଡିଆର ସଭ୍ୟ ମନୋନୀତ କରି ତାଙ୍କୁ ଭାରତର ଶାସନ ବ୍ୟବସ୍ଥାରେ ସହାୟତା ଦେବାକୁ ଭାରତକୁ ଯିବାକୁ କହିଲେ । ନିଜର ଆର୍ଥିକ ସ୍ଥିତିରେ ଉନ୍ନତି ପାଇଁ ମ୍ୟାକଲେ ଏହି ପଦବୀକୁ ଗ୍ରହଣ କଲେ । ଇଂଲଣ୍ଡରୁ ତିନିମାସର ସମୁଦ୍ର ଯାତ୍ରା କରି ୧୮୩୪ ମସିହା ଜୁନ୍ ୧୦ ରେ ଭାରତର ମାଡ୍ରାସ (ବର୍ତ୍ତମାନର ଚେନ୍ନାଇ) ଠାରେ ପହଞ୍ଚିଥିବା ତାଙ୍କ ଜୀବନୀରୁ ଜଣାଯାଏ । ତାଙ୍କର ପୁତୁରା ଓ ଜୀବନୀ ଲେଖକ ଜର୍ଜ ଟ୍ରେଭେଲ୍ୟାନ୍ ଦର୍ଶାଇଛନ୍ତି ଯେ ମ୍ୟାକଲେ ଭାରତରେ ଚାରିବର୍ଷରୁ କମ୍ ସମୟ ରହି ୧୮୩୮ ମସିହା ଆରମ୍ଭରେ ଇଂଲଣ୍ଡ ଫେରିଗଲେ । ସୁତରାଂ ୧୮୩୫ ମସିହା ଫେବୃଆରି ୨ ତାରିଖରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଭାରତ ବିଷୟରେ ଦେଇଥିବା ଭାଷଣ ସମ୍ପର୍କରେ ଯାହା କୁହାଯାଉଛି ତାହା ସମ୍ପୂର୍ଣ୍ଣ ମିଛ । କାରଣ ସେହି ସମୟରେ ସେ ଇଂଲଣ୍ଡରେ ନଥିଲେ ଭାରତରେ ଥିଲେ ।

ମ୍ୟାକଲେ ଭାରତ ସାରା ବୁଲିଥିଲେ ବୋଲି ଯାହା କୁହାଯାଉଛି ତାହା ବି ଏକ ମନଗଢା କାହାଣୀ, କାରଣ୧୮୩୫ ମସିହା ବେଳକୁ ଭାରତରେ ସେପରି ସଡକପଥ ନଥିଲା । ରେଳଯାତ୍ରା ତ ଆରମ୍ଭ ହୋଇ ନଥିଲା । କେବଳ ଜଳପଥରେ ଯିବାକୁ ହେଉଥିଲା କିମ୍ବା ସ୍ଥଳପଥରେ ଘୋଡା ବା ପାଲିଙ୍କିରେ ବସି ଯିବାକୁ ହେଉଥିଲା । ଅଧ୍ୟୟନ ପିପାସୁ ମ୍ୟାକଲେ ତାଙ୍କର ରହଣୀ ପ୍ରାୟତଃ କଲିକତାରେ କଟାଇଥିଲେ । କାରଣ ସେତେବେଳେ କଲିକତା ହିଁ ଭାରତର ରାଜଧାନୀ ଥିଲା ।

ମ୍ୟାକଲେ ଯେଉଁ ସମୟରେ ଭାରତକୁ ଆସିଥିଲେ ସେତେବେଳେ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ଉଇଲିୟମ ବେଣ୍ଟିକ୍ । ଆଜିର ଭାରତ, ପାକିସ୍ତାନ, ବଙ୍ଗଳାଦେଶ, ଶ୍ରୀଲଙ୍କାର ଏହି ବିଶାଳ ଭୂଖଣ୍ଡ ଥିଲା ଏକ ଉପମହାଦେଶ । ଏହି ବିଶାଳ ଭାରତବର୍ଷରେ ଅନେକ ଅଞ୍ଚଳରେ ବହୁ ଅସଭ୍ୟ ପରମ୍ପରା ରହିଥିଲା । ଗଭର୍ଣ୍ଣର ଜେନେରାଲ ବେଣ୍ଟିକ୍ ଭାରତ ବର୍ଷରେ ଆଇନ ଦ୍ୱାରା ନରବଳି ପ୍ରଥା, ସତୀଦାହ ପ୍ରଥା ବନ୍ଦ କରିଥିଲେ । କେତେକ ଆଦିବାସୀ ସମାଜରେ ନରବଳି ପ୍ରଥା ରହିଥିଲା । ଏହା ସହିତ ଶକ୍ତିପୀଠ ମାନଙ୍କରେ ନରବଳି ଦିଆଯାଉଥିଲା । ଏବେ ବି ଶକ୍ତିପୀଠ ମାନଙ୍କରେ ଛେଳି, ମଇଁଷି ବଳି ଦିଆଯାଉଛି । ସେତେବେଳର ସାମାଜିକ ବ୍ୟବସ୍ଥାରେ ଉଚ୍ଚ ଜାତିମାନଙ୍କ ମଧ୍ୟରେ କୌଣସି ବ୍ୟକ୍ତି ମୃତ୍ୟୁବରଣ କରିବା ପରେ ତାଙ୍କର ପତ୍ନୀଙ୍କୁ ସ୍ୱାମୀଙ୍କ ଚିତାରେ ଆତ୍ମାହୁତି ଦେବାକୁ ହେଉଥିଲା । ନରବଳି ପ୍ରଥା, ସତୀଦାହ ପ୍ରଥା ଭଳି ଅସଭ୍ୟ ପରମ୍ପରାକୁ ବେଣ୍ଟିକ୍ ଆଇନ ଦ୍ୱାରା ନିଷେଧ କରିଥିଲେ । ଏହା ସହିତ କେତେକ ଅଞ୍ଚଳର କିଛି ଦୁର୍ଦ୍ଧର୍ଷ ଅସାମାଜିକ ବ୍ୟକ୍ତି ସାଧାରଣ ଲୋକମାନଙ୍କୁ ହତ୍ୟା କରି ସେମାନଙ୍କ ରକ୍ତ ଦେବୀଙ୍କୁ ପ୍ରଦାନ କରୁଥିଲେ, ଯେଉଁମାନଙ୍କୁ ଠଗ କୁହାଯାଉଥିଲା । ଏହି ଠଗ ଅସାମାଜିକ ବ୍ୟକ୍ତିମାନଙ୍କୁ ଦମନ କରିବାରେ ବେଣ୍ଟିକ୍ ଦୃଢ଼ ପଦକ୍ଷେପ ନେଇଥିଲେ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତରେ ଦାରିଦ୍ର୍ୟ ବା ଭିକାରି ନ ଥିବା କେତେଦୂର ସତ୍ୟ ? ସେତେବେଳେ ଚିକିତ୍ସା ଅଭାବରେ ହଇଜା, ବସନ୍ତ, ପ୍ଲେଗ ପରି ରୋଗ କିପରି ମହାମାରୀ ଭାବେ ଆସୁଥିଲା ତାହାର ବହୁ ଦୁଃଖଦ କାହାଣୀ ରହିଛି । ସେ ଯୁଗରେ ପରିବହନ ଓ ଗମନାଗମନର ଅଭାବ ଯୋଗୁଁ ବନ୍ୟା, ବାତ୍ୟା, ମରୁଡ଼ି ପରିସ୍ଥିତିରେ ଲୋକମାନେ ଅନାହାରରେ କିପରି ପୋକମାଛି ପରି ମରୁଥିଲେ ତାହାର କାହାଣୀ ବେଶ୍ ମର୍ମାନ୍ତକ । ଊନ୍ନବିଂଶ ଶତାବ୍ଦୀର ସତୁରୀ ଦଶକରେ ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ଅନାହାରରେ ମରିବା ଏକ ଐତିହାସିକ ସତ୍ୟ । ଜଣେ ବିଶିଷ୍ଟ ଅର୍ଥନୈତିଜ୍ଞଙ୍କ ମତରେ ଓଡ଼ିଶାରେ ଗଣଦାରିଦ୍ର୍ୟ ଓ ଗଣମୃତ୍ୟୁ ସାଧାରଣ ଘଟଣା ଥିଲା । ଏପରିକି ସ୍ୱାଧୀନତା ପୂର୍ବରୁ ବିଂଶ ଶତାବ୍ଦୀରେ ବଙ୍ଗ ଦୁର୍ଭିକ୍ଷରେ ପନ୍ଦରଲକ୍ଷ ଲୋକ ମୃତ୍ୟୁବରଣ କରିବା ଜଣାଯାଏ । ଏହି ସ୍ଥିତି ବିଶାଳ ଭାରତ ବର୍ଷରେ ସବୁ ଅଞ୍ଚଳରେ ଅଳ୍ପ ବହୁତ ଲାଗି ରହିଥିଲା । ସୁତରାଂ ଭାରତରେ ଊନ୍ନବିଂଶ ଶତାବ୍ଦୀରେ ଭିକାରି ନଥିବା ବା ଦାରିଦ୍ର୍ୟ ନ ଥିବା କହିବା ସତ୍ୟର ଅପଳାପ ନୁହେଁ କି ?

ଊନ୍ନବିଂଶ ଶତାବ୍ଦୀରେ ଭାରତର ସାମାଜିକ ଚିତ୍ର ବିଷୟରେ ଯେଉଁ ସୂଚନା ମିଳେ ତାହା ଅତ୍ୟନ୍ତ ମର୍ମାନ୍ତିକ । ଜାତିଆଣ ଭେଦଭାବ ଓ ଅସ୍ପୃଶ୍ୟତା ସେତେବେଳେ

ଅତି ଉତ୍କଟ ରହିଥିଲା । ତଥାକଥିତ ଦଳିତ ଲୋକମାନେ ଭୟଙ୍କର ସାମାଜିକ ଶୋଷଣର ଶିକାର ହେଉଥିଲେ । ସାଧାରଣ ରାସ୍ତାରେ ଚାଲିବା ଓ କୂଅ ପୋଖରୀରୁ ଜଳନେବା ସେମାନଙ୍କ ପାଇଁ ବାରଣ ଥିଲା । କେତେକ ଅଞ୍ଚଳରେ ଦଳିତମାନଙ୍କର ଛାଇକୁ ବି ଅପବିତ୍ର ମନେ କରାଯାଉଥିଲା । ମହାରାଷ୍ଟ୍ରର ଜ୍ୟୋତିରାଓ ଫୁଲେ, କେରଳର ନାରାୟଣ ଗୁରୁ, ତାମିଲନାଡୁର ପେରିୟାରଙ୍କ ପରି ଊନବିଂଶ ଶତାବ୍ଦୀର ବିଶିଷ୍ଟ ସଂସ୍କାରକମାନେ ଦଳିତ, ଶୂଦ୍ର ଓ ଝିଅମାନଙ୍କର ପାଠ ପଢ଼ିବା ପାଇଁ କରିଥିବା ଉଦ୍ୟମ ତଥା ଅସ୍ପୃଶ୍ୟତା ବିରୁଦ୍ଧରେ କରିଥିବା ସଂଗ୍ରାମର କାହାଣୀ ବେଶ୍ ମର୍ମସ୍ପର୍ଶୀ । ସେମାନଙ୍କ ଜୀବନୀରୁ ଭାରତୀୟ ହିନ୍ଦୁ ସମାଜ କିପରି ରୁଦ୍ଧ ଜାତିଭିତ୍ତିକ ହୋଇ ରହିଥିଲା ତାହା ଜଣାପଡ଼େ । ଜାତି ଜାତି ଭିତରେ ସମ୍ପର୍କ ଅତି ସୀମିତ ଥିଲା ଓ ସହଭୋଜନ ବା ଆନ୍ତର୍ଜାତି ବିବାହ ଅସମ୍ଭବ ଥିଲା । ସାମାଜିକ ସଂହତି ବା ଏକରାଷ୍ଟ୍ରୀୟ ଚେତନା ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିବେଶ ପୂର୍ବରୁ ଭାରତରେ ସମ୍ଭବ ନ ଥିଲା ।

ମୋଟ ଉପରେ ଭାରତୀୟ ସମାଜର ସ୍ଥିତି ଥିଲା ଅତ୍ୟନ୍ତ ଦୟନୀୟ । ରାଜା, ଜମିଦାରଙ୍କ ଶୋଷଣ, ଜାତିଆଣ ଭେଦଭାବ ଓ ସାମ୍ରାଜ୍ୟବାଦ, ସାମାଜିକ ଜୀବନ ପ୍ରବାହକୁ ବିପର୍ଯ୍ୟସ୍ତ କରିଥିବା ହେଉଛି ପ୍ରକୃତ ବାସ୍ତବତା । (୧.୧୨.୧୧)



# ଭାରତରେ ଇଂରାଜୀ ଶିକ୍ଷା ଓ ମ୍ୟାକଲେ

ଭାରତରେ ଇଂରାଜୀ ଶିକ୍ଷା ପ୍ରଚଳନ କ୍ଷେତ୍ରରେ ଥୋମାସ ବେବିଙ୍ଗଟନ ମ୍ୟାକଲେ(୧୮୦୦-୧୮୫୯) ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ। ମ୍ୟାକଲେଙ୍କ ସମୟକୁ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷା ଆରମ୍ଭ ହୋଇନାହିଁ। ଭାରତରେ ୧୮୫୭ ମସିହାରେ ହିଁ ପ୍ରଥମ ବିଶ୍ୱବିଦ୍ୟାଳୟ ଆରମ୍ଭ ହେଲା ଓ ଉଚ୍ଚଶିକ୍ଷାର ସୁଯୋଗ ଆସିଲା। ୧୮୩୪ ମସିହାରେ ମ୍ୟାକଲେ ଯେତେବେଳେ ପ୍ରଥମେ ଭାରତକୁ ଆସିଲେ ସେତେବେଳେ ସରକାରୀ ସାହାଯ୍ୟରେ କିଛି ସଂସ୍କୃତ ଟୋଲ, ଆରବିକ ସ୍କୁଲ ଓ ପାର୍ଶି ସ୍କୁଲ ଚାଲୁଥିଲା। ବ୍ରିଟିଶ ଭାରତରେ ଶିକ୍ଷାର ବ୍ୟବସ୍ଥା କିପରି କରାଯିବ ସରକାର ସେଥିପାଇଁ ଦଶଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ "ପବ୍ଲିକ ଇନଷ୍ଟ୍ରକସନ କମିଟି" ଗଠନ କରିଥିଲେ। ସେତେବେଳର ଭାରତବର୍ଷ କହିଲେ ଆଜିର ପାକିସ୍ତାନ, ଭାରତ, ବଙ୍ଗଳାଦେଶ ଓ ଶ୍ରୀଲଙ୍କାକୁ ବୁଝାଉଥିଲା। ଏହି ବିଶାଳ ଭୂଖଣ୍ଡରେ ଶିକ୍ଷାର ବ୍ୟବସ୍ଥା ନେଇ କମିଟିର ସଭ୍ୟମାନେ ସେମାନଙ୍କ ମତରେ ଦୁଇ ଭାଗ ହୋଇ ଯାଇଥିଲେ। କମିଟିର ଅଧା ସଭ୍ୟ ଯେଉଁ ସଂସ୍କୃତ, ଆରବିକ ଓ ପାର୍ଶି ଭାଷାରେ ପୃଥକ୍ ପୃଥକ୍ ସ୍କୁଲ ଚାଲିଛି ତାକୁ ଅବ୍ୟାହତ ରଖିବାକୁ ଚାହିଁଥିଲେ। ଆଉ ଅଧା ସଭ୍ୟ ପ୍ରାଥମିକ ସ୍ତରରେ ମାତୃଭାଷାରେ ଓ ପରେ ଇଂରାଜୀ ଭାଷାରେ ଶିକ୍ଷା ଦେବାକୁ ମତ ଦେଇଥିଲେ। ଏହି ପ୍ରଶ୍ନ ନେଇ କୌଣସି ସହମତି ସଭ୍ୟମାନଙ୍କ ଭିତରେ ଆସିପାରୁ ନଥିଲା। ଏହି ପୃଷ୍ଠଭୂମିରେ ସ୍ଥିତାବସ୍ଥା ଦୂର କରିବା ପାଇଁ ମ୍ୟାକଲେଙ୍କୁ ପବ୍ଲିକ୍ ଇନ୍ଷ୍ଟ୍ରକସନ କମିଟିର ସଭାପତି ନିଯୁକ୍ତ କରାଗଲା। ମ୍ୟାକଲେ ସମସ୍ତ ବିଷୟକୁ ଗମ୍ଭୀର ଭାବେ ଅଧ୍ୟୟନ କରି ବ୍ରିଟିଶ୍ ଭାରତର ଶିକ୍ଷା ନୀତି ଉପରେ ଏକ ବିବରଣୀ ପ୍ରସ୍ତୁତ କରିଥିଲେ।

ମ୍ୟାକଲେଙ୍କ ପାଇଁ ବଡ଼ ପ୍ରସଙ୍ଗ ଥିଲା ସଂସ୍କୃତ, ଆରବିକ ଓ ପାର୍ଶି ଭାଷାରେ ଯେଉଁ ପୃଥକ୍ ସ୍କଲ ଚାଲିଛି ତାହା ଅବ୍ୟାହତ ରହିବ ନା ବିଶାଳ ଭାରତ ଭୂଖଣ୍ଡରେ ଇଂରାଜୀ ଭାଷାକୁ ଶିକ୍ଷାର ମାଧ୍ୟମ କରାଯିବ। ବିଶେଷକରି ସଂସ୍କୃତ ଭାଷା ଓ ଆରବିକ ଭାଷା ଆଧୁନିକ ବିଜ୍ଞାନର ଭାଷା ଭାବେ ଭାରତ ଭୂଖଣ୍ଡର ଆବଶ୍ୟକତା ମେଣ୍ଟାଇ ପାରିବ କି? ମ୍ୟାକଲେଙ୍କ ମତରେ ସଂସ୍କୃତ ବା ଆରବିକ ଭାରତର ପ୍ରାଚୀନ ଭାଷା, ଏଥିରେ ସାହିତ୍ୟ ଓ ଦର୍ଶନର କିଛି କୃତି ରହିଛି; କିନ୍ତୁ ଏଥିରେ ଯାହା କିଛି କୃତି ରହିଛି

ତାହା ପାଶ୍ଚାତ୍ୟ ଜ୍ଞାନ ଭଣ୍ଡାର ପାଖରେ ନଗଣ୍ୟ ମନେହୁଏ । ଆଧୁନିକ ଜ୍ଞାନର ବିକାଶ ଓ ବୈଜ୍ଞାନିକ ଅଧ୍ୟୟନ ସାମାଜିକ ପ୍ରଗତିର ଆଧାର । ପରିଣାମତଃ ସଂସ୍କୃତ ବା ଆରବିକ ଆଧୁନିକ ଜୀବନ ପ୍ରବାହର ଆବଶ୍ୟକତାକୁ ପୂରଣ କରି ପାରିବ ନାହିଁ । ମ୍ୟାକଲେ ଏହା ସ୍ୱୀକାର କରିଛନ୍ତି ଯେ ଇଂରାଜୀ, ଫ୍ରେଞ୍ଚ ଭାଷା ବି ଦିନେ ଅତି ଅନୁନ୍ନତ ସ୍ତରରେ ରହିଥିଲା । ଲାଟିନ ଓ ଗ୍ରୀକ୍ ଭାଷା ସେତେବେଳେ ୟୁରୋପରେ ମୁଖ୍ୟ ସ୍ଥାନ ନେଇଥିଲା । ତେବେ ୟୁରୋପୀୟ ନବ ଜାଗରଣ ପରେ ୟୁରୋପରେ ଜ୍ଞାନର ବହୁ ଦିଗନ୍ତ ସୃଷ୍ଟି ହେଲା । ଫଳତଃ ଇଂରାଜୀ ଭାଷା କାଳକ୍ରମେ ସମୃଦ୍ଧ ହୋଇ ଚାଲିଲା । ଜ୍ଞାନ ବିଜ୍ଞାନର ପ୍ରତ୍ୟେକ କ୍ଷେତ୍ରରେ ଏହା ବ୍ୟବହୃତ ହେଲା । ଏହାଦ୍ୱାରା ଏହି ଭାଷା ସମୃଦ୍ଧ ହେବା ସହ ଜ୍ଞାନ ବିଜ୍ଞାନର ବିକାଶ ପାଇଁ ମାଧ୍ୟମ ହେଲା । ଇଂରେଜ ଭାଷାରେ ଉଚ୍ଚଶିକ୍ଷା ସ୍ତରରେ ଅଧ୍ୟୟନ ଦ୍ୱାରା ଭାରତୀୟମାନେ ଭବିଷ୍ୟତରେ ଶାସନ, ବିଜ୍ଞାନ, ବିଚାର ବ୍ୟବସ୍ଥା ଓ ସଞ୍ଚାର କ୍ଷେତ୍ରରେ ଉନ୍ନତ ହୋଇ ପାରିବେ । ଅଧିକନ୍ତୁ ଇଂରାଜୀ ଭାଷା ଅଧ୍ୟୟନ ଦ୍ୱାରା ବିଶ୍ୱର ଜ୍ଞାନରାଜି ସହ ପରିଚିତ ହେବା ସମ୍ଭବ ହେବ । ମ୍ୟାକଲେ ତାଙ୍କ ରିପୋର୍ଟ ଗଭର୍ଣ୍ଣର ଜେନେରାଲଙ୍କୁ ୧୮୩୫ ମସିହା ଫେବୃଆରୀ ୨ରେ ଦେବା ଓ ଗଭର୍ଣ୍ଣର ଜେନେରାଲ ବେଣ୍ଟିଙ୍ଗ ତାହାକୁ ୧୮୩୫ ମସିହା ମାର୍ଚ୍ଚ ୭ରେ ଅନୁମୋଦନ କରିବା ଐତିହାସିକ ତଥ୍ୟରୁ ଜଣାଯାଏ ।

ଶିକ୍ଷାର ବିକାଶ ଓ ଜ୍ଞାନବିଜ୍ଞାନର ପ୍ରସାର ଦ୍ୱାରା ଏକ ଜାତିର ପ୍ରଗତି ସମ୍ଭବ ବୋଲି ମ୍ୟାକଲେଙ୍କ ବିଚାର ରହିଥିଲା । ରୁଷ ଦେଶ କିପରି ଏକଦା ଅବହେଳିତ ଥିଲା ଓ ପାଶ୍ଚାତ୍ୟ ଶିକ୍ଷା, ବିଜ୍ଞାନ ସଂଯୋଗରେ ଆସି ଶିକ୍ଷାଦ୍ୱାରା ବିକଶିତ ହେଲା ତାହା ସେ ଦର୍ଶାଇଛନ୍ତି । ସେହିପରି ଆଶା ବ୍ୟକ୍ତ କରିଛନ୍ତି ଯେ ଅବହେଳିତ ଭାରତବର୍ଷ ଶିକ୍ଷାର ପ୍ରସାର ଦ୍ୱାରା ବିକଶିତ ହୋଇ ପାରିବ । କହିବା ନିଷ୍ପ୍ରୟୋଜନ ଯେ, ମ୍ୟାକଲେଙ୍କ ରିପୋର୍ଟ ପରେ ଭାରତ ବର୍ଷରେ ଶିକ୍ଷାର ପ୍ରସାର ଆରମ୍ଭ ହେଲା । ମ୍ୟାକଲେ ଭାରତରୁ ବିଦାୟ ନେବାର ଦୁଇ ଦଶନ୍ଧି ପରେ ଭାରତରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । ପୂଜକ ବର୍ଗ, ରାଜା, ଜମିଦାର ଗୋଷ୍ଠୀ ମାନଙ୍କ ସହିତ ଭାରତର ସାଧାରଣ ଜନତା ଶିକ୍ଷାର ସୁଯୋଗ ପାଇଲେ । ଯୁଗ ଯୁଗ ଧରି ଶିକ୍ଷାର ଆଲୋକରୁ ବଞ୍ଚିତ ଥିବା ଏ ଦେଶର ସାଧାରଣ ଲୋକମାନେ ସରକାରୀ ଉଦ୍ୟମରେ ସ୍ଥାପିତ ସ୍କୁଲ ପ୍ରତିଷ୍ଠା ଯୋଗୁଁ ଶିକ୍ଷାର ଅବକାଶ ପାଇଲେ । ଗଣଶିକ୍ଷା ଓ ଉଚ୍ଚଶିକ୍ଷାର ସମ୍ଭାବନା ହେତୁ ପାଶ୍ଚାତ୍ୟ ଜ୍ଞାନ, ବିଜ୍ଞାନ, ଗଣତାନ୍ତ୍ରିକ ଆଦର୍ଶ, ବିଚାର ବ୍ୟବସ୍ଥା ଇତ୍ୟାଦି ଭାରତରେ ଭିତ୍ତି ନେଲା । ଏସବୁର ସମ୍ମିଳିତ ପ୍ରଭାବରୁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟ ଚେତନାର ପରିବେଶ ସୃଷ୍ଟି ହେଲା । ଯେତେ ସୀମିତ ଅର୍ଥରେ ହେଲେ ବି ଭାରତରେ ଏକ

ନବଜାଗରଣର ଯୁଗ ଉଦ୍ଭବ ହେଲା । ଇଂରାଜୀ ଭାଷାରେ ଉଚ୍ଚଶିକ୍ଷାର ପରିବେଶରୁ ଜାତୀୟ ଆନ୍ଦୋଳନ ଦେଶରେ ମୁଣ୍ଡ ଟେକିଲା ।

ମ୍ୟାକଲେଙ୍କ ବିଷୟରେ ଏତେ ଅପପ୍ରଚାର ହୋଇଛି ଯେ ଅନେକ ଲୋକଙ୍କର ଧାରଣା ତାଙ୍କ ସୁପାରିଶରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଭାରତୀୟ ସଂସ୍କୃତି ଓ ସମାଜ ବ୍ୟବସ୍ଥାକୁ କଳୁଷିତ କରିଦେଇଛି । ଏପରିକି ସାମ୍ପ୍ରତିକ ଓ ସ୍ୱାଧୀନ ଭାରତର ଶିକ୍ଷାସ୍ତରରେ ଯାହା କିଛି ତ୍ରୁଟି, ଅଶୋଭନୀୟତା ଓ ଭ୍ରଷ୍ଟାଚାର ରହିଛି ତାହାକୁ କେତେକ ମ୍ୟାକଲେଙ୍କ ପରଠାରୁ ଭାରତରେ ଯେଉଁ ଶିକ୍ଷାନୀତିର ପ୍ରୟୋଗ ହେଲା ତାହାର କୁପରିଣାମ ବୋଲି ଭାବିଥାନ୍ତି । ମ୍ୟାକଲେ ଭାରତୀୟ ଜନ ଜୀବନକୁ କଳୁଷିତ କରିବା ପାଇଁ ଚକ୍ରାନ୍ତ ମୂଳକ ଭାବେ ଉଦ୍ୟମ କରିଥିବା କେତେକ ବ୍ୟକ୍ତ କରିଥାନ୍ତି । ତାଙ୍କର ସମାଲୋଚକମାନେ ତାଙ୍କ ରିପୋର୍ଟର ଗୋଟିଏ ଧାଡି ସର୍ବଦା ଉଲ୍ଲେଖ କରିଥାନ୍ତି ଯେ, ଯେଉଁମାନେ ଇଂରାଜୀ ଶିକ୍ଷା ପାଇବେ ସେମାନେ ଚେହେରାରେ ଭାରତୀୟ ରହିଲେ ବି ମାନସିକତାରେ ଇଂରେଜ ରହିବେ । ମ୍ୟାକଲେଙ୍କ ରିପୋର୍ଟରୁ ସେହି ପାରାଟିକୁ ଏଠାରେ ଉଲ୍ଲେଖ କରାଯାଇପାରେ । In one point I fully agree with the gentlemen to whose general views I am opposed. I feel with them that it is impossible for us, with our limited means, to attempt to educate the body of the people. We must at present do our best or form a class who may be interpeters between us and the millions whom we govern,-a class of persons Indian in blood and colour, but English in taste, in opinions, in morals and in intellect. To that class we may leave it to refine the vernacular dialects of the country. To enrich those dialects with terms of science borrowed from the western nomenclature, and to render them by degrees fit vehicles for conveying knowledge to the great mass of population.

ମ୍ୟାକଲେଙ୍କ ମନ୍ତବ୍ୟ ଥିଲା- ଯେଉଁମାନଙ୍କ ମତଠାରୁ ମୋର ମତ ଭିନ୍ନ (ଯେଉଁମାନେ ସଂସ୍କୃତ, ଆରବିକ ଓ ପାର୍ଶି ଭାଷାରେ ଅଲଗା ଅଲଗା ଶିକ୍ଷାନୁଷ୍ଠାନ ଚାଲିବାର ସପକ୍ଷରେ ମତ ଦେଇଥିଲେ) ସେମାନଙ୍କର ଗୋଟିଏ ମତ ସହ ମୁଁ ଏକମତ । ସରକାରଙ୍କ ସୀମିତ ସମ୍ବଳ ଭିତରେ ଏ ବିଶାଳ ଜନଗଣଙ୍କ ପାଖକୁ ଶିକ୍ଷାର ସୁଯୋଗ ନେବା ସମ୍ଭବ ନୁହେଁ । ଏହି ସ୍ଥିତିରେ ସାମ୍ପ୍ରତିକ ପରିବେଶରେ ଆମେ କେବଳ ଏକ କ୍ଷୁଦ୍ର ଶ୍ରେଣୀକୁ ଶିକ୍ଷିତ କରି ପାରିବା, ଯେଉଁମାନେ ଆମ ଭିତରେ ଓ ଆମେ ଶାସନ କରୁଥିବା କୋଟି କୋଟି ସାଧାରଣ ଜନତା ଭିତରେ ସଂଯୋଗକାରୀ ଅନୁବାଦକ ଭାବେ କାର୍ଯ୍ୟ କରିବେ । ସେମାନେ ନିଜର ରକ୍ତ ଓ ରୂପରେ ଭାରତୀୟ ରହିଲେ ବି ବିଚାରରେ, ଭାବରେ ଓ କର୍ତ୍ତବ୍ୟ କ୍ଷେତ୍ରରେ ଇଂରେଜଙ୍କ ପରି କାର୍ଯ୍ୟ କରିବେ । ସେହି ଶିକ୍ଷିତ

ବର୍ଗଙ୍କ ହାତରେ ସେମାନଙ୍କର ନିଜ ନିଜର ମାତୃଭାଷାକୁ ଉନ୍ନତ କରିବାର ଦାୟିତ୍ୱ ଆମେ ଦେଇପାରିବା । ସେମାନେ ପାଶ୍ଚାତ୍ୟ ଜ୍ଞାନକୁ ନିଜର ମାତୃଭାଷାରେ କାଳକ୍ରମେ ଅନୁବାଦ କରିପାରିବେ, ଯାହାଦ୍ୱାରା ଏ ଦେଶର ଅଗଣିତ ଜନଗଣ ଶିକ୍ଷା ଓ ଜ୍ଞାନର ଆଲୋକ ପାଇପାରିବେ ।

ଏହି ବକ୍ତବ୍ୟରୁ ମ୍ୟାକଲେଙ୍କର ମନ୍ଦ ମନୋଭାବ ନା ଏକ ବାସ୍ତବବାଦୀ, ଉଦାରବାଦୀ ଦୃଷ୍ଟିର ପରିଚୟ ମିଳୁଛି ? ସେ ଏ ଦେଶର ସାଧାରଣ ମଣିଷର ଶିକ୍ଷା ପାଇଁ ଆଗ୍ରହୀ ଥିଲେ ନା ଦେଶର ଜନଗଣଙ୍କୁ କଳୁଷିତ କରିବାକୁ ଚାହିଁଥିଲେ ? ଯେଉଁମାନେ ତାଙ୍କ ଜୀବନୀ ପଢିବେ ସେମାନେ ତାଙ୍କ ଉଦାରବାଦୀ ଦୃଷ୍ଟିର ପରିଚୟ ପାଇବେ । ବ୍ରିଟିଶ ଶାସିତ ଭାରତ ବର୍ଷର ବିକାଶ ଓ ଶିକ୍ଷାର ପ୍ରସାର ପାଇଁ ତାଙ୍କର ଆନ୍ତରିକତାକୁ ଯେଉଁମାନେ ସନ୍ଦେହ କରନ୍ତି ସେମାନେ ମ୍ୟାକଲେଙ୍କ ପ୍ରତି ନ୍ୟାୟ କରୁଥିବା ମନେହୁଏ ନାହିଁ ।

ଯଦି ଭାରତରେ ମ୍ୟାକଲେଙ୍କ ଶିକ୍ଷାନୀତିକୁ ଆଧାର କରି ଇଂରାଜୀ ଶିକ୍ଷାର ପ୍ରଚଳନ ହୋଇ ନଥାନ୍ତା, ତେବେ ଭାରତରେ ସେହି ଯୁଗରେ ସଂସ୍କୃତ ଓ ଆରବିକ ଭାଷାରେ ଶିକ୍ଷାନୁଷ୍ଠାନ ଚାଲିଥାନ୍ତା, କାରଣ ସେ ସମୟକୁ ପ୍ରାନ୍ତୀୟ ଭାଷା ଗୁଡ଼ିକରେ ପଠନଯୋଗ୍ୟ ପୁସ୍ତକ ପ୍ରକାଶନ ଆରମ୍ଭ ହୋଇ ନଥିଲା । ମନେକରାଯାଉ ମୁସଲମାନମାନେ ଆରବିକ ଭାଷାରେ ଓ ହିନ୍ଦୁମାନେ ସଂସ୍କୃତ ଭାଷାରେ ପଢ଼ିଥାନ୍ତେ । ହୁଏତ କାଳକ୍ରମେ ଏହି ଦୁଇ ଭାଷା ବିକଶିତ ହୋଇଥାନ୍ତା ଯଦିବା ସଂସ୍କୃତ ଭାଷା ଏକ କଥିତ ଭାଷା ଭାବେ କେଉଁଠି ପ୍ରଚଳିତ ନ ଥିଲା । ସଂସ୍କୃତ ଭାଷା ପ୍ରତି ସଂସ୍କୃତ ପଣ୍ଡିତମାନଙ୍କର ଦୃଷ୍ଟିଭଙ୍ଗୀ କଣ ଥିଲା ? ମନୁବାଦୀମାନେ ଶୂଦ୍ର, ଅତିଶୂଦ୍ର (ବର୍ତ୍ତମାନର ଦଳିତ) ଓ ନାରୀମାନଙ୍କୁ ସଂସ୍କୃତ ଭାଷା ପଢିବାରେ ବାରଣ କରିଆସିଥିବା ଘଟଣା ସୁବିଦିତ । ଏଠାରେ ଏକ ବାସ୍ତବ ଘଟଣା ଉଲ୍ଲେଖ କରାଯାଇପାରେ । ଡକ୍ଟର ବି.ଆର. ଆମ୍ବେଦକର ୧୯୦୭ ମସିହାରେ ମାଟ୍ରିକ ପାସ୍ କରିଥିଲେ । ହାଇସ୍କୁଲରେ ପଢିବାବେଳେ ଇଂରାଜୀ ଭାଷା ସହିତ ଏକ ଦ୍ୱିତୀୟ ଭାଷା ପଢିବା ବ୍ୟବସ୍ଥା ଥିଲା । ଆମ୍ବେଦକର ଓ ତାଙ୍କର ଭାଇ ସଂସ୍କୃତ ଭାଷା ପଢ଼ିବାକୁ ଚାହୁଁଥିଲେ । କିନ୍ତୁ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ ଅସ୍ପୃଶ୍ୟମାନେ ସଂସ୍କୃତ ପଢ଼ିବା ନୀତି ବିରୁଦ୍ଧ କହି ସେମାନଙ୍କୁ ଶ୍ରେଣୀରୁ ବାହାର କରି ଦେଇଥିବା ଘଟଣା ସୁବିଦିତ । ଏଥିରେ ଆମ୍ବେଦକର ଗଭୀର ମାନସିକ ଯନ୍ତ୍ରଣା ପାଇଥିଲେ ଓ ଶେଷରେ ଦ୍ୱିତୀୟ ଭାଷା ଭାବେ ପାର୍ଶି ଭାଷା ପଢିଥିଲେ । ଆମ୍ବେଦକରଙ୍କ ଜୀବନୀ ଲେଖକମାନେ କିଶୋର ଆମ୍ବେଦକରଙ୍କ ମାନସିକ ପ୍ରତିକ୍ରିୟାକୁ ଦର୍ଶାଇଛନ୍ତି (ଆମ୍ବେଦକରଙ୍କ ବିଶିଷ୍ଟ ଜୀବନୀ ଲେଖକ ଜନକ ସିଂହଙ୍କ ପୁସ୍ତକ ଡ. ବି.ଆର. ଆମ୍ବେଦକର ପୃଷ୍ଠା ୩୯ ଦ୍ରଷ୍ଟବ୍ୟ) । ଏହା ବିଂଶ ଶତାବ୍ଦୀ ଆରମ୍ଭର ଘଟଣା ।

ତେବେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ପୂଜକ ଶ୍ରେଣୀର ମାନସିକତା କେତେ ରକ୍ଷଣଶୀଳ ଥିଲା ତାହା ସହଜରେ ଅନୁମେୟ । ସେହିପରି ବିଶିଷ୍ଟ ସଂସ୍କାରକ ଜ୍ୟୋତିରାଓ ଫୁଲେ (୧୮୨୭-୧୮୯୦) ଜଣେ ସାମାଜିକ ବିପ୍ଳବୀ ଭାବେ ପରିଚିତ । ସେ ଯେତେବେଳେ ଶୂଦ୍ର ଓ ଝିଅମାନଙ୍କର ପାଠ ପଢ଼ିବା ପାଇଁ ସଚେତନତା ସୃଷ୍ଟି କରିଥିଲେ ସେତେବେଳେ ସେ ଉଚ୍ଚ ଜାତିର ଲୋକଙ୍କ ଦ୍ୱାରା କିପରି ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଛନ୍ତି ତାହା ଆଜି ଇତିହାସର ବିଷୟ । ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ତଥାକଥିତ ଦଳିତମାନଙ୍କର ସରକାରୀ ସ୍କୁଲରେ ପଢ଼ିବାର ସୁଯୋଗ ଆସି ନଥିବା ହେଉଛି ଆମର ସାମାଜିକ ବାସ୍ତବତା ।

ମ୍ୟାକଲେଙ୍କର ଭାରତୀୟ ଜନଜୀବନକୁ ସବୁଠାରୁ ଉଲ୍ଲେଖନୀୟ ଅବଦାନ ହେଉଛି ଯେ, ସେ ଭାରତୀୟ ଦଣ୍ଡବିଧି ଆଇନ (ଇଣ୍ଡିଆନ ପେନାଲ କୋଡ)ର ଡ୍ରାଫ୍ଟ ମଧ୍ୟ କରିଥିଲେ । ତା' ପୂର୍ବରୁ ଭାରତ ଭୂଖଣ୍ଡରେ ଏକ ସାର୍ବଜନୀନ ଆଇନର ପରିକଳ୍ପନା ଆସି ନଥିଲା । ଭାରତର ଶହ ଶହ କରଦ ରାଜ୍ୟରେ ରାଜାମାନେ ହିଁ ସର୍ବେସର୍ବା ଥିଲେ ଓ ଆଇନର କୌଣସି ବ୍ୟବସ୍ଥା ନଥିଲା । ହିନ୍ଦୁମାନେ ମାନବିକତା ବିରୋଧୀ ମନୁସଂହିତା ଓ ମୁସଲମାନମାନେ ରକ୍ଷଣଶୀଳ ଶାରିୟାତ୍ ଦ୍ୱାରା ପରିଚାଳିତ ହେଉଥିଲେ । ଏହି ସ୍ଥିତିରେ ସବୁ ନାଗରିକଙ୍କୁ ଆଇନ ଦୃଷ୍ଟିରେ ସମାନ କରିବା ଓ ଦେଶରେ ଏକ ସାର୍ବଜନୀନ ଦଣ୍ଡବିଧି ଆଇନ ପ୍ରଚଳନ କରିବାରେ ମ୍ୟାକଲେଙ୍କ ଅବଦାନ ଥିଲା ଯୁଗାନ୍ତକାରୀ ।

ମ୍ୟାକଲେ ୧୮୩୪ ମସିହାରେ ଭାରତକୁ ଆସି ଏଠାରେ ତିନି ଚାରି ବର୍ଷ ରହି ବ୍ରିଟିଶ ଭାରତରେ ଶିକ୍ଷା ଓ ବିଚାର ବ୍ୟବସ୍ଥାର ସୂତ୍ରପାତ କରିଥିଲେ । ଆଜିର ସ୍ୱାଧୀନ ପରିବେଶରେ ସେଥିରେ ଗୁଣାତ୍ମକ ପରିବର୍ତ୍ତନ ଆଣିବାର ଉତ୍ତରଦାୟିତ୍ୱ ଆମ ଉପରେ ନିର୍ଭରକରେ । ଆମର ଉତ୍ତରଦାୟିତ୍ୱକୁ ଏଡ଼ାଇ ଯାଇ ଆମେ ଶିକ୍ଷାର ସାଂପ୍ରତିକ ଅବକ୍ଷୟ ପାଇଁ ସେହି ଯୁଗର ବ୍ୟବସ୍ଥାକୁ ଦାୟୀ କରିବା ଯଥାର୍ଥ ମନେହୁଏ ନାହିଁ । (୭.୧୨.୧୧)



# ମାନବିକ ଅଧିକାର ଓ ବିଶ୍ୱଚିତ୍ର

ମାନବିକ ଅଧିକାର, ସମାଜିକ ନ୍ୟାୟ ଓ ସମତା ଭାବ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ଜଡିତ । ମାନବିକ ଅଧିକାରର ତାତ୍ପର୍ଯ୍ୟ ହେଉଛି ପ୍ରତ୍ୟେକ ବ୍ୟକ୍ତିର ଆତ୍ମସମ୍ମାନ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ- ବଞ୍ଚିବା ତାହାର ଏକ ଜନ୍ମଗତ ଅଧିକାର । ସାମାଜିକ ନ୍ୟାୟ ଭାବନାର ତାତ୍ପର୍ଯ୍ୟ ହେଉଛି ସମାଜରେ ନାଗରିକମାନେ ଆଇନ ଦୃଷ୍ଟିରେ ସମାନ ଓ କୌଣସି ପ୍ରକାରର ଭେଦଭାବ ଅନ୍ୟାୟ ଓ ଅନୈତିକ । ଏକ ନିରାପଦ ଓ ଗୁଣାତ୍ମକ ଜୀବନ ବଞ୍ଚିବା ବ୍ୟକ୍ତିର ମୌଳିକ ଅଧିକାର । ସମତା ଭାବର ମହତ୍ତ୍ୱ ହେଉଛି ପ୍ରତ୍ୟେକ ବ୍ୟକ୍ତି ସୁସ୍ଥ ଜୀବନ ବଞ୍ଚିବା, ଶିକ୍ଷା ଲାଭ କରିବା, ମତବ୍ୟକ୍ତ କରିବାର ଅବକାଶ ପାଇବା ଓ କୌଣସି ଶୋଷଣର ଶିକାର ନହେବା ତାହାର ଏକ ପ୍ରାକୃତିକ ଅଧିକାର । ସୁତରାଂ ମାନବିକ ଅଧିକାର, ନ୍ୟାୟ ଓ ସମତା ସଭ୍ୟତାର ଇତିହାସରେ ସବୁଠାରୁ ବଡ଼ ମୂଲ୍ୟବୋଧ କହିଲେ ଅତ୍ୟୁକ୍ତି ହେବନାହିଁ ।

ଯେଉଁ ସାମାଜିକ ଜୀବନ ପ୍ରବାହରେ ଏହି ମୂଲ୍ୟବୋଧର ପ୍ରତିଫଳନ ଯେତେ ଅଧିକ ସେହି ସମାଜ ସେତିକି ପ୍ରଗତିଶୀଳ ଓ ଉନ୍ନତ । ଅଥଚ ଯେଉଁ ସାମାଜିକ ଜୀବନଧାରାରେ ଏହି ମୂଲ୍ୟବୋଧର ଅଭିବ୍ୟକ୍ତି ଯେତେ କମ୍ ସେହି ସମାଜ ସେତିକି ଅନୁନ୍ନତ ବା କ୍ଷୟଶୀଳ । ଅବଶ୍ୟ ପ୍ରଗତିଶୀଳତା ଓ କ୍ଷୟଶୀଳତାର କୌଣସି ସାର୍ବଜନୀନ ଭିତ୍ତି ନିରୂପଣ କରିବା ଯଥାର୍ଥ ମନେହୁଏ ନାହିଁ । ପ୍ରଗତିଶୀଳତା ବା କ୍ଷୟଶୀଳତା ନିରଙ୍କୁଶ ଭାବନା ମଧ୍ୟ ନୁହେଁ, ଏଗୁଡ଼ିକ ଆପେକ୍ଷିକ ଅବଧାରଣା । ଦୁଇଟି ସମାଜ ଭିତରେ ତୁଳନା କଲାବେଳେ ଯେଉଁ ସାମାଜିକ ଜୀବନ ପ୍ରବାହରେ ନାଗରିକ ସଚେତନତାର ସ୍ତର ଉନ୍ନତ ଏବଂ ନ୍ୟାୟ, ସମତାର ପରିବେଶ ଅଧିକ ତାହା ପ୍ରଗତିଶୀଳ, ଅଥଚ ଯେଉଁଠି ଏହାର ଘୋର ଅଭାବ, ତାହା କ୍ଷୟଶୀଳ । ଦୁଇଟି ସାମାଜିକ ବ୍ୟବସ୍ଥାକୁ ତୁଳନା କଲାବେଳେ ଗୋଟିଏ ପ୍ରଗତିଶୀଳ ଓ ଅନ୍ୟଟି କ୍ଷୟଶୀଳ ମନେ ହୋଇପାରେ । ତେବେ ଯେଉଁଟି ପ୍ରଗତିଶୀଳ ମନେହୁଏ, ତାହା ତା'ଠାରୁ ଅଧିକ ଉନ୍ନତ ସମାଜ ତୁଳନାରେ କ୍ଷୟଶୀଳ ବି ହୋଇଥାଏ । ଅର୍ଥାତ୍ କ, ଖ ଭିତରେ ତୁଳନା ବେଳେ ଖ, କ ଅପେକ୍ଷା ଅଧିକ ଉନ୍ନତ ବା ପ୍ରଗତିଶୀଳ ହୋଇପାରେ ଅଥଚ ଗ, ତୁଳନାରେ ଖ କ୍ଷୟଶୀଳ ବା ଅନୁନ୍ନତ ହୋଇଥାଏ । ଗୋଟିଏ ସାମାଜିକ ବ୍ୟବସ୍ଥା ଅଧିକ କ୍ଷୟଶୀଳ ବ୍ୟବସ୍ଥାଠାରୁ ପ୍ରଗତିଶୀଳ ଓ ଅଧିକ ପ୍ରଗତିଶୀଳ ବ୍ୟବସ୍ଥା ତୁଳନାରେ କ୍ଷୟଶୀଳ ହୋଇପାରେ ।

ତେବେ ଏକ ପ୍ରଗତିଶୀଳ ସମାଜର ମୂଲ୍ୟାୟନ ପୃଷ୍ଠଭୂମିରେ ନାଗରିକ ଅଧିକାର, ସାମାଜିକ ନ୍ୟାୟ ଓ ସମତାଭାବକୁ ଏକ ସ୍ୱୀକୃତ ମାନଦଣ୍ଡ ଭାବେ ଗ୍ରହଣ କରାଯାଇପାରେ । ମାନବିକ ଅଧିକାର ପ୍ରତି ଏକ ଆନ୍ତର୍ଜାତିକ ସ୍ୱୀକୃତି ସଭ୍ୟତାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ ରହିଛି । ପ୍ରତ୍ୟେକ ବ୍ୟକ୍ତି ଏକ ସୁସ୍ଥ, ଭେଦଭାବ ରହିତ ମର୍ଯ୍ୟାଦାର ଜୀବନ ବଞ୍ଚିବା ତାହାର ଏକ ଜନ୍ମଗତ ବା ପ୍ରାକୃତିକ ଅଧିକାର । ଏହାକୁ ବିଶ୍ୱ ଜାତିସଂଘ "ମାନବିକ ଅଧିକାରର ବିଶ୍ୱଘୋଷଣା" ହିସାବରେ ୧୯୪୪ ମସିହା ଡିସେମ୍ବର ୧୦ ଦିନ ସ୍ୱୀକୃତି ଦେଇଛି । ଏହାକୁ ସଭ୍ୟ ଜୀବନର ଆଧାର ଭାବରେ ବିଶ୍ୱ ଜାତିସଂଘର ସମସ୍ତ ସଭ୍ୟ-ରାଷ୍ଟ୍ର ଗ୍ରହଣ କରିଛନ୍ତି । ତାହା ପରଠାରୁ ଡିସେମ୍ବର ୧୦କୁ ମାନବିକ ଅଧିକାର ଦିବସ ଭାବେ ପାଳନ କରାଯାଉଛି ।

ମାନବିକ ଅଧିକାର ସମ୍ପର୍କରେ ସଭ୍ୟତାର ଇତିହାସରେ ଏହି ଯେଉଁ ଆନ୍ତର୍ଜାତିକ ସଚେତନତାର ଏକ ପରିବେଶ ଅନ୍ତତଃ ଚିନ୍ତାସ୍ତରରେ ଆସିଛି, ତାହା ଏକ ଉଲ୍ଲେଖନୀୟ ଘଟଣା । କାରଣ ଅତୀତର ସବୁ ସମାଜରେ ଓ ରାଷ୍ଟ୍ରରେ ନାନା ଭେଦଭାବ, ଶୋଷଣ, ବିଦ୍ୱେଷର ପରିବେଶ ରହିଆସିଥିଲା । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଯୁଦ୍ଧର ପରିବେଶ ସର୍ବଦା ଲାଗି ରହିଥିଲା । ଏହି ପୃଷ୍ଠଭୂମିରେ ଦେଖିଲେ ସଭ୍ୟତାର ଇତିହାସରେ ବିଂଶ ଶତାବ୍ଦୀର ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଓ ନିର୍ଣ୍ଣାୟକ ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ପୂର୍ବର ତିନିଶହ ବର୍ଷରେ ପ୍ରତି ଶତାବ୍ଦୀରେ ହାରାହାରି ତିନିଶହଟି ଯୁଦ୍ଧ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ହୋଇଥିବା ଐତିହାସିକ ଘଟଣାବଳୀରୁ ଜଣାପଡ଼େ । ଅର୍ଥାତ୍ ସବୁ ସମୟରେ କୌଣସି ନା କୌଣସି ଅଞ୍ଚଳରେ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଯୁଦ୍ଧର ବାତାବରଣ ଲାଗିରହିଥିଲା । ତେବେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯେପରି ଆଣବିକ ଅସ୍ତ୍ର ବ୍ୟବହୃତ ହେଲା, ସେଥିରୁ ଏକ ଧାରଣା ଆସିଲା ଯେ ଯଦି ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧ ହୁଏ ତେବେ ପୃଥିବୀରୁ ମଣିଷ ସଭ୍ୟତା ଲୋପ ପାଇଯିବ । ପୃଥିବୀର ବିଭିନ୍ନ ଦେଶର ଶାନ୍ତିକାମୀ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ, ମାନବଦରଦୀ ହେତୁବାଦୀ ବୁଦ୍ଧିଜୀବୀଗଣ ସେହି ପରିବେଶକୁ ଏଡ଼ାଇବା ପାଇଁ ଗମ୍ଭୀର ଚିନ୍ତା ପ୍ରକଟ କଲେ । ପରିଣାମ ସ୍ୱରୂପ ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସଦହନ ପରେ ବିଶ୍ୱ ଜାତିସଂଘର ପ୍ରତିଷ୍ଠା ହେଲା । ବିଶ୍ୱର ଉନ୍ନତ ରାଷ୍ଟ୍ର ସମୂହ ପଦକ୍ଷେପ ନେଇ ଜାତିସଂଘ ପ୍ରତିଷ୍ଠା ଦିଗରେ ଆନ୍ତରିକ ଉଦ୍ୟମ କଲେ । ରାଷ୍ଟ୍ର ରାଷ୍ଟ୍ର ସ୍ତରର ଦ୍ୱନ୍ଦ୍ୱ ଓ ସମସ୍ୟାକୁ ଏକ ଆନ୍ତର୍ଜାତିକ ସଙ୍ଗଠନରେ ସମାଧାନ କରିବା ପାଇଁ ତଥା ପୃଥିବୀପୃଷ୍ଠରୁ ଭୟାନକ ଆଣବିକ ଯୁଦ୍ଧର ବାତାବରଣକୁ ଏଡ଼ାଇବା ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରୟାସ ଥିଲା ।

ବିଶ୍ୱ ଜାତିସଂଘର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଥିଲା ଯେ ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ ଓ ଅଧିକାରକୁ ସ୍ୱୀକାର କରିବା ଓ ପ୍ରତ୍ୟେକ ବ୍ୟକ୍ତି ଯେପରି ଏକ

ମର୍ଯ୍ୟାଦାର ଜୀବନ ବଞ୍ଚି ପାରିବେ ସେ ପାଇଁ ଏକ ବାତାବରଣ ସୃଷ୍ଟି କରିବା । ଏହି ନିଷ୍ପତ୍ତି ସଭ୍ୟତାର ଇତିହାସରେ ମାନବଜାତିର ଏକ ବଡ ସାଂସ୍କୃତିକ ବିକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ହୁଏତ ପ୍ରତ୍ୟେକ ସଭ୍ୟତାରେ ବା ଧର୍ମଧାରା ଭିତରେ ମହତ୍ତର ଜୀବନ ପାଇଁ କିଛି ନୈତିକ ପ୍ରେରଣା ଥାଇପାରେ । ତେବେ ବାସ୍ତବତା ହେଉଛି ମଣିଷ ଜାତି ସର୍ବଦା ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ରାଷ୍ଟ୍ରୀୟତା, ଜାତି ଇତ୍ୟାଦି ଆଧାରରେ ଭାଗ ଭାଗ ହୋଇ ରହିଛି । ଏହି ସବୁ କାରଣକୁ ଆଧାର କରି ଗୋଷ୍ଠୀ ଗୋଷ୍ଠୀ ଭିତରେ ସାରା ପୃଥିବୀରେ ସାମନ୍ତବାଦ, ସାମ୍ରାଜ୍ୟବାଦ, ରାଜତନ୍ତ୍ର, ସ୍ୱୈରତନ୍ତ୍ର, ଏକଛତ୍ରବାଦ ଯୁଗ ଯୁଗ ଧରି ନାନା ଭାବରେ ଆଧିପତ୍ୟ ବିସ୍ତାର କରି ରହିଛି । ଦାସତ୍ୱ, ଅସ୍ପୃଶ୍ୟତା ଓ ବର୍ଣ୍ଣବୈଷମ୍ୟ ପରି ଅମାନବିକ ପ୍ରଥା ବିଭିନ୍ନ ସମାଜରେ ରହିଆସିଛି । ମଣିଷ ପ୍ରତି ମଣିଷର ଶୋଷଣ ଓ ଉତ୍ପୀଡ଼ନ ସବୁ ଯୁଗରେ ଓ ସବୁ ସଭ୍ୟତାରେ ନାନା ଭାବରେ ରହିଛି । ହୁଏତ ଯାହା ପରିମାଣରେ ପାର୍ଥକ୍ୟ ରହିଛି ।

ସଭ୍ୟତାର କ୍ରମବିକାଶ ଧାରାରେ ବିଭିନ୍ନ ଭୂଖଣ୍ଡରେ ଆନୁଷ୍ଠାନିକ ଧର୍ମମାନଙ୍କର ଅଭ୍ୟୁଦୟ ଏକ ସାଂସ୍କୃତିକ ଜାଗରଣର ପରିବେଶ ସେ ଯୁଗରେ ଆଣିଥିଲେ ବି ପ୍ରତ୍ୟେକ ଧର୍ମ ସହିତ ରକ୍ଷଣଶୀଳତା ଓ ରୂଢ଼ିବାଦ କାଳକ୍ରମେ ସଂଶ୍ଳିଷ୍ଟ ହୋଇଯାଇଛି । ପରିଣାମତଃ ମଧ୍ୟଯୁଗୀୟ ସମାଜ କିପରି ରୁଦ୍ଧ, ଜ୍ଞାନରହିତ ଓ ଶୋଷଣଯୁକ୍ତ ହୋଇ ରହିଥିଲା ତାହା ସୁବିଦିତ । ମଧ୍ୟଯୁଗୀୟ ମାନସିକତାରେ କୁସଂସ୍କାର, ଅପସିଦ୍ଧାନ୍ତ, ବ୍ୟକ୍ତି ମର୍ଯ୍ୟାଦା ବିରୋଧୀ ରାଜତନ୍ତ୍ର ଓ ସାମନ୍ତବାଦ ହିଁ ସବୁ ସଭ୍ୟତାରେ ପ୍ରଭାବ ବିସ୍ତାର କରି ରହିଥିଲା । ବ୍ୟକ୍ତିର ମହତ୍ତ୍ୱ ନ ଥିଲା । ରାଜ୍ୟ, ସାମନ୍ତବର୍ଗ ଓ ପୂଜକ ଗୋଷ୍ଠୀ ହିଁ ପ୍ରଭାବଶାଳୀ ହୋଇ ଅଗଣିତ ଜନଗଣଙ୍କୁ ଶୋଷଣ କରି ରଖିଥିଲେ ।

ତେବେ ଏହି ସ୍ଥିତିରେ ୟୁରୋପୀୟ ନବଜାଗରଣ ଏକ ସାଂସ୍କୃତିକ ବିପ୍ଳବ ଭାବେ ମୁଣ୍ଡ ଟେକିଲା । ମଧ୍ୟ ଯୁଗୀୟ ଚିନ୍ତାଧାରା ବିରୁଦ୍ଧରେ ପ୍ରତିବାଦ ସ୍ୱରୂପ ଏକ ନୂତନ ଆଲୋଡନ ନବ ଜାଗରଣ ଯୁଗଦେଇ ଆରମ୍ଭ ହେଲା । ଏହାର ପରିଣାମ ସ୍ୱରୂପ ବିଜ୍ଞାନର ଯୁଗ ଆରମ୍ଭ ହେଲା । ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର କ୍ରମବିକାଶ ହୋଇ ଚାଲିଲା ଓ ପ୍ରକୃତିର ବହୁ ରହସ୍ୟ ତଥା ଜୀବନର ଅନେକ ଘନଘଟାକୁ ବୈଜ୍ଞାନିକ ପ୍ରଣାଳୀ ଆଧାରରେ ବ୍ୟାଖ୍ୟା କରିବାର ମାନସିକତା ଆସିଲା । ବିଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ସହ ଧର୍ମକୈନ୍ଦ୍ରିକ ଜଗଦଦୃଷ୍ଟି ଓ ଜୀବନର ଲକ୍ଷ୍ୟ ପରିବର୍ତ୍ତିତ ହୋଇଚାଲିଛି । କେଉଁ ଈଶ୍ୱର ମଣିଷକୁ ସୃଷ୍ଟି କରିନାହାନ୍ତି ବା ସମାଜରେ ଯେଉଁ ଅନ୍ୟାୟ, ଭେଦଭାବର ପରିବେଶ ରହିଛି ତାହା ଆଦୌ ଦୈବୀ ସମର୍ଥିତ ନୁହେଁ । ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟଦେଇ ମଣିଷର ଉତ୍ପତ୍ତି ହୋଇଛି । ସେହିପରି ଏକ ଆଦିମ ସୋପାନରୁ ନାନା ସାମାଜିକ କ୍ରମବିକାଶ ଦେଇ ରାଜନୀତି, ଅର୍ଥନୀତି, ସାଂସ୍କୃତିକ ପରିବେଶ ଓ ନୈତିକ ଚେତନାର ବିକାଶ ହୋଇଛି । ଏହିସବୁ ଭାବନାରୁ କାଳକ୍ରମେ ଗଣତାନ୍ତ୍ରିକ

ବ୍ୟବସ୍ଥାର ଅଭ୍ୟୁଦୟ ହୋଇଛି ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ଭାବନା ଦାର୍ଶନିକ ଚିନ୍ତନ ଦେଇ ଭିତ୍ତି ନେଇଛି । ଏହି ପୃଷ୍ଠଭୂମିରେ ଫରାସୀ ରାଷ୍ଟ୍ରବିପ୍ଳବ ଓ ଆମେରିକୀୟ ସ୍ୱାଧୀନତା ସଂଗ୍ରାମ ଇତିହାସର ଦୁଇଟି ମହତ୍ତ୍ୱପୂର୍ଣ୍ଣ ଘଟଣା । କେତେକ ପାଶ୍ଚାତ୍ୟ ଭୂଖଣ୍ଡରେ ଗଣତାନ୍ତ୍ରିକ ଅଧିକାର ପାଇଁ ଆନ୍ଦୋଳନ ତଥା ଫରାସୀ ରାଷ୍ଟ୍ର ବିପ୍ଳବ ଓ ଆମେରିକୀୟ ସ୍ୱାଧୀନତା ସଂଗ୍ରାମ ଗଣତନ୍ତ୍ରର ଭିତ୍ତି ପକାଇଛି । ରାଜନୈତିକ ବ୍ୟବସ୍ଥା ଭାବେ ରାଜତନ୍ତ୍ର ଓ ଏକଛତ୍ରବାଦ ଯେ ସଭ୍ୟ ଜୀବନଧାରାର ପରିପନ୍ଥୀ ଏହି ଆଲୋଡ଼ନ ଚିନ୍ତାରାଜ୍ୟରେ ବିପ୍ଳବର ସୂତ୍ରପାତ କରାଇଛି । ପରିଣାମତଃ ଗଣତନ୍ତ୍ରର ଯୁଗ ଆସିଛି ଓ ଗଣତାନ୍ତ୍ରିକ ସଂଗଠନ ଓ ଅନୁଷ୍ଠାନ ଜରିଆରେ ଏହା ସବୁଠାରୁ ଅଧିକ ସଭ୍ୟ ବ୍ୟବସ୍ଥା ଭାବେ ସ୍ୱୀକୃତି ହୋଇଛି । ଗଣତାନ୍ତ୍ରିକ ବିଚାରବୋଧରୁ ଦାସତ୍ୱ ଭାବନା ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଉଠିଛି । ଯେଉଁଠି ଅତୀତରେ ଦାସତ୍ୱ ପ୍ରଥା ରହିଥିଲା ସେଠାରେ ପ୍ରତିବାଦର ସ୍ୱର ଉଠିଛି, ମଣିଷର ମର୍ଯ୍ୟାଦା ଓ ମହତ୍ତ୍ୱର ଭାବନା ସୃଷ୍ଟି ହୋଇଛି । ସାମରିକ ଶକ୍ତିରେ ବଳଶାଳୀ ଓ ଶିଳ୍ପୋନ୍ନତ ରାଷ୍ଟ୍ରମାନେ ଶିଳ୍ପ ବିପ୍ଳବ ଯୁଗରେ ଯେପରି ସାମ୍ରାଜ୍ୟବାଦର ବିସ୍ତାର କରିଛନ୍ତି ତାହା ବିରୁଦ୍ଧରେ ମଧ୍ୟ ବିପ୍ଳବର ସ୍ୱର ତୀବ୍ର ହୋଇଛି । ରାଷ୍ଟ୍ରୀୟ ଚେତନାର ବିକାଶରୁ ରାଷ୍ଟ୍ରର ସାର୍ବଭୌମତ୍ୱ ଗୁରୁତ୍ୱପୂର୍ଣ୍ଣ ମନେହୋଇଛି ଓ ସାମ୍ରାଜ୍ୟବାଦୀ ଆଧିପତ୍ୟରୁ ମୁକ୍ତି ପାଇଁ ଜନଆନ୍ଦୋଳନ ସୃଷ୍ଟି ହୋଇଛି । ପରିଣାମତଃ ବହୁ ରାଷ୍ଟ୍ର ସ୍ୱାଧୀନ ହୋଇଛନ୍ତି ଓ ଜନଗଣଙ୍କର ବିକାଶ, ମାନବିକ ଅଧିକାର ଏବଂ ଏକ ନ୍ୟାୟ ଆଧାରିତ ବ୍ୟବସ୍ଥାର ଅଭ୍ୟୁଦୟ ପାଇଁ ପ୍ରୟାସ କରିଛନ୍ତି । ତେବେ ଉଗ୍ର ଜାତୀୟତାବାଦ ପୁନଶ୍ଚ ଫାସିବାଦକୁ ପ୍ରଶ୍ରୟ ଦେଇଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ଇଟାଲୀ, ଜର୍ମାନୀ ଆଦି ଦେଶରେ ଉଗ୍ର ଜାତୀୟତାବାଦରୁ ମାନବିକତା ବିରୋଧୀ ଫାସିବାଦ ଓ ଯୁଦ୍ଧର ପରିବେଶ ଆସିଛି । ସାମ୍ରାଜ୍ୟବାଦର ବିସ୍ତାର ନେଇ ଉନ୍ନତ ରାଷ୍ଟ୍ରମାନଙ୍କ ମଧ୍ୟରେ ଯେଉଁ ବିଦ୍ୱେଷ ଓ ପ୍ରତିଯୋଗିତାର ବାତାବରଣ ଆସିଥିଲା ସେଥିରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସୃଷ୍ଟି ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସଦହନ ପରେ ଏକ ନୂତନ ସାଂସ୍କୃତିକ ଆଲୋଡନ ସୃଷ୍ଟି ହୋଇଛି । ବିଶ୍ୱଯୁଦ୍ଧ ଯେ ପୃଥିବୀରେ ମଣିଷ ସଭ୍ୟତାର ଓ ମଣିଷ ଜାତିର ମୃତ୍ୟୁଘଣ୍ଟି ବଜାଇବ ଏହି ଭାବନା ବିଶ୍ୱସ୍ତରରେ ସ୍ୱୀକୃତ ହୋଇଛି ।

ବସ୍ତୁତଃ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସାର୍ବଜନୀନ ମନୋଭାବର ବାତାବରଣ ସାରା ପୃଥିବୀରେ ଉଦ୍ଭବ ହୋଇଛି । 'ମଣିଷ ଜାତି ଏକ' ଏହି ଭାବନା କାଳକ୍ରମେ ବୌଦ୍ଧିକ ସ୍ତରରେ ଗୃହୀତ ହେବାରେ ଲାଗିଛି । ଜାତି, ଜାତୀୟତା ଊର୍ଦ୍ଧ୍ୱରେ 'ମାନବବାଦ' ବିଚାର ଆସିଛି । ୟୁରୋପୀୟ ନବ ଜାଗରଣ ପରଠାରୁ ଏକ 'ମାନବ-କୈନ୍ଦ୍ରିକ' ଜୀବନ ଦର୍ଶନର ଯେଉଁ ଧାରାଟି ସୃଷ୍ଟି ହୋଇଥିଲା ତାହା ଆନ୍ତର୍ଜାତିକ ଚେତନାର ପରିବେଶ ଆଣିବାରେ ସହାୟକ ହୋଇଛି ।

ବିଜ୍ଞାନ ଓ ମାନବବାଦ ସଭ୍ୟତାର କ୍ରମବିକାଶରେ ସୃଷ୍ଟି କରିଛି ଏକ ନୂତନ ଯୁଗର ପରିବେଶ । ମାନବବାଦର ଦାର୍ଶନିକ ଭିତ୍ତିକୁ ବିଜ୍ଞାନ ଆଧାରିତ ଦୃଷ୍ଟିଭଙ୍ଗୀ ନାନା ଭାବରେ ପ୍ରଭାବିତ ଓ ଋଦ୍ଧିମନ୍ତ କରିଛି । ଏହି ପୃଷ୍ଠଭୂମିରେ ଦୁଇଟି ଭାବନା ବୌଦ୍ଧିକ ଜଗତରେ ଆଲୋଡ଼ନ ଆଣିଛି । ପ୍ରଥମରେ ଏହା ଅନୁଭୂତିରୁ ଓ ବିଚାରଶୀଳତାରୁ ଦୃଢ଼ ହୋଇଛି ଯେ, ମଣିଷର ପ୍ରୟାସରେ ବ୍ୟକ୍ତିଗତ, ଗୋଷ୍ଠୀଗତ ଓ ସାମୂହିକ ଜୀବନର ଗୁଣାତ୍ମକ ମାନ ଉନ୍ନତ ହେବା ସମ୍ଭବ । ଏକ ସୁନ୍ଦର ଓ ପ୍ରୀତିପୂର୍ଣ୍ଣ ସାମୂହିକ ଜୀବନ ମଣିଷର ପ୍ରୟାସରେ ହିଁ ସମ୍ଭବ ହୋଇପାରିବ । ମଣିଷର ଉଦ୍ୟମରେ ଆମ ସଂସାର ଉନ୍ନତ ଓ ଅଧିକ ଦୁଃଖ ରହିତ ହେବା ସମ୍ଭବ । ଦ୍ୱିତୀୟରେ ମଣିଷ ସାଧନ ନୁହେଁ, ସେ ହେଉଛି ସାଧ୍ୟ । ଅର୍ଥାତ ସମାଜ ସବୁ ମଣିଷଙ୍କ ପାଇଁ ଉଦ୍ଦିଷ୍ଟ । ପ୍ରତ୍ୟେକ ବ୍ୟକ୍ତିର ଗୁଣାତ୍ମକ ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପାଇଁ ସମାଜ ହିଁ ପରିବେଶ ଯୋଗାଇବା ଆବଶ୍ୟକ । ଏହି ହେତୁବାଦୀ ଜୀବନ ଦର୍ଶନ ବ୍ୟକ୍ତିମର୍ଯ୍ୟାଦା ଓ ଅଧିକାରକୁ ପ୍ରାଧାନ୍ୟ ଦେଇଛି ।

ଏକ ଶୋଷଣମୁକ୍ତ, ଭେଦଭାବ ରହିତ ଓ ମାନବିକ ମର୍ଯ୍ୟାଦା ଭିତ୍ତିକ ସମାଜ ନିର୍ମାଣ ମଣିଷର ପ୍ରୟାସ ଦ୍ୱାରା ହିଁ ସମ୍ଭବ । ବର୍ଣ୍ଣ, ଲିଙ୍ଗ, ଜାତି, ଜାତୀୟତା, ଧର୍ମକୁ ଆଧାର କରି ସଂସାରରେ ଯେତେ ସବୁ ବିଦ୍ୱେଷର ଭାବନା ରହିଛି ତାହା ଯେ ମାନବିକତା ବିରୋଧୀ ତାହା ହିଁ କାଳକ୍ରମେ ଚିନ୍ତାଧାରାରେ ପ୍ରାଧାନ୍ୟ ନେବାରେ ଲାଗିଛି । ଏହିପରି ବିଚାର ତଥା ଯୁଦ୍ଧର ବିଭୀଷିକାର ଭୟଜନିତ କାରଣରୁ ଏକ ନୂତନ ଆଲୋଡ଼ନ ବିଶ୍ୱରେ ସୃଷ୍ଟିହୋଇଛି । ପରିଣାମତଃ ମାନବିକ ଅଧିକାରକୁ ବିଶ୍ୱ ଘୋଷଣାନାମାରେ ସ୍ୱୀକୃତି ଦିଆଯାଇଛି । ଆନ୍ତର୍ଜାତିକ ଘୋଷଣାନାମାରେ ଯାହା କୁହାଯାଇଛି ତାହା ହୁଏତ ବାସ୍ତବପକ୍ଷେ ସବୁ ଦେଶରେ ସମ୍ଭବ ହୋଇନାହିଁ । ଏବେ ବି ବିଭିନ୍ନ ସମାଜରେ ନାନା ଭାବରେ ଭେଦଭାବ ରହିଛି । ତଥାପି ଚିନ୍ତାରାଜ୍ୟରେ ଯେଉଁ ବୈପ୍ଳବାତ୍ମକ ଆଲୋଡ଼ନ ସୃଷ୍ଟି ହୋଇଛି ଓ ଯାହା ବିଶ୍ୱସ୍ତରରେ ସଭ୍ୟ ମାନଦଣ୍ଡ ଭାବେ ସ୍ୱୀକୃତ ହୋଇଛି ତାହା ଯେ ସଭ୍ୟତାର ଅଗ୍ରଗତିରେ ଏକ ବଡ଼ ନୈତିକ ଉତ୍ତରଣ ଏହା ନିଃସନ୍ଦେହ ମନେହୁଏ । (୨୮.୧୨.୧୧)



# ମାନବିକ ଅଧିକାର ଓ ବିଶ୍ୱ ସ୍ୱୀକୃତି

ଜାତିସଂଘର ଜେନେରାଲ ଆସେମ୍ବ୍ଲି ୧୯୪୮ ମସିହା ଡ଼ିସେମ୍ବର ୧୦ ତାରିଖ ଦିନ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାଟିକୁ ସ୍ୱୀକୃତି ଦେଲା । ଜାତିସଂଘ ସହ ସମ୍ପୃକ୍ତ ସମସ୍ତ ସଭ୍ୟ-ରାଷ୍ଟ୍ର ଏହାକୁ ବିନା ବିରୋଧରେ ଗ୍ରହଣ କଲେ । ବିଶ୍ୱ ଜାତିସଂଘ ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ ଓ ଆତ୍ମସମ୍ମାନର ସହ ଜୀବନ ଧାରଣକୁ ନୀତିଗତ ସମର୍ଥନ ଦେଲା । ବିଶ୍ୱର ସମସ୍ତ ରାଷ୍ଟ୍ର ପାଇଁ ମାନବିକତାର ବିକାଶ ଦିଗରେ ଏହା ଏକ ଆଦର୍ଶଗତ ଦଲିଲ ହୋଇ ରହିଲା । ଜାତିସଂଘର ପ୍ରତିଷ୍ଠା ପରେ ମାନବିକ ଅଧିକାରର ଉଲ୍ଲଘଂନକୁ ଆନ୍ତର୍ଜାତିକ ସ୍ତରରେ ପ୍ରତିହତ କରିବା ପାଇଁ ସୁପାରିଶ କରିବାକୁ ୧୯୪୬ରେ ଶ୍ରୀମତୀ ଏଲେନାର ରୁଜଭେଲ୍ଟଙ୍କ ସଭାପତିତ୍ୱରେ ବିଶ୍ୱର ବୁଦ୍ଧିଜୀବୀଙ୍କୁ ନେଇ ଏକ କମିଶନ ଗଠିତ ହୋଇଥିଲା । କମିଶନ ତାଙ୍କର ରିପୋର୍ଟ ଜାତିସଂଘକୁ ସେପ୍ଟେମ୍ବର ୧୯୪୮ରେ ପ୍ରଦାନ କଲେ । ସେଥିରେ ସାମାନ୍ୟ ପରିବର୍ତ୍ତନ ସହ ଏହି ରିପୋର୍ଟକୁ ଜାତିସଂଘ ଗ୍ରହଣ କଲା । ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ପ୍ରତ୍ୟେକ ବ୍ୟକ୍ତିର ଅଧିକାର, ଆତ୍ମସମ୍ମାନ, ଭୟଶୂନ୍ୟ ଜୀବନ ଓ ଭେଦଭାବ ବିହୀନ ଜୀବନ ଧାରଣକୁ ସ୍ୱୀକାର କରାଗଲା । ମଣିଷ ସମାଜରେ ଭ୍ରାତୃତ୍ୱଭାବ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ସହନଶୀଳତା ଓ ସମତାକୁ ସାର୍ବଜନୀନ କରିବା ପାଇଁ ଏଥିରେ ଉଲ୍ଲେଖ ରହିଲା ।

ମାନବିକ ଅଧିକାର ନେଇ ଯେଉଁ ଘୋଷଣାନାମାଟି ବିଶ୍ୱସ୍ତରରେ ଗୃହୀତ ହୋଇଛି ସେଥିରେ ୩୦ଟି ଧାରା ରହିଛି । ଏହାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଏ. ଯଥା- ନାଗରିକ ଓ ରାଜନୈତିକ ଅଧିକାର ଏବଂ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର । ସୁତରାଂ ସମସ୍ତ ମାନବିକ ଅଧିକାର ପରିସରରେ ପାଞ୍ଚଟି ଦିଗ ରହିଲା ଯଥା- ନାଗରିକ ଅଧିକାର, ରାଜନୈତିକ ଅଧିକାର, ଅର୍ଥନୈତିକ ଅଧିକାର, ସାମାଜିକ ଅଧିକାର ଓ ସାଂସ୍କୃତିକ ଅଧିକାର ।

ନାଗରିକ ଅଧିକାର ବା ସିଭିଲ ଲିବର୍ଟିର ଦୁଇଟି ଭାଗ ରହିଛି । ପ୍ରଥମରେ ଭୟଶୂନ୍ୟ ଓ ନିରାପଦ ଜୀବନ ବଞ୍ଚିବା ଓ ସ୍ୱାଧୀନତା ଉପଭୋଗ କରିବା ପ୍ରତ୍ୟେକ ବ୍ୟକ୍ତିର ଏକ ମୌଳିକ ଅଧିକାର । ସ୍ୱାଧୀନତା ଉପଭୋଗ କରିବାର ଅର୍ଥ ମତବ୍ୟକ୍ତ

କରିବା, ସଙ୍ଗଠନ କରିବାର ଅଧିକାର ପ୍ରତ୍ୟେକ ବ୍ୟକ୍ତିର ରହିବ । ଦ୍ୱିତୀୟରେ ଆଇନ ଦୃଷ୍ଟିରେ ସମାନ ବିବେଚିତ ହେବା, ଆଇନର ନିରାପତ୍ତା ପାଇବା ଓ କୌଣସି ବେଆଇନ, ସ୍ୱେଚ୍ଛାଚାରୀ ଗିରଫ ଇତ୍ୟାଦିରୁ ମୁକ୍ତରହିବା ବ୍ୟକ୍ତିର ଏକ ଅଧିକାର । ବ୍ୟକ୍ତିର ରାଜନୈତିକ ଅଧିକାର କ୍ଷେତ୍ରରେ ନିର୍ବାଚନରେ ଭୋଟ ଦେବା ଓ ରାଷ୍ଟ୍ରର ଶାସନ ବ୍ୟବସ୍ଥାରେ ସମ୍ପୃକ୍ତ ହେବାର ଅଧିକାର ପ୍ରତ୍ୟେକ ନାଗରିକ ଉପଭୋଗ କରିପାରିବେ । ଅର୍ଥନୈତିକ ଅଧିକାର ଭିତରେ ନିଜର ଯୋଗ୍ୟତା ଅନୁଯାୟୀ କର୍ମସଂସ୍ଥାନ ଲାଭ କରିବା, ସମାନ କାର୍ଯ୍ୟ ପାଇଁ ସମାନ ବେତନ ବା ପାରିଶ୍ରମିକ ଲାଭ କରିବା ଓ କାର୍ଯ୍ୟସ୍ଥଳରେ ଏକ ଅନୁକୂଳ ମାନବିକ ପରିବେଶ ଆଶା କରିବା ବ୍ୟକ୍ତିର ଅଧିକାର ହୋଇ ରହିବ । ଶୋଷଣର ଶିକାର ନ ହେବା ଓ ସମାନ ସୁଯୋଗର ପରିବେଶ ଆଶା କରିବା ମଧ୍ୟ ଏଥିରେ ସମ୍ପୃକ୍ତ । ସାମାଜିକ ଅଧିକାର ଭିତରେ ସମାଜରେ କୌଣସି ଭେଦଭାବ ବା ପାତର-ଅନ୍ତରର ସମ୍ମୁଖୀନ ନ ହେବା ଓ ସମାନ ସାମାଜିକ ମର୍ଯ୍ୟାଦା ପାଇବା ବ୍ୟକ୍ତିର ଅଧିକାର । ସାଂସ୍କୃତିକ ଅଧିକାର ଭିତରେ ଧର୍ମ, ଈଶ୍ୱର ଆଦିରେ ବିଶ୍ୱାସ କରିବା ବା ନକରିବାର ଅଧିକାର ଓ ବିବେକ ଦ୍ୱାରା ପରିଚାଳିତ ହେବା ସମ୍ପୃକ୍ତ । ଏହା ସହିତ ଶିକ୍ଷାର ଅଧିକାର ମଧ୍ୟ ସମ୍ପୃକ୍ତ । ଅର୍ଥାତ୍ ପ୍ରତ୍ୟକ ବ୍ୟକ୍ତି ଶିକ୍ଷା ପାଇବାର ସୁଯୋଗ ପାଇବା ତାହାର ଏକ ମୌଳିକ ଅଧିକାର ।

ଜାତିସଂଘର ଏହି ଆନ୍ତର୍ଜାତିକ ଘୋଷଣା ପରେ ଜାତିସଂଘ ଆନୁକୂଲ୍ୟରେ ବିଭିନ୍ନ ସମୟରେ ବିଭିନ୍ନ ସମ୍ମିଳନୀମାନ ଆହୂତ କରାଯାଇଛି। ଯେଉଁ କ୍ଷେତ୍ରରେ ମାନବିକ ଅଧିକାରର ଉଲ୍ଲଘଂନ ଦେଶମାନଙ୍କରେ ସାଧାରଣରେ ହେଉଛି ସେଥିରେ ରାଷ୍ଟ୍ରସଂଘ ନିଜର ସମ୍ପୃକ୍ତି ବ୍ୟକ୍ତ କରୁଛି । ଯୁଗ ଯୁଗ ଧରି କେତେକ ଦେଶରେ ବର୍ଣ୍ଣଗତ ବୈଷମ୍ୟ ଯେପରି ରହିଛି ତାହାର ବିଲୋପ ପାଇଁ ୧୯୬୯ରେ ପୃଥିବୀର ୧୪୦ଟି ରାଷ୍ଟ୍ର ଏକ ଘୋଷଣାନାମା ଜରିଆରେ ବର୍ଣ୍ଣଗତ ଭେଦଭାବକୁ ଦୂର କରିବାକୁ ନିଷ୍ପତ୍ତି କରିଛନ୍ତି । ସେହିପରି ମହିଳାମାନଙ୍କୁ ଯେପରି ଭେଦଭାବର ଶିକାର ହେବାକୁ ପଡୁଛି ତାହାର ବିଲୋପ ପାଇଁ ୧୯୭୯ ରେ ଜାତିସଂଘ ଜେନେରାଲ ଆସେମ୍ବ୍ଲି ନିଷ୍ପତ୍ତି ନେଇଛି । କେତେକ ଦେଶରେ ଜବରଦସ୍ତ ଝିଅମାନଙ୍କୁ ଅଳ୍ପ ବୟସରୁ ବିବାହ କରାଇବା, ପାରିବାରିକ ହିଂସା, କର୍ମ କ୍ଷେତ୍ରରେ ମହିଳାମାନଙ୍କୁ ପାତର ଅନ୍ତର ଇତ୍ୟାଦି ନିଷେଧ କରିବାକୁ ବିଶ୍ୱ ସ୍ତରରେ ସଚେତନତା ଆଣିବାକୁ ପ୍ରୟାସ ହୋଇଛି । ଲିଙ୍ଗଗତ ଭେଦଭାବ ଦୂର କରିବାକୁ ନାନା ଆନ୍ତର୍ଜାତିକ ସମ୍ମିଳନୀ ମଧ୍ୟ ହୋଇଛି । ସେହିପରି ଶିଶୁ ସୁରକ୍ଷା ଓ ଶିଶୁ ଅଧିକାର ଦିଗରେ ନାନା ପଦକ୍ଷେପ ନିଆଯାଇଛି । ଶିଶୁ ଶ୍ରମିକ ପ୍ରଥାକୁ ବନ୍ଦ କରିବା ପାଇଁ ଉଦ୍ୟମ କରାଯାଉଛି । ଜାତିସଂଘର ୟୁନିସେଫ,

ୟୁନେସ୍କୋ ପରି ସଂସ୍ଥା ଏ ଦିଗରେ କାର୍ଯ୍ୟକ୍ରମ ବିଶ୍ୱସ୍ତରରେ ଗ୍ରହଣ କରୁଛି । ସେହିପରି କେତକ ରାଷ୍ଟ୍ରରେ ସଂଖ୍ୟାଲଘୁ ଶ୍ରେଣୀର ନିରାପତ୍ତା, ଅଧିକାର ପାଇଁ ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ଗୁଡ଼ିକରେ ନାନା ପଦକ୍ଷେପ ନିଆଯାଇଛି । ଅରାଜକତା, ରାଜନୈତିକ ବିଦ୍ରୋହ, ପ୍ରାକୃତିକ ଦୁର୍ବିପାକ ଇତ୍ୟାଦି ନାନା କାରଣରୁ ଯେଉଁ ଲୋକମାନେ ନିଜର ଭିଟାମାଟି ଛାଡ଼ି ଶରଣାର୍ଥୀ ହେଉଛନ୍ତି ସେମାନଙ୍କର ସୁରକ୍ଷା ପାଇଁ ମଧ ଜାତିସଂଘ ସମ୍ପୃକ୍ତି ପ୍ରକାଶ କରିଆସିଛି । ଯେଉଁ କ୍ଷେତ୍ରରେ ମାନବିକ ଅଧିକାରର ଉଲ୍ଲଘଂନ ଅକ୍ଲେଶରେ ହେଉଛି ସେଠାରେ ଜନଗଣଙ୍କୁ ସୁରକ୍ଷା ଦେବାକୁ ଆନ୍ତର୍ଜାତିକ ସ୍ତରରେ ଗମ୍ଭୀର ଚିନ୍ତା ପ୍ରକଟ ପାଉଛି । ବିଶେକରି କୌଣସି ସମସ୍ୟା ଉପରେ ଅନୁଶୀଳନ କରି ସାମାଧାନର ସୂତ୍ର ବାହାର କରିବାକୁ ବିଶ୍ୱସ୍ତରରେ ବୁଦ୍ଧିଜୀବୀମାନଙ୍କୁ ସମ୍ପୃକ୍ତ କରାଯାଇ ତାହାର ଅଧୟନ କରାଯାଉଛି । ଜାତିସଂଘର ତତ୍ତ୍ୱାବଧାନରେ ଏହିପରି ନାନା ବାସ୍ତବ ପଦକ୍ଷେପ ବିଗତ ଦଶନ୍ଧି ଗୁଡ଼ିକରେ ନିଆଯାଇଛି ।

ଜାତିସଂଘର ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା ପରେ କେତେକ ରାଷ୍ଟ୍ର ଆନ୍ତରାଷ୍ଟ୍ରୀୟ ସଂଗଠନ ଦ୍ୱାରା ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ମାନବିକ ଅଧିକାରର ସୁରକ୍ଷା ପାଇଁ ପଦକ୍ଷେପ ନେବାକୁ ପ୍ରୟାସ କରିଛନ୍ତି । ଏହି କ୍ଷେତ୍ରରେ ତିନୋଟି ଆନ୍ତରାଷ୍ଟ୍ରୀୟ ସଂଗଠନ ଉଲ୍ଲେଖଯୋଗ୍ୟ, ଯଥା-କାଉନସିଲ ଅଫ ୟୁରୋପ, ଅର୍ଗାନାଇଜେସନ ଅଫ ଆଫ୍ରିକାନ ୟୁନିଟି ଓ ଅର୍ଗାନାଇଜେସନ ଅଫ୍ ଅମେରିକାନ୍ ଷ୍ଟେଟସ । କାଉନ୍ସିଲ ଅଫ ୟୁରୋପ ୧୯୪୯ରେ ଗଠିତ ହୋଇଛି ଓ ସେଥିରେ ୩୯ଟି ରାଷ୍ଟ୍ର ସମ୍ପୃକ୍ତ ରହିଛନ୍ତି । ଏହାର ମୁଖବନ୍ଧ ବା ପ୍ରିଏମ୍ବୁଲ କାଉନସିଲ ଅଫ ୟୁରୋପୀୟ ରାଷ୍ଟ୍ରମାନଙ୍କରେ କିପରି ଏକ ସାଧାରଣ ସାମାଜିକ ବ୍ୟବସ୍ଥା, ପରମ୍ପରା ଓ ରାଜନୈତିକ ଆଦର୍ଶ ରହିଛି ତାହା ଉଲ୍ଲେଖ କରିଛି । ସୁତରାଂ ବିଶ୍ୱଘୋଷଣାନାମାର ଆଦର୍ଶ ଗୁଡ଼ିକ କିପରି ୟୁରୋପୀୟ ରାଷ୍ଟ୍ର ସମୂହ ଭିତରେ ସମ୍ପୂର୍ଣ୍ଣ ପ୍ରତିଫଳିତ ହୋଇପାରିବ ତାହା ପ୍ରତି ସମ୍ପୃକ୍ତି ବ୍ୟକ୍ତ କରାଯାଇଛି । ଅର୍ଗାନାଇଜେସ୍ ଅଫ୍ ଆଫ୍ରିକାନ୍ ୟୁନିଟି ୧୯୮୧ ରେ ପ୍ରତିଷ୍ଠିତ ହୋଇଛି ଓ ଏଥିରେ ୫୦ଟି ରାଷ୍ଟ୍ର ସଭ୍ୟ ରହିଛନ୍ତି । ସେମାନେ ମାନବିକ ଅଧିକାରର ଆଫ୍ରିକାନ୍ ଚାର୍ଟର ପ୍ରସ୍ତୁତ କରିଛନ୍ତି । ବ୍ୟକ୍ତିର ଅଧିକାର ସହ ବ୍ୟକ୍ତି ସମ୍ପୃକ୍ତ ଥିବା ଜନଗୋଷ୍ଠୀର ଅଧିକାରକୁ ଏଥିରେ ଗୁରୁତ୍ୱ ଦିଆଯାଇଛି । ବ୍ୟକ୍ତିର ଅଧିକାର ସାମାଜିକ ଜନଗୋଷ୍ଠୀ ଭିତରେ ସୁରକ୍ଷିତ ରହିପାରିବ । ସୁତରାଂ ଜନଗୋଷ୍ଠୀର ଶିକ୍ଷା, ସଚେତନତା ଓ ସୁରକ୍ଷା ପାଇଁ ସେଥିରେ ସମ୍ପୃକ୍ତି ବ୍ୟକ୍ତ ହୋଇଛି । ଅର୍ଗାନାଇଜେସନ୍ ଅଫ୍ ଆମେରିକାନ୍ ଷ୍ଟେଟସ୍ ୧୯୫୯ରେ ପ୍ରତିଷ୍ଠିତ ହୋଇଛି ଓ ଏଥିରେ ୩୦ଟି ରାଷ୍ଟ୍ର ସମ୍ପୃକ୍ତ ରହିଛନ୍ତି । ମାନବିକ ଅଧିକାରକୁ ସୁରକ୍ଷା ଦେବା ଓ ଯେକୌଣସି ମାନବିକ

ଅଧିକାରର ଉଲ୍ଲଘଂନକୁ ଅନୁଧ୍ୟାନ କରିବା ପାଇଁ ଏହି ରାଷ୍ଟ୍ର ସକଳ ଉଦ୍ୟମ କରିଆସିଛନ୍ତି । ଜାତିସଂଘ ବାହାରେ ଏହିସବୁ ସଂଗଠନ ଗୁଡ଼ିକ ମାନବିକ ଅଧିକାରର ବିଶ୍ୱଘୋଷଣାନାମାରେ ପ୍ରତିଫଳିତ ଆଦର୍ଶ ସକଳ ପ୍ରତି ପ୍ରତିବଦ୍ଧତା ପ୍ରକାଶ କରି ନିଜ ସ୍ତରରେ ପ୍ରୟାସ କରୁଛନ୍ତି ।

କେତେକ ବେସରକାରୀ ସଂଗଠନ ବା ଏନ୍‌ଜିଓ ମଧ୍ୟ ମାନବିକ ଅଧିକାର ନେଇ ବିଶ୍ୱସ୍ତରରେ କାର୍ଯ୍ୟ କରୁଛନ୍ତି । ସେ ମଧ୍ୟରେ ସବୁଠାରୁ ବଡ଼ ସଂଗଠନ ହେଉଛି ଆମ୍ନେଷ୍ଟି ଇଣ୍ଟର ନେସନାଲ(ଏ.ଆଇ.) । ଲଣ୍ଡନର ଜଣେ ବିଶିଷ୍ଟ ଓକିଲ ଓ ମାନବିକ ଅଧିକାରର ପ୍ରବକ୍ତା ପିଟର ବେନସନ ୧୯୬୧ରେ ଏ. ଆଇ.ଗଠନ କରି ଚିଠି ଲେଖା ମାଧ୍ୟମରେ ମାନବିକ ଅଧିକାରର ସୁରକ୍ଷା ପାଇଁ ପ୍ରୟାସ ଆରମ୍ଭ କରିଥିଲେ । ବିଶେଷକରି ବିଭିନ୍ନ ରାଷ୍ଟ୍ରରେ ରାଜନୈତିକ ବିରୋଧୀମାନଙ୍କର ସୁରକ୍ଷା, ଯୁଦ୍ଧ-ବନ୍ଦୀମାନଙ୍କର ପ୍ରତ୍ୟାବର୍ତ୍ତନ ଇତ୍ୟାଦି ପ୍ରସଙ୍ଗ ଉପରେ ଏ.ଆଇ. ବିଶ୍ୱସ୍ତରରେ କାର୍ଯ୍ୟ କରିଆସୁଛି । ପୃଥିବୀର ପ୍ରାୟ ୧୪୦ଟି ରାଷ୍ଟ୍ରରେ ଏଥିରେ ଦଶଲକ୍ଷ ମାନବିକ ଅଧିକାରର ସମର୍ଥକ ରହିଛନ୍ତି । ଆନ୍ତର୍ଜାତିକ ସ୍ତରରେ ଏହାର ମହନୀୟ କାର୍ଯ୍ୟ ପାଇଁ ଏହାର ପ୍ରଥମ ନିର୍ଦ୍ଦେଶକ ମାକବ୍ରିଡ଼ଙ୍କୁ ୧୯୭୪ରେ ବିଶ୍ୱଶାନ୍ତି ପାଇଁ ନୋବେଲ ପୁରସ୍କାର ସହ ୧୯୭୭ରେ ଆମ୍ନେଷ୍ଟି ଇଣ୍ଟର ନେସନାଲକୁ ବିଶ୍ୱଶାନ୍ତି ଦିଗରେ ଉଲ୍ଲେଖନୀୟ ଅବଦାନ ପାଇଁ ନୋବେଲ ପୁରସ୍କାର ଦିଆଯାଇଛି ।

ସେହିପରି ରେଡ଼କ୍ରସ ଅନ୍ୟ ଏକ ଆନ୍ତର୍ଜାତିକ ସଂଗଠନ ଯାହା ମାନବ ଦରଦୀ ସେବା ଓ ମାନବିକ ଅଧିକାର ଦିଗରେ କାର୍ଯ୍ୟକରି ଆସୁଛି । ସୁଇଜରଲ୍ୟାଣ୍ଡର ବିଶିଷ୍ଟ ମାନବବାଦୀ ହେନରୀ ଡୁନାଣ୍ଟ(୧୮୨୮-୧୯୧୦) ଏହି ସଂଗଠନ ଆରମ୍ଭ କରିଥିଲେ । ଯୁଦ୍ଧକ୍ଷେତ୍ରରେ ସମସ୍ତ କ୍ଷତାକ୍ତ ସୈନିକମାନଙ୍କୁ ନିରପେକ୍ଷ ଭାବରେ ସ୍ୱାସ୍ଥ୍ୟ ସେବା ଯୋଗାଇବାରେ ରେଡ଼କ୍ରସ ବିଶ୍ୱର ସବୁଠାରୁ ବଡ଼ ମାନବବାଦୀ ସଙ୍ଗଠନ । ଶାନ୍ତି ସମୟରେ ସ୍ୱାସ୍ଥ୍ୟସେବା ଓ ପ୍ରାକୃତିକ ଦୁର୍ବିପାକରେ ସାଧାରଣ ମଣିଷର ଦୁଃଖ ଦୂର କରିବା ପାଇଁ ସମ୍ବେଦନଶୀଳ ଭାବରେ ଏହି ସଙ୍ଗଠନ ସାରା ବିଶ୍ୱରେ କାର୍ଯ୍ୟ କରୁଛି । ସେହିପରି "ବିଶ୍ୱ ଶ୍ରମିକ ସଙ୍ଗଠନ" ସାରା ବିଶ୍ୱରେ ଶ୍ରମିକମାନଙ୍କର ସୁରକ୍ଷା, ଅଧିକାର, କାର୍ଯ୍ୟ କ୍ଷେତ୍ରରେ ଉପଯୁକ୍ତ ବାତାବରଣ ପାଇଁ ଆନ୍ତର୍ଜାତିକ ସ୍ତରରେ କାର୍ଯ୍ୟ କରୁଛି ।

ମୋଟ ଉପରେ କହିଲେ ମାନବିକ ଅଧିକାରର ସୁରକ୍ଷା ଓ ମାନବିକ ସମ୍ବନ୍ଧକୁ ଉନ୍ନତ କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ସଚେତନତାର ବାତାବରଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ନାନା ସଙ୍ଗଠନ ଜରିଆରେ ସୁଦୃଢ଼ ହୋଇଚାଲିଛି । ଆନ୍ତର୍ଜାତିକ ସ୍ତରରେ ଏହି ବାତାବରଣ ଯୋଗୁ ପୃଥିବୀର ପ୍ରତ୍ୟେକ ଗଣତାନ୍ତ୍ରିକ ବା ସମାଜବାଦୀ ରାଷ୍ଟ୍ରର ଜାତୀୟ ସ୍ତରରେ 'ମାନବିକ ଅଧିକାର' କମିଶନମାନ ସୃଷ୍ଟି କରାଯାଇଛି । ଏତଦ୍‌ବ୍ୟତୀତ

ମାନବିକ ଅଧିକାରକୁ ପାଠ୍ୟପୁସ୍ତକରେ ସ୍ଥାନ ଦେଇ ଛାତ୍ରଛାତ୍ରୀମାନଙ୍କୁ ମାନବିକ ମହତ୍ତ୍ୱ, ବ୍ୟକ୍ତିମର୍ଯ୍ୟାଦାବୋଧ ବିଷୟରେ ଶିକ୍ଷା ଦେବାକୁ ଜାତିସଂଘର ନିଷ୍ପତ୍ତି ରହିଛି । ଗଣତନ୍ତ୍ର, ସାମାଜିକ ନ୍ୟାୟ ଓ ମାନବିକ ଅଧିକାର ମୂଲ୍ୟଚୟ ଗୁଡ଼ିକୁ ସମାଜରେ ଦୃଢ଼ କରିବାକୁ ଏସବୁକୁ ଶିକ୍ଷାର ଅଙ୍ଗ କରିବା ଆବଶ୍ୟକ । ଏକ ଗୁଣାତ୍ମକ ଜୀବନ ପାଇଁ ଏହି ସଭ୍ୟ ମୂଲ୍ୟବୋଧ ଗୁଡ଼ିକ ଶିକ୍ଷାସ୍ତରରେ ପଢ଼ାଯିବା ଦରକାର ।

ତେବେ ନାଗରିକ ଅଧିକାର ଓ କର୍ତ୍ତବ୍ୟବୋଧ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ଅଧିକାର ଓ ଦାୟିତ୍ୱବୋଧ ଶୃଙ୍ଖଳିତ ସାମାଜିକ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ । ମଣିଷ ଯେହେତୁ ଏକ ସାମାଜିକ ପ୍ରାଣୀ, ସାମାଜିକ ଆଦାନ ପ୍ରଦାନ ସାମାଜିକ ସମ୍ପର୍କର ମୂଳମନ୍ତ୍ର । ପ୍ରତ୍ୟେକ ବ୍ୟକ୍ତି ନାଗରିକ ଶୃଙ୍ଖଳାବୋଧ ଓ କର୍ମ ସଂସ୍କୃତିକୁ ସଭ୍ୟ ଜୀବନର ମାନଦଣ୍ଡ ଭାବେ ନେବା ଦ୍ୱାରା ସାମାଜିକ ଜୀବନଧାରାରେ ମାନବିକ ଅଧିକାରର ଭିତ୍ତି ସୁଦୃଢ଼ ହୋଇ ପାରିବ । ଯୁଗ ଯୁଗ ଧରି ସମାଜରେ ରହିଥିବା ନାନା ଭେଦଭାବ, ବୈଷମ୍ୟ ଓ ଶୋଷଣର ଅବସାନ ଦ୍ୱାରା ମାନବିକ ଅଧିକାର ଏକ ସୁଦୃଢ଼ ସାଂସ୍କୃତିକ ଭିତ୍ତି ନେଇପାରିବ । ପ୍ରତ୍ୟେକ ବ୍ୟକ୍ତିର ମାର୍ଯ୍ୟାଦାପୂର୍ଣ୍ଣ ଜୀବନ ମୁଖ୍ୟତଃ ସାମାଜିକ ପରିବେଶ ଉପରେ ନିର୍ଭର କରିଥାଏ । ଏକ ଭେଦଭାବମୂଳକ ସାମାଜିକ ବ୍ୟବସ୍ଥା ଓ ବୈଷମ୍ୟପୂର୍ଣ୍ଣ ପରିସ୍ଥିତିରେ ବ୍ୟକ୍ତିର ଅଧିକାର ସୁରକ୍ଷିତ ରହିବା ସମ୍ଭବ ହୁଏ ନାହିଁ । ବିଶେଷକରି ଅନୁନ୍ନତ, ଅଗଣତାନ୍ତ୍ରିକ ଓ ଧାର୍ମିକ ଭାବପ୍ରବଣତାର ପ୍ରାବଲ୍ୟ ଥିବା ସମାଜରେ ମାନବିକ ଅଧିକାରର ସୁରକ୍ଷା ସୁଦୃଢ଼ ଭିତ୍ତି ନେବା ସମ୍ଭବ ହୋଇନାହିଁ । ଏବେ ବି ମାନବିକ ଅଧିକାରର ଉଲ୍ଲଘଂନ ଏହି ସବୁ ରାଷ୍ଟ୍ରର ସାମାଜିକ ଜୀବନ ପ୍ରବାହରେ ଅତି ସାଧାରଣ ଘଟଣା ହୋଇ ରହିଛି । ତେବେ ଆନ୍ତର୍ଜାତିକ ସ୍ତରରେ ମାନବିକ ଅଧିକାର, ମାନବିକ ମର୍ଯ୍ୟାଦା ଓ ମାନବବାଦ ନେଇ ଯେଉଁ ସଚେତନତାର ପରିବେଶ ଆସିଛି ଓ ବିଶ୍ୱର ଚିନ୍ତାଶୀଳ ବ୍ୟକ୍ତିଗଣ ଏଥିପ୍ରତି ଯେଉଁ ଆତ୍ମିକ ସମ୍ପୃକ୍ତି ବ୍ୟକ୍ତ କରୁଛନ୍ତି ତାହା ଯେ ସଭ୍ୟତାର କ୍ରମବିକାଶଧାରାରେ ଏକ ବଡ଼ ନୈତିକ ଉତ୍ତରଣ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । (୪.୧.୧୨)



# ବୈଜ୍ଞାନିକ ଦୃଷ୍ଟି

ଆଧୁନିକ ଜୀବନ ପ୍ରବାହ କ୍ଷେତ୍ରରେ ବିଜ୍ଞାନର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସଭ୍ୟତାର କ୍ରମବିକାଶର ଇତିହାସରେ ଆଧୁନିକ ବିଜ୍ଞାନର ଅଭ୍ୟୁଦୟ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । କାରଣ ବିଜ୍ଞାନର ବିକାଶ ଯୋଗୁଁ ପ୍ରକୃତି ଉପରେ ମଣିଷର କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ବୃଦ୍ଧି ପାଉଛି । ଫଳତଃ ସଭ୍ୟତାର ରୂପରେଖ ବଦଳିଛି । ବଞ୍ଚିବାର ପରିବେଶରେ ଉଲ୍ଲେଖନୀୟ ପରିବର୍ତ୍ତନ ସଂଘଟିତ ହେବା ସହ ଜୀବନର ଗୁଣାତ୍ମକ ମାନ ଆଶାତୀତ ଭାବେ ବୃଦ୍ଧି ପାଇଛି । ବିଜ୍ଞାନ କହିବାକୁ ଗଲେ ଏକ ନୂଆ ଦୁନିଆ ନିର୍ମାଣ କରିବାରେ ସହାୟକ ହୋଇଛି । ଜୀବନର ପ୍ରତ୍ୟକ କ୍ଷେତ୍ରକୁ ବିଜ୍ଞାନ ସୁନିୟନ୍ତିତ ଭାବେ ପ୍ରଭାବିତ କରିପାରୁଛି । ଆଧୁନିକ ବିକାଶ କ୍ଷେତ୍ରକୁ ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତି ନିର୍ଣ୍ଣାୟକ ମୋଡ଼ ଦେଇପାରିଛି । ବିଜ୍ଞାନ ଓ ପ୍ରଯୁକ୍ତି ବ୍ୟତୀତ ସମ୍ପ୍ରତି ରାଷ୍ଟ୍ରର ଭୌତିକ ବିକାଶର କଳ୍ପନା କରାଯାଇ ନପାରେ । ଏସବୁ ଦୃଷ୍ଟିରୁ ବିଜ୍ଞାନ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ପ୍ରଭାବିତ ଓ ନିୟନ୍ତ୍ରିତ କରିବା ସହ ଏକ ସୁନ୍ଦର, ମାନବିକ ଓ ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱ ସୃଷ୍ଟି କରିପାରିଛି ।

ସଭ୍ୟତାର ସୁଦୀର୍ଘ ଇତିହାସ କ୍ଷେତ୍ରରେ ବିଜ୍ଞାନର ଇତିହାସ ପ୍ରାୟ ତିନି, ଚାରି ଶତାବ୍ଦୀ କହିଲେ ଅତ୍ୟୁକ୍ତି ହେବନାହିଁ । ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ପୃଥିବୀ ରୂପକ ଗ୍ରହରେ ଜୀବନ ସତ୍ତାର ଆବିର୍ଭାବ ଦୁଇଶହ କୋଟି ବର୍ଷ ତଳେ ହୋଇଥିବା ଜଣାଯାଏ । ନାନା ପାରିବେଶିକ, ପ୍ରାକୃତିକ ଓ ଜୈବିକ ବିବର୍ତ୍ତନ ଦେଇ ମାତ୍ର ଏକ ଲକ୍ଷ ବର୍ଷ ତଳେ ମଣିଷର ଆବିର୍ଭାବ ହେବା କୁହାଯାଏ । ମାତ୍ର ପାଞ୍ଚ ଦଶ ହଜାର ବର୍ଷ ତଳେ କୃଷିର ବ୍ୟବହାର ଜାଣିବା ଦ୍ୱାରା ଗ୍ରାମୀଣ ଜୀବନ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୁଏ । ଗ୍ରାମୀଣ ଜୀବନଧାରାର ବିକାଶ ଓ ସ୍ଥାୟୀ ଭାବେ ବସବାସ ଦ୍ୱାରା ସଭ୍ୟତାର ଆରମ୍ଭ ହୁଏ । ମଣିଷର ଯାଯାବର ଜୀବନ ଓ କେବଳ ଖାଦ୍ୟ ସଂଗ୍ରହ ଲକ୍ଷ୍ୟରୁ ମୁକ୍ତ ହୋଇ ଧୀରେ ଧୀରେ ସାମାଜିକ ଜୀବନ ଦୃଢ଼ ଭିତ୍ତି ନିଏ । ଏହାଫଳରେ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହୁଏ । ଜୈବିକ କ୍ରମ ବିବର୍ତ୍ତନ ଧାରାରେ ମଣିଷ ମସ୍ତିଷ୍କର ବିକାଶ ଯୋଗୁ ସମଗ୍ର ପ୍ରାଣୀ ଜଗତରେ ମଣିଷ ହିଁ ପ୍ରକୃତିର ଶ୍ରେଷ୍ଠ ଅବଦାନ ହୁଏ । ଏ କ୍ଷେତ୍ରରେ ମଣିଷ ସ୍ୱଭାବ ଭିତରେ ଚାରୋଟି ମୌଳିକ ଲକ୍ଷଣ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପ୍ରଥମେ ପ୍ରାକୃତିକ ପରିବେଶର ଉପାଦାନରେ ବିଭିନ୍ନ ବସ୍ତୁ ନିର୍ମାଣ ଓ ପ୍ରସ୍ତୁତି କରିବାର ସାମର୍ଥ୍ୟ ମଣିଷର

ହିଁ ରହିଛି । କେତେକ ପକ୍ଷୀ ବା ଜୀବ ହୁଏତ ନିଜ ପାଇଁ ନୀଡ଼ଟିଏ ରଚନା କରିବା ବା ପରିବେଶରୁ ବାହାର କରିବାକୁ ସମର୍ଥ ହେଉଥିଲେ ମଧ୍ୟ ମଣିଷ ହିଁ ଜୀବ ସୃଷ୍ଟିର ଏକମାତ୍ର ପ୍ରାଣୀ ଯିଏ ନାନା ବସ୍ତୁ ପ୍ରସ୍ତୁତ କରିବାରେ ସମର୍ଥ ହୋଇଥାଏ । ଦ୍ୱିତୀୟରେ ମଣିଷ ହିଁ ଜୀବଜଗତର ଏକମାତ୍ର ପ୍ରାଣୀ ଯିଏ ଭାଷା କହିବାକୁ ସମର୍ଥ ଓ ଭାଷା ମାଧ୍ୟମରେ ନିଜର ଭାବନା, ବିଚାର, କଳ୍ପନାକୁ ରୂପ ଦେଇଥାଏ । ମଣିଷର ଗୋଷ୍ଠୀ ଜୀବନ ଭିତରୁ ଭାଷାମାନଙ୍କର ଉତ୍ପତ୍ତି ଯୋଗୁ ଧୀରେ ଧୀରେ ସାହିତ୍ୟ, କଳା, ସଙ୍ଗୀତ, ଦର୍ଶନ, ସଂସ୍କୃତି, ଇତ୍ୟାଦିର ଉଦ୍ଭବ ହେବା ଦେଖାଯାଏ । ଭାଷାର ପ୍ରୟୋଗରୁ କାଳକ୍ରମେ ଲିପିମାନଙ୍କର ଉଦ୍‌ଭାବନ ଯୋଗୁ ଜ୍ଞାନ ବିଜ୍ଞାନ ସଂରକ୍ଷଣ ଓ କ୍ରମବିକାଶର ପରିବେଶ ଆସିବା ଜଣାଯାଏ । ତୃତୀୟରେ ମଣିଷ ଭିତରର ସହଜାତ ସାମାଜିକ ପ୍ରବୃତ୍ତି ସାମାଜିକ ସଙ୍ଗଠନର ବିକାଶରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ମଣିଷ ଯେତେ ବୁଦ୍ଧିମାନ ହେଲେ ବି ମଣିଷ ଶିଶୁ ପ୍ରକୃତି ଭିତରେ ସବୁଠାରୁ ଅସହାୟ ଓ ସମାଜ ବ୍ୟତୀତ ବ୍ୟକ୍ତିର ଜୀବନ ଅଚିନ୍ତନୀୟ । ଅର୍ଥାତ୍ ପରିବାର, ସମାଜ, ଗୋଷ୍ଠୀଜୀବନ ବ୍ୟତୀତ ଜୀବନଧାରଣ ମଣିଷ ପାଇଁ ସମ୍ଭବ ନୁହେଁ । ପରିଣାମତଃ ଏହି ସାମାଜିକ ପ୍ରବୃତ୍ତି ଯୋଗୁ କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ପରିବାର, ସମାଜ, ରାଜ୍ୟ, ରାଷ୍ଟ୍ରର ଭାବନା କାଳକ୍ରମେ ବିକାଶ ଲାଭ କରିଥିବା ଦେଖାଯାଏ । ଏସବୁ ଭିତରେ ଯାହା ମଣିଷ ପାଇଁ ସବୁଠାରୁ ଅଧିକ ଫଳପ୍ରଦ ମନେହୁଏ ତାହା ହେଲା ମଣିଷ ଭିତରେ ବିକଶିତ ହୋଇଥିବା ବିଚାରଶୀଳ ଦୃଷ୍ଟି, ଅନୁସନ୍ଧିତ୍ସୁ ମନୋଭାବ ଓ ଯୁକ୍ତିଶୀଳ ମାନସିକତା । ମଣିଷ ଭିତରେ ବିଚାରଶୀଳତା ଓ ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଯୋଗୁ ଜ୍ଞାନ ବିଜ୍ଞାନର ଅନୁଶୀଳନ ସମ୍ଭବ ହୋଇପାରିଛି । ସମାଜର କେତେକ ବୁଦ୍ଧିମାନ ବ୍ୟକ୍ତି ପ୍ରାକୃତିକ ପରିବେଶକୁ ବୁଝିବାକୁ ପ୍ରୟାସ କରିଆସିଛନ୍ତି ଓ ସେମାନଙ୍କର କୌତୂହଳତା ମଧ୍ୟ ଦେଇ ଧୀରେ ଧୀରେ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ବସ୍ତୁତଃ କହିବାକୁ ଗଲେ ବସ୍ତୁ- ନିର୍ମାଣ, ଭାଷା ବ୍ୟବହାର, ସାମାଜିକ ସ୍ୱଭାବ ଓ ବିଚାରଶୀଳ ଦୃଷ୍ଟି ଯୋଗୁ ମଣିଷର ଜୀବନଧାରା କ୍ରମୋନ୍ନତି ଧାରାରେ ଆଗକୁ ଯାଇଛି । ଆଜି ସଭ୍ୟତା ଯେଉଁ ସ୍ତରକୁ ଆସିଛି ତାହା ପଶ୍ଚାତରେ ରହିଛି ହଜାର ହଜାର ବର୍ଷର ପ୍ରୟାସ ଓ ନାନା ପ୍ରତିକୂଳ ସଂଘର୍ଷର କାହାଣୀ ।

ତେବେ ମଣିଷ ପାଖରେ ବୁଦ୍ଧିର ବିକାଶ ପରେ ଓ ଗ୍ରାମୀଣ ଜୀବନଧାରାରେ ଗୋଟିଏ ସମୟରେ ନାନା ଭୟ, ନିରାପଦ ବିହୀନ ଜୀବନ, ପ୍ରାକୃତିକ ପରିବେଶ ବିଷୟରେ ଅଜ୍ଞତା ଓ ରୋଗ- ବାଧକଜନିତ ପ୍ରତିକୂଳ ସ୍ଥିତି ଭିତରେ କେହି କେହି ବ୍ୟକ୍ତି ଜୀବନ ଓ ପ୍ରକୃତି ନେଇ ନାନା କାଳ୍ପନିକ ଭାବନାର ସୂତ୍ରପାତ କରିଛନ୍ତି । କିଛି ବୁଦ୍ଧିମାନ ବ୍ୟକ୍ତି ଜୀବନର ସାଧାରଣ ଅନୁଭୂତିରୁ ଐଶ୍ୱରୀୟ ଶକ୍ତି, ଦେବୀ ଦେବତା,

ଅଲୌକିକତା, ସ୍ୱର୍ଗ, ପୁନର୍ଜନ୍ମ, ବିଚାର ଦିବସ ଇତ୍ୟାଦିର ପରିକଳ୍ପନା କରିଛନ୍ତି । ନିରାପଦ ବିହୀନ ପରିବେଶରୁ ସୁରକ୍ଷା ପାଇଁ କଳ୍ପିତ ଦେବ-ଦେବୀଙ୍କ ପୂଜା-ଆରାଧନା କରିଛନ୍ତି । ସମାଜରେ ବିଶ୍ୱାସ ସୃଷ୍ଟି ହୋଇଛି ଯେ ସବୁକିଛି ଦିଅଁ, ଦେବତା, ଈଶ୍ୱର ଅଲୌକିକ ଶକ୍ତି ଦ୍ୱାରା ନିୟନ୍ତ୍ରିତ ହେଉଛି । ତାଙ୍କର କ୍ରୋଧରୁ ରୋଗ, ମହାମାରୀ ସୃଷ୍ଟି ହେଉଛି, ପ୍ରାକୃତିକ ବିପର୍ଯ୍ୟୟ ଘଟୁଛି । ସୁତରାଂ ସବୁ ସଭ୍ୟତାର ଆଦିକାଳରେ କେତେ କେତେ ଦିଅଁ ଦେବତାର ଭାବନା ଆସିବା ସହ ପୂଜା, ପାର୍ବଣ ଜନିତ ସାମାଜିକ ପରିବେଶ ସୃଷ୍ଟି ହୋଇଛି । ପରେ ବିଭିନ୍ନ ସଭ୍ୟତାରେ ସାଂସ୍କୃତିକ ଆଲୋଡ଼ନ ସ୍ୱରୂପ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ହୋଇଛି । କେହି କେହି କ୍ରାନ୍ତିକାରୀ ବ୍ୟକ୍ତି ନୂତନ ବିଚାର ଦେଇ ସାମାଜିକ ସଂହତି କ୍ଷେତ୍ରରେ ଓ ଅର୍ଥପୂର୍ଣ୍ଣ ଜୀବନ ପାଇଁ ଆଲୋଡ଼ନ ଆଣିଛନ୍ତି । ଧର୍ମ ଭାବନା ନେଇ ଏକେଶ୍ୱରବାଦ, ସୃଷ୍ଟିର ରହସ୍ୟ, ଜୀବନର ଅନ୍ତିମ ପରିଣାମ, ସାମାଜିକ ନୀତିବୋଧ ନେଇ ବିଭିନ୍ନ ବିଚାରର ଉଦ୍ଭବ ହୋଇଛି । ଏହା ସହିତ ବିଭିନ୍ନ କର୍ମକାଣ୍ଡମାନ ସୃଷ୍ଟି ହୋଇଛି । ଧୀରେ ଧୀରେ ଏସବୁ ଧାର୍ମିକ ଆବେଗ ସହ ସଂଶ୍ଳିଷ୍ଟ ହୋଇଯାଇଛି ଓ ପରମ୍ପରାରେ ରୂପାୟିତ ହୋଇଛି । ପ୍ରତ୍ୟେକ ଧର୍ମ ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ଏକ ସାଂସ୍କୃତିକ ଜାଗରଣ ସ୍ୱରୂପ ଉଦ୍ଭବ ହୋଇଥିଲେ ବି କାଳକ୍ରମେ ଏହା ବୃହତ୍ତର ଜନଗୋଷ୍ଠୀ ଭିତରକୁ ପ୍ରସାରିତ ହୋଇଛି । ପ୍ରତ୍ୟେକ ଧର୍ମ ଏକ ଆନୁଷ୍ଠାନିକ ଭିତ୍ତି ନେଇଛି ଓ ରାଜତନ୍ତ୍ର ଯୁଗରେ ରାଜନୈତିକ ସମର୍ଥନ ପାଇଁ ଏହା ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ନେଇଛି । ପ୍ରତ୍ୟେକ ଧର୍ମକୁ ଆଧାର କରି ନାନା କାହାଣୀ, କିମ୍ବଦନ୍ତୀ, ଶାସ୍ତ୍ର, ପୁରାଣ ସୃଷ୍ଟି ହୋଇଛି । ୟୁରୋପୀୟ ନବଜାଗରଣର ବିକାଶ ପର୍ଯ୍ୟନ୍ତ ଧର୍ମ ସକଳ ସାମାଜିକ ବ୍ୟବସ୍ଥାରେ ନିର୍ଣ୍ଣାୟକ ହୋଇ ରହିଛି ଓ ଧର୍ମ ନାମରେ ମଧ୍ୟଯୁଗରେ ନାନା ବର୍ବରତା ସୃଷ୍ଟି ହୋଇଛି ।

ସାମାଜିକ ବିକାଶଧାରାରେ ୟୁରୋପୀୟ ନବଜାଗରଣ ବୌଦ୍ଧିକ ଓ ନୈତିକ ବିଚାରଧାରାରେ ଏକ ବୈପ୍ଳବିକ ପରିବର୍ତ୍ତନ ସୂତ୍ରପାତ କରିଛି । ୟୁରୋପୀୟ ନବଜାଗରଣ ବା ରେନାସାଁ ପରେ ବିଜ୍ଞାନର ବିକାଶ ପର୍ବ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ସେହି ସନ୍ଧିକ୍ଷଣରେ ଧର୍ମ ଓ ବିଜ୍ଞାନ ଭିତରେ ଏକ ସଂଘର୍ଷମୟ ପରିସ୍ଥିତି ଆସିଛି ଓ ବହୁ ପ୍ରତିଭାଧର ବୈଜ୍ଞାନିକମାନଙ୍କୁ ନାନା ନିର୍ଯାତନା ସହ୍ୟ କରିବାକୁ ହୋଇଛି । ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନର ପରିସର ଯେତିକି ବୃଦ୍ଧି ପାଇଛି ଧର୍ମଭିତ୍ତିକ ବିଶ୍ୱାସଗୁଡ଼ିକ ମିଥ୍ୟା ଓ କପୋଳକଳ୍ପିତ ବୋଲି ଗୃହୀତ ହେବାରେ ଲାଗିଛି ।

ବୈଜ୍ଞାନିକ ଜ୍ଞାନ କେତେକ ମୌଳିକ ସିଦ୍ଧାନ୍ତ ଉପରେ ଗଢ଼ି ଉଠିଛି । ସେହି ସିଦ୍ଧାନ୍ତକୁ ଭିତ୍ତିକରି ବିଜ୍ଞାନ ପ୍ରକୃତିର ନାନା ଦିଗନ୍ତକୁ ଅନୁଶୀଳନ ଓ ଅଧ୍ୟୟନ କରିବାକୁ ପ୍ରୟାସ କରିଆସିଛି । ପ୍ରଥମରେ ବିଜ୍ଞାନ କ୍ରମବର୍ଦ୍ଧିଷ୍ଣୁ ଭାବେ ଏହି ବିଚାର ଦେଇଛି ଯେ ପ୍ରକୃତିରେ ଯାହା କିଛି ଅଛି ବା ପ୍ରକୃତିରେ ଯାହା କିଛି ଘଟଣା ଘଟୁଛି ତାହା ପ୍ରାକୃତିକ । ପ୍ରତ୍ୟେକ ଘଟଣାର କାରଣ ରହିଛି । ସେହି କାରଣ ପ୍ରାକୃତିକ ଅର୍ଥାତ୍ ତାହା ଅଲୌକିକ ବା ଦୈବୀକୃତ ନୁହେଁ । ପ୍ରକୃତିରେ ନାନା ଶୃଙ୍ଖଳା ଓ ନିୟମ ରହିଛି । ସେହି ଶୃଙ୍ଖଳା ବା ଏକରୂପତାକୁ ଅନୁଶୀଳନ ଓ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଦ୍ୱାରା ଜାଣିହେବ । ସକଳ ପ୍ରାକୃତିକ ଘଟଣା ପ୍ରାକୃତିକ କାର୍ଯ୍ୟ-କାରଣ ନିୟମ ଆଧାରରେ ଉଦ୍ଭବ ହେଉଛି । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ ପ୍ରକୃତିର କେତେକ କ୍ଷେତ୍ର ଆମ ପାଇଁ ରହସ୍ୟମୟ । ତେବେ ଆଜି ଯାହା ରହସ୍ୟମୟ ବା ଅଜ୍ଞେୟ ମନେହେଉଛି, ଆଗାମୀ ଦିନରେ ଆମର ଅନୁଭୂତିର ପରିସର ବୃଦ୍ଧି ହେଲେ ତାହା ବ୍ୟାଖ୍ୟା କରିବା ସମ୍ଭବ ହେବ । କିନ୍ତୁ ପ୍ରକୃତିରେ କୌଣସି ଅଲୌକିକତା, ଚମତ୍କାରିତା ବା ଦୈବୀ ବିଧାନ ନାହିଁ । ଏହି ଭାବନାକୁ ନେଇ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଚାଲିଛି । ଦ୍ୱିତୀୟରେ ବୈଜ୍ଞାନିକ ଜ୍ଞାନ ଏକ ମୁକ୍ତ ଓ ସାର୍ବଜନୀନ ପ୍ରଣାଳୀ ମଧ୍ୟ ଦେଇ ସମ୍ଭବ । ପର୍ଯ୍ୟବେକ୍ଷଣ- ପରୀକ୍ଷଣଜନିତ ଆମର ଅନୁଭୂତି ହିଁ ବୈଜ୍ଞାନିକ ଜ୍ଞାନର ମୂଳଭିତ୍ତି । ବୈଜ୍ଞାନିକ ଜ୍ଞାନ ମୁକ୍ତ, ପର୍ଯ୍ୟବେକ୍ଷଣ-ପରୀକ୍ଷଣ ସମର୍ଥିତ, ବସ୍ତୁନିଷ୍ଠ ଓ ସାର୍ବଜନୀନ । ବିଜ୍ଞାନ ସର୍ବଦା ପ୍ରଗତିଶୀଳ ଜ୍ଞାନ ଦେବାକୁ ଉଦ୍ଦିଷ୍ଟ । ପ୍ରାକୃତିକ ବିଜ୍ଞାନର ବିଭିନ୍ନ କ୍ଷେତ୍ରର ସିଦ୍ଧାନ୍ତ ସକଳ ପରସ୍ପର ସହ ସଂଯୋଜିତ, ସୁସଂହତ ଓ ପରସ୍ପରର ପରିପୂରକ । ବୈଜ୍ଞାନିକ ଜ୍ଞାନ ବୈଜ୍ଞାନିକ- ପ୍ରଣାଳୀ ଆଧାରରେ ପରିବର୍ତ୍ତନ ସାପେକ୍ଷ । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ଆଜି ଯାହା ସତ୍ୟ ବୋଲି ଜ୍ଞେୟ ହେଉଛି, ତାହା ଆଗାମୀ ଦିନରେ ନୂତନ ଅନୁଭୂତିରେ ମିଥ୍ୟା ପ୍ରମାଣିତ ହେବା ସମ୍ଭବ । ବୈଜ୍ଞାନିକ ଜ୍ଞାନ ଯେହେତୁ ଏକ ମୁକ୍ତ ଓ ସାର୍ବଜନୀନ ପଦ୍ଧତି ମାଧ୍ୟମରେ ଉପଲବ୍ଧ ହୁଏ, ତାହା ନିର୍ଭରଯୋଗ୍ୟ । ମୋଟ ଉପରେ କହିଲେ ବୈଜ୍ଞାନିକ ଜ୍ଞାନ ସାର୍ବଜନୀନ ଓ ନିରପେକ୍ଷ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଜୀବନଧାରା ଓ ଏକ ମୂଲ୍ୟବୋଧ । ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରରେ ସର୍ବଦା ମୁକ୍ତ ମନ ପୋଷଣ କରାଯାଏ ଓ ବୈଜ୍ଞାନିକ ପ୍ରଣାଳୀକୁ ସମସ୍ତ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି ଭାବେ ନିଆଯାଏ । କୌଣସି ଚମତ୍କାରିତା, ଗୁପ୍ତ ବିଦ୍ୟା, ପ୍ରାକୃତିକ ନିୟମ ପରିପନ୍ଥୀ ସିଦ୍ଧାନ୍ତ ଓ ରହସ୍ୟମୟ ବ୍ୟାଖ୍ୟାକୁ ବିଜ୍ଞାନ ଅସ୍ୱୀକାର କରିଥାଏ । ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପରସ୍ପରଠାରୁ ଭିନ୍ନ । ବିଜ୍ଞାନ ପ୍ରକୃତିର ରହସ୍ୟକୁ ଓ ପ୍ରାକୃତିକ ଶୃଙ୍ଖଳା ତଥା ଏକ ରୂପତାକୁ ଆବିଷ୍କାର କରେ ବା ଘଟଣାମାନଙ୍କୁ ବ୍ୟାଖ୍ୟା କରିବାକୁ ସିଦ୍ଧାନ୍ତ

ନିର୍ମାଣ କରେ । ପ୍ରାକୃତିକ ନିୟମକୁ ଆଧାର କରି ବାସ୍ତବ ଜୀବନରେ ଉପଯୋଗ ପାଇଁ କିଛି ଯନ୍ତ୍ର ବା ସୂତ୍ର ନିର୍ମାଣ କରିବା ହେଲା ପ୍ରଯୁକ୍ତି । ମୋବାଇଲ ଫୋନ, ଫ୍ୟାନ ପରି ଅସଂଖ୍ୟ ଉପକରଣ ପଶ୍ଚାତରେ ଯେଉଁ ସିଦ୍ଧାନ୍ତ ବା ନିୟମ ରହିଛି, ତାହା ବିଜ୍ଞାନ । ସେହି ନିୟମକୁ ନେଇ ପ୍ରସ୍ତୁତ ହୋଇଥିବା ବସ୍ତୁ ହେଲା ପ୍ରଯୁକ୍ତି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ହେଲା ଏକ ଜୀବନଦୃଷ୍ଟି ଓ ଏକ ଦର୍ଶନ । ଜଣେ ବୈଜ୍ଞାନିକଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଥାଇପାରେ ବା ନ ଥାଇପାରେ । ସେହିପରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି, ବିଜ୍ଞାନର ଛାତ୍ର ହେବା ଅବଶ୍ୟମ୍ଭାବୀ ନୁହେଁ । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ସର୍ବଦା ମୁକ୍ତ ମନ ପୋଷଣ କରନ୍ତି ଓ ବୈଜ୍ଞାନିକ ପ୍ରଣାଳୀକୁ ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି ଭାବେ ନେଇଥାନ୍ତି ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଏକ ପରିଣାମ ହେଉଛି ଯେ ମଣିଷ ହିଁ ତାର ସମାଜ, ସଭ୍ୟତା, ଜ୍ଞାନ ବିଜ୍ଞାନ ନିଜ ଉଦ୍ୟମରେ ବିକଶିତ କରିପାରିବ । ସଭ୍ୟତାରେ ଯାହା କିଛି ଉପଲବ୍ଧ ହୋଇଛି ତାହା ମଣିଷର ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ଏକ ଆଦିମ ଅବସ୍ଥାରୁ ଆଜିର ଅତ୍ୟାଧୁନିକ ପରିବେଶରେ ଜୀବନଧାରଣ ନେଇ ଯାହାସବୁ ହୋଇଛି, ତାହା ମଣିଷର ଜିଜ୍ଞାସା, ଅନୁଶୀଳନ ଓ ଅନୁସନ୍ଧିତ୍ସା ଯୋଗୁ ହୋଇପାରିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ମାନବିକ ଉତ୍କର୍ଷ ପ୍ରତି ପ୍ରତିବଦ୍ଧ । ଏହାର ତାତ୍ପର୍ଯ୍ୟ ହେଉଛି ସଂସାରରେ ଯାହା ଦୁଃଖ, ଦୁର୍ଦ୍ଦଶା, ଦାରିଦ୍ର୍ୟ, ଶୋଷଣ, ଅନ୍ୟାୟ ରହିଛି ସେସବୁ ବିଜ୍ଞାନ ଓ ମାନବିକତା ଆଧାରରେ ଦୂର କରାଯାଇପାରିବ । ଅର୍ଥାତ୍ ମଣିଷର ପ୍ରୟାସରେ ଜୀବନର ମାନ ଉନ୍ନତ ହେବା ସହ ସାମାଜିକ ଜୀବନ ଅଧିକ ପ୍ରୀତିପଦ, ନ୍ୟାୟଯୁକ୍ତ ଓ ମାନବିକ ହୋଇପାରିବ । ବୈଜ୍ଞାନିକ ଦୃଷ୍ଟି ଏକ ମାନବବାଦୀ ଆଦର୍ଶକୁ ଲକ୍ଷ୍ୟ ଭାବରେ ଗ୍ରହଣ କରେ । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ଅପପ୍ରୟୋଗକୁ ବିରୋଧ କରିବା ବୈଜ୍ଞାନିକ ଦୃଷ୍ଟିର ଅନ୍ତର୍ନିହିତ ଆଦର୍ଶ । ବିଜ୍ଞାନକୁ କିପରି ସର୍ବଦା ମିଣିଷ ସମାଜର ହିତ ଦିଗରେ ବିନିଯୋଗ କରାଯିବ ସେଥିପାଇଁ ଏଥିରେ ପ୍ରାଧାନ୍ୟ ଦିଆଯାଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜ୍ଞାନର ବିକାଶ ସହ ଏକ ନ୍ୟାୟପୂର୍ଣ୍ଣ ଓ ଅଧିକ ମାନବିକ ବିଶ୍ୱର ଚିତ୍ର ପ୍ରଦାନ କରିଥାଏ । ବିଜ୍ଞାନ ଓ ମାନବିକତାର ସମନ୍ୱୟରେ ଏକ ସୁନ୍ଦର ପୃଥିବୀ ଉଦ୍ଭବ ହେବା ସମ୍ଭବ । ଏହା ହିଁ ବୈଜ୍ଞାନିକ ଦୃଷ୍ଟିର ତାତ୍ପର୍ଯ୍ୟ । (୧୬.୧.୧୨)



# ବିଜ୍ଞାନ ଓ କୁସଂସ୍କାର

ମୁକ୍ତ ମନ ଓ ବୈଜ୍ଞାନିକ ପ୍ରଣାଳୀ ସାହାଯ୍ୟରେ ଯେଉଁ ଜ୍ଞାନ ଉପଲବ୍ଧ ହୁଏ, ତାହା ବୈଜ୍ଞାନିକ ଜ୍ଞାନ । ବୈଜ୍ଞାନିକ ପ୍ରଣାଳୀରେ ପ୍ରାପ୍ତ ଜ୍ଞାନ ନିର୍ଭରଯୋଗ୍ୟ, ତଥ୍ୟ ଭିତ୍ତିକ ଓ ସାର୍ବଜନୀନ । ତେବେ ବୈଜ୍ଞାନିକ ଜ୍ଞାନ ପରିବର୍ତ୍ତନ ସାପେକ୍ଷ ଓ ପ୍ରଗତିଶୀଳ । ସପ୍ତଦଶ ଶତାବ୍ଦୀ ପରଠୁ ବିଜ୍ଞାନର କ୍ରମବିକାଶ ଜୀବନର ଗୁଣାତ୍ମକମାନ ବୃଦ୍ଧି କରିବାରେ ମୁଖ୍ୟ ଭୂମିକା ନେଇଆସିଛି । ସାମ୍ପ୍ରତିକ ଜୀବନ ପ୍ରବାହ ହେଉ ବା ସାମାଜିକ ବିକାଶ ପ୍ରକ୍ରିୟା ହେଉ, ଏ ସବୁ କ୍ଷେତ୍ରରେ ବିଜ୍ଞାନର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ, ଏପରିକି ନିର୍ଣ୍ଣାୟକ ମନେହୁଏ । ଆଧୁନିକ ବିଜ୍ଞାନ ଓ ତାହାର ପ୍ରୟୋଗାତ୍ମକ ପ୍ରଯୁକ୍ତି ଧାରାରେ ହିଁ ରାଷ୍ଟ୍ରର ବିକାଶ ଓ ଆର୍ଥିକ ଅଭିବୃଦ୍ଧି ସମ୍ଭବ । ସେହିପରି ସାଧାରଣ ଜୀବନ ପ୍ରବାହକୁ ଉନ୍ନତ ଓ ମାନବିକ କରିବାରେ ବିଜ୍ଞାନ ଓ ପ୍ରଯୁକ୍ତିର ଅବଦାନ ମଧ୍ୟ ଅନସ୍ୱୀକାର୍ଯ୍ୟ ।

ବିଜ୍ଞାନ କେବଳ ସୂକ୍ଷ୍ମାତିସୂକ୍ଷ୍ମ ଜ୍ଞାନ, ଗବେଷଣା, ପରୀକ୍ଷାଗାରର ଜଟିଳ ପରୀକ୍ଷଣ ଭିତିରେ ସୀମିତ ନୁହେଁ, ଏହା ଏକ ବିଚାରଧାରା । ବିଜ୍ଞାନରୁ ସୃଷ୍ଟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ସଂସ୍କୃତି । ଏହା ଏକ ଉନ୍ନତ ଜୀବନଦୃଷ୍ଟିର ପ୍ରତୀକ । ନିଜର ପରିବେଶକୁ ଓ ନିଜର ସ୍ଥିତିକୁ ବିଜ୍ଞାନ ଆଧାରରେ ବୁଝିବା ପାଇଁ ତଥା ମାନବିକ ପ୍ରଚେଷ୍ଟାରେ ଏହାକୁ ଉନ୍ନତ କରିବାର ପ୍ରୟାସ ହିଁ ବୈଜ୍ଞାନିକ ଦୃଷ୍ଟିର ଅନ୍ତର୍ଭୁକ୍ତ । ସଭ୍ୟତାର କ୍ରମବିକାଶ, ମାନବିକ ଅନୁଭୂତି ଓ ବୌଦ୍ଧିକ ଅନୁଶୀଳନରୁ ଏହା ସ୍ପଷ୍ଟ ଯେ ମଣିଷର ପ୍ରୟାସ ଓ ବୈଜ୍ଞାନିକ ଜ୍ଞାନ ସାହାଯ୍ୟରେ ଜୀବନ ଉନ୍ନତରୁ ଉନ୍ନତତର ସ୍ଥିତିକୁ ଆସିଛି । କେଉଁ ଦିଅଁ ଦେବତା ଓ ଈଶ୍ୱର ସାମାଜିକ ବିକାଶଧାରାକୁ ଉନ୍ନତ କରି ନାହାନ୍ତି । ବରଂ ମଣିଷର ଅନୁସନ୍ଧିତ୍ସା, ପ୍ରୟାସ ଓ ନିଷ୍ଠାପର ଉଦ୍ୟମ ଯୋଗୁ ସାମାଜିକ ଜୀବନ ଉନ୍ନତ, ନ୍ୟାୟପୂର୍ଣ୍ଣ ଓ ମାନବିକ ହେବା ସମ୍ଭବ ହୋଇଛି । ଏହାହିଁ ବିଜ୍ଞାନ ଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ବାର୍ତ୍ତା ।

ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ସମାଜରେ ନାନା ଅହେତୁକ ପରମ୍ପରା, ଧାର୍ମିକ ବିଶ୍ୱାସ ଜନିତ ନାନା କୁସଂସ୍କାର ରହିଥିଲା । ବିଜ୍ଞାନର ବିକାଶ ଯେତିକି ତ୍ୱରାନ୍ୱିତ ହେଲା, କୁସଂସ୍କାରର ବିଲୋପ ସେତେ ସହଜସାଧ୍ୟ ହେଲା । ତେବେ

ଯେଉଁ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଶିକ୍ଷା ଓ ସଚେତନତାର ବିକାଶ ଯେତେ ତଳ ସ୍ତରରେ ରହିଛି, ସେଠାରେ କୁସଂସ୍କାରର ପ୍ରାବଲ୍ୟ ସେତେ ଅଧିକ ରହିଛି । ଏହି ପୃଷ୍ଠଭୂମିରେ ଆମର ଜନଜୀବନରୁ କେତେକ ବାସ୍ତବ ଘଟଣା ପାଠକଙ୍କ ସମ୍ମୁଖକୁ ଆଣିବାକୁ ଚାହୁଁଛି ।

ଓଡ଼ିଆରେ ପ୍ରକାଶ ପାଉଥିବା ଏକ ବିଚାରଧର୍ମୀ ତ୍ରୈମାସିକ ପତ୍ରିକା 'ବୈଜ୍ଞାନିକ ଚର୍ଚ୍ଚା' ର ଊନବିଂଶ ସଂଖ୍ୟାରେ ଏକ ବିବରଣୀ ପ୍ରକାଶ ପାଇଛି ଯେ ୨୦୧୦ରେ ଓଡ଼ିଶାରେ ଗୁଣି ଗାରେଡି ଓ ଡ଼ାହାଣୀ ସନ୍ଦେହରେ ୫୬ଟି ହତ୍ୟାକାଣ୍ଡ ଘଟିଛି । ସେହି ବିବରଣୀରେ କେଉଁ ଦିନ କେଉଁ ଜିଲ୍ଲାର କେଉଁ ଗ୍ରାମରେ କାହାକୁ ଗୁଣିଗାରେଡ଼ି ବା ଡ଼ାହାଣୀ ସନ୍ଦେହରେ ହତ୍ୟା କରାଯାଇଛି ତାହାର ବିବରଣୀ ରହିଛି । ପତ୍ରିକାର ସମ୍ପାଦକଙ୍କଠାରୁ ପ୍ରକାଶ ଯେ ୨୦୧୧ ମସିହାରେ ଗୁଣି ଗାରେଡ଼ି, ଡ଼ାହାଣୀ ସନ୍ଦେହରେ ଓ ବଳିରେ ପ୍ରାୟ ୬୦ରୁ ଅଧିକ ହତ୍ୟାକାଣ୍ଡ ଓଡ଼ିଶାରେ ଘଟିଛି । ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦରୁ ଏହି ତଥ୍ୟ ମିଳିବା ଜାଣିହୁଏ । ତେବେ ଯେଉଁ ହତ୍ୟାକାଣ୍ଡ ଗୁଡ଼ିକ ଗଣମାଧ୍ୟମକୁ ଆସିନାହିଁ ତାହା ଜାଣିବାର ଅବକାଶ ନାହିଁ । ଏତଦ୍‌ବ୍ୟତୀତ ଗୁଣିଗାରେଡ଼ି ବା କୌଣସି ମହିଳାଙ୍କୁ ଡାହାଣୀ ବୋଲି ଚିତ୍ରଣ କରାଯାଇ ଅଭକ୍ଷ ଖୁଆଇବା, ଗ୍ରାମରୁ ବାସନ୍ଦ କରିବା, ଶାରୀରିକ ଓ ମାନସିକ ନିର୍ଯାତନା ଦେବା ପରି ଘଟଣାମାନ ଏବେ ମଧ ଆମ ସମାଜରେ ଘଟୁଛି । ପ୍ରାପ୍ତ ବିବରଣୀରୁ ଜଣାଯାଏ ଯେ ଓଡ଼ିଶାର ଅଧାରୁ ଅଧିକ ଜିଲ୍ଲାରେ ଏସବୁ ଘଟଣାମାନ ଘଟୁଛି । ସେହିପରି ଗୁପ୍ତଧନ ପାଇବା ପାଇଁ କେଉଁ ତାନ୍ତ୍ରିକର ନିର୍ଦ୍ଦେଶରେ କାହାକୁ ବଳି ପକାଇବା, ଭଲ ଉତ୍ପାଦନ ପାଇଁ ଧରଣୀ ମାତାକୁ ବଳି ଦେବା, ମନୋକାମନା ପୂରଣ ପାଇଁ ମାନସିକ କରି କେଉଁ ଶକ୍ତିପୀଠରେ ଦିଅଁଙ୍କ ପାଖରେ ଛେଳି କୁକୁଡ଼ା ବଳି ଦେବା ଏବେ ବି ସମାଜରେ ବ୍ୟାପକ ଭାବେ ରହିଛି । ପୁନଶ୍ଚ କେଉଁ ଦିଅଁଙ୍କ ପାଖରେ ଜିଭ କାଟିବା, ଲିଙ୍ଗ କାଟିବା, ଚୋରି ସହିତ ସମ୍ପୃକ୍ତ ବ୍ୟକ୍ତିକୁ ଧରିବା ପାଇଁ ଖଟ ବୁଲାଇବା, କୁଲା ବୁଲାଇବା ଘଟଣା ଆମ ସମାଜରେ ଘଟୁଛି । ବହୁ ସମୟରେ ଏଥିରେ ନିରୀହ ବ୍ୟକ୍ତିଙ୍କୁ ଦୋଷାରୋପ କରାଯାଇ ସେମାନଙ୍କ ସାମାଜିକ ସମ୍ମାନକୁ କ୍ଷୁର୍ଣ୍ଣ କରାଯାଉଛି । ଏତଦ୍‌ବ୍ୟତୀତ କୌଣସି ବ୍ୟକ୍ତିଙ୍କର କିଛି ଅପ୍ରାକୃତିକ ବ୍ୟବହାର ପାଇଁ ଗୁଣିଆ ଓ ତାନ୍ତ୍ରିକମାନଙ୍କର ସହାୟତା ବି ନିଆଯାଉଛି । ଆଗେ ଯେତେବେଳେ ହଇଜା, ବସନ୍ତ, ପ୍ଲେଗ୍ ପରି ରୋଗମାନ ସୃଷ୍ଟି ହେଉଥିଲା, ସେତେବେଳେ ଲୋକମାନେ ଏସବୁକୁ ଠାକୁରାଣୀ ବା ମନ୍ଦ-ଆତ୍ମାଙ୍କର କ୍ରୋଧର ପରିଣାମ ବୋଲି ଭାବୁଥିଲେ ଓ ଦିଅଁ, ଦେବତା ପାଖରେ ମାନସିକ କରି ବଳି ପକାଉଥିଲେ । ଏବେ ବି ଅପ୍ରାକୃତିକ

ବ୍ୟବହାରରୁ ମୁକ୍ତି ପାଇଁ ଲୋକମାନେ ତନ୍ତ୍ର, ମନ୍ତ୍ର ଓ ଗୁଣିଆର ସାହାଯ୍ୟ ନେଉଛନ୍ତି । ଏହି ପ୍ରକାରର ମାନସିକତା ସମାଜରେ ବ୍ୟାପକ ଭାବେ ରହିଛି ।

ସାମ୍ପ୍ରତିକ ଜ୍ଞାନ ଓ ବୈଜ୍ଞାନିକ ମାନଦଣ୍ଡରୁ ବିଚାର କଲେ ଏଗୁଡ଼ିକ ମଧ୍ୟଯୁଗୀୟ ବିଶ୍ୱାସ ଓ କୁସଂସ୍କାର । ଜ୍ଞାନ ବିଜ୍ଞାନର ବିକାଶ ପୂର୍ବରୁ ଅଧିକାଂଶ ସମାଜରେ ଏହି ବିଶ୍ୱାସ ଗୁଡ଼ିକ ନାନା ଭାବରେ ପ୍ରଭାବ ବିସ୍ତାର କରି ରହିଥିଲା । ଏହି ସବୁ କୁସଂସ୍କାରର ମୂଳକାରଣ ଥିଲା ଅଜ୍ଞତା ଓ ଭୟ । ପ୍ରକୃତି ଓ ପରିବେଶକୁ ବୁଝିବାର ସାମର୍ଥ୍ୟ ମଣିଷର ନଥିଲା ବା ବିଭିନ୍ନ ପ୍ରାକୃତିକ ଘଟଣାର କାରଣ ଜଣା ନଥିଲା । ରୋଗ, ମୃତ୍ୟୁ, ଭୟଜନିତ ଆବେଗରୁ ବ୍ୟକ୍ତି ଭିତରେ ଅସହାୟବୋଧ ଆସିଥାଏ । ସେହି ଅସହାୟବୋଧ ସାମାଜିକ ପ୍ରଥା, ଚଳଣି ବ୍ୟକ୍ତି ଚେତନାକୁ ପ୍ରଭାବିତ କରିଥାଏ । ପ୍ରତିକୂଳ ସ୍ଥିତିରୁ ରକ୍ଷା ପାଇବା ପାଇଁ ସାମାଜିକ ଚଳଣିକୁ ଲୋକମାନେ ବିଶ୍ୱାସ କରିବା ଦେଖାଯାଏ ।

ପୁନଶ୍ଚ ଦାରିଦ୍ର୍ୟ ବି କୁସଂସ୍କାରର ଏକ ପ୍ରଧାନ କାରଣ ହେବା ମନେହୁଏ । ଯେଉଁ କ୍ଷେତ୍ରରେ ରୋଗ ବାଧକରେ ଚିକିତ୍ସା ଟିକିଏ ପାଇବା ପାଇଁ ସାଧାରଣ ମଣିଷ ପାଇଁ ସୁଯୋଗ ନଥାଏ ବା ବ୍ୟକ୍ତିର ସାମର୍ଥ୍ୟ ନଥାଏ ସେ କ୍ଷେତ୍ରରେ ସେ ସାଧାରଣତଃ କୁସଂସ୍କାରରେ ବିଶ୍ୱାସ କରିବା ଦେଖାଯାଏ । ଯେଉଁଠି ବିଭିନ୍ନ ପ୍ରତିକୂଳ ସ୍ଥିତି ଭିତରେ ଥିବା ସାଧାରଣ ମଣିଷ ସାମାଜିକ ବ୍ୟବସ୍ଥା ଉପରେ ନିର୍ଭର କରିପାରେ ନାହିଁ କିମ୍ବା ବ୍ୟକ୍ତିର ସଚେତନତା ନଥାଏ ସେତେବେଳେ ତା'ର ମାନସିକତାକୁ କୁସଂସ୍କାର ଜନିତ ବିଶ୍ୱାସ ସହଜରେ ପ୍ରଭାବିତ କରିଥାଏ । ଦୃଢ଼ ମନୋବଳ ବା ଏକ ସଂସ୍କାରିତ ଚେତନା ଅଭାବରେ ସାଧାରଣ ବ୍ୟକ୍ତିଟି କୁସଂସ୍କାରର ଶିକାର ହୁଏ । ଏତଦ୍‌ବ୍ୟତୀତ ସମାଜର କିଛି ବ୍ୟକ୍ତି ନିଜର ଉପାର୍ଜନ ପାଇଁ ସାଧାରଣରେ ମନ୍ତ୍ର, ତନ୍ତ୍ର, ଗୁଣି, ଗାରେଡ଼ି, ଡ଼ାହାଣୀ, ଅଶୁଭ ଦୃଷ୍ଟି, ଖଟ ବିଦ୍ୟା ଇତ୍ୟାଦି ଭାବନାକୁ ପ୍ରସାର କରୁଥିବାରୁ ସେଥିରେ ସମାଜର ସାଧାରଣ ମଣିଷଟି ଶିକାର ହୋଇଥାଏ । ସେହିପରି କେତେକ ଧାର୍ମିକ ବିଶ୍ୱାସ, ପରମ୍ପରାଗତ ସାମାଜିକ ଚଳଣି, ପୌରାଣିକ ଉପାଖ୍ୟାନ ଓ ସମାଜର ପ୍ରଭାବଶାଳୀ ଲୋକଙ୍କର ଆଚରଣ ବି ଜନମାନସରେ କୁଂସ୍କାରର ପ୍ରସାର ଦିଗରେ ସହାୟକ ହୋଇଥାଏ ।

ସମାଜର ସାଧାରଣ, ଗରିବ ଓ ଅଶିକ୍ଷିତ ଲୋକମାନେ ଯେ କୁସଂସ୍କାରରେ ବିଶ୍ୱାସ କରନ୍ତି ତାହା ନୁହେଁ, ସମାଜର ବହୁ ସଚେତନ ଓ ଶିକ୍ଷିତ ବ୍ୟକ୍ତି ମଧ୍ୟ ନାନା କୁସଂସ୍କାରରେ ବିଶ୍ୱାସ କରନ୍ତି । ସାମାଜିକ ପ୍ରତିଷ୍ଠା ଥିବା କେତେକ ଶିକ୍ଷିତ ବ୍ୟକ୍ତିଙ୍କ ପାଖରେ ବରଂ କୁସଂସ୍କାର ବ୍ୟାପକ ଥିବା ମନେହୁଏ । ଯେହେତୁ ଆମର ଶିକ୍ଷା

ବ୍ୟବସ୍ଥାରେ ବୈଜ୍ଞାନିକ ସଚେତନତା ନେଇ ଶିକ୍ଷା ଦିଆଯାଏ ନାହିଁ, ତେଣୁ ଛାତ୍ରଛାତ୍ରୀଙ୍କ ଭିତରେ ଏକ ବୈଜ୍ଞାନିକ ମାନସିକତାର ବିକାଶ ହୁଏ ନାହିଁ । ପରିଣାମତଃ ଉତ୍ତର ଜୀବନରେ ବିଜ୍ଞାନରେ ଡ଼ିଗ୍ରୀ ଲାଭ କରିଥିବା ବ୍ୟକ୍ତିମାନେ ବି କୁସଂସ୍କାରରେ ବିଶ୍ୱାସ କରିନ୍ତି । ଏପରିକି ସାମାଜିକ ପ୍ରତିଷ୍ଠା ଥିବା ଲୋକମାନେ କୁସଂସ୍କାରରେ ବିଶ୍ୱାସ ସହ କୁସଂସ୍କାର ପ୍ରସାର ଦିଗରେ ସହାୟକ ହୁଅନ୍ତି । ଅଶିକ୍ଷିତ ଲୋକମାନଙ୍କ ତୁଳନାରେ ଶିକ୍ଷିତ ଲୋକମାନଙ୍କର କୁସଂସ୍କାର ସମାଜ ପାଇଁ ଅଧିକ କ୍ଷତିକାରକ ମନେହୁଏ ।

ଆମ ଜୀବନରେ ଶିକ୍ଷିତ ଲୋକମାନେ କେତେକ କୁସଂସ୍କାରକୁ ବିଜ୍ଞାନ ସମ୍ମତ ମନେକରିଥାନ୍ତି । କେତେକ ପ୍ରତିଷ୍ଠିତ ଲୋକ ବିଶ୍ୱାସ କରନ୍ତି ଯେ ରହସ୍ୟମୟ ବାବାମାନେ ଶୂନ୍ୟରୁ ବସ୍ତୁ ସୃଷ୍ଟିକରି ପାରିବେ । କେତେକ ହାତ ସଫେଇ କୌଶଳପୂର୍ଣ୍ଣ କାର୍ଯ୍ୟକୁ ଚମତ୍କାରିତାର ରଙ୍ଗ ଦେଇ ବାବାମାନଙ୍କୁ ଭଗବାନଙ୍କ ଅବତାର କରିବା ଶିକ୍ଷିତ ଲୋକମାନଙ୍କ ପାଖରେ ଦେଖାଯାଏ । କୌଣସି ପାରିବାରିକ ଅସଫଳତା ବା ଅଘଟଣକୁ ଘରର ବାସ୍ତୁ ଦୋଷର ପରିଣାମ ବୋଲି ବିଶ୍ୱାସ କରନ୍ତି । ବ୍ୟକ୍ତି ବା ରାଷ୍ଟ୍ରର ଭାଗ୍ୟ ଓ ଭବିଷ୍ୟତକୁ ଫଳିତ ଜ୍ୟୋତିଷରେ ଗଣନା କରି କହି ହେବ ବୋଲି ବ୍ୟାପକ ବିଶ୍ୱାସ ସମାଜରେ ରହିଛି । ଯୋଗ ଦ୍ୱାରା ମାନସିକ ଶକ୍ତି ବୃଦ୍ଧି କରାଯାଇ ଆଗତ ଭବିଷ୍ୟତ ଜାଣିହେବ, ପୂଜା, ପ୍ରାର୍ଥନା ଦ୍ୱାରା ବର୍ଷା କରାଯାଇ ପାରିବ, ଯଜ୍ଞଦ୍ୱାରା ବିଶ୍ୱ ଶାନ୍ତି ସମ୍ଭବ ହେବ, ନିର୍ଦ୍ଦିଷ୍ଟ ଦିନରେ ସୁନା କିଣିଲେ ଘରକୁ ଦେବତାର ଆଶୀର୍ବାଦ ମିଳିବ ଓ ଅଭାବ ଦୂର ହୋଇଯିବ ଇତ୍ୟାଦି ବିଶ୍ୱାସ ଶିକ୍ଷିତ ମହଲରେ ଓ ସାମାଜିକ ପ୍ରତିଷ୍ଠା ଥିବା ବ୍ୟକ୍ତିମାନଙ୍କ ପାଖରେ ରହିବା ଦେଖାଯାଏ । ବିଜ୍ଞାନ ସର୍ବଦା ସତ୍ୟ ଉପରେ ବିଶ୍ୱାସ କରେ କିନ୍ତୁ କେତେକ ଲୋକ ଯାହା ବିଶ୍ୱାସ କରନ୍ତି ତାହାକୁ ସତ୍ୟ ବୋଲି ଭାବନ୍ତି ଓ ଏପରିକି ତାହା ବିଜ୍ଞାନ ସମ୍ମତ ବୋଲି ଯୁକ୍ତି କରନ୍ତି । ତେବେ ଏଗୁଡ଼ିକ ଯେହେତୁ କୌଣସି ବୈଜ୍ଞାନିକ ପ୍ରଣାଳୀ ଆଧାରରେ ଉପଲବ୍ଧ ନୁହେଁ ବା କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ସହ ସୁସଂହତ ନୁହେଁ ଏଗୁଡ଼ିକ ଯେ ନିଛକ ଅନ୍ଧବିଶ୍ୱାସ ଏହା କୁହାଯାଇପାରେ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ କୁସଂସ୍କାରଗତ ବିଶ୍ୱାସ ପରସ୍ପରର ପ୍ରତିକୂଳ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବ୍ୟାପକତା ଯେଉଁ ସମାଜରେ ଯେତେ ଅଧିକ ସେଠାରେ କୁସଂସ୍କାରର ପରିବେଶ ସେତେ କମ୍ । କିନ୍ତୁ ଯେଉଁଠି ଅସହାୟବୋଧ, ଭୟ ଓ ଧାର୍ମିକ ଭାବପ୍ରବଣତା ଯେତେ ଅଧିକ ସେଠାରେ କୁସଂସ୍କାର ସେତେ ବ୍ୟାପକ । ବିଶେଷ କରି ଆମ ସାମାଜିକ ଜୀବନ ପ୍ରବାହରେ କୁସଂସ୍କାରର ପରିସର ବହୁ ବ୍ୟାପ୍ତ

। ଆମର ଖାଦ୍ୟ, ପୋଷାକ, ଶୟନ, ଯାତ୍ରା, ବିବାହ, ବ୍ୟବସାୟ, ଜନ୍ମ, ମୃତ୍ୟୁ ଓ ଏପରିକି ଛୋଟ ଛୋଟ ଘଟଣା ଭିତରେ ଏହାର ପ୍ରତିଫଳନ ଦେଖିବାକୁ ମିଳିଥାଏ । କୁସଂସ୍କାରର ବ୍ୟାପକତା ପୃଷ୍ଠଭୂମିରେ ଏଗୁଡ଼ିକୁ ବ୍ୟକ୍ତିଗତ, ପରମ୍ପରାଗତ, ଧର୍ମଗତ, ବୃତ୍ତିଗତ ଶ୍ରେଣୀରେ ବିଭାଜନ କରାଯାଇପାରେ ବା ଅନ୍ୟ ଭାବରେ କୁସଂସ୍କାରର ଶ୍ରେଣୀକରଣ କରାଯାଇପାରେ ।

ସାଧାରଣ ଲୋକଙ୍କର କୁସଂସ୍କାର ଓ ଶିକ୍ଷିତ ଲୋକଙ୍କର କୁସଂସ୍କାର ଭିତରେ ଗୁଣାତ୍ମକ ପାର୍ଥକ୍ୟ ଲକ୍ଷ୍ୟ କରାଯାଇପାରେ । ସାଧାରଣ ବ୍ୟକ୍ତିଟିଏ ପ୍ରତିକୂଳ ସ୍ଥିତିରୁ ଉଦ୍ଧାର ପାଇଁ ଗୁଣିଆର ଆଶ୍ରୟ ନେଉଛି ବା ତା'ର ଅଜ୍ଞତା ଯୋଗୁଁ ପ୍ରତିହିଂସା ପରାୟଣ ହୋଇ କାହାକୁ ସନ୍ଦେହ କରି ହତ୍ୟା କରୁଛି । ଶିକ୍ଷିତ ଲୋକମାନେ ମନସ୍ତାତ୍ତ୍ୱିକ କାରଣରୁ ବା ନିଜର ସ୍ୱାର୍ଥସାଧନ ପାଇଁ କେଉଁ ବାବାଙ୍କର ଭକ୍ତ ପାଲଟୁଛନ୍ତି ତ ନିଜର ବିଶ୍ୱାସକୁ ଆଧ୍ୟାତ୍ମିକତାର ପୁଟ ଦେଉଛନ୍ତି । ଆହୁରି ବିଡ଼ମ୍ବନାର ବିଷୟ କୁସଂସ୍କାର ପ୍ରସାର ଦିଗରେ ଗଣମାଧ୍ୟମ ବି ଏକ ପ୍ରମୁଖ ଭୂମିକା ନେଉଛି ।

ସମାଜରୁ କୁସଂସ୍କାର ଦୂର କରିବା ପାଇଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ବିଚାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ଭାବନା ସକଳକୁ ଶିକ୍ଷା ବ୍ୟବସ୍ଥାର ଅଙ୍ଗ କରିବା ଦରକାର । ଏହା ସହ ଗଣମାଧ୍ୟମରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କରାଯିବା ଆବଶ୍ୟକ । ନ ହେଲେ ଗୋଟିଏ ପଟେ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ଅଭୂତପୂର୍ବ ବିକାଶ ସହ ଆମ ଜନଜୀବନରେ ମଧ୍ୟଯୁଗୀୟ ବର୍ବରତା ଓ କୁସଂସ୍କାର ବେଶ୍ ପ୍ରଭାବ ବିସ୍ତାର କରି ରହିବ । ଫଳରେ ଗୁଣି ଗାରେଡ଼ି ଓ ଡାହାଣୀ ସନ୍ଦେହରେ ହତ୍ୟାପରି ଅଭାବନୀୟ ଘଟଣା ଏକବିଂଶ ଶତାବ୍ଦୀରେ ବି ସମାଜରେ ସୃଷ୍ଟି ହେବ । (୨୫.୧.୧୨)



# ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରବକ୍ତା
# ଆବ୍ରାହମ କୋଭୁର

ବିଶିଷ୍ଟ ଜୀବ ବିଜ୍ଞାନୀ ଆବ୍ରାହମ ଥୋମାସ କୋଭୁରଙ୍କର ଜନ୍ମ ୧୮୯୮ ମସିହାରେ, କେରଳ ପ୍ରଦେଶରେ । ଏକ ସମ୍ଭ୍ରାନ୍ତ ରକ୍ଷଣଶୀଳ ଖ୍ରୀଷ୍ଟିଆନ ପରିବାରରେ ଜନ୍ମ ଗ୍ରହଣ କରିଥିବା କୋଭୁର ଛାତ୍ର ଜୀବନରୁ ଥିଲେ କୌତୂହଳ ପ୍ରବଣ । କଲିକତା ବିଶ୍ୱ ବିଦ୍ୟାଳୟରୁ ଜୀବ ବିଜ୍ଞାନରେ ଡିଗ୍ରୀ ଲାଭ କଲାପରେ ସେ କେରଳରେ ଅଧ୍ୟାପକ ଭାବେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । ପରେ ଶ୍ରୀଲଙ୍କାସିତ ଜାଫନା ସେଣ୍ଟ୍ରାଲ କଲେଜରେ ଅଧ୍ୟାପକ ଭାବେ ଯୋଗ ଦେଇ ତାଙ୍କର କର୍ମମୟ ଜୀବନ ଶ୍ରୀଲଙ୍କାରେ ଅତିବାହିତ କରିଥିଲେ । ତାଙ୍କର ଜୀବନକାଳ ଥିଲା କର୍ମବହୁଳ ଓ ଗବେଷଣାର ଜୀବନ । ୧୯୫୯ରେ ଚାକିରିରୁ ଅବସର ନେଇଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କରିବା ଓ ସମାଜରୁ କୁସଂସ୍କାର ବିଲୋପ କରିବାକୁ ସେ ନିଜର ବ୍ରତଭାବେ ଗ୍ରହଣ କରିଥିଲେ । ୧୯୭୯ ମସିହାରେ କୋଭୁରଙ୍କର ଦେହାନ୍ତ ହୋଇଥିଲେ ବି ସେ ଯେଉଁ ବିଚାରର ସୂତ୍ରପାତ କରିଥିଲେ ତାହା ଏକ ଆଦର୍ଶ ବା ଲିଗାସି ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇପାରିଛି ।

କେତେକ ପ୍ରସଙ୍ଗ ଉପରେ ଅନୁସନ୍ଧିତ୍ସୁ ହୋଇ କୋଭୁର ଜୀବନବ୍ୟାପୀ ସେସବୁର ଅନୁସନ୍ଧାନ କରିଥିଲେ । ସମାଜରେ ଥିବା ବହୁଳ ବିଶ୍ୱାସ ଗୁଡ଼ିକର ବୈଜ୍ଞାନିକ ଆଧାର ରହିଛି କି, ଏହା ହିଁ ତାଙ୍କ ପାଇଁ ବଡ଼ ଆହ୍ୱାନ ହୋଇଥିଲା । ସମାଜରେ ଏହି ବିଶ୍ୱାସ ବ୍ୟାପକ ଭାବେ ରହିଛି ଯେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ନିଜର ସାଧନା ବଳରେ ଚମତ୍କାରିତା ସୃଷ୍ଟି କରି ପାରିବେ । ଭାରତ, ଶ୍ରୀଲଙ୍କା ଭଳି ଦେଶମାନଙ୍କରେ ବହୁ ଯୋଗୀ, ବାବା, ସାଧକ, ତାନ୍ତ୍ରିକ ଓ ଆଧ୍ୟାତ୍ମିକ ସାଧନାରତ ବ୍ୟକ୍ତି ରହିଛନ୍ତି ଯେଉଁମାନେ ଅଲୌକିକ ଶକ୍ତିର ଅଧିକାରୀ । ସେମାନେ ନିଜର ଆଧ୍ୟାତ୍ମିକ ସାଧନା ସାହାଯ୍ୟରେ ପ୍ରାକୃତିକ ନିୟମକୁ ଅତିକ୍ରମ କରି ଚମତ୍କାରିତା ସୃଷ୍ଟି କରିପାରିବେ । ସେହିପରି ସମାଜରେ ଅତି ବ୍ୟାପକ ବିଶ୍ୱାସ ରହିଛି ଯେ ଭୂତ, ପ୍ରେତ ଆଦି ଅଶରୀରୀ ସତ୍ତା ରହିଛନ୍ତି । ମୃତ ବ୍ୟକ୍ତିର ଆତ୍ମା ରହିଛି ଓ କେତେକ ଜାତିସ୍ମର ମଧ୍ୟ ଅଛନ୍ତି

ଯେଉଁମାନେ ଅତୀତ ଜନ୍ମର ଘଟଣାବଳୀକୁ ସ୍ମରଣ କରି ପାରୁଛନ୍ତି । ପୁନଶ୍ଚ ସମାଜରେ ବିଶ୍ୱାସ ରହିଛି ଯେ ମନ୍ତ୍ର, ତନ୍ତ୍ରର ପ୍ରଭାବ ରହିଛି । ମନ୍ତ୍ର, ତନ୍ତ୍ର ସାହାଯ୍ୟରେ ରୋଗ ଭଲ କରାଯିବା ସହ ଏହା ଦ୍ୱାରା ନାନା ଅଭିଷ୍ଟ ପୂରଣ ହୋଇପାରିବ । ପରାମନୋବିଜ୍ଞାନ ବା ପାରାସାଇକୋଲୋଜି ବି ଏକ ବିଜ୍ଞାନ ବିଷୟ ବୋଲି କେତେକ ଲୋକ ନିଷ୍ଠାର ସହ ବିଶ୍ୱାସ କରନ୍ତି । ଦୂର ସମ୍ବେଦନ ବା ଟେଲିପାଥି, ଅତୀନ୍ଦ୍ରିୟ ଦୃଷ୍ଟି, ଗୂଢ଼ବିଦ୍ୟା ଇତ୍ୟାଦି ଭାବନା ଗୁଡ଼ିକର କୌଣସି ବୈଜ୍ଞାନିକ ଆଧାର ରହିଛି କି ? ପୁନଶ୍ଚ ଯେଉଁ ବ୍ୟକ୍ତିମାନଙ୍କ ବ୍ୟବହାରରେ କିଛି ଅସ୍ୱାଭାବିକତା ଦେଖାଯାଏ, ତାହାର କାରଣ କ'ଣ ହୋଇପାରେ ? କୌଣସି ଅଶରୀର ପ୍ରବେଶ, ଭୂତ ଲାଗିବା ଇତ୍ୟାଦି ଯୋଗୁଁ ବ୍ୟକ୍ତିର ବ୍ୟବହାରରେ ଅସ୍ୱାଭାବିକତା ଦେଖା ଦେଉଛି କି ? ଏହିପରି ଅନେକ ପ୍ରଶ୍ନ ତାଙ୍କ ଭିତରେ କୌତୂହଳ ସୃଷ୍ଟି କରିଥିଲା । ଏଥିପାଇଁ ଏକ ମୁକ୍ତ ମନ ନେଇ ସେ ଜୀବନବ୍ୟାପୀ ଏହି ସବୁ ପ୍ରସଙ୍ଗ ଉପରେ ଗବେଷଣା କରିଥିଲେ । ବହୁ ପରୀକ୍ଷା, ନିରୀକ୍ଷା, ଅନୁସନ୍ଧାନ ଓ ଅନୁଶୀଳନ ଦ୍ୱାରା ସେ ସବୁ କ୍ଷେତ୍ରରେ କେବଳ ପ୍ରାକୃତିକ କାରଣ ଦେଖିଥିଲେ ଓ କୌଣସି ଆଧିଦୈବିକ, ଆଧିଭୌତିକ କାରଣ ପାଇନଥିଲେ । ତଥାପି ସର୍ବଦା ମୁକ୍ତ ମନରେ ବହୁ ତାନ୍ତ୍ରିକ, ସାଧକ, ଆଧାତ୍ମବାଦୀ ବ୍ୟକ୍ତି, ବାବା ଓ ଚମତ୍କାରିତା ପ୍ରଦର୍ଶନ କରୁଥିବା ଲୋକମାନଙ୍କୁ ପତ୍ର ଲେଖି ଏହାର ସତ୍ୟତା ଜାଣିବାକୁ ନିବେଦନ କରିଥିଲେ । ଜୀବନର ପଚାଶବର୍ଷ କାଳ ଏହି ପରି ଅନୁସନ୍ଧିତ୍ସା ଓ ଗବେଷଣାରେ ସେ ନିଜକୁ ନିୟୋଜିତ ରଖିଥିଲେ ।

ନାନା ଘଟଣାକୁ ଅନୁସନ୍ଧାନ କରି ସେସବୁର ପ୍ରାକୃତିକ କାରଣକୁ ହିଁ କେବଳ ଦେଖି ଓ କୌଣସି ଗୋଟିଏ ବି ଚମତ୍କାରିତା ନପାଇ ସେ ଶେଷରେ ସାରା ବିଶ୍ୱରେ ୧୯୬୪ ମସିହାରେ ଏକ ଆହ୍ୱାନ ଦେଇଥିଲେ । ପୃଥିବୀର ବିଖ୍ୟାତ ପତ୍ର ପତ୍ରିକାରେ ସେ ଏକ ଘୋଷଣାନାମା ଜରିଆରେ ପ୍ରକାଶ କରିଥିଲେ ଯେ ଯଦି କେହି ବ୍ୟକ୍ତି ଅଲୌକିକ ଶକ୍ତି ବା ଚମତ୍କାରିତାର ପ୍ରମାଣ ଦେଇପାରିବେ ତେବେ ସେ ତାଙ୍କୁ ତାଙ୍କର ସମଗ୍ର ଜୀବନକାଳର ସଞ୍ଚିତ ଏକଲକ୍ଷ ଟଙ୍କା ପ୍ରଦାନ କରିବେ । କୌଣସି ଠକାମି ନ ରଖି କୌଣସି ବ୍ୟକ୍ତି ଗୋଟିଏ ଚମତ୍କାରିତା ଦେଖାଇ ଏହି ଅର୍ଥ ନେବାକୁ ସେ ଆହ୍ୱାନ ଦେଇଥିଲେ । ଏହି ଆହ୍ୱାନ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବା ତାଙ୍କୁ ଚମତ୍କାରିତା ଦେଖାଇବା ପର୍ଯ୍ୟନ୍ତ ମୁକ୍ତ ରହିବ ବୋଲି ସେ ଘୋଷଣା କରିଥିଲେ । ସେ ଯେଉଁ କ୍ଷେତ୍ରରେ ଆହ୍ୱାନ ରଖିଥିଲେ ସେଗୁଡ଼ିକ ହେଲା- ୧. ଏକ ମୁଦା ଲଫାପା ଭିତରେ ଥିବା ଗୋଟିଏ ନୋଟର କ୍ରମିକ ନମ୍ବରକୁ ପଢ଼ି ପାରିବା, ୨. ଗୋଟିଏ ନୋଟ୍‌ର କ୍ରମିକ ନମ୍ବର ସହ ସମାନ ଥିବା ଅବିକଳ ଆଉ ଗୋଟିଏ ନୋଟ୍ ସୃଷ୍ଟି କରିପାରିବା, ୩. ଜଳନ୍ତା କୋଇଲା ବା ଅଙ୍ଗାର ଉପରେ ଦେବତାଙ୍କ ସାହାଯ୍ୟରେ ବିନା ଫୋଟକାରେ ଅଧ ମିନିଟ ଛିଡ଼ା

ହୋଇପାରିବା, ୪. ସେ ଚାହିଁବା ମୁତାବକ ଶୂନ୍ୟରୁ ଏକ ବସ୍ତୁ ସୃଷ୍ଟି କରିପାରିବା, ୫. ନିଜର ଦୃଷ୍ଟିଶକ୍ତି ପ୍ରୟୋଗ କରି କୌଣସି କଠିନ ବସ୍ତୁକୁ ଚଳନଯୁକ୍ତ କରିବା ବା ବଙ୍କା କରିପାରିବା, ୬. ଦୂର ସମ୍ବେଦନ ସାହାଯ୍ୟରେ ଅନ୍ୟ ବ୍ୟକ୍ତିର ଭାବନାକୁ ଜାଣି ପାରିବା, ୭. କୌଣସି ଖଣ୍ଡିତ ଅଂଶକୁ ପ୍ରାର୍ଥନା ବା ଆଧ୍ୟାତ୍ମିକ ଶକ୍ତି ସାହାଯ୍ୟରେ ଗୋଟିଏ ଇଞ୍ଚ ବୃଦ୍ଧି କରିପାରିବା, ୮. ଯୋଗଶକ୍ତି ବଳରେ ଶୂନ୍ୟରେ ଭାସି ପାରିବା, ୯. ଯୋଗଶକ୍ତି ବଳରେ ନିଜ ହୃଦସ୍ପନ୍ଦନକୁ ପାଞ୍ଚ ମିନିଟ ବନ୍ଦ କରିପାରିବା, ୧୦. ଏକ ସମୟରେ ଦୁଇଟି ସ୍ଥାନରେ ଆବିର୍ଭୂତ ହେବା, ୧୧. ଜଳ ଉପରେ ଚାଲିପାରିବା, ୧୨. ଯୋଗଶକ୍ତି ସାହାଯ୍ୟରେ ନିଜର ଶ୍ୱାସକ୍ରିୟା ୩୦ ମିନିଟ ବନ୍ଦ କରିପାରିବା, ୧୩. ଭାବାତୀତ ବା ସେପରି କୌଣସି ଧ୍ୟାନ ଦ୍ୱାରା ସୃଜନାତ୍ମକ ବୁଦ୍ଧିର ବିକାଶ ଘଟାଇବା, ୧୪. କୌଣସି ପବିତ୍ର ବା ମନ୍ଦ ଆତ୍ମା ପ୍ରବେଶ ଦ୍ୱାରା ଏକ ଅଜଣା ଭାଷା କହିପାରିବା, ୧୫. କୌଣସି ଅଶରୀର ସତ୍ତା ବା ଆତ୍ମା ଦେଖାଇ ପାରିବା ଯାହାର ଫଟୋ ଉଠାଯାଇ ପାରିବ ୧୬. ଫଟୋ ଉଠାଇବା ବେଳେ ନେଗେଟିଭରୁ ଉଭେଇଯିବା, ୧୭. ଦିବ୍ୟଶକ୍ତି ବଳରେ ଏକ କୋଠରୀରୁ ବାହାରି ଆସିପାରିବା, ୧୮. କୌଣସି ବସ୍ତୁର ପରିମାଣକୁ ବୃଦ୍ଧିକରି ତାହାର ଓଜନ ବଢ଼ାଇ ପାରିବା, ୧୯. ଗୁପ୍ତରେ ରଖା ଯାଇଥିବା ଏକ ବସ୍ତୁକୁ କହିପାରିବା, ୨୦ଜଳକୁ ମଦ ବା ପେଟ୍ରୋଲରେ ପରିଣତ କରି ପାରିବା, ୨୧. ମଦକୁ ରକ୍ତରେ ରୂପାନ୍ତରିତ କରିପାରିବା ।

ସେହିପରି ଜ୍ୟୋତିଷ ଓ ସାମୁଦ୍ରିକ ଜ୍ଞାନଜନିତ ହସ୍ତରେଖାକୁ ଯେଉଁମାନେ ବିଜ୍ଞାନ ସମ୍ମତ କହୁଛନ୍ତି ସେମାନଙ୍କୁ ବି କୋଭୁର ଆହ୍ୱାନ ଦେଇଥିଲେ । ଜାତକ ପ୍ରସ୍ତୁତ କରୁଥିବା ବା ହସ୍ତରେଖା ପଠନ କରୁଥିବା ଗଣକମାନଙ୍କୁ ଆହ୍ୱାନ କରିଥିଲେ ଯେ ଜାତକ ବା ହସ୍ତରେଖା ଚିତ୍ରରୁ ସମ୍ପୃକ୍ତ ବ୍ୟକ୍ତି ଜୀବିତ ବା ମୃତ ଓ ପୁରୁଷ ବା ନାରୀ ଯଦି ପାଞ୍ଚ ପ୍ରତିଶତ ବ୍ୟତିକ୍ରମରେ କେହି କହିପାରିବେ ତେବେ ସେ କୋଭୁରଙ୍କର ଅର୍ଥ ନେଇ ପାରିବେ । ଦଶଟି ଦୃଷ୍ଟାନ୍ତରୁ ଅନ୍ତତଃ ନଅଟିକୁ ଯଦି ଠିକ୍ ଭାବରେ ଜଣେ କହିପାରିବେ ତେବେ ସେ ଅର୍ଥ ପାଇପାରିବେ ।

ନିଜର ସମୟ, ଶକ୍ତିକୁ ଶସ୍ତା ଲୋକପ୍ରିୟତାଠାରୁ ଦୂରେଇ ରଖିବା ପାଇଁ ସେ ତାଙ୍କର ଆହ୍ୱାନ ବା ଚ୍ୟାଲେଞ୍ଜକୁ ଗ୍ରହଣ କରିବାକୁ କେତେକ ସର୍ତ୍ତ ରଖିଥିଲେ । ତାଙ୍କଦ୍ୱାରା ଘୋଷିତ ଅର୍ଥ ଜଣେ ଚାହାନ୍ତୁ ବା ନଚାହାନ୍ତୁ ତାଙ୍କର ଆହ୍ୱାନକୁ ଗ୍ରହଣ କରିବାକୁ ଇଚ୍ଛୁକ ବ୍ୟକ୍ତି ତାଙ୍କ ନାମରେ ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ନାମରେ ଏକ ହଜାର ଟଙ୍କା ଜମା ରଖିବା ପରେ କୋଭୁର ପ୍ରତିପକ୍ଷଙ୍କ ସହ ଯୋଗାଯୋଗ କରିବେ । ସମ୍ପୃକ୍ତ ବ୍ୟକ୍ତିଙ୍କ ଅଲୌକିକ ଶକ୍ତି କୋଭୁର ଖୋଲାମଞ୍ଚରେ ପରୀକ୍ଷା କରିବେ ଓ ପରୀକ୍ଷାରେ ସମ୍ପୃକ୍ତ ବ୍ୟକ୍ତି ତାଙ୍କ ଚମତ୍କାରିତା ଦେଖାଇଲେ ସେ ନିଜର ଜମା ଅର୍ଥ ସହ କୋଭୁରଙ୍କ ପୁରସ୍କାର

ପାଇବେ । ଯଦି ସମ୍ପୃକ୍ତ ବ୍ୟକ୍ତି ନିଜର ଅଲୌକିକ ଶକ୍ତି ପ୍ରଦର୍ଶନ କରିବାରେ ଅସମର୍ଥ ହେବେ ତେବେ ତାଙ୍କର ଜମା ଅର୍ଥ ବାଜ୍ୟାପ୍ତ ହେବ ।

କୋଭୁରଙ୍କ ଏହି ଆହ୍ୱାନ ୧୯୬୪ରୁ ୧୯୭୮ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲା ଓ କୋଭୁର ଗୋଟିଏ ଟଙ୍କା ନ ହରାଇ ବରଂ କେତେ ହଜାର ଟଙ୍କା ଆହ୍ୱାନ ଗ୍ରହଣ କରିଥିବା ଲୋକଙ୍କ ପାଖରୁ ପାଇଥିଲେ । କୌତୂହଳର ବିଷୟ କୋଭୁର ଯେଉଁ ଆହ୍ୱାନ ଗୁଡ଼ିକ ଦେଇଥିଲେ ସେଥିରୁ କେତୋଟି ବିଷୟ ସର୍ବସାଧାରଣରେ ଦେଖାଉଥିଲେ ଓ ତାହା ପଶ୍ଚାତର ବିଜ୍ଞାନ ଲୋକଙ୍କୁ ବୁଝାଉଥିଲେ । ତେବେ ପ୍ରାକୃତିକ ନିୟମକୁ ଲଘନ କରି କେହି ଚମତ୍କାରିତା ଦେଖାଇବା ଯେ ଅସମ୍ଭବ ଏହାହିଁ ଜୀବନ ବ୍ୟାପୀ ଅନୁସନ୍ଧାନ ଦ୍ୱାରା ସେ ସିଦ୍ଧାନ୍ତରେ ପହଞ୍ଚିଥିଲେ । ସେହିପରି ତଥାକଥିତ ଜାତିସ୍ମରଙ୍କ ବିଷୟରେ ଅନୁସନ୍ଧାନ କରି ସେସବୁ କିପରି ଆଧାରହୀନ ପ୍ରଚ୍ଛର ତାହା ପ୍ରତିଷ୍ଠା କରିଥିଲେ । ଭୌତିକ କାଣ୍ଡମାନଙ୍କର ପରୀକ୍ଷା କରି ସେସବୁ ପଶ୍ଚାତରେ ମଣିଷର ହାତ ଥିବା ଘଟଣା ପଦାକୁ ଆଣିଥିଲେ । ଅଧିକନ୍ତୁ ଅସ୍ୱାଭାବିକ ବ୍ୟବହାର ଦେଖାଉଥିବା ବ୍ୟକ୍ତିମାନେ ଭୂତ ପ୍ରେତ ଲାଗିବା ଯୋଗୁଁ ନୁହେଁ ବରଂ ମାନସିକ ବିକୃତି ଯୋଗୁ ଏହା କରୁଥିବା ଲୋକମାନଙ୍କୁ ବୁଝାଉଥିଲେ ।

କୋଭୁର ଭାରତରେ ଓ ଏପରିକି ସାରା ବିଶ୍ୱରେ ଜଣେ ହେତୁବାଦୀ ଗବେଷକ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିଶିଷ୍ଟ ପ୍ରବକ୍ତା, ମାନସିକ ଚିକିତ୍ସକ ଓ ମାନବବାଦୀ ଭାବରେ ନିଜର ସ୍ୱାକ୍ଷର ରଖିଯାଇଛନ୍ତି । ତାଙ୍କର ଦେହାନ୍ତ ପରେ ତାଙ୍କର ଆହ୍ୱାନକୁ ଭାରତର ବିଭିନ୍ନ ହେତୁବାଦୀ ସଙ୍ଗଠନ ମଧ୍ୟ ଜାରି ରଖିଛନ୍ତି । ସାରା ବିଶ୍ୱରେ ଆଧିଦୈବିକ ଘଟଣାର ବୈଜ୍ଞାନିକ ଅନୁସନ୍ଧାନ କମିଟି ନାମରେ ଏକ ସଙ୍ଗଠନ ରହିଛି । ଏହି ସଙ୍ଗଠନ ସହ ବୈଜ୍ଞାନିକ, ମନସ୍ତତ୍ତ୍ୱବିତ, ଯାଦୁକର ଓ ହେତୁବାଦୀମାନେ ସମ୍ପୃକ୍ତ ରହି ବିଶ୍ୱରେ କୋଭୁରଙ୍କ ଆହ୍ୱାନକୁ ଜାହିର କରିଛନ୍ତି । କୌଣସି ବ୍ୟକ୍ତି ଗୋଟିଏ ଚମତ୍କାରିତା ପ୍ରମାଣ କରିଦେଇ ପାରିଲେ ଅନୁଷ୍ଠାନ ତାଙ୍କୁ ଏକଲକ୍ଷ ଡଲାରରୁ ଅଧିକ ଅର୍ଥ ଦେବାକୁ ଘୋଷଣା କରିଛି ।

କୋଭୁର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରସାର କ୍ଷେତ୍ରରେ ଯେଉଁ ସଂଗ୍ରାମ କରିଛନ୍ତି ତାହାର ସୁଦୂର ପ୍ରସାରୀ ପ୍ରଭାବ ରହିଛି । ବିଡ଼ମ୍ବନାର ବିଷୟ ଏବେ ବି ସମାଜରେ ନାନା ଅହେତୁକ କାର୍ଯ୍ୟ, କୁସଂସ୍କାର, ବାବାମାନଙ୍କର ଚମତ୍କାରିତାରେ ଲୋକମାନଙ୍କର ବିଶ୍ୱାସ ରହିଛି । ତେବେ କୋଭୁରଙ୍କ ଆହ୍ୱାନ ପୃଷ୍ଠଭୂମିରେ ସାରା ବିଶ୍ୱରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଯେଉଁ ଧାରାଟି ସୃଷ୍ଟି ହୋଇଛି ତାହା ଚିନ୍ତାରାଜ୍ୟରେ ଯେ ଏକ ବୈପ୍ଳବିକ ପଦକ୍ଷେପ ଏହା ଅନସ୍ୱୀକାର୍ଯ୍ୟ । (୧.୨.୧୨)



# ନାଗରିକ ସମାଜ ବନାମ ସମାଜ

ନାଗରିକ ସମାଜ ବା ସିଭିଲି ସୋସାଇଟି କହିଲେ ପ୍ରକୃତରେ କ'ଣ ବୁଝାଏ? ନାଗରିକ ସମାଜର ସ୍ୱରୂପ ବା ଆଧାର କ'ଣ ? ଏହା ସତ୍ୟ ଯେ ମଣିଷ ଏକ ସାମାଜିକ ପ୍ରାଣୀ । ସମାଜ ବ୍ୟତୀତ ମଣିଷ ଏକ ଅର୍ଥପୂର୍ଣ୍ଣ ଜୀବନ ବଞ୍ଚିବା ସମ୍ଭବ ନୁହେଁ । ପୁନଶ୍ଚ ମଣିଷ ଶିଶୁ ପ୍ରକୃତିରେ ସବୁଠାରୁ ଅସହାୟ । ତେଣୁ ମଣିଷ ପାଇଁ ଏକ ଗୋଷ୍ଠୀ ବା ସାମାଜିକ ଜୀବନ ଅବଶ୍ୟମ୍ଭାବୀ । ବସ୍ତୁତଃ ଏକ କ୍ଷୁଦ୍ର ଦଳଗତ ବା ଗୋଷ୍ଠୀ ଜୀବନରୁ କାଳକ୍ରମେ ବୃହତ୍ତର ସମାଜର ବିବର୍ତ୍ତନ ସୃଷ୍ଟି ହେବା ଦେଖାଯାଏ । ସାମାଜିକ ଜୀବନ ସୁଦୃଢ଼ ଭିତ୍ତି ନେବାପରେ ସେଥିରେ ରାଜନୈତିକ ବ୍ୟବସ୍ଥା, ସାଂସ୍କୃତିକ ବିକାଶ, ଅର୍ଥନୈତିକ ପ୍ରଗତି, ଶୈକ୍ଷିକ ପରିବେଶ ଇତ୍ୟାଦି ଉଦ୍ଭବ ହେବା ମଧ୍ୟ ଦେଖାଯାଏ । ତେବେ ସାମାଜିକ ଜୀବନ ପ୍ରବାହରୁ କାଳକ୍ରମେ 'ନାଗିରକ ସମାଜ' ଭାବନା ବିକଶିତ ହେବା ମନେହୁଏ ।

ଐତିହାସିକ ପୃଷ୍ଠଭୂମିରୁ ଦେଖିଲେ ରାଜନୈତିକ ବ୍ୟବସ୍ଥା ଭିତରେ ଧର୍ମତାନ୍ତ୍ରିକ ସମାଜ(ଥିଓକ୍ରାଟିକ ସୋସାଇଟି) ଓ ରାଜତନ୍ତ୍ର କାଳକ୍ରମେ ଲୋପ ପାଇଛି ଓ ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଅଧିକ ସଭ୍ୟ ପଦ୍ଧତି ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇଛି । ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରୁ ଏକ ନାଗରିକ ସମାଜର ପରିକଳ୍ପନା ବି ଉଦ୍ଭବ ହୋଇଛି । ତେବେ ନାଗରିକ ସମାଜ ରାଜନୈତିକ ବ୍ୟବସ୍ଥାର ଅଂଶ ବିଶେଷ ନୁହେଁ, ଯଦିବା ଏହା ରାଷ୍ଟ୍ରର ରାଜନୈତିକ ବ୍ୟବସ୍ଥାକୁ ରୂପରେଖ ଦେବା, ପ୍ରଭାବିତ କରିବା ଓ ଦିଗ୍‌ଦର୍ଶନ ଦେବାରେ ପ୍ରମୁଖ ଭୂମିକା ନେଇପାରେ ।

ସମାଜକୁ ଦିଗ୍‌ଦର୍ଶନ ଦେବା ପାଇଁ ରାଜନୈତିକ ବ୍ୟବସ୍ଥା ବାହାରେ ଯେଉଁ ସବୁ ସଙ୍ଗଠନ ବା ଅନୁଷ୍ଠାନ ଉଦ୍ଭବ ହୋଇଥିବା ଦେଖାଯାଏ ସେସବୁକୁ ନାଗରିକ ସମାଜର ଅନ୍ତର୍ଭୁକ୍ତ କରାଯାଇପାରେ । ଏ କ୍ଷେତ୍ରରେ ଗଣମାଧ୍ୟମ, ଅଣରାଜନୈତିକ ସଙ୍ଗଠନ ବା ଏନ୍‌ଜିଓ, ସମାଜର ବୁଦ୍ଧିଜୀବୀ ବର୍ଗ, ବିଭିନ୍ନ ଆଭିମୁଖ୍ୟ ବା ସେବା ଉଦ୍ଦେଶ୍ୟରେ ଗଠିତ ହୋଇଥିବା ଅନୁଷ୍ଠାନ ଇତ୍ୟାଦିକୁ ହୁଏତ ନାଗରିକ ସମାଜରେ ଅନ୍ତର୍ଭୁକ୍ତ କରାଯାଇପାରେ । ନାଗରିକ ସମାଜ ଯେପରି ରାଜନୈତିକ ବ୍ୟବସ୍ଥା ନୁହେଁ, ସେହିପରି ଏହା ମଧ୍ୟ କୌଣସି ଲାଭ ପାଇଁ ସୃଷ୍ଟ ସଙ୍ଗଠନ ନୁହେଁ । ବଜାର, ଅର୍ଥନୀତି,

ଲାଭ ଉଠାଇବା ଉଦ୍ଦେଶ୍ୟ ନେଇ ଗଠିତ ସଙ୍ଗଠନ ଇତ୍ୟାଦି ନାଗରିକ ସମାଜ ସହ ସମ୍ପୃକ୍ତ ନୁହେଁ । ବରଂ ସାମାଜିକ ବ୍ୟବସ୍ଥାକୁ ଅଧିକ ଉନ୍ନତ, ନ୍ୟାୟପୂର୍ଣ୍ଣ, ଉତ୍ତରଦାୟୀ, ସମ୍ବେଦନଶୀଳ କରିବା ଉଦ୍ଦେଶ୍ୟରେ ଯେଉଁସବୁ ସଙ୍ଗଠନମାନ ସୃଷ୍ଟି ହୋଇଥାଏ ସେସବୁକୁ ନାଗରିକ ସମାଜର ଅନ୍ତର୍ଭୁକ୍ତ କରାଯାଏ । ରାଜନୈତିକ ବ୍ୟବସ୍ଥା ବା ନିୟନ୍ତ୍ରଣ ବାହାରେ ଜନମାନସକୁ ଅଧିକ ସଚେତନ ଓ ରାଜନୈତିକ ବ୍ୟବସ୍ଥାକୁ ଅଧିକ ନୀତିପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ସମାଜରେ ଯେଉଁସବୁ ଅନୁଷ୍ଠାନ ବା ସଙ୍ଗଠନମାନ ରହିଥାଏ ସେସବୁ ନାଗରିକ ସମାଜର ଅଂଶ ବିଶେଷ ହୋଇପାରେ । ମୋଟ ଉପରେ ଏକ ଉନ୍ନତ, ସମତା ଭିତ୍ତିକ, ନ୍ୟାୟପୂର୍ଣ୍ଣ ଓ ବ୍ୟକ୍ତିମର୍ଯ୍ୟାଦାର ସ୍ତରକୁ ଆଗକୁ ନେବା ଉଦ୍ଦେଶ୍ୟରେ ଗଠିତ ସଙ୍ଗଠନ ଇତ୍ୟାଦିକୁ ନାଗରିକ ସମାଜରେ ସଂଶ୍ଳିଷ୍ଟ କରାଯାଇପାରେ ।

ନାଗରିକ ସମାଜ ପୃଷ୍ଠଭୂମିରେ ଦେଶର ଗଣମାଧ୍ୟମ ଏକ ପ୍ରମୁଖ ଭୂମିକା ନେଇଥାଏ । ଗଣମାଧ୍ୟମ କହିଲେ ସାଧାରଣତଃ ସମ୍ବାଦପତ୍ର ଜନିତ ପ୍ରିଣ୍ଟମିଡ଼ିଆ ଓ ଟେଲିଭିଜନ, ରେଡ଼ିଓ, ଇଣ୍ଟରନେଟ ଇତ୍ୟାଦି ଇଲେକ୍‌ଟ୍ରୋନିକ୍ ମିଡ଼ିଆକୁ ବୁଝାଯାଏ । ଯେ କୌଣସି ଏକ ଗଣତାନ୍ତ୍ରିକ ବା ସଭ୍ୟ ରାଷ୍ଟ୍ରରେ ଗଣମାଧ୍ୟମ ଏକ ପ୍ରମୁଖ ଭୂମିକା ନେଇଥାଏ । ଏହା କେବଳ ସମ୍ବାଦ ପରିବେଷଣ କରେନାହିଁ, ବରଂ ସମ୍ବାଦ ପରିବେଷଣ ସହ ଜନଚେତନାକୁ ଜାଗ୍ରତ କରିବାରେ, ନ୍ୟାୟପୂର୍ଣ୍ଣ ବ୍ୟବସ୍ଥାକୁ ମଜବୁତ୍ କରିବାରେ ଓ ସମାଜରୁ ଅନ୍ୟାୟ, ଅନୀତି, ଭ୍ରଷ୍ଟାଚାର ଦୂର କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ସାମ୍ପ୍ରତିକ ସ୍ଥିତିରେ ନାଗରିକ ସମାଜ ସହିତ ଗଣମାଧ୍ୟମ ଓତପ୍ରୋତ ଭାବରେ ଜଡ଼ିତ ହେବା ସହ ବରଂ ଗଣମାଧ୍ୟମ ନାଗରିକ ସମାଜଠାରୁ ଅଧିକ ବୃଦ୍ଧି ପାଇବା ବା ପ୍ରଭାବଶାଳୀ ହେବା ମନେହୁଏ ।

ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ବିଭିନ୍ନ ଅଣରାଜନୈତିକ ସଙ୍ଗଠନ ଥାଏ, ଯେଉଁମାନେ ସାମାଜିକ ବିକାଶ, ଅର୍ଥନୈତିକ ଅଭିବୃଦ୍ଧି, ଶିକ୍ଷାର ପ୍ରସାର ଇତ୍ୟାଦି ଆଭିମୁଖ୍ୟ ନେଇ ସମାଜ ସେବାମୂଳକ କାର୍ଯ୍ୟ ଦିଗରେ ସମ୍ପୃକ୍ତ ଥାଆନ୍ତି । ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ବହୁ ଅଣରାଜନୈତିକ ସଙ୍ଗଠନ, ଏନଜିଓମାନେ କାର୍ଯ୍ୟ କରିବା ଦେଖାଯାଏ । ଅବହେଳିତ ଜନଗଣଙ୍କ ସାମାଜିକ, ଆର୍ଥିକ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବା, ସ୍ଥଳ ବିଶେଷରେ ସେମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା, ସମାଜର ମୁଖ୍ୟ ସ୍ରୋତରେ ସେମାନଙ୍କୁ ସାମିଲ କରିବା ଇତ୍ୟାଦି ନାନାବିଧ ଲକ୍ଷ୍ୟନେଇ ଏନଜିଓମାନେ କାର୍ଯ୍ୟ କରନ୍ତି । ସାମାଜିକ ବିକାଶ ପ୍ରକ୍ରିୟାରେ ଏନଜିଓମାନେ ବି ଏକ ପ୍ରମୁଖ ଭୂମିକା ନେବା ଦେଖାଯାଏ ।

ସେହିପରି ସମାଜର ବୁଦ୍ଧିଜୀବୀ ବର୍ଗ ଜନମାନସକୁ ଦିଗ୍‌ଦର୍ଶନ ଦେବା, ନୂତନ ମୂଲ୍ୟବୋଧ ପ୍ରସାର କରିବା, ସମାଜର ନାନା ମନ୍ଦ ବ୍ୟବସ୍ଥା, ପରମ୍ପରା ବା ସୋସିଆଲ ଇଭିଲକୁ ଦୂର କରିବାରେ ମୁଖ୍ୟ ଦାୟିତ୍ୱ ନେବା ଆବଶ୍ୟକ । ସାମାଜିକ ବିକାଶ ପ୍ରକ୍ରିୟା ଓ ଏକ ସୁସ୍ଥ ପରିବେଶ ପାଇଁ ସମାଜର ବୁଦ୍ଧିଜୀବୀ ବର୍ଗ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବା ମନେହୁଏ । ସମାଜର ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ, ବୈଜ୍ଞାନିକ ଓ ପ୍ରବୀଣ ବ୍ୟକ୍ତି ବିଶେଷ ହିଁ ବୁଦ୍ଧିଜୀବୀ ବର୍ଗ । ସମାଜକୁ ଆଗକୁ ନେବାରେ, ସମାଜର ବିକାଶ କରାଇବାରେ ଓ ଜୀବନର ଗୁଣାତ୍ମକମାନବୃଦ୍ଧି ଦିଗରେ ସମାଜର ବୁଦ୍ଧିଜୀବୀ ବର୍ଗ ହିଁ ଏକ ମୁଖ୍ୟ ଭୂମିକା ନେବା ଦେଖାଯାଏ ।

ସୁତରାଂ ସରକାର ଓ ରାଜନୈତିକ ବ୍ୟବସ୍ଥା ବାହାରେ ରହି ସାମାଜିକ ବିକାଶ, ପ୍ରଗତି ଓ ଏକ ଗୁଣାତ୍ମକ ପରିବେଶ ପାଇଁ ନିଜର ସମ୍ପୃକ୍ତି ପ୍ରକାଶ କରୁଥିବା ବ୍ୟକ୍ତିମାନେ ହିଁ ନାଗରିକ ସମାଜର ଅନ୍ତର୍ଭୁକ୍ତ । ସାଧାରଣତଃ ସମାଜର ସଚେତନ, ପ୍ରଗତିଶୀଳ ଓ ନୈତିକ ମୂଲ୍ୟବୋଧ ପ୍ରତି ପ୍ରତିବଦ୍ଧ ବ୍ୟକ୍ତି ସମୂହ ହିଁ ନାଗରିକ ସମାଜର ମୁଖ୍ୟ ଅଂଶ କହିଲେ ଅତ୍ୟୁକ୍ତି ହେବନାହିଁ ।

"ଜନ ସାଧାରଣ ଯେଉଁ ଭଳି ସରକାର ପାଆନ୍ତି, ତାହା ହିଁ ତାଙ୍କର ପ୍ରାପ୍ୟ" ବୋଲି ଇଂରାଜୀରେ ଗୋଟିଏ ଲୋକ ଉକ୍ତି ରହିଛି । ସେହିଭଳି କୁହାଯାଇପାରେ ଯେ ଜନସାଧାରଣ ଯାହା ସେମାନଙ୍କର ନାଗରିକ ସମାଜ ମଧ୍ୟ ସେହି ମାନର । ଅର୍ଥାତ୍ ସାମାଜିକ ପରିବେଶ ଓ ପରିସ୍ଥିତି ଭିତରୁ ନାଗରିକ ସମାଜ ଉଦ୍ଭବ ହେଉଥିବାରୁ ଉଭୟ ଭିତରେ ନୈତିକ ସମ୍ପର୍କ ରହିବା ଦେଖାଯାଏ । ଯଦି ସମାଜର ବିଭିନ୍ନ ସ୍ତରରେ ବ୍ୟାପକ ଅବକ୍ଷୟ ସୃଷ୍ଟିହୁଏ, ତାହାର ପ୍ରତିଫଳନ ନାଗରିକ ସମାଜ ଉପରେ ମଧ୍ୟ ପଡ଼େ ।

ତେବେ ଆମ ସାମାଜିକ ପୃଷ୍ଠଭୂମିରେ ବିଭିନ୍ନ ସ୍ତରରେ ଅବକ୍ଷୟର ସ୍ପଷ୍ଟ ଚିତ୍ର ରହିଥିଲେ ବି ତଥାପି ଜନମାନସରେ ମାନବିକ ମୂଲ୍ୟବୋଧ , ସମ୍ବେଦନଶୀଳ ଜୀବନ ଦୃଷ୍ଟି, ନ୍ୟାୟବୋଧ ଓ ମାନବବାଦୀ ବିଚାରର ପ୍ରସାର ପାଇଁ ବହୁ ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷ ରହିଛନ୍ତି । ସାମନ୍ତବାଦୀ ଦୃଷ୍ଟି ଓ ଭେଦଭାବ ମୂଳକ ସାମାଜିକ ବ୍ୟବସ୍ଥା ଭିତରେ ବି ଆମର ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଛି । ଗଣତାନ୍ତ୍ରିକ ବ୍ୟବସ୍ଥା ବହୁ ଗଣତାନ୍ତ୍ରିକ ଅନୁଷ୍ଠାନ ଦ୍ୱାରା ପରିପୁଷ୍ଟ ହୋଇଚାଲିଛି । ଆମର ଏକ ସମ୍ବିଧାନ ସ୍ୱୀକୃତି ସ୍ୱାଧୀନ ବିଚାର ବ୍ୟବସ୍ଥା ବେଶ୍ କାର୍ଯ୍ୟଦକ୍ଷ ରହିଆସିଛି । ପୁଞ୍ଜିବାଦୀ କର୍ପୋରେଟ୍ ବ୍ୟବସ୍ଥା ଓ କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ଗଣମାଧ୍ୟମ ସ୍ତରରେ ପ୍ରଭାବ ବିସ୍ତାର କରିଥିଲେ ବି ଏ କ୍ଷେତ୍ରରେ ଅନେକ ନୀତିବାଦୀ, ମହାତ୍ତ୍ୱାକାଂକ୍ଷୀ ବ୍ୟକ୍ତି ରହିଛନ୍ତି

ଯେଉଁମାନେ ସାମାଜିକ ସଚେତନତା ସୃଷ୍ଟି ଦିଗରେ ବଳିଷ୍ଠ ଭୂମିକା ନେଇପାରୁଛନ୍ତି । ସମାଜରେ ଅନେକ ପ୍ରଗତିଶୀଳ ବୁଦ୍ଧିଜୀବୀ ଏକ ସୁସ୍ଥ ସମାଜ ପାଇଁ ସର୍ବଦା ନିଜର ସମ୍ପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ଯେତେ ସୀମିତ ଅର୍ଥରେ ହେଲେ ମଧ୍ୟ ମତ ବ୍ୟକ୍ତ କରିବାର ଅଧିକାର ଆମର ରହିଛି । ସେହିପରି ଅଣରାଜନୈତିକ ସ୍ତରରେ ସରକାରୀ ଦୋଷ ଦୁର୍ବଳତା ଦର୍ଶାଇବାର ସୁଯୋଗ ମଧ୍ୟ ସମାଜରେ ରହିଛି । ଜାତୀୟ ସ୍ତରରେ ସରକାର ବି କେତେକ ପ୍ରଗତିଶୀଳ ବ୍ୟବସ୍ଥାକୁ ନୀତିଗତ ଭାବେ ଆଇନର ମାନ୍ୟତା ଦେଇଛନ୍ତି । ସୂଚନା ଅଧିକାର, ସମସ୍ତ ଶିଶୁମାନଙ୍କ ପାଇଁ ଶିକ୍ଷାର ଅଧିକାର ପରି ସାମ୍ବିଧାନିକ ବ୍ୟବସ୍ଥା ଆମ ରାଜନୈତିକ ବ୍ୟବସ୍ଥାର ସକାରାତ୍ମକ ଅଭିବ୍ୟକ୍ତି । ସେହିପରି ମହିଳା କମିଶନ, ମାନବିକ ଅଧିକାର କମିଶନ, ଏସ୍.ସି.ଏସ.ଟି.ଆୟୋଗ ପରି ଅନୁଷ୍ଠାନମାନ ସାମ୍ବିଧାନିକ ବିଧି ବ୍ୟବସ୍ଥା ଭିତରେ ସାଧାରଣ ମଣିଷକୁ ନ୍ୟାୟ ଦେବାକୁ ରହିଛନ୍ତି । ଏସବୁ ଏକ ନ୍ୟାୟଭିତ୍ତିକ ସମାଜ ଦିଗରେ କାର୍ଯ୍ୟ କରିବା ଦେଖାଯାଏ ।

ଏସବୁ ସକାରାତ୍ମକ ସ୍ଥିତି ସତ୍ତ୍ୱେ ଆମ ପରିବେଶରେ ନାଗରିକ ସମାଜର ସ୍ଥିତି ସେତେ ସୁଦୃଢ଼ ହୋଇନାହିଁ । ଆମର ସରକାରୀ ବ୍ୟବସ୍ଥାକୁ ସ୍ୱଚ୍ଛ, ଅଧିକ ଉତ୍ତରଦାୟୀ କରାଯାଇ ପାରୁନାହିଁ । ନାଗରିକ ସମାଜ ସହ ସଂଶ୍ଳିଷ୍ଟ ଗଣମାଧ୍ୟମ, ଏନ୍‌ଜିଓ, ବୁଦ୍ଧିଜୀବୀ ସଚେତନ ବର୍ଗ ଓ ବିଭିନ୍ନ ଅନୁଷ୍ଠାନ ଯେପରି ଭାବେ ବ୍ୟବସ୍ଥାକୁ ଉନ୍ନତ ସ୍ଥିତି ଆଡ଼କୁ ନେବା ଦରକାର, ତାହା ହୋଇ ପାରିନାହିଁ । ଜନଗଣଙ୍କ ଭିତରେ ନାଗରିକ ଶୃଙ୍ଖଳାବୋଧ ବ୍ୟାପକ ହୋଇପାରୁନାହିଁ । ଆମର ସାଧାରଣ ଜୀବନ ପ୍ରବାହରେ ଆଇନ ଉଲଘଂନ, ଆଇନକୁ ହାତକୁ ନେବାର ମାନସିକତା, ଜାତିଆଣ ଦୃଷ୍ଟିଭଙ୍ଗୀ, ଭେଦଭାବ ମୂଳକ ପରିବେଶ ରହିଛି । ଅନେକ ସମୟରେ ଅନ୍ୟାୟ ପ୍ରତି ଏକ ସ୍ପର୍ଶକାତରହୀନ ମନୋଭାବ ନାଗରିକ ସମାଜରେ ବ୍ୟାପକ ହୋଇରହିଛି । ଏହିସବୁ ପରିସ୍ଥିତିରେ ଆଶାନୁରୂପ ପରିବର୍ତ୍ତନ ପାଇଁ ନାଗରିକ ସମାଜର ଯେ ଗୁରୁଦାୟିତ୍ୱ ରହିଛି ଏହା ନିଃସନ୍ଦେହ । (୯.୨.୧୨)



# ନାଗରିକ ସମାଜ ଓ ସାମାଜିକ ବିବର୍ତ୍ତନ

ରାଷ୍ଟ୍ରର ରାଜନୈତିକ ବା ଶାସନତନ୍ତ୍ର ବ୍ୟବସ୍ଥା ବାହାରେ ସମାଜର ଗୁଣାତ୍ମକ ବିକାଶ ଘଟାଇବାରେ ନାଗରିକ ସମାଜର ଏକ ପ୍ରମୁଖ ଭୂମିକା ଥିବା ମନେହୁଏ । ନାଗରିକ ସମାଜ କହିଲେ ସାଧାରଣତଃ ଗଣମାଧ୍ୟମ, ଅଣରାଜନୈତିକ ସଂଗଠନ ବା ଏନ୍‌ଜିଓ, ବୁଦ୍ଧିଜୀବୀ ବର୍ଗ ଓ ସଚେତନ ସମାଜକର୍ମୀ ଗୋଷ୍ଠୀକୁ ହିଁ ବୁଝାଯାଇଥାଏ । ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ଏହି ସବୁ ଅନୁଷ୍ଠାନ ଓ ସଙ୍ଗଠନ ସମାଜର ଗୁଣାତ୍ମକ ବିକାଶ ଦିଗରେ ଏକ ପ୍ରମୁଖ ଭୂମିକା ନେବା ଦେଖାଯାଏ ।

ଏକ ନାଗରିକ ସମାଜର ସର୍ବନିମ୍ନ ଆଭିମୁଖ୍ୟ କ'ଣ ହେବା ଆବଶ୍ୟକ ? ଏ କ୍ଷେତ୍ରରେ ଯଦି ସର୍ବନିମ୍ନ ଦୁଇଟି ଆଭିମୁଖ୍ୟ ନିଆଯିବ ତେବେ ପ୍ରଥମଟି ହୋଇପାରେ ରାଜନୈତିକ ବ୍ୟବସ୍ଥାକୁ ଅଧିକ କାର୍ଯ୍ୟଦକ୍ଷ, ଉତ୍ତରଦାୟୀ,ସ୍ୱଚ୍ଛ ଓ ଜନହିତକାରୀ ଲକ୍ଷ୍ୟ ଦିଗରେ ପ୍ରଭାବିତ କରିବା । ଦ୍ୱିତୀୟଟି ହେବ  ସାମାଜିକ ଜୀବନ ପ୍ରବାହକୁ ଅଧିକ ନ୍ୟାୟପୂର୍ଣ୍ଣ ଓ ଶୃଙ୍ଖଳିତ କରିବା, ଯଦ୍ୱାରା ସମାଜରେ ଏକ ସୁସ୍ଥ ପରିବେଶ ଅଧିକରୁ ଅଧିକ ଜନଜୀବନରେ ପ୍ରତିଫଳିତ ହେବ । ସମାଜ ଭିତରେ ନାଗରିକ ସମାଜର ସ୍ଥିତି ରହିଥିଲେ ବି ଶିକ୍ଷାର ପ୍ରସାର ପରେ 'ନାଗରିକ ସମାଜ' ଜନିତ ଭାବନାଟି ଅଧିକ ବିକଶିତ ହେବା ମନେହୁଏ । ଅତୀତରେ କୌଣସି ଅନ୍ୟାୟ ବା ଶୋଷଣ ବିରୁଦ୍ଧରେ ଯେତେବେଳେ ଜନଆନ୍ଦୋଳନ ସୃଷ୍ଟି ହୋଇଛି, ସେଥିରୁ ସୂଚନା ମିଳେ ଯେ ସମାଜରେ ସଚେତନତାର ପରିବେଶ କିଛି ରହିଛି । ତେବେ ରାଷ୍ଟ୍ରୀୟ ଭାବନା, ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ, ଗଣଶିକ୍ଷାର ପରିବେଶ ମଧ୍ୟରୁ 'ନାଗରିକ ସମାଜ' ଭାବନା ଭିତ୍ତି ନେଇଛି । ସମାଜର ଯେକୌଣସି ଅନ୍ୟାୟ ବା ଅନୀତିପୂର୍ଣ୍ଣ କାର୍ଯ୍ୟକୁ ଦୂର କରିବା କ୍ଷେତ୍ରରେ ଯେତେବେଳେ ସମାଜର ଏକ ବ୍ୟାପକ ଜନ ଆନ୍ଦୋଳନ ବା ସଚେତନ ବିରୋଧ ପ୍ରକାଶ ପାଉଛି ସେଥିରୁ ସାମାଜିକ ସଚେତନତାର ପରିବେଶ ରହିଥିବା ମନେହୁଏ ।

ସାମାଜିକ ସଚେତନତା ସୃଷ୍ଟି ଦିଗରେ ନାଗରିକ ସମାଜର ସମ୍ପୃକ୍ତି ବିଭିନ୍ନ କାରଣ ଉପରେ ନିର୍ଭର କରିଥାଏ । ପ୍ରଥମତଃ ପ୍ରସଙ୍ଗଟି କେତେ ଗୁରୁତ୍ୱପୂର୍ଣ୍ଣ ଓ ତାହା

ସାମାଜିକ ଜୀବନ ପ୍ରବାହକୁ କେଉଁ ଭାବରେ ପ୍ରଭାବିତ କରୁଛି । ସେହିପରି ଜନ ସଚେତନତା ସୃଷ୍ଟି ଦିଗରେ ନେତୃତ୍ୱ ନେଉଥିବା ବ୍ୟକ୍ତି ବିଶେଷଙ୍କ ନୈତିକ ପରକାଷ୍ଠା ଓ ସାମାଜିକ ପ୍ରଭାବ ବି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ତେବେ ଏହି କ୍ଷେତ୍ରରେ ରାଜନୈତିକ ବ୍ୟବସ୍ଥା, ଅର୍ଥନୈତିକ ପ୍ରସଙ୍ଗ, ସାମାଜିକ ପରିବେଶ ଭିତରେ ଗୁଣାତ୍ମକ ପାର୍ଥକ୍ୟ ବି ରହିଛି । ରାଜନୈତିକ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ କୌଣସି ଜନଚେତନା କାର୍ଯ୍ୟକ୍ରମ ଜନସମର୍ଥନ ଲାଭ କରିପାରେ । ତେବେ ସମାଜର କୌଣସି ଅହିତକର, ଅନ୍ୟାୟ, ମନ୍ଦ ବ୍ୟବସ୍ଥା (ଯାହାକୁ ସୋସିଏଲ ଇଭିଲ କୁହାଯାଏ) ବିରୁଦ୍ଧରେ ଜନଚେତନା ଜାଗ୍ରତ ହେବା ଏକ ସ୍ୱାଗତ ଯୋଗ୍ୟ ପଦକ୍ଷେପ ମନେହୁଏ । ଯେଉଁଠି ଏସବୁ ସମାଜରେ ବ୍ୟାପକ ଭାବେ ଥାଇ ବି ଏଥିପାଇଁ କୌଣସି ସାମାଜିକ ପ୍ରତିକ୍ରିୟା ପ୍ରକାଶ ପାଏ ନାହିଁ, ସେଠାରେ ନାଗରିକ ସମାଜ ସୁଦୃଢ଼ ଭିତ୍ତି ନେଇ ନ ଥିବା ଜଣାପଡ଼େ ।

ଏକ କ୍ଷୁଦ୍ର ରାଷ୍ଟ୍ର କିମ୍ବା ଏକ ସଂହତିପୂର୍ଣ୍ଣ ସମାଜ ଅପେକ୍ଷା ଏକ ବୃହତ ରାଷ୍ଟ୍ର ଓ ଏକ ବହୁ ବିଭକ୍ତ ଅସଂହତିପୂର୍ଣ୍ଣ ସମାଜର ସମସ୍ୟା ଅଧିକ ଜଟିଳ ମନେହୁଏ । ଏକ ଜଟିଳ ସାମାଜିକ ପରିବେଶରେ ପରିସ୍ଥିତି କ୍ଷେତ୍ରରେ ନାଗରିକ ସମାଜର ସ୍ଥିତି ଅଧିକ ଆବଶ୍ୟକ ହୋଇଥାଏ । ଯେଉଁଠି ଦାରିଦ୍ର୍ୟ, ନିରକ୍ଷରତା ଉତ୍କଟ ହୋଇ ରହିଥାଏ ତଥା ସାମାଜିକ ଜୀବନ ପ୍ରବାହରେ ଧର୍ମ, ଜାତି, ଭାଷା, ସଂସ୍କୃତିକୁ ନେଇ ନାନା ବିବିଧତା ଓ ବିଭିନ୍ନତା ଥାଏ ସେଠାରେ ସମାଜ କ୍ଷୟଶୀଳ ହୋଇ ରହିବାର ସମ୍ଭାବନା ଅଧିକ ଥାଏ । ଏକ ଜଟିଳ, ବହୁଧା ବିଭାଜିତ ଓ କ୍ଷୟଶୀଳ ସାମାଜିକ ପରିବେଶରେ ନାଗରିକ ସମାଜର ଆବଶ୍ୟକତା ଅଧିକ ଅନୁଭୂତ ହେବା ଦେଖାଯାଏ । ଯେକୌଣସି ରାଷ୍ଟ୍ର ପୃଷ୍ଠଭୂମିରେ ପୁଲିସ ଓ ପ୍ରଶାସନ ସରକାରୀ ବ୍ୟବସ୍ଥାର ଅବିଚ୍ଛେଦ୍ୟ ଅଙ୍ଗ ମନେହୁଏ । ତେବେ ପୁଲିସ ଓ ପ୍ରଶାସନକୁ ସ୍ୱଚ୍ଛ, ଉତ୍ତରଦାୟୀ ଓ ଲୋକାଭିମୁଖୀ କରିବା କ୍ଷେତ୍ରରେ ସମାଜର ସାଧାରଣ ଲୋକଙ୍କର ସଚେତନତାକୁ ଉନ୍ନତ କରିବା ପାଇଁ ନାଗରିକ ସମାଜର ଆବଶ୍ୟକତା ଅଧିକ ରହିଥାଏ ।

ଏହି ପୃଷ୍ଠଭୂମିରେ ଭାରତୀୟ ସମାଜରେ ଦାରିଦ୍ର୍ୟ, ନିରକ୍ଷରତା, ବେକାରୀ ସମସ୍ୟା ପରି ନାନା ସମସ୍ୟା ରହିଛି । ଏହି ସମସ୍ୟାକୁ ଦୂର କରିବା ପାଇଁ ରାଜନୈତିକ ଇଚ୍ଛାଶକ୍ତି, ପ୍ରଶାସନିକ ତତ୍ପରତା, ଜନାଭିମୁଖୀ ଯୋଜନାର କାର୍ଯ୍ୟକାରିତା ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଧ ହୁଏ ।

ପ୍ରଥମ ସମସ୍ୟାଟି ହେଉଛି ଆମ ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାରେ ଉତ୍କଟ ହୋଇ ରହିଥିବା ଦୁର୍ନୀତି ଏକ ବିଷ ଚକ୍ର ପରି ସାମାଜିକ ଜୀବନ ପ୍ରବାହକୁ

କଳୁଷିତ କରୁଥିବା ଜଣାପଡ଼େ । ଆମର ରାଜନେତାମାନେ ଓ ଏପରିକି ବହୁ ଭଲ ସ୍ୱଭାବର ବ୍ୟକ୍ତିମାନେ ରାଜନୈତିକ ବ୍ୟବସ୍ଥା ଭିତରେ ଦୁର୍ନୀତିଗ୍ରସ୍ତ ହୋଇଯିବା ଦେଖାଯାଏ । ଆମର ନିର୍ବାଚନ ପ୍ରକ୍ରିୟାରେ ନିର୍ବାଚିତ ହେବାକୁ ବହୁ ଅର୍ଥ ବ୍ୟୟ କରିବାକୁ ହୋଇଥାଏ । ବ୍ୟୟବହୁଳ ନିର୍ବାଚନ ପ୍ରକ୍ରିୟାରେ ସମାଜସେବା ପ୍ରତି ନିଷ୍ଠାଥିବା ଓ ସାଧୁତାର ମାନସିକତା ପୋଷଣ କରୁଥିବା ବ୍ୟକ୍ତିଗଣ ନିର୍ବାଚିତ ହେବା ପ୍ରାୟତଃ ସମ୍ଭବ ନୁହେଁ । ସେହିପରି ପ୍ରଶାସନିକ ସ୍ତରରେ ମଧ୍ୟ ଦୁର୍ନୀତି ନାନା କାରଣ ଯୋଗୁଁ ବ୍ୟାପୀ କରି ରହିଛି । ବିଭିନ୍ନ ବିକାଶ ମୂଳକ ଯୋଜନାର ସୁଫଳ ସାଧାରଣ ମଣିଷ ପାଖକୁ ଦୁର୍ନୀତି ଯୋଗୁଁ ଯିବା ସମ୍ଭବ ହେଉନାହିଁ । ଦୁର୍ନୀତି ଏପରି ବ୍ୟାପକ ହୋଇ ରହିଛି ଯେ ଜଣେ ସାଧାରଣ ବ୍ୟକ୍ତିର କାର୍ଯ୍ୟଟି ଯେତେ ନ୍ୟାୟସଙ୍ଗତ ହେଲେ ବି ଏହା ଅକ୍ଳେଶରେ ହୋଇପାରେ ନାହିଁ । ଅଧିକନ୍ତୁ ଆମର ପ୍ରଶାସନିକ ବ୍ୟବସ୍ଥା ସହ ଆମର ନ୍ୟାୟପାଳିକା ମଧ୍ୟ ଦୁର୍ନୀତିରୁ ମୁକ୍ତ ହୋଇ ପାରୁନାହିଁ । ପ୍ରଶାସନ, ପୁଲିସ, ନ୍ୟାୟପାଳିକା ରାଜନୈତିକ ବ୍ୟବସ୍ଥାର ଅଙ୍ଗବିଶେଷ ଓ ଗୋଟିଏ ବ୍ୟବସ୍ଥା କଳୁଷିତ ହେଲେ ତାହାର ପ୍ରଭାବ ଅନ୍ୟ କ୍ଷେତ୍ରକୁ ସଂକ୍ରମିତ ହେବା ସ୍ୱାଭାବିକ ।

ଆମ ଜାତୀୟ ଜୀବନର ଅନ୍ୟ ଏକ ଜଟିଳ ସମସ୍ୟା ହେଉଛି ଜାତିଆଣ ଓ ସାମ୍ପ୍ରଦାୟିକ ମାନସିକତା । ଯୁଗ ଯୁଗ ଧରି ଆମ ସମାଜରେ ଜାତିଆଣ ଭେଦଭାବ ଉତ୍କଟ ହୋଇ ରହିଛି ଯାହା ଏକ ସଂହତିପୂର୍ଣ୍ଣ ସାମାଜିକ ଚେତନାର ବିକାଶ କ୍ଷେତ୍ରରେ ବଡ଼ ପ୍ରତିବନ୍ଧକ ମନେହୁଏ । ଗ୍ରାମଠାରୁ ସହର ପର୍ଯ୍ୟନ୍ତ ଛୋଟ ଛୋଟ ଘଟଣାକୁ ନେଇ ଗୋଷ୍ଠୀ ସଂଘର୍ଷ ଆମ ଜନଜୀବନର ସାଧାରଣ ଘଟଣା । ଖୁବ୍ ନିକଟରେ ବଲାଙ୍ଗୀର ଜିଲ୍ଲାର ଲାଠୋର ଗ୍ରାମରେ ସମସ୍ତ ଦଳିତ ଲୋକମାନଙ୍କର ଘର ନିଆଁ ଲଗାଇ ପୋଡ଼ିଦେବା କେଉଁ ମାନସିକତାର ପରିଚୟ ଦିଏ ? ଆମ ନାଗରିକ ଚେତନାର ସ୍ତର କେଉଁଠି ରହିଛି ? ଆଇନକୁ ହାତକୁ ନେବା, ଛୋଟ ଛୋଟ ଘଟଣାରୁ ପ୍ରତିକ୍ରିୟାଶୀଳ ହୋଇ ଅନ୍ୟର ସଂସାରକୁ ଉଜୁଡ଼ାଇ ଦେବା, ଜାତି-ଧର୍ମ ନାମରେ ଅଗଣିତ ମଣିଷକୁ ଶୋଷଣ କରିବା ଆମ ସାମାଜିକ ଜୀବନର ନିଛକ ବାସ୍ତବତା କହିଲେ ଅତ୍ୟୁକ୍ତି ହେବନାହିଁ । ଜାତି, ଧର୍ମ, ନାମରେ ଏକ ବିଭାଜିତ ସମାଜରେ ମାନବିକତା, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ବ୍ୟକ୍ତି- ମର୍ଯ୍ୟାଦାବୋଧ କିପରି ସୁଦୃଢ଼ ଭିତ୍ତି ନେବ ତାହା ଚିନ୍ତାର ବିଷୟ । ଅନ୍ୟପ୍ରତି ହେଉଥିବା ଅନ୍ୟାୟ ବିରୁଦ୍ଧରେ ନାଗରିକ ସମାଜର ସମ୍ପୃକ୍ତି କେତେ ପ୍ରକାଶ ପାଉଛି ?

ଆମ ସମାଜର ଆଉ ଏକ ଗୁରୁତର ମସସ୍ୟା ହେଉଛି କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅହେତୁକ ମାନସିକତାର ପ୍ରାବଲ୍ୟ । ମଧ୍ୟଯୁଗୀୟ ପରମ୍ପରା, ବିଶ୍ୱାସ ଏବେ ବି

ଆମ ସମାଜରେ ବ୍ୟାପକ ହୋଇ ରହିଛି । ଯେତେବେଳେ ମଣିଷ ବୃହତ୍ତର ସମାଜ ଉପରେ ବିଶ୍ୱାସ ପୋଷଣ କରିପାରେ ନାହିଁ, ସେ ଅଲୌକିକତା, ଦୈବୀ ଆଶୀର୍ବାଦ, ପୂଜା ପାର୍ବଣକୁ ଆଶ୍ରା କରିଥାଏ । ବର୍ଷସାରା ନାନା ଧାର୍ମିକ କର୍ମକାଣ୍ଡ କରାଯାଏ ଯାହାର ନାନା କୁପରିଣାମ ପରିବେଶ ଉପରେ ପଡ଼େ । ଯେଉଁଠି ସାମାଜିକ ଚେତନାର ସ୍ତର ନିମ୍ନମାନର ରହିଥାଏ, ସେଠାରେ ସାଧାରଣତଃ ଜନଗଣ ନାନା ଅହେତୁକ ବିଶ୍ୱାସ, ଭାଗ୍ୟ, ଦୈବୀ- ଆଶୀର୍ବାଦ ଉପରେ ଆସ୍ଥା ସ୍ଥାପନ କରନ୍ତି । ସେହିପରି ଏକ ସ୍ଥିତିରେ ସାମାଜିକ କର୍ତ୍ତବ୍ୟବୋଧ ବା ଉଚ୍ଚମାନର କର୍ମସଂସ୍କୃତି ସମାଜରେ ବିକଶିତ ହୋଇପାରେ ନାହିଁ । ପରିଣାମତଃ ଆମ ସମାଜରେ ଧାର୍ମିକ ପୂଜା-ପାର୍ବଣ, ପ୍ରବଚନ, ପାରଲୌକିକ ବିଶ୍ୱାସ ଯେତେ ବ୍ୟାପକ ଭାବେ ଜନମାନସକୁ ପ୍ରଭାବିତ କରେ ସାଧୁତା, କର୍ତ୍ତବ୍ୟବୋଧ, ସମାଜ ପ୍ରତି ଉତ୍ତର ଦାୟିତ୍ୱବୋଧ ପରି ମୂଲ୍ୟଚୟ ସାଧାରଣ ଜୀବନ ପ୍ରବାହରେ ସେପରି କରିପାରେ ନାହିଁ ।

ଏହି ସବୁ ସାମାଜିକ ମନ୍ଦ ପରିବେଶରେ ପରିବର୍ତ୍ତନ ଆଣିବାକୁ ନାଗରିକ ସମାଜର ପ୍ରମୁଖ ଭୂମିକା ରହିଥାଏ । ସାମାଜିକ ଜୀବନ ପ୍ରବାହରୁ ଦୁର୍ନୀତି କିପରି କମିବ ଓ ଆମର ରାଜନୈତିକ, ପ୍ରଶାସନିକ ବ୍ୟବସ୍ଥା ଅଧିକ ସ୍ୱଚ୍ଛ, ଉତ୍ତରଦାୟୀ ହେବ ତାହା ଉପରେ ଗମ୍ଭୀର ଭାବେ ବିଚାରବିମର୍ଶ ଆବଶ୍ୟକ । ସେହିପରି ଆମର ଗଣତାନ୍ତ୍ରିକ ବ୍ୟବସ୍ଥା କିପରି ସାମାଜିକ ସମ୍ପର୍କରେ ପ୍ରତିଫଳିତ ହେବ ଓ ମାନବିକ ମର୍ଯ୍ୟାଦା ପ୍ରତି ସମ୍ମାନବୋଧ ରହିବ ତାହା ବି ଚିନ୍ତାର ବିଷୟ । ପୁନଶ୍ଚ ସମାଜରୁ ନାନା କୁସଂସ୍କାର ଓ ଅନ୍ଧବିଶ୍ୱାସର ବିଲୋପ ହୋଇ କିପରି ବୈଜ୍ଞାନିକ ଦୃଷ୍ଟିକୋଣ ଓ ମାନବବାଦୀ ଜୀବନ ଦର୍ଶନର ପ୍ରସାର ହେବ ତାହା ବି ଗମ୍ଭୀର ଭାବେ ଚିନ୍ତା କରିବା ଆବଶ୍ୟକ । ଗୁଣାତ୍ମକ ଜୀବନର ବିକାଶ ଦିଗରେ ଦୁର୍ନୀତି, ଜାତିଆଣ ଭେଦଭାବ ଓ କୁସଂସ୍କାର ଯେ ବଡ଼ ପ୍ରତିବନ୍ଧକ ଏହା ମନେହୁଏ । ଏହି ସାମାଜିକ ଇଭିଲ ଗୁଡ଼ିକ ଦୂର କରିବାରେ ନାଗରିକ ସମାଜ ନିଜର ସମ୍ପୃକ୍ତି ବ୍ୟକ୍ତ କରିବା ଦରକାର । (୧୫.୨.୧୨)



# ଅସହିଷ୍ଣୁ ମାନସିକତା

ବିଶ୍ୱ ସ୍ତରରେ ସହନଶୀଳତାକୁ ଏକ ମୂଲ୍ୟବୋଧ ଭାବେ ଗ୍ରହଣ କରାଯାଇ ପ୍ରତ୍ୟେକ ବର୍ଷ ୧୬ ନଭେମ୍ବର ଦିନଟିକୁ "ଆନ୍ତର୍ଜାତିକ ସହିଷ୍ଣୁତା ଦିବସ" ଭାବେ ପାଳନ କରାଯାଉଛି । ଏହି ଦିନ ସାରା ପୃଥିବୀର ବିଭିନ୍ନ ସ୍ଥାନରେ ସଭା ସମିତି ତଥା ଗଣମାଧ୍ୟମରେ ସହିଷ୍ଣୁତା ବିଷୟରେ ଆଲୋଚନା ହୁଏ । "ଆମେ ଯୁଦ୍ଧ, ହିଂସା, ସନ୍ତ୍ରାସବାଦ, ନୃଶଂସତା ଚାହୁଁନା, ଆମେ ଆମ ପୃଥିବୀଟିରେ ଶାନ୍ତି, ସୌହାର୍ଦ୍ଦ୍ୟ ଓ ଭ୍ରାତୃତ୍ୱର ସହ ବଞ୍ଚିବାକୁ ଚାହୁଁ - ଏହି କଥା ପୃଥିବୀର ବିଭିନ୍ନ କୋଣରେ ସେଦିନ ଗୁଞ୍ଜରିତ ହୁଏ । ପୃଥିବୀରେ ଅତୀତରେ ବହୁ ଯୁଦ୍ଧ, ଶୋଷଣ, ନରସଂହାର ହୋଇଯାଇଛି । ସେଥିରୁ ମଣିଷ ସମାଜକୁ ମୁକ୍ତ କରି ଶାନ୍ତି ଓ ଭାତୃତ୍ୱର ସହ ବଞ୍ଚିବାକୁ ସାରା ପୃଥିବୀରେ ଜନମତ ସୃଷ୍ଟି କରିବାକୁ ବିଶ୍ୱ ଘୋଷଣାନାମାରେ ବି ନିବେଦନ କରାଯାଉଛି । ସମତା, ମାନବିକ ମର୍ଯ୍ୟାଦା, ବ୍ୟକ୍ତି ସ୍ୱାଧୀନତା, ଧର୍ମନିରପେକ୍ଷତା ଆଦି ଆଦର୍ଶଗୁଡ଼ିକ ସଭ୍ୟ ମୂଲ୍ୟବୋଧ ଭାବେ ଚିନ୍ତାସ୍ତରରେ ସ୍ୱୀକୃତ ହୋଇଛି । ସେହିପରି ସହିଷ୍ଣୁତା, ଅହିଂସାକୁ ମଧ୍ୟ ସଭ୍ୟ ମୂଲ୍ୟବୋଧ ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଦିଆଯାଇଛି । ଆମ ସଂସାରରେ ଭାଷା, ଜାତୀୟତା, ଧର୍ମ, ଗୋଷ୍ଠୀଗତ ସଂସ୍କୃତି ଆଦି ସ୍ତରରେ ନାନା ବିବିଧତା ଓ ଭିନ୍ନତା ରହିଛି । ଏହି ଭିନ୍ନତା ବିଶ୍ୱ ସଂସ୍କୃତିର ବିଭବ । କିନ୍ତୁ ପରିତାପର ବିଷୟ ଯେ ଏଗୁଡ଼ିକ ସମୟ ସମୟରେ ମଣିଷର ମାନସିକତାରେ ଏପରି ଆବେଗ ସୃଷ୍ଟିକରେ ଯାହାଦ୍ୱାରା ଅନ୍ୟ ପରିଚୟ ବହନ କରୁଥିବା ଗୋଷ୍ଠୀ ପ୍ରତି ବିଦ୍ୱେଷ ଓ ଅସହିଷ୍ଣୁତାର ମାନସିକତା ଆସିଥାଏ । ଏକ ମାନବିକ ଦୃଷ୍ଟିଭଙ୍ଗୀ, ସାର୍ବଜନୀନ ଆଦର୍ଶବୋଧ ଓ ବିଚାରଶୀଳ ଚେତନା ଅଭାବରେ ନିଜର ଗୋଟିଏ କ୍ଷୁଦ୍ର ଅସ୍ମିତାକୁ ନେଇ ପରସ୍ପର ଭିତରେ ଘୃଣା, ଅବିଶ୍ୱାସ ପ୍ରକାଶ ପାଏ । ଏପରିକି ଦୁର୍ବଳ ଶ୍ରେଣୀ ଉପରେ ଅତ୍ୟାଚାର ସଂଘଟିତ ହେବାର ନାନା କରୁଣ କାହାଣୀ ଏକ ସାମାଜିକ ବାସ୍ତବତା ଅଟେ ।

ଅସହିଷ୍ଣୁତା ସହିଷ୍ଣୁତାର ପରିପନ୍ଥୀ ଓ ଉଭୟ ପରସ୍ପର ବିପରୀତ, ତେବେ ପ୍ରତ୍ୟେକଟି ଗୋଟିଏ ଜୀବନଦୃଷ୍ଟି ଓ ଜୀବନଧାରାର ପ୍ରତୀକ । ସହିଷ୍ଣୁତାର ଅର୍ଥ ନୁହେଁ ସବୁ କିଛିକୁ ସହିବା । ଅନ୍ୟାୟ, ଶୋଷଣ, ଅତ୍ୟାଚାରକୁ ସହିବା ସହିଷ୍ଣୁତା ନୁହେଁ । ବରଂ ସହିଷ୍ଣୁତା କହିଲେ ବ୍ୟାପକ ଅର୍ଥରେ ଅନ୍ୟକୁ ସମ୍ମାନ କରିବା, ମାନବିକ

ମର୍ଯ୍ୟାଦାକୁ ସ୍ୱୀକୃତି ଦେବା, ବ୍ୟକ୍ତି-ବ୍ୟକ୍ତି ଭିତରେ ଭେଦଭାବ ନ ଦେଖିବା ଓ ସମତାର ଭାବନା ଆଣିବା । ସେହିପରି ଅନ୍ୟାୟ ଓ ଶୋଷଣ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠାଇବା, ସତ୍ୟ, ନ୍ୟାୟ ଓ ମାନବିକତା ପାଇଁ ସଂଗ୍ରାମ କରିବା ଅସହିଷ୍ଣୁତା ନୁହେଁ । ବରଂ ଅସହିଷ୍ଣୁତା କହିଲେ ଏକ ବ୍ୟାପକ ଅର୍ଥରେ ଅନ୍ୟକୁ ତାର ଅଧିକାର ଓ ମର୍ଯ୍ୟାଦାରୁ ବଞ୍ଚିତ କରିବା ଓ ଅନ୍ୟ ପ୍ରତି ହିଂସା ଓ ଅନ୍ୟାୟ ଆଚରଣ କରିବା ।

ମଣିଷ ସ୍ୱଭାବକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ବ୍ୟକ୍ତି ଭିତରେ ମହତ୍ତର ଗୁଣ ଯେପରି ରହିଛି ପାଶବିକତା ମଧ୍ୟ ସେହିପରି ରହିଛି । ମଣିଷ ଦେବତାଠାରୁ ଅଧିକ ମହନୀୟ ହୋଇପାରେ ଓ ପଶୁଠାରୁ ଅଧିକ ହିଂସ୍ର ବି ହୋଇପାରେ । ଏହା ହିଁ ମଣିଷ ଚରିତ୍ରର ବୈଚିତ୍ର୍ୟ । ତେବେ ସାମାଜିକ ପରିସ୍ଥିତି ଓ ପରିବେଶ, ଶିକ୍ଷା ଓ ପାରିବାରିକ ସଂସ୍କାର ବ୍ୟକ୍ତି ସ୍ୱଭାବକୁ ଅନେକାଂଶରେ ପ୍ରଭାବିତ କରିଥାଏ । ଯେଉଁଠି ସମାଜିକ ଜୀବନ ପ୍ରବାହରେ ବ୍ୟକ୍ତି ମର୍ଯ୍ୟାଦାବୋଧ, ନାଗରିକ ଶୃଙ୍ଖଳା ନେଇ ସଚେତନତା ଓ ମାନବିକ ଆଦର୍ଶର ଏକ ସୁସ୍ଥ ପରମ୍ପରା ସୃଷ୍ଟି ହୋଇଛି ସେହି ପରିବେଶରେ ସାମାଜିକ ସ୍ତରରେ ହିଂସା, ଅପରାଧ ପ୍ରବଣତା ଓ ଅସହିଷ୍ଣୁତା ଅନେକାଂଶରେ କମ୍ ହେବା ସ୍ୱାଭାବିକ ମନେହୁଏ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ଆର୍ଥିକ ଓ ସାମାଜିକ ବୈଷମ୍ୟ ଉତ୍କଟ ଥାଏ, ଜନଚେତନାର ସାଂସ୍କୃତିକ ସ୍ତର ନିମ୍ନମାନର ରହିଥାଏ ଓ ନାଗରିକ ଶୃଙ୍ଖଳାବୋଧ ଏକ ଜୀବନ ଧାରାରେ ପରିଣତ ହୋଇ ନ ଥାଏ ସେଠାରେ ସାମାଜିକ ସ୍ତରରେ ହିଂସା, ଅସହିଷ୍ଣୁତା ଓ ସନ୍ତ୍ରାସବାଦର ପରିବେଶ ଅଧିକ ରହିବା ଦେଖାଯାଏ । ଲୋକଚରିତ୍ର ଓ ସାମାଜିକ ପ୍ରତିକ୍ରିୟା ନାନା କାରଣ ଉପରେ ନିର୍ଭର କରେ । ସମାଜର ଆର୍ଥିକ, ସାଂସ୍କୃତିକ, ଧାର୍ମିକ, ଶୈକ୍ଷିକ ପରିବେଶର ବି ଜଟିଳ ପ୍ରଭାବ ବ୍ୟକ୍ତି ବା ଗୋଷ୍ଠୀ ଚେତନାକୁ ପ୍ରଭାବିତ କରିଥାଏ ।

ରାଷ୍ଟ୍ରୀୟ ଭାବନାର ବିକାଶ ପରଠାରୁ ରାଷ୍ଟ୍ର-ରାଷ୍ଟ୍ର ଭିତରେ ନାନା କାରଣରୁ ଯୁଦ୍ଧ ବା ଅସହିଷ୍ଣୁତାର ବାତାବରଣ ରହି ଆସିଥିବା ଦେଖାଯାଏ । ଗୋଟିଏ ରାଷ୍ଟ୍ରର ଜନଗଣ ଅନ୍ୟ ଏକ ରାଷ୍ଟ୍ର ପ୍ରତି ସନ୍ଦେହ ବା ଅସହିଷ୍ଣୁତାର ମନୋଭାବ ରଖିବାର ବହୁ ଐତିହାସିକ ଦୃଷ୍ଟାନ୍ତ ରହିଛି । ବିଂଶ ଶତାବ୍ଦୀର ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ପର୍ଯ୍ୟନ୍ତ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ନାନା କାରଣରୁ ଯୁଦ୍ଧର ପରିବେଶ ସର୍ବଦା ରହି ଆସିଥିବା ଦେଖାଯାଏ । କୌଣସି ଶତାବ୍ଦୀରେ ପୃଥିବୀରେ ଯୁଦ୍ଧରହିତ ପରିବେଶ ସମ୍ଭବତଃ ସମ୍ଭବ ହୋଇନାହିଁ । ବରଂ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ଏକ ଯୁଦ୍ଧ ରହିତ ପୃଥିବୀର ପରିକଳ୍ପନା ନେଇ ନାନା ସ୍ତରରେ ଗମ୍ଭୀର ଚିନ୍ତା ପ୍ରକାଶ ପାଇବା ଦେଖାଯାଏ । ସେହିପରି ଧାର୍ମିକ ଆବେଗକୁ ନେଇ ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ଏକ ବିଦ୍ୱେଷର ଭାବନା ସାରା ପୃଥିବୀରେ ରହିବା ଜଣାଯାଏ । ଧର୍ମକୁ ଆଧାର କରି ପୃଥିବୀ ଏତେ ରକ୍ତରଞ୍ଜିତ ହୋଇଆସିଛି

ଯେ, ତାହାର କାହାଣୀ ଅତ୍ୟନ୍ତ ମର୍ମାନ୍ତିକ ମନେହୁଏ । ଯେଉଁଠି ଧର୍ମ ସାମ୍ପ୍ରଦାୟିକତା ଓ ମୌଳବାଦୀ ମାନସିକତାରେ ରୂପାନ୍ତରିତ ହୁଏ, ସେଠାରେ ଧର୍ମର ନୈତିକ ଓ ମହତ୍ତର ଆବେଗ ନଷ୍ଟ ହୋଇଯାଏ । "ଯେଉଁମାନେ ଆମ ଧର୍ମବିଶ୍ୱାସର ନୁହନ୍ତି, ସେମାନେ ଆମର ବିରୋଧୀ" ଏବେ ବି ଏହି ମାନସିକତା ବହୁ ଧର୍ମଧ୍ୱଜାଧାରୀଙ୍କ ପାଖରେ ରହିଥିବା ଦେଖାଯାଏ । ଧର୍ମ ନିରପେକ୍ଷତା ଏକ ସହନଶୀଳ ସଂସ୍କୃତିର ପ୍ରତୀକ ହେବାବେଳେ, ସାମ୍ପ୍ରଦାୟିକତା ସର୍ବଦା ଏକ ଅସହିଷ୍ଣୁତାର ବାତାବରଣ ସୃଷ୍ଟି କରିଥାଏ । ଧାର୍ମିକ ଅବେଗ ଦ୍ୱାରା ସରଳ ବିଶ୍ୱାସୀ ଜନଗଣଙ୍କୁ ଅକ୍ଳେଶରେ ପ୍ରଭାବିତ କରିବାର ସମ୍ଭାବନା ଥିବାରୁ ସ୍ଥଳ ବିଶେଷରେ ରାଜନୈତିକ ଲକ୍ଷ୍ୟ ଦିଗରେ ଧର୍ମକୁ ବିନିଯୋଗ କରାଯାଏ । ସେହିଭଳି ଗୋଟିଏ ଯୁଗରେ ଭାଷାକୁ ନେଇ ନାନା ଭାବପ୍ରବଣତା ସମାଜରେ ରହିବା ଦେଖାଯାଏ । ତେବେ ଜ୍ଞାନ ବିଜ୍ଞାନର ବିକାଶ ଓ ସାମାଜିକ ଗତିଶୀଳତାରେ ଦ୍ରୁତ ପରିବର୍ତ୍ତନ ଯୋଗୁ ଭାଷାଜନିତ ଭାବପ୍ରବଣତା ବା ଉଗ୍ରତା ସମାଜରୁ ଧୀରେ ଧୀରେ ଲୋପ ପାଉଥିବା ବା କମି ଯାଉଥିବା ଦେଖାଯାଏ । ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଜଣେ ଶିକ୍ଷିତ ବ୍ୟକ୍ତି ନାନା ଭାଷା ଜାଣିବାର ସାମର୍ଥ୍ୟ ରଖିବା ଏକ ସାଧାରଣ ଘଟଣା । ସୁତରାଂ ଯେଉଁ ଭାଷା ଦ୍ୱାରା ଜ୍ଞାନ ବିଜ୍ଞାନ ସ୍ତରରେ ଜଣେ ଉଚ୍ଚକୁ ଯାଇପାରିବ, ଜଣେ କର୍ମ ସଂସ୍ଥାନ ପାଇବାକୁ ସମର୍ଥ ହେବ ବା ସ୍ୱାବଲମ୍ବୀ ହୋଇପାରିବ ଓ ନିଜ ଭାଷାର ପରିଧି ବାହାରେ ଭାବ ପ୍ରକାଶ କରିବାକୁ ସମର୍ଥ ହେବ, ସେ ଭାଷା ଜଣଙ୍କୁ ଆୟତ୍ତ କରିବାକୁ ହେବ ।

ଗୋଷ୍ଠୀ ମାନସିକତା ଭିତରେ ଅନ୍ୟ କାରଣ ପାଇଁ ମଧ୍ୟ ଅସହିଷ୍ଣୁ ଭାବ ରହିପାରେ । ଗୋଟିଏ ରାଷ୍ଟ୍ରର ନାଗରିକ ହୋଇ, ଏକା ଧର୍ମ ବିଶ୍ୱାସ ଭିତରେ ଥାଇ ଓ ଗୋଟିଏ ମାତୃଭାଷାରେ ଭାବ ବିନିମୟ କରି ମଧ୍ୟ ଗୋଷ୍ଠୀଗତ ଅସହିଷ୍ଣୁତା ସମାଜରେ ରହିପାରେ । ଆମ ଦେଶର ସାମାଜିକ ଜୀବନ ପ୍ରବାହରେ ସାମାଜିକ ବିଭେଦତା ଓ ଅସହିଷ୍ଣୁତାର ଏକ ମୁଖ୍ୟ ଆଧାର ହେଉଛି ଜାତିଆଣ ମାନସିକତା । ଜାତିଆଣ ମନୋଭାବ ଆମ ସାମାଜିକ ଜୀବନର ସବୁଠାରୁ ବିଭେଦକାରୀ ଶକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାତିଆଣ ଭେଦଭାବ କିପରି ଅସହିଷ୍ଣୁତାର ବାତାବରଣ ସୃଷ୍ଟିକରେ, ଓଡ଼ିଶାର ସାମ୍ପ୍ରତିକ ଘଟଣା ପ୍ରବାହରୁ ଦୁଇଟି ଘଟଣା ଏଠାରେ ଉଲ୍ଲେଖ କରୁଛି ।

ପ୍ରଥମ ଘଟଣାଟି ହେଉଛି ବଲାଙ୍ଗୀର ଜିଲାର ଲାଠୋର ଗ୍ରାମର ଘଟଣା । ଦୁଇଜଣ ବ୍ୟକ୍ତିଙ୍କ ଭିତରେ ଝଗଡା ପରି ଗୋଟିଏ ଛୋଟ ଘଟଣାକୁ ନେଇ ଗ୍ରାମର ତଥାକଥିତ କିଛି ଜାତିବାଦୀ ଲୋକ ସେହି ଗ୍ରାମର ଆର୍ଥିକ ଦୁର୍ବଳ ସଂଖ୍ୟା ଲଘୁ ଦଳିତ ବସ୍ତିକୁ ନିଆଁ ଲଗାଇ ଜାଳିଦେଲେ । ସମସ୍ତ ଦଳିତ ଲୋକ ଅସହାୟ ହୋଇ ସବର୍ଣ୍ଣ ଲୋକଙ୍କ ଆକ୍ରମଣରେ ନିଜର ସର୍ବସ୍ୱ ହରାଇଲେ । ଝଗଡା ହୋଇଥିବା ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ଦଳିତ ଓ ଅନ୍ୟଜଣେ ସବର୍ଣ୍ଣ । ସମଗ୍ର ଦଳିତ ବସ୍ତିଟି ଜଳିଯିବା

ଓ ସେହି ଲୋକମାନେ ନିଜର ସର୍ବସ୍ୱ ହରାଇ ତମ୍ବୁରେ ଆଶ୍ରୟ ନେବାର ସମ୍ବାଦ ଗଣମାଧ୍ୟମରୁ ଜାଣିବାକୁ ମିଳିଥିଲା । ପୁନଶ୍ଚ ସମ୍ବାଦ ଅନୁଯାୟୀ, ଦଳିତ ବସ୍ତିଟି ଜଳୁଥିବା ବେଳେ ନିଆଁ ଲିଭାଇବାକୁ ଆସିଥିବା ଦମକଳ ଗାଡିକୁ ମଧ୍ୟ ଜାତିବାଦୀ ଲୋକେ ଦଳିତ ପଡାକୁ ପ୍ରବେଶ କରାଇ ଦେଇ ନ ଥିଲେ । ପୋଲିସ ଫୋର୍ସ ଆସିବା ବେଳକୁ ସମଗ୍ର ଦଳିତ ବସ୍ତିଟି ପୋଡି ପାଉଁଶ ହୋଇଯାଇଥିଲା ।

ଦ୍ୱିତୀୟ ଘଟଣାଟି ଢେଙ୍କାନାଳ ଜିଲାର କାମଧେନୁକୋଟ ଗ୍ରାମର ଘଟଣା । ସମ୍ବାଦ ଅନୁଯାୟୀ, ନିର୍ବାଚନରେ ହାରି ଯାଇଥିବା କିଛି ପ୍ରାର୍ଥୀ ତାଙ୍କର ସମର୍ଥକଙ୍କ ସାହାଯ୍ୟରେ ସେହି ଗ୍ରାମରେ ରହୁଥିବା ସଂଖ୍ୟାଲଘୁ ଦଳିତମାନଙ୍କର ଘରକୁ ନିଆଁ ଲଗାଇ ଜାଳିଦେଲେ । ନିର୍ବାଚନ ଜନିତ  ଭାବପ୍ରବଣତାରୁ କେଉଁଠି କେଉଁଠି କିଛି ହିଂସା ସୃଷ୍ଟି ହେବା ଆମ ସମାଜରେ ସାଧାରଣ ଘଟଣା । ତେବେ ସଂଗଠିତ ଭାବେ ଏକ ଦୁର୍ବଳ ଗୋଷ୍ଠୀର ଘରଦ୍ୱାର ପୋଡି ସେମାନଙ୍କୁ ଅଧିକ ନିଃସ୍ୱ କରିଦେବା କେଉଁ ପ୍ରକାର ମାନସିକତା ? ଗୋଟିଏ ସ୍ୱାଧୀନ ରାଷ୍ଟ୍ରରେ ଗଣତାନ୍ତ୍ରିକ ବ୍ୟବସ୍ଥା ଥିବାବେଳେ ଏହି ପ୍ରକାରର ବର୍ବରତାକୁ କଣ କୁହାଯାବ ?

ଏହି ଦୁଇଟି ଘଟଣା ଆକସ୍ମିକ ବା ବିଚ୍ଛିନ୍ନ ଘଟଣା ନୁହେଁ ବରଂ ଏହା ଗଭୀର ସାମାଜିକ ବ୍ୟବସ୍ଥାର ଅଭିବ୍ୟକ୍ତି ମନେ ହୁଏ । ଜାତିଆଣ ମାନସିକତା ଓ ହିଂସା ଆମ ସମାଜର ସାଧାରଣ ଘଟଣା । ସାମୟିକ ଭାବପ୍ରବଣତାରେ କୌଣସି ବ୍ୟକ୍ତି ଅସହିଷ୍ଣୁ ହେବା ଗୋଟିଏ କଥା, କିନ୍ତୁ ସଂଗଠିତ ଭାବରେ ଅନ୍ୟ ଏକ ଦୁର୍ବଳ ଗୋଷ୍ଠୀ ପ୍ରତି ଅସହିଷ୍ଣୁତାର ମନୋଭାବ ବ୍ୟକ୍ତ କରିବା ଆମ ଜନଜୀବନର ଏକ ବାସ୍ତବତା । ଆମ ଦେଶର ସମ୍ବିଧାନର ମୁଖବନ୍ଧ ବା ପ୍ରିଏମ୍ବୁଲରେ କେତେ ଉଚ୍ଚାଙ୍ଗ ମୂଲ୍ୟବୋଧ ଜନସାଧାରଣଙ୍କୁ ଦିଆଯାଇଛି । ଆମ ସମ୍ବିଧାନର ପ୍ରତିଶ୍ରୁତି ଅତି ପବିତ୍ର ହେଲେ ମଧ୍ୟ ଆମ ସାମାଜିକ ଜୀବନ ସେହି ଆଦର୍ଶଠାରୁ ବହୁ ଦୂରରେ ରହିଛି । ଆମ ସମ୍ବିଧାନର ପବିତ୍ର ପ୍ରତିଶ୍ରୁତିକୁ ବାସ୍ତବ ରୂପ ଦେବା ପାଇଁ ଆମକୁ ବହୁ ପଥ ଅତିକ୍ରମ କରିବାକୁ ହେବ । ଏକ ଜାତି ବିହୀନ ତଥା ଭେଦଭାବ ରହିତ ସମାଜର ସ୍ୱପ୍ନ ସାକାର କରିବା ପାଇଁ ବହୁ ସ୍ତରରୁ ଉଦ୍ୟମ ଆବଶ୍ୟକ । ବିଶେଷତଃ ନାଗରିକ ସମାଜ, ଶିକ୍ଷା ବ୍ୟବସ୍ଥା, ଗଣମାଧ୍ୟମ ଆଦିର ସମ୍ମିଳିତ ଉଦ୍ୟମ ବିନା ଏହି ସମସ୍ୟାକୁ ଦୂର କରିବା ସମ୍ଭବ ନୁହେଁ । ଜାତିବାଦୀ ଦୃଷ୍ଟିଭଙ୍ଗୀ ଯେ ଅସହିଷ୍ଣୁତାର ସବୁଠାରୁ ଏକ ବଡ଼ କାରଣ ଏହା କହିଲେ ଅତ୍ୟୁକ୍ତି ହେବନାହିଁ । (୨୧.୩.୧୨)



# ସହିଷ୍ଣୁତାର ସଂସ୍କୃତି

ସହିଷ୍ଣୁତା ଏକ ମୂଲ୍ୟବୋଧ ଓ ଏକ ସଭ୍ୟ-ଜୀବନଦୃଷ୍ଟି । ଅପରପକ୍ଷରେ ଅସହିଷ୍ଣୁତା ସଂହତିପୂର୍ଣ୍ଣ ଜୀବନ ଓ ମାନବିକ ମୂଲ୍ୟବୋଧର ପରିପନ୍ଥୀ । ଅସହିଷ୍ଣୁତା କିନ୍ତୁ ଆମ ସଂସାରରେ ବ୍ୟାପକ ଭାବେ ରହିଛି । ଅସହିଷ୍ଣୁତାର ମନୋଭାବ ଅନ୍ୟ ପ୍ରତି ବିଦ୍ୱେଷରୁ ଉତ୍ପନ୍ନ ହୋଇଥାଏ । ଭେଦଭାବ ଜନିତ ମାନସିକତାରୁ ଅସହିଷ୍ଣୁତା ଆସିଥାଏ । ଅସହିଷ୍ଣୁତାରୁ ନାନା ପ୍ରକାର ହିଂସା, ବିଦ୍ୱେଷ ନିଷ୍ଠୁରତା ଉଦ୍ଭବ ହୁଏ । ଅସହିଷ୍ଣୁତା ବ୍ୟକ୍ତି, ଗୋଷ୍ଠୀ ବା ରାଷ୍ଟ୍ର ପାଖରେ ରହିପାରେ । କୌଣସି ଗୋଷ୍ଠୀର ଅନ୍ୟ ଏକ ଗୋଷ୍ଠୀ ପ୍ରତି ଅସହିଷ୍ଣୁତା ଭାବ ରହିଲେ ଏହା ହିଂସା, ପ୍ରତିହିଂସା, ସନ୍ତ୍ରାସବାଦ, ଦଙ୍ଗାରେ ପରିଣତ ବି ହୋଇପାରେ । ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଅସହିଷ୍ଣୁତାରୁ ଯୁଦ୍ଧ ବା ଧ୍ୱଂସର ପରିବେଶ ସୃଷ୍ଟି ହୋଇପାରେ । ବ୍ୟକ୍ତି, ଗୋଷ୍ଠୀ ବା ରାଷ୍ଟ୍ର କୌଣସି ସ୍ଥଳରେ ଅସହିଷ୍ଣୁତାକୁ ଗ୍ରହଣ କରିବା ଏକ ଆଦର୍ଶ ହୋଇ ନପାରେ । ସାମାଜିକ ଗୋଷ୍ଠୀମାନଙ୍କ ଭିତରେ ଅସହିଷ୍ଣୁତାର ବାତାବରଣ ରହିଲେ ସମାଜରେ ଶାନ୍ତି, ସୌହାର୍ଦ୍ଦ୍ୟ ନଷ୍ଟ ହୋଇଥାଏ ।

ସହିଷ୍ଣୁତା ଅପରପକ୍ଷରେ ଏକ ସଭ୍ୟ ମୂଲ୍ୟବୋଧ ଓ ସାମାଜିକ ଆଦର୍ଶ । ପରସ୍ପର ଭିତରେ ଯାହା ଭିନ୍ନତା ଥିଲେ ମଧ୍ୟ ଶାନ୍ତି ଓ ସୌହାର୍ଦ୍ଦ୍ୟର ସହ ଏକତ୍ର ରହିବାର ମାନସିକତା ହିଁ ସହିଷ୍ଣୁତା । ସହିଷ୍ଣୁତା ଏକ ମୂଲ୍ୟବୋଧ ଭାବେ ଅନ୍ୟାନ୍ୟ ଆଦର୍ଶ ସହ ସଂଶ୍ଳିଷ୍ଟ ହେବା ମନେହୁଏ । ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ନାଗରିକ ଶୃଙ୍ଖଳାବୋଧ ଆଦର୍ଶଗୁଡିକ ସହ ଏହା ଘନିଷ୍ଠ ଭାବେ ସଂଯୁକ୍ତ । ଏକଥା ସତ ଯେ, ବ୍ୟକ୍ତି-ବ୍ୟକ୍ତି ବା ଗୋଷ୍ଠୀ-ଗୋଷ୍ଠୀ ଭିତରେ ଭିନ୍ନତା ରହିବ । ଆମର ବିଶ୍ୱାସ, ସଂସ୍କୃତି, ବିଚାରଧାରା, ଜୀବନଦୃଷ୍ଟି ଇତ୍ୟାଦି ଭିତରେ ଭିନ୍ନତା ବା ପ୍ରଭେଦ ରହିଛି । ସମାଜରେ ବା ବୃହତ୍ତର ମାନବଜାତି ଭିତରେ ବିବିଧତା ଓ ଭିନ୍ନତା ରହିଛି । ସବୁ ମଣିଷ ଚେହେରାରେ, ରଙ୍ଗରେ, ଖାଦ୍ୟରେ, ବିଶ୍ୱାସରେ, ସାମାଜିକ ପ୍ରଥା ବା ଚଳଣିରେ, ବିଚାରବୋଧରେ ସମାନ ନୁହନ୍ତି । ଜାତିଗତ, ବର୍ଣ୍ଣଗତ, ଧର୍ମଗତ, ଭାଷାଗତ, ସଂସ୍କୃତିଗତ ଭିନ୍ନତା ମଣିଷ ସମାଜରେ ରହିଛି ଓ ତାହା ହିଁ ଏକ ବାସ୍ତବତା ।

ମଣିଷ ସମାଜରେ ଯେଉଁ ଭିନ୍ନତା ଓ ବିବିଧତା ରହିଛି ତାହା ପାଖାତରେ ନାନା ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ କାରଣ ରହିଛି । ଐତିହାସିକ ଦୃଷ୍ଟିକୋଣରୁ ଦେଖିଲେ ହଜାର ହଜାର ବର୍ଷ ତଳେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ନାନା ସଭ୍ୟତା ଅନୁକୂଳ ପରିବେଶରେ ସୃଷ୍ଟି ହୋଇଛି । ପ୍ରତ୍ୟେକ ସଭ୍ୟତା ଅନ୍ୟ ସଭ୍ୟତାଠାରୁ ଦୂରରେ ରହି ନିଜସ୍ୱ ଶୈଳୀରେ ବିକଶିତ ହୋଇଛି । ବିଭିନ୍ନ ସଭ୍ୟତାର କାହାଣୀ ସୁଦୀର୍ଘ ହେଲେ ବି ମାତ୍ର କେତୋଟି ଶତାବ୍ଦୀ ତଳେ ବିଶେଷତଃ ଶିଳ୍ପ ବିପ୍ଳବ ପରେ ସଭ୍ୟତା- ସଭ୍ୟତା ଭିତରେ ସମ୍ପର୍କର ସେତୁ ସ୍ଥାପନ ହୋଇଛି । ସାମ୍ରାଜ୍ୟବାଦର ବିସ୍ତାର ଫଳରେ ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନର ଯୁଗ ଆସିଛି । ତା' ପୂର୍ବରୁ ଗୋଟିଏ ଭୂଖଣ୍ଡର ଜନଗଣ ଅନ୍ୟ ଭୂଖଣ୍ଡର ଜନଗଣଙ୍କ ବିଷୟରେ ଜାଣିବାର ଅବକାଶ ନଥିଲା । ପ୍ରତ୍ୟେକ ଗୋଷ୍ଠୀ ଅନ୍ୟ ଗୋଷ୍ଠୀଠାରୁ ଦୂରରେ ରହି ନିଜର ଭାଷା, ସଂସ୍କୃତି, ନୈତିକ ଆଦର୍ଶ, ପରମ୍ପରା, ଧାର୍ମିକ ବିଶ୍ୱାସ ସୃଷ୍ଟି କରିଛନ୍ତି । ସଭ୍ୟତା ବିକାଶର ବହୁ ପରେ 'ରାଷ୍ଟ୍ର'ର ଭାବନା ସୃଷ୍ଟି ହୋଇଛି । କାଳକ୍ରମେ ରାଷ୍ଟ୍ର ଏକ ସାର୍ବଭୌମିକ ଅନୁଷ୍ଠାନରେ ପରିଣତ ହୋଇଛି । ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡର ଜନଗଣ ଗୋଟିଏ ରାଷ୍ଟ୍ରୀୟ ପରିଚୟରେ ପରିଚିତ ହୋଇ ଏକ ବୃହତ୍ତର ଗୋଷ୍ଠୀ ଭିତରେ ଏକ ସଂହତିର ଭାବନା ସୃଷ୍ଟି କରିଛି । ଭାଷା, ଧର୍ମ, ଜାତୀୟତାକୁ ନେଇ ଜନଗଣଙ୍କ ଭିତରେ ଏକ ଭାବଗତ ଅସ୍ମିତାର ଭାବନା ସୃଷ୍ଟି ହୋଇଛି । ତେବେ ଆମ ପୃଥିବୀରେ ପ୍ରାୟ ପାଞ୍ଚ ହଜାର ଭାଷା, ଦୁଇ ଶହ ରାଷ୍ଟ୍ର ଓ ଏକ ଡଜନ ଧର୍ମ ରହିଛି । ବ୍ୟକ୍ତି ସ୍ୱତନ୍ତ୍ରତା ବା ଅସ୍ମିତା କ୍ଷେତ୍ରରେ ଭାଷା, ରାଷ୍ଟ୍ର, ଧର୍ମ ମୁଖ୍ୟ ଭୂମିକା ନେଇ ଆସିଛନ୍ତି । ଅତୀତରେ ଭାଷା, ଧର୍ମ ବା ରାଷ୍ଟ୍ର ବ୍ୟକ୍ତିର ସାମାଜିକ ପରିଚୟ କ୍ଷେତରେ ଏକ ପ୍ରମୁଖ ଭୂମିକା ନେଇଆସିଛି । ଏତଦ୍‌ବ୍ୟତୀତ ଜାତିଗତ, ବର୍ଣ୍ଣଗତ ବା ସଂସ୍କୃତିଗତ ମାନଦଣ୍ଡରେ ନାନା ଗୋଷ୍ଠୀ ମଧ୍ୟ ରହିଛନ୍ତି ଓ ତାହା ବି ବ୍ୟକ୍ତିର ପରିଚୟ କ୍ଷେତ୍ରରେ ଆଧାର ହୋଇଆସିଛି । ପୁନଶ୍ଚ ଧର୍ମ, ଭାଷା ବା ରାଷ୍ଟ୍ରୀୟତା କ୍ଷେତ୍ରରେ ବ୍ୟକ୍ତିର ଅନ୍ୟାନ୍ୟ ପରିଚୟ ମଧ୍ୟ ରହିଛି । ତେବେ ଗୋଟିଏ ଧର୍ମ ବା ରାଷ୍ଟ୍ର ଭିତରେ ବହୁ ଭିନ୍ନ ଗୋଷ୍ଠୀର ବ୍ୟକ୍ତି ରହିଥିବା ଏକ ବାସ୍ତବତା ହୋଇରହିଛି । ମୋଟ ଉପରେ କହିଲେ ବିବିଧତା, ଭିନ୍ନତା ହିଁ ମଣିଷ ସମାଜରେ ରହି ଆସିଛି ଓ ଏହା ରହିବା ଅବଶ୍ୟମ୍ଭାବୀ ମନେହୁଏ ।

ମଣିଷ ସମାଜରେ ନାନା କାରଣରୁ ଭିନ୍ନତା ରହିଥିଲେ ମଧ୍ୟ 'ମଣିଷ ଜାତି' ଏକ ବୋଲି ବିଚାର ମଧ୍ୟ ବିଭିନ୍ନ ସଭ୍ୟତାରେ ରହିଛି । ପୃଥିବୀର ପ୍ରତ୍ୟେକ ସଭ୍ୟତାର ମାନବହିତୈଷୀ ବୁଦ୍ଧିଜୀବୀ, ଦାର୍ଶନିକ ଓ ହେତୁବାଦୀମାନେ ବିଶ୍ୱକୁ

ଗୋଟିଏ ଡୋରିରେ ବାନ୍ଧିବାକୁ ବିଚାର ବ୍ୟକ୍ତ କରିଆସୁଛନ୍ତି । ତେବେ ଆନ୍ତର୍ଜାତିକ ସ୍ତରରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଶ୍ୱ ଜାତିସଂଘ ପରି ସଂଗଠନ ସୃଷ୍ଟି ହୋଇ ମଣିଷ ସମାଜର ମୁଖ୍ୟ ସମସ୍ୟାମାନଙ୍କୁ ସମାଧାନ କରିବାକୁ ପ୍ରୟାସ ଆରମ୍ଭ ହୋଇଛି । ସାରା ପୃଥିବୀରେ ଗତ ପାଞ୍ଚ' ଦଶନ୍ଧି ଭିତରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇଚାଲିଛି । ସମଗ୍ର ମଣିଷ ଜାତିକୁ ବିଚାରକୁ ନେଇ ନାନା ସମସ୍ୟା ଉପରେ ବିଶ୍ୱସ୍ତରରେ ବିଚାର ବ୍ୟକ୍ତ ହୋଇପାରୁଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଯୋଗୁଁ ଏହା ସମ୍ଭବ ହୋଇଛି । ବହୁ ଦୂରାରୋଗ୍ୟ ବ୍ୟାଧି ସାରା ପୃଥିବୀରୁ ଦୂର କରି ସୁସ୍ଥ ଜୀବନର ପରିବେଶ ଆଣିବାକୁ ପ୍ରୟାସ ହେଉଛି । ସେହି ପ୍ରୟାସ ଯୋଗୁଁ ପ୍ଲେଗ, ବସନ୍ତ, କୁଷ୍ଠ, ପୋଲିଓ, ମ୍ୟାଲେରିଆ ପରି ରୋଗ ଦୂର କରିବାରେ ପ୍ରମୁଖ ସଫଳତା ମିଳିପାରିଛି । ବୈଜ୍ଞାନିକ ଜ୍ଞାନ ବିଶ୍ୱର ହିତ ପାଇଁ ସାର୍ବଜନୀନ ହୋଇପାରିଛି । ଜ୍ଞାନ କ୍ଷେତ୍ରରେ କାହାର ପ୍ରଭୁତ୍ୱର ପ୍ରଶ୍ନ ନାହିଁ । କାଳକ୍ରମେ ଜ୍ଞାନର ବିକାଶରୁ ପ୍ରତ୍ୟେକ ବ୍ୟକ୍ତିର ଅଧିକାର, ମର୍ଯ୍ୟାଦାର ସହ ଜୀବନ, ଶିକ୍ଷା ପାଇବାର ସୁଯୋଗ ପାଇଁ ଆନ୍ତର୍ଜାତିକ ସ୍ତରରେ ବିଚାର ବ୍ୟକ୍ତ ହେଉଛି । ମଣିଷ ସମାଜରେ ଥିବା ନାନା ଭେଦଭାବ, ବିଦ୍ୱେଷ, ଘୃଣା, ବର୍ବରତା ଦୂର କରିବାକୁ ଚେତନା ପ୍ରକାଶ ପାଉଛି । କେଉଁଠି କିଛି ଦୁର୍ବିପାକ ହେଲେ ସାରା ପୃଥିବୀରୁ ସହାନୁଭୂତି ଓ ସାହାଯ୍ୟର ହାତ ପ୍ରସାରିତ ହୋଇପାରୁଛି । ଏସବୁ ନିଶ୍ଚିତ ଭାବେ ସଭ୍ୟ ଜୀବନ ଦୃଷ୍ଟିର କ୍ରମବିକାଶ କହିଲେ ଅତ୍ୟୁକ୍ତି ହେବନାହିଁ । ଆଧୁନିକ ପ୍ରଯୁକ୍ତି ଯୋଗୁଁ ସମଗ୍ର ପୃଥିବୀ ଏକ 'ବିଶ୍ୱଗ୍ରାମ'ରେ ପରିବର୍ତ୍ତନ ହେବାରେ ଲାଗିଛି । ଜଗତୀକରଣ ସାରା ପୃଥିବୀରେ ଏକ ସାଂସ୍କୃତିକ ସମନ୍ୱୟର ପରିବେଶ ସୃଷ୍ଟି କରିଛି ।

ମଣିଷ ସମାଜରେ ଯେଉଁ ଘଟଣାମାନଙ୍କୁ ନେଇ ବିଦ୍ୱେଷ ଓ ବିଭେଦର ମାନସିକତା ରହିଛି, ସେ ସବୁକୁ ଦୂର କରିବାକୁ ଆନ୍ତର୍ଜାତିକ ସମ୍ପୃକ୍ତି ପ୍ରକାଶ ପାଉଛି । ଅହିଂସା, ବ୍ୟକ୍ତି ମର୍ଯ୍ୟାଦା, ମାନବିକ ଅଧିକାର ପରି ମୂଲ୍ୟବୋଧ ଗୁଡିକୁ ସମାଜରେ ବ୍ୟାପକ କରିବାକୁ ବିଶ୍ୱସ୍ତରରେ ଚିନ୍ତା ପ୍ରକଟ ହେଉଛି । ମଣିଷ ସମାଜର ସମସ୍ତ ଭିନ୍ନତା, ବିବିଧତାକୁ ଆମକୁ ସ୍ୱୀକାର କରିବାକୁ ହେବ । କିନ୍ତୁ ଭିନ୍ନତା ଆଧାରରେ ଶତ୍ରୁତା, ଭେଦଭାବ, ଅସହିଷ୍ଣୁତାର ପରିବେଶ ସୃଷ୍ଟି କରିବା ସଭ୍ୟ ଜୀବନ ଧାରାର ଯେ ପରିପନ୍ଥୀ- ଏହି ଚେତନା ଆନ୍ତର୍ଜାତିକ ସ୍ତରରେ ଧୀରେ ଧୀରେ ବୃଦ୍ଧି ପାଇବାରେ ଲାଗିଛି । କାରଣ ଇତିହାସରୁ ଶିକ୍ଷାମିଳିଛି ଯେ ପ୍ରକୃତି ଆମକୁ ଯେତିକି ଦୁଃଖ ଦେଇନାହିଁ, ମଣିଷର କ୍ରୂରତା, ଅସହିଷ୍ଣୁତା ଓ ଅତ୍ୟାଚାର ଦ୍ୱାରା ପୃଥିବୀରେ ଅଧିକ ଦୁଃଖର ପରିବେଶ ସୃଷ୍ଟି ହୋଇଛି । ମଣିଷ ନିଜର ବୁଦ୍ଧି, ପ୍ରଜ୍ଞା, ବିଜ୍ଞାନ ସାହାଯ୍ୟରେ

ପ୍ରକୃତିର ପ୍ରତିକୂଳ ସ୍ଥିତି ଉପରେ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ଆଣିବାକୁ ସମର୍ଥ ହୋଇପାରିଛି । କିନ୍ତୁ କ୍ରୂରତା, ଯୁଦ୍ଧ, ସନ୍ତ୍ରାସବାଦ, ଶୋଷଣ, ଅତ୍ୟାଚାର ମଣିଷ ଦ୍ୱାରା ମଣିଷ ଉପରେ କରାଯାଉଛି, ଯାହା ଅନ୍ୟର ଚକ୍ଷୁକୁ ଲୋତକପୂର୍ଣ୍ଣ କରୁଛି । ଆମ ସଂସାରରୁ ଯଦି ଏସବୁ ମନ୍ଦ ଭାବନା ଓ ଆଚରଣ ଦୂର ହୋଇପାରନ୍ତା ତେବେ ଆମ ସମାଜ ଓ ସାମାଜିକ ଜୀବନ କେତେ ପ୍ରୀତିମୟ ହୋଇପାରନ୍ତା ।

ମଣିଷ ସମାଜରେ ରହିଥିବା ବିଦ୍ୱେଷ, ଘୃଣା ଅସହିଷ୍ଣୁତାକୁ ଦୂର କରିବାକୁ ଆନ୍ତର୍ଜାତିକ ସ୍ତରରେ ସଚେତନତା ସୃଷ୍ଟି ହୋଇଛି । ମଣିଷ ସମାଜରେ ଏକ ସହିଷ୍ଣୁତାର ପରିବେଶ ଆଣିବାକୁ ତଥା ବିଶ୍ୱ ଭ୍ରାତୃତ୍ୱର ଭାବନା ସୃଷ୍ଟି କରିବାକୁ ଆନ୍ତର୍ଜାତିକ ଉଦ୍ୟମ ନିଶ୍ଚୟ ସ୍ୱାଗତଯୋଗ୍ୟ । ଏହି ପୃଷ୍ଠଭୂମିରେ ୧୯୯୫ ମସିହାକୁ ସାରା ପୃଥିବୀରେ ସହିଷ୍ଣୁତାର ବର୍ଷ ଭାବେ ପାଳନ କରାଯାଉଛି । ଜାତିସଂଘ ଦ୍ୱାରା ପ୍ରତିବର୍ଷ ନଭେମ୍ବର ୧୬ ତାରିଖକୁ ଆନ୍ତର୍ଜାତିକ ସହିଷ୍ଣୁତା ଦିବସ ଭାବେ ସାରା ପୃଥିବୀରେ ପାଳନ କରାଯାଉଛି ।

ଜାତିସଂଘ ତା'ର ଘୋଷଣାନାମାରେ ବ୍ୟକ୍ତ କରିଛି- ଆମେ ପୃଥିବୀର ଜନସାଧାରଣ ମଣିଷର ମର୍ଯ୍ୟାଦା ଓ ଅଧିକାରକୁ ସ୍ୱୀକାର କରୁଛୁ । ଆମର ଆଗାମୀ ପୀଢ଼ି ଯେପରି ଯୁଦ୍ଧ, ବିଭୀଷିକା, ଅସହିଷ୍ଣୁତା ଜନିତ ମାନବକୃତ ଦୁର୍ଦ୍ଦଶାରେ ଆକ୍ରାନ୍ତ ନ ହୁଏ ତାହା ଦେଖିବା ଆମର ଏକ ବଡ କର୍ତ୍ତବ୍ୟ ବୋଲି ଆମେ ବିଚାର କରୁଛୁ । ଏଥିପାଇଁ ସମଗ୍ର ବିଶ୍ୱରେ ଭ୍ରାତୃତ୍ୱ ଭାବନା ଜନିତ ଏକ ସହିଷ୍ଣୁତାର ସଂସ୍କୃତି ପ୍ରସାର କରିବା ପାଇଁ ଆମେ ସଂକଳ୍ପବଦ୍ଧ । ବିଶ୍ୱ ଘୋଷଣାନାମାରେ ଏହା ମଧ୍ୟ କୁହାଯାଇଛି ଯେ, ସାରା ପୃଥିବୀର ଜନଗଣଙ୍କ ମଧ୍ୟରେ ସହିଷ୍ଣୁତା, ସମ୍ମାନବୋଧ ଓ ସହଭାଗିତାକୁ ବୃଦ୍ଧି କରିବାକୁ ହେବ । ସଭ୍ୟତା-ସଭ୍ୟତା, ସଂସ୍କୃତି-ସଂସ୍କୃତି ଓ ବିଭିନ୍ନ ଜନଗୋଷ୍ଠୀ ଭିତରେ ଯାହା କିଛି ପାର୍ଥକ୍ୟ ଓ ବିଭେଦ ରହିଛି ତାହାକୁ ଆମେ ଆଲୋଚନା କରି ଶାନ୍ତିପୂର୍ଣ୍ଣ ଭାବରେ ଆମର ସମସ୍ୟାକୁ ସମାଧାନ କରିପାରିବା । ପରସ୍ପର ପ୍ରତି ସମ୍ମାନବୋଧ, ଅନ୍ୟର ଅଧିକାର ପ୍ରତି ସଚେତନତା, ଭ୍ରାତୃତ୍ୱଭାବ ଓ ମାନବବାଦୀ ଦୃଷ୍ଟିଭଙ୍ଗୀକୁ ପ୍ରସାର କରିବା ହିଁ ସଭ୍ୟ ଜୀବନ ଦୃଷ୍ଟିର ପ୍ରତୀକ । ଏସବୁ ଯେ ଏକ ସହିଷ୍ଣୁତାର ସଂସ୍କୃତି ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ଏକ ସହିଷ୍ଣୁତାର ସଂସ୍କୃତି ଯଦି ସାରା ବିଶ୍ୱରେ ଦୃଢ଼ ଭିତ୍ତି ନିଏ, ତେବେ ହୁଏତ ସାରା ପୃଥିବୀରୁ ରାଷ୍ଟ୍ର ରାଷ୍ଟ୍ର ସ୍ତରରେ ଯେଉଁ ଅବିଶ୍ୱାସର ପରିବେଶ ରହିଛି ତାହା ଦୂର ହୋଇପାରିବ । ପ୍ରତ୍ୟେକ ରାଷ୍ଟ୍ର ପ୍ରତିରକ୍ଷା କ୍ଷେତ୍ରରେ ନିଜ ସମ୍ବଳର ଯେଉଁ

ମୁଖ୍ୟ ଅଂଶଟି ବ୍ୟୟ କରୁଛି, ତାହା ସମାଜର ଜନମଙ୍ଗଳ ଲକ୍ଷ୍ୟରେ ବ୍ୟୟ ହୋଇପାରିବ। ଯଦି ସାରା ପୃଥିବୀରୁ ପ୍ରତିରକ୍ଷା ବ୍ୟୟ ବନ୍ଦ ହୋଇଯିବ, ତେବେ ସମ୍ଭବତଃ କୌଣସି ରାଷ୍ଟ୍ରରେ କିଛି ଦାରିଦ୍ର୍ୟ ରହିବନାହିଁ। ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଯେଉଁ ଦାରିଦ୍ର୍ୟ ରହିଛି ତାହା ଅଚିରେ ଦୂର ହୋଇପାରିବ। ଏହା ସହିତ ପୃଥିବୀର କ୍ଷୟଶୀଳ ପ୍ରାକୃତିକ ପରିବେଶରେ ଉଲ୍ଲେଖନୀୟ ପରିବର୍ତ୍ତନ ଅଣାଯାଇପାରିବ। ପରିବେଶ ଯେଉଁଭଳି ପ୍ରଦୂଷିତ ହେଉଛି ତାହାକୁ ଅଚିରେ ଆଧୁନିକ ଜ୍ଞାନ କୌଶଳରେ ନିୟନ୍ତ୍ରଣ କରାଯିବା ସମ୍ଭବ ହେବ। ପ୍ରତିରକ୍ଷା ବ୍ୟୟ ଜନହିତକର କାର୍ଯ୍ୟରେ ଖର୍ଚ୍ଚ ହେଲେ ସବୁପିଲାଙ୍କ ପାଇଁ ଶିକ୍ଷା, ସବୁ ମଣିଷଙ୍କ ପାଇଁ ସ୍ୱାସ୍ଥ୍ୟସେବା, ସବୁ ବିସ୍ଥାପିତ ଲୋକଙ୍କ ପାଇଁ ବାସସ୍ଥାନ ଅଚିରେ କରାଯିବା ସମ୍ଭବ ହେବ। ତୃତୀୟ ବିଶ୍ୱର ଯେଉଁ ଜନତା ଦାରିଦ୍ର୍ୟର କଷାଘାତ ଭିତରେ ଅନାହାରରେ, ଅର୍ଦ୍ଧାହାରରେ ଓ ପୁଷ୍ଟିହୀନତାରେ ଆକ୍ରାନ୍ତ ହୋଇ ଉପମାନବୀୟ ସ୍ତରରେ ଜୀବନ ବଞ୍ଚିଛନ୍ତି, ସେହି ପରିସ୍ଥିତିରେ ଉଲ୍ଲେଖନୀୟ ପରିବର୍ତ୍ତନ ହୋଇପାରିବ। ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଜୀବନର ଭୌତିକମାନ ଯେପରି ସ୍ତରକୁ ଯାଇଛି, ତାହା ପୃଥିବୀର ସବୁ ଦେଶର ଜନଗଣଙ୍କ ପାଇଁ ସମ୍ଭବ ହୋଇପାରିବ। ପୃଥିବୀରେ ସହିଷ୍ଣୁତା ଓ ଭ୍ରାତୃତ୍ୱର ବାତାବରଣ ଆସିଲେ ଏହା ନିଶ୍ଚୟ ସମ୍ଭବ ହେବ। ଆନ୍ତର୍ଜାତିକ ସ୍ତରରେ ଏଥିପାଇଁ ଯେଉଁ ସଚେତନତାର ମାନସିକତା ଆସିଛି ତାହା ହୁଏତ ଭବିଷ୍ୟତରେ ପୃଥିବୀରେ ଏକ ବଡ଼ ସାଂସ୍କୃତିକ ନବ ଜାଗରଣ ସୃଷ୍ଟି କରିବ। (୧୬.୩.୧୨)



# ଦୁଇଟି ଆଶ୍ରମର କାହାଣୀ

ଭାରତବର୍ଷର ଦୁଇ ବିଶିଷ୍ଟ ଜନନେତା ମହାତ୍ମା ଗାନ୍ଧୀ ଓ ବିନୋବା ଭାବେଙ୍କ ଦୁଇଟି ପୃଥକ ଆଶ୍ରମ ମହାରାଷ୍ଟ୍ରର ଓ୍ୱାର୍ଦ୍ଧା ନିକଟରେ ରହିଛି । ଗାନ୍ଧୀଙ୍କ ଆଶ୍ରମର ନାମ ସେବାଗ୍ରାମ ଓ ବିନୋବାଙ୍କ ଆଶ୍ରମର ନାମ ବ୍ରହ୍ମବିଦ୍ୟା ମନ୍ଦିର, ପୌନାର । ବହୁଦିନରୁ ଏହି ଦୁଇ ଆଶ୍ରମ ବିଷୟରେ ଜାଣିବାର ଅବକାଶ ପାଇଥିଲେ ମଧ୍ୟ ଆଶ୍ରମକୁ ଯିବାର ସୌଭାଗ୍ୟ କେବେ ହୋଇନଥିଲା । ନିକଟରେ ନାଗପୁରଠାରେ ଏକ ଜାତୀୟ ସମ୍ମିଳନୀରେ ଯୋଗଦେବା ଅବସରରେ ସେଠାରୁ ପ୍ରାୟ ୭୦କି.ମି. ଦୂରରେ ଅବସ୍ଥିତ ଏହି ଦୁଇ ଆଶ୍ରମକୁ ଆଗ୍ରହର ସହ ଯାଇଥିଲି । ଏହି ପୃଷ୍ଠଭୂମିରେ ଏହି ଦୁଇ ଆଶ୍ରମ ବିଷୟରେ ସଂକ୍ଷିପ୍ତ ସୂଚନା ଦେବା ଏହି ଲେଖାଟିର ଉଦ୍ଦେଶ୍ୟ ।

ମହାତ୍ମା ଗାନ୍ଧୀ ୧୯୩୬ ମସିହାରେ ମହାରାଷ୍ଟ୍ରର ଓ୍ୱାର୍ଦ୍ଧା ପାଖରେ ଏକ ଆଶ୍ରମ କରି ଗ୍ରାମସ୍ୱରାଜର ବାର୍ତ୍ତା ପ୍ରଚାର କରିବାକୁ ଚାହିଁଲେ । ଓ୍ୱାର୍ଦ୍ଧାର ବିଶିଷ୍ଟ ଶିଳ୍ପପତି ଓ ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ଜମନଲାଲ ବାଜାଜ ଓ୍ୱାର୍ଦ୍ଧାଠାରୁ ୧୦ କି.ମି. ଦୂରରେ ସେଗାଁଓ ଗ୍ରାମ ନିକଟରେ ସେଥିପାଇଁ ଆବଶ୍ୟକ ଜମି ଯୋଗାଇଦେଲେ । ଗାନ୍ଧୀଙ୍କ ଆଶ୍ରମର ନାମ ସେବାଗ୍ରାମ ହେଲା, ଯାହାର ଲକ୍ଷ୍ୟ ଥିଲା ଗ୍ରାମରେ ରଚନାତ୍ମକ କାର୍ଯ୍ୟକ୍ରମ କରିବା । ସେତେବେଳେ ଓ୍ୱାର୍ଦ୍ଧାଠାରୁ ସେଠାକୁ କୌଣସି ରାସ୍ତା ନଥିଲା । ଶଗଡ଼ ଗୁଳା ରାସ୍ତାରେ ଚାଲିକରି ଯିବାକୁ ବା ଘୋଡ଼ାଗାଡ଼ିରେ ଯିବାକୁ ହେଉଥିଲା । ଗାନ୍ଧୀଙ୍କର ସର୍ତ୍ତ ହେଲା ଯେ, ତାଙ୍କ ପାଇଁ ଯେଉଁ କୁଟୀରଟି ହେବ ତାହା ସେଠିକାର ଗ୍ରାମର ଲୋକଙ୍କ ଭଳି ହେବ, ସ୍ଥାନୀୟ ଉପକରଣରେ ହେବ ଓ ସେଥିରେ ୫୦୦ ଟଙ୍କାରୁ ଅଧିକ ବ୍ୟୟ ହେବନାହିଁ । ସୁତରାଂ ମାଟିର ଘରଟିଏ ଓ ତା' ଉପରେ ବାଉଁଶ ଓ ସ୍ଥାନୀୟ ଟାଇଲ ଦେଇ ଘରଟିଏ ହେଲା । ସେହି ଛୋଟିଆ ହଲଟିରେ ଗାନ୍ଧୀ ଓ କସ୍ତୁରବା ରହିଲେ । ଗାନ୍ଧୀଙ୍କ କୁଟୀରଠାରୁ ସାମନ୍ୟ ଦୂରରେ ତାଙ୍କ ବ୍ୟକ୍ତିଗତ ସହାୟକ ଅଧିକାରୀ ମହାଦେବ ଦେଶାଇଙ୍କ ପାଇଁ କୁଟୀରଟିଏ ହେଲା ଓ ଗାନ୍ଧୀଙ୍କର ଅତ୍ୟନ୍ତ ଅନୁଗତ ମୀରା ବେନଙ୍କ ପାଇଁ କୁଟୀରଟିଏ ହେଲା । ତେବେ ଗାନ୍ଧୀଙ୍କ କୁଟୀରରେ ଅନ୍ୟ ପୁରୁଷ ଅତିଥିମାନେ ରହୁଥିବାରୁ କସ୍ତୁରବା ଅସୁବିଧାରେ ସମ୍ମୁଖୀନ ହେଉଥିଲେ, ସୁତରାଂ ତାଙ୍କ ପାଇଁ ପରେ ପାଖରେ କୁଟୀରଟିଏ ହେଲା । ସଂସ୍କୃତ ପଣ୍ଡିତ ଥିବା

ପର୍ଚ୍ଚୁରେ ଯିଏ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ଗାନ୍ଧୀଙ୍କୁ ସାକ୍ଷାତ କରି ଆତ୍ମହତ୍ୟା କରିବାକୁ ଭାବିଥିଲେ ତାଙ୍କର ମଧ୍ୟ କୁଟୀରଟିଏ ଅନତି ଦୂରରେ ରହିଛି । ଗାନ୍ଧୀ ତାଙ୍କୁ ଆଶ୍ୱାସନା ଦେଇ ସେଠାରେ ରଖି ତାଙ୍କର ଯତ୍ନ ନେଉଥିବା କାହାଣୀ ସୁବିଦିତ । ତଥ୍ୟ ଅନୁଯାୟୀ ସେବାଗ୍ରାମ ଆଶ୍ରମ ପ୍ରତିଷ୍ଠା ପରଠାରୁ ଗାନ୍ଧୀ ସେଠାରେ ମୋଟ ୨୫୮୮ ଦିନ ରହିଥିଲେ । ଗାନ୍ଧୀ ସେଠାରେ ରହିବାପରେ ଦେଶ ବିଦେଶରୁ ବହୁ ଲୋକ ତାଙ୍କୁ ସାକ୍ଷାତ କରିବାକୁ ସେବାଗ୍ରାମକୁ ଗଲେ ଓ ୱାର୍ଦ୍ଧା ଷ୍ଟେସନଠାରୁ ଏହି ରାସ୍ତାରେ ସଡ଼କ ନିମାଣ ହେଲା । ଏହି ଆଶ୍ରମଟି ହୋଇଗଲା ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏକ ପ୍ରଧାନ କେନ୍ଦ୍ର । ତେବେ ସେଠାରେ ତାଳ ଚଟେଇ ଓ ମଶିଣାରେ ସମସ୍ତେ ବସୁଥିଲେ । ଗାନ୍ଧୀ ଯେଉଁ ବାସନରେ ଖାଉଥିଲେ, ଯେଉଁ ପାତ୍ରରେ ସ୍ନାନ କରୁଥିଲେ ଓ ତାଙ୍କର ବ୍ୟବହୃତ ଜିନିଷପତ୍ର ଏବେ ସ୍ମୃତି ସ୍ୱରୂପ ସେଠାରେ ରହିଛି ।

ଆଶ୍ରମ ପରିସରରେ ଯେଉଁମାନେ ଗାନ୍ଧୀଙ୍କ ସହ ରହୁଥିଲେ ବା ସେଠାକୁ ଯେଉଁ ଅତିଥି ଆସୁଥିଲେ ସମସ୍ତେ ଆଶ୍ରମର ଶୃଙ୍ଖଳାକୁ ନିଷ୍ଠାର ସହ ମାନୁଥିଲେ । ସେଠାରେ ସାମର୍ଥ୍ୟ ନେଇ ଶରୀର ଶ୍ରମ ସମସ୍ତଙ୍କ ପାଇଁ ବାଧ୍ୟତାମୂଳକ ଥିଲା । ଗାନ୍ଧୀଙ୍କ ଏକାଦଶ ବ୍ରତକୁ ସମସ୍ତେ ସେଠାରେ ମାନି ଚଳୁଥିଲେ । ସେଠାରେ କୌଣସି ଜାତିଆଣ ବା ଧର୍ମଗତ ଭେଦଭାବ ନଥିଲା । ଗାନ୍ଧୀ ଅସ୍ପୃଶ୍ୟତା ନିବାରଣ ଓ ସର୍ବଧର୍ମ ସମନ୍ୱୟ ପାଇଁ ଯେଉଁ ଆବେଦନ ସୃଷ୍ଟି କରିଥିଲେ ତାହା ଆଶ୍ରମର ଆଦର୍ଶ ହୋଇ ରହିଥିଲା ।

ଗାନ୍ଧୀଙ୍କ ପରେ ସେଠାରେ କେତେକ ଅନୁଷ୍ଠାନ ହୋଇଛି । ଏପରିକି ରୁରାଲ ମେଡ଼ିକାଲ କଲେଜ ଓ ଏକ ଇଞ୍ଜିନିୟରିଂ କଲେଜ ମଧ୍ୟ ଗାନ୍ଧୀଙ୍କ ଆଶ୍ରମଠାରୁ ଅନତି ଦୂରରେ ସ୍ଥାପିତ ହୋଇଛି । ଏହି ବୈଷୟିକ ଶିକ୍ଷାନୁଷ୍ଠାନରେ ବୈଷୟିକ ପାଠ୍ୟକ୍ରମ ସହ ଗାନ୍ଧୀଙ୍କ ଦର୍ଶନ ମଧ୍ୟ ଶିକ୍ଷା ଦିଆଯାଉଛି । ସର୍ବଭାରତୀୟ ସ୍ତରରେ ଏଠାରେ ବିଦ୍ୟାର୍ଥୀମାନେ ଅଧ୍ୟୟନ କରୁଛନ୍ତି । ଏହା ସହିତ ଗାନ୍ଧୀ ସେବା ସଂଘ, ସର୍ବ ସେବା ସଂଘ, ନୟୀତାଲିମ କେନ୍ଦ୍ର, ଖଦି ମିସନ, ଶିକ୍ଷାମଣ୍ଡଳ, କୁଷ୍ଠନିବାରଣ କେନ୍ଦ୍ର ଇତ୍ୟାଦି ଗୁଡ଼ିଏ ଅନୁଷ୍ଠାନ ସେବାଗ୍ରାମ ପରିସରରେ ପରେ ନିର୍ମିତ ହୋଇଛି । ଏତଦବ୍ୟତୀତ ଏକ ମ୍ୟୁଜିୟମ ରହିଛି ଯେଉଁଥିରେ ଗାନ୍ଧୀଙ୍କର ଅନେକ ଫଟୋକୁ ଯତ୍ନର ସହ ରଖାଯାଇଛି । ଖଦି ଗ୍ରାମୋଦ୍ୟୋଗର ବିକ୍ରୟ କେନ୍ଦ୍ର ଆଶ୍ରମର ଆରମ୍ଭରେ ରହିଛି । ବିଭିନ୍ନ ସମୟରେ ସେଠାରେ ଆଲୋଚନା ଓ ସମ୍ମିଳନୀ ପାଇଁ ସମ୍ମିଳନୀ କକ୍ଷ କରାଯାଇଛି ତଥା ଅତିଥିଶାଳା ଓ ଭୋଜନଶାଳା ହୋଇଛି । ସେହି ପରିସରରେ ସ୍କୁଲ ଶିକ୍ଷାନୁଷ୍ଠାନଟିଏ ମଧ୍ୟ ଚାଲିଛି । ତେବେ ଗାନ୍ଧୀ ଓ ତାଙ୍କର ସହଯୋଗୀମାନେ

ଯେଉଁ ଛୋଟ ଛୋଟ କୁଟୀରରେ ରହୁଥିଲେ ସେସବୁକୁ ଅକ୍ଷତ ଅବସ୍ଥାରେ ସେହିପରି ରଖାଯାଇଛି ।

ସେବାଗ୍ରାମ ପରିସରରେ ବୁଲୁଥିବା ବେଳେ ଗାନ୍ଧୀ ଯୁଗର ଆଦର୍ଶ ଓ ତ୍ୟାଗ ମନକୁ ସ୍ପର୍ଶ କରୁଥାଏ । ଆଣ୍ଠୁ ଲୁଚୁନଥିବା ଖଦି ପୋଷାକ ପିନ୍ଧୁଥିବା ଜଣେ ମଣିଷ କେତେ ଅସାଧାରଣ ହୋଇପାରେ ତାହା ପ୍ରକୃତରେ କଳ୍ପନାତୀତ । ସାରା ପୃଥିବୀରେ ସାମ୍ରାଜ୍ୟବାଦକୁ ଆହ୍ୱାନ ଦେବାରେ, ଅହିଂସା ଓ ସତ୍ୟାଗ୍ରହ ଆଦର୍ଶକୁ ପୃଥିବୀରେ ପ୍ରସାର କରିବାରେ ଓ ଗୋଟିଏ ପରାଧୀନ ଦରିଦ୍ର ଦେଶର ଅଗଣିତ ମଣିଷଙ୍କ ଭିତରେ ନୈତିକ ଜାଗରଣ ଆଣିପାରିବାରେ ଗାନ୍ଧୀ ଇତିହାସରେ ଏକ ଅମ୍ଳାନ ପ୍ରତିଭା । ଆଇନଷ୍ଟାଇନ ଯାହା ତାଙ୍କ ବିଷୟରେ କହିଥିଲେ, 'ଭବିଷ୍ୟତ ପୀଢ଼ିର ଲୋକମାନେ କେବେ କଳ୍ପନା କରିପାରିବେ ନାହିଁ ଯେ ଗାନ୍ଧୀଙ୍କ ପରି ରକ୍ତ ମାଂସଧାରୀ ଜଣେ ମଣିଷ ଆମ ସଂସାରରେ ତାଙ୍କର ପାଦଚିହ୍ନ ରଖି ଯାଇଛନ୍ତି' । ଗାନ୍ଧୀ ଆଜି କେଉଁ ଦେଶ, ଧର୍ମ ବା ଜାତିରେ ସୀମିତ ନାହାନ୍ତି, ସେ ହୋଇଛନ୍ତି ଏକ ବିଶ୍ୱମାନବ ।

ସେବାଗ୍ରାମଠାରୁ ପାଞ୍ଚ କିମି ଦୂରରେ ପୌନାରରେ ବିନୋବାଙ୍କ ଆଶ୍ରମ । ବିନୋବାଙ୍କର ନାମ ଥିଲା ବିନାୟକ ନରହରି ଭାବେ (୧୮୯୫-୧୯୮୨) ଯିଏ ପରେ ବିନୋବା ଭାବେ ନାମରେ ପରିଚିତ ହେଲେ । ଗାନ୍ଧୀଙ୍କ ସହ ବିନୋବାଙ୍କର ପ୍ରଥମ ସାକ୍ଷାତ ୧୯୧୬ରେ ହୋଇଥିଲା ଓ ତା' ପରଠାରୁ ବିନୋବା ଗାନ୍ଧୀଙ୍କର ଯେ ଅତି ନିକଟତର ହୋଇଥିଲେ ତାହା ନୁହଁ, ଗାନ୍ଧୀ ବିଚାରର ଶ୍ରେଷ୍ଠ ବ୍ୟକ୍ତି ଭାବରେ ସେ ପରିଚିତ ହୋଇଥିଲେ । ଏପରିକି ଗାନ୍ଧୀଙ୍କ ଆଦର୍ଶ ବା ଲିଗାସିକୁ ସ୍ୱାଧୀନ ଭାରତରେ ଆଗକୁ ନେବାରେ ବିନୋବାଙ୍କର ମୁଖ୍ୟ ଭୂମିକା ରହିଥିଲା । ବିନୋବା ତାଙ୍କ ସମୟରେ ଜଣେ ପ୍ରାଜ୍ଞ ଓ ବିଶିଷ୍ଟ ଭାଷାବିତ୍ ଭାବେ ପରିଚିତ ଥିଲେ । କୁହାଯାଏ ଯେ, ସେ ୨୨ଟି ଭାଷା ଜାଣିଥିଲେ, ସବୁ ଧର୍ମର ମୌଳିକ କୃତିସବୁ ଅଧ୍ୟୟନ କରିଥିଲେ ଓ ଗଭୀର ଧୀଶକ୍ତିର ଅଧିକାରୀ ଥିଲେ । ସ୍ୱାଧୀନତା ପରେ ଗାନ୍ଧୀଙ୍କ ପରିକଳ୍ପିତ ଗ୍ରାମସ୍ୱରାଜ ଦିଗରେ ସେ ହିଁ ନିଷ୍ଠାପର ଉଦ୍ୟମ କରିଥିଲେ । ଏକ କୃଷିଭିତ୍ତିକ ସମାଜରେ ଚାଷଜମି ହିଁ ଥିଲା ଅର୍ଥନୀତିର ମୂଳକେନ୍ଦ୍ର । ତେବେ ଭୂମିହୀନ ଚାଷୀମାନଙ୍କୁ କିଛି ଜମି ଦେବାପାଇଁ ସେ ଭୂଦାନ ଆନ୍ଦୋଳନ ସ୍ୱାଧୀନ ଭାରତରେ ଆରମ୍ଭ କରିଥିଲେ । ସମାଜରେ ସମତା ଆଣିବାକୁ ସାରା ଦେଶରେ ପାଦରେ ଚାଲିଚାଲି ସେ ଜମିଦାର, ବଡ଼ଚାଷୀଙ୍କ ଠାରୁ ଦାନ ସୂତ୍ରରେ ଜମି ଆଣି ଗାଁ ଗାଁରେ ଭୂମିହୀନଙ୍କ ମଧ୍ୟରେ ବିତରଣ କରୁଥିଲେ । ସମତାକୁ ସେ ସାମ୍ୟଯୋଗ କହୁଥିଲେ ଓ ସମାଜରେ ଏକ ନୀରବ

କ୍ରାନ୍ତି ପାଇଁ ପ୍ରୟାସ କରିଥିଲେ । ଭୂଦାନ, ଗ୍ରାମଦାନ ଜରିଆରେ ସାରା ଦେଶରେ ଏକ ଅହିଂସ ଜାଗରଣ ସେ ସୃଷ୍ଟି କରିଥିଲେ ।

ବିନୋବା ସବୁ ଧର୍ମର ମହତବାଣୀକୁ ନିଜ ଜୀବନର ଆଦର୍ଶ କରିଥିଲେ । ଧର୍ମ ସମନ୍ୱୟ ଜନିତ ସମଦୃଷ୍ଟି ତାଙ୍କ ଜୀବନର ଆଦର୍ଶ ଥିଲା । ସେ ଭାରତବର୍ଷର ୬ଟି ସ୍ଥାନରେ ଆଶ୍ରମ ପ୍ରତିଷ୍ଠା କରିଥିଲେ ବି ତାଙ୍କ ଦ୍ୱାରା ପୌନାରଠାରେ ସ୍ଥାପିତ ବ୍ରହ୍ମବିଦ୍ୟା ମନ୍ଦିର ସବୁଠାରୁ ଅଧିକ ପ୍ରସିଦ୍ଧ ଥିଲା, କାରଣ ବିନୋବା ଏହିଠାରେ ହିଁ ରହୁଥିଲେ । ଏହି ଆଶ୍ରମର ସମସ୍ତ ପରିଚାଳନା ମହିଳାମାନଙ୍କ ହାତରେ ରହିଥିଲା । ତେବେ ତାଙ୍କ ଉଦାର ଦୃଷ୍ଟିର ପରିଚୟ ମିଳେ ଏହିଥିରୁ ଯେ ସେ ସର୍ବଦା 'ଜୟ ଜଗତର ଧ୍ୱନି ଦେଉଥିଲେ । ତାଙ୍କ ଆଶ୍ରମ ଆରମ୍ଭରେ ଜୟ ଜଗତର ବାଣୀଟି ଉଲ୍ଲେଖ ରହିଛି । ଏକ ଉଦାର ମାନବବାଦୀ, ସତ୍ୟ ଅହିଂସାର ପ୍ରବକ୍ତା, ସମତା ଭିତ୍ତିକ ସମାଜ ପାଇଁ ଗଭୀର ସମ୍ପୃକ୍ତି, ତ୍ୟାଗର ପ୍ରତୀକ ଓ ଜଣେ ପ୍ରାଜ୍ଞ ବ୍ୟକ୍ତି ଭାବେ ବିନୋବା ବହୁ କ୍ଷେତ୍ରରେ ତାଙ୍କର ସ୍ୱାକ୍ଷର ରଖି ଯାଇଛନ୍ତି । କୌଣସି ପୁରସ୍କାର, ସ୍ୱୀକୃତିର ବହୁ ଊର୍ଦ୍ଧ୍ୱରେ ରହି ଜୀବନସାରା କେତେକ ଆଦର୍ଶକୁ ନେଇ ବଞ୍ଚିବାକୁ ପ୍ରୟାସ କରିଛନ୍ତି । ତାଙ୍କ ଦେହାନ୍ତ ବି ଏକ ବିତର୍କର ବିଷୟ ହୋଇଥିଲା । ୧୯୮୨ରେ ସେ କୌଣସି ରୋଗରେ ଆକ୍ରାନ୍ତ ହେଲେ । ତା'ପରେ ସେ ଘୋଷଣା କଲେ ଯେ, ତାଙ୍କ ଶରୀର ତାଙ୍କ ମନ ନିୟନ୍ତ୍ରଣରେ ନାହିଁ । ଏହାପରେ ସେ କୌଣସି ଖାଦ୍ୟ ଖାଇବା ବା ଚିକିତ୍ସିତ ହେବାକୁ ମନା କରିଦେଲେ ଓ ଏକ ପ୍ରକାରର ଇଚ୍ଛାମୃତ୍ୟୁ ବରଣ କଲେ । ସେତେବେଳକୁ ତାଙ୍କୁ ୮୭ ବର୍ଷ ହୋଇଥିଲା । ପୌନାର ପରିସରରେ ତାଙ୍କର ସମାଧି ସ୍ଥାନ ରହିଛି । ଆଶ୍ରମ ପରିସରରେ ତାଙ୍କ ସ୍ମୃତିର କିଛି ଜିନିଷ ରହିଛି ଓ ତାଙ୍କ ଲିଖିତ ପୁସ୍ତକମାନଙ୍କର ବିକ୍ରୟ କେନ୍ଦ୍ର ଅଛି ।

ସେବାଗ୍ରାମ ଓ ବ୍ରହ୍ମବିଦ୍ୟା ମନ୍ଦିର ଗୋଟିଏ ଯୁଗ ଓ କେତେକ ମୂଲ୍ୟବୋଧର ପ୍ରତୀକ ଭାବେ ରହିଛି । ଦୁଇ ମହାନ ସନ୍ଥ ଏହି ଦୁଇ ଆଶ୍ରମରେ ରହୁଥିଲେ, ତାଙ୍କ ନୈତିକ ଆଦର୍ଶରେ ଅଗଣିତ ମଣିଷଙ୍କୁ ଅନୁପ୍ରାଣିତ କରୁଥିଲେ । ସଭ୍ୟ ଜୀବନଧାରାର କିଛି ସ୍ୱପ୍ନ ଆଉ ଲିଗାସି ଛାଡ଼ି ଯାଇଛନ୍ତି । ଆଶ୍ରମ ଦୁଇଟିର ସ୍ମୃତି ମନରେ ନିଶ୍ଚୟ ଅଭୁଲା ରହିବ । (୬.୪.୧୨)



# ଦୁଇଟି ପୁସ୍ତକର କାହାଣୀ

ଚିନ୍ତା ଚେତନାର ବିକାଶ କ୍ଷେତ୍ରରେ ପୁସ୍ତକମାନଙ୍କର ଏକ ବଡ଼ ଅବଦାନ ରହିଛି । ଖଣ୍ଡିଏ ଖଣ୍ଡିଏ ବହି ପାଠକମାନଙ୍କ ମନରେ ଗଭୀର ପ୍ରଭାବ ପକାଇଥାଏ । କୁହାଯାଏ ବହି ହିଁ ମଣିଷର ସବୁଠାରୁ ବଡ଼ ଅନ୍ତରଙ୍ଗ । ଗୋଟିଏ ଗୋଟିଏ ବହି ପାଠକର ମନକୁ ଚିନ୍ତାର ଗଭୀରତାକୁ ନେଇଥାଏ, ସୃଜନଶୀଳ ଆବେଗକୁ ପ୍ରସାରିତ କରିଥାଏ ଓ ଜୀବନ, ସମାଜ ତଥା ବୃହତ୍ତର ବିଶ୍ୱକୁ ବୁଝିବାକୁ ଅନେକ ଅନୁଭବ ଆଣିଥାଏ । ତେବେ କେବଳ ବ୍ୟକ୍ତିଗତ ପାଠକର ଚିନ୍ତା ଚେତନାକୁ ପ୍ରଭାବିତ କରିବା ଛଡ଼ା ଖଣ୍ଡିଏ ବହି ଚିନ୍ତା ରାଜ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ସହାୟକ ହୋଇଥାଏ । ଗୋଟିଏ ଗୋଟିଏ ବହି ଗୋଟିଏ ଯୁଗର ଅବସାନ ଘଟାଇ ଏକ ନୂଆ ଯୁଗର ବିକାଶରେ ପଥପ୍ରଦର୍ଶକ ହୋଇଥାଏ । ଏଠାରେ ଊନବିଂଶ ଶତାବ୍ଦୀରେ ଲିଖିତ ଦୁଇଟି ବହି ବିଷୟରେ ସୂଚନା ଦେବାକୁ ଚାହୁଁଛି ଯାହା ଗତ ଦେଢ଼ଶହ ବର୍ଷ ଧରି ଚିନ୍ତାରାଜ୍ୟକୁ ନାନା ଭାବରେ ଆଲୋଡ଼ିତ କରିଆସିଛି । ଗୋଟିଏ ବହି ହେଉଛି ଚାର୍ଲସ ଡାରଓ୍ୱିନଙ୍କ (୧୮୦୯-୧୮୮୨)ଲିଖିତ ''ଜୀବ ଜଗତର ଉତ୍ପତ୍ତି'' (ଅରିଜିନ ଅଫ ସ୍ପେସିଜ୍) ଓ ଅନ୍ୟଟି ହେଉଛି କାର୍ଲମାର୍କସଙ୍କର (୧୮୦୮-୧୮୮୩) ପୁଞ୍ଜିବାଦର ବିଶ୍ଳେଷଣାତ୍ମକ ଅନୁଶୀଳନ (କ୍ରିଟିକ୍ ଅଫ କ୍ୟାପିଟାଲିଜିମ୍) । ଡାରଓ୍ୱିନ ମାର୍କସଙ୍କଠାରୁ ମାତ୍ର ୯ମାସ ସାନ ଥିଲେ ଓ ମାର୍କସଙ୍କ ଦେହାନ୍ତ ଡାରଓ୍ୱିନଙ୍କ ଦେହାନ୍ତର ଗୋଟିଏ ବର୍ଷ ପରେ ହୋଇଥିଲା । ସୁତରାଂ ଉଭୟ ଏକ ସମୟରେ ବଞ୍ଚିଥିଲେ ଓ ଦୁଇଟି ପୃଥକ୍ ଦିଗରେ ସେମାନଙ୍କର ବିଚାର ଓ ସିଦ୍ଧାନ୍ତ ଦେଇଥିଲେ । ଉଭୟଙ୍କ ବିଚାର ଓ ସିଦ୍ଧାନ୍ତ ଚିନ୍ତାରାଜ୍ୟରେ ଯୁଗାନ୍ତକାରୀ ଥିଲା ।

ଚାର୍ଲ୍ସ ଡାରଓ୍ୱିନଙ୍କର ଜନ୍ମ ଇଂଲଣ୍ଡରେ । ବାପାଙ୍କ ପ୍ରରୋଚନାରେ ଡାକ୍ତର ହେବାକୁ ସେ ଏଡ଼ିନବର୍ଗ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିଲେ, କିନ୍ତୁ ଏଥିପ୍ରତି ଆଗ୍ରହ ନଥିବାରୁ ପରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଜୀବବିଜ୍ଞାନ ଅଧ୍ୟୟନ କରିଥିଲେ । ତେବେ ଛାତ୍ର ଜୀବନରୁ କୌତୂହଳ ପ୍ରବଣତା ଓ ଗବେଷଣା ଜନିତ ମାନସିକତା ତାଙ୍କର ରହିଥିଲା । ଜୀବ ବିଜ୍ଞାନରେ ଅଧ୍ୟୟନ ପରେ ଦକ୍ଷିଣ ଆମେରିକା ଅଭିଯାନରେ ଯାଉଥିବା ବିଗଲ ଜାହାଜରେ ସେ ୨୩ ବର୍ଷ ବୟସରେ ଯାତ୍ରା ଆରମ୍ଭ

କରିଥିଲେ । ପାଞ୍ଚବର୍ଷ କାଳ ଏହି ଅଭିଯାନ ୧୮୩୧ରୁ ୧୮୩୬ ପର୍ଯ୍ୟନ୍ତ ଚାଲିଥିଲା । ଏହି ସମୟରେ ଡାରଓ୍ୱିନ ମାସ ମାସ ସମୁଦ୍ର ଯାତ୍ରାରେ ଓ ପୃଥିବୀର ବିଭିନ୍ନ ଭୂଖଣ୍ଡ ବୁଲି ଦେଖିବା ଭିତରେ ବିଭିନ୍ନ ପଶୁ, ପକ୍ଷୀ ଓ ଜୀବମାନଙ୍କୁ ଅନୁଧ୍ୟାନ କରିଥିଲେ । ବିଭିନ୍ନ ସ୍ଥାନରୁ ନାନା ଉଦ୍ଭିଦ ଓ ପ୍ରାଣୀମାନଙ୍କର ଜୀବାଶ୍ମ ବା ଫସିଲ ସଂଗ୍ରହ କରି ତାହାକୁ ଅନୁଶୀଳନ କରିଥିଲେ । ପୃଥିବୀର ବିଭିନ୍ନ ଅଞ୍ଚଳର ଜୀବମାନଙ୍କ ଭିତରେ ସେ ଯେଉଁ ଭିନ୍ନତା ବା ବୈଚିତ୍ର୍ୟ ଦେଖୁଥିଲେ ତାହାର କାରଣ କ'ଣ ହୋଇପାରେ ବୋଲି ଗଭୀର ଭାବେ ବିଶ୍ଳେଷଣ କରୁଥିଲେ । ଏହି ପୃଷ୍ଠଭୂମିରେ ତାଙ୍କର ବିବର୍ତ୍ତନବାଦର ଅବଧାରଣା ଆସିଥିଲା । ତାହା ପୂର୍ବରୁ ଭୂତତ୍ତ୍ୱ ବିଜ୍ଞାନ କ୍ଷେତ୍ରରେ କେତେକ ଯୁଗାନ୍ତକାରୀ ଉଦ୍ଭାବନ ଓ ଆବିଷ୍କାର ଦ୍ୱାରା ପାହାଡ଼, ପର୍ବତ, ଶିଳା, ନଦୀ, ସମୁଦ୍ର କିପରି ଲକ୍ଷ ଲକ୍ଷ ବର୍ଷରେ ବିବର୍ତ୍ତିତ ହୋଇଛି ତାହା ଜଣାପଡ଼ିଥିଲା । ସେହିପରି ବୈଜ୍ଞାନିକ ପ୍ରକୃତିବାଦ ଏକ ବୈଜ୍ଞାନିକ ସିଦ୍ଧାନ୍ତ ଭାବେ ଭିତ୍ତି ନେଇ ସାରିଥିଲା ଯାହା ଡାରଓ୍ୱିନଙ୍କ ବିଚାର ପାଇଁ ପ୍ରେରଣା ଯୋଗାଇଥିଲା ।

ପ୍ରକୃତିବାଦ ଅନୁଯାୟୀ ପ୍ରକୃତିରେ ବହୁ ରହସ୍ୟ ରହିଛି, ତେବେ ପ୍ରକୃତିରେ ଯାହା କିଛି ଘଟୁଛି ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ରହିଛି । ପ୍ରକୃତିର ଅନେକ ରହସ୍ୟ ମଣିଷ ଅବବୋଧରେ ଅଜ୍ଞେୟ ରହିଲେ ବି ପ୍ରକୃତିରେ ଥିବା ରହସ୍ୟ ବା ଘଟୁଥିବା ଘଟଣାମାନଙ୍କୁ କେବଳ ପ୍ରାକୃତିକ ନିୟମ ଆଧାରରେ ବ୍ୟାଖ୍ୟା କରିହେବ । ଡାରଓ୍ୱିନ ସେଥିପାଇଁ ବର୍ଷ ବର୍ଷର ପର୍ଯ୍ୟବେକ୍ଷଣ, ଅନୁଶୀଳନ ଓ ଚିନ୍ତନଦ୍ୱାରା ଏହି ସିଦ୍ଧାନ୍ତକୁ ଆସିଥିଲେ ଯେ ଲକ୍ଷ ଲକ୍ଷ ବର୍ଷ ଧରି ଜୈବିକ ବିବର୍ତ୍ତନ ଓ ପରିବର୍ତ୍ତନ ଦେଇ ଉଦ୍ଭିଦ ଜଗତ ଓ ପ୍ରାଣୀ ଜଗତର ଉତ୍ପତ୍ତି ହୋଇଛି ଏବଂ ଜୀବ ଜୀବ ଭିତରେ ଭିନ୍ନତା ସୃଷ୍ଟି ହୋଇଛି । ବିଶେଷକରି ପ୍ରାକୃତିକ ନିର୍ବାଚନ (ନାଚୁରାଲ ସିଲେକସନ), ପ୍ରକୃତି ଓ ପରିବେଶ ସହିତ ନିଜକୁ ଖାପ ଖୁଆଇ ପାରିବାର ସାମର୍ଥ୍ୟ, ବଞ୍ଚିରହିବା ପାଇଁ ସଂଗ୍ରାମ, ପରିବେଶ ସହିତ ନିଜକୁ ଖାପଖୁଆଇ ବଞ୍ଚିବା ପାଇଁ ନୂତନ ଲକ୍ଷଣର କ୍ରମ ବିକାଶ ଇତ୍ୟାଦି ଭାବନାଗୁଡ଼ିକ ଡାରଓ୍ୱିନ୍‌ଙ୍କ ବିବର୍ତ୍ତନ ତତ୍ତ୍ୱ ସହ ଘନିଷ୍ଠ ଭାବେ ସଂପୃକ୍ତ । ବିଭିନ୍ନ ସ୍ଥାନର ଏକ ପ୍ରକାରର ପ୍ରଜାତି ଜୀବମାନଙ୍କର ପର୍ଯ୍ୟବେକ୍ଷଣ ଓ ଅନୁଶୀଳନରୁ ସେ ଏହା ସ୍ପଷ୍ଟ ଭାବରେ ଜାଣିଲେ ଯେ ପ୍ରାକୃତିକ ନିର୍ବାଚନ ମାଧ୍ୟମରେ ପରିବେଶ ସହ ନିଜକୁ ଖାପ ଖୁଆଇ ଚଳିବାର ପ୍ରକ୍ରିୟା ରହିଥାଏ । ପରିବର୍ତ୍ତିତ ପରିବେଶରେ ଯେଉଁମାନେ ନିଜକୁ ଖାପ ଖୁଆଇ ପାରନ୍ତି ନାହିଁ ସେମାନଙ୍କର କ୍ରମବିଲୟ ଘଟିଥାଏ । ପୁନଶ୍ଚ ପରିବର୍ତ୍ତନ ପ୍ରକ୍ରିୟାରେ ପ୍ରାଣୀମାନଙ୍କ ଭିତରେ ବିଭିନ୍ନ

ପୀଢ଼ି ପରେ ଧୀରେ ଧୀରେ ବୈସାଦୃଶ୍ୟ ଦୃଷ୍ଟିଗୋଚର ହୁଏ । ଲକ୍ଷ ଲକ୍ଷ ବର୍ଷ ଧରି ଜୈବିକ ପରିବର୍ତ୍ତନ ମଧ୍ୟ ଦେଇ ପରିଣାମତଃ ନୂଆ ନୂଆ ପ୍ରଜାତିର ଉଦ୍ଭବ ହୁଏ ।

ଡାରଓ୍ୱିନ ମଣିଷର ଉତ୍ପତ୍ତି ସଂପର୍କରେ ବୈଜ୍ଞାନିକ ଧାରାରେ ବ୍ୟାଖ୍ୟା କରି କହିଲେ ଯେ, ମଣିଷ ବିବର୍ତ୍ତନ ପ୍ରକ୍ରିୟାର ପରିଣାମ ସ୍ୱରୂପ ଲକ୍ଷ ଲକ୍ଷ ବର୍ଷର ଜୈବିକ ପରିବର୍ତ୍ତନ ଦେଇ ଆଜିର ଅବସ୍ଥାକୁ ଆସିଛି । ବିଭିନ୍ନ ବାନର ଜାତୀୟ ଜୀବ ଓ ବଣମଣିଷ ମାନଙ୍କ ସହ ମଣିଷର ଭ୍ରୂଣଗତ, ଆକୃତିଗତ, ଢାଞ୍ଚାଗତ, ମାନସିକ ବିକାଶର ବହୁ ସାଦୃଶ୍ୟଗତ ସାମଞ୍ଜସ୍ୟ ରହିଛି । ବିବର୍ତ୍ତନ ପ୍ରକ୍ରିୟାରେ ଜୀବନର ଉତ୍ପତ୍ତି ପରଠାରୁ କୋଟି କୋଟି ବର୍ଷ ଧରି ଯେଉଁ ପାରିବେଶିକ ଓ ଜୈବିକ ପରିବର୍ତ୍ତନ ହୋଇ ଆସିଛି ତାହାର ପରିଣାମ ସ୍ୱରୂପ ଜୈବ ବିବର୍ତ୍ତନ ଧାରାରେ ମଣିଷର ଉଦ୍ଭବ ହୋଇଛି । ଜୀବ ଜଗତକୁ ବା ମଣିଷକୁ କେଉଁ ଈଶ୍ୱର ସୃଷ୍ଟି କରିନାହାନ୍ତି । ଧାର୍ମିକ ବିଶ୍ୱାସରେ ଯେଉଁ ଭାବନା ରହିଥିଲା ଯେ, ସବୁକିଛି ଈଶ୍ୱରଙ୍କର ସୃଷ୍ଟି, ମଣିଷକୁ ତା'ର ବର୍ତ୍ତମାନର ରୂପରେ ଈଶ୍ୱର କେତୋଟି ହଜାରବର୍ଷ ତଳେ ସୃଷ୍ଟି କରିଥିଲେ ଏହା ଡାରଓ୍ୱିନଙ୍କ ବୈଜ୍ଞାନିକ ସିଦ୍ଧାନ୍ତରେ ମିଥ୍ୟା ପ୍ରମାଣିତ ହେଲା । ଡାରଓ୍ୱିନଙ୍କର ଏହି ବିବର୍ତ୍ତନ ସିଦ୍ଧାନ୍ତକୁ ଆଧାରକରି ପ୍ରାଣୀବିଜ୍ଞାନ, ଚିକିତ୍ସା ବିଜ୍ଞାନ, ଜିନ୍‌ତତ୍ତ୍ୱ ଇତ୍ୟାଦିର ଗଭୀର ଗବେଷଣା ହୋଇ ନାନା ନୂତନ ତଥ୍ୟ ଓ ତତ୍ତ୍ୱ ବିକାଶଲାଭ କଲା । ଏହା ସହିତ ସାମାଜିକ ବିକାଶ ପ୍ରକ୍ରିୟାର ବିବର୍ତ୍ତନର ବି ନାନା ଅନୁଶୀଳନ ଆରମ୍ଭ ହେଲା । ମୋଟ ଉପରେ କହିଲେ 'ଜୀବ ଜଗତର ଉତ୍ପତ୍ତି' ଚିନ୍ତାରାଜ୍ୟରେ ଏକ ତୁମୁଳ ଆଲୋଡ଼ନ ଆଣିଲା ଓ ବିଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିଦେଲିଲା ।

ଦ୍ୱିତୀୟ ପୁସ୍ତକଟି ହେଲା କାର୍ଲ ମାର୍କ୍ସଙ୍କ ଲିଖିତ ଜର୍ମାନ ପୁସ୍ତକ 'ଦାସ କ୍ୟାପିଟାଲ' । ମାର୍କ୍ସଙ୍କର ଜନ୍ମ ଆଜିର ଜର୍ମାନୀରେ । ସେ ଜର୍ମାନୀର ବନ୍ ବିଶ୍ୱବିଦ୍ୟାଳୟରେ ମାନବତତ୍ତ୍ୱ ବା ହ୍ୟୁମାନିଟିଜରେ କିଛିବର୍ଷ ଅଧ୍ୟୟନ କରି ପରେ ବର୍ଲିନ ବିଶ୍ୱବିଦ୍ୟାଳୟରେ ଦର୍ଶନ ଓ ଆଇନଶାସ୍ତ୍ର ଅଧ୍ୟୟନ କରିଥିଲେ । କିଛିବର୍ଷ ପ୍ୟାରିସରେ ରହି ସେଠାରୁ ବିତାଡ଼ିତ ହୋଇ ଶେଷରେ ୧୮୪୯ରୁ ଲଣ୍ଡନରେ ଅବସ୍ଥାନ କଲେ । ତାଙ୍କ ରଚିତ ପୁସ୍ତକ 'ପୁଞ୍ଜିବାଦର ବିଶ୍ଲେଷଣାତ୍ମକ ଅନୁଶୀଳନ' ତିନି ଖଣ୍ଡରେ ପ୍ରକାଶିତ ଓ ଏହା ମଣିଷର ସମାଜ ବ୍ୟବସ୍ଥା, ଅର୍ଥନୀତି, ନୈତିକତା, ରାଜନୀତି ସଂପର୍କରେ ଏକ ଗମ୍ଭୀର କୃତି । ମାର୍କ୍ସ ବିଭିନ୍ନ ସଭ୍ୟତାର କ୍ରମବିକାଶର କାହାଣୀକୁ ଗଭୀର ଭାବରେ ଅନୁଶୀଳନ କରି ଦର୍ଶାଇଲେ ଯେ, ସମାଜର ଉତ୍ପାଦନ ପ୍ରକ୍ରିୟା ଓ ଅର୍ଥନୀତି ସମାଜର ସକଳ ଶ୍ରେଣୀ ବ୍ୟବସ୍ଥାକୁ ପ୍ରଭାବିତ କରିବାରେ ନିର୍ଣ୍ଣାୟକ ଭିତ୍ତି ନେଇଛି ।

ସାମାଜିକ ବିକାଶ ପ୍ରକ୍ରିୟାରେ ରାଜତନ୍ତ୍ର, ସାମନ୍ତବାଦୀ ସମାଜ ବ୍ୟବସ୍ଥା କୃଷିଭିତ୍ତିକ ସମାଜରୁ ଉଦ୍ଭବ ହୋଇଥିଲା । ଏହାପରେ ଶିଳ୍ପ ବିପ୍ଲବର ଯୁଗ ଆସିଲା । ଆସ୍ତେ ଆସ୍ତେ ବଡ ବଡ କଳକାରଖାନା ସ୍ଥାପିତ ହେଲା ଓ ପ୍ରଚୁର ଉତ୍ପାଦନ ହେଲା । ଏହା ଫଳରେ ବଡ ବଡ ସହରମାନ ଗଢିଉଠିଲା, ଶିଳ୍ପ ଓ ବ୍ୟବସାୟର ପ୍ରଭାବ ପ୍ରସାରିତ ହେଲା, ସାମ୍ରାଜ୍ୟବାଦ ବିସ୍ତାର ଲାଭ କଲା । କ୍ରମେ କ୍ରମେ ଗ୍ରାମମାନଙ୍କର କ୍ଷୁଦ୍ର ଚାଷୀ ଓ କୁଟୀର ଶିଳ୍ପଦ୍ୱାରା ଚଳୁଥିବା ଶ୍ରେଣୀ ପରିବର୍ତ୍ତିତ ପରିସ୍ଥିତିରେ ନିଜର ଆର୍ଥିକ ସ୍ଥିତି ହରାଇ ସର୍ବହରା ଶ୍ରେଣୀରେ ପରିଣତ ହୋଇଗଲେ । ପୁଞ୍ଜିବାଦୀ ବ୍ୟବସ୍ଥା ଗଢ଼ିଉଠିଲା ଓ ସମାଜ ବୁର୍ଜୁଆ ଶ୍ରେଣୀ ଓ ସର୍ବହରା ଶ୍ରେଣୀରେ ବିଭାଜିତ ହୋଇଗଲା । ମାର୍କ୍ସ ସମାଜ ବ୍ୟବସ୍ଥାର ଅନୁଶୀଳନ କରି ଦେଖାଇଲେ ଯେ ସମାଜରେ ଯାହା ଦୁଃଖ ଦୁର୍ଦ୍ଦଶା ସୃଷ୍ଟି ହୋଇଛି ତାହା ସମାଜ ବ୍ୟବସ୍ଥାରୁ ହିଁ ଉଦ୍ଭବ ହୋଇଛି । ଏକ ଶୋଷଣଭିତ୍ତିକ ଶ୍ରେଣୀଗତ ସମାଜ ବ୍ୟବସ୍ଥା ଯୋଗୁଁ ସମାଜରେ ଏତେ ବୈଷମ୍ୟ ଓ ଦୁଃଖ ଦୁର୍ଦ୍ଦଶା ରହିଛି । ମୋଟ ଉପରେ ପୁଞ୍ଜିବାଦୀ ଅର୍ଥନୀତି ସମାଜରେ ବୈଷମ୍ୟ, ଶୋଷଣ ପାଇଁ ଦାୟୀ । ମାର୍କ୍ସ ଏକ ସାମ୍ୟବାଦୀ ସମାଜର ରୂପରେଖ ଆଙ୍କିଲେ । ସେ ଏକ ଆଦର୍ଶ ସମାଜର ପରିକଳ୍ପନା କଲେ ଯାହା ସମାଜରୁ ସକଳ ଭେଦଭାବ, ବୈଷମ୍ୟ ଓ ଶୋଷଣକୁ ବିଲୋପ କରିପାରିବ । ମାର୍କ୍ସଙ୍କର ସାମାଜିକ ବିକାଶର ସୈଦ୍ଧାନ୍ତିକ ବିଶ୍ଳେଷଣ ଓ ବଳିଷ୍ଠ ଚିନ୍ତାଧାରା ବିଶ୍ୱର ସାହିତ୍ୟ, ଦର୍ଶନ, ରାଜନୀତି, ଅର୍ଥନୀତି, ସମାଜତତ୍ତ୍ୱ ବିଭିନ୍ନ କ୍ଷେତ୍ରରେ ଗଭୀର ପ୍ରଭାବ ସୃଷ୍ଟି କଲା ।

ପୃଥିବୀର ବିଭିନ୍ନ ଦେଶର ରାଜନୈତିକ ବିପ୍ଳବ, ଶ୍ରମିକ ସଂଗଠନ, ଅର୍ଥନୈତିକ ପୁନର୍ଗଠନ ମାର୍କ୍ସଙ୍କ ବିଚାରରୁ ପ୍ରେରଣା ନେଇ ସୃଷ୍ଟି ହୋଇଛି । ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ବୁର୍ଜୁଆ ଶ୍ରେଣୀକୁ ଆହ୍ୱାନ ଦେବାରେ ମାର୍କ୍ସବାଦ ବିଶ୍ୱସ୍ତରରେ ଗଭୀର ଆଲୋଡନ ସୃଷ୍ଟି କରିଛି । ଶ୍ରମିକ ଓ ସର୍ବହରା ଶ୍ରେଣୀର ବୈପ୍ଳବିକ କାର୍ଯ୍ୟସୂଚୀ ଦ୍ୱାରା ରାଜନୈତିକ ଦୃଶ୍ୟପଟରେ ପରିବର୍ତ୍ତନ ହେବ ଓ ଏକ ଶୋଷଣହୀନ, ଶ୍ରେଣୀହୀନ ସାମ୍ୟ ସମାଜର ମୂଳଭିତ୍ତି ପଡିପାରିବ । ମାର୍କ୍ସଙ୍କର ଏହି ବିଚାରରୁ ପ୍ରେରଣା ନେଇ କେତେକ ଦେଶରେ ସାମ୍ୟବାଦୀ ଆନ୍ଦୋଳନ ଓ ଗଣବିପ୍ଳବ ସଂଘଟିତ ହୋଇ କମ୍ୟୁନିଜିମର ବିକାଶ ହେବା ଏକ ଐତିହାସିକ ଘଟଣା । ସାମ୍ୟବାଦ ଓ ସମାଜବାଦକୁ ଅନେକ ଯଥାର୍ଥ ଗଣତନ୍ତ୍ର ମନେକରନ୍ତି କାରଣ ଏହି ବ୍ୟବସ୍ଥା ଏକ ଶୋଷଣହୀନ ଓ ଭେଦଭାବ ରହିତ ସମାଜ ବ୍ୟବସ୍ଥାକୁ ପ୍ରତିଷ୍ଠା କରିପାରିବ । ମାର୍କ୍ସଙ୍କ ବିଚାର ପୃଷ୍ଠଭୂମିରେ ସାରା ବିଶ୍ୱର ରାଜନୈତିକ ଦୃଶ୍ୟପଟ ଦୁଇଟି ଶ୍ରେଣୀରେ ବିଭାଜିତ

ହୋଇଥିବା ଦେଖାଯାଏ । ଗୋଟିଏ ପଟେ ଗଣତନ୍ତ୍ର, ଉଦାରବାଦୀ ଅର୍ଥନୀତି ଓ ପୁଞ୍ଜିବାଦ ଏବଂ ଅପର ପକ୍ଷରେ କମ୍ୟୁନିଜିମ୍, ସମାଜବାଦ ଓ ସାମ୍ୟବାଦ । ମାର୍କ୍ସଙ୍କ ବିଷୟରେ କୁହାଯାଏ ଯେ, ପୃଥିବୀର ଅଧା ଲୋକ ତାଙ୍କୁ ପ୍ରଶଂସା କରନ୍ତି, ଅଧା ତାଙ୍କୁ ସମାଲୋଚନା କରନ୍ତି କିନ୍ତୁ କେହି ତାଙ୍କୁ ଏଡାଇ ଯାଇପାରିବେ ନାହିଁ ।

ଡାରୱିନଙ୍କ ପୁସ୍ତକ ଯେପରି ଜୀବ ବିଜ୍ଞାନ କ୍ଷେତ୍ରରେ ଥିଲା ଏକ ଗଭୀର ଆଲୋଡନ, ମାର୍କ୍ସଙ୍କର ପୁସ୍ତକ ସମାଜବିଜ୍ଞାନ କ୍ଷେତ୍ରରେ ଥିଲା ଏକ ଯୁଗାନ୍ତକାରୀ ସୃଷ୍ଟି । ମଣିଷର ଚିନ୍ତାରାଜ୍ୟକୁ ଗଭୀର ପ୍ରଭାବିତ କରିବାରେ ଡାରୱିନ ଓ ମାର୍କ୍ସଙ୍କ ପୁସ୍ତକର ଯେ ସୁଦୂରପ୍ରସାରୀ ପ୍ରଭାବ ରହିଛି ଏହା ଅନସ୍ୱୀକାର୍ଯ୍ୟ । (୧୧.୪.୧୨)



# କତଲ କରୁଣା କାନୁନ

ସଭ୍ୟତାର କ୍ରମବିକାଶ ଧାରାକୁ ଅନୁଶୀଳନ କଲେ ଜଣାଯାଏ ଯେ ଆଜି ଯେଉଁ ସଭ୍ୟ ମୂଲ୍ୟବୋଧ ଗୁଡ଼ିକ ସମାଜରେ ବିକଶିତ ହୋଇଛି ସେ ସବୁ ସାମାଜିକ ବିକାଶଧାରାରେ ଧୀର ମନ୍ଥର ଗତିରେ ହୋଇଛି । ଯେଉଁ ଯୁଗରେ ସମାଜ ଯେଉଁଭଳି ସ୍ଥିତିରେ ରହିଛି, ସେହି ଯୁଗର ଆଦର୍ଶ, ମୂଲ୍ୟବୋଧ ସେହି ଅନୁସାରେ ବିକଶିତ ହୋଇଛି । ଯେତେବେଳେ ଛୋଟ ଛୋଟ ଭୂଖଣ୍ଡରେ ଗୋଷ୍ଠୀ ଜୀବନ ଆରମ୍ଭ ହେଲା, ଗୋଷ୍ଠୀ ଜୀବନକୁ ଆଧାର କରି କେତେକ ଆଦର୍ଶ, ଶୃଙ୍ଖଳା ସୃଷ୍ଟି ହେଲା । ପ୍ରତ୍ୟେକ ଗୋଷ୍ଠୀ କାଳକ୍ରମେ ପରସ୍ପର ଭିତରେ ଭାବର ଆଦାନପ୍ରଦାନ ପାଇଁ ଭାଷା ବ୍ୟବହାର କଲେ । ଏହି ଧାରାରେ ହଜାର ହଜାର ଭାଷାର କ୍ରମ ବିକାଶ ହେଲା । ଗୋଷ୍ଠୀ ଜୀବନର ସଂହତି ପାଇଁ ଗୋଟିଏ ସମୟରେ ଭାଷା ଏକ ପ୍ରଧାନ ଆୟୁଧ ହୋଇଥିଲା । ପ୍ରତ୍ୟେକ ଗୋଷ୍ଠୀ ଧୀରେ ଧୀରେ ସମ୍ପ୍ରସାରିତ ହେବାକୁ ଲାଗିଲା ଓ ଗୋଷ୍ଠୀ ଜୀବନରେ ନୀତି, ଆଦର୍ଶ, ଧାର୍ମିକ ବିଶ୍ୱାସ ଜନିତ ପରମ୍ପରାମାନ ସୃଷ୍ଟି ହେଲା । ବଞ୍ଚିବାର ସାଧନ ଓ ଉତ୍ପାଦନ ଉପରେ ନିୟନ୍ତ୍ରଣ ନେଇ ଗୋଷ୍ଠୀ ଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ, ସଂଘର୍ଷ ବି ସୃଷ୍ଟି ହେଉଥିଲା । ଗୋଷ୍ଠୀ ଜୀବନ ସୁଦୃଢ଼ ଭିତ୍ତି ନେବା ପରେ ରାଜତନ୍ତ୍ରର ଯୁଗ ଆସିଲା । ରାଜତନ୍ତ୍ରର ବିକାଶ ପରେ ବଂଶାନୁକ୍ରମିକ ଭାବେ ରାଜାମାନେ ନିଜ ନିଜ ରାଜ୍ୟରେ ସର୍ବେସର୍ବା ହେଲେ ଓ ସେମାନେ ନିଜ ଭୂଖଣ୍ଡରେ ଶାସନ, ଅର୍ଥନୀତିକୁ ନିୟନ୍ତ୍ରଣକଲେ । ତେବେ ରାଜତନ୍ତ୍ର ଯୁଗରେ ରାଜ୍ୟ ବିସ୍ତାର କରିବା, ରାଜ୍ୟ ଜୟ କରିବା ଇତ୍ୟାଦି ପାଇଁ ଯୁଦ୍ଧ ହିଁ ସାଧାରଣ ଘଟଣା ହୋଇ ପଡ଼ିଲା । 'ଜୋର ଯାହାର ମୂଲକ ତାହାର' ବା 'ବୀର ଭୋଗ୍ୟା ବସୁନ୍ଧରା' ସେ ଯୁଗର ଆଦର୍ଶ ଥିଲା । ଯେଉଁ ରାଜା ଯେତେ ଅଧିକ ରାଜ୍ୟ ଜୟ କରୁଥିଲେ, ସେମାନେ ସେତେ ବଳଶାଳୀ ବା ଶକ୍ତିଶାଳୀ ବୋଲି ପରିଚିତ ହେଉଥିଲେ । ଏପରିକି ରାଜତନ୍ତ୍ର ଯୁଗରେ ଯେଉଁ ସାହିତ୍ୟ ସୃଷ୍ଟି ହୋଇଥିଲା, ସେହି ସମୟରେ ସମ୍ପୃକ୍ତ ରାଜ୍ୟର ରାଜାଙ୍କୁ ନାନା ବିଶେଷଣରେ ବର୍ଣ୍ଣନା କରାଯାଉଥିଲା । ବିଭିନ୍ନ ସଭ୍ୟତାର ପ୍ରାଚୀନ ସାହିତ୍ୟରେ ବିଜିତ ରାଜାମାନଙ୍କର ବିଜୟର ନାନା କାହାଣୀର ବର୍ଣ୍ଣନା ଦେଖିବାକୁ ମିଳେ ।

ବସ୍ତୁତଃ ପ୍ରାଚୀନ ସମାଜରେ ଜୀବନର ମୂଲ୍ୟାୟନ କ୍ଷେତ୍ରରେ ଯୋଦ୍ଧୃଭାବ, ଶୌର୍ଯ୍ୟ, ସାମର୍ଥ୍ୟ ଇତ୍ୟାଦିକୁ ଅଧିକ ସାମାଜିକ ସ୍ୱୀକୃତି ମିଳିପାରୁଥିଲା । ରାଜ୍ୟର

ଯେଉଁ ବ୍ୟକ୍ତିମାନେ ଅଧିକ ଶାରୀରିକ ଶକ୍ତି ଓ ଅଧିକ ଯୁଦ୍ଧ କୌଶଳର ପରିଚୟ ଦେଉଥିଲେ ସେମାନେ ସମାଜରେ ଅଧିକ ସମ୍ମାନାସ୍ପଦ ଭାବେ ଗୌରବର ଅଧିକାରୀ ହେଉଥିଲେ । ପ୍ରାଚୀନ ସଭ୍ୟତାର ଅନେକ କାହାଣୀରୁ ଏହାର ନାନା ପ୍ରମାଣ ମିଳେ । ବିଭିନ୍ନ ପୁରାଣମାନଙ୍କରେ ବର୍ଣ୍ଣିତ ସ୍ୱୟମ୍ବର ପ୍ରଥାରୁ ଯୋଦ୍ଧୃଭାବ ଓ ଶାରୀରିକ କୌଶଳରେ ଅଧିକ ସାମର୍ଥ୍ୟ ଦେଖାଇ ପାରୁଥିବା ବ୍ୟକ୍ତିମାନଙ୍କୁ ପ୍ରାଧାନ୍ୟ ଦିଆଯାଉଥିବା ଜଣାଯାଏ । ରାଜ୍ୟ ରାଜ୍ୟ ମଧ୍ୟରେ ଯୁଦ୍ଧରେ ପରାଜିତ ରାଜ୍ୟର ଶାସକବର୍ଗଙ୍କୁ ନିହତ କରି ଓ ପରାଜିତ ସୈନ୍ୟମାନଙ୍କୁ ଦାସ କରି ନିଆଯାଉଥିଲା । ରାଜ୍ୟମାନଙ୍କରେ ଯୁଦ୍ଧ, ଆକ୍ରମଣ ଓ ରାଜ୍ୟ ଭିତରେ ବିଦ୍ରୋହ ନେଇ ଭୟର ବାତାବରଣ ରହି ଆସିଥିଲା । ସଭ୍ୟତାର ଇତିହାସରେ ହଜାର ହଜାର ଯୁଦ୍ଧର ନାନା କରୁଣ ଚିତ୍ର ଦେଖିବାକୁ ମିଳେ । ବିଜିତ ରାଜା ବା ଶାସକ ବର୍ଗର ଗୌରବର କାହାଣୀ ପଶ୍ଚାତରେ ଥାଏ ପରାଜିତ ରାଜ୍ୟର ଲୋକଙ୍କର ଓ ସୈନ୍ୟମାନଙ୍କର ଅପରିମିତ ଦୁଃଖର କାହାଣୀ । ସାର୍ବଭୌମିକ ରାଷ୍ଟ୍ରର ଭାବନା ଆସିବା ପରେ ମଧ୍ୟ ଯୁଦ୍ଧର ବାତାବରଣ ସାରା ପୃଥିବୀରେ ରହି ଆସିଛି ଓ ପ୍ରତ୍ୟେକ ରାଷ୍ଟ୍ର ନିଜର ପ୍ରତିରକ୍ଷା ପାଇଁ ଅମାପ ଧନ, ଶକ୍ତି ବ୍ୟୟ କରୁଛି । ପ୍ରତିରକ୍ଷା କ୍ଷେତ୍ରରେ ନିଜକୁ ଶକ୍ତିଶାଳୀ କରିବାକୁ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗି ରହିଛି ।

ଯୁଦ୍ଧ, ବିଭୀଷିକା ଆମ ସଂସାରରେ ସଭ୍ୟତା ଆରମ୍ଭରୁ ଏ ପର୍ଯ୍ୟନ୍ତ ରହିଛି । ସେହିପରି କୌଣସି ବିପ୍ଳବ କ୍ଷେତ୍ରରେ ଅନ୍ୟକୁ ନିପାତ କରିବାର ମାନସିକତା ବି ରହିଛି । ସମାଜରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ପାଇଁ ବିପ୍ଳବ ପୃଷ୍ଠଭୂମିରେ ସଂଘର୍ଷ ଓ ରକ୍ତପାତର ସୂତ୍ରପାତ ହେଉଛି । ସେହିପରି ଗୋଷ୍ଠୀ ସ୍ତରରେ ବା ବ୍ୟକ୍ତିଗତ ସ୍ତରରେ ପରସ୍ପର ସହିତ ବିବାଦ ବା ଦ୍ୱନ୍ଦ୍ୱ କ୍ଷେତ୍ରରେ ବି ହିଂସାର ପରିସ୍ଥିତି ସୃଷ୍ଟି ହେଉଛି ।

ସଭ୍ୟତାର କ୍ରମବିକାଶଧାରାରେ କିଛି ବ୍ୟକ୍ତି ବିଭିନ୍ନ ଜନଗୋଷ୍ଠୀରେ ଏକ ନୂତନ ବ୍ୟବସ୍ଥାର ପରିକଳ୍ପନା କରିଛନ୍ତି । ଜୀବନରେ ଯାହାସବୁ ଦୁଃଖ, ଦୁର୍ଦ୍ଦଶା ରହିଛି ତାହାକୁ ମଣିଷର ଭାଗ୍ୟ କହି ସେସବୁ ବ୍ୟକ୍ତିର ଆୟତ୍ତ ବାହାରେ ବୋଲି ଭାବନା ପ୍ରକାଶ କରିଛନ୍ତି । ସେମାନେ କୌଣସି ଅତୀନ୍ଦ୍ରିୟ ଶକ୍ତିର ଆଶୀର୍ବାଦ ଲୋଡ଼ିଛନ୍ତି । ଆମର ଉଦ୍ୟମ ଦ୍ୱାରା କିଛି ହେବ ନାହିଁ, ଉପରବାଲାର କରୁଣା ନ ଆସିଲେ ଜୀବନରୁ ଦୁଃଖ ହଟିବ ନାହିଁ । ସବୁ କିଛି କୌଣସି ଶକ୍ତିର ଖେଳମାତ୍ର । ଆମ ଦୃଷ୍ଟିର ଅନ୍ତରାଳରେ ରହିଛି ସେହି ଅଲୌକିକ ସତ୍ତା । ସବୁ ସେ ହିଁ କରୁଛନ୍ତି, ମଣିଷ ନିମିତ୍ତ ମାତ୍ର । ସେ ନ ଚାହିଁଲେ ସଂସାରରେ ଘାସ ବି ହଲିବ ନାହିଁ । ତାଙ୍କର ଆଶୀର୍ବାଦ ମିଳିଲେ ପଙ୍ଗୁ ଗିରି ବି ଲଘି ପାରିବ । ସେହିପରି ଆମ ଜୀବନରେ ଯାହା କିଛି ଘଟେ ସବୁ ପୂର୍ବ

ନିର୍ଦ୍ଦିଷ୍ଟ । ବିହି କପାଳରେ ଯାହା ଲେଖିଛି ତାହା ହିଁ ହେବ । ସବୁ ତାଙ୍କରି ଲୀଳା । ତାଙ୍କରି କରୁଣା ପାଇବା ପାଇଁ ଦିନରେ ଏତେ ଥର ତାଙ୍କୁ ବଡ଼ ପାଟିରେ ଡାକିବାକୁ ହେବ । ଏତେ ଓଷା, ବ୍ରତ ପାଳନ କରିବାକୁ ହେବ । କର୍ମକ୍ଳାନ୍ତ ଜୀବନରେ ବ୍ୟସ୍ତରହୁଥିଲେ ଅନ୍ତତଃ ସପ୍ତାହରେ ଥରଟିଏ ସମବେତ ପ୍ରାର୍ଥନାରେ ଯୋଗଦେବା ଆବଶ୍ୟକ । ଏହିପରି କେତେ ନୀତି ନିୟମର ପରିକଳ୍ପନା ବିଭିନ୍ନ ଧର୍ମ ଗୋଷ୍ଠୀରେ କରାଯାଇଛି । ଅଦୃଶ୍ୟ ଶକ୍ତିର ପ୍ରତୀକ ସ୍ୱରୂପ ପ୍ରତିମାର ସ୍ଥାପନ କରାଯାଇଛି । ସେଠାରେ କେତେ ପୂଜା, ପ୍ରାର୍ଥନା, ଭକ୍ତିର ନୈବେଦ୍ୟ କରାଯାଇ ତାହାକୁ ପରମ୍ପରା କହି ଆବେଗ ସୃଷ୍ଟି କରାଯାଉଛି ।

ତେବେ କୌତୂହଳର ବିଷୟ ଯେ କଳ୍ପିତ ଦୈବୀଶକ୍ତିର କରୁଣା ଲୋଡ଼ୁଥିବା ବ୍ୟକ୍ତିମାନେ ବି ସମାଜରେ ବୈରତା ସୃଷ୍ଟି କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ତୁମ ଈଶ୍ୱର ଆମ ଈଶ୍ୱର ପରସ୍ପରଠାରୁ ଅଲଗା ବୋଲି ବିଚାର ଦିଅନ୍ତି । ଆମ ଈଶ୍ୱରଙ୍କର ପୂଜାସ୍ଥଳ ପାଇଁ ତୁମ ଈଶ୍ୱରଙ୍କ ପୂଜାସ୍ଥଳ ଭଙ୍ଗାଯିବା ଦରକାର । ଆମ ଈଶ୍ୱରଙ୍କ ପୂଜାସ୍ଥଳକୁ ତୁମେ ଆସିଲେ ଆମ ଈଶ୍ୱର ଅପବିତ୍ର ହୋଇଯିବେ । ତୁମ ଈଶ୍ୱରଙ୍କ ପୂଜାସ୍ଥଳକୁ ଆମେ ଗଲେ ତୁମେ ଯାହା ଭାବ ବା ନ ଭାବ ଆମ ଈଶ୍ୱରଙ୍କ କରୁଣା ଆମଠାରୁ ଦୂରେଇଯିବ । ପୁନଶ୍ଚ ଈଶ୍ୱର ତ ସବୁ ଆଙ୍ଗୁଠିକୁ ସମାନ କରିନାହାନ୍ତି, ତେଣୁ ସବୁ ମଣିଷ କିପରି ସମାନ ହେବେ ? ଯେଉଁମାନେ ଈଶ୍ୱରଙ୍କ ପାଦରୁ ସୃଷ୍ଟି ହୋଇଥାନ୍ତି ସେମାନେ କିପରି ବାହୁରୁ ସୃଷ୍ଟି ହୋଇଥିବା ମଣିଷ ସହ ସମାନ ହେବେ ? ଯେଉଁମାନେ ବାହୁରୁ ସୃଷ୍ଟି ହୋଇଛନ୍ତି ସେମାନେ ମୁହଁରୁ ସୃଷ୍ଟି ହୋଇଥିବା ମଣିଷଙ୍କ ସହ ସମାନ ହେବା କିପରି ସମ୍ଭବ ? ସବୁ ସେ ହିଁ କରିଛନ୍ତି । ତାଙ୍କ ନୀତିକୁ କିଏ ପରିବର୍ତ୍ତନ କରି ପାରିବ ? ପୁନଶ୍ଚ ଜନସମାଜରେ ବିଶ୍ୱାସ ରହି ଆସିଛି ଯେ ଏହି ଜୀବନକାଳ ଭିତରେ ତାଙ୍କର ଆଶୀର୍ବାଦ ନ ମିଳିଲେ ପରଲୋକରେ ନିଶ୍ଚୟ ମିଳିବ । ତାଙ୍କୁ ଡାକିଥିଲେ ସେ ଆମକୁ ସ୍ୱର୍ଗକୁ ନେବେ, ସେଠାରେ ଆମ ମନ ଖୁସିର ଆନନ୍ଦ ଯୋଗାଇଦେବେ ।

କତଲ ଓ କରୁଣା ଦୁଇଟି ବିଚାର ଓ ଜୀବନ ଦୃଷ୍ଟିର ପ୍ରତୀକ । ଏହା ଭିନ୍ନ ଭିନ୍ନ ଭାବରେ ଜନଜୀବନରେ ପ୍ରତିଫଳିତ ହେବା ଦେଖାଯାଏ । ବ୍ୟକ୍ତି ଜୀବନରେ ବା ଗୋଷ୍ଠୀ ଜୀବନରେ ଏହି ଆଦର୍ଶ ସମାଜରେ ବହୁଭାବରେ ରହି ଆସିଛି । ତେବେ ସଭ୍ୟତାର ଏକ ନୈତିକ ଉତ୍ତରଣ ଭିତରେ ଅନ୍ୟ ଏକ ବିଚାର ଓ ଜୀବନଦୃଷ୍ଟି ଉଦ୍ଭବ ହୋଇଛି । ସେହି ବିଚାର ହିଂସା ପରିବର୍ତ୍ତେ ସହଯୋଗ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବିଚାର ଦେଇଥାଏ । ବିଶ୍ୱସ୍ତରରେ ହେଉ ବା ରାଷ୍ଟ୍ର ସ୍ତରରେ ହେଉ, ବିଚାର ଆଲୋଚନା ଓ ଆମର ବିଚାରଶୀଳତା ପ୍ରୟୋଗ କରି ଆମ ସମସ୍ୟାକୁ ଆମେ ସମାଧାନ

କରିବା ଆବଶ୍ୟକ । ପରସ୍ପର ପ୍ରତି ସହାନୁଭୂତି ଓ ସହଯୋଗର ମନୋଭାବ ପୋଷଣ କଲେ ଯେତେ ଜଟିଳ ସମସ୍ୟା ହେଲେ ମଧ୍ୟ ଆମେ ବିଚାର ବୁଦ୍ଧି ପ୍ରୟୋଗ କରି ତାହାର ସମାଧାନର ପନ୍ଥା ବାହାର କରିପାରିବା । ଯାହା ଅହିଂସାତ୍ମକ ପନ୍ଥାରେ ସମାଧାନ ହୋଇପାରିବ ନାହିଁ, ତାହା ହିଂସାତ୍ମକ ପନ୍ଥାରେ ଅଧିକ ସମସ୍ୟା ସୃଷ୍ଟି କରିବ । ସେହିପରି ଗୋଷ୍ଠୀ ଜୀବନରେ ହେଉ ବା ପାରିବାରିକ ସମ୍ପର୍କ କ୍ଷେତ୍ରରେ ହେଉ, ଆମେ ହିଂସାତ୍ମକ ପନ୍ଥାରୁ ଦୂରେଇ ଯାଇ କାନୁନ ଓ ମାନବିକ ମୂଲ୍ୟବୋଧ ଦୃଷ୍ଟିରୁ ଆମ ସମସ୍ୟାକୁ ବିଚାର କଲେ ଜୀବନ ଅଧିକ ଗୁଣାତ୍ମକ ହୋଇପାରିବ । ଜୀବନର ସବୁ ସମ୍ପର୍କ କ୍ଷେତ୍ରରେ ଆମେ ଯଦି ଏକ ଉତ୍ତରଦାୟୀ ଓ ସମତାର ଭାବ ପୋଷଣ କରିବା, ତେବେ ଜୀବନର ମାନ ଉନ୍ନତ ହେବା ସମ୍ଭବ ହେବ । ଜୀବନର କେତେକ ସମସ୍ୟା ଅତି ଜଟିଳ ହୋଇପାରେ, ଗୋଷ୍ଠୀ ଜୀବନରେ ନାନା ଦ୍ୱନ୍ଦ୍ୱ ଓ ବିଭେଦ ରହିଥାଇ ପାରେ, ତେବେ ସେସବୁର ଏକ ନ୍ୟାୟୋଚିତ ସମାଧାନ ପାଇଁ ଆମକୁ ବିଚାରଶୀଳ ଭାବେ ପନ୍ଥା ଖୋଜିବାକୁ ହେବ । ଜାତୀୟ ସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ, ନୀତି, ଆଦର୍ଶ, ପାରସ୍ପରିକ ମଙ୍ଗଳର ଭାବନା ପ୍ରତି ଯେତେବେଳେ ସମ୍ପୃକ୍ତି ପ୍ରକାଶ ପାଇଛି ସେତେବେଳେ ସମାଜର ଏକ ନୈତିକ ଉତ୍ତରଣ ହୋଇଛି । ଏହି ଧାରାରେ ସଭ୍ୟ ମୂଲ୍ୟବୋଧର ବିକାଶ ଘଟିଛି ଓ ବ୍ୟକ୍ତି, ଗୋଷ୍ଠୀ ଓ ରାଷ୍ଟ୍ର ଅଧିକ ସଭ୍ୟ ହୋଇ ପାରିଛି ।

ସେହିପରି ଯେତେବେଳେ ଏହି ବିଚାର ଆସିଛି ଯେ ଆମ ଜୀବନ ବା ରାଷ୍ଟ୍ରର ଭବିଷ୍ୟତ ଆମରି ଉଦ୍ୟମରେ ଉନ୍ନତ ହୋଇ ପାରିବ ସେତେବେଳେ ଜ୍ଞାନର ବିକାଶ ଘଟିଛି ଓ ଜୀବନ ପ୍ରବାହରେ ନୂତନ ପନ୍ଥାର ସନ୍ଧାନ ମିଳିଛି । ସମାଜର କ୍ରମୋନ୍ନତି ଓ ସଭ୍ୟ ଜୀବନ ଦୃଷ୍ଟିର ବିକାଶ ମଣିଷର ଚିନ୍ତନ ଓ ଉଦ୍ୟମ ଦ୍ୱାରା ସମ୍ଭବ ହୋଇଛି । ସଭ୍ୟତାର ଆଦିପର୍ବରୁ ଆଜିର ଉନ୍ନତ ଜୀବନ ପ୍ରବାହ ଭିତରେ ଯାହା ସବୁ ବିକାଶ ହୋଇଛି ସେସବୁ ମଣିଷର ପ୍ରଗାଢ଼ ପ୍ରୟାସ ଦ୍ୱାରା ଘଟିଛି । ଯେଉଁଠି ମଣିଷମାନେ ନିଷ୍ଠାର ସହ ସାମୂହିକ ପ୍ରୟାସ କରିଛନ୍ତି ସେମାନେ ପ୍ରଗତିର ଶିଡ଼ିରେ ଆଗକୁ ଯାଇଛନ୍ତି, ଉନ୍ନତ ସାମାଜିକ ବ୍ୟବସ୍ଥାର ପରମ୍ପରା ସୃଷ୍ଟି କରିଛନ୍ତି, ଜନଜୀବନକୁ ଶୃଙ୍ଖଳିତ କରିପାରିଛନ୍ତି । ଅଥଚ ଯେଉଁଠି ମଣିଷମାନେ ଦିଅଁ ଦେବତାର କରୁଣାକୁ ଭରସା କରି ନିଷ୍କ୍ରିୟ ରହିଛନ୍ତି ଓ ସବୁକିଛି ଭାଗ୍ୟ, କପାଳ ଲିଖନ କହି ଏକ ଉଦାସୀନ ମନୋଭାବ ଆଣିଛନ୍ତି ସେଠାରେ ସେମାନେ ଅନୁନ୍ନତ ଅବସ୍ଥାରେ ପଡ଼ି ରହିଛନ୍ତି । ଏହି କଥାର ତାତ୍ପର୍ଯ୍ୟକୁ ଆମେ ଦୁଇଟି ଉଦାହରଣ ଦେଇ ବୁଝିଲେ ହୁଏତ ପାର୍ଥକ୍ୟଟିକୁ ଆମେ ସ୍ପଷ୍ଟ କରିପାରିବା । ଗୋଟିଏ ରାସ୍ତାରେ ବାରମ୍ବାର ଦୁର୍ଘଟଣା ହେଉଛି । ଏହି ସମସ୍ୟାର ସମାଧାନ ପାଇଁ ଆମେ ଦୁଇ ଦିଗରେ ଚିନ୍ତା କରିପାରିବା । ଆମେ ଭାବିବା

ଯେ ସେଠାରେ ଗୋଟିଏ ଦେବା/ଦେବୀଙ୍କ ମନ୍ଦିର କରିବା ଫଳରେ ସେ ଆମକୁ ସୁରକ୍ଷା ଦେବେ । ସେଠାରେ ନଡ଼ିଆ ବାଡ଼େଇଲେ, ଘଣ୍ଟ ପିଟିଲେ, ଫୁଲ ଚଢ଼ାଇଲେ ବିଅଁଙ୍କ ଆଶୀର୍ବାଦ ମିଳିବ ଫଳରେ ଦୁର୍ଘଟଣାରୁ ତ୍ରାହି ମିଳିବ । ଅନ୍ୟ ଗୋଟିଏ ବିଚାର ହେବ ସେଠାରେ କାହିଁକି ଦୁର୍ଘଟଣା ହେଉଛି ତାହାକୁ ବିଜ୍ଞାନ ସମ୍ମତ ଧାରାରେ ଅନୁଶୀଳନ କରିବା । ରାସ୍ତାକୁ ଅଧିକ ଓସାର କରିବାକୁ ହେବ, ଆଲୋକର ବ୍ୟବସ୍ଥା ଦେଖିବାକୁ ହେବ, ରାସ୍ତାରେ ହମ୍ପସ୍ କରି ଗତିକୁ ନିୟନ୍ତ୍ରଣ କରିହେବ ବା ଟ୍ରାଫିକ ପୋଲିସ ଦ୍ୱାରା ଯାନବାହନର ଗତିକୁ ବ୍ୟବସ୍ଥିତ କରାଯାଇ ପାରିବ । ଏହା ଫଳରେ ସେଠିକାର ଦୁର୍ଘଟଣାକୁ ଏଡ଼ାଯାଇ ପାରିବ । ଦ୍ୱିତୀୟରେ ଅତୀତରେ ମହାମାରୀ ହେଉଥିଲା । ଲୋକମାନେ ହଇଜା, ବସନ୍ତ, ପ୍ଲେଗ ଇତ୍ୟାଦିରେ ଅସହାୟ ହୋଇ ମରୁଥିଲେ । ଭାବନା ଥିଲା ଏହା ଦେବତାର କ୍ରୋଧର ପରିଣାମ । ତେଣୁ ଦେବତାକୁ ସନ୍ତୁଷ୍ଟ କରିବାକୁ ପୂଜା, ଆରାଧନା, ବଳି, ହୋମ, ଯଜ୍ଞ କଲେ ଦେବତାର କୋପରୁ ତ୍ରାହି ମିଳିବ । ସେଥିପାଇଁ କେତେ କର୍ମକାଣ୍ଡ, କାହାଣୀ, କିମ୍ବଦନ୍ତୀ, ନୀତି, ବିଧାନ ସୃଷ୍ଟି କରାଯାଇଥିଲା । ଅନ୍ୟ ଭାବନାଟି ହେଲା ରୋଗର କାରଣ ଅନୁଧ୍ୟାନ ପାଇଁ ନିୟନ୍ତ୍ରିତ ପରିସ୍ଥିତିରେ ଗବେଷଣା କରିବାକୁ ହେବ । ରୋଗ ଯେଉଁ କାରଣ ଯୋଗୁଁ ହେଉଛି ତାହା ଜାଣିଲେ ପ୍ରତିଷେଧ ବାହାର କରାଯାଇ ପାରିବ । ମଣିଷଙ୍କର ଏହି ପ୍ରୟାସ ଓ କୌତୂହଳତା ଯୋଗୁଁ ହଇଜା, ବସନ୍ତ, ପ୍ଲେଗ, କୁଷ୍ଠ ରୋଗର ନିଦାନ ସମ୍ଭବ ହୋଇପାରିଛି ଓ ଜନଜୀବନରୁ ବହୁ ଦୁଃଖ, ଯନ୍ତ୍ରଣା ଲାଘବ ହେବା ସମ୍ଭବ ହୋଇଛି । ଏହି ବିଚାର ହେଉଛି ବୈଜ୍ଞାନିକ ଅନୁଶୀଳନ ଜନିତ ଏକ ଜୀବନ ଦର୍ଶନ ।

ଜନଜୀବନକୁ ଉନ୍ନତ ଓ ଶୃଙ୍ଖଳିତ କରିବା ପାଇଁ ଆବଶ୍ୟକ ନାଗରିକ ଶୃଙ୍ଖଳାବୋଧ, ମାନବବାଦୀ ଦୃଷ୍ଟି ଓ ବୈଜ୍ଞାନିକ ବିଚାରବୋଧ । ଏହି ମୂଲ୍ୟଚୟର ପ୍ରତୀକ ଭାବେ ଏଠାରେ କାନୁନ୍‌କୁ ନିଆଯାଇଛି । ଯେଉଁ ସାମାଜିକ ଦୃଶ୍ୟପଟରେ ଏହି ମୂଲ୍ୟଚୟର ଅଭିବ୍ୟକ୍ତି ଯେତେ ଅଧିକ ତାହା ସେତିକି ସଭ୍ୟ, ସଂସ୍କୃତି ସମ୍ପନ୍ନ ଓ ପ୍ରଗତିଶୀଳ । ଅଥଚ ଯେଉଁଠି ଜୀବନ ପ୍ରବାହରେ କତଲ ଓ ଦୈବୀ କରୁଣା ଜନିତ ମାନସିକତାର ପ୍ରାବଲ୍ୟ ଅଧିକ ତାହା ଅନେକାଂଶରେ ଅନୁନ୍ନତ । (ପ୍ରଗତିବାଦୀ - ୩.୫.୨୦୧୨)





ଲେଖକ ଅଧ୍ୟାପକ ଧନେଶ୍ୱର ସାହୁଙ୍କର ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ । ଦର୍ଶନଶାସ୍ତ୍ରରେ ରେଭେନ୍ସା ମହାବିଦ୍ୟାଳୟରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଓ ଉଭୟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ । ୧୯୭୪ରୁ ସରକାରୀ କଲେଜରେ ଅଧ୍ୟାପକ ଭାବେ ଯୋଗଦେଇ ବିଭିନ୍ନ କଲେଜରେ ଅଧ୍ୟାପନା କରି ୨୦୦୭ରେ ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟରୁ ଅବସର ଗ୍ରହଣ । ଜଣେ ଗାନ୍ଧୀବାଦୀ ଓ ହେତୁବାଦୀ ଚିନ୍ତକଭାବେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ ।

ସମକାଳର ଓଡ଼ିଆ ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ଅଧ୍ୟାପକ ସାହୁଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ଭାଷା, ମୌଳିକ ବିଚାରଧାରା, ଅନୁସନ୍ଧିତ୍ସା, ନିରପେକ୍ଷ ଦୃଷ୍ଟିଭଙ୍ଗୀ ଓ ସର୍ବୋପରି ନିର୍ଭିକତା ଅନ୍ୟମାନଙ୍କ ଠାରୁ ତାଙ୍କୁ ସତନ୍ତ୍ରଭାବେ ପରିଚିତ କରିଥାଏ । ବ୍ୟାପକ ଅଧ୍ୟୟନ, ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ତାଙ୍କ ପ୍ରତ୍ୟେକଟି ଲେଖାକୁ କରିଛି ମନନଧର୍ମୀ । ଓଡ଼ିଆ ଓ ଇଂରାଜୀରେ ତାଙ୍କର ବହୁ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ୨୦୧୦ ବର୍ଷର ମର୍ଯ୍ୟାଦାବନ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ କେ. ବୀରମଣି ଆୱାର୍ଡ଼ ଫର୍ ସୋସିଆଲ୍ ଜଷ୍ଟିସ୍ ଆନ୍ତର୍ଜାତୀୟ ପୁରସ୍କାରରେ ସେ ସମ୍ମାନିତ ।

ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ, ଧର୍ମର ଊର୍ଦ୍ଧ୍ୱରେ, ଆବ୍ରାହମ କୋଭୁର, ଧର୍ମ, ଦର୍ଶନ ଓ ସମାଜ, ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ, ସଂସ୍କୃତି ଓ ସର୍ବୋଦୟ, ଭାରତରେ ଜାତିପ୍ରଥାର ଉତ୍ପତ୍ତି ଓ ସ୍ୱରୂପ, ପେରିୟାରଙ୍କ ରଚନାବଳୀ, ଗାନ୍ଧୀ, ବିଜ୍ଞାନ ଓ ମାନବବାଦ ଆଦି ପୁସ୍ତକ ତାଙ୍କର ସୃଜନସୃଷ୍ଟି ।





ISBN 81-908500-6-7